ଏସ୍. ଶ୍ମିଦ୍ଟ. କେ. ତାର୍ନୋଭ୍ସ୍କି,
ଆଇ. ବେର୍ଖିନ୍

# ସୋଭିଏତ୍ ୟୁନିଅନ୍‌ର ଇତିହାସ

## ସଂକ୍ଷିପ୍ତ ପାଠ

ସମାଜବିଜ୍ଞାନର ପଥପ୍ରଦର୍ଶକ

ପ୍ରଗତି

ପ୍ରଗତି ପ୍ରକାଶନ

ସମାଜବିଜ୍ଞାନର ପଥପ୍ରଦର୍ଶକ

ଏସ୍.ଶ୍ମିଡ୍ଟ. କେ.ଟାର୍ନୋଭ୍ସ୍କି,
ଆଇ.ବେର୍ଖିନ୍

# ସୋଭିଏତ୍ ୟୁନିଅନ୍‌ର ଇତିହାସ

ସଂକ୍ଷିପ୍ତ ପାଠ

ପ୍ରଗତି ପ୍ରକାଶନ
ମସ୍କୋ

ଅନୁବାଦ – ବୈଷ୍ଣବ ଚରଣ ପରିଡ଼ା

ମୁଖ୍ୟ ପରିବେଶକ :
ନବଯୁଗ ଗ୍ରନ୍ଥାଳୟ,
ବକ୍ସିବଜାର ରୋଡ,
କଟକ-୧

**Шмидт С. О., Тарновский К. Н., Берхин И. Б.**
КРАТКИЙ ОЧЕРК ИСТОРИИ СССР
Учебное пособие
*На языке ория*

**S. Schmidt, K. Tarnovsky and I. Berkhin**
A SHORT HISTORY OF THE USSR
GUIDE
*in Oriya*



ସୋଭିଏତ୍ ୟୁନିଅନ୍‌ରେ ମୁଦ୍ରିତ

Ш $\frac{0505000000—024000}{014(01)—86}$ 327—85

# ସୂଚୀପତ୍ର



1*

# ଭୂମିକା

ସୋଭିଏତ୍ ୟୁନିଅନ୍‌ର କ୍ଷେତ୍ର ଫଳ ହେଉଛି ୟୁରୋପର ଅର୍ଦ୍ଧେକ ଏବଂ ଏସିଆର ଏକ ତୃତୀୟାଂଶ – ପୃଥିବୀ ପୃଷ୍ଠର ଛଅ ଭାଗରୁ ଏକ ଭାଗ । ଏହାର ବିଶାଳ ଭୂଖଣ୍ଡ ଦକ୍ଷିଣର କୃଷ୍ଣ ସାଗର, ଏସୀୟ ପର୍ବତମାଳା ଏବଂ ମରୁଭୂମିରୁ ଆରମ୍ଭ ହୋଇ ଉତ୍ତରସ୍ଥ ଉତ୍ତର ଆର୍କଟିକ ମହାସାଗର ପର୍ଯ୍ୟନ୍ତ ଏବଂ ପୂର୍ବର ପ୍ରଶାନ୍ତ ମହାସାଗରରୁ ପଶ୍ଚିମର ବଲ୍‌ଟିକ୍ ସାଗର ଓ କାର୍ପେଥିଆନ୍‌ସ ପର୍ଯ୍ୟନ୍ତ ବିସ୍ତୃତ ।

ସୋଭିଏତ୍ ୟୁନିଅନ୍‌ର ପ୍ରାକୃତିକ ଅବସ୍ଥା ମଧ୍ୟ ବିଚିତ୍ର ଏବଂ ଏହି ବିଶାଳ ଭୂଭାଗର ଦକ୍ଷିଣବର୍ତ୍ତୀ ଉଷ୍ଣ ଅଞ୍ଚଳରେ ପ୍ରଥମେ ମଣିଷର ଆବିର୍ଭାବ ଘଟିଥିଲା । ଏଥିରେ ବାସ କରୁଥିବା ଲୋକେ ଆଦିମ ଗୋଷ୍ଠୀ ବ୍ୟବସ୍ଥାରୁ ଆରମ୍ଭ କରି ଶ୍ରେଣୀ ସମାଜ ପର୍ଯ୍ୟନ୍ତ – ସାରା ପୃଥିବୀରେ ଅନୁସୃତ ପଦ୍ଧତି – ବିରାଟ ପଥ ଦେଇ ଗତି କରି ଆସିଛନ୍ତି । ମାନବଜାତିର ଇତିହାସରେ ଆଦିମ ଗୋଷ୍ଠୀ ବ୍ୟବସ୍ଥାର ସମୟକାଳଟି ଥିଲା ଅତୀତର ସର୍ବାପେକ୍ଷା ସୁଦୀର୍ଘ ସାମାଜିକ-ଅର୍ଥନୈତିକ ରୂପ । ଏହା ଆରମ୍ଭ ହୋଇଥିଲା ଲକ୍ଷ ଲକ୍ଷ ବର୍ଷ ପୂର୍ବେ ଏବଂ ଶେଷ ହୋଇଥିଲା ବିଭିନ୍ନ ଜାତିମାନଙ୍କ ମଧ୍ୟରେ ବିଭିନ୍ନ ସମୟରେ । ସେତେବେଳେ ପୃଥିବୀ ପୃଷ୍ଠରେ ବାସ କରୁଥିବା ଜାତିମାନଙ୍କର ଇତିହାସ ଅଜ୍ଞାତ ରହି ଯାଇଛି । ସେହିସବୁ ଉପଜାତି ତଥା ସେସବୁର ଗୋଷ୍ଠୀପତିମାନଙ୍କର ନାମ, ସେମାନଙ୍କ ଭାଷା ଆଦି ସଂପର୍କରେ କିଛି ଜାଣି ହୁଏ ନାହିଁ । କିନ୍ତୁ ଆମେ ଏତିକି ଜାଣିଛେ ଯେ, ସେଇ ସୁଦୂର ଅତୀତରେ ଉଦ୍‌ଭୂତ ଆଦିମ ସଂସ୍କୃତି ଥିଲା ମାନବଜାତିର ପରବର୍ତ୍ତୀ ବୈଷୟିକ ତଥା ବୌଦ୍ଧିକ ସାଂସ୍କୃତିକ ବିକାଶର ମୂଳ ଭିତ୍ତି ସ୍ୱରୂପ ।

ଏ ଦେଶର ବର୍ତ୍ତମାନର ଆବହମଣ୍ଡଳୀୟ ଅବସ୍ଥା, ବର୍ତ୍ତମାନର ବନଭୂମି, ବନ-ଷ୍ଟେପ୍ ଅଞ୍ଚଳ, ଷ୍ଟେପ୍ ଭୂଖଣ୍ଡ ରୂପ ପରିଗ୍ରହ କରିଥିଲା ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦରେ । ଏହାର ଆଉରି ପୂର୍ବରୁ, ଖ୍ରୀଷ୍ଟ ପୂର୍ବ ତୃତୀୟ ଏବଂ ଦ୍ୱିତୀୟ ସହସ୍ରାବ୍ଦରେ ଆଦିମ ଶସ୍ୟ ଚାଷ ଏବଂ ପଶୁପାଳନ ଆରମ୍ଭ ହୋଇଥିଲା ଷ୍ଟେପ୍ ଅଞ୍ଚଳରେ ।

ଏହା ଏବେ ସୋଭିଏତ୍ ୟୁନିଅନ୍‌ର ଅନ୍ତର୍ଗତ । ଏହା ସହିତ ଆନୁଷଙ୍ଗିକ ଭାବେ ବହୁବିଧ ବୈଷୟିକ, ସାଂସ୍କୃତିକ ତଥା ଜୀବନଯାପନର ଧାରା ଗଢ଼ି ଉଠିଥିଲା ଏହିସବୁ ଅଞ୍ଚଳରେ । ଉତ୍ତରାଞ୍ଚଳରେ ବାସ କରୁଥିବା ଉପଜାତିମାନେ ଶିକାରୀ ଏବଂ ବଣ୍ୟ ଫଳମୂଳ, ବେରିକୋଳି ଆଦି ସଂଗ୍ରହକାରୀ ରୂପେ ରହି ଯାଇଥିଲେ । ମଧ୍ୟ ଏସିଆର ମରୁଦ୍ୟାନସମୂହ, କୃଷ୍ଣସାଗରୀୟ ଅଞ୍ଚଳ ଏବଂ ଟ୍ରାନ୍‌ସକକେସସ୍‌ରେ ଶସ୍ୟ ଗୃଷ ଏବଂ ପଶୁପାଳନକୁ ଉତ୍ତରଣ ତ୍ୱରାନ୍ୱିତ ହୋଇଥିଲା ଏହିସବୁ ଭୂଖଣ୍ଡର ପାଶ୍ଚାତ୍ୟ ଏବଂ ଦକ୍ଷିଣ-ପୂର୍ବ ଏସିଆ ସହିତ ଯୋଗାଯୋଗ ହେତୁ । ଶେଷୋକ୍ତ ଅଞ୍ଚଳମାନଙ୍କରେ ପୃଥିବୀର ଅନ୍ୟାନ୍ୟ ଭୂଭାଗ ଅପେକ୍ଷା ଏଧରଣର ବିକାଶ ଶୀଘ୍ର ଆରମ୍ଭ ହୋଇଥିଲା ।

ସେହି କାଳରେ ଦେଶର ବିଭିନ୍ନ ଅଞ୍ଚଳର ବିକାଶ ଅସମ ଭାବେ ଘଟିଥିଲା । ସାମାଜିକ ଏବଂ ସାଂସ୍କୃତିକ ଆନ୍ତଃପ୍ରକ୍ରିୟା ପାଇଁ ଅର୍ଥନୀତିର ବିକାଶ ଏବଂ ସୁବିଧା ସୁଯୋଗର ଅଭିବୃଦ୍ଧି ସହିତ ବିଭିନ୍ନ ଜାତିମାନଙ୍କର ସାମାଜିକ-ଅର୍ଥନୈତିକ ଓ ସାଂସ୍କୃତିକ ବିକାଶର ସ୍ତର କ୍ରମଶଃ ଆଉରି ସମାନ ହେବାକୁ ଲାଗିଥିଲା ।

ସୋଭିଏତ୍ ୟୁନିଅନ୍‌ର ଅଧିକାଂଶ ଭାଗରେ ସେତେବେଳେ କୌଣସି ଲୋକବାକ ବାସ କରୁ ନଥିଲେ । ବିଶାଳ ବିଶାଳ ଭୂଖଣ୍ଡରେ କେଉଁଠି କେମିତି କିଛି ଲୋକ ବାସ କରୁଥିଲେ, କିମ୍ବା ମୋଟେ ନଥିଲେ । ଗୋଟିଏ ଅଞ୍ଚଳର ଲୋକ ଅନ୍ୟ ଅଞ୍ଚଳରେ ବାସ କରୁଥିବା ଲୋକଙ୍କ ସଂପର୍କରେ ଜାଣି ପାରୁ ନଥିଲେ, ପରସ୍ପରର ନିକଟରେ ବାସ କରୁଥିଲେ ମଧ୍ୟ । ବହୁ କାଳ ପର୍ଯ୍ୟନ୍ତ କୌଣସି ଲିପିବଦ୍ଧ କରିଲା ଭଳି ଲିପି ବା ଲିଖନ ପ୍ରଣାଳୀ ସେତେବେଳେ ନଥିଲା । ତେଣୁ ସବୁ କଥା ମନରେ ରଖିବାକୁ ପଡ଼ୁଥିଲା । କ୍ରମଶଃ ଜୀବନ ଅନ୍ୟ ଅଞ୍ଚଳକୁ ବିସ୍ତାର ଲାଭ କରିଥିଲା । ବେଳେ ବେଳେ କୌଣସି ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ବାସ କରୁଥିବା ଏକ ଜାତିର ଲୋକେ ନୂଆ ନୂଆ ଭୂଖଣ୍ଡକୁ ସେମାନଙ୍କ ଅଞ୍ଚଳ ସହିତ ଯୋଗ କରୁଥିଲେ, ବା ଆଉ କେତେକ କ୍ଷେତ୍ରରେ କେତେକ ଜାତି ନିଜର ବାସସ୍ଥଳୀ ପରିତ୍ୟାଗ କରି ଅନ୍ୟମାନେ ବାସ କରୁଥିବା ଭୂଖଣ୍ଡ ଉପରେ ହସ୍ତକ୍ଷେପ କରୁଥିଲେ: ଫଳରେ ଜନସଂଖ୍ୟାର ସ୍ଥାନାନ୍ତରଣ ଘଟୁଥିଲା । ଏହି ଭାବେ ଅତି ଧୀରେ ଧୀରେ, ଆଦିମ ଗୋଷ୍ଠୀ ବ୍ୟବସ୍ଥାର ସୀମା ମଧ୍ୟରେ, ସେହିସବୁ ବଡ଼ ବଡ଼ ସାଂସ୍କୃତିକ-ଜାତିଗତ ଗୋଷ୍ଠୀଗୁଡ଼ିକର ପ୍ରାଥମିକ ଅବସ୍ଥା ସୃଷ୍ଟି ହୋଇଥିଲା, ଯେଉଁଥିରୁ ପରବର୍ତ୍ତୀ ଜାତିମାନଙ୍କର ଉଦ୍‌ଭବ ଘଟିଥିଲା । ସେମାନଙ୍କ ସଂପର୍କରେ ଆମେ ଲିଖିତ ମୂଳ ଉପାଦାନଗୁଡ଼ିକରୁ ଜାଣିବାକୁ ପାଇଥାଏ ଯେ, ଏହି ଉଦ୍‌ଭବର ପ୍ରକ୍ରିୟା ଥିଲା ପାରସ୍ପରିକ ପ୍ରଭାବ ଏବଂ ସଂଘର୍ଷ, ସ୍ଥାନାନ୍ତରଣ ଏବଂ ନୂତନ ଅଞ୍ଚଳରେ ବସତି ସ୍ଥାପନର ଏକ ସୁଦୀର୍ଘ ପ୍ରକ୍ରିୟା ।

କେତେକ ଦେଶର ବହୁ ଜାତିଙ୍କର ଲିଖିତ ବିବରଣ ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦରୁ ସଂରକ୍ଷିତ ରହିଛି : ଗ୍ରୀକ୍ ଐତିହାସିକ ହିରୋଦତସ୍ ଗ୍ରୀକ୍‌ମାନଙ୍କ ସଂପର୍କରେ ପଞ୍ଚମ ଶତାବ୍ଦୀରେ ଲେଖି ଯାଇଛନ୍ତି ।

# ୧ମ ପରିଚ୍ଛେଦ

## ସୋଭିଏତ୍ ୟୁନିଅନ୍‌ର ଭୂଭାଗରେ ଦାସମାଲିକ-ରାଷ୍ଟ୍ରସମୂହ ଏବଂ ଏସୀୟ ଉପଜାତିଗଣ

## (ଖ୍ରୀ : ପୂ : ପ୍ରଥମ ସହସ୍ରାବ୍ଦ – ଖ୍ରୀଷ୍ଟ ପର ପ୍ରଥମ ଶତାବ୍ଦୀସମୂହ)

ଅନ୍ୟାନ୍ୟ ପ୍ରାଚୀନ ସଭ୍ୟତାର କେନ୍ଦ୍ରଗୁଡ଼ିକ ସହିତ ନିବିଡ଼ ଭାବେ ସଂଯୁକ୍ତ ଥିବା ଦାସମାଲିକାନା ଯୁକ୍ତ ରାଷ୍ଟ୍ରସବୁ ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦରେ ଟ୍ରାନ୍‌ସକକେସସ୍, କଷ୍ଣ ସାଗରର ଉପକୂଳବର୍ତ୍ତୀ ଅଞ୍ଚଳ ଏବଂ ମଧ୍ୟ ଏସିଆରେ ଗଢ଼ି ଉଠିଥିଲା । ଆର୍ମେନୀୟ ଉପତ୍ୟକାରେ ଏକଦା ଅବସ୍ଥିତ ଉରାର୍ତୁ ରାଷ୍ଟ୍ରଟିକୁ ସୋଭିଏତ୍ ଭୂଖଣ୍ଡରେ ପ୍ରଥମ ରାଷ୍ଟ୍ର ବୋଲି ବିଗ୍ଣର କରାଯାଇଥାଏ । ଏହି ଭୂଖଣ୍ଡଟି ଥିଲା ଏକ ପ୍ରାଚୀନ ଜନବସତି ଏବଂ ବାଇବେଲର ନୋୟାଙ୍କ ଜାହାଜ ଶୀର୍ଷକ ଉପାଖ୍ୟାନରେ ଏହା ସଂପର୍କରେ ଉଲ୍ଲେଖ ଅଛି । ଖ୍ରୀଷ୍ଟ ପୂର୍ବ ୮ମ ଶତାବ୍ଦୀରେ ଉରାର୍ତୁ ଥିଲା ପାଶ୍ଚାତ୍ୟ ଏସିଆରେ ଏକ ଅଗ୍ରଣୀ ରାଷ୍ଟ୍ର । ଉରାର୍ତୁର ରାଜାମାନେ ଉର୍ବର ଆରାରାତ୍ ନିମ୍ନଭୂମି ସମେତ ଟ୍ରାନ୍‌ସକକେସସ୍‌ରେ ନିଜର ପ୍ରଭାବ ବିସ୍ତାର କରିଥିଲେ । ସେସବୁ ଅଞ୍ଚଳରେ ଦୁର୍ଗ-ନଗର (ବଡ଼ ଏକ ପ୍ରଶାସନିକ ଏବଂ ସାମରିକ କେନ୍ଦ୍ର ରୂପେ ଗଢ଼ି ଉଠିଥିଲା ଏରେବୁନି, ଏହା ଆଧୁନିକ ଏରେଭାନ ସହର ନିକଟରେ ଅବସ୍ଥିତ ଥିଲା ଏବଂ ଏଥିରେ ରାଜାମାନେ ବାସ କରୁଥିଲେ) ଏବଂ ପୟଃପ୍ରଣାଳୀସବୁ ନିର୍ମିତ ହୋଇଥିଲା । ପ୍ରାଚ୍ୟର ଅନ୍ୟାନ୍ୟ ପ୍ରାଚୀନ ରାଜ୍ୟ ଭଳି ଉରାର୍ତୁର ମଧ୍ୟ ନିଜସ୍ୱ ଲିପି (କୁନେଇଫର୍ମ) ଥିଲା । ଏହି ରାଷ୍ଟ୍ରଟି ତା'ର ବିଭିନ୍ନ ଅଞ୍ଚଳ ମଧ୍ୟରେ ଅର୍ଥନୈତିକ ଐକ୍ୟ ପ୍ରତିଷ୍ଠା କରି ପାରି ନଥିଲା ଏବଂ ଆକ୍ରମଣମୁଖୀ ପ୍ରତିଦ୍ୱନ୍ଦ୍ୱୀମାନଙ୍କ ସହିତ ଯୁଦ୍ଧ ଫଳରେ ଖଣ୍ଡ ବିଖଣ୍ଡ ହୋଇ ପଡ଼ିଥିଲା ।

ସୋଭିଏତ୍ ପ୍ରତ୍ନତତ୍ତ୍ୱବିଦ୍‌ମାନଙ୍କର ସାଂପ୍ରତିକ କାର୍ଯ୍ୟକଳାପ ଆରମ୍ଭ ହେଲା ପର୍ଯ୍ୟନ୍ତ ମଧ୍ୟ ଏସିଆର ପ୍ରାଚୀନ ଇତିହାସ ପ୍ରାୟ ସଂପୂର୍ଣ୍ଣ ରହସ୍ୟ ମଧ୍ୟରେ ଆବୃତ ଥିଲା । ତା'ର ଇତିହାସର ଏହି ରହସ୍ୟରାଜି ଲୁକ୍କାୟିତ ଥିଲା ବାଲୁକାରାଶି ତଳେ । ପୁରାତନ କୃଷିଯୋଗ୍ୟ ମରୁଦ୍ୟାନଗୁଡ଼ିକରେ ପ୍ରତିଷ୍ଠିତ ସହର ଆଉ ପ୍ରାସାଦରାଜିକୁ ସେସବୁ ବାଲୁକାର ପାହାଡ଼ ଢାଙ୍କି ପକାଇଥିଲା । ଖ୍ରୀଷ୍ଟ ପୂର୍ବ ୪ର୍ଥ ଶତାବ୍ଦୀରେ ଏହିସବୁ ଭୂଖଣ୍ଡକୁ ଗ୍ରୀକ୍‌ମାନେ "ସହସ୍ର ନଗରୀର ଦେଶ" ବୋଲି ଆଖ୍ୟାୟିତ କରିଥିଲେ । ଏକ

ଦିଗରେ, ପଶୁପାଳକ ଏବଂ ନିମ୍ନ ମାନର ସଂସ୍କୃତିସଂପନ୍ନ ଶିକାରୀମାନଙ୍କ ଦ୍ୱାରା ଅଧ୍ୟୁଷିତ ଷ୍ଟେପ୍‌ଭୂଇଁ ଓ ପାର୍ବତ୍ୟ ଅଞ୍ଚଳ ଏବଂ ଅନ୍ୟ ଦିଗରେ କୃଷି ଓ ନଗର ଗଢ଼ି ଉଠିଥିବା ଅଞ୍ଚଳଗୁଡ଼ିକ ମଧ୍ୟରେ ବୈଷମ୍ୟ ମଧ୍ୟ ଏସିଆରେ ଅତି ପ୍ରାଚୀନ କାଳରେ ପରିଦୃଷ୍ଟ ହୋଇଥିଲା । ଜଳସେଚନ ବ୍ୟବସ୍ଥା ନିର୍ମାଣ ଓ ସଂରକ୍ଷଣ ସମେତ ଯାଯାବର ଉପଜାତିମାନଙ୍କ ସହିତ ମିଳିତ ଭାବେ ଲଢ଼େଇ କରିବାର ଆବଶ୍ୟକତା ଫଳରେ ଅନେକଗୁଡ଼ିଏ ବଡ଼ ବଡ଼ ରାଷ୍ଟ୍ର ଗଢ଼ି ଉଠିଥିଲେ । ଏସବୁଥିରେ ମୁଖ୍ୟ ଭୂମିକା ପାଳନ କରିଥିଲା ଗୋଷ୍ଠୀ ସମାଜ । ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ମଧ୍ୟ ଭାଗରେ ସେସବୁ ରାଷ୍ଟ୍ରମାନଙ୍କ ମଧ୍ୟରେ ବିଶେଷ କରି ସଗ୍‌ଦିଆନା ଓ ଖୋରେଜ୍‌ମ ରାଷ୍ଟ୍ର ଦୁଇଟି ତିଷ୍ଠି ରହିଥିଲା । ମଧ୍ୟ ଏସିଆର ବିରାଟ ଏକ ଅଞ୍ଚଳ ତତ୍‌କାଳୀନ ବିଶାଳ ସାମ୍ରାଜ୍ୟ— ପାରସ୍ୟର ଆକିମେନିଡ୍ ସାମ୍ରାଜ୍ୟର (ଖ୍ରୀଷ୍ଟ ପୂର୍ବ ୬ଷ୍ଠ ଶତାବ୍ଦୀର ମଧ୍ୟ ଭାଗରୁ) ଏବଂ ତା'ପରେ ମ୍ୟାସିଡନ୍‌ର ଆଲେକ୍‌ଜାଣ୍ଡାରଙ୍କ (ଖ୍ରୀଷ୍ଟ ପୂର୍ବ ୩୩୬-୩୨୩ ପର୍ଯ୍ୟନ୍ତ ରାଜତ୍ୱକାଳ) ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଖ୍ରୀଷ୍ଟ ପୂର୍ବ ୩ୟ ଏବଂ ୨ୟ ଶତାବ୍ଦୀରେ ଗ୍ରୀକ୍- ବାକ୍‌ଟ୍ରୀୟ ରାଜ୍ୟ ଓ ପରେ ପାର୍ଥିଆ ରାଜ୍ୟ ଅଗ୍ରଣୀ ଭୂମିକା ନେଇଥିଲେ ।

ବହୁ ଶାଖା ପ୍ରଶାଖା ବିଶିଷ୍ଟ ମଧ୍ୟ ଏସୀୟ ସଭ୍ୟତାର ଯୋଗାଯୋଗ ଅତୀତ ଯୁଗର ଅନ୍ୟାନ୍ୟ ମହାନ୍ ସଭ୍ୟତାସମୂହ ଯଥା ଭାରତ, ଚୀନ୍ ଏବଂ ମେସୋପଟେମିୟା ସହିତ ପ୍ରତିଷ୍ଠିତ ହୋଇଥିଲା । ଗ୍ରୀକ୍ ସଂସ୍କୃତିର ବହୁ ଉପାଦାନକୁ ଗ୍ରହଣ କରିବା ସଙ୍ଗେ ସଙ୍ଗେ ମଧ୍ୟ ଏସିଆର ଜାତିମାନେ ଆକ୍ରମଣକାରୀମାନଙ୍କୁ ବହୁଭାବେ ପ୍ରଭାବିତ କରିଥିଲେ । ହେଲେନୀୟ ସଭ୍ୟତାର ମଧ୍ୟ ଏସୀୟ ମୂଳ, ଯିଏକି ଖ୍ରୀଷ୍ଟ ପୂର୍ବ ୪ର୍ଥ ଶତାବ୍ଦୀରେ ବିକାଶ ଲାଭ କରିଥିଲା, ପଶ୍ଚିମ ଏସୀୟ ମୂଳ ପରି ମଧ୍ୟ ଶକ୍ତିଶାଳୀ ଥିଲା ।

ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ମଧ୍ୟ ଭାଗରେ କୃଷ୍ଣ ସାଗରର ଉତ୍ତର ଏବଂ ପୂର୍ବ ଉପକୂଳବର୍ତ୍ତୀ ଅଞ୍ଚଳରେ ଗ୍ରୀକ୍ ଉପନିବେଶସବୁ ମୁଣ୍ଡ ଟେକି ଉଠିଥିଲେ । ଏହିସବୁ ଭୂଖଣ୍ଡରେ ଉପନିବେଶ ପ୍ରତିଷ୍ଠା କରିବା ପୂର୍ବରୁ ସେମାନେ ଏସବୁ ସଂପର୍କରେ ଜାଣିଥିଲେ । ଗ୍ରୀକ୍ ପୁରାଣମାନଙ୍କରେ ସିଥିଆରେ ଅବସ୍ଥିତ ହେରାକ୍ଲିସ୍‌ଙ୍କ ଓ ତାଉରିଦାରେ (କ୍ରିମିଆ) ଇଫିଜେନିଆଙ୍କ ବୀରୋପମ କ୍ରିୟାକଳାପ, ସୁନେଲୀ ମେଷଲୋମ ଅନ୍ୱେଷଣରେ ଆର୍ଗୋ ନାମକ ବୋଇତରେ ଯାତ୍ରୀମାନଙ୍କର କୋଲ୍‌ଚିସ୍‌କୁ (କୃଷ୍ଣ ସାଗରର କକେସୀୟ ଉପକୂଳ) ଯାତ୍ରା ସଂପର୍କରେ ବର୍ଣ୍ଣିତ ହୋଇଛି । କିଂବଦନ୍ତୀ ଅନୁଯାୟୀ ପ୍ରୋମେଥିଅସ୍‌ଙ୍କୁ କକେସସ୍‌ର ଏକ ପାହାଡ଼ରେ ବନ୍ଦୀ କରାଯାଇଥିଲା । ଉପନିବେଶଗୁଡ଼ିକ ସାଧାରଣତଃ ସେହିସବୁ ଜାଗାରେ ସ୍ଥାପିତ ହୋଇଥିଲା, ଯେଉଁଠି ସ୍ଥାନୀୟ ଉପଜାତିମାନେ ବସତିସ୍ଥାପନ କରିଥିଲେ ଏବଂ ଅନେକ ସମୟରେ ସେସବୁ ଗ୍ରାମାଞ୍ଚଳର ପ୍ରଶାସନିକ ତଥା ବାଣିଜ୍ୟିକ ଏବଂ ଶିଳ୍ପ କେନ୍ଦ୍ର ରୂପେ ଗଢ଼ି ଉଠିଥିଲା । ଫଳରେ ସେସବୁ ଉପନିବେଶର ଜନସଂଖ୍ୟାରେ ବିଭିନ୍ନ ଜାତି ଉପଜାତି ମିଶି ଯାଇଥିଲେ । ସେସବୁ ମଧ୍ୟରେ ବିଶେଷ

ଭାବେ ଗୁରୁତ୍ୱ ଅର୍ଜନ କରିଥିଲା ଅଲ୍‌ବିଆ (ଦକ୍ଷିଣ ବୁଗ୍‌ର ମୁହାଣ), ଚେର୍‌ସୋନେସ୍ (ଆଧୁନିକ ସେଭାସ୍ତୋପୋଲ୍ ନିକଟବର୍ତ୍ତୀ) ଏବଂ ପାଣ୍ଟିକାପେଅମ୍ (ଆଧୁନିକ କେର୍ଚ୍) ଉପନିବେଶଗୁଡ଼ିକ । ଶେଷୋକ୍ତ ଉପନିବେଶଟି ପରେ ବୋସ୍‌ପୋରାନ୍ ଦାସମାଲିକାନା ଯୁକ୍ତ ରାଜ୍ୟର କେନ୍ଦ୍ରରେ ପରିଣତ ହୋଇଥିଲା । ଖ୍ରୀଷ୍ଟ ପୂର୍ବ ୪ର୍ଥ ଶତାବ୍ଦୀରେ ଏଥେନ୍‌ସକୁ ରପ୍ତାନି ହେଉଥିବା ଗହମର ଅର୍ଦ୍ଧେକ ଯାଉଥିଲା ବୋସ୍‌ପୋରାନ୍ ରାଜ୍ୟରୁ ।

ଦ୍ୱିତୀୟ ତିଗ୍ରାନ୍‌ଙ୍କ (ରାଜତ୍ୱକାଳ ଖ୍ରୀଷ୍ଟ ପୂର୍ବ ୯୫-୫୬) ଆର୍ମେନୀୟ ରାଜ୍ୟଟି ଥିଲା ଖ୍ରୀଷ୍ଟ ପୂର୍ବ ପ୍ରଥମ ଶତାବ୍ଦୀର ପ୍ରଥମ ଭାଗରେ ସର୍ବବୃହତ୍ ରାଜ୍ୟ । ଏହି ରାଜାଙ୍କ ରାଜ୍ୟର ଦରବାରରେ ଦାର୍ଶନିକ ଏବଂ ଲେଖକମାନେ ବାସ କରୁଥିଲେ ଏବଂ ଗ୍ରୀକ୍ ବିୟୋଗାନ୍ତକ ନାଟକସମୂହ ଅଭିନୀତ ହେଉଥିଲା । ଖ୍ରୀଷ୍ଟୀୟ ଯୁଗର ପ୍ରାରମ୍ଭରେ ଟ୍ରାନ୍‌ସକକେସସ୍‌ରେ ଆଉରି କେତେକ ବଡ଼ ବଡ଼ ରାଜ୍ୟ ମଧ୍ୟ ଅବସ୍ଥିତ ଥିଲା । କୃଷ୍ଣ ସାଗରୀୟ ଭୂଖଣ୍ଡ ପରି ଟ୍ରାନ୍‌ସକକେସସ୍ ମଧ୍ୟ ବିପୁଳ ଭାବେ ରୋମ୍‌ର ରାଷ୍ଟ୍ରସତ୍ତା ତଥା ସଂସ୍କୃତି ଦ୍ୱାରା ପ୍ରଭାବିତ ହୋଇଥିଲା ।

ଅନ୍ୟ ଦିଗରେ, ବୈକାଲ ହ୍ରଦର ତୀର ଦେଶରୁ ମଧ୍ୟ ୟୁରୋପର ନିମ୍ନ ଭୂମି ପର୍ଯ୍ୟନ୍ତ ବିଛେଇ ହୋଇ ରହିଥିଲା ବିଶାଳ ଷ୍ଟେପ୍ ଅଞ୍ଚଳ । ଏହି ଅଞ୍ଚଳର ଦକ୍ଷିଣ ଭାଗରେ ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦରେ ଗଢ଼ି ଉଠିଥିଲା ପ୍ରାଚୀନ ସଭ୍ୟତାର ଏକ ସ୍ୱର୍ଣ୍ଣ ବଳୟ । ସଭ୍ୟତାର ଏହି ବଳୟର ଉତ୍ତରାଞ୍ଚଳରେ ବହୁବିଧ ଉପଜାତି ସେମାନଙ୍କର ବିଚ୍ଛିନ୍ନ "ପ୍ରାଗୈତିହାସିକ" ଜୀବନ ନେଇ ବାସ କରୁଥିଲେ । ସେମାନଙ୍କର ନାମ ଏପର୍ଯ୍ୟନ୍ତ ଅଜ୍ଞାତ ରହିଯାଇଛି । ପରସ୍ପର ଠାରୁ ବହୁ ଦୂରରେ ବାସ କରୁଥିବା ଉପଜାତିମାନଙ୍କ ମଧ୍ୟରେ କିଛି ପରିମାଣରେ ଆଦାନ ପ୍ରଦାନ କ୍ରିୟା ଚାଲିଥିବାର ପ୍ରମାଣ ମିଳିଛି । ପ୍ରତ୍ନତତ୍ତ୍ୱବିଦ୍‌ମାନେ ଏପରି କେତେକ ଜିନିଷ ଆବିଷ୍କାର କରିଛନ୍ତି, ଯାହା ଦକ୍ଷିଣ ସାଇବେରିଆରୁ ପୂର୍ବ ୟୁରୋପ, ପଶ୍ଚିମ ଏସିଆରୁ କକେସସ୍ ଏବଂ ଭୋଲ୍‌ଗା ଅଞ୍ଚଳକୁ ଆସିଥିଲା । ଧାତୁର ବ୍ୟବହାର ପଦ୍ଧତି ଦକ୍ଷିଣବର୍ତ୍ତୀ ଅଞ୍ଚଳଗୁଡ଼ିକରୁ ଉତ୍ତରାଞ୍ଚଳକୁ ବିସ୍ତାର ଲାଭ କରିଥିଲା । ଖ୍ରୀଷ୍ଟ ପୂର୍ବ ପ୍ରଥମ ସହସ୍ରାବ୍ଦର ମଧ୍ୟ ଭାଗରେ କିଛି ପରିମାଣରେ ସାଂସ୍କୃତିକ ଐକ୍ୟ ଏହି ଅଞ୍ଚଳରେ ରୂପ ଲାଭ କରିଥିଲା ।

ହେଲେନୀୟମାନେ (ପ୍ରାଚୀନ ଗ୍ରୀକ୍‌ମାନେ) କୃଷ୍ଣ ସାଗରର ଉପକୂଳବର୍ତ୍ତୀ ଅଞ୍ଚଳର ଅଧିବାସୀମାନଙ୍କୁ ସିଥିଆନ ବୋଲି କହୁଥିଲେ । ସେମାନଙ୍କ ସହିତ ଗ୍ରୀକ୍‌ମାନଙ୍କର ଯୋଗାଯୋଗ ରହିଥିଲା । କିନ୍ତୁ ସିଥିଆନ ନାମଟି (ଏହାର ଅର୍ଥ ଗ୍ରୀକ୍ ଭାଷାରେ "ଅସ୍ୱଚ୍ଛ", "ଅଜ୍ଞାତ") ମଧ୍ୟ ଷ୍ଟେପ୍ ଅଞ୍ଚଳର ସମସ୍ତ ଅଧିବାସୀଙ୍କ (ଏସୀୟ ଷ୍ଟେପ୍ ଅଞ୍ଚଳର କେତେକାଂଶ ସମେତ) ପ୍ରତି ପ୍ରଯୋଜ୍ୟ ହେଉଥିଲା ।*

---

* ଗ୍ରୀକ୍‌ମାନେ କୃଷ୍ଣ ସାଗରର ଉତ୍ତରାଞ୍ଚଳକୁ ସିଥୀୟ ଅଞ୍ଚଳକୁ ବୋଲି କହୁଥିଲେ । ପରବର୍ତ୍ତୀ କାଳରେ ସିଥିଆନମାନେ ଏହି ଐତିହାସିକ ଅଞ୍ଚଳକୁ ପରିତ୍ୟାଗ କରି ଚାଲିଗଲା ପରେ ମଧ୍ୟ ଅନେକ ଦିନ ପର୍ଯ୍ୟନ୍ତ ଏହା ଏହି ନାମରେ ପରିଚିତ ଥିଲା ।

କୃଷ୍ଣ ସାଗର ଉପକୂଳ ଅଞ୍ଚଳର ସିଥିଆନ୍‌ମାନଙ୍କ ମଧ୍ୟରେ ହିରୋଦତସ୍ କେବଳ ଚାଷୀ (ଦ୍‌ନିପର ନଦୀ କୂଳବର୍ତ୍ତୀ) ଏବଂ ଯାଯାବର ବୋଲି ପରିଚିତ ଥିଲେ । ସିଥିଆନ ଚାଷୀମାନେ ଥିଲେ ହିରୋଦତସ୍‌ଙ୍କ ମତାନୁଯାୟୀ ଅଟୋଚଥନ୍‌ସ (ଆଦିବାସୀ) : "ଏଠାରେ ସେମାନେ ହଜାରରୁ ଅଧିକ ବର୍ଷ ଧରି ବାସ କରୁଛନ୍ତି, ଅର୍ଥାତ୍, ସେମାନେ କେଉଁଠି ଜନ୍ମ ନେଇଥିଲେ, ଜାଣନ୍ତି ନାହିଁ ।" କିଂବଦନ୍ତୀ ଅନୁଯାୟୀ ଏହି ସିଥିଆନମାନେ ପ୍ରଥମେ ଲଙ୍ଗଳ ଉଦ୍‌ଭାବନ କରିଥିଲେ । ପ୍ରତ୍ନତତ୍ତ୍ୱବିଦ୍‌ମାନେ ମଧ୍ୟ ଆବିଷ୍କାର କରିଛନ୍ତି ଯେ, ଏହି ସିଥିଆନମାନେ ପ୍ରଥମେ ଯଅକୁ ଫସଲ ରୂପେ ଚାଷ କରିବାକୁ ଆରମ୍ଭ କରିଥିଲେ (ଇତି ପୂର୍ବରୁ ଏହାକୁ ଗହମ କ୍ଷେତ୍ରରେ ଉଠୁଥିବା ବାଳୁଙ୍ଗା ବୋଲି ବିଚାର କରାଯାଉଥିଲା । ଯଅକୁ ଖାଦ୍ୟଶସ୍ୟ ରୂପେ ବ୍ୟବହାର କରାଯାଇ ପାରିବ—ଏହି କଥାଟି ଜାଣିବା ପାଇଁ ଲୋକଙ୍କୁ ଅନେକ ବର୍ଷ ଲାଗିଥିଲା) । ପୂର୍ବ ୟୁରୋପର ମଧ୍ୟବର୍ତ୍ତୀ ଅଞ୍ଚଳରେ ବାସ କରୁଥିବା କୃଷିଜୀବୀ ଉପଜାତିମାନେ ହେଉଛନ୍ତି ସ୍ଲାଭ୍‌ମାନଙ୍କର ପୂର୍ବପୁରୁଷ ।

ସିଥିଆନ ଯାଯାବରମାନେ ଏପରି ଏକ ସମୟକାଳ ମଧ୍ୟ ଦେଇ ଗତି କରୁଥିଲେ, ଯେତେବେଳେ ଧନୀ ସାମରିକ ମୁଖିଆମାନଙ୍କର ଉପରି ଅଂଶଟି କ୍ରୀତଦାସ ସମେତ ଅନ୍ୟାନ୍ୟ ଜିନିଷର ଲୁଣ୍ଠନ ଉପରେ ଜୀବନଯାପନ କରୁଥିଲେ । ଏଥି ସାଥେ ସାଥେ ଶ୍ରେଣୀ ସୃଷ୍ଟି ହେବାର ପୂର୍ବବର୍ତ୍ତୀ ସମାଜର ବୈଶିଷ୍ଟ୍ୟ ସ୍ୱରୂପ ସାମାଜିକ ସମ ଅଧିକାରର କେତେକ ଗୁରୁତ୍ୱପୂର୍ଣ୍ଣ ଉପାଦାନ ବି ରଖିଥିଲେ । ଏହି ସମାଜରେ ନାରୀମାନେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରୁଥିଲେ, ଏପରିକି ଯୁଦ୍ଧ ଅଭିଯାନରେ ଅଂଶଗ୍ରହଣ କରୁଥିଲେ । ସେହିସବୁ ୟୁରାସିଆନ୍ ଷ୍ଟେପ୍ ଅଞ୍ଚଳରେ କେତେକ ଶକ୍ତିଶାଳୀ ସିଥିଆନ ରାଷ୍ଟ୍ର ଅବସ୍ଥିତ ଥିଲା ଏବଂ ସେସବୁ ଅଞ୍ଚଳର ବାସିନ୍ଦାମାନେ ଗୋଟିଏ ଉପଜାତିର ଅଧୀନରେ ଐକ୍ୟବଦ୍ଧ ହୋଇଥିଲେ ବୋଲି ଭାବିବା ଠିକ୍ ନୁହେଁ । ଯଦିବା ସେପରି କୌଣସି ମେଣ୍ଟ ଗଢ଼ି ଉଠିଥିବ, ତେବେ ସେହି ବିରାଟ ଭୂଖଣ୍ଡର କ୍ଷୁଦ୍ର ଏକ ଅଂଶରେ ହୋଇଥିବ ଏବଂ ତାହା ବେଶି କାଳ ପର୍ଯ୍ୟନ୍ତ ତିଷ୍ଠି ପାରି ନଥିବ ।

ଯେଉଁସବୁ ଜାତି ସିଥିଆନ ସଂସ୍କୃତି ଏବଂ ଶିଳ୍ପକଳାର ବିଷୟବସ୍ତୁକୁ (ବିଖ୍ୟାତ ସିଥିଆନ "ଜୀବଜନ୍ତୁ ଶୈଳୀ" ଦ୍ୱାରା ବହୁ ସମୟରେ ଚିହ୍ନିତ—ଜୀବଜନ୍ତୁମାନଙ୍କର ଚିତ୍ରଣ ଦ୍ୱାରା ଚିହ୍ନିତ ବାସ୍ତବତାବାଦ ଏବଂ ନିର୍ଦ୍ଦିଷ୍ଟ ଅଭିବ୍ୟକ୍ତି ଦ୍ୱାରା) ଗ୍ରହଣ କରି ନେଇଥିଲେ, ସେମାନଙ୍କ ଜୀବନ ଧାରାରେ ଅଭିନ୍ନ ଲକ୍ଷଣମାନ ଦେଖିବାକୁ ମିଳେ । ତେଣୁ ଦ୍‌ନିପର ନଦୀ କୂଳରେ ବିଶାଳ ବିଶାଳ ସମାଧି ସ୍ତୂପ ତଳେ ଉପଜାତିର ଦଳପତିମାନଙ୍କୁ ସମାଧି ଦିଆଯାଉଥିଲା ବୋଲି ହିରୋଦତସ୍ ଯେଉଁ ପୁଙ୍ଖାନୁପୁଙ୍ଖ ବିବରଣୀ ପ୍ରଦାନ କରିଛନ୍ତି, ତାହାର ସତ୍ୟତା ପ୍ରତିପାଦିତ ହୋଇଛି ଆଲତାଇରେ (ପାଜିରିକ୍ ଅଞ୍ଚଳ) ପ୍ରତ୍ନତତ୍ତ୍ୱବିଦ୍‌ମାନଙ୍କ ଦ୍ୱାରା ମାଟି ତଳୁ ଆବିଷ୍କୃତ ସମ ଧରଣର ସ୍ତୂପଗୁଡ଼ିକ ଦ୍ୱାରା । ଏହି ଅଞ୍ଚଳର ଚିରନ୍ତନ ବରଫ (eternal frost) ହେତୁ ସୂତା, ଲୋମ,

କାଠ ଏବଂ ସମାଧିସ୍ଥ ମୃତ ବ୍ୟକ୍ତିଙ୍କର ଚିତାକୁଟା ଦେହ ଭଳି ଜିନିଷ ସଂରକ୍ଷିତ ହୋଇ ରହିଥାଏ, ଯାହାକି ୟୁରୋପର ସ୍ତୂପ ତଳେ ନଷ୍ଟ ହୋଇ ଯାଉଥିଲା । ଏହିସବୁ ଚିତାକୁଟା ଶୈଳୀ ୟୁରୋପୀୟ ସିଥିଆନ ସ୍ୱର୍ଣ୍ଣ ନିର୍ମିତ ପଦାର୍ଥ ଭଳି ଦେଖାଯାଏ । ଏଥିରୁ ଆମେ ଧରି ନେଇ ପାରିବା ଯେ, ସିଥିଆନ ଢାଞ୍ଚାର ଏକ ବିଶେଷ ଧରଣର ସଂସ୍କୃତି ବହୁ ଦୂର ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା ।

ଏହିସବୁ ଯାଯାବରମାନଙ୍କ ଦ୍ୱାରା ଉପଜାତୀୟ ମେଣ୍ଟ ବିରୁଦ୍ଧରେ ସାମରିକ ଅଭିଯାନ ସାଧାରଣତଃ ସାଫଲ୍ୟ ମଣ୍ଡିତ ହେଉ ନଥିଲା । ଖ୍ରୀଷ୍ଟ ପୂର୍ବ ୬ଷ୍ଠ ଶତାବ୍ଦୀରେ ପାରସ୍ୟର ରାଜା ସାଇରସ୍ ଏବଂ ପ୍ରଥମ ଦାରିୟସ୍ ସେମାନଙ୍କ ବିରୁଦ୍ଧରେ ଯୁଦ୍ଧ ଚଳାଇ ପରାଜୟ ବରଣ କରିଥିଲେ । ପାରସୀୟ ଆକ୍ରମଣକାରୀମାନଙ୍କ ସହିତ ଯୁଦ୍ଧରେ ସିଥିଆନମାନେ ଏକ ବିଶେଷ ରଣକୌଶଳ ଗ୍ରହଣ କରିଥିଲେ । ସେମାନେ ପାରସୀୟମାନଙ୍କୁ ଗଭୀର ଷ୍ଟେପ୍ ମଧ୍ୟକୁ ପ୍ରଲୋଭନ ଦେଖାଇ ଘେନି ଯାଉଥିଲେ । ଏହା ଦ୍ୱାରା ସେମାନେ ରସଦାଦି ଜିନିଷରୁ ବଞ୍ଚିତ ହୋଇ ପଡ଼ୁଥିଲେ ଏବଂ ଏହି ସୁଯୋଗ ନେଇ ସିଥିଆନମାନେ ବିଭିନ୍ନ ଦିଗରୁ ସେମାନଙ୍କ ଉପରେ ଆକ୍ରମଣ ଆରମ୍ଭ କରି ଦେଉଥିଲେ ।

ଆନୁମାନିକ ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଶତାବ୍ଦୀର ପ୍ରାରମ୍ଭରେ ସିଥିଆନମାନେ କ୍ରମଶଃ ପୂର୍ବ ୟୁରୋପର ଷ୍ଟେପ୍ ଅଞ୍ଚଳରୁ ସର୍‌ମାଟିଆନମାନଙ୍କ ଦ୍ୱାରା ବିତାଡ଼ିତ ହୋଇଥିଲେ । ଆଉରି ନିର୍ଦ୍ଦିଷ୍ଟ ଭାବେ କହିଲେ, ଏହିସବୁ ଅଞ୍ଚଳରେ ନୂଆ ଉପଜାତୀୟ ମେଣ୍ଟର ପ୍ରାଧାନ୍ୟ ପ୍ରତିଷ୍ଠା ହୋଇଥିଲା ବୋଲି ବୁଝାଏ । ଦ୍ୱିତୀୟ-ଚତୁର୍ଥ ଖ୍ରୀଷ୍ଟାବ୍ଦରେ ୟୁରୋପୀୟ ଘଟଣାସମୂହରେ ବହୁବିଧ ସ୍ଲାଭ୍ ଉପଜାତିମାନେ କ୍ରମବର୍ଦ୍ଧମାନ ଭୂମିକା ପାଳନ କରିବାକୁ ଆରମ୍ଭ କରିଥିଲେ ।

ଖ୍ରୀଷ୍ଟ ପର ପ୍ରଥମ ସହସ୍ରାବ୍ଦର ମଧ୍ୟ ଭାଗରେ "ଜାତିମାନଙ୍କର ମହାନ୍ ସ୍ଥାନାନ୍ତରଣ" ଘଟିଥିଲା ବୋଲି ଅନୁମାନ କରାଯାଏ । ପ୍ରାଚୀନ ଏସୀୟ ସଭ୍ୟତାର ବିଭିନ୍ନ ଭୂଖଣ୍ଡ ମଧ୍ୟ ଦେଇ ଗତି କରି ଯାଯାବର ହୂନ୍ ମଙ୍ଗୋଲ ଉପଜାତିମାନେ "ଜାତିସମୂହର ମହାନ୍ ଫାଟକ" ମଧ୍ୟ ଦେଇ (ୟୁରାଲ ଏବଂ କାସ୍‌ପିଆନ ସାଗରର ମଧ୍ୟରେ) ୟୁରୋପରେ ପ୍ରବେଶ କରିଥିଲେ । ପଶ୍ଚିମକୁ ସେମାନଙ୍କର ଏହି ସୁଦୀର୍ଘ ଯାତ୍ରାପଥରେ ସେମାନେ ବହୁ ଆଦିବାସୀମାନଙ୍କୁ ସଙ୍ଗରେ ନେଇ ରାଷ୍ଟ୍ର ପରେ ରାଷ୍ଟ୍ର ଏବଂ ସଂସ୍କୃତିର ପ୍ରାଚୀନ କେନ୍ଦ୍ରଗୁଡ଼ିକୁ ବିଧ୍ୱଂସ କରି ଦେଇଥିଲେ । ଏହା ଫଳରେ ପାରମ୍ପରିକ ଭାବେ ଗଢ଼ି ଉଠିଥିବା କୃଷି ଅଞ୍ଚଳଗୁଡ଼ିକ ଓ ଷ୍ଟେପ୍ ସଭ୍ୟତାର କେନ୍ଦ୍ରସମୂହ ମଧ୍ୟରେ ଜିନିଷପତ୍ର ଏବଂ ବୌଦ୍ଧିକ ମୂଲ୍ୟରାଜିର ବିନିମୟ ବ୍ୟାହତ ହୋଇଥିଲା ଏବଂ ଜାତିମାନଙ୍କର ଅଗ୍ରଗତି ବିଳମ୍ବିତ ହେଲା ।

ସେଇ ଯୁଗରେ ଐତିହାସିକ ବିକାଶର ବହୁ ବୈଶିଷ୍ଟ୍ୟପୂର୍ଣ୍ଣ ଲକ୍ଷଣରାଜି, ଏକ ଦିଗରେ, କୃଷିଜୀବୀ ଏବଂ ସହରବାସୀମାନଙ୍କ ସହିତ, ଅନ୍ୟ ଦିଗରେ, ଯାଯାବର

ଉପଜାତିମାନଙ୍କର ସଂପର୍କକୁ ପ୍ରକାଶ କରୁଥିଲା । ଯାଯାବରମାନଙ୍କ ମଧ୍ୟରେ ସେହି ପିତୃ-ପ୍ରାଧାନ୍ୟ—ସାମନ୍ତବାଦୀ ସଂପର୍କ ଓ ଦାସମାଲିକାନାର ଉଲ୍ଲେଖନୀୟ ବିକାଶ ଫଳରେ ସେମାନେ ଖାଦ୍ୟ, ପଶୁଚାରଣ ପ୍ରାନ୍ତର ଓ ଉପଢ଼ୌକନ ପାଇଁ ଐକ୍ୟବଦ୍ଧ ହେଉଥିଲେ । ସ୍ଥାୟୀ ଜନବସତିଗୁଡ଼ିକୁ ସେମାନେ ଆକ୍ରମଣ ଓ ଲୁଣ୍ଠନ କରୁଥିଲେ ଏବଂ ବଶ୍ୟତା ସ୍ୱୀକାର କରିବାକୁ ସେମାନଙ୍କୁ ବାଧ୍ୟ କରୁଥିଲେ ବା ନିଶେଷ କରି ଦେଉଥିଲେ । ସେହିସବୁ କର୍ମଠ ପ୍ରତିବେଶୀମାନଙ୍କ ଉପରେ ଆଧିପତ୍ୟ ପ୍ରତିଷ୍ଠା କରିବାଟା, ଅବଶ୍ୟ, ସେମାନଙ୍କ ପକ୍ଷରେ ସୁବିଧାଜନକ ବୋଲି ପ୍ରମାଣିତ ହୋଇଥିଲା । କାରଣ ସେମାନଙ୍କ ସହିତ ଅର୍ଥନୈତିକ ଯୋଗସୂତ୍ର ବିନା ଯାଯାବରମାନଙ୍କ ପକ୍ଷରେ ଚଳିବା କଷ୍ଟକର ଥିଲା । ବିଜେତାମାନେ ସେମାନଙ୍କ ପୂର୍ବବର୍ତ୍ତୀ ସ୍ଥାନରେ ବାସ କରି କର ଆଦାୟ ପାଇଁ ଶାସକ ଏବଂ ସଂଗ୍ରହକାରୀ ପଠାଉଥିଲେ, କିମ୍ବା ପରାଜିତମାନଙ୍କ ମଧ୍ୟରେ ବାସ କରୁଥିଲେ । ଶେଷୋକ୍ତ କ୍ଷେତ୍ରରେ ସେମାନେ ନିଜର ଆଗ୍ରହ ପରମ୍ପରାକୁ ବଜାଏ ରଖୁଥିଲେ ଏବଂ କ୍ରମଶଃ ସେହିସବୁ ଜନସଂଖ୍ୟାର ଉପର ସ୍ତରରେ ପରିଣତ ହେଉଥିଲେ । ବେଳେ ବେଳେ ସେମାନଙ୍କ ଜମିମାଲିକ ସମ୍ଭ୍ରାନ୍ତ ଏବଂ ଧନୀ ବଣିକମାନଙ୍କ ସହିତ ମିଶି ଯାଉଥିଲେ । ତା'ପରେ ଗୋଟିଏ ରାଷ୍ଟ୍ର ମଧ୍ୟରେ ଦେଖା ଦେଉଥିଲା ଦୁଇଟି ଜାତି: ସ୍ଥାୟୀ ଭାବେ ବସବାସକାରୀ ଶ୍ରମଜୀବୀ ଜନସାଧାରଣ—କୃଷକ ଏବଂ କାରିଗର—ଏବଂ ଯାଯାବର ଲୋକ: ଯୋଦ୍ଧା, ପ୍ରଶାସକ ଏବଂ ବଣିକବୃନ୍ଦ । ଏହି ରାଜ୍ୟାଧିକାର ଯଦି ବହୁ କାଳ ପର୍ଯ୍ୟନ୍ତ ସ୍ଥାୟୀ ହେଉଥିଲା, ତେବେ ବିଜେତାମାନେ, ସାଧାରଣତଃ, କ୍ରମେ କ୍ରମେ ସ୍ଥାନୀୟ ବାସିନ୍ଦାମାନଙ୍କର ଅଧିକ ଉନ୍ନତ ସଂସ୍କୃତିକୁ ଗ୍ରହଣ କରି ନେଇଥିଲେ ।

# ୨ୟ ପରିଚ୍ଛେଦ

## ଟ୍ରାନ୍‌ସକକେସିଆ ଏବଂ ମଧ୍ୟ ଏସିଆରେ ପ୍ରଥମ ସାମନ୍ତବାଦୀ ରାଷ୍ଟ୍ରସମୂହ

ୟୁରୋପ ଏବଂ ଏସିଆର ଉନ୍ନତ ଦେଶମାନଙ୍କରେ ସାମନ୍ତବାଦୀ ସଂପର୍କ ରୂପ ପରିଗ୍ରହ କରିଥିଲା ପ୍ରଥମ ସହସ୍ରାବ୍ଦର ଦ୍ୱିତୀୟାର୍ଦ୍ଧରେ । ପୂର୍ବବର୍ତ୍ତୀ ସାମାଜିକ-ଅର୍ଥନୈତିକ ଗଢ଼ଣ – ଦାସମାଲିକାନା ଯୁକ୍ତ ବା ଆଦିମ ଗୋଷ୍ଠୀଗତ ଗଢ଼ଣ ଭିତରେ କ୍ରମଶଃ ଗଢ଼ି ଉଠିଥିଲା ସାମନ୍ତବାଦୀ ସାମାଜିକ ବ୍ୟବସ୍ଥା । ସାମନ୍ତବାଦର ଲକ୍ଷଣ ହେଲା ଉତ୍ପାଦନର ମୂଳ ଉପାୟ ଉପକରଣ, ବିଶେଷ କରି, ଜମି ଉପରେ ସାମନ୍ତବାଦୀ ପ୍ରଭୁମାନଙ୍କର ମାଲିକାନା ଏବଂ ଯେଉଁମାନେ ଜମି ଚାଷ କରନ୍ତି, ସେମାନଙ୍କ ଉପରେ ଅପୂର୍ଣ୍ଣ ମାଲିକାନା । ଗିର୍ଜ୍ଜାଗୁଡ଼ିକ ଥିଲେ ଗୋଟିଏ ଗୋଟିଏ ସାମନ୍ତବାଦୀ ପ୍ରଭୁ, ବା ସାମନ୍ତବାଦୀ ଶ୍ରେଣୀର ପ୍ରତିନିଧିତ୍ୱ କରୁଥିବା ରାଷ୍ଟ୍ର ଉପରେ ପ୍ରତ୍ୟକ୍ଷ ଉତ୍ପାଦନକାରୀର ନିର୍ଭରଶୀଳତା ଭିନ୍ନ ଭିନ୍ନ ହେଉଥିଲା । ଏଥିରେ ଅର୍ଦ୍ଧ ଦାସତ୍ୱ ଠାରୁ ଆରମ୍ଭ କରି ପ୍ରାୟ ନାମକୁ ମାତ୍ର ନିର୍ଭରଶୀଳତା, ଭୂମିଦାସତ୍ୱ ଠାରୁ ଆରମ୍ଭ କରି ମାହାଲଗୁଡ଼ିକ ମଧ୍ୟରେ ଅସମତା ପର୍ଯ୍ୟନ୍ତ ଥିଲା । ନିୟମାନୁଯାୟୀ କେବଳ ସହରର କାରିଗର ନୁହେଁ, କୃଷକମାନେ ମଧ୍ୟ ସେମାନଙ୍କ ଯନ୍ତ୍ରପାତି, ନିଜସ୍ୱ ଖମାର ବା କର୍ମଶାଳା ଉପରେ ମାଲିକାନା ବଜାଏ ରଖୁଥିଲେ ।

ଗୋଟିଏ ଈଶ୍ୱର ଏବଂ ଗୋଟିଏ ଧରଣର ଧର୍ମୀୟ ଆଗ୍ରହକୁ ଦୃଢ଼ ଭାବେ ମାନି ଚଳୁଥିବା ନୂଆ ଧର୍ମସମୂହ ମଧ୍ୟ ନୂତନ ସମାଜ-ସଂପର୍କରାଜି ପ୍ରତିଷ୍ଠା କରୁଥିଲେ । ଏହିସବୁ ଧର୍ମୀୟ ବିଶ୍ୱାସ ପ୍ରତିଷ୍ଠା ଫଳରେ ଜାତି ଜାତି ମଧ୍ୟରେ ବିଚ୍ଛିନ୍ନକରଣ ବୃଦ୍ଧି ପାଇଥିଲା । ଧର୍ମସମୂହ (ଖ୍ରୀଷ୍ଟ ଧର୍ମ ଏବଂ ଇସ୍‌ଲାମ୍) କ୍ରମଶଃ ରକ୍ଷଣଶୀଳ ହୋଇ ଉଠିଥିଲେ ଏବଂ ରାଷ୍ଟ୍ରୀୟ ଧର୍ମରେ ପରିଣତ ହୋଇଥିଲେ । ଫଳରେ ଧର୍ମୀୟ ସଂଘର୍ଷରାଜି ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଯୁଦ୍ଧରେ ପରିଣତ ହେଲା । ଏହିସବୁ ଯୁଦ୍ଧ ଲାଗୁଥିଲା "ପରମ ବିଶ୍ୱାସକୁ" ରକ୍ଷା କରିବା ଏବଂ ବିସ୍ତାର କରିବା ନାମରେ । ପରସ୍ପର ମଧ୍ୟରେ ଏତାଦୃଶ ଧର୍ମୀୟ ତଥା ସାଂସ୍କୃତିକ ବୈରୀତା ସେମାନଙ୍କ ଅଭିନ୍ନ ପରମ୍ପରା ସଂପର୍କରେ

ସଚେତନତା ଆଣିବା ଦିଗରେ ସହାୟକ ହେଉ ନଥିଲା, ଏପରିକି ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ବାଣିଜ୍ୟିକ ଏବଂ ରାଜନୈତିକ ସଂପର୍କରାଜି ବିକାଶ ଲାଭ କରୁଥିଲା ବେଳେ । ଏହାର ବିପରୀତରେ, ଏହିସବୁ ଧର୍ମାନ୍ଧତା ସେସବୁ ମତକୁ ପ୍ରତ୍ୟାଖ୍ୟାନ କରିବା ସଙ୍ଗେ ସଙ୍ଗେ ଅନ୍ୟ ସମସ୍ତଙ୍କ ପାଇଁ "ପରମ ବିଶ୍ୱାସ" ଏବଂ ଅନ୍ୟମାନଙ୍କ ପାଇଁ ଏକ "ନ୍ୟାୟପୂର୍ଣ୍ଣ" ବ୍ୟବସ୍ଥାର ବିରୋଧିତା କରୁଥିଲା । ଗୋଟିଏ ଗୋଟିଏ ସମଗ୍ର ଜାତିକୁ, ସାଧାରଣତଃ, ବଳ ପ୍ରୟୋଗ ଦ୍ୱାରା ନୂତନ ଧର୍ମରେ ଦୀକ୍ଷିତ କରାଯାଉଥିଲା, ମୂର୍ତ୍ତି ପୂଜାର ବହୁ ପରମ୍ପରାକୁ ସୁସ୍ପଷ୍ଟ ଭାବେ ପ୍ରତ୍ୟାଖ୍ୟାନ କରି ।

ଦାସମାଲିକାନା ଯୁକ୍ତ ଗଢ଼ଣ ଥିବା ଦେଶମାନଙ୍କରେ ସାମନ୍ତବାଦ ରୂପ ଲାଭ କରିଥିଲା ଦାସମାଲିକାନାଗତ ସଂପର୍କରାଜି ଭାଙ୍ଗି ପଡ଼ିବା ଫଳରେ । ଶେଷୋକ୍ତ ସଂପର୍କରାଜି ଦାସ ଶ୍ରମର ଅତି ନିମ୍ନ ଉତ୍ପାଦନଶୀଳତା, ନୂଆ କ୍ରୀତଦାସ ଲାଭ ପାଇଁ ସୁବିଧା ସୁଯୋଗର ଅଭାବ ଏବଂ ଦାସମାନଙ୍କ ଦ୍ୱାରା ଗଣ୍ଡଗୋଳ ସାଙ୍ଗକୁ ସାମାଜିକ ବିକାଶର ନିମ୍ନତର ମାନରେ ଥିବା ଜାତିମାନଙ୍କ ଦ୍ୱାରା ଆକ୍ରମଣ ହେତୁ ଏକ ଅଚଳ ଅବସ୍ଥାକୁ ଆସି ଯାଇଥିଲା ।

ଟ୍ରାନ୍ସକକେସସ୍ ଅଞ୍ଚଳରେ ଆନୁମାନିକ ୩ୟ ଏବଂ ୪ର୍ଥ ଖ୍ରୀଷ୍ଟାବ୍ଦରେ ଏବଂ ମଧ୍ୟ ଏସିଆରେ ୬ଷ୍ଠ-୮ମ ଖ୍ରୀଷ୍ଟାବ୍ଦରେ ସାମନ୍ତବାଦୀ ସଂପର୍କରାଜି ପ୍ରତିଷ୍ଠା ଲାଭ କରିଥିଲା । ୩ୟ ଏବଂ ୪ର୍ଥ ଖ୍ରୀଷ୍ଟାବ୍ଦରେ ଆର୍ମେନିଆ ଆଉ ଜର୍ଜିଆରେ ଖ୍ରୀଷ୍ଟ ଧର୍ମ ରାଷ୍ଟ୍ରୀୟ ଧର୍ମରେ ପରିଣତ ହେଲା । ଏହା ସଂଘଟିତ ହୋଇଥିଲା, ସାଧାରଣତଃ, ସାମନ୍ତବାଦୀ ସଂପର୍କ ପ୍ରତିଷ୍ଠା ହେବା ସାଥେ ସାଥେ । ଖ୍ରୀଷ୍ଟ ଧର୍ମ ଗ୍ରହଣ ଦ୍ୱାରା ବୈଜାନ୍ତିଅମ୍ ସାଂସ୍କୃତିକ ପ୍ରଭାବ ଏହିସବୁ ଅଞ୍ଚଳରେ ବୃଦ୍ଧି ପାଇଥିଲା । ବୈଜାନ୍ତିଅମ୍ ସଂସ୍କୃତି ଗ୍ରୀକ୍-ରୋମାନ୍ ପରମ୍ପରାକୁ ଇତିପୂର୍ବରୁ ଗ୍ରହଣ କରି ନେଇଥିଲା । ଏହା ଖୁବ୍ ଗୁରୁତ୍ୱପୂର୍ଣ୍ଣ ଯେ, ଆର୍ମେନିଆ ଏବଂ ଜର୍ଜିଆରେ ଗିର୍ଜାରେ ପୂଜା ପାଠ ଏବଂ ପାଠଶାଳୀମାନଙ୍କରେ ଶିକ୍ଷା ସେମାନଙ୍କ ମାତୃ ଭାଷାରେ ୫ମ ଖ୍ରୀଷ୍ଟାବ୍ଦରେ ପରିଚାଳିତ ହେଉଥିଲା । ପରବର୍ତ୍ତୀ କାଳରେ ରୁଷିଆରେ ମଧ୍ୟ ଏହା ହିଁ ଘଟିଥିଲା । ଆର୍ମେନୀୟ ଲିପିର ଉଦ୍‌ଭାବକ ଥିଲେ ଜନୈକ କୃଷକ ସନ୍ତାନ ମାଶ୍‌ଟୋଟସ୍ । ଏହା ଫଳରେ ଖ୍ରୀଷ୍ଟ ଧର୍ମ ସେଠାକୁ ଆସିବା ପୂର୍ବରୁ ସ୍ଥାନୀୟ ଲୋକ କଥାଗୁଡ଼ିକୁ ଲିପିବଦ୍ଧ କରିବା ସମ୍ଭବ ହୋଇଥିଲା । ଏହା ଫଳରେ ସେଠାରେ ସାହିତ୍ୟର ବିକାଶ ଘଟିଥିଲା ।

ମଧ୍ୟ ଏସିଆ ଏବଂ କେତେକାଂଶରେ ଟ୍ରାନ୍ସକକେସସ୍‌ରେ ମଧ୍ୟ, ଜଳସେଚନ ବ୍ୟବସ୍ଥା ପ୍ରତିଷ୍ଠା ଏବଂ ସଂରକ୍ଷଣ କାର୍ଯ୍ୟ ପ୍ରତି ରାଷ୍ଟ୍ର ବିଶେଷ ନଜର ପ୍ରଦାନ କରିଥିଲା । ଏଥିରେ ଉଭୟ ପରାଧୀନ ଏବଂ ମୁକ୍ତ ଲୋକେ ଅଂଶଗ୍ରହଣ କରୁଥିଲେ । ଶହ ଶହ ବର୍ଷ ଧରି ସମସ୍ତ ସରକାର ବାରିକ୍‌ମିସ୍ତ୍ରୀ ବିଭାଗର କାର୍ଯ୍ୟ ସଂଗଠିତ କରିବାକୁ ରହୁଁଥିବା ଫଳରେ ଏହିସବୁ ଦେଶର ଜୀବନ ଧାରାରେ ହଠାତ୍ ପରିବର୍ତ୍ତନ ଏବଂ

ସଂସ୍କୃତିର ଅବନତି (ବିଶେଷ କରି ସହର ସଂସ୍କୃତି) ପରିଲକ୍ଷିତ ହୋଇ ନଥିଲା, ଯାହା ଘଟିଥିଲା ପଶ୍ଚିମ ୟୁରୋପରେ ସାମନ୍ତବାଦର ଉଷାକାଳରେ । ଏଥି ସଙ୍ଗେ ସଙ୍ଗେ କୌଣସି ଧ୍ୱଂସାତ୍ମକ ଯୁଦ୍ଧ ଦ୍ୱାରା ଦେଶର ଜଳ ଯୋଗାଣ ବ୍ୟବସ୍ଥାକୁ ବିନଷ୍ଟ କରିବା ଦେଶର ଜନସଂଖ୍ୟାକୁ ଲୋପ କରି ଦେବା ପକ୍ଷରେ ଯଥେଷ୍ଟ ହେଉଥିଲା ଏବଂ ଅନେକ ବର୍ଷ ପର୍ଯ୍ୟନ୍ତ ସେ ଦେଶର ସଭ୍ୟତା ବିଧ୍ୱସ୍ତ ହୋଇ ଯାଉଥିଲା । କାରଣ, ମଧ୍ୟ ଏସିଆରେ ଜଳ ସମ୍ବଳ ଥିଲା ତା'ର ଜୀବନ ।

ଏହି ସମୟରେ ଟ୍ରାନ୍‌ସକକେସସ୍ ଏବଂ ମଧ୍ୟ ଏସିଆରେ ଏକ ବୈଶିଷ୍ଟ୍ୟପୂର୍ଣ୍ଣ ଲକ୍ଷଣ ହେଲା ଏହିସବୁ ଭୂଖଣ୍ଡ ପରସ୍ପର ପ୍ରତି ବୈରୀଭାପୂର୍ଣ୍ଣ ବହୁ ଛୋଟ ଛୋଟ ରାଜ୍ୟ ମଧ୍ୟରେ ବିଭକ୍ତ ଥିଲେ । କେବେ କେମିତି କୌଣସି ଶକ୍ତିଶାଳୀ ରାଜା ସେସବୁ ମଧ୍ୟରୁ କେତେକଙ୍କୁ ଐକ୍ୟବଦ୍ଧ କରିବାକୁ ସମର୍ଥ ହେଲେ, ସେସବୁର ମିଳନ କେବଳ ପ୍ରଶାସନିକ କ୍ଷେତ୍ରରେ ଘଟୁଥିଲା ଏବଂ ବେଶି କାଳ ପର୍ଯ୍ୟନ୍ତ ସ୍ଥାୟୀ ହେଉ ନଥିଲା । ସେସବୁ ମଧ୍ୟରେ କୌଣସି ଅଭିନ୍ନ ଅର୍ଥନୈତିକ ଭିତ୍ତି ନଥିଲା ଏବଂ ସେସବୁଥିରେ ବାସ କରୁଥିବା ଜାତିଗୁଡ଼ିକର କୌଣସି ଜାତିଗତ ଐକ୍ୟ ମଧ୍ୟ ନଥିଲା । ରାଷ୍ଟ୍ର ଶକ୍ତିର ଅନୈକ୍ୟ ଫଳରେ ବିଦେଶୀ ବିଜେତାମାନଙ୍କ ପକ୍ଷରେ ସେସବୁକୁ ଜୟ କରିବା ସହଜ ହେଉଥିଲା । ଟ୍ରାନ୍‌ସକକେସିଆ ଥିଲା ବୈଜାଣ୍ଟିଅମ୍ ଏବଂ ପାରସ୍ୟ ମଧ୍ୟରେ ଏକ ଯୁଦ୍ଧସ୍ଥଳୀ । ତା'ପରେ ୭ମ ଏବଂ ଅଷ୍ଟମ ଖ୍ରୀଷ୍ଟାବ୍ଦରେ, ମଧ୍ୟ ଏସିଆ ଭଳି ଏହା ଆରବ ଖଲିଫାଙ୍କ ଶାସନକୁ ଆସି ଯାଇଥିଲା ।

ବିଦେଶୀମାନଙ୍କ ଦ୍ୱାରା ସମାନ୍ତବାଦୀ ଆଉ ଜାତିଗତ ନିର୍ଯ୍ୟାତନ, ସ୍ଥାନୀୟ ସାମନ୍ତମାନଙ୍କର କ୍ରମାଧିକ ନିପୀଡ଼ନ ସାଙ୍ଗକୁ ଦାସ ପ୍ରଥାର ପୁନଃପ୍ରତିଷ୍ଠା, ସ୍ଥାନୀୟ ସଂସ୍କୃତିର ଧ୍ୱଂସ ସାଧନ ଫଳରେ ସ୍ଥାନୀୟ ଅଧିବାସୀମାନଙ୍କ ପକ୍ଷରୁ ଦେଖା ଦେଇଥିଲା ସକ୍ରିୟ ପ୍ରତିବାଦ । ବାରମ୍ବାର ଏହା ଅଭ୍ୟୁତ୍ଥାନ ଏବଂ ଏପରିକି ଜନଯୁଦ୍ଧର ଆକାର ଧାରଣ କରୁଥିଲା । ଆର୍ମେନିଆରେ ବିଦେଶୀମାନଙ୍କ ମଧ୍ୟରେ ୮ମ ଶତାବ୍ଦୀରେ ଦେଖା ଦେଇଥିବା ଏଭଳି ଏକ ଯୁଦ୍ଧର ପ୍ରତିଛବି ଦେଖିବାକୁ ମିଳେ ଆର୍ମେନୀୟ ମହାକାବ୍ୟ ସାସୁନ ବୀରମାନଙ୍କର ଗାଥାରେ ।

ମଧ୍ୟ ଏସିଆରେ ଦେଖା ଦେଇଥିବା ସର୍ବବୃହତ୍ ବିଦ୍ରୋହର (୭୭୬-୭୮୩) ନେତୃତ୍ୱ ନେଇଥିଲେ ମୁକାନ୍ନା ନାମକ ଜନୈକ କାରିଗର (ମୁକାନ୍ନା ଆରବୀ ଭାଷାରେ ଅର୍ଥ ହେଲା "ପରଦାଢ଼ନ୍ନ", ତାଙ୍କର ପ୍ରକୃତ ନାମ ଥିଲା ହାସିମ୍-ଇବନ୍-ହାକିମ୍) । ମୁକାନ୍ନା ଥିଲେ ମାଜ୍‌ଦାକ୍‌ଙ୍କ ଅନୁଗାମୀ । ମାଜ୍‌ଦାକ୍‌ଙ୍କ ଧର୍ମୀୟ ଶିକ୍ଷା ଅନୁସାରେ ସମସ୍ତ ସୁବିଧା ସୁଯୋଗରେ ସମସ୍ତ ମୁକ୍ତ ଲୋକଙ୍କର (ଦାସମାନଙ୍କର ନୁହେଁ) ସମାନ ଅଧିକାର ରହିବା ଦରକାର । ବିଦ୍ରୋହରେ ଅଂଶଗ୍ରହଣ କରିଥିବା ଲୋକଙ୍କ ମଧ୍ୟରେ ଅଧିକାଂଶ ଥିଲେ "ଶ୍ୱେତବସ୍ତ୍ର ପରିହିତ ଲୋକେ", କୃଷକମାନେ । ସେମାନଙ୍କୁ ସମର୍ଥନ କରୁଥିଲେ

କାରିଗର ଏବଂ କ୍ରୀତଦାସଗଣ । ଏହି ବିଦ୍ରୋହ କେବଳ ଆକ୍ରମଣକାରୀମାନଙ୍କ ବିରୁଦ୍ଧରେ ନଥିଲା, ଏହା ସ୍ଥାନୀୟ ଧନୀ ଲୋକମାନଙ୍କ ବିରୁଦ୍ଧରେ ମଧ୍ୟ ପରିଚାଳିତ ହୋଇଥିଲା । ମଧ୍ୟ ଏସିଆର ଏକ ବିରାଟ ଅଞ୍ଚଳକୁ ଏହା ବ୍ୟାପୀ ଯାଇଥିଲା ।

ମଧ୍ୟ ଯୁଗର ପ୍ରାରମ୍ଭରେ ଦେଖା ଦେଇଥିବା ବଡ଼ ବଡ଼ କୃଷକ ବିଦ୍ରୋହ ମଧ୍ୟରେ ଅନ୍ୟତମ ଥିଲା ଟ୍ରାନ୍ସକକେସିଆର କୃଷକ, କାରିଗର ଏବଂ କ୍ରୀତଦାସମାନଙ୍କର ଅଭ୍ୟୁତ୍ଥାନ । ଏହି ଅଭ୍ୟୁତ୍ଥାନଟି ୨୧ ବର୍ଷ କାଳ (୮୧୬-୮୩୭) ପର୍ଯ୍ୟନ୍ତ ଚାଲିଥିଲା । ଏହାକୁ ଅନେକ ସମୟରେ ଖୁରାମାଇଟ୍ ନାମକ ଏକ ସଂପ୍ରଦାୟର ନାମାନୁସାରେ ଖୁରାମାଇଟ୍ ବିଦ୍ରୋହ ବୋଲି ଆଖ୍ୟାୟିତ କରାଯାଇଥାଏ । ମଧ୍ୟ ଏସିଆର ମାଜ୍‌ଦାକ୍‌ଙ୍କ ଅନୁଗାମୀମାନଙ୍କ ଭଳି ଏହି ସଂପ୍ରଦାୟର ଲୋକେ ସାମାଜିକ ବୈଷମ୍ୟର ଲୋପ ପାଇଁ ଦାବି ତୋଳିଥିଲେ । ଏହି ବିଦ୍ରୋହର ନେତୃତ୍ୱ ନେଇଥିଲେ ବାବେକ୍ ନାମକ ଜଣେ ସୁଦକ୍ଷ ନେତା । ବାବେକ୍ ଜନ୍ମ ଗ୍ରହଣ କରିଥିଲେ ଆଜର୍‌ବୈଜାନୀୟମାନଙ୍କର ନିମ୍ନ ସ୍ତରର ଲୋକଙ୍କ ମଧ୍ୟରେ । ତାଙ୍କର ଥିଲା ଏକ ଗଣସେନାବାହିନୀ । ଏଥିରେ ଆଜ୍‌ରବୈଜାନୀୟମାନଙ୍କ ସମେତ ବହୁ ଆର୍ମେନୀୟ ଏବଂ ଜର୍ଜିଆନ ଯୋଗ ଦେଇଥିଲେ । ଏହି ଯୋଗ ଦେବା ମୂଳରେ ଥିଲା ବିଦେଶୀ ଅତ୍ୟାଚାରୀ ଏବଂ ସ୍ଥାନୀୟ ସାମନ୍ତମାନଙ୍କ ପ୍ରତି ସେମାନଙ୍କର ଘୃଣା । ଏହି ଭାବେ ଖୁବ୍ ପ୍ରାଚୀନ କାଳରେ ମଧ୍ୟ ଶ୍ରେଣୀ ସଂଗ୍ରାମର ସ୍ୱାର୍ଥ ଏବଂ ବିଦେଶୀ ଆକ୍ରମଣକାରୀମାନଙ୍କ ବିରୁଦ୍ଧରେ ପ୍ରତିରୋଧ ବିଭିନ୍ନ ଅଧିଜାତିର ଲୋକଙ୍କୁ ଐକ୍ୟବଦ୍ଧ କରିଥିଲା ।

୯ମ ଏବଂ ୧୦ମ ଶତାବ୍ଦୀରେ ଯେଉଁସବୁ ରାଜ୍ୟ ଆରବ ଖଲିଫାଙ୍କ ଠାରୁ କାର୍ଯ୍ୟତଃ ସ୍ୱାଧୀନ ଥିଲେ, ସେମାନଙ୍କର ଅଭ୍ୟୁଦୟ ମଧ୍ୟ ଏସିଆ ଏବଂ ଟ୍ରାନ୍ସକକେସିଆରେ ଘଟିଥିଲା । ଏହି ସମୟରେ ସହର ଜୀବନ ଏବଂ ସଂସ୍କୃତିର ବିକାଶ ଘଟୁଥିଲା । ବିଦେଶୀ ଆକ୍ରମଣ ଫଳରେ ସବୁଠି ଜାତୀୟ ଚେତନାର ଅଭ୍ୟୁଦୟ ଘଟିଥିଲା । ଖଲିଫାଙ୍କ ଅଧୀନସ୍ଥ ରାଜ୍ୟମାନଙ୍କରେ (ସେସବୁଠି ଇସ୍‌ଲାମ୍ ଥିଲା ରାଷ୍ଟ୍ରୀୟ ଧର୍ମ) ଆରବୀ ଭାଷାର ପ୍ରାଧାନ୍ୟ ଥିଲା ମଧ୍ୟ (ମଧ୍ୟଯୁଗୀୟ ପଶ୍ଚିମ ୟୁରୋପ ସେହିପରି ଲାଟିନ୍ ଭାଷା ଥିଲା ଗିର୍ଜାରେ ପୂଜା ପାଠ, ସ୍କୁଲମାନଙ୍କରେ ଶିକ୍ଷା ଏବଂ ବିଜ୍ଞାନର ଭାଷା) ଏହିସବୁ ଦେଶର ଦାର୍ଶନିକ, ପଣ୍ଡିତ ଏବଂ ଲେଖକମାନେ ଥିଲେ ମୂଳତଃ ସେମାନଙ୍କ ଅଧିଜାତିମାନଙ୍କର ନେତୃବୃନ୍ଦ, ଯଦିଓ ସେମାନେ ଆରବୀ ଭାଷା ବ୍ୟବହାର କରୁଥିଲେ ।

ପ୍ରଥମ ସହସ୍ରାବ୍ଦର ଶେଷରେ ବିଶ୍ୱ ସଂସ୍କୃତିର ମୁଖ୍ୟ କେନ୍ଦ୍ରଗୁଡ଼ିକ ମଧ୍ୟରେ ମଧ୍ୟ ଏସିଆର ସହରଗୁଡ଼ିକ, ବିଶେଷ କରି ବୋଖାରା ଏବଂ ଉର୍ଗେଞ୍ଚ ଥିଲା ଅନ୍ୟତମ । ସେଇ ଯୁଗରେ ଯେଉଁସବୁ ବଡ଼ ବଡ଼ ପଣ୍ଡିତ ଗଣ ବିଶ୍ୱକୋଷ ସଦୃଶ ଜ୍ଞାନର ଅଧିକାରୀ ହୋଇଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ମଧ୍ୟ ଏସିଆରେ ଜନ୍ମ ଲାଭ କରିଥିଲେ ଏବଂ କାର୍ଯ୍ୟ କରିଥିଲେ । ଆଲଜେବ୍ରା ବା ବୀଜଗଣିତ ନାମିତ ହୋଇଥିଲା ଆଲ୍-ଖୋରେଜ୍‌ମିଙ୍କର

(୭୮୦-୮୪୭) ଏକ ଗାଣିତିକ ଗ୍ରନ୍ଥ ଅନୁଯାୟୀ । ସେ ଥିଲେ ଜଣେ ଗଣିତଜ୍ଞ, ଜ୍ୟୋତିର୍ବିଜ୍ଞାନୀ, ଭୂଗୋଳବିଦ୍ । ପୃଥିବୀର ଏକ ମାନଚିତ୍ର ସେ ରଚନା କରିଥିଲେ (ତାଙ୍କ ନାମର ଅର୍ଥ ଖୋରେଜ୍‌ମିଆନ) ।

ଖୋରେଜ୍‌ମରେ ଅତିମାତ୍ରାରେ ବିଜ୍ଞାନର ବିକାଶର ପ୍ରତିଫଳନ ଘଟିଥିଲା ସାଧାରଣ ଲୋକଙ୍କ ଘରେ ଜନ୍ମ ଲାଭ କରିଥିବା ଆଲ୍-ବିରୁନି (୯୭୮-୧୦୪୮) ନାମକ ଜଣେ ପଣ୍ଡିତଙ୍କ ରଚନାରେ । ପରେ ୟୁରୋପୀୟମାନେ ତାଙ୍କୁ ଏକାଦଶ ଶତାବ୍ଦୀର Leonardo da Vincè ବୋଲି ନାମିତ କରିଥିଲେ । ଅଗାଧ ଜ୍ଞାନର ଅଧିକାରୀ ଏହି ବିରାଟ ପଣ୍ଡିତ ଏକାଧାରରେ ଥିଲେ ଭୂଗୋଳବିଦ୍, ଗଣିତଜ୍ଞ, ଜ୍ୟୋତିର୍ବିଦ୍, ଧାତୁବିଶାରଦ (ବହୁ ଖଣିଜ ଏବଂ ଧାତୁର ବିଶେଷ ଓଜନ ସେ ନିର୍ଦ୍ଧାରଣ କରିଥିଲେ), ଚିକିତ୍ସାବିଦ୍, ନକ୍‌ସାନିର୍ମାତା, ଇତିହାସବିଦ୍, କବି ଏବଂ ଦାର୍ଶନିକ ।

ବୋଖାରା ନିକଟବର୍ତ୍ତୀ ଏକ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ ଇବନ୍-ସିନା (୯୮୦-୧୦୩୭) । ୟୁରୋପରେ ସେ ଆଭିସେନା ନାମରେ ପରିଚିତ ଏବଂ ସେ ଥିଲେ ଆଲ୍-ବିରୁନିଙ୍କର ସମକାଳୀନ ଯୁବକ । ଆଲ୍-ବିରୁନିଙ୍କ ସହିତ ସେ ବିଜ୍ଞାନ ସଂପର୍କିତ ତର୍କରେ ଅଂଶଗ୍ରହଣ କରିଥିଲେ । ସେ ବାସ୍ତବରେ ଥିଲେ ଜଣେ ଚିକିତ୍ସକ ("ମହାନ୍ ଆରୋଗ୍ୟକାରୀ" ନାମରେ ପରିଚିତ ଥିଲେ), ଅଗାଧ ଜ୍ଞାନର ଅଧିକାରୀ ଜଣେ ପଣ୍ଡିତ, ଦାର୍ଶନିକ ଏବଂ କବି । ତାଙ୍କର ବିଜ୍ଞାନ ସଂପର୍କିତ ପରମ୍ପରା ଏବଂ ବହୁବିଧ ଜ୍ଞାନପିପାସା ପ୍ରକୃତରେ ଲକ୍ଷଣୀୟ । ପ୍ରାକୃତିକ ବିଜ୍ଞାନସମୂହ, ଏପରିକି ସଂଗୀତ ଉପରେ ସେ ବହୁ ଖଣ୍ଡ ବିଶିଷ୍ଟ ବିଶ୍ୱକୋଷ ରଚନା କରିଥିଲେ, ଦାର୍ଶନିକ ଗ୍ରନ୍ଥ ଲେଖିଥିଲେ, ଭବିଷ୍ୟତର ନ୍ୟାୟପୂର୍ଣ୍ଣ ରାଷ୍ଟ୍ରର ସାମାଜିକ କଳ୍ପନାବିଳାସୀ ପରିକଳ୍ପନାମାନ ଉଦ୍‌ଭାବନ କରିଥିଲେ ଓ କାବ୍ୟ କବିତା ରଚନା କରିଥିଲେ । ଇବନ୍-ସିନା ତାଙ୍କର ଚିକିତ୍ସାମୂଳକ ଗ୍ରନ୍ଥରାଜି, ବିଶେଷତଃ, ବହୁ ଖଣ୍ଡ ବିଶିଷ୍ଟ "ଚିକିତ୍ସା ବିଜ୍ଞାନର ନୀତି" ପାଇଁ ଖୁବ୍ ଖ୍ୟାତି ଲାଭ କରିଥିଲେ । ଏହି ଗ୍ରନ୍ଥଗୁଡ଼ିକରେ ତତ୍‌କାଳୀନ ଯୁଗର ଦୁନିଆର ଔଷଧର ସାଫଲ୍ୟତାରାଜିର ସେ ସାଧାରଣୀକରଣ କରିଥିଲେ । ଶହେ ବର୍ଷ ପରେ ସେସବୁ ଲାଟିନ୍ ଭାଷାକୁ ଅନୂଦିତ ହୋଇଥିଲା ଏବଂ ବହୁ ଶତାବ୍ଦୀ ପର୍ଯ୍ୟନ୍ତ ଅଗ୍ରଣୀ ଚିକିତ୍ସା ପୁସ୍ତକ ହିସାବରେ (ୟୁରୋପରେ ୧୭ଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଏବଂ ପ୍ରାଚ୍ୟ ଦେଶମାନଙ୍କରେ ଏହା ପରେ ମଧ୍ୟ) ପରିଗଣିତ ହୋଇଥିଲା ।

ପାରସୀ ଭାଷାଭାଷୀ ଦୁନିଆରେ ଅନ୍ୟତମ ବିଖ୍ୟାତ କବି ଥିଲେ ଜଣେ ତାଜିକ୍ । ତାଙ୍କ ନାମ ହେଲା ଫିର୍‌ଦୌସି (୯୩୪-୧୦୨୭), ପଦ୍ୟ ଆକାରରେ ରଚିତ ଐତିହାସିକ ମହାକାବ୍ୟ "ରାଜନ୍ୟବର୍ଗଙ୍କ ଗ୍ରନ୍ଥ"ର ("ଶାହ୍-ନାମେ") ଲେଖକ ।

୯ମ ଶତାବ୍ଦୀର ପ୍ରାରମ୍ଭରେ ସେଲଜୁକ୍-ତୁର୍କୀମାନେ ଟ୍ରାନ୍‌ସକକେସିଆ ଉପରେ ବାରମ୍ବାର ଆକ୍ରମଣ କରିଥିଲେ । ଏହିସବୁ ଆକ୍ରମଣ ଥିଲା ଆର୍ମେନୀୟ ଜନସାଧାରଣଙ୍କର

ଏଣେ ତେଣେ ବିଛୁଡ଼ି ହୋଇ ପଡ଼ିବାର ଅନ୍ୟତମ ପ୍ରଧାନ କାରଣ । ଆର୍ମେନୀୟମାନେ ବିଦେଶୀ ଭୂଖଣ୍ଡମାନଙ୍କରେ ଉପନିବେଶମାନ ସ୍ଥାପନ କରି ସଫଳତା ସହିତ ହସ୍ତଶିଳ୍ପ ଏବଂ ବାଣିଜ୍ୟ ବ୍ୟବସାୟ ଚଳେଇଥିଲେ । ବୈଦେଶିକ ଆକ୍ରମଣକାରୀମାନଙ୍କ ବିରୁଦ୍ଧରେ ସଂଗ୍ରାମରେ ଜର୍ଜିଆ ଥିଲା ଅଗ୍ରଭାଗରେ ଏବଂ ଡେଭିଡ୍ ରିନୋଭେଟରଙ୍କ ରାଜତ୍ୱକାଳରେ (ରାଜତ୍ୱକାଳ ୧୦୮୯-୧୧୨୫) ଏହା ଏକ ବିରାଟ ରାଜ୍ୟରେ ପରିଣତ ହୋଇଥିଲା । ସେ ଥିଲେ ଜଣେ ଅସାଧାରଣ ରାଷ୍ଟ୍ରନୀତିଜ୍ଞ, ସେନାପତି ଏବଂ ଗ୍ରନ୍ଥପ୍ରେମୀ । ରାଣୀ ତାମାରାଙ୍କ ରାଜତ୍ୱକାଳରେ (ରାଜତ୍ୱକାଳ ୧୧୮୪-୧୨୧୩) ଜର୍ଜିଆର ବିକାଶ ବିଶେଷ ଶୀର୍ଷଦେଶରେ ପହଞ୍ଚିଥିଲା । ଜର୍ଜିଆରେ ସାଂସ୍କୃତିକ ଉତ୍‌ଥାନର ଏହିସବୁ ବର୍ଷମାନଙ୍କରେ ଲୋକକଳାର ସର୍ବଶ୍ରେଷ୍ଠ ପରମ୍ପରାଗୁଡ଼ିକର ବ୍ୟାପକ ଉପଯୋଗ କରାଯାଇଥିଲା ଏବଂ ଗ୍ରୀକ୍-ରୋମାନ୍ ଏବଂ ବୈଜାଣ୍ଟିଅମ୍ ପରମ୍ପରାର ଚର୍ଚ୍ଚା କରାଯାଉଥିଲା । ସ୍ଥାପତ୍ୟ ଏବଂ ପ୍ରାଚୀର ଚିତ୍ରର ବିକାଶ ନୂତନ ସ୍ତରକୁ ଉନ୍ନୀତ ହୋଇଥିଲା । ୧୧୮୭ ଖ୍ରୀଷ୍ଟାବ୍ଦ ବେଳକୁ ଶୋଟା ରୁସ୍ତାଭେଲି ତାଙ୍କର ବିଖ୍ୟାତ ମାନବତାବାଦୀ କବିତା "ବ୍ୟାଘ୍ରଚର୍ମାବୃତ୍ତ ବୀର ପୁରୁଷ" ରଚନା କରିଥିଲେ । ଏହି କବିତାରେ ସେ ଜାତି ଜାତି ମଧ୍ୟରେ ମୈତ୍ରୀକୁ ପ୍ରଶଂସା କରିଥିଲେ । ଏହି କବିତାବଳୀ ଅମର ହୋଇ ରହିଯାଇଛି ଲୋକଗୀତି ଏବଂ ସଂଗୀତ ମଧ୍ୟରେ ।

ଟ୍ରାନ୍‌ସକକେସିଆର ଅନ୍ୟାନ୍ୟ ଅଞ୍ଚଳର ସ୍ଥାପତ୍ୟ ଏବଂ ସାହିତ୍ୟରେ ମଧ୍ୟ ପ୍ରତିଫଳିତ ହୋଇଥିଲା ସାଂସ୍କୃତିକ କ୍ଷେତ୍ରର ବିପୁଳ ସାଫଲ୍ୟରାଜି । ଆଜର୍‌ବୈଜାନ୍ କବି ନିଜାମି (୧୧୪୧-୧୨୦୩) ତାଙ୍କ ଜନ୍ମସ୍ଥଳୀ ଗଞ୍ଜା ସହରରେ (ସେତେବେଳେ ଏହି ସହରଟି ଟ୍ରାନ୍‌ସକକେସିଆ ଅଞ୍ଚଳର ବାଣିଜ୍ୟ ତଥା ହସ୍ତଶିଳ୍ପର ବିରାଟ କେନ୍ଦ୍ର ଥିଲା) କବିତା ରଚନା କରିଥିଲେ । ତାଙ୍କ ଦ୍ୱାରା ରଚିତ ଶାସ୍ତ୍ରୀୟ କବିତାଗୁଡ଼ିକର ବିଷୟବସ୍ତୁ ଥିଲା ଐତିହାସିକ ଘଟଣାବଳୀ । ବହୁ ଛନ୍ଦୋମୟ କବିତା ମଧ୍ୟ ସେ ରଚନା କରିଥିଲେ । ରୁସ୍ତାଭେଲିଙ୍କ ଭଳି ସେ ତାଙ୍କ କବିତାରେ ଲୋକଙ୍କୁ ଐକ୍ୟବଦ୍ଧ ହେବା ପାଇଁ ଆହ୍ୱାନ ଦେଇଥିଲେ । ୧୦ମ-୧୩ଶ ଶତାବ୍ଦୀରେ ମଧ୍ୟ ଏସିଆ ତଥା ଟ୍ରାନ୍‌ସକକେସିଆର ଜାତିମାନଙ୍କର ସାଂସ୍କୃତିକ କୃତିସମୂହ ବିଶ୍ୱ ସଂସ୍କୃତିର ମଣିମାଣିକପୂର୍ଣ୍ଣ ଭଣ୍ଡାରରେ ଦୃଢ଼ ସ୍ଥାନ ଅଧିକାର କରିଛି ।

# ୩ୟ ପରିଚ୍ଛେଦ

## ପ୍ରାଚୀନ ରୁଷିଆ

ପଶ୍ଚିମ ୟୁରୋପର ମଧ୍ୟ ଏବଂ ଉତ୍ତରାଞ୍ଚଳର ଜାତିମାନଙ୍କ ପରି ପୂର୍ବ ୟୁରୋପର ଜାତିମାନଙ୍କ କ୍ଷେତ୍ରରେ ମଧ୍ୟ ଶ୍ରେଣୀଯୁକ୍ତ ସମାଜର ପ୍ରଥମ ରୂପ ଥିଲା ସାମନ୍ତବାଦୀ ସମାଜ । ପ୍ରଥମ ସହସ୍ରାବ୍ଦର ମଧ୍ୟ ଭାଗରେ ପୂର୍ବ ୟୁରୋପୀୟ ନିମ୍ନ ଭୂମିରେ ବାସ କରୁଥିଲେ ପୂର୍ବ ସ୍ଲାଭ୍‌ମାନେ । ବିଭିନ୍ନ ସ୍ଲାଭ୍ ଉପଜାତିମାନଙ୍କର ରୂପ ପରିଗ୍ରହ କରିବାର ପ୍ରକ୍ରିୟାଟି ଶହ ଶହ ବର୍ଷ ଧରି ଚାଲିଥିଲା । ଏହି ଦୀର୍ଘ ପ୍ରକ୍ରିୟା ମଧ୍ୟରେ ସମସ୍ତ ସ୍ଲାଭ୍‌ମାନଙ୍କର – ପୂର୍ବ, ପଶ୍ଚିମ ଏବଂ ଦକ୍ଷିଣ ସ୍ଲାଭ୍‌ମାନଙ୍କର ଅଭିନ୍ନ ବୈଷୟିକ ତଥା ଆତ୍ମିକ ସଂସ୍କୃତିର ବୈଶିଷ୍ଟ୍ୟସମୂହର ଉଦ୍‌ଭବ ଘଟିଥିଲା । ସେସବୁର ଅଭିନ୍ନତା ଏବେ ବିଶେଷ ଭାବେ ସେମାନଙ୍କ ଭାଷାରେ ପରିଲକ୍ଷିତ ହୋଇଥାଏ ।

ପ୍ରଥମ ସହସ୍ରାବ୍ଦର ଦ୍ୱିତୀୟାର୍ଦ୍ଧରେ ପୂର୍ବ ସ୍ଲାଭ୍‌ମାନଙ୍କ ମଧ୍ୟରେ ବଡ଼ ବଡ଼ ଟ୍ରାଇବ୍ ବା ଉପଜାତୀୟ ଗୋଷ୍ଠୀମାନ ଥିଲେ ଏବଂ ସେସବୁ ମଧ୍ୟରେ ରାଷ୍ଟ୍ରର ଉପାଦାନସମୂହର ବିକାଶ ଘଟିଥିଲା । ସେସବୁ ଉପଜାତୀୟ ଗୋଷ୍ଠୀ ବୈଜାଣ୍ଟିଅମ୍ ବିରୁଦ୍ଧରେ ସଫଳତାର ସହିତ ଯୁଦ୍ଧ ପରିଚାଳନା କରିଥିଲେ ଏବଂ ତା'ର ଫଳ ସ୍ୱରୂପ ଯେଉଁସବୁ ଅଞ୍ଚଳକୁ ବୈଜାଣ୍ଟିଅମ୍ ବାସିନ୍ଦାମାନେ ଛାଡ଼ି ଚାଲି ଯାଉଥିଲେ, ସେସବୁଥିରେ ସ୍ଲାଭ୍ ଗୋଷ୍ଠୀଗୁଡ଼ିକ ବସତି ସ୍ଥାପନ କରିଥିଲେ । ଯେଉଁସବୁ ଭୂଖଣ୍ଡରେ ଅଧିକାଂଶ ସ୍ଲାଭ୍ ବାସ କରୁଥିଲେ, ସେଠାରେ ଲଙ୍ଗଳ ସାହାଯ୍ୟରେ ଚାଷବାସ ଆରମ୍ଭ ହୋଇଥିଲା ଏବଂ ହସ୍ତଶିଳ୍ପ ବିକାଶ ଲାଭ କରିଥିଲା, ବିଶେଷ କରି ଲୌହ ଶିଳ୍ପ । କେବଳ ସାମନ୍ତବାଦୀ ଦୁର୍ଗ୍ଗ ହିସାବରେ ସହରମାନଙ୍କର ବିକାଶ ପାଇଁ ପୂର୍ବାବସ୍ଥା ସୃଷ୍ଟି ହୋଇ ନଥିଲା, ହସ୍ତଶିଳ୍ପ ଏବଂ ବାଣିଜ୍ୟିକ କେନ୍ଦ୍ର ହିସାବରେ ସେସବୁ ଗଢ଼ି ଉଠିବାର ପୂର୍ବାବସ୍ଥା ମଧ୍ୟ ଦେଖା ଦେଇଥିଲା । ପ୍ରାଚ୍ୟ ଦେଶସମୂହ, ବୈଜାଣ୍ଟିଅମ୍ ଏବଂ ବଲ୍‌ଟିକ୍ ଅଞ୍ଚଳ ସହିତ ବୈଦେଶିକ ବାଣିଜ୍ୟିକ ସଂପର୍କର ବିକାଶ ମଧ୍ୟ ତ୍ୱରାନ୍ୱିତ ହୋଇଥିଲା । ପ୍ରାଚୀନ ରୁଷ୍ ଲୋକମାନଙ୍କର ମୂଳ ଜାତିଗତ ଭୂଖଣ୍ଡଟି ରୂପ ଲାଭ କରିଥିଲା ୯ମ-୧୦ମ ଶତାବ୍ଦୀରେ । ତାହା ଐକ୍ୟବଦ୍ଧ କରିଥିଲା ସମସ୍ତ ପୂର୍ବ ସ୍ଲାଭ୍ ଉପଜାତିଙ୍କୁ । ପ୍ରାଚୀନ ରୁଷ୍ ସାହିତ୍ୟିକ ଭାଷା କ୍ରମଶଃ

ରୂପ ଲାଭ କଲା । ଶ୍ରେଣୀସମୂହ ରୂପ ଲାଭ କରିବା ସାଥେ ସାଥେ ସ଼୍ାଭ୍ ରାଷ୍ଟ୍ର ମଧ୍ୟ ବିକାଶ ଲାଭ କରିଥିଲା ।

କିୟେଭ୍‌କୁ (ପ୍ରଥମ ସହସ୍ରାବ୍ଦର ମଧ୍ୟ ଭାଗରେ ପ୍ରତିଷ୍ଠିତ) କେନ୍ଦ୍ର କରି ଚତୁଃପାର୍ଶ୍ୱର ଦକ୍ଷିଣବର୍ତ୍ତୀ ଉପଜାତିଗୁଡ଼ିକର ଏବଂ ନୋଭ୍‌ଗୋରଦ ସ୍ଲୋଭେନ୍‌ମାନଙ୍କ ନେତୃତ୍ୱରେ ଉତ୍ତରରେ ବାସ କରୁଥିବା ଉପଜାତିମାନଙ୍କର ରାଜନୈତିକ ସଂଘ ସର୍ବାଧିକ ଗୁରୁତ୍ୱ ଅର୍ଜନ କରିଥିଲା । ଦ୍ନିପର ଏବଂ ଉତ୍ତର ଦୋନେତ୍‌ସ୍ ନଦୀର ଅନ୍ତର୍ବର୍ତ୍ତୀ ଭୂଖଣ୍ଡଟି ଅନେକ କାଳ ପର୍ଯ୍ୟନ୍ତ ତା'ର ପ୍ରାଚୀନ ନାମାନୁଯାୟୀ -- "ରୁଷ ଭୂଖଣ୍ଡ" ବା "ରୁଷିଆ" ବୋଲି ପରିଚିତ ହୋଇ ଆସିଥିଲା । (ପ୍ରଥମେ ଏହା ଅନ୍ୟାନ୍ୟ ସ୍ଲାଭ୍ ଭୂଖଣ୍ଡଗୁଡ଼ିକର ବିରୋଧୀ ଥିଲା ।) ପରବର୍ତ୍ତୀ କାଳରେ କିୟେଭ୍ ଯେତେବେଳେ ପୂର୍ବ ସ୍ଲାଭ୍‌ମାନଙ୍କ କେନ୍ଦ୍ର ସ୍ଥଳୀରେ ପରିଣତ ହେଲା, ସେତେବେଳେ ପୂର୍ବ ସ୍ଲାଭ୍‌ମାନଙ୍କର ସମସ୍ତ ଭୂଖଣ୍ଡର ନାମ ରୂପେ ବ୍ୟବହୃତ ହେଲା ।

ପ୍ରଥମ ସହସ୍ରାବ୍ଦର ଶେଷରେ "ଗ୍ରୀକ୍‌ମାନଙ୍କ ଠାରୁ ଭାରାଙ୍ଗିଆନମାନଙ୍କ ଠାରୁ ପଥରେ" (ସ୍କାଣ୍ଡିନେଭିଆରୁ ବୈଜାନ୍ତିଅମ୍ ପର୍ଯ୍ୟନ୍ତ ନଦୀ ପଥ) ଦେଖା ଦେଲେ ନର୍ମାନ୍ ଜଳଦସ୍ୟୁ ଏବଂ ବଣିକମାନେ । ରୁଷିଆରେ ନର୍ମାନ୍‌ମାନଙ୍କ ସଂଖ୍ୟା ବେଶି ନଥିଲା । ନୂତନ ଭୂଖଣ୍ଡମାନଙ୍କରେ ବସତି ସ୍ଥାପନ କଲା ପରେ ସେମାନେ ସ୍ଥାନୀୟ ଜନଗୋଷ୍ଠୀ ସହିତ ଶୀଘ୍ର ମିଶି ଯାଇଥିଲେ । ତା'ପରେ ସେମାନେ ସାମନ୍ତବାଦୀ ବ୍ୟବସ୍ଥାର ଅନ୍ତର୍ଗତ ହୋଇଯିବା ସଙ୍ଗେ ସଙ୍ଗେ ସ୍ଲାଭ୍‌ମାନଙ୍କ ଭାଷା ଏବଂ ସଂସ୍କୃତିକୁ ଗ୍ରହଣ କରି ନେଇଥିଲେ । ସ୍ଥାନୀୟ ବା ବେତନଭୋଗୀ ରକ୍ଷୀମାନଙ୍କର ନେତା ହିସାବରେ ସେମାନଙ୍କ ମଧ୍ୟରୁ କେତେକ ରାଜାରେ ପରିଣତ ହୋଇଥିଲେ (୮୬୨ ଖ୍ରୀଷ୍ଟାବ୍ଦରେ ନୋଭ୍‌ଗୋରଦ ଠାରେ ସେଇ ଅର୍ଦ୍ଧକିମ୍ବଦନ୍ତୀର ନାୟକ ରିଉରିକ୍‌ଙ୍କ ଉକ୍ତି) । ୮୮୨ ଖ୍ରୀଷ୍ଟାବ୍ଦରେ ନୋଭ୍‌ଗୋରଦର ରାଜା ଓଲେଗ୍ (ଭାରାଙ୍ଗିଆନ୍ ଜାତିର) ନୋଭ୍‌ଗୋରଦରୁ ଦକ୍ଷିଣକୁ ଏକ ସେନାବାହିନୀକୁ ନେତୃତ୍ୱ ଦେଇ ଆଗେଇଥିଲେ । ଏହି ସେନାବାହିନୀର ଅଧିକାଂଶ ସୈନିକ ଥିଲେ ସ୍ଲାଭ୍ (ସ୍ଲୋଭେନ୍ ଏବଂ କ୍ରିଭିଚ୍) ଏବଂ କିଛି ସଂଖ୍ୟକ ଭାରାଙ୍ଗିଆନ୍ । ସେ କିୟେଭ୍ ଅଧିକାର କରି ରୁଷିଆର ମହାରାଜାରେ ପରିଣତ ହୋଇଥିଲେ । କନ୍‌ଷ୍ଟାଣ୍ଟିନୋପ୍‌ଲ ବିରୁଦ୍ଧରେ ତାଙ୍କ ସୈନ୍ୟବାହିନୀର ଏକ ସଫଳ ଯୁଦ୍ଧାଭିଯାନ ଫଳରେ ବୈଜାନ୍ତିଅମ୍ ବାଧ୍ୟ ହୋଇଥିଲା ୯୧୧ ଖ୍ରୀଷ୍ଟାବ୍ଦରେ ପୁରାତନ ରୁଷ୍ ରାଜ୍ୟର ଅନୁକୂଳ ସର୍ତ୍ତରେ ଏକ ସନ୍ଧିରେ ସ୍ୱାକ୍ଷର କରିବାକୁ ।

ରୁଷ୍ ରାଜବଂଶର ପ୍ରତିଷ୍ଠାତା କିୟେଭ୍‌ର ରାଜା ଇଗୋର ୯୪୫ ଖ୍ରୀଷ୍ଟାବ୍ଦରେ ନିହତ ହୋଇଥିଲେ । ୧୬ଶ ଖ୍ରୀଷ୍ଟାବ୍ଦର ଶେଷ ଭାଗ ପର୍ଯ୍ୟନ୍ତ ଏହି ରାଜବଂଶ ରାଜତ୍ୱ କରି ଆସିଥିଲେ । ୧୨ଶ ଖ୍ରୀଷ୍ଟାବ୍ଦର ଜଣେ ପଞ୍ଜିକାର ଇଗୋରଙ୍କୁ ନୋଭ୍‌ଗୋରଦ କିଂବଦନ୍ତୀର ସାମରିକ ନେତା ରିଉରିକ୍‌ଙ୍କ ବଂଶଜାତ ବୋଲି ବର୍ଣ୍ଣନା କରିଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା

ପ୍ରାଚୀନ ରୁଷ୍ ରାଜାମାନଙ୍କର ରାଜତ୍ୱକୁ ଅବିଛିନ୍ନ ରଖିବାକୁ ସମର୍ଥନ କରିବା , ଏବଂ ଏହି ରାଜବଂଶ ନିଜକୁ ରିଉରିକଭିଚି (ରିଉରିକ୍‌ଙ୍କ ବଂଶଧରମାନେ) ବୋଲି ନାମିତ କରିଥିଲେ ।

୧୦ମ ଶତାବ୍ଦୀରେ ସ୍ଲାଭ୍ ଭାଷାଭାଷୀ ପୂର୍ବ ସ୍ଲାଭ୍ ରାଷ୍ଟ୍ରଗୁଡ଼ିକ ଏବଂ ଉପଜାତି ସଂଘସମୂହକୁ କିୟେଭ୍‌ର ମହାରାଜା ଶାସନ କରୁଥିଲେ । ସେମାନେ ତାଙ୍କୁ ରାଜକର ପ୍ରଦାନ କରୁଥିଲେ । ଇଗୋରଙ୍କ ବିଧବାପତ୍ନୀ ଓଲ୍‌ଗା ଥିଲେ , ସର୍ବପ୍ରଥମ ରୁଷ୍ ମହାରାଣୀ , ଯିଏକି ରକ୍ଷଣଶୀଳ ଖ୍ରୀଷ୍ଟ ଧର୍ମ ଗ୍ରହଣ କରିଥିଲେ । ତାଙ୍କର ବୁଦ୍ଧିମତା ପାଇଁ ସେ ପଞ୍ଜିକାମାନଙ୍କରେ ଏବଂ କିଂବଦନ୍ତୀରେ ବହୁ ପ୍ରଶଂସିତ ହୋଇଛନ୍ତି । ସେ ତାଙ୍କ ରାଷ୍ଟ୍ରର ବିଭିନ୍ନ ଭୂଖଣ୍ଡକୁ ପୋଗୋଟସମୂହରେ ବିଭକ୍ତ କରି କର ଆଦାୟ ଏବଂ ଶୃଙ୍ଖଳା ପ୍ରତିଷ୍ଠା କରିବାକୁ ଉଦ୍ୟମ କରିଥିଲେ । ଇଗୋର ଏବଂ ଓଲ୍‌ଗାଙ୍କ ପୁତ୍ର , ମହାଯୋଦ୍ଧା ରାଜପୁତ୍ର ସ୍ୱୟାତୋସ୍ଲାଭ୍ ଓକା ଓ ଭୋଲ୍‌ଗା ନଦୀ ଦ୍ୱୟ ମଧ୍ୟରେ ବସବାସ କରୁଥିବା ସ୍ଲାଭ୍ ଏବଂ ଫିନ୍ନୋ-ୟୁଗ୍ରିକ୍ ଉପଜାତିମାନଙ୍କ ସମେତ ଭୋଲ୍‌ଗା କୂଳବର୍ତ୍ତୀ ଅଞ୍ଚଳକୁ ପଦାନତ କରିବା ସଙ୍ଗେ ସଙ୍ଗେ ପୂର୍ବରେ ଭୋଲ୍‌ଗା ଏବଂ ଦକ୍ଷିଣରେ କନ୍‌ଷ୍ଟାଣ୍ଟିନୋପ୍‌ଲ ପର୍ଯ୍ୟନ୍ତ ବିଜୟ ଅଭିଯାନ ଚଳେଇଥିଲେ । ୟୁରୋପୀୟ ବ୍ୟାପାରରେ ରୁଷିଆ କ୍ରମାଧିକ ସକ୍ରିୟ ଭୂମିକା ପାଳନ କରିବାକୁ ଆରମ୍ଭ କରିଥିଲା ।

ଏହା ଫଳରେ ଏକ ବିରାଟ ସ୍ଲାଭ୍ ରାଷ୍ଟ୍ର ଗଢ଼ି ଉଠିଥିଲା ୟୁରୋପର ପୂର୍ବ ଭାଗରେ । ୧୦ମ ଶତାବ୍ଦୀର ମଧ୍ୟ ଭାଗରେ ଏହି ରାଷ୍ଟ୍ରଟି ମଧ୍ୟଯୁଗୀୟ ସାମନ୍ତବାଦୀ ରାଷ୍ଟ୍ରମାନଙ୍କର ବିଶ୍ୱ ବ୍ୟବସ୍ଥାରେ ଏକ ଅଗ୍ରଣୀ ଆସନ ଲାଭ କରିଥିଲା । ସାମାଜିକ-ଅର୍ଥନୈତିକ ଚରିତ୍ର ଦୃଷ୍ଟିରୁ , ପ୍ରାଚୀନ ରୁଷ୍ ରାଷ୍ଟ୍ରଟି ଥିଲା ଏକ ସାମନ୍ତବାଦୀ ସମାଜ ଏବଂ ଏଥିରେ ତଥାପି ଗୋଷ୍ଠୀ ସମାଜ ବ୍ୟବସ୍ଥାର ବହୁ ଅବଶେଷାଂଶ ନିହିତ ଥିଲା । ଗ୍ରାମ ବାସୀମାନେ ଆଞ୍ଚଳିକ ଗ୍ରାମ୍ୟ କମ୍ୟୁନଗୁଡ଼ିକରେ ("ମିର") ଏକାଠି ରହୁଥିଲେ । କିନ୍ତୁ କମ୍ୟୁନ ଅଧୀନସ୍ଥ ଜମିର କେତେକ ଅଂଶକୁ ଅଭିଜାତମାନେ ହସ୍ତଗତ କରି ନେଇଥିଲେ । ସେମାନେ ସାମନ୍ତରେ ପରିଣତ ହେଲେ ସେମାନଙ୍କ ବ୍ୟକ୍ତିଗତ ସଂପତ୍ତିକୁ ବଂଶଧରମାନେ ଉତ୍ତରାଧିକାର ସୂତ୍ରରେ ପାଇବାର ବ୍ୟବସ୍ଥା କରିଥିଲେ । ସେଇସବୁ ଜମିକୁ "ଚେଲ୍ୟାଦ" — ଖୋଲପି (ଦାସମାନେ) ଏବଂ କମ୍ୟୁନର ସଦସ୍ୟମାନେ ଚାଷ କରି ଦେଉଥିଲେ । ସେମାନେ ଅଭିଜାତମାନଙ୍କର ପରାଧୀନ ହୋଇ ପଡ଼ିଥିଲେ । କମ୍ୟୁନ ଚାଷୀମାନେ ("ସ୍ମେର୍ଦି") ଥିଲେ ପ୍ରାଚୀନ ରୁଷ୍ ରାଜ୍ୟର ଶ୍ରମଜୀବୀ ଜନଗୋଷ୍ଠୀର ଅଧିକାଂଶ ଲୋକ । ଏମାନେ ଛୋଟ ଛୋଟ ଜୋତର ମାଲିକ ଥିଲେ ।

ପ୍ରାଚୀନ ରୁଷିଆର ଅର୍ଥନୈତିକ ବିକାଶର ଧାରା ପରିଲକ୍ଷିତ ହୋଇଥିଲା ସାମନ୍ତବାଦୀ ରାଜନ୍ୟବର୍ଗ , ସମ୍ଭ୍ରାନ୍ତ ସଂପ୍ରଦାୟ , ରାଜାମାନଙ୍କ ସେନାବାହିନୀର ଅଧ୍ୟକ୍ଷବୃନ୍ଦ (ଦ୍ରୁଝିନା) ଏବଂ ତା'ପରେ ଗିର୍ଜାର ଭୂସଂପତ୍ତିର ଅଭିବୃଦ୍ଧି ଦିଗରେ । ସେମାନେ ଗ୍ରାମଗୋଷ୍ଠୀ ଅନ୍ତର୍ଗତ ଚାଷୀମାନଙ୍କ ଜମିକୁ ଅପହରଣ କରୁଥିଲେ । ଶ୍ରମଜୀବୀ ଲୋକେ

ନିମ୍ନମତେ ଶୋଷଣର ଶିକାର ହେଉଥିଲେ : ବାର୍ଷିନା ବା କର୍ଭି (ସାମନ୍ତବାଦୀ ପ୍ରଭୁ ପାଇଁ କରାଯାଉଥିବା ବେଠି , ବେଗାରି – ବିନା ମଜୁରିରେ ଜମି ଚାଷ କରି ଦେବା , ଘର ନିର୍ମାଣ କରି ଦେବା , ରାସ୍ତା ବାନ୍ଧିବା , ଆଦି) ଏବଂ ଓବ୍ରୋକ୍ (ଶସ୍ୟ ଓ ଅର୍ଥ ଆକାରରେ କର ଦାନ) ।

ଅଭିଜାତମାନେ ଥିଲେ ଜନଗୋଷ୍ଠୀର ସର୍ବୋଚ୍ଚ ସ୍ତର ଏବଂ ସହରରେ ମୁଖ୍ୟ ରାଜନୈତିକ ଶକ୍ତି । କିନ୍ତୁ କାରିଗରମାନେ ଥିଲେ ସହରବାସୀମାନଙ୍କ ମଧ୍ୟରେ ସର୍ବାଧିକ ଅଂଶ । ପ୍ରତିଟି ସହରରେ ଗୋଟିଏ ଲେଖାଏଁ ହାଟ ରହୁଥିଲା । ସେଠାରେ ସ୍ଥାନୀୟ ଏବଂ ଦୂରାଗତ ବ୍ୟବସାୟୀ ଏବଂ ସହରର କାରିଗରମାନେ ବିକାକିଣା କରୁଥିଲେ । ସହରରେ ବାସ କରୁଥିବା ଲୋକଙ୍କ ମଧ୍ୟରେ ଛୋଟ ଛୋଟ କାରିଗର ଏବଂ ଗରିବ ଲୋକ ଥିଲେ ସର୍ବନିମ୍ନ ବର୍ଗ ।

ପ୍ରାଚୀନ ରୁଷ୍ ରାଜ୍ୟ (କିଯେଭ୍ ରୁଷିଆ) ପ୍ରଥମ ଭ୍ଲାଦିମିର୍ ସ୍ୱ୍ୟାତୋସ୍ଲାଭିଚ୍‌ଙ୍କ ରାଜତ୍ୱକାଳରେ ବିପୁଳ ଶକ୍ତିର ଅଧିକାରୀ ହୋଇଥିଲା : ସେ ଥିଲେ ୯୮୦-୧୦୧୫ ଖ୍ରୀଷ୍ଟାବ୍ଦରେ କିଯେଭ୍‌ର ରାଜା ଏବଂ "ବିଜ୍ଞ" ୟାରୋସ୍ଲାଭ୍ ଥିଲେ ତାଙ୍କ ପୁତ୍ର (ରାଜତ୍ୱକାଳ ୧୦୧୯-୧୦୫୪) ।

ପ୍ରଥମ ଭ୍ଲାଦିମିର୍‌ଙ୍କ ଅଧୀନରେ ଏହି ରାଜ୍ୟଟି ବର୍ଦ୍ଧି ଚାଲିଥିଲା ଏବଂ ଦୃଢ଼ ବ୍ୟବସ୍ଥା ଗ୍ରହଣ କରାଯାଇଥିଲା ଷ୍ଟେପ୍ ଅଞ୍ଚଳର ଯାଯାବର-ପେଚେନେଗ୍‌ଙ୍କ ଆକ୍ରମଣ ବିରୁଦ୍ଧରେ । ଦକ୍ଷିଣ-ପୂର୍ବ ଦିଗରେ ବହୁ ଦୁର୍ଗ ସମେତ ପ୍ରତିରକ୍ଷା ପ୍ରାଚୀରମାନ ଗଢ଼ାଯାଇଥିଲା । ବୈଜାଣ୍ଟିଅମ୍‌ର ସମ୍ରାଟଙ୍କ ଭଉଣୀଙ୍କୁ ଭ୍ଲାଦିମିର୍ ବିବାହ କରିଥିଲେ ଏବଂ ସମ୍ରାଟ କିଯେଭ୍‌ର ରାଜାଙ୍କର ସାମରିକ ସାହାଯ୍ୟ ଗ୍ରହଣ କରୁଥିଲେ ।

ରୁଷ୍ ଭାଷାରେ ଲିଖିତ ବାଇଲିନାସ୍‌ରେ (ମହାକାବ୍ୟ) ପ୍ରଥମ ଭ୍ଲାଦିମିର୍‌ଙ୍କର (ରକ୍ତସୂର୍ଯ୍ୟ ନାମରେ ବର୍ଣ୍ଣିତ) ଯୁଦ୍ଧ ଏବଂ ସାହସର କୀର୍ତ୍ତି ବର୍ଣ୍ଣନା କରାଯାଇଛି । ଆଉ ଏକ ଜନପ୍ରିୟ ରୁଷ୍ ଲୋକ ଗୀତି ବୋଗାତିରାସ୍‌ରେ (ସାମନ୍ତ ବୀରଗଣ – ବର୍ଣ୍ଣିତ କୃଷକର ସନ୍ତାନ ଇଲ୍ୟା ମୁରୋମେଟ୍‌ସ ଏବଂ କୂଟନୀତିବିଦ୍ ତଥା ଯୋଦ୍ଧା ଦୋବ୍ରିନ୍ୟା ନିକିତିଚ୍ ଏବଂ ଜଣେ ଦୁଃସାହସୀ ବୀର ଆଲିଓଶା ପୋପୋଭିଚ୍ ଚରିତ୍ରଗୁଡ଼ିକ ଭ୍ଲାଦିମିର୍‌ଙ୍କ ଶାସନକାଳର ଲୋକ ବୋଲି କୁହାଯାଇଥାଏ ।

ପ୍ରଥମ ଭ୍ଲାଦିମିର୍ ଚାହିଁଥିଲେ ତାଙ୍କ ରାଜ୍ୟଟିକୁ ଅଭ୍ୟନ୍ତରରୁ ଶକ୍ତିଶାଳୀ କରିବାକୁ । ତାଙ୍କର ପୁତ୍ର ବିଭିନ୍ନ ଅଞ୍ଚଳରେ ସ୍ଥାନୀୟ ସାମନ୍ତ ରାଜାମାନଙ୍କୁ ସ୍ଥାନାନ୍ତରିତ କରି ଗୋଟିଏ ରାଜ ପରିବାର ହାତରେ ପୂର୍ଣ୍ଣ କ୍ଷମତାକୁ କେନ୍ଦ୍ରୀଭୂତ କରିଥିଲେ । ରୁଷୀୟ ଆଇନ୍‌ର ସାର୍ବଜନୀନତାକୁ ମଧ୍ୟ ଉନ୍ନତ କରାଯାଇଥିଲା । ୯୮୮ ଏବଂ ୯୮୯ ଖ୍ରୀଷ୍ଟାବ୍ଦରେ ରୁଷିଆ ଖ୍ରୀଷ୍ଟ ଧର୍ମ ଗ୍ରହଣ କରିଥିଲା ଏବଂ ରକ୍ଷଣଶୀଳ ଖ୍ରୀଷ୍ଟ ଧର୍ମ ରାଷ୍ଟ୍ରୀୟ ଧର୍ମରେ ପରିଣତ ହେଲା । ଏହା ଫଳରେ ଅଧିକ ସାମନ୍ତକରଣ ସାଧିତ ହୋଇଥିଲା ଏବଂ

ରାଜାଙ୍କର କ୍ଷମତାକୁ ଆଉରି ଦୃଢ଼ କରିଥିଲା ଏବଂ ଦେଶର ବିଭିନ୍ନ ବିଛିନ୍ନ ଅଂଶକୁ ଐକ୍ୟବଦ୍ଧ କରିବାରେ ସହାୟକ ହୋଇଥିଲା । ଖ୍ରୀଷ୍ଟ ଧର୍ମ ୟୁରୋପରେ ସର୍ବାଧିକ ପ୍ରଭାବଶାଳୀ ଧର୍ମ ହୋଇଥିବାରୁ ଖ୍ରୀଷ୍ଟ ଧର୍ମକୁ ଗ୍ରହଣ କରିବା ଫଳରେ ରୁଷ୍ ରାଜ୍ୟ ୟୁରୋପର ଅନ୍ୟାନ୍ୟ ରାଜ୍ୟମାନଙ୍କର ନିକଟତର ହୋଇଥିଲା । ଏହା ମଧ୍ୟ ସହାୟକ ହୋଇଥିଲା ସାଂସ୍କୃତିକ ବିକାଶ ଏବଂ ଶିକ୍ଷା ପ୍ରସାର ଦିଗରେ । ତେବେ ପ୍ରଥମେ ପ୍ରଥମେ, ଖ୍ରୀଷ୍ଟ ଧର୍ମ ସୀମିତ ଥିଲା ସାମନ୍ତ ପ୍ରଭୁ ଏବଂ ସହରର ଅଧିବାସୀମାନଙ୍କ ମଧ୍ୟରେ । ଗ୍ରାମାଞ୍ଚଳର ଅଧିକାଂଶ ଲୋକ ବହୁ ଦିନରୁ ପ୍ରଚଳିତ ମୂର୍ତ୍ତି ପୂଜା ଆଦି କରୁଥିଲେ । ସାମନ୍ତବାଦୀ ଶୋଷଣ ବିରୁଦ୍ଧରେ ଅଭ୍ୟୁତ୍ଥାନଗୁଡ଼ିକ ଅନେକ ସମୟରେ ପୁରାତନ ଧର୍ମକୁ ଫେରି ଚାଲ – ଏହି ଧ୍ୱନି ତଳେ ସଂଘଟିତ ହୋଇଥିଲା ।

ୟାରୋସ୍ଲାଭ୍ ରୁଷ୍ ଭୂଖଣ୍ଡର କ୍ଷମତାସୀନ ହେଲା ପରେ ସମଗ୍ର ରାଷ୍ଟ୍ର ପାଇଁ ଏକ ଆଇନ୍ ସଂଘିତା ଜାରି କରିଥିଲେ । ଏହିସବୁ ଆଇନ୍ କେବଳ ବିଚାରାଳୟ ବ୍ୟବସ୍ଥା ବା କର ଆଦାୟକୁ ସୁସ୍ଥିର କରି ନଥିଲା, ଭୂମି ଏବଂ କୃଷକମାନଙ୍କ ଉପରେ ସାମନ୍ତବାଦୀ ପ୍ରଭୁମାନଙ୍କ ଅଧିକାରକୁ ("ରୁଷ୍‌କାୟା ପ୍ରାଭ୍‌ଦା" – ରୁଷୀୟ ସତ୍ୟ ନାମରେ ଏହା ପରିଚିତ୍) ଆଇନସମ୍ମତ କରିଥିଲା । ପ୍ରଥମ ଭ୍ଲାଦିମିର୍‌ଙ୍କ ରାଜତ୍ୱକାଳରେ କରଦରାଜାମାନେ ମହାରାଜାଙ୍କ ସହିତ ଘନିଷ୍ଠ ସଂପର୍କ ରଖିଥିବା ହେତୁ ଶକ୍ତିଶାଳୀ ଥିଲେ । ସେମାନେ ମହାରାଜାଙ୍କ ଯୁଦ୍ଧାଭିଯାନ, ଭୋଜନୋତ୍ସବରେ ଅଂଶଗ୍ରହଣ କରୁଥିଲେ ଏବଂ ରାଜ ଦେୟରୁ କିଛି ଅଂଶ ପାଉଥିଲେ । କିନ୍ତୁ ୟାରୋସ୍ଲାଭ୍‌ଙ୍କ ରାଜତ୍ୱକାଳରେ କରଦରାଜାମାନେ ସେମାନଙ୍କ ଅଞ୍ଚଳରେ ସ୍ଥାୟୀ ଭାବେ ବସବାସ କଲେ, ଫଳରେ କୃଷକମାନଙ୍କ ଉପରେ ଦାସତ୍ୱ ଶୃଙ୍ଖଳ ଆଉରି ଅଧିକ ଦୃଢ଼ ହେଲା ଏବଂ ସହରର କାରିଗରମାନେ ଅଧିକ ଶୋଷିତ ହେଲେ ।

ଏହି ସମୟ କାଳଟି ଥିଲା ସାଂସ୍କୃତିକ ଉତ୍‌ଥାନ ଏବଂ ସାମାଜିକ ସଚେତନତାର ଅଭିବୃଦ୍ଧିର କାଳ । ଏହି ସମୟରେ ପ୍ରତିଭାବାନ ସ୍ଥପତିମାନେ ସେଣ୍ଟ୍ ସୋଫିଆ ଗିର୍ଜାଗୁଡ଼ିକୁ (କିୟେଭ୍, ନୋଭ୍‌ଗୋରଦ୍ ଏବଂ ପୋଲଟ୍‌ସ୍) ନିର୍ମାଣ କରିଥିଲେ କନ୍‌ଷ୍ଟାଣ୍ଟିନୋପୁରେ ଥିବା ବିଖ୍ୟାତ ସେଣ୍ଟ୍ ସୋଫିଆ ଗିର୍ଜାର ପ୍ରତିଦ୍ୱନ୍ଦ୍ୱିତାରେ । କିୟେଭ୍‌ର ବିଶପ୍ ଇଲାରିଅନ୍ ତାଙ୍କ "ଆଇନ୍ ଏବଂ ଧର୍ମପଥ" ଶୀର୍ଷକ ଗ୍ରନ୍ଥରେ ମଣିଷ ମଣିଷ ମଧ୍ୟରେ ଐକ୍ୟର ଚିନ୍ତାଧାରାକୁ ବିକଶିତ କରିବା ସଙ୍ଗେ ସଙ୍ଗେ ବିଶ୍ୱ ଇତିହାସକୁ ଖ୍ରୀଷ୍ଟ ଧର୍ମକୁ ସେମାନଙ୍କର କ୍ରମଶଃ ପରିବର୍ତ୍ତନ ବୋଲି ବିଚାର କରିଥିଲେ । ଇଲାରିଅନ୍ ଥିଲେ ଜଣେ ଲେଖକ ଏବଂ ବକ୍ତା । ୟାରୋସ୍ଲାଭ୍ ଥିଲେ ଜଣେ ପୁସ୍ତକ ପ୍ରେମୀ ଏବଂ ତାଙ୍କ ନିର୍ଦ୍ଦେଶରେ କିୟେଭ୍‌ରେ ନିୟମିତ ଘଟଣାପଞ୍ଜି ଲେଖାଯାଉଥିଲା ।

କିୟେଭ୍ ଏବଂ ନୋଭ୍‌ଗୋରଦ ସହର ଦୁଇଟି ସେତେବେଳେ ୟୁରୋପର ଅନ୍ୟତମ ସର୍ବାଧିକ ଜନବସତିପୂର୍ଣ୍ଣ ସହର ଏବଂ ଆନ୍ତର୍ଜାତିକ ବାଣିଜ୍ୟର ବଡ଼ କେନ୍ଦ୍ର ଥିଲେ । ରୁଷ୍ ବଣିକମାନେ ବହୁ ଦେଶ ସଂପର୍କରେ ଜାଣିଥିଲେ । ରୁଷ୍‌ର ପଶୁଲୋମ, ଅସ୍ତ୍ରଶସ୍ତ୍ର

ଏବଂ ମଣିମୁକ୍ତା ସାରା ପୃଥିବୀରେ ସୁଖ୍ୟାତି ଅର୍ଜନ କରିଥିଲା । ମହାରାଜାଙ୍କ ଦରବାରରେ ଏସିଆର ଏବଂ ୟୁରୋପର କୂଟନୀତିବିଦ୍ ଏବଂ ବଣିକମାନଙ୍କର ସମାଗମ ହେଉଥିଲା । କେତେକ ମହାଶକ୍ତିଶାଳୀ ସମ୍ରାଟ ଗ୍ରହିଁଥିଲେ ୟାରୋସ୍ଲାଭ୍‌ଙ୍କ ସହିତ ମେଣ୍ଟ ବାନ୍ଧିବାକୁ । ରୁଷିଆର ଆନ୍ତର୍ଜାତିକ କ୍ଷେତ୍ରରେ ସଂପର୍କ କେତେକ ବ୍ୟାପକ ଏବଂ ଗୁରୁତ୍ୱପୂର୍ଣ୍ଣ ଥିଲା, ତାହା ଜଣାଯାଏ ମହାରାଜାଙ୍କ ପରିବାର ସଦସ୍ୟମାନଙ୍କର ବିବାହ ସଂପର୍କ ମଧ୍ୟରୁ, ଯେଉଁସବୁ ବିବାହ ଥିଲା ସ୍ୱଭାବତଃ ରାଜନୈତିକ ଚରିତ୍ରସଂପନ୍ନ । ୟାରୋସ୍ଲାଭ୍ ବିବାହ କରିଥିଲେ ସୁଇଡେନ୍‌ର ରାଜାଙ୍କ କନ୍ୟାଙ୍କୁ, ତାଙ୍କ ଭାଇ ପୋଲାଣ୍ଡର ରାଜାଙ୍କ କନ୍ୟାଙ୍କୁ ଏବଂ ସେମାନଙ୍କ ଭଉଣୀମାନେ ବିବାହ କରିଥିଲେ ପୋଲାଣ୍ଡ ଏବଂ ହଙ୍ଗେରିର ରାଜା ଏବଂ ନର୍ମାନର ସମ୍ଭ୍ରାନ୍ତଙ୍କୁ । ୟାରୋସ୍ଲାଭ୍‌ଙ୍କ ପୁତ୍ର ଭସେଭୋଲଦ୍ ମଧ୍ୟ ହଙ୍ଗେରି, ଡେନ୍‌ମାର୍କ, ନର୍‌ୱେ ଏବଂ ଫରାସୀ ରାଜାଙ୍କ ସହିତ (ତାଙ୍କର ଭଉଣୀମାନଙ୍କ ସ୍ୱାମୀମାନଙ୍କ ସହିତ), ପୋଲାଣ୍ଡର ରାଜା ଏବଂ ଜର୍ମାନ୍ ସାମନ୍ତ ରାଜାଙ୍କ ସହିତ ସଂପୃକ୍ତ ଥିଲେ (ତାଙ୍କ ଭାଇମାନେ ସେମାନଙ୍କ କନ୍ୟାମାନଙ୍କୁ ବିବାହ କରିଥିଲେ) । ସେ ନିଜେ ବିବାହ କରିଥିଲେ ବୈଜାନ୍ତିଅମ୍‌ର ସମ୍ରାଟଙ୍କ କନ୍ୟାଙ୍କୁ ଏବଂ ତାଙ୍କ ନିଜ କନ୍ୟା ବିବାହ କରିଥିଲେ ଜର୍ମାନ୍ ସମ୍ରାଟ ଚତୁର୍ଥ ହେନ୍‌ରିଙ୍କୁ । ତାଙ୍କ ପୁଅ ଭ୍ଲାଦିମିର୍ ମନୋମାଖ୍ ପାଣିଗ୍ରହଣ କରିଥିଲେ ଇଂଲଣ୍ଡର ରାଜାଙ୍କ କନ୍ୟାଙ୍କର । ବୈଜାନ୍ତିଅମ୍‌ର, ଆରବୀ ଭାଷୀ ଏବଂ ୟୁରୋପୀୟ ଲେଖକମାନେ ରୁଷିଆ ସଂପର୍କରେ ଲେଖି ଯାଇଛନ୍ତି । ଫରାସୀ ଏବଂ ଜର୍ମାନ୍ ପୁରାଣ ଏବଂ ସ୍କାଣ୍ଡିନେଭୀୟ ଗାଥାମାନଙ୍କରେ ରୁଷ୍ ସଂପର୍କରେ ବାରମ୍ବାର ଉଲ୍ଲେଖ ଦେଖିବାକୁ ମିଳେ (ସେସବୁଥିରେ ରୁଷକୁ ନଗରମାଳାର ଦେଶର ବୋଲି ବର୍ଣ୍ଣନା କରାଯାଇଛି) ।

୧୧ଶ ଶତାବ୍ଦୀର ପ୍ରାରମ୍ଭରେ ରୁଷିଆ ରାଷ୍ଟ୍ରରେ ଦୁଇଟି ପରସ୍ପର ବିରୋଧୀ ପ୍ରବଣତା ପରିଦୃଷ୍ଟ ହୋଇଥିଲା : ଏକ ଦିଗରେ, କିୟେଭ୍‌ର ମହାରାଜାମାନଙ୍କର ସମଗ୍ର ଦେଶରେ ଅଖଣ୍ଡ କ୍ଷମତାକୁ ଅକ୍ଷୁଣ୍ଣ ରଖିବାର ପ୍ରୟାସ, ଅନ୍ୟ ଦିଗରେ, କିୟେଭ୍‌ର ମହାରାଜାଙ୍କ ଆତ୍ମୀୟମାନଙ୍କୁ ପ୍ରଦତ୍ତ ଛୋଟ ଛୋଟ ରାଜ୍ୟଗୁଡ଼ିକର ସ୍ଥାନୀୟ ଶାସକମାନଙ୍କ ପକ୍ଷରୁ ନିଜ ଭୂଖଣ୍ଡ ଉପରେ ସ୍ୱାଧୀନ ଶାସକ ହେବାକୁ ଉଦ୍ୟମ । ସେମାନେ ସେସବୁ ଭୂଖଣ୍ଡକୁ ନିଜର ବ୍ୟକ୍ତିଗତ ସଂପତ୍ତି, ପୈତୃକ ସଂପତ୍ତି ବୋଲି ବିଗ୍ରର କରୁଥିଲେ । ଶେଷୋକ୍ତ ପ୍ରବଣତାଟି ଅଧିକ ଶକ୍ତିଶାଳୀ ହୋଇ ଉଠିଥିଲା, କାରଣ ଏପରି ଏକ ବିରାଟ ରାଷ୍ଟ୍ରର ଐକ୍ୟକୁ ସୁଦୃଢ଼ କରିବା ଅର୍ଥନୈତିକ ଯୋଗସୂତ୍ର ବିନା (ତତ୍କାଳୀନ ଅର୍ଥନୈତିକ ବିକାଶର ମାତ୍ରାରେ ଏହା ସମ୍ଭବ ନଥିଲା) ବଜାଏ ରଖିବା ସମ୍ଭବ ନଥିଲା । ତା'ଛଡ଼ା ମହାରାଜାଙ୍କ ତରଫରୁ ହସ୍ତକ୍ଷେପ ପ୍ରତ୍ୟେକଟି ସାମନ୍ତରାଜା ଶାସିତ ରାଜ୍ୟରେ ସାମନ୍ତବାଦୀ ସଂପର୍କ ପଥରେ ବାଧା ସୃଷ୍ଟି କରୁଥିଲା । ଫଳରେ ଆଦିମ କେନ୍ଦ୍ରାନୁଗ ବ୍ୟବସ୍ଥାଯୁକ୍ତ ଏକ ପ୍ରାଚୀନ ସାମନ୍ତବାଦୀ ରାଷ୍ଟ୍ର—ଯାହାର ସମ୍ରାଟ ଏବଂ ତାଙ୍କ ପରିଷଦବର୍ଗ ସାମରିକ

ଉପଢୌକନ ଏବଂ ରାଜଦତ୍ତ ସାମଗ୍ରୀ ଉପରେ ନିର୍ଭର କରୁଥିଲେ — ସଂକଟରେ ପଡ଼ିଥିଲା । ଏକ ଗଣ ଅଭ୍ୟୁତ୍‌ଥାନର ଢୁଆର ଖୋଲି ଯାଇଥିଲା ଗ୍ରାମ ଏବଂ ସହରମାନଙ୍କରେ (କିୟେଭ୍‌ରେ ୧୦୬୮ରେ, ନୋଭ୍‌ଗୋରଦ ଏବଂ ରୋସ୍ତଭ ଅଞ୍ଚଳରେ) ।

କରଦରାଜାମାନଙ୍କ ମଧ୍ୟରେ ଆତ୍ମଘାତୀ ଯୁଦ୍ଧବିଗ୍ରହ ଥିଲା ଏକ ସାଧାରଣ ଘଟଣା । ଏହିସବୁ ଯୁଦ୍ଧରେ ବିପୁଳ ରକ୍ତକ୍ଷୟ ଘଟୁଥିଲା ଏବଂ ଏହା ଫଳରେ ବହୁ ରୁଷୀୟ ଲୋକ ବନ୍ଦୀ ହୋଇ କ୍ରୀତଦାସରେ ପରିଣତ ହୋଇଥିଲେ । ଏହିସବୁ ଆତ୍ମଘାତୀ ସଂଘର୍ଷର ସୁଯୋଗ ନେବା ପାଇଁ ଷ୍ଟେପ୍‌ର ଯାଯାବର-ପୋଲୋଭତ୍‌ସି (ଲୋକମାନେ, ଯେଉଁମାନେ ପେଚେନେଗ୍‌ମାନଙ୍କୁ ସ୍ଥାନାନ୍ତରିତ କରିଥିଲେ) ଏବଂ ପଶ୍ଚିମର ପଡ଼ୋଶୀ ରାଜ୍ୟମାନେ ଚେଷ୍ଟା କରିଥିଲେ । ପୋଲୋଭତ୍‌ସିଙ୍କର ବାରମ୍ବାର ଆକ୍ରମଣ ଏବଂ ସାମନ୍ତମାନଙ୍କ ମଧ୍ୟରେ କ୍ରମାଗତ ଦ୍ୱନ୍ଦ୍ୱ ଫଳରେ ବାଣିଜ୍ୟ ପଥଗୁଡ଼ିକୁ ବ୍ୟବହାର କରାଯାଇ ପାରିଲା ନାହିଁ ଏବଂ ଗ୍ରାମ ଆଉ ସହର ଧ୍ୱସ୍ତବିଧ୍ୱସ୍ତ ହୋଇ ପଡ଼ିଲା । ଏହିଭଳି ଏକ ସଂକଟପୂର୍ଣ୍ଣ ପରିସ୍ଥିତି କରଦରାଜାମାନଙ୍କୁ ବାଧ୍ୟ କରିଥିଲା ସେମାନଙ୍କ ମଧ୍ୟରେ ସଂପର୍କକୁ ନିର୍ଦ୍ଧାରଣ କରିବା ପାଇଁ । "ପ୍ରତ୍ୟେକ ନିଜ ନିଜର ଭୂଖଣ୍ଡରେ ରାଜତ୍ୱ କରନ୍ତୁ" — ଏହି ସୂତ୍ରଟିକୁ ୧୦୯୭ ଖ୍ରୀଷ୍ଟାବ୍ଦରେ ଅନୁଷ୍ଠିତ କରଦରାଜାମାନଙ୍କର ସମ୍ମିଳନୀ ଗ୍ରହଣ କରିଥିଲା । ଏହା ଦ୍ୱାରା ସରକାରୀ ଭାବେ ସାମନ୍ତବାଦୀ ବିଖଣ୍ଡୀକରଣକୁ ସ୍ୱୀକାର କରାଗଲା ଏବଂ ଏହା ପୂର୍ବର ସାମନ୍ତବାଦୀ ସାମ୍ରାଜ୍ୟକୁ ସ୍ଥାନାନ୍ତରିତ କଲା । କିନ୍ତୁ ଏହିସବୁ ଉପରାଜାମାନଙ୍କର ସମ୍ମିଳନୀ ଆଉ କେତେକ ସମସ୍ୟାର ମୀମାଂସା କରି ପାରି ନଥିଲା । ସାମନ୍ତବାଦୀ ବିଖଣ୍ଡୀକରଣର ପ୍ରକ୍ରିୟାକୁ ରୁଷିଆର ସବୁଠାରୁ ଶକ୍ତିଶାଳୀ ଏବଂ ବୁଦ୍ଧିମାନ ରାଜା, ଦ୍ୱିତୀୟ ଭ୍ଲାଦିମିର୍ ମନୋମାଖ୍ (୧୦୫୦-୧୧୨୫), ଦକ୍ଷିଣ ପେରେୟାସ୍ଲାଭ୍‌ଲର ରାଜାଙ୍କର ସଫଳ କ୍ରିୟାକଳାପ ରୋକି ପାରି ନଥିଲା । ଶେଷୋକ୍ତ ରାଜା ଥିଲେ ପୋଲୋଭତ୍‌ସି ବିରୁଦ୍ଧରେ ମିଳିତ କାର୍ଯ୍ୟକର୍ମର ପ୍ରବକ୍ତା ଷ୍ଟେପ୍‌ର ଅତି ଅଭ୍ୟନ୍ତରକୁ ପରିଚାଳିତ ସଫଳ ଯୁଦ୍ଧାଭିଯାନର ନେତା ।

୧୧୧୩ ଖ୍ରୀଷ୍ଟାବ୍ଦରେ ଭ୍ଲାଦିମିର୍ ମନୋମାଖ୍ ତାଙ୍କର ପୂର୍ବତନ ରାଜ୍ୟଗୁଡ଼ିକ ସମେତ କିୟେଭ୍‌ର ମହାରାଜା ରୂପେ ସିଂହାସନ ଆରୋହଣ କରିଥିଲେ । ପରାଧୀନ ଜନସାଧାରଣଙ୍କ ଦୁରାବସ୍ଥା ଏବଂ ସୁଧଖୋର ମହାଜନମାନଙ୍କର ଉତ୍ପୀଡ଼ନ ଫଳରେ ସୃଷ୍ଟ ଏକ ସହରର ଗଣ ଅଭ୍ୟୁତ୍‌ଥାନ ପରେ ସେ ସିଂହାସନ ଲାଭ କରିଥିଲେ । ତାଙ୍କ ଦ୍ୱାରା ଗୃହୀତ ଆଇନ୍ ବ୍ୟବସ୍ଥା (ଏହା ଭ୍ଲାଦିମିର୍ ମନୋମାଖ୍‌ଙ୍କ ଆଇନ୍ ନାମରେ ଖ୍ୟାତ, ଏଥିରେ ଅନ୍ତର୍ଭୁକ୍ତ ଥିଲା ରୁଷୀୟ ସତ୍ୟର ସମୃଦ୍ଧ ସଂସ୍କରଣ) ବଳରେ ସେ ପରାଧୀନ ଜନଗୋଷ୍ଠୀ ଏବଂ ସାମନ୍ତ ପ୍ରଭୁ ଓ ସୁଧଖୋର ମହାଜନମାନଙ୍କ ମଧ୍ୟରେ ସଂପର୍କକୁ ନିୟନ୍ତ୍ରଣ ମଧ୍ୟକୁ ଆଣିଥିଲେ । ଏହି ଆଇନ୍ ବ୍ୟବସ୍ଥାଟି ଦେଶରେ ଆଇନଗତ ମାନ ରୂପେ ବହୁ ଦିନ ପର୍ଯ୍ୟନ୍ତ ପ୍ରତିଷ୍ଠିତ ଥିଲା ।

ମନୋମାଖ୍‌ଙ୍କ ରାଜତ୍ୱକାଳରେ କେତେକ ସରକାରୀ ଘଟଣାପଞ୍ଜିର ଏକ ସଂକଳନକୁ ଅତିମରୂପ ପ୍ରଦାନ କରାଯାଇଥିଲା । ଏହା ମଧ୍ୟଯୁଗୀୟ ସଂସ୍କୃତିର ଏକ ବିଖ୍ୟାତ ମିନାର ବୋଲି ପରିଗଣିତ ହୋଇ ଆସିଛି । ଏଥିରେ ଅନ୍ତର୍ଭୁକ୍ତ ଥିଲା ମହାରାଜାଙ୍କ ଦ୍ୱାରା ଲିଖିତ ଆତ୍ମଜୀବନୀ, ରାଜା ସ୍ୱୟଂ ତାଙ୍କ ପୁତ୍ରମାନଙ୍କୁ "ଏକ ବକ୍ତୃତା" ଦେଇଥିଲେ । ସଂକଳନଟିର ଶିରୋନାମା ହେଲା "ପଭେଷ୍ଟ ଭ୍ରେମେନ୍‌ଖି ଲେଟ୍" ("ବିଗତ ବର୍ଷମାନଙ୍କର କାହାଣୀ") । ଏହି ଶିରୋନାମାଟି ଦେଇ ଆରମ୍ଭ ହୋଇଥିଲା ଏହି କାହାଣୀର ମୂଳ ବାକ୍ୟଟି – "ରୁଷ୍ ଭୂଖଣ୍ଡର ଉପରି କାଳର ବିଗତ ବର୍ଷମାନଙ୍କର ବର୍ଣ୍ଣନା ହେଉଛି ଏହିସବୁ କାହାଣୀ, ପ୍ରଥମେ ଏହା କିୟେଭ୍‌ରେ ରାଜତ୍ୱ କରିବାକୁ ଆରମ୍ଭ କରିଥିଲେ ଏବଂ ପରେ ସେଇ ସୂତ୍ରରୁ ରୁଷ୍ ଭୂଖଣ୍ଡର ଉପରି ଘଟିଥିଲା ।" ଏହି ଘଟଣାପଞ୍ଜିର ରଚୟିତା ରୁଷିଆର ଇତିହାସକୁ ପୂର୍ବବର୍ତ୍ତୀ ବିଶ୍ୱ ଇତିହାସର ଏକ ଗୌରବ ମଣ୍ଡିତ ଅନୁକ୍ରମ ବୋଲି ଦେଖିଥିଲେ । ସେ ବାରମ୍ବାର ଦର୍ଶାଇଥିଲେ, ରୁଷିଆର ଇତିହାସ ହେଉଛି ସ୍ୱାଧୀନ ଏବଂ ଗୁରୁତ୍ୱପୂର୍ଣ୍ଣ । ରୁଷ୍ ଭୂଖଣ୍ଡସମୂହର ଐକ୍ୟର ଚିନ୍ତାଧାରା ଏହି ସଂକଳନର ପତ୍ରେ ପତ୍ରେ ପ୍ରକଟିତ ହୋଇଛି । ପରବର୍ତ୍ତୀ ବଂଶଧରମାନେ କୌଣସି ରାଜାଙ୍କୁ ପ୍ରଶଂସା କରିବାକୁ ଚିନ୍ତା କଲା ବେଳେ ଭ୍ଲାଦିମିର୍ ମନୋମାଖ୍‌ଙ୍କ ନାମଟି ସେମାନଙ୍କ ସ୍ମୃତି ପଟରେ ଭାସି ଉଠିଥାଏ ।

ପ୍ରାଚୀନ ରୁଷ୍ ରାଜ୍ୟର ଆନ୍ତର୍ଜାତିକ ସମ୍ମାନ ପୁଣି ବୃଦ୍ଧି ପାଇବାକୁ ଲାଗିଥିଲା ୧୨ଶ ଶତାବ୍ଦୀର ପ୍ରଥମ ଚଉଠରେ । ତେବେ ଐକ୍ୟବଦ୍ଧ ଏହି ପ୍ରାଚୀନ ରୁଷୀୟ ରାଷ୍ଟ୍ରଟିର ପୁନରାବିର୍ଭାବ ବେଶି ଦିନ ତିଷ୍ଠି ପାରି ନଥିଲା । ୧୨ଶ ଶତାବ୍ଦୀର ଦ୍ୱିତୀୟ ଚଉଠରେ ଏହା ଶେଷକୁ ବହୁ ଛୋଟ ଏବଂ ବଡ଼ ରାଜ୍ୟରେ ବିଭକ୍ତ ହୋଇ ଯାଇଥିଲା । "ରୁଷ୍ ନଗରୀମାନଙ୍କର ମା" କିୟେଭ୍ (ଘଟଣାପଞ୍ଜିମାନଙ୍କରେ ଏହି ନାମରେ କଥିତ) ପାଇଁ ପ୍ରତିଦ୍ୱନ୍ଦ୍ୱୀ ରାଜାମାନଙ୍କ ମଧ୍ୟରେ ଲାଗି ଯାଇଥିଲା ସଂଘର୍ଷ ।

ପ୍ରାଚୀନ ରୁଷୀୟ ରାଷ୍ଟ୍ରଟି ପୂର୍ବ ୟୁରୋପର ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ଗୋଟିଏ ଭାଷାଭାଷୀ ପ୍ରାଚୀନ ରୁଷ୍ ଲୋକେ ଥିଲେ ଏହାର ଜନଗୋଷ୍ଠୀର ମୁଖ୍ୟ ଅଂଶ । ଭ୍ରାତୃପ୍ରତୀମ ରୁଷୀୟ (ମହାନ୍ ରୁଷୀୟ), ୟୁକ୍ରେନୀୟ, ବେଲୋରୁଷୀୟ ଜାତିମାନେ (ଏମାନଙ୍କର ୧୪ଶ-୧୫ଶ ଶତାବ୍ଦୀରେ ଅଭ୍ୟୁଦୟ ଘଟିଥିଲା) ପ୍ରାଚୀନ ରୁଷୀୟ ଲୋକଙ୍କ ମଧ୍ୟରୁ ଜନ୍ମ ନେଇଥିଲେ । କିୟେଭ୍ ରୁଷିଆ ଥିଲା ପୂର୍ବ ସ୍ଲାଭ୍‌ମାନଙ୍କ ରାଷ୍ଟ୍ରସତ୍ତା ତଥା ସଂସ୍କୃତିର ସାଧାରଣ ଲାଳନାଗାର । ଏହିସବୁ ଜାତିମାନେ ବିକାଶ ଲାଭ କରିଥିଲେ ନିରବଚ୍ଛିନ୍ନ ସାଂସ୍କୃତିକ ଏବଂ ଅର୍ଥନୈତିକ ଆଦାନ ପ୍ରଦାନ ମଧ୍ୟ ଦେଇ । ରାଷ୍ଟ୍ରୀୟ ଐକ୍ୟର ସ୍ମୃତି ମନରୁ ଲୋପ ପାଇ ଗଲା ନାହିଁ । ସେ ଲିପିବଦ୍ଧ ହୋଇ ରହିଲା ସାହିତ୍ୟ ଆଉ ଲୋକ ଗୀତିଗୁଡ଼ିକରେ । ସାମନ୍ତବାଦୀ ବିଖଣ୍ଡୀକରଣ ଯୁଗରେ – ରୁଷ୍ ଇତିହାସରେ କିୟେଭ୍ ଯୁଗ – ପ୍ରାଚୀନ ରୁଷ୍ ରାଷ୍ଟ୍ରର ଇତିହାସକୁ ସେଇ ସମସ୍ତ

ରାଷ୍ଟ୍ରର ପ୍ରାଥମିକ ପର୍ଯ୍ୟାୟ ବୋଲି ବର୍ଣ୍ଣନା କରାଯାଏ, ଯେଉଁଗୁଡ଼ିକ ଏହାର ଭୂଖଣ୍ଡ ମଧ୍ୟରେ ଅବସ୍ଥିତ ଥିଲେ । ସେସବୁ ରାଷ୍ଟ୍ରର ସ୍ଥାନୀୟ ଘଟଣାପଞ୍ଜିସବୁ, ପରବର୍ତ୍ତୀ କାଳରେ ମସ୍କୋର ଜାର୍‌ମାନଙ୍କ ସରକାରୀ ଘଟଣାପଞ୍ଜି ସମେତ, ଆରମ୍ଭ ହୋଇଥାଏ "ବିଗତ ବର୍ଷମାନଙ୍କର କାହାଣୀ" ଦେଇ । ଗୋଟିଏ ରାଷ୍ଟ୍ର ମଧ୍ୟରେ ଐକ୍ୟବଦ୍ଧ ହେବାର ପୂର୍ବ ସ୍ଲାଭ୍‌ମାନଙ୍କର ସେଇ ପ୍ରବଣତାଟି କେବେହେଲେ ସଂପୂର୍ଣ୍ଣ ରୂପେ ଲୋପ ପାଇ ନଥିଲା ଏବଂ ପରେ ଏହିଭଳି ରାଷ୍ଟ୍ରର ଅଭ୍ୟୁଦୟ ପାଇଁ ଏହା ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ସାଂସ୍କୃତିକ, ମାନସିକ, ସାମାଜିକ-ଅର୍ଥନୈତିକ ପୂର୍ବାବସ୍ଥା ।

୧୨ଶ ଶତାବ୍ଦୀ ବେଳକୁ କିୟେଭ୍ ଏବଂ ନୋଭ୍‌ଗୋରଦର ରାଜନୈତିକ, ଅର୍ଥନୈତିକ ଏବଂ ସାଂସ୍କୃତିକ ଜୀବନର ପରମ୍ପରାଗତ କେନ୍ଦ୍ର ଭଳି ବହୁ କେନ୍ଦ୍ର ମୁଣ୍ଡ ଟେକି ଉଠିଥିଲେ । ସ୍ଥାନୀୟ ଜମିଦାରମାନେ ଆଉରି ଶକ୍ତିଶାଳୀ ଏବଂ ଧନୀ ହୋଇ ପଡ଼ିଥିଲେ, ପୁରୁଣା ସହରସବୁର ଅଭିବୃଦ୍ଧି ଘଟିଥିଲା ଏବଂ ନୂଆ ସହରସବୁ ଗଢ଼ି ଉଠିଥିଲେ, ପ୍ରତ୍ୟେକ ସ୍ଥାନରେ ହସ୍ତଶିଳ୍ପର ବିକାଶ ଘଟିଥିଲା—ଫଳରେ ବିଚ୍ଛିନ୍ନ ଅଞ୍ଚଳମାନଙ୍କରେ ଅର୍ଥନୈତିକ ତଥା ରାଜନୈତିକ ଅଭ୍ୟୁତ୍‌ଥାନ ପାଇଁ ଅବସ୍ଥାରାଜି ସୃଷ୍ଟି ହୋଇଥିଲା । ଶ୍ରେଣୀ ସଂଗ୍ରାମର ଅଭିବୃଦ୍ଧି ଏବଂ ସାମନ୍ତବାଦୀ ରକ୍ତକ୍ଷୟୀ ସଂଘର୍ଷର ବିସ୍ତାର ସାଥେ ସାଥେ ଧନୀ ଭୂସ୍ୱାମୀମାନେ ସେମାନଙ୍କ ସ୍ଥାନୀୟ କ୍ଷମତାକୁ ବୃଦ୍ଧି କରିବାକୁ ଅଧିକରୁ ଅଧିକ ଆଗ୍ରହୀ ହୋଇ ପଡ଼ିଥିଲେ । କିୟେଭ୍ ପରିଣତ ହୋଇଥିଲା ରୁଷିଆର ରାଜନୈତିକ ଅଗ୍ରାଧିକାର ଲାଭ ପାଇଁ ସଂଗ୍ରାମରତ ପ୍ରତିଦ୍ୱନ୍ଦ୍ୱୀ ରାଜ୍ୟଗୁଡ଼ିକର କେନ୍ଦ୍ରରେ । ରାଜଦରବାରର ଘଟଣାପଞ୍ଜି ଏବଂ ଗିର୍ଜାମାନଙ୍କର ଘଟଣାପଞ୍ଜିର ପୃଷ୍ଠାଗୁଡ଼ିକ ଏହିସବୁ ସାମନ୍ତୀୟ ସଂଘର୍ଷର ଫଳାଫଳରେ ଭରପୂର ହୋଇ ରହିଛି । ଏଥି ସଙ୍ଗେ ସଙ୍ଗେ କାରିଗର ଏବଂ କୃଷକମାନଙ୍କ ଶ୍ରମ ଫଳରେ ଏକ ବୈଷୟିକ ସଂସ୍କୃତି ସୃଷ୍ଟି ହୋଇଥିଲା, ଯିଏକି ଅର୍ଥନୈତିକ ଦୃଷ୍ଟିରୁ ରୁଷିଆକୁ ୟୁରୋପର ରାଷ୍ଟ୍ରମାନଙ୍କ ମଧ୍ୟରେ ପ୍ରଥମ ସ୍ଥାନରେ ପ୍ରତିଷ୍ଠା କରିଥିଲା । ତେଣୁ ସାମନ୍ତୀୟ ଅନୈକ୍ୟକୁ କିୟେଭ୍ ରାଷ୍ଟ୍ରକୁ କେବଳ ଦୁର୍ବଳ କରି ଦେବା ଦୃଷ୍ଟିରୁ ବିଚାର କରାଯାଏ ନାହିଁ । ପ୍ରାଚୀନ ରୁଷିଆର ସାମନ୍ତବାଦ, ଅର୍ଥନୀତି ଏବଂ ସଂସ୍କୃତିର ବିକାଶ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ ସ୍ୱରୂପ ।

ପ୍ରାଚୀନ ରୁଷ୍ ରାଷ୍ଟ୍ରର ପତନ ପରେ ଭ୍ଲାଦିମିର୍-ସୁଜ୍‌ଦାଲ ରାଜ୍ୟ, ନୋଭ୍‌ଗୋରଦ ଅଞ୍ଚଳ ଓ ଗାଲିଚ୍-ଭୋଲିନିଆନ୍ ରାଜ୍ୟ ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲା । ଭ୍ଲାଦିମିର୍-ସୁଜ୍‌ଦାଲ ଏବଂ ନୋଭ୍‌ଗୋରଦ ଅଞ୍ଚଳଗୁଡ଼ିକର ଆକାର ତତ୍‌କାଳୀନ ସର୍ବାପେକ୍ଷା ବୃହତ୍ ୟୁରୋପୀୟ ରାଷ୍ଟ୍ରମାନଙ୍କ ଠାରୁ ବଡ଼ ଥିଲା ।

ନୋଭ୍‌ଗୋରଦରେ ବିଚ୍ଛିନ୍ନତାର ପ୍ରବଣତା ୧୧ଶ ଶତାବ୍ଦୀରେ ବାହାରକୁ ପ୍ରକାଶ ପାଇଥିଲା ଏବଂ ୧୨ଶ ଶତାବ୍ଦୀରେ ରାଷ୍ଟ୍ରର ମୁଖ୍ୟ ହିସାବରେ ରାଜାମାନେ ସେମାନଙ୍କ କ୍ଷମତା ହରାଇ ବସିଥିଲେ ଏବଂ ବାହାରୁ ଯେଉଁସବୁ ରାଜାମାନଙ୍କୁ ନିମନ୍ତ୍ରଣ କରି

ଅଣାଯାଇଥିଲା, ସେମାନେ କେବଳ ସାମରିକ ନେତା ରୂପେ କାର୍ଯ୍ୟ କରିଥିଲେ । ଏକ ସମ୍ଭ୍ରାନ୍ତୀୟ ପ୍ରଜାତନ୍ତ୍ର ଗଠିତ ହୋଇଥିଲା ମଧ୍ୟଯୁଗୀୟ ଇଟାଲୀୟ ନଗର ପ୍ରଜାତନ୍ତ୍ର ଢାଞ୍ଚାରେ । ଏଥିରେ କେବଳ ସାମନ୍ତ ଭୂସ୍ୱାମୀମାନଙ୍କର ନୁହେଁ, ଧନୀ ବଣିକମାନଙ୍କର ମଧ୍ୟ ବିପୁଳ ରାଜନୈତିକ କ୍ଷମତା ଥିଲା । ନଗରର ଉପର ସ୍ତରୀୟ ଲୋକଙ୍କର ପରିଷଦଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ପ୍ରଶ୍ନଗୁଡ଼ିକ ଉପରେ ସିଦ୍ଧାନ୍ତ ଗ୍ରହଣ କରୁଥିଲେ । ସାଧାରଣ ଲୋକେ, ନୋଭ୍‌ଗୋରଦର ସ୍ୱାଧୀନ ଲୋକମାନେ, ଅନେକ ସମୟରେ ରାଜନୈତିକ ଗୋଷ୍ଠୀଗୁଡ଼ିକ ମଧ୍ୟରେ ଚାଲିଥିବା ଲଢ଼େଇରେ ଅଂଶଗ୍ରହଣ କରୁଥିଲେ । ନୋଭ୍‌ଗୋରଦରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରୁଥିଲା ବୈଦେଶିକ ବାଣିଜ୍ୟ : ପୂର୍ବ ରୁଷିଆର ବିଭିନ୍ନ ଅଞ୍ଚଳରୁ ଏଠାକୁ ଖାଦ୍ୟଶସ୍ୟ ଆସୁଥିଲା ଏବଂ ସେସବୁ ଅଞ୍ଚଳ ସହିତ ଏହାର ସଂପର୍କ କେବେ ବିଚ୍ଛିନ୍ନ ହୋଇ ନଥିଲା । ପୂର୍ବ ୟୁରୋପ ଏବଂ ପଶ୍ଚିମ ୟୁରୋପରେ ବିଭିନ୍ନ ଅଞ୍ଚଳ ମଧ୍ୟରେ ନୋଭ୍‌ଗୋରଦ ଥିଲା ବାଣିଜ୍ୟିକ ଆଦାନ ପ୍ରଦାନର କେନ୍ଦ୍ରସ୍ଥଳୀ । ପ୍ରଥମୋକ୍ତ ଅଞ୍ଚଳଗୁଡ଼ିକ ମଧ୍ୟ ଦେଇ ପ୍ରାଚ୍ୟର ବିଭିନ୍ନ ଦେଶ ସହିତ ଏହି ବାଣିଜ୍ୟିକ ଯୋଗସୂତ୍ର ରହିଥିଲା । ପୂର୍ବ ୟୁରୋପର ଉତ୍ତର ଅଞ୍ଚଳରେ ବିସ୍ତୃତ ଭୂଖଣ୍ଡର ମାଲିକ ଥିଲେ ନୋଭ୍‌ଗୋରଦର ଲୋକେ । ସେସବୁ ସ୍ଥାନରୁ ସେମାନେ ପଶୁଲୋମ, ମହମ ଏବଂ ଅନ୍ୟାନ୍ୟ ପ୍ରକୃତିଜାତ ଜିନିଷ ରପ୍ତାନି କରୁଥିଲେ ଏବଂ ଆନ୍ତର୍ଜାତିକ ବଜାରରେ ଏସବୁର ମୂଲ୍ୟ ଥିଲା ଖୁବ୍ ବେଶି । ଫଳରେ ପୂର୍ବ ୟୁରୋପର (ସୋଭିଏତ୍ ୟୁନିଅନ୍‌ର ୟୁରୋପୀୟ ଅଂଶ) ଉତ୍ତରାଞ୍ଚଳରେ ଗଢ଼ି ଉଠିଥିଲା ରୁଷ୍ ଲୋକଙ୍କର ବସତିସବୁ ଏବଂ ରୁଷ୍ ସଂସ୍କୃତି ସେସବୁ ଅଞ୍ଚଳକୁ ବିସ୍ତାର ଲାଭ କରିଥିଲା । ନୋଭ୍‌ଗୋରଦ ଥିଲା ଉଚ୍ଚ ଧରଣର ନଗର ସଂସ୍କୃତିର ଏକ କେନ୍ଦ୍ର । ସଂପ୍ରତି ଆବିଷ୍କୃତ ହୋଇଥିବା ବାର୍ଚ୍ଚଗଛର ବକ୍କଳ ଉପରେ ଲିଖିତ ଚିଠିଗୁଡ଼ିକରୁ ଜଣାଯାଏ, ୧୦ମ ଶତାବ୍ଦୀ ବେଳକୁ ଏହି ରୁଷୀୟ ସହରରେ ଶିକ୍ଷାଦୀକ୍ଷାର ବ୍ୟାପକ ବିସ୍ତାର ଘଟିଥିଲା ।

ଗାଲିଚ୍ ଏବଂ ଭୋଲିନିଆନ୍ ରାଜ୍ୟ ଦୁଇଟି ୧୨ଶ ଶତାବ୍ଦୀରେ ଜଣେ ରାଜାଙ୍କ ଶାସନାଧୀନରେ ରହି ଅର୍ଥନୈତିକ ବିକାଶ ଲାଭ କରିଥିଲା । ପ୍ରାଚୀନ ରୁଷିଆର ଦକ୍ଷିଣ ଏବଂ ଦକ୍ଷିଣ-ପୂର୍ବ ଭୂଖଣ୍ଡଗୁଡ଼ିକ ଉପରେ ଯାଯାବରମାନଙ୍କର ଆକ୍ରମଣ ଏବଂ କିୟେଭ୍ ରାଜ୍ୟର ପତନ ଫଳରେ "ଭାରାଙ୍ଗିଆନ୍‌ରୁ ଗ୍ରୀକ୍ ପର୍ଯ୍ୟନ୍ତ" ପଡ଼ିଥିବା ପଥଟିର ଗୁରୁତ୍ୱ କମି ଯାଇଥିଲା ଏବଂ ବାଣିଜ୍ୟ ପଥଗୁଡ଼ିକ ଅପସରି ଯାଇଥିଲା ପଶ୍ଚିମକୁ । ଦକ୍ଷିଣ ଏବଂ ଦକ୍ଷିଣ-ପୂର୍ବ ରୁଷିଆରୁ ଗାଲିଚ୍ ଏବଂ ଭୋଲିନିଆନ୍ ରାଜ୍ୟଗୁଡ଼ିକୁ ଛୁଟିଥିଲା ଉଦ୍‌ବାସ୍ତୁମାନଙ୍କର ସୁଅ । ଏହି ରାଜ୍ୟ ଦୁଇ କେତେକ ରୁଷୀୟ ରାଜ୍ୟ ତଥା ପୋଲାଣ୍ଡ-ହଙ୍ଗେରିର ସୀମାରେ ଅବସ୍ଥିତ ଥିବାରୁ ମଧ୍ୟ ୟୁରୋପର ଆନ୍ତର୍ଜାତିକ ସଂପର୍କ କ୍ଷେତ୍ରରେ ଏକ ବଡ଼ ଭୂମିକା ସେତେବେଳେ ପାଳନ କରିଥିଲେ ।

ପ୍ରାଚୀନ ରୁଷ୍ ରାଷ୍ଟ୍ରର ଉତ୍ତର-ପୂର୍ବ ଭୂଖଣ୍ଡଗୁଡ଼ିକରେ ମଧ୍ୟ ଏହି ସମୟରେ ଲୋକ

ବସତିର ସ୍ଥାନାନ୍ତରଣ ଘଟୁଥିଲା । ଏହିସବୁ ଉର୍ବର ଭୂଖଣ୍ଡ ଷ୍ଟେପ୍‌ର ଯାଯାବରମାନେ ବାସ କରୁଥିବା ଅଞ୍ଚଳଗୁଡ଼ିକ ଠାରୁ ଅଭେଦ୍ୟ ବନଭୂମି ଦ୍ୱାରା ବିଚ୍ଛିନ୍ନ ଥିଲା । ଏଠାରେ ଏପରି ଏକ ସ୍ୱାଧୀନ ରାଜ୍ୟ ଗଢ଼ି ଉଠିଥିଲା, ଯିଏକି ପ୍ରାଚୀନ ରୁଷିଆର ସମସ୍ତ ଭୂଖଣ୍ଡ ସହିତ ସୁନାବ୍ୟା ନଦୀ ଦ୍ୱାରା ଯୁକ୍ତ ଥିଲା । ଏହାର ରାଜଧାନୀ ରୋଷ୍ଟଭ୍ ଭେଲିକିରୁ ସୁଜ୍‌ଦାଲକୁ ସ୍ଥାନାନ୍ତରିତ ହୋଇଥିଲା ଏବଂ ପରେ ହସ୍ତଶିଳ୍ପ ଆଉ ବାଣିଜ୍ୟର କେନ୍ଦ୍ରସ୍ଥଳୀ, କ୍ଲାଜ୍‌ମା ନଦୀ କୂଳବର୍ତ୍ତୀ ଭ୍ଲାଦିମିର୍‌କୁ ଚାଲି ଯାଇଥିଲା । ଭ୍ଲାଦିମିର୍ ମନୋମାଖ୍‌ଙ୍କ କନିଷ୍ଠ ପୁତ୍ର ଯୁବରାଜ ୟୁରି ଦୋଲଗୋରୁକି ଏହି ସହରର ପ୍ରତିଷ୍ଠାତା ହିସାବରେ ଖ୍ୟାତି ଲାଭ କରିଥିଲେ । ଘଟଣାପଞ୍ଜିରେ ସର୍ବପ୍ରଥମେ ୧୧୪୭ ଖ୍ରୀଷ୍ଟାବ୍ଦରେ ଉଲ୍ଲିଖିତ ମସ୍କୋ ସହରର ଦୁର୍ଗ ପ୍ରାଚୀର ସେ ପ୍ରଥମେ ନିର୍ମାଣ କରିଥିଲେ । କିୟେଭ୍‌ର ରାଜ ସିଂହାସନ ଲାଭ କରିବା ଥିଲା ୟୁରିଙ୍କ ଜୀବନର ଲକ୍ଷ୍ୟ ଏବଂ କିୟେଭ୍‌ର ରାଜା ହିସାବରେ ୧୧୫୭ ଖ୍ରୀଷ୍ଟାବ୍ଦରେ ସେ ମୃତ୍ୟୁବରଣ କରିଥିଲେ । ତାଙ୍କର ଜ୍ୟେଷ୍ଠ ପୁତ୍ର ଆନ୍ଦ୍ରେଇ ବୋଗୋଲ୍ୟୁବ୍‌ସ୍କି ଭ୍ଲାଦିମିର୍‌କୁ ତାଙ୍କ ରାଜ୍ୟର କେନ୍ଦ୍ରରେ ପରିଣତ କରିଥିଲେ ।

ଅନ୍ୟ ରାଷ୍ଟ୍ରମାନଙ୍କ ଠାରୁ ସ୍ୱାଧୀନ ଏବଂ ରୁଷିଆରେ ଶକ୍ତିର ଅନ୍ୟତମ ଏକ କେନ୍ଦ୍ର ରୂପେ ଭ୍ଲାଦିମିର୍‌କୁ ଗଢ଼ି ତୋଳିବା ପାଇଁ ଆନ୍ଦ୍ରେଇ କିୟେଭ୍‌ର ବିପରୀତରେ ତାକୁ ଗଢ଼ିବାକୁ ଉଦ୍ୟମ କରିଥିଲେ । ୟାରୋସ୍ଲାଭ୍‌ର କିୟେଭ୍ ରୁଷିଆ ଥିଲା ତାଙ୍କ ଆଗରେ ଏକ ଐତିହାସିକ ଉଦାହରଣ ସ୍ୱରୂପ । ତାଙ୍କର ପିତାମହ ଭ୍ଲାଦିମିର୍ ମନୋମାଖ୍ ସ୍ୱଳ୍ପ କାଳ ପାଇଁ ଏହାର ଐକ୍ୟ ପ୍ରତିଷ୍ଠା କରି ପାରିଥିଲେ । କିୟେଭ୍‌ର ସୁନା ଫାଟକ ଭଳି ଭ୍ଲାଦିମିର୍‌ରେ "ସୁନାର ଫାଟକମାନ" (ସୁନା ଦିଆ ତାମ୍ର ପାତରରେ ଛିଆ) ଏବଂ କିୟେଭ୍‌ର ସେଣ୍ଟ୍ ସୋଫିଆ ଗିର୍ଜା ଭଳି ବିରାଟ ଆସମ୍ପସନ୍ ଗିର୍ଜାକୁ ସେ ନିର୍ମାଣ କରିଥିଲେ । ବିଶେଷ ଭାବେ ସମ୍ମାନିତ ମେରୀ ଓ ଯିଶୁଙ୍କ ପ୍ରତିମାଟିକୁ କିୟେଭ୍‌ରୁ ଭ୍ଲାଦିମିର୍‌କୁ ସ୍ଥାନାନ୍ତରିତ କରାଯାଇଥିଲା । ମସ୍କୋ ସମ୍ମିଳିତ ରୁଷିଆର ରାଜଧାନୀ ପଞ୍ଚଦଶ ଶତାବ୍ଦୀର ଶେଷରେ ହେଲା ପରେ ଏହା ମସ୍କୋ କ୍ରେମ୍‌ଲିନ୍ ଆସମ୍ପସନ୍ ଗିର୍ଜାରେ ରଖା ହୋଇଥିଲା । ରାଜାଙ୍କର ଜନ୍ମ ସ୍ଥାନ ବୋଗୋଲ୍ୟୁବୋଭୋରେ (ଯେଉଁ ଆନ୍ଦ୍ରେଇ ସାମନ୍ତମାନଙ୍କର ଏକ ଷଡ଼ଯନ୍ତ୍ରର ଶିକାର ହୋଇଥିଲେ ୧୧୭୪ ଖ୍ରୀଷ୍ଟାବ୍ଦରେ) ବହୁ ଗିର୍ଜା ଏବଂ ପ୍ରାସାଦ ନିର୍ମାଣ ଆରମ୍ଭ ହୋଇଥିଲା । ଭ୍ଲାଦିମିର୍ ଯେ କିୟେଭ୍‌ର ଐତିହାସିକ ଉତ୍ତରାଧୀକାରୀ ଏବଂ ପ୍ରାଚୀନ ରୁଷ୍ ରାଷ୍ଟ୍ରକୁ ଐକ୍ୟବଦ୍ଧ କରିବାର ନୀତି ଅନୁସରଣ କରିବେ ବୋଲି ଘଟଣାପଞ୍ଜିରେ ବାରମ୍ବାର ପରିଷ୍କାର ଭାବେ କୁହାଯାଇଛି ।

ବିପୁଳ ଅଭିଳାଷୀ ଏବଂ ଦୁର୍ଦ୍ଦାନ୍ତ ମନୋଭାବ ସଂପନ୍ନ ଆନ୍ଦ୍ରେଇ ରୁଷିଆର ଉତ୍ତର-ପୂର୍ବ ଭୂଖଣ୍ଡର ରାଜାମାନଙ୍କର ମନମାଫିକ୍ କାରବାରକୁ ଧୂଳିସାତ୍ କରି ଅନ୍ୟାନ୍ୟ ଛୋଟ ଛୋଟ ରାଜ୍ୟକୁ ପଦାନତ କରିବାକୁ ଚାହିଁଥିଲେ । ପୁରାତନ ସମ୍ଭ୍ରାନ୍ତମାନଙ୍କ ସ୍ଥାନରେ ସେ

ନୂତନ ଲୋକଙ୍କୁ ପସନ୍ଦ କରୁଥିଲେ, ଯେଉଁମାନେ କି ଜମି ବା ଭତ୍ତା ଦ୍ୱାରା ତାଙ୍କ ପାଖରେ ବାନ୍ଧି ହୋଇ ରହିବେ । ଆନ୍ଦ୍ରେଇଙ୍କ କନିଷ୍ଠ ଭ୍ରାତା ଭ୍‌ସେଭୋଲୋଦ୍ ବଲଶୋଇ ଗ୍‌ନେଜ୍‌ଦୋ (ବୃହତ୍ ବସା, ରାଜତ୍ୱକାଳ ୧୧୭୬-୧୨୧୨) ସଫଳତାର ସହିତ ଏହି ଏକାଗ୍ରଚିତ୍ତ ନୀତିକୁ ଅନୁସରଣ କରି ଯାଇଥିଲେ ଏବଂ ରୁଷିଆର ଶାସକମାନଙ୍କ ମଧ୍ୟରେ ସେ ପ୍ରଥମ ଭାବେ "ସମଗ୍ର ରୁଷିଆର ମହାରାଜା" ନାମ ଧାରଣ କରିଥିଲେ । ତାଙ୍କ ଜୀବନ କାଳରେ ରଚିତ "ଇଗୋରଙ୍କ ଅତିଥିସତ୍କାରକଙ୍କ ଲେଖାରୁ" ଜାଣିବାକୁ ମିଳେ ଯେ, ଭ୍‌ସେଭୋଲୋଦ୍ ଥିଲେ ସର୍ବାଧିକ ଶକ୍ତିଶାଳୀ ଶାସକ, ଯାହାଙ୍କର ସୈନ୍ୟମାନେ ସେମାନଙ୍କ ଆହୁଲ ସାହାଯ୍ୟରେ ଭୋଲ୍‌ଗା ନଦୀର ପାଣିକୁ ବିଭାଗ କରି ଦେଉଥିଲେ ଏବଂ ଶିରସ୍ତ୍ରାଣ ସାହାଯ୍ୟରେ ଦନ୍ ନଦୀକୁ ଶୁଖେଇ ଦେଉଥିଲେ । ଭବିଷ୍ୟତର ଐକ୍ୟବଦ୍ଧ ରୁଷିଆର କୋଷ କେନ୍ଦ୍ରରେ ପରିଣତ ହୋଇଥିଲା ଭ୍ଲାଦିମିର୍‌-ସୁଜ୍‌ଦାଲ ।

୧୩ଶ ଶତାବ୍ଦୀର ପ୍ରାରମ୍ଭଟି ଥିଲା ଏକ ସାଂସ୍କୃତିକ ଉତ୍‌ଥାନର କାଳ (ବିଶେଷ କରି ନୂତନ ରାଜନୈତିକ କେନ୍ଦ୍ରମାନଙ୍କରେ), ଯାହାକୁ ସାମନ୍ତବାଦୀ ଯୁଦ୍ଧସମୂହ ବି ରୋକି ପାରି ନଥିଲା । ଦ୍ୱାଦଶ ଶତାବ୍ଦୀର ବିଶ୍ୱ ସାହିତ୍ୟ କ୍ଷେତ୍ରରେ ଏକ ବିରାଟ ସ୍ତମ୍ଭ ରୂପେ ବିବେଚିତ "ଇଗୋରଙ୍କ ଅତିଥିସତ୍କାରଙ୍କ ଗାଥା"ରେ ପୋଲୋଭତ୍‌ସି ବିରୁଦ୍ଧରେ ଦକ୍ଷିଣର ରାଜନ୍ୟବର୍ଗଙ୍କର ଏକ ଯୁଦ୍ଧାଭିଯାନ କଥା ବର୍ଣ୍ଣିତ ହୋଇଛି । ସେମାନେ ରୁଷିଆର ସମସ୍ତ ରାଜନ୍ୟବର୍ଗଙ୍କୁ ଆହ୍ୱାନ ଦେଇଛନ୍ତି ରୁଷ୍ ଭୂମିକୁ ରକ୍ଷା କରିବା ନିମିତ୍ତ ଐକ୍ୟବଦ୍ଧ ହେବାକୁ । ଦେଶର ବର୍ତ୍ତମାନ ସହିତ ଐତିହାସିକ ଅତୀତର ନିବିଡ଼ ଯୋଗସୂତ୍ର ଏଥିରେ ଦେଖିବାକୁ ମିଳିଥାଏ । ଏହାର ପ୍ରତିଟି ପଂକ୍ତିରେ ଭରି ରହିଛି ଇତିହାସର ଆତ୍ମପ୍ରେରଣା । କାବ୍ୟଟି କ୍ଷୁଦ୍ର ହେଲେ ମଧ୍ୟ ଏହା ଏକ ଅତିମାନବିକ ରଚନା ଏବଂ ଏଥିରେ ସ୍ୱଦେଶ ପ୍ରତି ଉଚ୍ଚ ସମ୍ମାନ ଏବଂ ସୈନିକର କର୍ତ୍ତବ୍ୟରାଜି ଏବଂ ପ୍ରକୃତି ପ୍ରତି ଅତି ସଚେତନତା ପ୍ରକଟିତ ହୋଇଛି । ଏସବୁ ଛଡ଼ା ଇଗୋରଙ୍କ ପତିପ୍ରାଣା ସ୍ତ୍ରୀ, ୟାରୋସ୍ଲାଭ୍‌ନାଙ୍କ ଚରିତ୍ରରେ ପ୍ରକାଶ ପାଇଛି ସେ ଯୁଗର ନୈତିକ ଆଦର୍ଶରାଜି ।

ଭେଲିକି ନୋଭ୍‌ଗୋରଦର ସୁଦୃଢ଼ ଗିର୍ଜାସମୂହ (ଅନେକ କ୍ଷେତ୍ରରେ ଆଶ୍ଚର୍ଯ୍ୟଜନକ ଫ୍ରେସ୍‌କୋ ଦ୍ୱାରା ସୁସଜ୍ଜିତ), ଭ୍ଲାଦିମିର୍‌ର ବିଶାଳ ବିଶାଳ ଗିର୍ଜା ଏବଂ ଦକ୍ଷିଣ ଓ ଉତ୍ତର ରୁଷିଆର ଅନ୍ୟାନ୍ୟ ସହରଗୁଡ଼ିକର ଗିର୍ଜାସମୂହ, କ୍ରମଶଃ ଅଧିକରୁ ଅଧିକ ସାମ୍ବାଦିକତା ସଂବନ୍ଧୀୟ ଘଟଣାପଞ୍ଜି, ବହୁବିଧ ଅନୂଦିତ ଗ୍ରନ୍ଥାବଳୀ, "ସନ୍ଥ ଦାନିଏଲ୍‌ଙ୍କ ବାଣୀ" – ୧୨ଶ ଶତାବ୍ଦୀର ବିଖ୍ୟାତ ସାହିତ୍ୟିକ ମିନାର, ଯିଏକି ରାଜାଙ୍କ ଦୃଢ଼ ଶକ୍ତିର ସୁବିଧାକୁ ସ୍ୱୀକାର କରିଛି, ନୋଭ୍‌ଗୋରଦ ତଥା ଅନ୍ୟାନ୍ୟ ସହରର ବାର୍ଚ୍ଚ ଗଛର ବକ୍କଲରେ ଲିଖିତ ପତ୍ରାବଳୀ, ଯିଏକି ସାଧାରଣ ଲୋକଙ୍କ ଦୈନନ୍ଦିନ ଜୀବନକୁ ପ୍ରକାଶ କରିଛି – କେତେକ ଲିଖିତ ପାଣ୍ଡୁଲିପିକୁ ଛାଡ଼ି ଦେଲେ ରୁଷ୍ ସଂସ୍କୃତିର ଅମୂଲ୍ୟ ସଂପଦକୁ ପ୍ରାଚ୍ୟର ଯାଯାବରମାନେ ଧ୍ୱଂସ କରି ଦେଇଥିଲେ ।

# ୪ର୍ଥ ପରିଚ୍ଛେଦ

## ହୋର୍ଦ୍ଦେମାନଙ୍କ ଅତ୍ୟାଗ୍ର ଯୁଗ

ଏସିଆ ଏବଂ ୟୁରୋପର ଦେଶମାନଙ୍କ ଉପରେ ତାତାର-ମଙ୍ଗୋଲମାନଙ୍କ ଆକ୍ରମଣ ଇତିପୂର୍ବରୁ ଯାଯାବର ଉପଜାତିମାନଙ୍କ ଆକ୍ରମଣର ବ୍ୟାପକତା ଆଉ ବିଧ୍ୱଂସକୁ ଟପି ଯାଇଥିଲା । ତ୍ରୟୋଦଶ ଶତାବ୍ଦୀରେ ତାତାର-ମଙ୍ଗୋଲମାନେ ସାମନ୍ତବାଦୀ ସଂପର୍କରାଜିର ଗଠନ ପର୍ବ ଦେଇ ଗତି କରୁଥିଲେ । ଏହି ସମୟରେ ସେମାନଙ୍କ ମଧ୍ୟରେ ଜଣେ ପ୍ରତିଭାବାନ ନୃଶଂସ ନେତାଙ୍କର ଆବିର୍ଭାବ ଘଟିଥିଲା, ତାଙ୍କ ନାମ ହେଉଛି ଚିଙ୍ଗିଜ୍ ଖାଁ । ସେ ୧୨୦୬ ମସିହାରେ ନିଜକୁ ଏକ ବିରାଟ ସାମ୍ରାଜ୍ୟର ଏକଛତ୍ର ଶାସକ ବୋଲି ଘୋଷଣା କରିଥିଲେ । ଉତ୍ତର ଚୀନ୍ ଉପରେ ନିଜର କ୍ଷମତା ପ୍ରତିଷ୍ଠା କଲା ପରେ ସେ ମଧ୍ୟ ଏସିଆ ଜୟ କରି ନେଇଥିଲେ (ସେସବୁ ସ୍ଥାନରେ ସହର ଆଉ ଉନ୍ନତ କୃଷିଭୂମିକୁ ତୃଣଭୂମିରେ ପରିଣତ କରାଯାଇଥିଲା) । ଏହାର କିଛି ବର୍ଷ ପରେ ତାଙ୍କର ଛାମୁବାହିନୀ କାଲ୍‌କା ନଦୀ ତଟରେ ଦକ୍ଷିଣ ରୁଷ୍‌ର ରାଜାମାନଙ୍କ ସେନାବାହିନୀର ସମ୍ମୁଖୀନ ହୋଇଥିଲା । ଏସିଆ ଏବଂ ୟୁରୋପର ଦେଶମାନଙ୍କର ସାମନ୍ତବାଦୀ ବିଖଣ୍ଡୀକରଣ ସେମାନଙ୍କୁ ତାତାର-ମଙ୍ଗୋଲମାଙ୍କ ଅଶ୍ୱାରୋହୀ ବାହିନୀକୁ ବାଧା ଦେବାରେ ବାଧା ହୋଇ ଛିଡ଼ା ହୋଇଥିଲା । ଏହିସବୁ ତାତାର-ମଙ୍ଗୋଲମାନେ ଜଣେ ସେନାପତିଙ୍କ ଅଧୀନରେ ପରିଚାଳିତ ହେଉଥିଲେ ଏବଂ ଏସିଆ ଏବଂ ୟୁରୋପର ସେନାବାହିନୀ ସମକକ୍ଷ ଏବଂ ଐକ୍ୟବଦ୍ଧ ଏକ ସାମରିକ ଶକ୍ତି ନଥିଲେ ।

ସଂଖ୍ୟାଗତ ଦିଗରୁ ତାତାର-ମଙ୍ଗୋଲମାନେ ଅନ୍ୟମାନଙ୍କ ଠାରୁ ଆଗରେ ଥିଲେ । ସେମାନେ କୌଶଳର ସହିତ ସୁପ୍ରସ୍ତୁତ ଅଗ୍ରନକ ଆକ୍ରମଣ କରୁଥିଲେ ଏବଂ ସେମାନଙ୍କ ଦ୍ୱାରା ବିଜିତ ଚୀନାମାନଙ୍କର ସାମରିକ କୌଶଳ କ୍ଷେତ୍ରରେ ଅର୍ଜିତ କୃତିରାଜିକୁ ସୁବ୍ୟବହାର କରୁଥିଲେ । ଚିଙ୍ଗିଜ୍ ଖାଁଙ୍କ ଉତ୍ତରାଧିକାରୀମାନେ ଟ୍ରାନ୍‌ସକକେସିଆ ଆକ୍ରମଣ କରି ଛାରଖାର କରି ଦେଇଥିଲେ ଏବଂ ୧୨୩୬ ମସିହାରେ ଚିଙ୍ଗିଜ୍ ଖାଁଙ୍କ ନାତି ବାଟୁଙ୍କ ଅଶ୍ୱାରୋହୀ (ସେ ମଧ୍ୟ ତାଙ୍କ ପିତାମହଙ୍କ ଭଳି ଅତ୍ୟନ୍ତ ନୃଶଂସ ଥିଲେ)

ବାହିନୀ ପୂର୍ବ ୟୁରୋପ ମୁଖରେ ଯାତ୍ରାରମ୍ଭ କରିଥିଲା । ସେମାନଙ୍କ ସଂଖ୍ୟା ୧୨୦,୦୦୦ – ୧୪୦,୦୦୦ ଅଶ୍ୱାରୋହୀରୁ କମ୍ ନଥିଲା । କେବଳ ଯୋଦ୍ଧାମାନେ ଏହି ଯୁଦ୍ଧାଭିଯାନରେ ଯୋଗ ଦେଇ ନଥିଲେ, ସେମାନଙ୍କ ସହିତ ଯୋଗ ଦେଇଥିଲେ ଖାଁଙ୍କ ଦ୍ୱାରା ଶାସିତ ସମସ୍ତ ତାତାର-ମଙ୍ଗୋଲ, ବହୁ ପଶୁପଲ, ଶିଶୁ ଆଉ ସ୍ତ୍ରୀଲୋକମାନଙ୍କ ସମେତ ହଜାର ହଜାର ଶକଟ ଏବଂ ବିଜିତ ଜାତିମାନଙ୍କ ମଧ୍ୟରୁ ବନ୍ଦୀ ବହୁ ଦାସଦାସୀ। ଜଣେ ସମକାଳୀନ ବିବରଣୀକାରଙ୍କ ଭାଷାରେ, "ଏହିସବୁ ଅଗଣିତ ଯୋଦ୍ଧାମାନଙ୍କ ପଦଧ୍ୱନିରେ ପୃଥିବୀ ଗଁଗଁ କରି ଚିତ୍କାର କରୁଥିଲା ଏବଂ ବନ୍ୟ ପଶୁ ଏବଂ ରାତ୍ରୀର ପକ୍ଷୀ ସେମାନେ ଭୟରେ ଉଡ଼ି ପଳାଉଥିଲେ ।" ବରଫ ଉପର ଦେଇ ଭୋଲ୍‌ଗା ନଦୀକୁ ପାରି ହେଲା ପରେ ବାଟୁଙ୍କ ଯାଯାବର ବାହିନୀ ପ୍ରଥମେ ର୍‌ୟାଜାନ୍ ରାଜ୍ୟ ଆକ୍ରମଣ କରିଥିଲେ । ରୁଷ୍ ଲୋକମାନଙ୍କର ଅପୂର୍ବ ସାହସ (କେବଳ ସୈନ୍ୟମାନେ ନୁହନ୍ତି, ସମସ୍ତ ସାଧାରଣ ଅଧିବାସୀମାନେ ଏହି ସଶସ୍ତ୍ର ପ୍ରତିରୋଧରେ ଅଂଶଗ୍ରହଣ କରିଥିଲେ), କିମ୍ବା ସହରର ସୁଦୃଢ଼ ପ୍ରାଚୀର ଏହି ଆକ୍ରମଣକାରୀମାନଙ୍କୁ ରୋକି ପାରି ନଥିଲା । ଚୀନ୍‌ର କମାଣ ଆଘାତକୁ ପ୍ରତିରକ୍ଷା ବ୍ୟୂହ ପ୍ରତିହତ କରି ପାରିଲା ନାହିଁ, ଗୋଟାକ ପରେ ଗୋଟାଏ ସହରକୁ ଜାଳି ପୋଡ଼ି ଧ୍ୱଂସ କରି ଦିଆଗଲା ଏବଂ ମୃତ ଲୋକମାନଙ୍କୁ କବର ନେବା ପାଇଁ କେହି ରହିଲେ ନାହିଁ । ଭ୍ଲାଦିମିର୍ ରାଜାଙ୍କର ସେନାବାହିନୀ ୧୨୩୮ ମସିହାରେ ଧୂଳିସାତ୍ ହୋଇଗଲେ ଏବଂ ସେମାନଙ୍କ ସହିତ ମୃତ୍ୟୁବରଣ କରିଥିଲେ ସ୍ୱୟଂ ରାଜା ଏବଂ ଯୋଦ୍ଧାମାନେ । ଆକ୍ରମଣକାରୀମାନେ ନୋଭ୍‌ଗୋରଦ ଠାରୁ ୨୦୦ କିଲୋମିଟର ଦୂରରେ ଦକ୍ଷିଣକୁ ଗତି କରିଥିଲେ । ବଟୁଙ୍କ ସୈନ୍ୟମାନଙ୍କୁ ସାତ ସପ୍ତାହ ଧରି ରୋକିଥିଲେ କୋଜେଲ୍‌ସ୍କ ନାମକ ଏକ ଛୋଟ ସହରର ଅଧିବାସୀମାନେ । ଏହି ସହରର ଶେଷ ଅଧିବାସୀଟି ବଞ୍ଚିଥିଲା ପର୍ଯ୍ୟନ୍ତ ସେମାନେ ଏହି ପ୍ରତିରୋଧ ଚଳାଇ ଯାଇଥିଲେ । ଆକ୍ରମଣକାରୀମାନେ କୋଜେଲ୍‌ସ୍କକୁ "କ୍ରୋଧୀ ସହର" ବୋଲି ନାମିତ କରିଥିଲେ । ୧୨୩୯ ଏବଂ ୧୨୪୦ ଖ୍ରୀଷ୍ଟାବ୍ଦରେ ବାଟୁ ଜୟ କରି ନେଇଥିଲେ ଦକ୍ଷିଣ ରୁଷ୍‌କୁ, ଚେର୍ଣ୍ଣିଗୋଭ୍ ଏବଂ କିୟେଭ୍‌କୁ ଲୁଣ୍ଠନ କରି ଜାଳି ପୋଡ଼ି ଦିଆଯାଇଥିଲା । ଏହାର ଛଅ ବର୍ଷ ପରେ ରୋମ୍‌ର ପୋପ୍‌ଙ୍କ ଦ୍ୱାରା ପ୍ରେରିତ ଜଣେ ସନ୍ନ୍ୟାସୀ କିୟେଭ୍ ପରିଦର୍ଶନ କଲା ବେଳେ ସହରରେ ମାତ୍ର ୨୦୦ଟି ଗୃହ ବର୍ତ୍ତୀ ଯାଇଛି ବୋଲି ଉଲ୍ଲେଖ କରିଥିଲେ ।

ତା'ପରେ ବାଟୁ ଆଗେଇଥିଲେ ପଶ୍ଚିମକୁ । ୟୁରୋପ ଭୟରେ ଥରହର ହୋଇ ଉଠିଥିଲା । କିନ୍ତୁ ରୁଷିଆରେ ସଂଘଟିତ ଯୁଦ୍ଧରେ ବାଟୁଙ୍କ ଶକ୍ତି ଏତେ ଦୁର୍ବଳ ହୋଇ ଯାଇଥିଲା ଯେ, ଚେକ୍ ରାଜା ଭାସ୍ଲାଭ୍‌ଙ୍କ ସେନାବାହିନୀ ଓଲୋମୌସ ଠାରେ ବାଟୁଙ୍କୁ ରୋକି ଦେଇଥିଲେ ଏବଂ ସେ ପଛକୁ ଫେରି ଆସିଥିଲେ କାସ୍ପିଆନ ସାଗର ଉପକୂଳବର୍ତ୍ତୀ ଷ୍ଟେପ୍ ଅଞ୍ଚଳକୁ । ସେ ଭୟ କରୁଥିଲେ ତାଙ୍କର ପଶ୍ଚାଦ୍‌ଭୂମିରେ ଥିବା ଅବନୀତ ରୁଷିଆକୁ ।

ଏହା ବିଧ୍ୱସ୍ତ ଓ ରକ୍ତାକ୍ତ ହେଲେ ମଧ୍ୟ, ଅବନତ ହୋଇ ନଥିଲା, ପ୍ରତିରୋଧ ଦୃଷ୍ଟିରୁ ଭୟଙ୍କର ଥିଲା ।

ରୁଷିଆ ଦୁର୍ବଳ ହୋଇ ପଡ଼ିବାର ସୁଯୋଗ ନେଇ ପୂର୍ବ-ବଲ୍‌ଟିକ୍ ଅଞ୍ଚଳକୁ ଇତିପୂର୍ବରୁ ଜୟ କରି ନେଇଥିବା ଲିଭୋନୀୟ ଅର୍ଡର ବୀର ସାମନ୍ତ ଏବଂ ସୁଇଡେନ୍‌ର ସାମନ୍ତ ପ୍ରଭୁମାନେ ନୋଭ୍‌ଗୋରଦ ଅଞ୍ଚଳ ଆକ୍ରମଣ କରିଥିଲେ । ରୋମ୍ କାଥ୍‌ଲିକ୍ କ୍ୟୁରିଆ ସେମାନଙ୍କ କ୍ରିୟାକଳାପକୁ ଅନୁପ୍ରେରଣା ଦେବା ସଙ୍ଗେ ସଙ୍ଗେ ନିର୍ଦ୍ଦେଶନା ଦେଇଥିଲେ । ୧୨୪୦ ଖ୍ରୀଷ୍ଟାବ୍ଦରେ ନେଭା ନଦୀ ତୀରରେ ସୁଇଡେନ୍‌ର ବୀର ସାମନ୍ତମାନଙ୍କୁ ପରାଜିତ କରିଥିଲେ ନୋଭ୍‌ଗୋରଦର ତରୁଣ ରାଜା ଆଲେକ୍‌ଜାଣ୍ଡାର (ଭ୍‌ସେଭୋଲୋଦ୍ ବଲଶୋଇ ଗ୍‌ନେଜ୍‌ଦୋଙ୍କ ନାତି) । ଏହି ବିଜୟ ପରେ ତାଙ୍କୁ ଘୋଷଣା କରାଯାଇଥିଲା ଆଲେକ୍‌ଜାଣ୍ଡାର ନେଭ୍‌ସ୍କି ବୋଲି । ୧୨୪୨ ଖ୍ରୀଷ୍ଟାବ୍ଦରେ ତାଙ୍କ ନେତୃତ୍ୱରେ ପରିଚାଳିତ ସେନାଦଳଟି ଜର୍ମାନ୍ ସାମନ୍ତମାନଙ୍କର ଅଶ୍ୱାରୋହୀ ବାହିନୀକୁ ବରଫାବୃତ ଚୁଦ୍‌ସ୍କୋୟେ ହ୍ରଦ ଉପରେ ବିପୁଳ ସାମରିକ କୌଶଳ ସହକାରେ ଧ୍ୱଂସ କରି ଦେଇଥିଲା । ଜର୍ମାନ୍ ଅଶ୍ୱାରୋହୀ ସୈନ୍ୟମାନେ ଏକ କୀଳକାକୃତି ବିନ୍ୟାସରେ ଦଣ୍ଡାୟମାନ ହୋଇଥିଲେ ଏବଂ ସେତେବେଳେ ଏତାଦୃଶ ବିନ୍ୟାସକୁ ଅପରାଜିତ ବୋଲି ମନେ କରାଯାଉଥିଲା । ଏମାନଙ୍କ ବିରୁଦ୍ଧରେ ଦୁଇ ପାର୍ଶ୍ୱରେ ଶକ୍ତିଶାଳୀ ସୈନ୍ୟ ସମେତ ଏକ ସଂରକ୍ଷିତ ସେନାବାହିନୀ ଲଢ଼େଇ କରିଥିଲେ । ଏହା ସେତେବେଳେ ଏପରି ଏକ ଯୁଦ୍ଧ ଥିଲା, ଯେଉଁଥିରେ ଏକ ଶକ୍ତିଶାଳୀ ଅଶ୍ୱାରୋହୀ ବାହିନୀକୁ ଏଭଳି ଏକ ସେନାବାହିନୀ ପରାଜିତ କରି ଦେଇଥିଲା, ଯା'ର ଅଧିକାଂଶ ଅଂଶଟି ଥିଲେ ପଦାତିକ ସୈନ୍ୟ । ରୁଷୀୟମାନଙ୍କର ଦୁରବସ୍ଥା ଏବଂ ପରାଜୟ କାଳରେ ଏହି ବିଜୟଟି ସେମାନଙ୍କୁ ଦେଇଥିଲା ଅକଳନ ନୈତିକ ବଳ । ଏହି ଯୁଦ୍ଧଟିର ତାତ୍ପର୍ଯ୍ୟ ମଧ୍ୟ ବିରାଟ ଥିଲା, ଏହା ଜର୍ମାନ୍ ସାମନ୍ତମାନଙ୍କର ପୂର୍ବ ଦିଗକୁ ଗତି କରିବାକୁ ପ୍ରତିହତ କରି ଦେଇଥିଲା । ତେବେ ବର୍ତ୍ତମାନର ଲାଟ୍‌ଭିଆ ଏବଂ ଏସ୍ତୋନିଆ ନାମରେ ପରିଚିତ ଭୂଖଣ୍ଡରେ ବାସ କରୁଥିବା ବଲ୍‌ଟିକ୍ ଜାତିମାନଙ୍କୁ ବିଦେଶୀ ସାମନ୍ତମାନଙ୍କ ଅଧୀନରେ ଆଉରି ପଞ୍ଚଶହ ବର୍ଷ ରହିବାକୁ ପଡ଼ିଥିଲା ।

ମଙ୍ଗୋଲମାନଙ୍କ ଦ୍ୱାରା ବିଜିତ ଦେଶଗୁଡ଼ିକରେ, ଯେଉଁଠି ଯାଯାବର ପଶୁପାଳନ ପାଇଁ ଅନୁକୂଳ ଅବସ୍ଥା ଥିଲା (ମଧ୍ୟ ଏସିଆ, କାସ୍ପିଆନ୍ ସାଗର ଅଞ୍ଚଳ ଏବଂ କୃଷ୍ଣ ସାଗରର ଉତ୍ତରାଞ୍ଚଳ) ସେସବୁ ଭୂଖଣ୍ଡରେ ଗଢ଼ି ଉଠିଥିଲା ମଙ୍ଗୋଲ ରାଷ୍ଟ୍ରସବୁ ବା ମଙ୍ଗୋଲମାନଙ୍କ ବାସସ୍ଥଳୀ ।

ମଙ୍ଗୋଲ ଦଳମାନଙ୍କର ଆକ୍ରମଣ ଏବଂ ତୀବ୍ର ବିଦେଶୀ ନିର୍ଯାତନ ପ୍ରାୟ ଅଢ଼େଇ ଶହ ବର୍ଷ ପର୍ଯ୍ୟନ୍ତ (ପୂର୍ବ ୟୁରୋପରେ — ତାତାର-ମଙ୍ଗୋଲ ସୁବର୍ଣ୍ଣ ହୋର୍ଦ୍ଦେର ପୂର୍ବାଞ୍ଚଳ) ତା'ର ଭୟଙ୍କର ରାଜତ୍ୱ ସହ ଚାଲିଥିଲା । ଏହି ସମୟ ରୁଷୀୟମାନଙ୍କୁ

ବ୍ୟାପକ ଭାବେ ହତ୍ୟା କରାଯାଇଥିଲା, ବିପୁଳ ପରିମାଣର ବୈଷୟିକ ସଂପଦ ଲୁଣ୍ଠିତ, ଚାରଖାର ହୋଇଥିଲା, ଦେଶର ଉତ୍ପାଦିକା ଶକ୍ତିସମୂହ ଧ୍ୱଂସ ପାଇ ଯାଇଥିଲା । ବହୁ ସହର ଏବଂ ଗ୍ରାମ ଧୂଳିସାତ୍ ହୋଇଗଲା ଏବଂ ଅଧିକାଂଶ କୃଷି ଜମି ଉପରେ ଛାଇ ହୋଇ ଯାଇଥିଲା ଜଙ୍ଗଲ । ଅଧିକାଂଶ ରୁଷୀୟ ହସ୍ତଶିଳ୍ପ ଲୋପ ପାଇ ଯାଇଥିଲା । କାରିଗରୀର ବହୁ ଗୋପନ ରହସ୍ୟ ଲୋପ ପାଇଗଲା ଏବଂ ପ୍ରସ୍ତର ସ୍ଥାପତ୍ୟ ଅନେକ ଦିନ ପର୍ଯ୍ୟନ୍ତ ବନ୍ଦ ହୋଇଗଲା ।

ରୁଷ୍ ରାଜ୍ୟଗୁଡ଼ିକ ସୁବର୍ଣ୍ଣ ହୋର୍ଡ଼େର ଅନ୍ତର୍ଭୁକ୍ତ ନହେଲେ ମଧ୍ୟ ତାତାର-ମଙ୍ଗୋଲମାନଙ୍କ ରାଜତ୍ୱ ଥିଲା ରୁଷ୍ ଲୋକଙ୍କ ପକ୍ଷରେ ଭୟଙ୍କର ଦୁର୍ଯୋଗ ସ୍ୱରୂପ । ରୁଷ୍ ରାଜାମାନେ ସୁବର୍ଣ୍ଣ ହୋର୍ଡ଼େର ଖାଁଙ୍କର କରଦରାଜା ଥିଲେ । ଏହିସବୁ ରାଜ୍ୟର ଲୋକମାନଙ୍କ ଉପରେ ହୋର୍ଡ଼େର ରାଜପ୍ରତିନିଧି ବସ୍କାକସ୍ ଅତିମାତ୍ରାରେ କର ଧାର୍ଯ୍ୟ କରିଥିଲେ ଏବଂ ଲୋକଙ୍କୁ ବାଧ୍ୟ କରାଯାଉଥିଲା ଦେବା ପାଇଁ । ତାତାର-ମଙ୍ଗୋଲ ସୈନ୍ୟମାନେ ବାରମ୍ବାର ରୁଷୀୟ ସହର ଏବଂ ଗ୍ରାମ ଉପରେ ଚଢ଼ଉ କରୁଥିଲେ । ଲୋକଙ୍କ ଧନସଂପଦକୁ ସେମାନେ ଲୁଣ୍ଠନ କରୁଥିଲେ ଏବଂ ଅନେକଙ୍କୁ କ୍ରୀତଦାସ କରି ବାନ୍ଧି ନେଉଥିଲେ । ଏହି ଅତ୍ୟାଚାର ବିରୁଦ୍ଧରେ କୌଣସି ଅଭ୍ୟୁତ୍‌ଥାନ ଦେଖା ଦେଲେ, ନିର୍ମମ ଭାବେ ସେମାନେ ଦମନ କରି ଲୋକଙ୍କ ମଧ୍ୟରେ ଆତଙ୍କ ସୃଷ୍ଟି କରୁଥିଲେ । କିନ୍ତୁ ସେସବୁ ଗଣହତ୍ୟା ରୁଷ୍ ଜାତିମାନଙ୍କର ମୁକ୍ତି ସଂଗ୍ରାମକୁ ଲୋପ କରି ପାରି ନଥିଲା । ୧୩ଶ ଶତାବ୍ଦୀର ଶେଷ ଭାଗରେ ହୋର୍ଡ଼େ ସରକାର ରୁଷ୍ ରାଜାମାନଙ୍କୁ କର ଆଦାୟର ଦାୟିତ୍ୱ ହସ୍ତାନ୍ତର କରିବାକୁ ବାଧ୍ୟ ହୋଇଥିଲା ଏବଂ ସହରମାନଙ୍କରେ ଥିବା ପ୍ରତିନିଧିମାନଙ୍କୁ ଫେରସ୍ତ ନେଇ ଯାଇଥିଲା ।

୧୩ଶ ଶତାବ୍ଦୀ ଏବଂ ୧୪ଶ ଶତାବ୍ଦୀର ପ୍ରାରମ୍ଭରେ ଦେଶର ରାଜନୈତିକ ବିଖଣ୍ଡନ ବୃଦ୍ଧି ପାଇଥିଲା । ଭ୍ଲାଦିମିର୍ ବଡ଼ ରାଜ୍ୟଟି ବହୁ ଛୋଟ ଛୋଟ ରାଜ୍ୟରେ ବିଭକ୍ତ ହୋଇ ପଡ଼ିଥିଲା ଏବଂ ରାଜ ପରିବାରର ଲୋକେ ସେସବୁକୁ ରାଜତ୍ୱ କରୁଥିଲେ । ବିଭିନ୍ନ ଅଞ୍ଚଳ ମଧ୍ୟରେ ଥିବା ରାଜନୈତିକ ଯୋଗସୂତ୍ରକୁ ଦୁର୍ବଳ କରି ଦେଇଥିଲା ବିଦେଶୀ ଶାସନ ଏବଂ ଦକ୍ଷିଣବର୍ତ୍ତୀ ରୁଷ୍ ଉତ୍ତରବର୍ତ୍ତୀ ରୁଷ୍ ଠାରୁ ଆଉରି ଅଧିକ ବିଚ୍ଛିନ୍ନ ହୋଇ ପଡ଼ିଲା । ଅଚିରେ, ଦକ୍ଷିଣ-ପଶ୍ଚିମ ଅଞ୍ଚଳଗୁଡ଼ିକ ଲିଥୁଆନିଆ ଏବଂ ପୋଲଣ୍ଡର ଶାସନାଧୀନ ହୋଇ ବହୁ ଶତାବ୍ଦୀ ପର୍ଯ୍ୟନ୍ତ ସେଇଭଳି ରହିଥିଲା । ହୋର୍ଡ଼େର ଶାସକମାନଙ୍କ ଏକ ନ୍ୟସ୍ତ ସ୍ୱାର୍ଥ ନିହିତ ଥିଲା ରୁଷୀୟ ଭୂଖଣ୍ଡଗୁଡ଼ିକର ରାଜନୈତିକ ଅନୈକ୍ୟକୁ ଶକ୍ତିଶାଳୀ କରିବାରେ । ସେମାନେ ବିଭିନ୍ନ ରାଜାମାନଙ୍କ ମଧ୍ୟରେ ଶତ୍ରୁତାର ବୀଜ ବପନ କରୁଥିଲେ, ପାରମ୍ପରିକ ଭାଗଭାଗ କରି ଶାସନ କରିବାର ନୀତି ଅନୁସରଣ କରି । ସଂସ୍କୃତି କ୍ଷେତ୍ରରେ ଅପୂରଣୀୟ କ୍ଷତିସାଧନ କରାଯାଇଥିଲା ବିଶେଷ କରି ଟ୍ରାନ୍‌ସକକେସସ୍ ଏବଂ ଦକ୍ଷିଣ ରୁଷିଆରେ । ଦେଶର ସମସ୍ତ ଜାତିମାନଙ୍କର ସାଂସ୍କୃତିକ

ଇତିହାସରେ ତାତାର-ମଙ୍ଗୋଲମାନଙ୍କ ଆକ୍ରମଣ ଥିଲା ଏକ ଦୁଃଖପୂର୍ଣ୍ଣ ପର୍ବ । ରୁଷିଆର ପରବର୍ତ୍ତୀ ଅର୍ଥନୈତିକ, ରାଜନୈତିକ ଏବଂ ସାଂସ୍କୃତିକ ପଶ୍ଚାତ୍‌ପଦତା ପଛରେ ମୁଖ୍ୟ କାରଣ ଥିଲା ଆକ୍ରମଣ ଏବଂ ବିଦେଶୀ ଶାସନ ।

ଏହା ଫଳରେ ୧୩ଶ ଶତାବ୍ଦୀର ୧ମ ଚଉଠରେ ଅର୍ଜିତ ଅର୍ଥନୈତିକ ଓ ସାଂସ୍କୃତିକ ମାନରେ ପୁଣି ପହଞ୍ଚିବାକୁ ରୁଷିଆକୁ ଲାଗି ଯାଇଥିଲା କେଇ ଶହ ବର୍ଷ । ସେତେବେଳେ ପଶ୍ଚିମ ୟୁରୋପ ରିନେସାଁର ପୂର୍ବକ୍ଷଣରେ ପହଞ୍ଚି ଯାଇଥିଲା ।

୧୪ଶ ଶତାବ୍ଦୀର ମଧ୍ୟ ଭାଗରେ ଚିଙ୍ଗିଜ୍ ଖାଁଙ୍କ ବଂଶଧରମାନଙ୍କ ରାଜତ୍ୱର ଅବସାନ ଘଟିଥିଲା ଏବଂ କ୍ଷମତା ଚାଲି ଯାଇଥିଲା ମଙ୍ଗୋଲ-ତୁର୍କୀ ଅମିର୍‌ମାନଙ୍କ ହାତକୁ । ସେମାନଙ୍କ ମଧ୍ୟରୁ ଅଭ୍ୟୁଦୟ ଘଟିଥିଲା ସାଫଲ୍ୟମଣ୍ଡିତ ରାଜ୍ୟଜୟୀ ତାମେରଲେନ୍ ବା ତୈମୁରଲଙ୍ଗ । ଇତିପୂର୍ବରୁ ସେ ମଧ୍ୟ ଏସିଆର ବିଭିନ୍ନ ଶାସକମାନଙ୍କ ସେବାରେ ଭଡ଼ାଟିଆ ସୈନ୍ୟଦଳର ନେତା ଥିଲେ । ତୈମୁରଲଙ୍ଗଙ୍କ ରାଜତ୍ୱକାଳ (୧୩୭୦-୧୪୦୫) ଥିଲା ନିରବଚ୍ଛିନ୍ନ ଲୁଣ୍ଠନମୂଳକ ଯୁଦ୍ଧାଭିଯାନରେ ଭରପୂର । ଏହା ଫଳରେ ସେ ଏକ ବିରାଟ ରାଜ୍ୟ ଗଠନ କରିଥିଲେ ଏବଂ ଏହି ରାଜ୍ୟର ରାଜଧାନୀ ଥିଲା ସମର୍ଖନ୍ଦରେ । କିନ୍ତୁ ଏହି ବିଶାଳ ରାଜ୍ୟଟି ତା'ର ପ୍ରତିଷ୍ଠାତାଙ୍କ ମୃତ୍ୟୁ ପରେ ବେଶି ଦିନ ତିଷ୍ଠି ପାରି ନଥିଲା । ତୈମୁରଲଙ୍ଗ ଖୋରେଜ୍‌ମ ରାଜ୍ୟଟିକୁ ଛାରଖାର କରିଥିଲେ । ସେତେବେଳେ ଏହା ସୁବର୍ଣ୍ଣ ହୋର୍ଦ୍ଦେ ଠାରୁ ବିଚ୍ଛିନ୍ନ ହୋଇ ଯାଇଥିଲା ଏବଂ ସେ ଏହାର ରାଜଧାନୀ ଉର୍ଗେଞ୍ଚକୁ ଧୂଳିସାତ୍ କରିଥିଲେ । ତୈମୁରଲଙ୍ଗ ତା'ପରେ ସୁବର୍ଣ୍ଣ ହୋର୍ଦ୍ଦେ ଜୟ କରି ତା'ର ରାଜଧାନୀ ସରାଇକୁ ଧ୍ୱଂସ କରି ଦେଇଥିଲେ ଏବଂ ରୁଷୀୟ ଭୂଖଣ୍ଡଗୁଡ଼ିକରେ ଆତଙ୍କ ସୃଷ୍ଟି କରି ପାରସ୍ୟ ଏବଂ ଟ୍ରାନ୍‌ସକକେସିଆକୁ ଅଧିକାର କରି ନେଲେ । ଏହା ପରେ ସେ ଆକ୍ରମଣ କଲେ ଭାରତବର୍ଷ । ଆଙ୍କାରା ଯୁଦ୍ଧରେ ତୁର୍କୀର ସୁଲତାନ୍ ପ୍ରଥମ ବାୟାଜିଦ୍‌ଙ୍କୁ ସେ ପରାସ୍ତ କରି ବନ୍ଦୀ କରିଥିଲେ । ଚୀନ୍ ଆକ୍ରମଣ ପାଇଁ ପ୍ରସ୍ତୁତ ହେଉଥିଲା ବେଳେ ତୈମୁରଲଙ୍ଗଙ୍କର ମୃତ୍ୟୁ ଘଟିଥିଲା ।

ତୈମୁରଲଙ୍ଗ ତରବରରେ ତାଙ୍କର ଏହି ବିରାଟ ସାମ୍ରାଜ୍ୟଟି ଗଠନ କରିଥିଲେ ବୋଲି କୁହାଯାଇ ପାରେ । କାରଣ ତାଙ୍କର ପ୍ରକୃତ ରାଜ୍ୟଟି ମଧ୍ୟ ଏସିଆର ଯେଉଁ ଅଞ୍ଚଳକୁ ନେଇ ଗଠିତ ହୋଇଥିଲା, ତାହା ତାଙ୍କର ଯୁଦ୍ଧାଭିଯାନ ଫଳରେ ଅର୍ଜିତ ଭୂଖଣ୍ଡ ତୁଳନାରେ ଅତି ନଗଣ୍ୟ । ଏହି ବିରାଟ ଭୂଖଣ୍ଡର ଆପେକ୍ଷିକ ଶକ୍ତି ପଛରେ କାରଣ ହେଲା ତୈମୁରଲଙ୍ଗ ଏବଂ ତାଙ୍କ ଅନ୍ଧଆଜ୍ଞାବହମାନଙ୍କର ଅମାନୁଷିକ ନିଷ୍ଠୁରତା – ଲକ୍ଷ ଲକ୍ଷ ବନ୍ଦୀଙ୍କୁ ହତ୍ୟା କରାଯାଇଥିଲା । ଅନ୍ୟ ଦେଶମାନଙ୍କୁ ଲୁଣ୍ଠନ କରିବା ଦ୍ୱାରା ହିଁ କେବଳ ମାଭେରାନ୍ନାଖ୍ରା ଭୂଖଣ୍ଡର (ଆମୁ-ଦରିଆ ଏବଂ ସିର୍-ଦରିଆ ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳ) ଗୁରୁତ୍ୱ ବୃଦ୍ଧି ପାଇଥିଲା । ଏହି ଅଞ୍ଚଳରେ ରାସ୍ତା ଏବଂ ଜଳସେଚନ ବ୍ୟବସ୍ଥା ନିର୍ମିତ ହୋଇଥିଲା, ବୈଦେଶିକ ବାଣିଜ୍ୟ ବିକାଶ ଲାଭ କରିଥିଲା ଏବଂ ବିଜିତ ରାଜ୍ୟମାନଙ୍କରୁ

ବଳପୂର୍ବକ ଘେନି ଆସିଥିବା ସୁଦକ୍ଷ କାରିଗର ତଥା କଳାକାରମାନଙ୍କ ଶ୍ରମକୁ ବ୍ୟାପକ ଭାବେ ବ୍ୟବହାର କରାଯାଇଥିଲା । ଏହି ସମୟରେ ନିର୍ମିତ ହୋଇଥିଲା ସମର୍ଖନ୍ଦ (ନିର୍ମିତ ହୋଇଥିବା ପ୍ରାସାଦଗୁଡ଼ିକ ମଧ୍ୟରେ ବିଶ୍ୱ ସ୍ଥାପତ୍ୟକଳା କ୍ଷେତ୍ରରେ ବିଖ୍ୟାତ ବିବିଖାନମ୍ ମସଜିଦ୍ ଏବଂ ଗୁର୍-ଅମିର୍ ସମାଧିମନ୍ଦିର) ; ଏହାକୁ କୁହାଯାଉଥିଲା "ମହା ନଗରୀ" ବୋଲି । ଏଥି ସଙ୍ଗେ ସଙ୍ଗେ, ମାଭେରାନ୍ନାଖ୍ରା ବାହାରେ ତୈମୁରଲଙ୍ଗଙ୍କର ସୈନ୍ୟମାନେ ବହୁ ଦେଶକୁ ଧ୍ୱଂସ କରି ଦେଇ ସେମାନଙ୍କ ଜନଗୋଷ୍ଠୀକୁ ଲୋପ କରି ଦେଇଥିଲେ ।

ତୈମୁରଲଙ୍ଗଙ୍କ ମୃତ୍ୟୁ ପରେ ତାଙ୍କର ଉତ୍ତରାଧିକାରୀମାନଙ୍କ ମଧ୍ୟରେ ସଂଘର୍ଷ ଲଗି ଯାଇଥିଲା । ଚାରି ବର୍ଷ ପରେ, ସମର୍ଖନ୍ଦରେ ରାଜତ୍ୱ କରୁଥିବା ତୈମୁରଲଙ୍ଗଙ୍କ ପୁତ୍ରଙ୍କ ରାଜ୍ୟ ସୀମା ମାଭେରାନ୍ନାଖ୍ରା ମଧ୍ୟରେ ସୀମିତ ରହିଥିଲା । ତୈମୁରଲଙ୍ଗଙ୍କ ନାତି ଉଲୁଖ୍-ବେଗ୍ (୧୩୯୪-୧୪୪୯), ଯିଏକି ୧୪୪୫ରେ ସମର୍ଖନ୍ଦର ରାଜତ୍ୱ କରୁଥିଲେ, ଥିଲେ ଜଣେ ବିଖ୍ୟାତ ଜ୍ୟୋତିର୍ବିଦ୍ (ସେ ଏକ ମାନମନ୍ଦିର ନିର୍ମାଣ କରିଥିଲେ ଏବଂ ଜ୍ୟୋତିଷମାନଙ୍କ ସଂପର୍କରେ ଏକ ଗ୍ରନ୍ଥ ରଚନା କରିଥିଲେ) ଏବଂ ବିଜ୍ଞାନର ପୃଷ୍ଠପୋଷକ ଥିଲେ । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଏକ ସ୍କୁଲରେ କେବଳ ଧର୍ମୀୟ ବିଷୟ ଶିକ୍ଷା ଦିଆଯାଉ ନଥିଲା, ଧର୍ମ ନିରପେକ୍ଷ ବିଷୟାଦି ମଧ୍ୟ ଶିକ୍ଷା ଦିଆଯାଉଥିଲା । ଧର୍ମଯାଜକମାନଙ୍କର ପ୍ରରୋଚନା ଫଳରେ ତାଙ୍କ ଉତ୍ତରାଧିକାରୀମାନଙ୍କ ନିର୍ଦ୍ଦେଶରେ ତାଙ୍କର ଶିରଚ୍ଛେଦ କରାଯାଇଥିଲା । ଉଜ୍‌ବେକୀ ସାହିତ୍ୟର ପ୍ରତିଷ୍ଠାତା, କବି, ମାନବତାବାଦୀ ପଣ୍ଡିତ ଏବଂ ରାଜନୀତିବିଦ୍, ଆଲିଶେର ନଭୋଇଙ୍କ (୧୪୪୧-୧୫୦୧) ରଚନାବଳୀ ସାହିତ୍ୟ ତଥା ସାମାଜିକ ଚିନ୍ତା ରାଜ୍ୟରେ ଉଚ୍ଚ କୃତି ରୂପେ ବିବେଚିତ ହୋଇଥାଏ । ସେ ହେଉଛନ୍ତି "ଲେଇଲା-ମେଜନୁନ"ର ଏବଂ "ଫାର୍‌ହାଦ ଏବଂ ଶିରିନ୍"ର ରଚୟିତା । ଏହି ଗ୍ରନ୍ଥ ଦୁଇଟି ବିଶ୍ୱ ସାହିତ୍ୟ ଭଣ୍ଡାରର ଅମୂଲ୍ୟ ସଂପଦ ସ୍ୱରୂପ । ତେବେ, ମଧ୍ୟ ଯୁଗରେ ଧର୍ମ ଆଉ ପରମ୍ପରା ଦ୍ୱାରା ବିଭକ୍ତ ଜାତି ଜାତି ମଧ୍ୟରେ ଅର୍ଥନୈତିକ ଏବଂ ସାଂସ୍କୃତିକ ସଂପର୍କରାଜି ଥିଲା ଦୁର୍ବଳ ଏବଂ ଗୋଟିଏ ଜାତିର ସାଂସ୍କୃତିକ କୃତିରାଜି ଅନ୍ୟମାନଙ୍କ ପକ୍ଷରେ ଅପ୍ରାପ୍ତ ହୋଇ ରହି ଯାଉଥିଲା ।

ମଧ୍ୟ ଏସିଆ ଏବଂ ଟ୍ରାନ୍‌ସକକେସିଆ ଅଞ୍ଚଳସମୂହ ଯାଯାବର ଏବଂ ସ୍ଥାୟୀ ବସବାସକାରୀ ଜାତିମାନଙ୍କ ମଧ୍ୟରେ ସଂଘର୍ଷ ଏବଂ ସେମାନଙ୍କ ସୀମାନ୍ତରେ ଅବସ୍ଥିତ ବୃହତ୍ ଶକ୍ତିମାନଙ୍କ ମଧ୍ୟରେ ଯୁଦ୍ଧ କ୍ଷେତ୍ରରେ ପରିଣତ ହୋଇଥିଲା ଏବଂ ବହୁ କାଳ ପର୍ଯ୍ୟନ୍ତ ଐତିହାସିକ ପ୍ରଗତିରେ ପୂର୍ବର ସେହି ଅଗ୍ରଣୀ ଭୂମିକାକୁ ହରେଇ ବସିଥିଲେ ।

# ୫ମ ପରିଚ୍ଛେଦ

## ମସ୍କୋର ଅଭ୍ୟୁଦୟ

ଭିଲିକି ଭ୍ଲାଦିମିର୍ ରାଜ୍ୟର ବିଖଣ୍ଡୀକରଣ ଫଳରେ ସୃଷ୍ଟ କରଦରାଜ୍ୟଗୁଡ଼ିକ ମଧ୍ୟରେ ତ୍ଭେର ଏବଂ ମସ୍କୋ ରାଜ୍ୟ ଦୁଇଟି ଥିଲେ ୧୪ଶ ଶତାବ୍ଦୀର ପ୍ରାରମ୍ଭରେ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଉତ୍ତର-ପୂର୍ବ ରୁଷିଆରେ ଅବଶିଷ୍ଟ ର୍ୟାଜାନ୍ ଏବଂ ସୁଜ୍‌ଦାଲ-ନିଝନି-ନୋଭ୍‌ଗୋରଦ ରାଜ୍ୟ ସମେତ ସେମାନେ ବୃହତ୍ତମ ରାଜ୍ୟଗୁଡ଼ିକର ଗୋଷ୍ଠୀ ରୂପେ ଗଠିତ ହୋଇଥିଲେ । ନୋଭ୍‌ଗୋରଦ୍ ଏବଂ ପ୍‌ସ୍କୋଭ୍ ଦ୍ୱୟ ମଧ୍ୟ ବଡ଼ ସାମନ୍ତୀୟ କେନ୍ଦ୍ର ଥିଲେ । ରୁଷିଆର ସମସ୍ତ ଭୂଖଣ୍ଡ ଉପରେ ରାଜନୈତିକ ଆଧିପତ୍ୟ ଚାଲି ଯାଇଥିଲା ରାଜାଙ୍କ ହାତକୁ । ଭ୍ଲାଦିମିର୍‌ର ରାଜା ସୁବର୍ଣ୍ଣ ହୋର୍ଦ୍ଦେର ଖାଁଙ୍କ ଠାରୁ ମହାରାଜା ଉପାଧି ଏବଂ ଏକ ୟାରଲିକ୍—ଭ୍ଲାଦିମିର୍ ରାଜ୍ୟକୁ ଶାସନ କରିବାର ଅଧିକାର ସନନ୍ଦ ଲାଭ କରିଥିଲେ । ଏହି ସନନ୍ଦରେ ସୁବର୍ଣ୍ଣ ହୋର୍ଦ୍ଦେ ଉପରେ ଏହି ରାଜାଙ୍କର କରଦରାଜ୍ୟ ହିସାବରେ ନିର୍ଭରଶୀଳତା କଥା ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ଏବଂ ରୁଷ୍ ଜନସାଧାରଣଙ୍କର କର୍ତ୍ତବ୍ୟରାଜିକୁ ତାଲିକାଭୁକ୍ତ କରିଥିଲା । ଏହି ୟାରଲିକ୍ ଲାଭ କରିବା ପାଇଁ ରାଜାମାନଙ୍କ ମଧ୍ୟରେ ପ୍ରତିଯୋଗିତା ଲାଗି ଯାଉଥିଲା ।

୧୩ଶ ଶତାବ୍ଦୀର ଶେଷ ଭାଗରେ ମସ୍କୋରେ ପ୍ରତିଷ୍ଠିତ ହୋଇଥିଲା ଏକ ରାଜବଂଶ । ଏହାର ପ୍ରତିଷ୍ଠାତା ଥିଲେ ଆଲେକ୍‌ଜାଣ୍ଡାର ନେଭ୍‌ସ୍କିଙ୍କ କନିଷ୍ଠ ପୁତ୍ର ଦାନିଏଲ୍ । ମସ୍କୋ ରାଜ୍ୟଟି ଥିଲା ସେଇ ଭୂଖଣ୍ଡର ଏକାନ୍ତ କେନ୍ଦ୍ରସ୍ଥଳୀ, ଯେଉଁଠି ମହା ରୁଷୀୟ ଅଧିଜାତି ଗଠିତ ହେଉଥିଲା । ଅନ୍ୟ ରାଜ୍ୟସମୂହ ତଥା ବଣ ଏବଂ ଜଳାଭୂମି ଦ୍ୱାରା ପୂର୍ବସ୍ଥ ହୋର୍ଦ୍ଦେ ଏବଂ ପଶ୍ଚିମସ୍ଥ ଲିଥୁଆନିଆ ଠାରୁ ବିଚ୍ଛିନ୍ନ ଏବଂ ଚାଷ, ପଶୁପାଳନ, ଶିକାର, ମତ୍ସ୍ୟଧରା ପାଇଁ ଉପଯୁକ୍ତ ଓ ଦୁଇଟି ବଡ଼ ନଦୀର ମଧ୍ୟ ଭାଗ ଏବଂ ଭୂପୃଷ୍ଠସ୍ଥ ବାଣିଜ୍ୟ ପଥର ଧାରରେ ଅବସ୍ଥିତ ମସ୍କୋ ରାଜ୍ୟଟି ଅନ୍ୟ ଭୂଖଣ୍ଡମାନଙ୍କରୁ ଲୋକଙ୍କୁ ଆକର୍ଷଣ କରି ଆଣିଥିଲା ଏଥିରେ ବାସ କରିବା ପାଇଁ । ଆକ୍ରମଣକାରୀମାନଙ୍କ ଦ୍ୱାରା ଅନୁଷ୍ଠିତ ଧ୍ୱଂସସ୍ତୂପ ଉପରେ ନୂତନ ଗ୍ରାମ, ସହର ଏବଂ ମଠ ଆଦି ଅନ୍ୟ ଅଞ୍ଚଳ

ଅପେକ୍ଷା ଶୀଘ୍ର ଶୀଘ୍ର ମୁଣ୍ଡ ଟେକି ଉଠୁଥିଲା । ମସ୍କୋର ରାଜା ଇଭାନ୍ କାଲିତା (ରାଜତ୍ୱକାଳ ୧୩୨୫-୧୩୪୦) ତ୍‌ଭେରର ରାଜାଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତାରେ ସୁବିଧାଜନକ ଅବସ୍ଥାନ ଲାଭ କରିଥିଲେ । ସେ ୟାର୍‌ଲିକ ଏବଂ କର ଧାର୍ଯ୍ୟ ଏବଂ ଆଦାୟ କରିବାର ଅଧିକାର ଲାଭ କରିବାକୁ ସକ୍ଷମ ହୋଇଥିଲେ ଏବଂ ତାଙ୍କର ସମକାଳୀନ ରାଜନ୍ୟବର୍ଗଙ୍କ ମଧ୍ୟରେ ଖ୍ୟାତି ମଧ୍ୟ ଲାଭ କରିଥିଲେ । କାରଣ, ତାଙ୍କ ରାଜତ୍ୱକାଳରେ ତାତାର-ମଙ୍ଗୋଲମାନେ "ରୁଷ୍ ଭୂଖଣ୍ଡ ଉପରେ ଆକ୍ରମଣ କରିବାରୁ" କ୍ଷାନ୍ତ ହୋଇଥିଲେ ଏବଂ "ଏ ସମସ୍ତ ଅଞ୍ଚଳରେ ଶାନ୍ତି ବିରାଜମାନ କରୁଥିଲା" । ମସ୍କୋର ଏହି ଅଭ୍ୟୁଦୟ ପ୍ରତି ଗିର୍ଜା ମଧ୍ୟ ସନ୍ତୋଷ ପ୍ରକାଶ କରିଥିଲା ଏବଂ ସମସ୍ତ ରୁଷିଆର ପ୍ରଧାନ ଧର୍ମଯାଜକ ଭ୍ଲାଦିମିର୍‌ରୁ ମସ୍କୋକୁ ତାଙ୍କ ବାସଭବନ ସ୍ଥାନାନ୍ତର କରି ନେଇ ଆସିଥିଲେ । ପରେ ମସ୍କୋ ପରିଣତ ହୋଇଥିଲା ଜାତୀୟ ଧର୍ମୀୟ କେନ୍ଦ୍ରରେ, ସେର୍ଗେଇ ରାଦୋନେଝସ୍କି ପରେ ମସ୍କୋର ଅଦୂରରେ ତ୍ରଇସେ-ସେର୍ଗେଏଭ୍ ମଠଟି ସ୍ଥାପନ କରିଥିଲେ । ଅନ୍ୟାନ୍ୟ ବହୁ ବହୁ ମଠ କ୍ରମଶଃ ମସ୍କୋ ଏବଂ ତା'ର ଆଖପାଖ ଅଞ୍ଚଳରେ ମୁଣ୍ଡ ଟେକି ଉଠିବାକୁ ଲାଗିଥିଲା ।

୧୪ଶ ଶତାବ୍ଦୀର ବିଶେଷ କରି ଏହି ଶତାବ୍ଦୀର ଶେଷ ଭାଗରେ ରୁଷିଆରେ ଏକ ସାଧାରଣ ଅର୍ଥନୈତିକ ଅଭ୍ୟୁତ୍‌ଥାନ ଦେଖା ଦେଇଥିଲା (ଏହି ସମୟରେ ସୁବର୍ଣ୍ଣ ହୋର୍ଦ୍ଦେ ତା'ର ପୂର୍ବର କ୍ଷମତା ହରେଇ ବସିଥିଲା ଏବଂ ରୁଷିଆରେ ଏହାର ଆଧିପତ୍ୟ ଖର୍ବ ହୋଇ ପଡ଼ିଥିଲା) । କୃଷି କ୍ଷେତ୍ରରେ ଆଦିମ ଧରଣର ଭୂମିଗ୍ରାସ ପଦ୍ଧତି ସ୍ଥାନରେ ତିନି-କ୍ଷେତ୍ର ପଦ୍ଧତି ପ୍ରତିଷ୍ଠିତ ହୋଇଥିଲା ଏବଂ କୃଷକମାନଙ୍କ କୃଷି ଯନ୍ତ୍ରପାତି ଉନ୍ନତ ହୋଇଥିଲା । ପଶୁପାଳନ, ମତ୍ସ୍ୟଧରା ଏବଂ ବଣ୍ୟ ମହୁ ସଂଗ୍ରହ ଅନେକ ପରିମାଣରେ ବିକାଶ ଲାଭ କରିଥିଲା ।

ଗ୍ରାମ ଗୋଷ୍ଠୀ ଅଧୀନସ୍ଥ ଜମିକୁ ଅଧିକାର କରି ନେବା ଫଳରେ ରାଜା, ସାମନ୍ତ, ଗିର୍ଜା ଏବଂ ମଠମାନଙ୍କ ଦ୍ୱାରା ବିପୁଳ ପରିମାଣର ଭୂମି ଉପରେ ମାଲିକାନା ଖୁବ୍ ଦ୍ରୁତ ଗତିରେ ବୃଦ୍ଧି ପାଇଥିଲା । ରାଜାମାନଙ୍କ ସେବା କରିବା ପାଇଁ ମଧ୍ୟମ ତଥା କ୍ଷୁଦ୍ର ସାମନ୍ତମାନଙ୍କୁ ଜାଗିର ଆକାରରେ ପ୍ରଦତ୍ତ ଜମି ଫଳରେ ସେମାନଙ୍କ ଜମିର ପରିମାଣ ମଧ୍ୟ ବୃଦ୍ଧି ପାଇଥିଲା (ଏହି ଶ୍ରେଣୀର ସାମନ୍ତ ଜମିଦାରମାନଙ୍କୁ ପରେ ଅଭିଜାତ ବା ଦ୍‌ଭୋରିଆନେ ବୋଲି କୁହାଯାଇଥିଲା) । ବିଶେଷ କରି ୧୪ଶ ଶତାବ୍ଦୀର ଶେଷ ଆଡ଼କୁ ସାମନ୍ତବାଦୀ ନିର୍ଯାତନ ବଢ଼ି ଯାଇଥିଲା । ସାମନ୍ତ ଜମିଦାରମାନେ ବେଠି ବେଗାରି ଓ ଖଜଣାର ମାତ୍ରା ବଢ଼ାଇ ଦେଇଥିଲେ ଏବଂ ସାମନ୍ତମାନଙ୍କ ଅଧୀନରେ ଥିବା କୃଷକମାନେ ଜଣେ ସାମନ୍ତ ଅଧୀନରୁ ଅନ୍ୟ ଏକ ସାମନ୍ତ ଅଧୀନକୁ ଯିବାର ଅଧିକାରକୁ ଖର୍ବ କରି ଦେଇଥିଲେ ।

ରୁଷୀୟ ସହରମାନଙ୍କରେ ଲୋକବସତିର ପରିମାଣ ଗ୍ରାମମାନଙ୍କ ଠାରୁ ଅଧିକ

ଦ୍ରୁତ ଭାବେ ବୃଦ୍ଧି ପାଇଥିଲା । ତାତାର-ମଙ୍ଗୋଲମାନଙ୍କ ଆକ୍ରମଣ କାଳରେ ଲୋପ ପାଇ ଆସିଥିବା ବିଭିନ୍ନ ହସ୍ତଶିଳ୍ପ ପୁଣି ପୁନର୍ଜୀବନ ଲାଭ କରି ବିକାଶ ଲାଭ କରିଥିଲା ଏବଂ ନୂତନ କାରୁକୌଶଳ ମଧ୍ୟ ମୁଣ୍ଡ ଟେକି ଉଠିଥିଲା । ମସ୍କୋ ପରିଣତ ହୋଇଥିଲା ହସ୍ତଶିଳ୍ପର ଏକ ବଡ଼ କେନ୍ଦ୍ରରେ ।

ପଶ୍ଚିମ ୟୁରୋପର ବିଭିନ୍ନ ଦେଶ ସହିତ ରୁଷିଆର ସହରମାନଙ୍କର ବାଣିଜ୍ୟିକ କାରବାର (ବିଶେଷ କରି ନୋଭ୍‌ଗୋରଦ ଏବଂ ପ୍‌ସକୋଭ୍ କ୍ଷେତ୍ରରେ) ହଠାତ୍ ବୃଦ୍ଧି ପାଇଥିଲା । କିନ୍ତୁ ଉତ୍ତର ଜର୍ମାନ୍ ସହରମାନଙ୍କ ସଂଘ, ହାନ୍‌ସେର ବିରୋଧିତା ଫଳରେ ସେମାନେ ସିଧାସଳଖ ୟୁରୋପର ଦେଶମାନଙ୍କ ସହିତ ବାଣିଜ୍ୟ କରି ପାରୁ ନଥିଲେ ଏବଂ ବାଧ୍ୟ ହୋଇଥିଲେ ମଧ୍ୟସ୍ଥ ରୂପେ ଏହି ସଂଘର ସହାୟତା ଗ୍ରହଣ କରିବାକୁ । ପୂର୍ବର ଦେଶମାନଙ୍କ ସହିତ ରୁଷିଆର ବାଣିଜ୍ୟ ମଧ୍ୟ ବିକାଶ ଲାଭ କରିଥିଲା । ସେସବୁ ମଧ୍ୟରେ ଥିଲେ ପାରସ୍ୟ, ଖୋରେଜ୍‌ମ, ବୋଖାରା ସମେତ ସୁଦୂରବର୍ତ୍ତୀ ଭାରତ ଏବଂ ଚୀନ୍ ଭଳି ଦେଶ ।

ରୁଷୀୟ ସହରର ଅଧିବାସୀମାନେ ଦୁଇଟି ଗୋଷ୍ଠୀରେ ବିଭକ୍ତ ଥିଲେ : ସାମନ୍ତ ପ୍ରଭୁ (ରାଜା, ସାମନ୍ତବର୍ଗ ଏବଂ ଉପର ସ୍ତରର ଯାଜକବୃନ୍ଦ) ଏବଂ ସାଧାରଣ ସହରବାସୀ । ଶେଷୋକ୍ତ ଗୋଷ୍ଠୀଟି ପୁଣି ବିଭିନ୍ନ ସାମାଜିକ ସ୍ତରକୁ ନେଇ ଗଠିତ ହୋଇଥିଲା : ବ୍ୟବସାୟୀ ସମ୍ଭ୍ରାନ୍ତ, ମଧ୍ୟମ ଏବଂ କ୍ଷୁଦ୍ର ବ୍ୟବସାୟୀବୃନ୍ଦ, କାରିଗର ଏବଂ ବିଭିନ୍ନ ଧରଣର ଶ୍ରମଜୀବୀ ଲୋକେ — ସହରବାସିନ୍ଦାମାନଙ୍କର ସର୍ବନିମ୍ନ ସ୍ତର । ସହରର ଏତାଦୃଶ ସାମାଜିକ ବିଭାଜନ ସାଧାରଣତଃ ପ୍ରତିଫଳିତ ହେଉଥିଲା ତା'ର ଆଞ୍ଚଳିକ ବିଭାଜନ ମଧ୍ୟରେ । ଆଞ୍ଚଳିକ ବିଭାଜନ ହେଉଥିଲା ନିମ୍ନମତେ : କେନ୍ଦ୍ରୀୟ ଅଂଶ, ଏଠାରେ ସହରର ଉପରି ସ୍ତରର ଲୋକେ ବାସ କରୁଥିଲେ ଏବଂ ପୋସାଦସ — ବାଣିଜ୍ୟ ଏବଂ କାରିଗରି ଅଂଶ, ଏଠାରେ କାରିଗର ଏବଂ ବ୍ୟବସାୟୀମାନଙ୍କ ସମେତ ଶ୍ରମଜୀବୀମାନେ ବାସ କରୁଥିଲେ ।

ଦେଶର ଅର୍ଥନୀତି ବିକାଶ ଲାଭ କରିବା ସଙ୍ଗେ ସଙ୍ଗେ ଏକ ସାମାଜିକ ସ୍ତର ମଧ୍ୟ ବିକାଶ ଲାଭ କରିଥିଲା, ଯା'ର ସ୍ୱାର୍ଥ ନିହିତ ଥିଲା ଦେଶର ସାମନ୍ତବାଦୀ ବିଖଣ୍ଡନକୁ ଦୂର କରି ଏକ ଐକ୍ୟବଦ୍ଧ ରୁଷୀୟ ରାଷ୍ଟ୍ର ସ୍ଥାପନ ମଧ୍ୟରେ । ଏହା, ଅବଶ୍ୟ, ଚାହୁଁଥିଲେ ସହରର ବାସିନ୍ଦାମାନେ । କାରଣ ସାମନ୍ତବାଦୀ ବିଖଣ୍ଡୀକରଣ ଥିଲା କାରିଗରି ଏବଂ ବାଣିଜ୍ୟର ବିକାଶ ପଥରେ ପ୍ରଧାନ ପ୍ରତିବନ୍ଧକ । ତେବେ ସହରର ବାସିନ୍ଦାମାନେ ସେତେବେଳେ ଦେଶର ମୁଖ୍ୟ ସାମାଜିକ ସ୍ତର ନଥିଲେ ।

ମୁଖ୍ୟ ସାମନ୍ତ ସ୍ତରଟି ମଧ୍ୟ ଏକ ଐକ୍ୟବଦ୍ଧ ରୁଷୀୟ ରାଷ୍ଟ୍ର ଗଠନ କରିବାକୁ ଚାହିଁଥିଲେ, ଅବଶ୍ୟ, ଅନ୍ୟ କାରଣରୁ । ମସ୍କୋର ସମ୍ଭ୍ରାନ୍ତ ଏବଂ ଯାଜକମାନେ ରୁଷିଆରେ ରାଜନୈତିକ କେନ୍ଦ୍ର ରୂପେ ମସ୍କୋ ରାଜ୍ୟଟି ଗଢ଼ି ଉଠିବା ମଧ୍ୟରେ ସେମାନଙ୍କର ଶକ୍ତିର ସମ୍ଭାବନା ଦେଖିବାକୁ ପାଉଥିଲେ ।

ମଧ୍ୟମ ଏବଂ କ୍ଷୁଦ୍ର ସାମନ୍ତମାନେ ସକ୍ରିୟ ଭାବେ ସଂଗ୍ରାମ କରୁଥିଲେ ଏକ ଐକ୍ୟବଦ୍ଧ ରୁଷୀୟ ରାଷ୍ଟ୍ର ପାଇଁ । କାରଣ ସେମାନଙ୍କ ଅର୍ଥନୈତିକ ଅବସ୍ଥାନ ଏବଂ ସେମାନଙ୍କ ଅଧୀନସ୍ଥ କୃଷୀମାନଙ୍କ ଉପରେ ସେମାନଙ୍କ ପ୍ରଭୁତ୍ୱ ବଜାୟ ରଖିବାଟା ସଂପୂର୍ଣ୍ଣ ନିର୍ଭର କରୁଥିଲା ଏକ ଶକ୍ତିଶାଳୀ ମହାରାଜାଙ୍କର ସାମନ୍ତ ପ୍ରଭୁମାନଙ୍କ ପ୍ରତି ସମର୍ଥନ ଉପରେ ।

ସାଧାରଣ କୃଷୀମାନେ ଆଶା କରୁଥିଲେ, ଏକ ଐକ୍ୟବଦ୍ଧ ଶକ୍ତିଶାଳୀ ରୁଷିଆ ପ୍ରତିଷ୍ଠିତ ହେଲେ, ସେମାନେ ବିଦେଶୀ ନିର୍ଯାତନରୁ ମୁକ୍ତ ହେବେ ଏବଂ ସେମାନଙ୍କ ଜୀବନ ସୁଖମୟ ହେବ ।

ଏହି ଭାବେ ଦେଶର ବିଭିନ୍ନ ସାମାଜିକ ସ୍ତର କ୍ରମଶଃ ଅଧିକରୁ ଅଧିକ ବିଶ୍ୱାସ କରିବାକୁ ଲଗିଲେ ଯେ, ସାମନ୍ତୀୟ ବିଖଣ୍ଡୀକରଣକୁ ଦୂର କରି ରୁଷିଆର ରାଜନୈତିକ ଐକ୍ୟ ପ୍ରତିଷ୍ଠା କରିବା ହେଲା ଦେଶରେ ଆଉରି ଅର୍ଥନୈତିକ ଉତ୍‌ଥାନ ତଥା ରାଷ୍ଟ୍ରର ସ୍ୱାଧୀନତା ଅର୍ଜନ ପକ୍ଷରେ ଏକ ଆବଶ୍ୟକୀୟ ସର୍ତ୍ତ ।

ମସ୍କୋ ରାଜ୍ୟର କ୍ରମବର୍ଦ୍ଧମାନ ଶକ୍ତି ଏବଂ ରୁଷୀୟ ଭୂଖଣ୍ଡସମୂହର ଏକୀକରଣର ରାଜନୈତିକ କେନ୍ଦ୍ର ରୂପେ ଏହାର କ୍ରମାଧିକ ଭୂମିକା ମସ୍କୋର ମହାରାଜାମାନଙ୍କୁ ସୁଯୋଗ ପ୍ରଦାନ କରିଥିଲା ସୁବର୍ଣ୍ଣ ହୋର୍ଡେ ନିକଟରେ ନତି ସ୍ୱୀକାର କରିବା ପରିବର୍ତ୍ତେ ତା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାକୁ ।

ଇଭାନ୍ କାଲିତାଙ୍କ ନାତି ଦ୍‌ମିତ୍ରି ଇଭାନୋଭିଚ୍‌ଙ୍କ (୧୩୫୯-୧୩୮୯) ରାଜତ୍ୱକାଳରେ ମସ୍କୋର ଶକ୍ତି ହଠାତ୍ ବୃଦ୍ଧି ପାଇଥିଲା । ଏହି ସମୟଟି ଥିଲା ରୁଷୀୟ ଭୂଖଣ୍ଡସମୂହର ଏକୀକରଣ ପ୍ରକ୍ରିୟାରେ ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ । ସାମନ୍ତ କେନ୍ଦ୍ରମାନଙ୍କର ବିଚ୍ଛିନ୍ନତାବାଦୀ ଗୋଷ୍ଠୀ ତଥା ବିଦେଶୀ ଶତ୍ରୁମାନଙ୍କର ଆକ୍ରମଣାତ୍ମକ ଅଭୀପ୍‌ସା ବିରୁଦ୍ଧରେ ଦ୍‌ମିତ୍ରିଙ୍କ ସାଫଲ୍ୟମଣ୍ଡିତ ସଂଗ୍ରାମ ଏ ଦିଗରେ ସହାୟକ ହୋଇଥିଲା । ଏହି ସମୟରେ ନିର୍ମିତ ମସ୍କୋ କ୍ରେମଲିନ୍‌ର ପଥର ନିର୍ମିତ ଦୁର୍ଗ ଲିଥୁଆନିଆର ସୈନ୍ୟମାନଙ୍କ ଆକ୍ରମଣକୁ ପ୍ରତିହତ କରି ପାରିଥିଲା ଏବଂ ମସ୍କୋ ରାଜ୍ୟର ଦକ୍ଷିଣ-ପୂର୍ବ ସୀମାରେ ଅନେକଗୁଡ଼ିଏ ପ୍ରତିରକ୍ଷା ବ୍ୟବସ୍ଥାର ନିର୍ମାଣ ଆରମ୍ଭ ହୋଇଥିଲା ।

ରୁଷୀୟ ରାଜାମାନଙ୍କ ମଧ୍ୟରେ ଦ୍‌ମିତ୍ରି ପ୍ରଥମେ ହୋର୍ଡେ ବିରୁଦ୍ଧରେ ଦୁର୍ବାର ସଂଗ୍ରାମ ଆରମ୍ଭ କରି ଦେଇଥିଲେ—୧୩୭୮ ଖ୍ରୀଷ୍ଟାବ୍ଦରେ ତାତାର-ମଙ୍ଗୋଲ ସେନା ବିରୁଦ୍ଧରେ ସେ ପ୍ରଥମେ ବିଜୟ ହାସଲ କରିଥିଲେ । ତା'ପରେ ୧୩୮୦ ଖ୍ରୀଷ୍ଟାବ୍ଦରେ ଅନ୍ୟାନ୍ୟ ବହୁ ରୁଷ୍ ସାମନ୍ତ ରାଜାମାନଙ୍କର ସମର୍ଥନ ଲଭ କରି ସେମାନଙ୍କ ସେନାବାହିନୀ ଆଉ ଲକ୍ଷ ଲକ୍ଷ ସହର ତଥା ଗ୍ରାମବାସୀମାନଙ୍କୁ ନେଇ ଗଠିତ ଏକ ବିରାଟ ଗଣବାହିନୀର ସେ ନେତୃତ୍ୱ ଦେଇଥିଲେ ହୋର୍ଡେର ସେନାପତି ମାମାଇଙ୍କର ଏକ ବିରାଟ ସେନାବାହିନୀ ବିରୁଦ୍ଧରେ । ଏହି ସେନାବାହିନୀରେ ବହୁ ଭାଷାଭାଷୀ

ସୈନ୍ୟ ଥିଲେ ଏବଂ ସେମାନଙ୍କୁ ସମର୍ଥନ ଦେଉଥିଲେ ଲିଥୁଆନିଆର ରାଜା । ମସ୍କୋର ସାମରିକ ନେତାମାନେ ସ୍ଥିର କରିଥିଲେ ଶତ୍ରୁର ବିଭିନ୍ନ ସେନାଦଳଗୁଡ଼ିକୁ ଐକ୍ୟବଦ୍ଧ କରାଇ ନଦେବାକୁ ଏବଂ ମାମାଇଙ୍କ ସେନାବାହିନୀ ଉପରେ ପ୍ରଥମେ ଆଘାତ ହାଣିବାକୁ । ରୁଷୀୟମାନେ କୁଲିକୋଭ କ୍ଷେତ୍ରକୁ ଏହି ନିଷ୍ପତ୍ତିମୂଳକ ଯୁଦ୍ଧସ୍ଥଳୀ ରୂପେ ବାଛିଥିଲେ । ସେମାନେ ଦନ୍ ନଦୀ ପାର ହୋଇ ଆଗେଇଥିଲେ ଏହି ଯୁଦ୍ଧ ଆଡ଼କୁ । ଏହା ଫଳରେ ପଶ୍ଚାଦ୍‌ପସରଣର ସମ୍ଭାବନା ରଖି ନଥିଲେ । ଯୁଦ୍ଧ କ୍ଷେତ୍ରରେ ନିକଟବର୍ତ୍ତୀ ଏକ ଜଙ୍ଗଲ ମଧ୍ୟରେ ଲୁକ୍କାୟିତ ଭାବେ ଗୋଟିଏ ସେନାବାହିନୀକୁ ରଖାଯାଇଥିଲା । ଏହା ଦ୍ୱାରା ସୁବର୍ଣ୍ଣ ହୋର୍ଦ୍ଦେର ସେଇ ସୁପରିଚିତ ରଣକୌଶଳ – ଦୁଇ ପାଖରୁ ଏବଂ ପଛ ଆଡ଼ୁ ଶତ୍ରୁକୁ ଘେରିଯିବାର ସମ୍ଭାବନାକୁ ରୋକି ଦେଇ ହୋଇଥାନ୍ତା । ୧୩୮୦, ସେପ୍‌ଟେମ୍ବର ୮ ତାରିଖ ଦିନ ସକାଳେ ଆରମ୍ଭ ହୋଇଥିବା ଯୁଦ୍ଧରେ ମାମାଇଙ୍କ ପ୍ରଧାନ ସେନାଦଳର ଆଘାତଟି ପ୍ରଥମେ ଉପଯୁକ୍ତ ବୋଲି ମନେ ହୋଇଥିଲା, କିନ୍ତୁ ଲୁକ୍କାୟିତ ଭାବେ ଥିବା ରୁଷୀୟ ସୈନ୍ୟମାନେ ଅତର୍କିତ ଭାବେ ମାମାଇଙ୍କ ସୈନ୍ୟମାନଙ୍କୁ ପଛ ଆଡ଼ୁ ଆକ୍ରମଣ କରି ଦେଇଥିଲେ । ତା'ପରେ ଅନ୍ୟାନ୍ୟ ସୈନ୍ୟଦଳସବୁ ଯୋଗ ଦେଇ ଦେଲେ ସେମାନଙ୍କ ସହିତ ଏବଂ ପ୍ରବଳ ଲଢ଼େଇ ପରେ ହୋର୍ଦ୍ଦେର ଅବଶିଷ୍ଟ ସୈନ୍ୟମାନେ ପଳାୟନ କରିଥିଲେ । ଦ୍‌ମିତ୍ରିକୁ ତାଙ୍କର ଏହି ବିଜୟ ପାଇଁ ପରେ ଦନ୍‌ସ୍କୋଇ ବୋଲି ନାମିତ କରାଯାଇଥିଲା । କୁଲିକୋଭ ଯୁଦ୍ଧଟି ଥିଲା ସେଇସବୁ ଘଟଣା ମଧ୍ୟରୁ ଅନ୍ୟତମ, ଯେଉଁଥିରେ ଜାତି ତଥା ରାଷ୍ଟ୍ରମାନଙ୍କର ଭବିଷ୍ୟତ ନିର୍ଦ୍ଧାରିତ ହୋଇଥିଲା । ହୋର୍ଦ୍ଦେର ଯୋଦ୍ଧାମାନେ ହେଉଛନ୍ତି ଅଜେୟ ଏହି ଧାରଣାଟି ଏହା ଫଳରେ ଧୂଳିସାତ୍ ହୋଇ ଯାଇଥିଲା । ସୁବର୍ଣ୍ଣ ହୋର୍ଦ୍ଦେର ଆଧିପତ୍ୟର ଅବସାନ ଥିଲା ପୂର୍ବ ନିର୍ଦ୍ଧାରିତ । ହୋର୍ଦ୍ଦେ ବିରୁଦ୍ଧରେ ମସ୍କୋ ହିଁ କେବଳ ସାଫଲ୍ୟମଣ୍ଡିତ ଯୁଦ୍ଧର ନେତୃତ୍ୱ ନେଇ ପାରେ, ଏହା ପରିଷ୍କାର ହୋଇ ଯାଇଥିଲା । ଏହି ବିଜୟ ଦ୍ୱାରା ରୁଷ୍ ଭୂଖଣ୍ଡଗୁଡ଼ିକର ଏକୀକରଣ ପ୍ରକ୍ରିୟାରେ ମସ୍କୋର ଭୂମିକା ଆଉରି ଦୃଢ଼ତର ହୋଇଥିଲା ଏବଂ ଭବିଷ୍ୟତ ରାଷ୍ଟ୍ରର କେନ୍ଦ୍ର କିଏ ହେବ, ତାହାକୁ ଚୂଡ଼ାନ୍ତ ଭାବେ ନିର୍ଦ୍ଧାରିତ କରି ଦେଇଥିଲା ।

ଏହା ପରେ ୧୩୮୨ ମସିହାରେ ସୁବର୍ଣ୍ଣ ହୋର୍ଦ୍ଦେର ଖାଁ ତୋଖ୍‌ତାମିଶ୍ ମସ୍କୋ ବିରୁଦ୍ଧରେ ଯୁଦ୍ଧ ଅଭିଯାନ ଚଳାଇ ରୁଷୀୟ ସେନାବାହିନୀକୁ ପରାଜିତ କରି ଦେଲେ ଏବଂ ରୁଷୀୟ ଭୂଖଣ୍ଡଗୁଡ଼ିକ ପୁଣି ବାଧ୍ୟ ହୋଇଥିଲେ ତାଙ୍କୁ କର ଦାନ କରିଥିଲେ । କିନ୍ତୁ ଏହା ଦ୍ୱାରା ତାତାର-ମଙ୍ଗୋଲ ଶୃଙ୍ଖଳରୁ ମୁକ୍ତ ହେବାର ସମ୍ଭାବନା ଉପରେ ରୁଷୀୟ ଲୋକଙ୍କର ଦୃଢ଼ ବିଶ୍ୱାସ ନଷ୍ଟ ହୋଇ ନଥିଲା । ରୁଷୀୟ ଜନସାଧାରଣଙ୍କ ମଧ୍ୟରେ ସାମାଜିକ ସଚେତନତାର ଅଭିବୃଦ୍ଧି ଏବଂ ରୁଷୀୟ ସଂସ୍କୃତିର ବିକାଶ ପ୍ରତିଫଳିତ ହୋଇଥିଲା ପ୍ରତିଭାବାନ ଶିଳ୍ପୀ ଆନ୍ଦ୍ରେଇ ରୁବ୍‌ଲିଓଭ୍‌ଙ୍କ ଚିତ୍ରଗୁଡ଼ିକରେ । ଦକ୍ଷିଣର ସ୍ଲାଭ୍ ଦେଶସମୂହ ଆଉ ବୈଜାନ୍ତିଅମ୍ ସହିତ ସାଂସ୍କୃତିକ ସଂପର୍କରାଜି ଅଧିକ ସକ୍ରିୟ

ହୋଇଥିଲା । ବିଦେଶୀ ଶାସନ ଶୃଙ୍ଖଳରେ ସଢ଼ିବା ପୂର୍ବରୁ ଶହ ଶହ ବର୍ଷ ଧରି ଗଢ଼ି ଉଠିଥିବା ରୁଷୀୟ ସଂସ୍କୃତିର ପୁନରାବିର୍ଭାବ ଘଟିଥିଲା । ଘଟଣାପଞ୍ଜିର ଲିପିବଦ୍ଧକରଣ ପୁଣି ବିକାଶ ଲାଭ କରିଥିଲା ପୁରାତନ ପରମ୍ପରାକୁ ଭିତ୍ତି କରି । ପ୍ରାସାଦ ନିର୍ମାଣର ପୁରାତନ ଶୈଳୀ ପୁଣି ପୁନର୍ଜୀବନ ଲାଭ କରିଥିଲା ନୋଭ୍‌ଗୋରଦରେ । କୁଲିକୋଭ ଯୁଦ୍ଧର ଗୁଣଗାନ କରି ପଦ୍ୟାକାରରେ ରଚିତ "ଜାଦନ୍‌ସ୍‌ଚିନା" କାବ୍ୟଟି "ଇଗୋରଙ୍କ ଅତିଥିସହାରଙ୍କ ଗାଥା" ମନେ ପକାଇ ଦିଏ ।

ଏପର୍ଯ୍ୟନ୍ତ ଭ୍ଲାଦିମିର୍ ଏବଂ ମସ୍କୋ ପୂର୍ବର ପ୍ରାଚୀନ ରୁଷୀୟ ରାଷ୍ଟ୍ରର ପଶ୍ଚିମ ଅଞ୍ଚଳଗୁଡ଼ିକ ସହିତ ନିବିଡ଼ ସଂପର୍କ ପ୍ରତିଷ୍ଠା କରି ପାରି ନଥିଲେ । ଏହି ଅଞ୍ଚଳର ଏକ ବିରାଟ ଅଂଶରେ ବାସ କରୁଥିବା ବେଲୋରୁଷୀୟ ଏବଂ ୟୁକ୍ରେନୀୟ ଲୋକଙ୍କୁ (ଏହିସବୁ ଅଧିଜାତିମାନେ ରୂପ ପରିଗ୍ରହ କରିଥିଲେ ୧୪ଶ-୧୫ଶ ଶତାବ୍ଦୀରେ) ଶାସନ କରୁଥିଲେ ଲିଥୁଆନୀୟ ସାମନ୍ତ ରାଜାମାନେ । ଲିଥୁଆନୀୟ ରାଜ୍ୟଟି ଆକାର ଦୃଷ୍ଟିରୁ ପୂର୍ବ ୟୁରୋପରେ ଏକ ବଡ଼ ରାଜ୍ୟ ଥିଲା ଏବଂ ଏହାର ସଂସ୍କୃତି ମଧ୍ୟ ଉନ୍ନତ ଥିଲା । ଜର୍ମାନ୍ ସାମନ୍ତମାନଙ୍କ ଅଗ୍ରଗତି ବିରୁଦ୍ଧରେ ପରିଚାଳିତ ଯୁଦ୍ଧରେ ଏକ ବଡ଼ ଭୂମିକା ପାଳନ କରୁଥିଲା ଏହି ରାଜ୍ୟ । ଗ୍ରୁନ୍‌ଓ୍ୱାଲଡ୍ ଠାରେ ଟିଉଟନିକ୍ ଅର୍ଡରକୁ ଲିଥୁଆନୀୟ, ପୋଲ୍ ଏବଂ ରୁଷୀୟ (ସ୍ମୋଲେନ୍‌ସ୍କ ସେନାଦଳ), ୟୁକ୍ରେନୀୟ ଏବଂ ବେଲୋରୁଷୀୟ ସେନାଦଳଙ୍କ ସମେତ ଜାଁ ଜିଜ୍‌କାଙ୍କ ନେତୃତ୍ୱରେ ଚେକ୍ ସେନାଦଳଗୁଡ଼ିକ ୧୪୧୦ରେ ପରାଜିତ କରି ଦେଇଥିଲେ । ପୋଲଣ୍ଡ ସହିତ ସଂଘ ପ୍ରତିଷ୍ଠିତ ହେଲା ପରେ କ୍ୟାଥଲିକ ଧର୍ମ ଲିଥୁଆନୀୟ ରାଜ୍ୟର ବିଭିନ୍ନ ଅଞ୍ଚଳରେ ବ୍ୟାପକତା ଲାଭ କରିଥିଲା । ଜାତିଗତ ତଥା ଧର୍ମୀୟ ସ୍ୱେଚ୍ଛାଚାରିତା ଶ୍ରେଣୀଗତ ନିର୍ଯ୍ୟାତନକୁ ତୀବ୍ରତର କରି ଦେଇଥିଲା ।

ରୁଷୀୟ ଭୂଖଣ୍ଡଗୁଡ଼ିକର ଏକତ୍ରୀକରଣ ପ୍ରକ୍ରିୟାଟି ଅବ୍ୟାହତ ରହିଥିଲା ବହୁ ବର୍ଷ ଧରି ମସ୍କୋ ରାଜବଂଶର ରାଜାମାନଙ୍କ ମଧ୍ୟରେ ଚାଲିଥିବା ଯୁଦ୍ଧ (୧୪୨୦ ଦଶକ-୧୪୫୦ ଦଶକ) ସତ୍ତ୍ୱେ, ଏପରିକି ତାତାର-ମଙ୍ଗୋଲ ହସ୍ତକ୍ଷେପ ମଧ୍ୟ ଏହାକୁ ସ୍ତବ୍ଧ କରି ପାରି ନଥିଲା । ଅନ୍ୟ ଦିଗରେ, ରୁଷୀୟ ଲୋକଙ୍କ ମଧ୍ୟରୁ ଅଧିକାଂଶଙ୍କ ମନରେ ଦୃଢ଼ ଧାରଣା ଜାତ ହୋଇଥିଲା ଯେ, ସାମନ୍ତୀୟ ସଂଘର୍ଷ ହେଉଛି ଆତ୍ମଘାତୀ । ଲୋକଙ୍କ ଶକ୍ତିକୁ କ୍ଷୟ କରୁଥିବା ସାମନ୍ତୀୟ ନୈରାଜ୍ୟବାଦୀ ଯୁଦ୍ଧ ବିରୁଦ୍ଧରେ ଯେଉଁମାନେ କହୁଥିଲେ, ସେମାନଙ୍କୁ ଅଧିକାଂଶ ଲୋକ ସମର୍ଥନ ଦେଇଥିଲେ ।

୧୫ଶ-୧୬ଶ ଶତାବ୍ଦୀରେ ରୁଷ୍ ଭୂଖଣ୍ଡଗୁଡ଼ିକର ପୁନରେକୀକରଣ ବ୍ୟାପକ ଆକାରରେ ଆଗେଇ ଚାଲିଥିଲା ; ନୂଆ ନୂଆ ଅଞ୍ଚଳ ରୁଷ୍ ରାଷ୍ଟ୍ର ସହିତ ଯୁକ୍ତ ହୋଇଥିଲେ । ଫଳରେ ୧୫ଶ ଶତାବ୍ଦୀର ଶେଷ ବେଳକୁ ଏହାର ଜନସଂଖ୍ୟା ୬,୦୦୦,୦୦୦ରୁ ବୃଦ୍ଧି ପାଇ ୧୬ଶ ଶତାବ୍ଦୀର ମଧ୍ୟ ଭାଗକୁ ୯,୦୦୦,୦୦୦ରେ ପହଞ୍ଚିଥିଲା । ୧୫ଶ ଶତାବ୍ଦୀର

ଶେଷରେ ରୁଷିଆ ୟୁରୋପର ସର୍ବବୃହତ୍ ରାଷ୍ଟ୍ରରେ ପରିଣତ ହୋଇଥିଲା । ସେତେବେଳେ ଏହାର ଭୂଖଣ୍ଡ ପଶ୍ଚିମରେ ବିସ୍ତାରିତ ଥିଲା ପଶ୍ଚିମବର୍ତ୍ତୀ ଦ୍‌ଭିନା ନଦୀ ଓ ଫିନ୍‌ଲାଣ୍ଡ ଉପସାଗର ପର୍ଯ୍ୟନ୍ତ ଏବଂ ପୂର୍ବରେ ୟୁରାଲ ପର୍ବତମାଳା ଓ ଓବ୍ ନଦୀର ନିମ୍ନଭୂମି ପର୍ଯ୍ୟନ୍ତ । ଉପରେ ଏହା ବିସ୍ତାରିତ ହୋଇଥିଲା ଉତ୍ତର ଆର୍କଟିକ୍ ମହାସାଗର ଓ ଦକ୍ଷିଣରେ ସେଇମ୍ ନଦୀର ମଧ୍ୟାଞ୍ଚଳ ପର୍ଯ୍ୟନ୍ତ । ଏହାର କ୍ଷେତ୍ର ଫଳ ଶହେ ବର୍ଷ ମଧ୍ୟରେ ୬ ଗୁଣ ବୃଦ୍ଧି ପାଇଥିଲା । ରୁଷିଆ ଥିଲା ୟୁରୋପର ଅନ୍ୟତମ ବୃହତ୍ତମ ରାଷ୍ଟ୍ର ।

ଏହି ସମୟରେ ସାମନ୍ତବାଦୀ ଭୂମିମାଲିକାନାରେ ମଧ୍ୟ ଉଲ୍ଲେଖନୀୟ ପରିବର୍ତ୍ତନ ଘଟିଥିଲା । ପଶ୍ଚିମ ରୁଷିଆରେ, ବିଶେଷ କରି ନୋଭ୍‌ଗୋରଦରେ, ଯିଏକି ମସ୍କୋ ରାଜ୍ୟ ସହିତ ସାମିଲ ହୋଇଥିଲା, ବଡ଼ ବଡ଼ ଭୋତ୍‌ଚିନାସବୁ ଭାଙ୍ଗି ପଡ଼ି ଖଣ୍ଡ ଖଣ୍ଡ (ସାମନ୍ତରାଜା ତଥା ସମ୍ଭ୍ରାନ୍ତମାନଙ୍କ ମାଲିକାନାଧୀନ ପିତୃତାନ୍ତ୍ରିକ ମହାଲ) ହୋଇଯିବାର ପ୍ରକ୍ରିୟାଟା ତୀବ୍ରତର ହୋଇ ଉଠିଥିଲା । ସେସବୁ ମଧ୍ୟରୁ ଅଧିକାଂଶ ଜମି ହସ୍ତାନ୍ତରିତ ହୋଇ ଯାଇଥିଲା ମଧ୍ୟମ ଧରଣର ସାମନ୍ତ ସମ୍ଭ୍ରାନ୍ତମାନଙ୍କ ପାଖକୁ ଏକ ଅସ୍ଥାୟୀ କାଳ ପାଇଁ, ରାଜାମାନଙ୍କର ସେବା ବାବଦକୁ ଜାଗିର ହିସାବରେ (ଅଧିକାଂଶ କ୍ଷେତ୍ରରେ ସାମରିକ ଏବଂ କେବେ କେମିତି ପ୍ରଶାସନିକ କାର୍ଯ୍ୟ ପାଇଁ) । ଏହାକୁ ପୋମେସ୍ତିଏ ବୋଲି କୁହାଯାଉଥିଲା । ସେତେବେଳେ ଏହି ଧରଣର ଭୂମିମାଲିକାନା ବ୍ୟାପକ ଭାବେ ପ୍ରଚଳିତ ଥିଲା ଏବଂ ସାମନ୍ତବାଦୀ ସମାଜରେ ଦ୍‌ଭୋରିଆନେ ପରିଣତ ହୋଇଥିଲା ମାହାଲରେ ।

ସାମନ୍ତ ରାଜା ଏବଂ ସମ୍ଭ୍ରାନ୍ତମାନଙ୍କ ମାଲିକାନାଧୀନ ବୃହତ୍ ଭୋତ୍‌ଚିନାଗୁଡ଼ିକ ଦେଶର କେନ୍ଦ୍ରାଞ୍ଚଳରେ (ସର୍ବୋପରି ମସ୍କୋ ଅଞ୍ଚଳରେ) ସେଇପରି ରହି ଯାଇଥିଲା । ଏଠାରେ ଭୂମିମାଲିକାନା ବ୍ୟବସ୍ଥାରେ ଯେଉଁ ପରିବର୍ତ୍ତନ ଦେଖାଦେଇଥିଲା, ତାହା ପ୍ରଧାନତଃ ଘଟିଥିଲା ମଠାଧୀନ ଜମି କ୍ଷେତ୍ରରେ । ଏହା ଘଟିଥିଲା ଗ୍ରାମଗୋଷ୍ଠୀ ଅଧୀନସ୍ଥ ଚାଷୀମାନଙ୍କ ଜମିକୁ ଅଧିକାର କରିଆରେ ଏବଂ ବେଳେ ବେଳେ ଭୋତ୍‌ଚିନା ଦ୍ୱାରା । ୧୬ଶ ଶତାବ୍ଦୀ ବେଳକୁ ଏଠାକାର ମଠଗୁଡ଼ିକ ବ୍ୟକ୍ତିଗତ ମାଲିକାନାଧୀନ ଜମିର ଏକତୃତୀୟାଂଶ ଜମିର ମାଲିକ ପାଲଟି ଯାଇଥିଲେ । କେବଳ ରୁଷୀୟ ପୋମୋରିଏରେ (ରୁଷ୍ ରାଷ୍ଟ୍ରର ଉତ୍ତରବର୍ତ୍ତୀ ଅଞ୍ଚଳ) ଗ୍ରାମଗୋଷ୍ଠୀର ଚାଷୀମାନଙ୍କ ଜମିମାଲିକାନାଟା ତିଷ୍ଠି ରହିଥିଲା ବେଳେ ବଡ଼ ବଡ଼ ପୋମେସ୍ତିଏ ବା ଭୋତ୍‌ଚିନା ଏଠାରେ ନଥିଲା ।

ରୁଷିଆରେ ସେତେବେଳେ ପ୍ରଚଳିତ ବେଗାରି ପ୍ରଥା ହେତୁ ଚାଷୀମାନେ ଜମିର ଉତ୍ପାଦିକା ଶକ୍ତି ବୃଦ୍ଧି କରିବାକୁ ଇଚ୍ଛୁକ ନଥିଲେ । ଚାଷୀମାନଙ୍କର ଜୋତସବୁର ନିମ୍ନ ଉତ୍ପାଦିକା ଶକ୍ତି ହେତୁ ସେମାନେ ବେଗାରି ପ୍ରଥା ଦ୍ୱାରା ଦାସ ପାଲଟି ଯାଇଥିଲେ ଏବଂ ବଜାର ପାଇଁ ପ୍ରାୟ କିଛି ଉତ୍ପାଦନ କରି ପାରୁ ନଥିଲେ । ଏଥି ସାଥେ ସାଥେ ସାମନ୍ତ ପ୍ରଭୁମାନେ (ବିଶେଷ କରି ଦ୍‌ଭୋରିଆନେ ଯେଉଁମାନଙ୍କର ମହାଲ ଏବଂ ଆୟ

ତୁଳନାମୂଳକ ଭାବେ କମ୍ ଥିଲା) ସେମାନଙ୍କ ଚାଷୀମାନଙ୍କୁ ଅଧିକ ବେଗାରିମୂଳକ ଶୋଷଣ କରୁଥିଲେ ଏବଂ ଅଧିକରୁ ଅଧିକ ଦାସତ୍ୱ ବନ୍ଧନରେ ବାନ୍ଧି ଶେଷକୁ ଭୂମିଦାସରେ ପରିଣତ କରୁଥିଲେ – ଅର୍ଥନୈତିକ ଭାବେ ଏବଂ ବ୍ୟକ୍ତିଗତ ଭାବେ ସେମାନଙ୍କ ସାମନ୍ତ ପ୍ରଭୁଙ୍କ ଉପରେ ନିର୍ଭରଶୀଳ କରୁଥିଲେ । ଏହି କାରଣରୁ ଦ୍ୱୋରିଆନେ ଚାହୁଁଥିଲେ ରାଷ୍ଟ୍ର ଏପରିସବୁ ଆଇନ୍ ପ୍ରଣୟନ କରୁ, ଯଦ୍ୱାରା ଚାଷୀମାନେ ସେମାନଙ୍କ ସାମନ୍ତ ଭୂସ୍ୱାମୀଙ୍କ ପାଖରେ ବାନ୍ଧି ହୋଇ ରହନ୍ତୁ, ଜଣେ ସାମନ୍ତ ଭୂସ୍ୱାମୀକୁ ଛାଡ଼ି ଅନ୍ୟ ଜଣକ ପାଖକୁ ଯାଇ ନପାରନ୍ତୁ ଏବଂ ଚାଷୀମାନଙ୍କ ବିଦ୍ରୋହକୁ ଦମନ କରାଯାଉ ।

ମହାରାଜାଙ୍କ ରାଷ୍ଟ୍ର ଦ୍ୱୋରିଆନେମାନଙ୍କୁ ତା'ର ସମର୍ଥନ ପ୍ରଦାନ କରିଥିଲା, କାରଣ ସେମାନଙ୍କୁ ଏହା ଦେଖୁଥିଲା ସମଗ୍ର ରୁଷ୍ ଭୂଖଣ୍ଡରେ ଏହାର ଅଖଣ୍ଡ ଶାସନ ପ୍ରତିଷ୍ଠା କରିବା ପାଇଁ ଏବଂ ବଡ଼ ବଡ଼ ସାମନ୍ତ କରଦରାଜ ଏବଂ ସମ୍ଭ୍ରାନ୍ତମାନଙ୍କ ବିଚ୍ଛିନ୍ନତାବାଦ ବିରୁଦ୍ଧରେ ଲଢ଼ିବା ପାଇଁ ପ୍ରଧାନ ଖୁଣ୍ଟ ଭଳି । ତେଣୁ ୧୫ଶ ଶତାବ୍ଦୀରେ ଜଣେ ସାମନ୍ତ ପ୍ରଭୁ ପାଖରୁ ଆଉ ଜଣେ ସାମନ୍ତ ପ୍ରଭୁ ପାଖକୁ ଚାଲିଯିବାର ଅଧିକାରକୁ ପ୍ରତିବର୍ଷ ମାତ୍ର ଦୁଇ ସପ୍ତାହ ପାଇଁ ଆଇନ୍ ଦ୍ୱାରା ସୀମିତ କରି ଦିଆଯାଇଥିଲା ।

୧୫ଶ ଏବଂ ୧୬ଶ ଶତାବ୍ଦୀରେ ବିଭିନ୍ନ ହସ୍ତଶିଳ୍ପ ଏବଂ ବାଣିଜ୍ୟ ବିକାଶ ଲାଭ କରିଥିଲା ରୁଷିଆରେ : ଖଣିରୁ ଧାତୁ ନିଷ୍କାସନ, ଧାତୁ ତରଳାଇବା, ଧାତୁରେ ବିଭିନ୍ନ ଜିନିଷ ତିଆରି କରିବା, କାଠ ଜିନିଷ ତିଆରି କରିବା, ମାଟିପାତ୍ର ନିର୍ମାଣ କରିବା, ଚମଡ଼ା ଶିଳ୍ପ ଏବଂ ବୟନ, ଆଦି । ଏହା ଫଳରେ ଏକ ବିରାଟ ସଂଖ୍ୟକ "ଅକୃଷକ" ଗୋଷ୍ଠୀର ଲୋକେ ଦେଖାଦେଇଥିଲେ : ଏମାନେ ହେଲେ ସେହିସବୁ କାରିଗର ଗୋଷ୍ଠୀ, ଯେଉଁମାନେ ମୁଖ୍ୟତଃ ବଜାର ପାଇଁ ଜିନିଷପତ୍ର ତିଆରି କରୁଥିଲେ । "ବ୍ୟବସାୟଗତ ଚାଷୀ", ବଣିକ ଏବଂ ନିଜସ୍ୱ କର୍ମଶାଳା ଥିବା ଧନୀ କୃଷକଙ୍କ ସଂଖ୍ୟା ବହୁ ଗୁଣ ବଢ଼ି ଯାଇଥିଲା । ରୁଷିଆର ବିଖ୍ୟାତ ବଣିକବୃନ୍ଦ ଏବଂ କର୍ମଶାଳାର ମାଲିକ ଷ୍ଟ୍ରୋଗାନୋଭ୍‌ମାନେ ଏହି ସ୍ତର ମଧ୍ୟରୁ ଜନ୍ମ ନେଇଥିଲେ । ଷ୍ଟ୍ରୋଗାନୋଭ୍‌ମାନେ ସେମାନଙ୍କ ଲୁଣ ଖଣିଗୁଡ଼ିକରେ ହଜାର ହଜାର ଲୋକଙ୍କୁ ନିଯୁକ୍ତ କରୁଥିଲେ । କିନ୍ତୁ ସାର୍ବିକ ଭାବେ ମନେ ରଖିବାକୁ ହେବ ଯେ, ରୁଷିଆରେ ଭୂମିଦାସତ୍ୱର ଦୃଢ଼ୀକରଣ ହେତୁ ବଜାର ପାଇଁ ଉତ୍ପାଦନ କରୁଥିବା ଛୋଟ ଆକାରର କୃଷକ ଜୋତ ଅର୍ଥନୀତିର ବିକାଶର ଗତି ଧୀର ହୋଇଯାଇଥିଲା ଏବଂ ହସ୍ତଶିଳ୍ପ ଆଉ ବାଣିଜ୍ୟ ବାଧା ପ୍ରାପ୍ତ ହୋଇଥିଲା ।

ଏହା ସତ୍ତ୍ୱେ ବାଣିଜ୍ୟ ବିକାଶ ଲାଭ କରିଥିଲା ଏବଂ ସ୍ଥାନୀୟ ଆଞ୍ଚଳିକ ବଜାର ସୃଷ୍ଟି ହୋଇଥିଲା । ଏହି ସମୟରେ ରୁଷିଆର ବୈଦେଶିକ ବାଣିଜ୍ୟ ତା'ର ପାଶ୍ଚାତ୍ୟ ଏବଂ ଦକ୍ଷିଣସ୍ଥ ପ୍ରତିବେଶୀ ରାଷ୍ଟ୍ରମାନଙ୍କ ସହିତ ମଧ୍ୟ ବେଶ୍ ବୃଦ୍ଧି ପାଇଥିଲା : ୧୬ଶ ଶତାବ୍ଦୀର ମଧ୍ୟ ଭାଗରେ ଇଂଲଣ୍ଡ ସହିତ, ଏହାର କୋଡ଼ିଏ ବର୍ଷ ପରେ ହଲାଣ୍ଡ ସହିତ । ୧୫ଶ ଶତାବ୍ଦୀରେ ରୁଷୀୟ ବଣିକମାନେ ସୁଦୂରକୁ ଯାତ୍ରା କରି ବ୍ୟବସାୟ

ବାଣିଜ୍ୟ କରୁଥିଲେ । ତ୍ଭେରର ବଣିକ ଆଫାନାସି ନିକିଟିନ୍ ଭାରତରେ ଭାସ୍କୋ ଡା ଗାମା ପହଞ୍ଚିବାର ୩୦ ବର୍ଷ ପୂର୍ବରୁ ସେଠାରେ ପହଞ୍ଚିଥିଲେ ଏବଂ ତାଙ୍କର ଏହି ସୁଦୂର ଯାତ୍ରା ସଂପର୍କରେ ଆଗ୍ରହପ୍ରଦ ବର୍ଣ୍ଣନା ସେ ଲିପିବଦ୍ଧ କରି ଯାଇଛନ୍ତି ତାଙ୍କର "ତିନି ସମୁଦ୍ରରେ ଯାତ୍ରା" ପୁସ୍ତକଟିରେ ।

ତେବେ ତତ୍କାଳୀନ ବୈଦେଶିକ ରାଜନୈତିକ ଅବସ୍ଥା ରୁଷିଆର ବୈଦେଶିକ ବାଣିଜ୍ୟର ବିକାଶ ପକ୍ଷରେ ସୁବିଧାଜନକ ନଥିଲା । ତାତାର କାଜାନ୍ ଖାନାତେ ଭୋଲ୍‌ଗା ନଦୀରେ ଅବାଧରେ ଜିନିଷପତ୍ର ନେବା ଆଣିବା କରିବାରେ ବାଧା ଦେଇଥିଲେ । ଭୋଲ୍‌ଗା ଥିଲା ରୁଷିଆ ସହିତ ପ୍ରାଚ୍ୟର ଦେଶମାନଙ୍କୁ ସଂଯୋଗ କରିବାର ଏକ ଗୁରୁତ୍ୱପୂର୍ଣ୍ଣ ନଦୀପଥ । ଦକ୍ଷିଣରେ କ୍ରିମିଆର ଖାନାତେ କୃଷ୍ଣ ସାଗରକୁ ପ୍ରବେଶ ପଥଟିକୁ ରୁଦ୍ଧ କରି ଦେଇଥିଲେ । ପଶ୍ଚିମରେ ରୁଷିଆ ସହିତ ପଶ୍ଚିମ ୟୁରୋପର ଦେଶମାନଙ୍କର ପ୍ରତ୍ୟକ୍ଷ ବାଣିଜ୍ୟର ସଂପର୍କର ବିକାଶ ଦିଗରେ ଦୃଢ଼ ଭାବେ ବାଧା ଦେଇଥିଲେ ଲିଥୁଆନିଆ-ପୋଲିସ୍ ରାଷ୍ଟ୍ର, ଲିଭୋନୀୟ ଅର୍ଡର, ହାନ୍‌ସେ ଲୀଗ୍ ଏବଂ ସୁଇଡେନ୍ । ଏଭଳି ଅବସ୍ଥାରେ, କାଜାନ୍ ଖାନାତେ ଏବଂ ଲିଭୋନୀୟ ଅର୍ଡର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାଟା ଅତୀବ ଆବଶ୍ୟକୀୟ ହୋଇ ପଡ଼ିଥିଲା କେବଳ ବୈଦେଶିକ ବାଣିଜ୍ୟ ପାଇଁ ନୁହେଁ, ୧୬ଶ ଶତାବ୍ଦୀରେ ରୁଷିଆର ସାମଗ୍ରିକ ଅର୍ଥନୈତିକ ବିକାଶ ପାଇଁ ମଧ୍ୟ ।

୧୬ଶ ଶତାବ୍ଦୀର ପ୍ରାରମ୍ଭରେ ସର୍ବାଧିକ ବିଖ୍ୟାତ ରୁଷୀୟ ରାଷ୍ଟ୍ରନୀତିଜ୍ଞ ଏବଂ କୂଟନୀତିବିଦ୍ ଇଭାନ୍ ତୃତୀୟ (୧୪୬୨-୧୫୦୫) ଏବଂ ତାଙ୍କର ପୁତ୍ର ଭାସିଲି ତୃତୀୟଙ୍କ ରାଜତ୍ୱ କାଳରେ ମହାନ୍ ରୁଷୀୟମାନେ ବସବାସ କରୁଥିବା ଅଧିକାଂଶ ଅଞ୍ଚଳ ମସ୍କୋର ମହାରାଜାଙ୍କ ଅଧୀନରେ ଐକ୍ୟବଦ୍ଧ ହୋଇଥିଲା । ପରେ ସେ ସମଗ୍ର ରୁଷିଆର ଶାସକରେ ପରିଣତ ହୋଇଥିଲେ । ନୋଭଗୋରଦ ପ୍ରଜାତନ୍ତ୍ର ସଂପୂର୍ଣ୍ଣ ରୂପେ ତା'ର ସ୍ୱାଧୀନତା ହରେଇ ବସିଥିଲା (୧୪୭୦) : ଭେଚେର (ଜନପ୍ରିୟ ବିଧାନ ସଭା) ସ୍ୱାଧୀନତାକୁ ରଦ୍ କରାଗଲା, ଭେଚେର ଘଣ୍ଟାକୁ ହଟେଇ ଦିଆଗଲା ସହରରୁ, ଧନୀ ସାମନ୍ତ ପ୍ରଭୁ ଏବଂ ବଣିକମାନଙ୍କୁ ବାଧ୍ୟ କରାଗଲା ସହରର କେନ୍ଦ୍ର ସ୍ଥଳରୁ ଦୂରେଇଯିବା ପାଇଁ । ନୋଭ୍‌ଗୋରଦରେ ଜମି ଆଦିକୁ ମସ୍କୋ ରାଜାଙ୍କ ସେବାର୍ଥେ ମଧ୍ୟବର୍ତ୍ତୀ ତଥା ନିମ୍ନ ସ୍ତରର ଲୋକଙ୍କ ମଧ୍ୟରେ ବାଣ୍ଟି ଦିଆଯାଇଥିଲା । ନୋଭ୍‌ଗୋରଦ ପରେ ୧୪୮୫ ଖ୍ରୀଷ୍ଟାବ୍ଦର ତ୍ଭେର୍‌ର ମହାନ ରାଜ୍ୟକୁ ମସ୍କୋ ଅଧିକାର କରି ନେଲା ଏବଂ ୧୬ଶ ଶତାବ୍ଦୀରେ ର୍ୟାଜାନ ମହାନ୍ ରାଜ୍ୟ ଓ ପ୍‌ସ୍କୋଭ ଭୂଖଣ୍ଡସମୂହ ଏହି ପଥ ଅନୁସରଣ କରିଥିଲେ ।

ନାମକୁ ମାତ୍ର ବହୁ ସାମନ୍ତ ରାଜ୍ୟ ଲୋପ ପାଇଗଲା । ତା'ପରେ ମସ୍କୋ ମହାରାଜାଙ୍କ ଦରବାର ଏବଂ ସେନାବାହିନୀର କ୍ରମବିନ୍ୟାସରେ ଅବସ୍ଥାନ ଦ୍ୱାରା ସାମନ୍ତ ରାଜାମାନଙ୍କର

ସାମାଜିକ ଅବସ୍ଥାନ ନିର୍ଦ୍ଧାରିତ ହୋଇଥିଲା । ଯେଉଁମାନେ ବିଭିନ୍ନ ଉପାଧିରେ ଭୂଷିତ ହୋଇଥିଲେ, ସେମାନଙ୍କ ମଧ୍ୟରେ ଥିଲେ ମସ୍କୋର ସମ୍ଭ୍ରାନ୍ତଗଣ । କେତେକ ସାମନ୍ତ ରାଜା ସମ୍ଭ୍ରାନ୍ତମାନଙ୍କ ଡୁମାରେ (ପରିଷଦ) ସଦସ୍ୟ ରୂପେ ସମ୍ମାନଜନକ ନିଯୁକ୍ତି ମଧ୍ୟ ଲାଭ କରିଥିଲେ । ଏହି ପରିଷଦଟି ଥିଲା ମହାରାଜାଙ୍କର ସର୍ବୋଚ୍ଚ ପରିଷଦ ।

ସାମନ୍ତୀୟ ବିଖଣ୍ଡୀକରଣର ଅବସାନ ବୈଦେଶିକ-ରାଜନୈତିକ ସାଫଲ୍ୟ କ୍ଷେତ୍ରରେ ସହାୟକ ହୋଇଥିଲା । ଏଥି ସଙ୍ଗେ ସଙ୍ଗେ ବୈଦେଶିକ ଆଧିପତ୍ୟ ଦ୍ୱାରା ବିଦ୍ରୋହୀ ସାମନ୍ତ ପ୍ରଭୁମାନଙ୍କୁ ଦମନ କରିବା ସମ୍ଭବ ହୋଇଥିଲା । ଇଭାନ୍ ତୃତୀୟଙ୍କ ଦ୍ୱାରା ଅନୁସୃତ ଦୂରଦୃଷ୍ଟିସଂପନ୍ନ ଏବଂ ସତର୍କତାମୂଳକ ନୀତି ଫଳରେ ହୋର୍ଡ଼ର ଶୃଙ୍ଖଳରୁ ରୁଷ୍ ଲୋକେ ବିନା ରକ୍ତପାତରେ ମୁକ୍ତ ହେବା ସମ୍ଭବ ହୋଇ ପାରିଥିଲା । କୁଲିକୋଭ୍ କ୍ଷେତ୍ରର ସେ ତୁମୂଳ ଯୁଦ୍ଧର ଶହେ ବର୍ଷ ପରେ, ୧୪୮୦ ଖ୍ରୀଷ୍ଟାବ୍ଦରେ ହୋର୍ଡ଼ର ସେହି ଶୃଙ୍ଖଳ ସଂପୂର୍ଣ୍ଣ ଲୋପ ପାଇ ଯାଇଥିଲା । ଏହା ପରେ ଦୁର୍ବଳ ହୋଇ ପଡ଼ିଥିବା ହୋର୍ଡ଼ ବହୁ ଛୋଟ ଛୋଟ ରାଜ୍ୟରେ ବିଭକ୍ତ ହୋଇ ପଡ଼ିଲା ଏବଂ ବାଟୁଙ୍କ ଭଳି ଲୋଭୀ ଶାସକମାନେ ସେସବୁଥିରେ ରାଜତ୍ୱ କରିଥିଲେ । କିନ୍ତୁ ତାଙ୍କ ସାମରିକ ସାଫଲ୍ୟର ଆଉ ପୁନରାବୃତ୍ତି ଘଟି ନଥିଲା ।

ଜଣେ ଶାସକଙ୍କ ଅଧୀନରେ ରୁଷ୍ ଭୂଖଣ୍ଡସମୂହର ଏକତ୍ରୀକରଣଟି ସୂଚନା ଦେଇଥିଲା ଏକ କେନ୍ଦ୍ରୀୟଭୂତ ରାଷ୍ଟ୍ର ଗଠନର ସୁଦୀର୍ଘ ପ୍ରକ୍ରିୟା ଦିଗରେ ଏକ ପ୍ରାରମ୍ଭିକ ପଦକ୍ଷେପ । କେନ୍ଦ୍ର ତଥା ପ୍ରଦେଶରେ ଏକ ମାତ୍ର ବ୍ୟବସ୍ଥାସଂପନ୍ନ ସରକାର ପ୍ରତିଷ୍ଠା ଏବଂ ସାମନ୍ତୀୟ ବିଖଣ୍ଡୀକରଣର ଅବଶେଷାଂଶର ବିଲୋପ ସାଧନ ପ୍ରାୟ ସମଗ୍ର ୧୬ଶ ଶତାବ୍ଦୀ ଧରି ଚାଲିଥିଲା । ଏବଂ ଏହି ସମୟରେ ସରକାରୀ ଭାବେ ଦେଶର ନାମକରଣ ହୋଇଥିଲା ରୁଷ୍ ରାଷ୍ଟ୍ର ବା ରୁଷ୍ ଜାର୍‌ତନ୍ତ୍ର ।

କେତେକ ମଧ୍ୟ ୟୁରୋପୀୟ ଦେଶ ଭଳି ରୁଷିଆରେ ସାମନ୍ତବାଦୀ ଉତ୍ପାଦନ ପଦ୍ଧତି ସଂପନ୍ନ ଏକ କେନ୍ଦ୍ରୀୟଭୂତ ରାଷ୍ଟ୍ର ଗଠିତ ହୋଇଥିଲା । ଏଥିରେ ପୁଞ୍ଜିବାଦୀ ସଂପର୍କରାଜିର ବିକାଶ ଘଟି ନଥିଲା ଏବଂ ଏହି କେନ୍ଦ୍ରୀୟଭୂତ ରାଷ୍ଟ୍ର ପ୍ରତିଷ୍ଠିତ ହୋଇଥିଲା ରୁଷ୍ ଭୂଖଣ୍ଡଗୁଡ଼ିକର ଅର୍ଥନୈତିକ ଐକ୍ୟ ପ୍ରତିଷ୍ଠା ହେବା ପୂର୍ବରୁ । ତେଣୁ ରୁଷିଆର ରାଜନୈତିକ କେନ୍ଦ୍ରୀକରଣରେ ମୁଖ୍ୟ ଶକ୍ତି ଦ୍ୱରିଆନେ ଏବଂ ବୁର୍ଜୁଆଜି ନହୋଇ କେବଳ ଦ୍ୱରିଆନେ ହୋଇଥିଲା । ସାମନ୍ତ ପ୍ରଭୁମାନଙ୍କର ଏତାଦୃଶ ଅର୍ଥନୈତିକ ତଥା ରାଜନୈତିକ ପ୍ରାଧାନ୍ୟ ଅନିବାର୍ଯ୍ୟ ଭାବେ ଦେଶର ଅର୍ଥନୈତିକ ବିକାଶ ଦିଗରେ ବାଧା ସୃଷ୍ଟି କରିଥିଲା ।

୧୫ଶ-୧୬ଶ ଶତାବ୍ଦୀରେ ରୁଷିଆର ଐତିହାସିକ ବିକାଶର ଅନ୍ୟତମ ତାତ୍ପର୍ଯ୍ୟପୂର୍ଣ୍ଣ ବୈଶିଷ୍ଟ୍ୟ ହେଲା, ନୂଆ କରି ମୁଣ୍ଡଟେକି ଉଠୁଥିବା ଏହି କେନ୍ଦ୍ରୀୟଭୂତ ରାଷ୍ଟ୍ରଟି ଏକ ଏକକଜାତୀୟ ରାଷ୍ଟ୍ର ନଥିଲା (ପୁଞ୍ଜିବାଦୀ ସମାଜର ପ୍ରବର୍ଗ ରୂପେ ରୁଷ୍ ଜାତି ତତ୍‌କାଳୀନ ସାମନ୍ତବାଦୀ ରୁଷିଆର ରୂପ ପରିଗ୍ରହ କରି ନଥିଲା) । ରୁଷିଆ ସେତେବେଳେ

ପ୍ରତିନିଧିତ୍ୱ କରୁଥିଲା ଏଭଳି ଏକ ରାଷ୍ଟ୍ରର, ଯିଏକି ବହୁ ଜାତି ଅଧିଜାତିକୁ ଐକ୍ୟବଦ୍ଧ କରୁଥିଲା ଏବଂ ସେମାନଙ୍କ ମଧ୍ୟରୁ ଅନେକ ପ୍ରାକ୍ ସାମନ୍ତବାଦୀ ସ୍ତରରେ ରହିଥିଲେ । ରାଷ୍ଟ୍ରର ରାଜନୈତିକ ଶକ୍ତି ସେଇସବୁ ଶାସକ ଶ୍ରେଣୀ ହାତରେ ଥିଲା, ଯେଉଁମାନେ ରୁଷ୍ ଜାତି ମଧ୍ୟରେ ଜାତ ହୋଇଥିଲେ । ଏହି ରୁଷ୍ ଜାତି କେବଳ ଦେଶର ଜନଗୋଷ୍ଠୀରେ ସର୍ବାଧିକ ସଂଖ୍ୟାଗରିଷ୍ଠ ନଥିଲା, ଏହାର ଅର୍ଥନୈତିକ ଏବଂ ରାଜନୈତିକ ଜୀବନରେ ଅଗ୍ରଣୀ ଭୂମିକା ମଧ୍ୟ ପାଳନ କରୁଥିଲା ।

୧୫ଶ ଶତାବ୍ଦୀର ଶେଷରେ, ଏକ ସୁଦୀର୍ଘ ବିରତି ପରେ, ରୁଷିଆ ପୁଣି ଆନ୍ତର୍ଜାତିକ କ୍ଷେତ୍ରରେ ଏକ ସକ୍ରିୟ ଭୂମିକା ପାଳନ କରିବାକୁ ଲାଗିଲା । ୟୁରୋପର ବିଭିନ୍ନ ସରକାର ଆଶା କରିଥିଲେ ରୁଷିଆର ନବଜାତ ଶକ୍ତିକୁ ସେମାନଙ୍କ ସ୍ୱାର୍ଥରେ, ବିଶେଷ କରି ତୁର୍କୀର ଧମକ ବିରୁଦ୍ଧରେ ସଂଗ୍ରାମରେ ବ୍ୟବହାର କରିବାକୁ । ତା'ଛଡ଼ା ସେମାନେ ରୁଷିଆକୁ ପ୍ରବର୍ତ୍ତାଉଥିଲେ କ୍ୟାଥଲିକ୍ ଏବଂ ରକ୍ଷଣଶୀଳ ଗିର୍ଜାମାନଙ୍କ ମଧ୍ୟରେ ଐକ୍ୟ ପ୍ରତିଷ୍ଠା କରିବା ପାଇଁ । ଏହି ଉଦ୍ଦେଶ୍ୟରେ ତୃତୀୟ ଇଭାନ୍‌ଙ୍କ ବିବାହ ସଂପାଦନ କରାଯାଇଥିଲା ସର୍ବଶେଷ ବୈଜାଣ୍ଟିନ୍ ସମ୍ରାଟଙ୍କ ଭ୍ରାତୁଷ୍ପୁତ୍ରୀଙ୍କ ସହିତ, ଯିଏକି ପୋପ୍‌ଙ୍କ ତତ୍ତ୍ୱାବଧାନରେ ଇଟାଲୀରେ ବାସ କରୁଥିଲେ । ବୈଜାଣ୍ଟିଅମ୍‌ର ରାଷ୍ଟ୍ର ପ୍ରତୀକ, ଏକ ଦ୍ୱିଶିରବିଶିଷ୍ଟ ଇଗଲ, ରୁଷ୍ ରାଷ୍ଟ୍ରର ପ୍ରତୀକରେ ପରିଣତ ହୋଇଥିଲା ।

ରୁଷିଆର କ୍ରମବର୍ଦ୍ଧମାନ ଶକ୍ତି ଏବଂ ଏହାର ଆନ୍ତର୍ଜାତିକ ସମ୍ମାନ ଏହି ରାଷ୍ଟ୍ରର ରାଜଧାନୀ ମସ୍କୋରେ ପ୍ରତିଫଳିତ ହେବାର କଥା । ଦ୍‌ମିତ୍ରି ଦୋନ୍‌ସ୍କଇଙ୍କ କ୍ରେମଲିନ୍ କିନ୍ତୁ ଥିଲା, ସର୍ବୋପରି, ଏକ ସାମରିକ ଦୁର୍ଗ, ତୃତୀୟ ଇଭାନଙ୍କ କ୍ରେମଲିନ୍‌ର ଚେହେରା ମଧ୍ୟ "ସମଗ୍ର ରୁଷିଆର ଶାସକଙ୍କ" ବାସଭବନର ଉପଯୋଗୀ ହେବା ଉଚିତ । ତେଣୁ ଏହି ଉଦ୍ଦେଶ୍ୟରେ ଇଟାଲୀୟ ସ୍ଥପତିମାନଙ୍କୁ ଆମନ୍ତ୍ରଣ କରାଯାଇଥିଲା ଏବଂ ରୁଷିଆର ପ୍ରବୀଣ କାରିଗରମାନଙ୍କ ସହିତ ମିଶି ସେମାନେ ଏକ ଚମତ୍କାର କ୍ରେମଲିନ୍ ପ୍ରାସାଦସମାହାର ଗଠନ କରିଥିଲେ । ଦୁର୍ଗ ପ୍ରାଚୀର (ସ୍ତମ୍ଭରାଜି ଉପରେ ଶଙ୍କୁ ଆକୃତିର ଅଳଙ୍କରଣଯୁକ୍ତ ଅଗ୍ରଭାଗଗୁଡ଼ିକ ନିର୍ମିତ ହୋଇଥିଲା ପରେ, ୧୭ଶ ଶତାବ୍ଦୀରେ), ଏବଂ ଗିର୍ଜା, ପ୍ରାସାଦ ଏବଂ କେନ୍ଦ୍ରୀୟ ପ୍ରଶାସନ ଭବନସମୂହ ଆଜି ମଧ୍ୟ ଦଣ୍ଡାୟମାନ ହୋଇ ରହିଛି । ପ୍ରାଚୀନ ରୁଷ୍ ସ୍ଥାପତ୍ୟର ସ୍ତମ୍ଭରାଜି ଗିର୍ଜାଗୁଡ଼ିକର ନିର୍ମାଣ ପାଇଁ ମଡେଲ ଭଳି କାର୍ଯ୍ୟ ଦେଇଥିଲା । ଏହି ଭାବେ ଦେଶର କେନ୍ଦ୍ରୀୟ ଗିର୍ଜା, ମସ୍କୋ କ୍ରେମଲିନ୍‌ସ୍ଥ ଆସମ୍ପସନ୍ ଗିର୍ଜାଟି ନିର୍ମିତ ହୋଇଥିଲା ଭ୍ଲାଦିମିର୍ ସହରରେ ଏହି ନାମଧାରୀ ୧୨ଶ ଶତାବ୍ଦୀର ଗିର୍ଜାଟିର ଅନୁକରଣରେ । ସୁଉଚ୍ଚ ଇଭାନ୍ ଭିଲିକି (ମହାନ୍) ଘଣ୍ଟା ସହ ମିନାରର ନିର୍ମାଣ ଶେଷ ହୋଇଥିଲା ୧୭ଶ ଶତାବ୍ଦୀର ପ୍ରାରମ୍ଭରେ ଏବଂ ଏହାକୁ କ୍ରେମଲିନ୍ ପାହାଡ଼ ଉପରେ ରଖାଯାଇଥିଲା । ରୁଷୀୟ ରାଷ୍ଟ୍ରର ଶୀର୍ଷ ବିନ୍ଦୁ ହେଉଛି କ୍ରେମଲିନ୍—ଏହି ଭାବନାଟି ଏହା ଦ୍ୱାରା ପ୍ରଦର୍ଶିତ ହୋଇଥିଲା । ରୁଷୀୟ

ରାଷ୍ଟ୍ରକୁ ଅନେକ ସମୟରେ ମସ୍କୋ ରାଷ୍ଟ୍ର (ଜାର୍ ଶାସନତନ୍ତ୍ର) ବୋଲି, ୧୬ଶ-୧୭ଶ ଶତାବ୍ଦୀରେ ସରକାରୀ ନଥିପତ୍ରରେ ମଧ୍ୟ ବର୍ଣ୍ଣନା କରାଯାଇଛି । ଫଳରେ ମସ୍କୋ ରୁଷିଆର ପ୍ରତୀକ ରୂପେ ଆବିର୍ଭୂତ ହେଲା । ପରବର୍ତ୍ତୀ କାଳରେ ବିଦେଶରେ ରୁଷିଆ ପରିଚିତ ହେଲା ମସ୍କୋଭି ଏବଂ ରୁଷ୍‌ବାସୀମାନେ ମସ୍କୋବାସୀ ବୋଲି ।

୧୬ଶ ଶତାବ୍ଦୀରେ, ଚତୁର୍ଥ ଇଭାନ୍‌ଙ୍କ (ଭୟଙ୍କର ଇଭାନ୍) ରାଜତ୍ୱକାଳରେ (୧୫୩୩-୧୫୮୪) ରୁଷିଆର ବୈଦେଶିକ ନୀତିର ମୁଖ୍ୟ କାର୍ଯ୍ୟଟି ଥିଲା ଖାଜାନ୍ ଖାନାତେଙ୍କ ବିରୁଦ୍ଧରେ ଯୁଦ୍ଧ ପରିଚାଳନା କରିବା । କାଜାନ୍‌ର ସାମନ୍ତ ପ୍ରଭୁମାନଙ୍କ ଦ୍ୱାରା ଅନୁସୃତ ନୀତି ଥିଲା ସୁବର୍ଣ୍ଣ ହୋର୍ଡେ ଦ୍ୱାରା ମଧ୍ୟ ଭୋଲ୍‌ଗା ଅଞ୍ଚଳର ଜାତିମାନଙ୍କୁ ଦାସତ୍ୱ ବନ୍ଧନରେ ବାନ୍ଧି ରଖିବା । ମଧ୍ୟ ଭୋଲ୍‌ଗା ଅଞ୍ଚଳର ଜାତିମାନେ ରୁଷିଆର ଆଉରି ନିକଟବର୍ତ୍ତୀ ହେବାକୁ ଅନେକ ଦିନ ଧରି ଉଦ୍ୟମ କରି ଆସିଥିଲେ । ରୁଷ୍ ଲୋକମାନଙ୍କ ଉପରେ ବାରମ୍ବାର ଧ୍ୱଂସାତ୍ମକ ଆକ୍ରମଣ ହେଉଥିଲା । (କାଜାନ୍‌ରେ ଲକ୍ଷ ଲକ୍ଷ ରୁଷ୍ ଲୋକେ ବନ୍ଦୀ ହୋଇ ରହିଥିଲେ) । କାଜାନ୍ ଏବଂ କ୍ରିମିଆର ସାମନ୍ତ ପ୍ରଭୁମାନଙ୍କର ଆକ୍ରମଣ କ୍ରମଶଃ ଅଧିକରୁ ଅଧିକ ବିପଦପୂର୍ଣ୍ଣ ପ୍ରତିବନ୍ଧକ ସୃଷ୍ଟି କରିଥିଲା ରୁଷ୍ ରାଷ୍ଟ୍ରର ପୂର୍ବ ଏବଂ ଦକ୍ଷିଣବର୍ତ୍ତୀ ଅଞ୍ଚଳସମୂହର ସ୍ୱାଭାବିକ ଅର୍ଥନୈତିକ ବିକାଶ କ୍ଷେତ୍ରରେ । କାଜାନ୍‌ର ଖାନାତେଙ୍କ ବିରୁଦ୍ଧରେ ରୁଷିଆର ଯୁଦ୍ଧରେ ସାମନ୍ତବାଦୀ ସଂପ୍ରସାରଣର ସ୍ୱାର୍ଥ ସହିତ ଖାନାତେର ସୀମାନ୍ତବର୍ତ୍ତୀ ରୁଷ୍ ଭୂଖଣ୍ଡଗୁଡ଼ିକର ନିରାପତ୍ତା ଅର୍ଜନର ଆବଶ୍ୟକତା ଯୁକ୍ତ ହୋଇଥିଲା । ଏହିସବୁ ଯୁଦ୍ଧ ଫଳରେ (ଯା'ର ସମାପନ ଘଟିଥିଲା ୧୫୫୨ ଖ୍ରୀଷ୍ଟାବ୍ଦର ବିଜୟମଣ୍ଡିତ ଅଭିଯାନ ଦ୍ୱାରା) କାଜାନ୍‌ର ଖାନାତେର ଅବସାନ ଘଟିଥିଲା । କାଜାନ୍ ଅଧିକାରର ସ୍ମୃତି ଉଦ୍ଦେଶ୍ୟରେ ମସ୍କୋର ଲାଲ ଚୌକରେ ନିର୍ମିତ ହୋଇଥିଲା ଏକ ଗିର୍ଜା । ଏହା ସେଣ୍ଟ୍ ବାସିଲସ୍ ନାମରେ ସୁପରିଚିତ ଏବଂ ରୁଷୀୟ ଜାତୀୟ ସ୍ଥାପତ୍ୟର ଅପୂର୍ବ ପ୍ରତୀକ ସ୍ୱରୂପ ।

କାଜାନ୍ ଖାନାତେ ଅଧିକାରଟା ଆସ୍ତ୍ରାଖାନ ଖାନାତେର ପତନକୁ (୧୫୫୬) ସୁନିଶ୍ଚିତ କରି ଦେଇଥିଲା । ନୋଗାଇ ଶାସକଗଣ (ମୁର୍ଜାସ), ଯାହାଙ୍କର ସୈନ୍ୟଦଳ ଭୋଲ୍‌ଗା ଏବଂ ୟୁରାଲ ଅଞ୍ଚଳର ଷ୍ଟେପ୍ ଭୂଇଁରେ ବିଚରଣ କରୁଥିଲେ, ଉତ୍ତର କକେସସ୍‌ର ଶାସକବର୍ଗ ଏବଂ ପଶ୍ଚିମ ସାଇବେରିଆର ଖାଁ ରୁଷ୍ ଜାର୍‌ଙ୍କ କରଦ ରାଜାରେ ପରିଣତ ହେଲେ । ଏବେ କକେସସ୍, ମଧ୍ୟ ଏସିଆ ଏବଂ ୟୁରାଲର ଆର ପାରି ଭୂଖଣ୍ଡସମୂହ ସହିତ ସିଧାସଳଖ ବାଣିଜ୍ୟ ପ୍ରତିଷ୍ଠିତ ହେଲା । ରୁଷିଆରେ ଭୋଲ୍‌ଗା ଏବଂ ୟୁରାଲ ଅଞ୍ଚଳର ଅନ୍ତର୍ଭୁକ୍ତି ଦ୍ୱାରା ସେସବୁ ଅଞ୍ଚଳର ଅଧିବାସୀମାନେ ପ୍ରାଚ୍ୟ ଶାସକମାନଙ୍କ ଦାସତ୍ୱ ଶୃଙ୍ଖଳରେ ସଢ଼ିବାରୁ ରକ୍ଷା ପାଇଗଲେ । ତେବେ ଏହିସବୁ ଜାତିଙ୍କ ସମେତ ଅନ୍ୟ ଜାତିମାନେ କେନ୍ଦ୍ରୀୟଭୂତ ବହୁଜାତୀୟ ରୁଷ୍ ରାଷ୍ଟ୍ରରେ ଅବଶ୍ୟ ଭୂମିଦାସତ୍ୱ ଏବଂ ଜାତିଗତ ନିର୍ଯ୍ୟାତନରୁ ରକ୍ଷା ପାଇଲେ ନାହିଁ, କିନ୍ତୁ ଏହା ସେମାନଙ୍କୁ ଯୋଗାଇ ଦେଇଥିଲା

ରୁଷିଆର ଶ୍ରମଜୀବୀମାନଙ୍କ ସହିତ ନିବିଡ଼ ଅର୍ଥନୈତିକ, ସାଂସ୍କୃତିକ, ସାମାଜିକ ଏବଂ ରାଜନୈତିକ ସଂପର୍କ । ରୁଷ୍ ସଂସ୍କୃତି ଏବଂ ଅର୍ଥନୈତିକ କ୍ରିୟାକଳାପ ପୂର୍ବ ଆଡ଼କୁ ସଂପ୍ରସାରଣ ଲାଭ କରିଥିଲା, ଯେଉଁସବୁ ଅଞ୍ଚଳରେ ଅନଗ୍ରସର ଜାତିମାନେ ବାସ କରୁଥିଲେ ।

ରୁଷ୍ ରାଷ୍ଟ୍ର ମଧ୍ୟରେ ଭୋଲ୍‌ଗାର ମଧ୍ୟ ଏବଂ ନିମ୍ନଭୂଖଣ୍ଡସମୂହର ଅନ୍ତର୍ଭୁକ୍ତି, ବିଶେଷ କରି, କାଜାନ୍ ଖାନାତେର ପତନ ଥିଲା ୧୬ଶ ଶତାବ୍ଦୀରେ ପୂର୍ବ ୟୁରୋପର ରାଜନୈତିକ ମାନଚିତ୍ରକୁ ପରିବର୍ତ୍ତନ କରିବା ଦିଗରେ ବଡ଼ ବଡ଼ ଘଟଣା । ସୁବର୍ଣ୍ଣ ହୋର୍ଡ଼ର ଅବଶେଷାଂଶର ଧ୍ୱଂସସାଧନ ଦ୍ୱାରା କୌଣସି ରୂପେ ହୋର୍ଡ଼େ ଆଧିପତ୍ୟର ପୁନଃସ୍ଥାପନର ବିପଦ ଲୋପ ପାଇଥିଲା । ଏହି ବିପଦଟି ଥିଲା ରୁଷ୍ ଲୋକମାନଙ୍କ ପକ୍ଷରେ ନିର୍ଯ୍ୟାତନମୂଳକ ଏବଂ ରୁଷିଆର ସଂସ୍କୃତି ତଥା ଅର୍ଥନୈତିକ ବିକାଶ ପକ୍ଷରେ ପ୍ରତିବନ୍ଧକ ସ୍ୱରୂପ । ଏହି ବିଜୟ ପୂର୍ବ ୟୁରୋପ ଉପରେ ତୁର୍କୀ-କ୍ରିମୀୟ ଆକ୍ରମଣର ସମ୍ଭାବନାକୁ ପ୍ରତିହତ କରିଥିଲା ଏବଂ ତୁର୍କୀର ସାମରିକ-ସାମନ୍ତବାଦୀ ରାଜତନ୍ତ୍ରକୁ ଦୁର୍ବଳ କରିବା ଦିଗରେ ଏକ ଗୁରୁତ୍ୱପୂର୍ଣ୍ଣ ବୈଦେଶିକ କାରଣ ରୂପେ କାର୍ଯ୍ୟ କରିଥିଲା ।

କାଜାନ୍ ଖାନାତେ ଉପରେ ବିଜୟ ହାସଲ କଲା ପରେ ବଲ୍‌ଟିକ୍ ଅଞ୍ଚଳ ତଥା ଦକ୍ଷିଣାଞ୍ଚଳରେ ରୁଷିଆର ନୀତି ଅଧିକ ସକ୍ରିୟ ହୋଇଥିଲା । ଲିଭୋନୀୟ ଯୁଦ୍ଧରେ ରୁଷିଆ ଯୋଗ ଦେଲା (୧୫୫୮-୧୫୮୩) । ଏହା ତା'ର ପ୍ରାରମ୍ଭିକ ବର୍ଷମାନଙ୍କରେ ବଲ୍‌ଟିକ୍ ସାଗରକୁ ଏକ ପ୍ରବେଶ ପଥ କିଛି କାଳ ପାଇଁ ଲାଭ କରିଥିଲା । ଲିଭୋନୀୟ ଶାସନ ଧୂଳିସାତ୍ ହୋଇଗଲା; ପୋଲୋତ୍‌ସ୍କ ଏବଂ ଅନ୍ୟାନ୍ୟ ପୁରାତନ ପଶ୍ଚିମ ରୁଷ୍ ସହରଗୁଡ଼ିକ ରୁଷ୍ ଜାର୍‌ଙ୍କ ଶାସନାଧୀନ ହେଲା । କିନ୍ତୁ ଏହା ପରେ ଅନ୍ୟାନ୍ୟ ବଲ୍‌ଟିକ୍ ରାଜ୍ୟମାନେ ଯୁଦ୍ଧରେ ଯୋଗ ଦେଲେ ଏବଂ ଏକ ସୁଦୀର୍ଘ ଯୁଦ୍ଧ ପାଇଁ ରୁଷିଆ ଯେ ପ୍ରସ୍ତୁତ ନଥିଲା, ତାହା କ୍ରମଶଃ ପ୍ରକାଶ ପାଇଲା ଏବଂ ସଂପ୍ରତି ଦେଶ ଅର୍ଜନ କରିଥିବା ସାଫଲ୍ୟରାଜି ଲୋପ ପାଇଗଲା । ଏହି ଯୁଦ୍ଧରେ ସର୍ବଶେଷ ବଡ଼ ଘଟଣାଟି ହେଲା ପ୍‌ସୋଭ୍ ସହରର ପ୍ରତିରକ୍ଷା (୧୫୮୧-୧୫୮୨) । ଏଥିରେ ସହରର ସମଗ୍ର ବାସିନ୍ଦା ଅଂଶଗ୍ରହଣ କରିଥିଲେ । ଏହାକୁ ପୋଲାଣ୍ଡର ଷ୍ଟେଫାନ୍ ବାଥୋରିଙ୍କ ସୈନ୍ୟମାନେ ଅବରୋଧ କରିଥିଲେ ।

କ୍ରିମିଆର ତାତାରମାନଙ୍କ ଆକ୍ରମଣ ବିରୁଦ୍ଧରେ ସଂଗ୍ରାମ ଅବ୍ୟାହତ ରହିଥିଲା । ପ୍ରଥମେ ଦକ୍ଷିଣବର୍ତ୍ତୀ କସାକ ଜନବସତିଗୁଡ଼ିକରୁ ଆସିଥିବା ସେନାଦଳଗୁଡ଼ିକ ଏକ ବିଶେଷ ଭୂମିକା ପାଳନ କରିଥିଲେ ଏବଂ ୧୭ଶ ଶତାବ୍ଦୀର ଶେଷରେ, କ୍ରିମିଆର ଖାଁ ଏବଂ ରୁଷିଆର ମୁଖ୍ୟ ସାମରିକ ବାହିନୀ ମଧ୍ୟରେ ପ୍ରତ୍ୟକ୍ଷ ଯୁଦ୍ଧ ଆରମ୍ଭ ହୋଇଥିଲା । ୧୬ଶ ଶତାବ୍ଦୀରେ କ୍ରିମିଆର ତାତାରମାନେ ମସ୍କୋରେ ପହଞ୍ଚି ଗଲେ (୧୫୭୧ ମସିହାରେ ମସ୍କୋକୁ ଜାଳି ଦିଆଗଲା), ୧୭ଶ ଶତାବ୍ଦୀରେ ସେମାନଙ୍କ ଆକ୍ରମଣକୁ

ସଂଯତ କରାଯାଇଥିଲା : ପ୍ରତିରକ୍ଷା ଦୁର୍ଗ ବ୍ୟବସ୍ଥାକୁ ଦୃଢ଼ କରାଗଲା ଏବଂ ନୂତନ ସହରମାନ ନିର୍ମିତ ହେଲା ; ଦକ୍ଷିଣ ଷ୍ଟେପ୍‌ର ସୀମାବର୍ତ୍ତୀ କଳାମାଟି ଅଞ୍ଚଳର ବିକାଶକୁ ତ୍ୱରାନ୍ୱିତ କରାଗଲା ଏବଂ ପୋମେଷ୍ଟିଏ ଜମିମାଲିକାନା ପ୍ରତିଷ୍ଠିତ ହେଲା ।

ରୁଷ ଲୋକେ ୟୁରାଲ ମଧ୍ୟ ଦେଇ ଏବଂ ଉତ୍ତର ମହାସାଗର କୂଳ ଦେଇ ସାଇବେରିଆକୁ ଯିବାର ପଥ ପୂର୍ବରୁ ଜାଣିଥିଲେ, କିନ୍ତୁ ୧୬ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ହିଁ କେବଳ ଏହି ଅଞ୍ଚଳକୁ ଆଗେଇବା ଆରମ୍ଭ ହୋଇଥିଲା । ଏହି ଅଭିଯାନ କାର୍ଯ୍ୟ ଚଳେଇଥିଲେ ରାଷ୍ଟ୍ର ଏବଂ ଧନୀ ବଣିକମାନଙ୍କ ଦ୍ୱାରା ପ୍ରେରିତ ଦଳ ଏବଂ ବ୍ୟକ୍ତିଗତ ଭାବେ କେତେକ ଆବିଷ୍କାରକ । ଏ ଦିଗରେ ଖୁବ୍ ଅଗ୍ର ପଦକ୍ଷେପ ନେଇଥିଲେ ସ୍ତୋଗାନୋଭ୍‌ଗଣ, ଧନୀ ବଣିକ ଏବଂ ଶିଳ୍ପୋଦ୍ୟୋଗୀମାନେ, ଯେଉଁମାନେ କାମା ନଦୀ କୂଳରେ ବିପୁଳ ପରିମାଣର ଜମିର ମାଲିକ ଥିଲେ । ୟେର୍‌ମାକ୍‌ଙ୍କ ନେତୃତ୍ୱରେ ପରିଚ୍ଛାଳିତ କସାକ ସେନାଦଳଗୁଡ଼ିକ ମଧ୍ୟ ଏକ ବିଶେଷ ଖ୍ୟାତି ଅର୍ଜନ କରିଥିଲେ ଏହି କାର୍ଯ୍ୟରେ । ପଶ୍ଚିମ ସାଇବେରିଆ ଭୂଖଣ୍ଡ – "ସାଇବେରୀୟ ରାଜ୍ୟକୁ" ରୁଷ୍ ଜାର୍‌ଙ୍କ ଶାସନାଧୀନକୁ ଆଣିବା ଦିଗରେ ୟେର୍‌ମାକ୍‌ଙ୍କର ଏକ ବିଶେଷ ଭୂମିକା ଥିଲା । ଏହି କାର୍ଯ୍ୟଟି ୧୫୮୦ ଦଶକରେ ଆରମ୍ଭ ହୋଇ ୧୬ଶ ଶତାବ୍ଦୀର ଶେଷରେ ସଂପୂର୍ଣ୍ଣ ହୋଇଥିଲା ।

ସାଇବେରିଆର ସଂପଦର ନିୟମିତ ଏବଂ ଅବିରାମ ବିକାଶ ଆରମ୍ଭ ହୋଇଥିଲା ୧୭ଶ ଶତାବ୍ଦୀରେ । ସାମନ୍ତ ପ୍ରଭୁ ତଥା ବଣିକମାନଙ୍କ ପାଇଁ ସାଇବେରିଆ ଥିଲା ଶୋଷଣର ଏକ ବସ୍ତୁ, ସଂପଦର ଉତ୍ସ ଏବଂ ବାଣିଜ୍ୟରେ ଲାଭ । ଏହି ବାଣିଜ୍ୟ କ୍ଷେତ୍ରରେ ମୁଖ୍ୟ ପଣ୍ୟଟି ହେଲା ମୂଲ୍ୟବାନ ଲୋମଶ ଚମଡ଼ା (ବିଶେଷ କରି, ଶାଳିଆପତନି ଚମଡ଼ା) । ସ୍ଥାନୀୟ ଅଧିବାସୀମାନଙ୍କ ଠାରୁ କର, ୟାସାକ ଆଦାୟ କରାଯାଉଥିଲା ଏହି ଲୋମଶ ଚମଡ଼ା ଆକାରରେ । ସାଇବେରିଆକୁ ଉନ୍ମୋଚନ କରିବାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲେ ସେଇସବୁ କୃଷକମାନେ, ଯେଉଁମାନେ ଭୂମିଦାସତ୍ୱ ଶୃଙ୍ଖଳରୁ ମୁକ୍ତ ହେବା ପାଇଁ ଏହି ଅଞ୍ଚଳକୁ ପଳାଇ ଯାଇଥିଲେ । ଏହିସବୁ ରୁଷ୍ କୃଷକ ସେମାନଙ୍କର ଯୁଗ ଯୁଗ ଧରି ଭୂମି ଚାଷ କରିବାର ନୈପୁଣ୍ୟ ବଳରେ ସାଇବେରିଆର ଭୂସଂପଦର ଉପଯୋଗ କ୍ଷେତ୍ରରେ ବୈପ୍ଲବିକ ପରିବର୍ତ୍ତନ ଆଣିଥିଲେ : ୧୭ଶ ଶତାବ୍ଦୀର ଶେଷ ଭାଗକୁ ଏଠାକାର ସ୍ଥାନୀୟ ଅଧିବାସୀମାନେ କୃଷି ଉତ୍ପାଦନରେ ସ୍ୱନିର୍ଭର ହୋଇ ପାରିଥିଲେ । ସ୍ଥାନୀୟ କ୍ଷୁଦ୍ର କ୍ଷୁଦ୍ର ଜାତିମାନଙ୍କର ବସତିଗୁଡ଼ିକ ମଧ୍ୟରେ ପଡ଼ି ରହିଥିବା ବିଶାଳ ଭୂମିର ବିକାଶ କ୍ରମଶଃ ଘଟିଥିଲା । ଏହିସବୁ ସ୍ଥାନୀୟ ଜାତିମାନଙ୍କ ମୁଖିଆମାନଙ୍କ ହାତରେ ନାମକୁ ମାତ୍ର କ୍ଷମତା ଥିଲା । ସହରସବୁ ମୁଣ୍ଡ ଟେକି ଉଠିଲା ଏବଂ ହସ୍ତଶିଳ୍ପ ବିକାଶ ଲାଭ କଲା । ପୂର୍ବେ ସାଇବେରିଆର ପଶ୍ଚାତ୍‌ପଦ ଜାତିମାନେ ଏହି ଅଞ୍ଚଳରେ ବସତି ସ୍ଥାପନ କରିଥିବା ଶ୍ରମଜୀବୀ ରୁଷ୍ ଜନଗୋଷ୍ଠୀ ଠାରୁ ବୈଷୟିକ ତଥା ଆତ୍ମିକ ସଂସ୍କୃତିର

ବିଭିନ୍ନ ଉପାଦାନକୁ ଗ୍ରହଣ କରି ନେଇଥିଲେ । ୧୭ଶ ଶତାବ୍ଦୀର ମଧ୍ୟ ଭାଗରେ ରୁଷ୍ ଆବିଷ୍କାରକ ଏବଂ ସାଗରଯାତ୍ରୀ ନାବିକମାନେ ପ୍ରଶାନ୍ତ ମହାସାଗର କୂଳରେ ଉପସ୍ଥିତ ହୋଇଥିଲେ । ଏହି ଭାବେ ସିମିଓନ ଦେଝନିଏଭ୍‌ଙ୍କ ନେତୃତ୍ୱରେ ପରିଗ୍ରଳିତ ଅଭିଯାତ୍ରୀମାନେ ଏସିଆ ମହାଦେଶ ଠାରୁ ଆମେରିକାକୁ ବିଛିନ୍ନ କରୁଥିବା ପ୍ରଣାଳୀ ମଧ୍ୟ ଦେଇ ଯାତ୍ରା କରିଥିଲେ (୧୬୪୮) । ଭାସିଲି ପୟାର୍‌କୋଭ୍ ଆବିଷ୍କାର କରିଥିଲେ ଅଖତ୍‌ସୟେ ସାଗରର ଉପକୂଳବର୍ତ୍ତୀ ଅଞ୍ଚଳଗୁଡ଼ିକୁ । ୟେରୋଫେଇ ଖାଭାରୋଭ୍‌ଙ୍କ ଦଳଟି ଆମୁର ନଦୀ କୂଳରେ ପହଞ୍ଚି ପାରିଥିଲେ ଏବଂ ଭ୍ଲାଦିମିର୍ ଆଟ୍‌ଲସୋଭ୍ ୧୭ଶ ଶତାବ୍ଦୀର ଶେଷ ଆଡ଼କୁ କାମ୍‌ଚ୍‌ଟ୍‌କା ଉପଦ୍ୱୀପଟି ଆବିଷ୍କାର କରିଥିଲେ । ଏହି ଭାବେ ରୁଷିଆ ବିଶ୍ୱରେ ଏକ ବହୁଜାତୀୟ ରାଷ୍ଟ୍ରରେ ପରିଣତ ହୋଇଥିଲା ।

୧୫୪୭ ଖ୍ରୀଷ୍ଟାବ୍ଦ, ଜାନୁଆରୀ ମାସରେ ୪ର୍ଥ ଇଭାନ୍ ନିଜକୁ ରୁଷିଆର ପ୍ରଥମ ଜାର୍ ରୂପେ ଘୋଷଣା କରିଥିଲେ । "ଜାର୍ ଏବଂ ସମଗ୍ର ରୁଷିଆର ମହାରାଜାଙ୍କୁ" ଏକଛତ୍ର ଅଧିପତି ରୂପେ ସରକାରୀ ଭାବେ ଗ୍ରହଣ କରି ନେବା ଫଳରେ ବୃହତ୍ ସାମନ୍ତବାଦୀ ପ୍ରଭୁମାନଙ୍କର (ସର୍ବୋପରି କରଦରାଜାମାନଙ୍କର) ଶାସନ କରିବାର ଏବଂ ବିଭିନ୍ନ ଅଞ୍ଚଳ ରାଜନୈତିକ ଭାବେ ସ୍ୱାଧୀନ ହୋଇ ରହିବାର ଦାବୀ ଦୁର୍ବଳ ହୋଇ ପଡ଼ିଥିଲା । ମସ୍କୋର ଶାସକ ମସ୍ତକରେ ଏକଛତ୍ରପତି ମୁକୁଟ ପରିଧାନ କରିବା ଫଳରେ ବୃହତ୍ ଶକ୍ତିମାନଙ୍କ ସହିତ ସମାନ ଆସନରେ ଅଧିଷ୍ଠିତ ହେବାର ସମ୍ମାନ ଲାଭ କରିଥିଲେ । ଏହା ଦ୍ୱାରା ଅନ୍ୟାନ୍ୟ ବୃହତ୍ ଶକ୍ତିମାନଙ୍କ ଉପରେ ରୁଷିଆକୁ ନିର୍ଭରଶୀଳ କରିବାର ଉଦ୍ୟମ ଏବଂ ତା'ର ବୈଦେଶିକ ନୀତିକୁ ପୂର୍ବନିର୍ଦ୍ଧାରିତ କରିବାର ପ୍ରଚେଷ୍ଟା ପ୍ରତିହତ ହୋଇଥିଲା । ତେବେ ବିଦେଶରେ ପ୍ରତ୍ୟେକେ ସରକାରୀ ଭାବେ ରୁଷିଆର ଏକଛତ୍ର ଶାସକଙ୍କ ଏହି ଉପାଧିକୁ ସ୍ୱୀକାର କରି ନଥିଲେ ।

ଜାର୍‌ଙ୍କର ଏହି ଉପାଧି ଲାଭଟି ଥିଲା ରୁଷ୍ ରାଷ୍ଟ୍ରର କେନ୍ଦ୍ରୀୟକରଣ ପକ୍ଷରେ ଆବଶ୍ୟକୀୟ ଆଉ କେତେକ ସଂସ୍କାର ସାଧନର ପୂର୍ବାଭାସ । ତୃତୀୟ ଇଭାନ୍‌ଙ୍କ ଅଧୀନରେ ଏତାଦୃଶ ସଂସ୍କାରସମୂହ ଏ ଦିଗରେ ଆରମ୍ଭ ହୋଇ ଯାଇଥିଲା : ସମଗ୍ର ରାଷ୍ଟ୍ର ନିମିତ୍ତ ଆଇନଗତ ମାନସମୂହର ସ୍ଥାପନ (୧୪୯୭ର ସୁଦେବନିକ୍—ଆଇନ୍‌ସଂହିତା), କେନ୍ଦ୍ରୀୟ ଏବଂ ସ୍ଥାନୀୟ ସରକାରୀ ସଂସ୍ଥାସମୂହ ଗଠନ ଏବଂ ସେସବୁର କ୍ରିୟାକଳାପର ସୁନିର୍ଦ୍ଦିଷ୍ଟକରଣ (ବିଶେଷ କରି, ଶାସକଙ୍କର ନିକଟତମ ପରାମର୍ଶଦାତାମାନଙ୍କୁ ନେଇ ଗଠିତ ବୟାର ଦୁମାର) ।

ଏହିସବୁ ସଂସ୍କାରସମୂହ ତ୍ୱରାନ୍ୱିତ ହୋଇଥିଲା ଶ୍ରେଣୀ ସଂଗ୍ରାମ ଏକ ଅଭ୍ୟୁତ୍‌ଥାନର ରୂପ ଲାଭ କରିବା ଫଳରେ, ଯିଏକି ୧୫୪୭ ଖ୍ରୀଷ୍ଟାବ୍ଦରେ ଗଣ ବିଦ୍ରୋହର ରୂପ ଲାଭ କରିଥିଲା । ସହର ତଥା ଗ୍ରାମମାନଙ୍କରେ ସାମନ୍ତବିରୋଧୀ ଆନ୍ଦୋଳନର ଅନୁକୂଳତା ସାମନ୍ତ ଶ୍ରେଣୀର ବିଭିନ୍ନ ସ୍ତରର ସଦସ୍ୟମାନଙ୍କୁ —ବୟାର,

ଦ୍ୱରିଆନେ ଏବଂ ଯାଜକମାନଙ୍କୁ ବାଧ୍ୟ କରିଥିଲ କିଛି କାଳ ପାଇଁ ଏକାଠି ହେବାକୁ । ଏହା ଫଳରେ ତରୁଣ ଜାର୍‌ଙ୍କ ଅଧୀନରେ "ଇଜ୍‌ବ୍ରାନାୟା ରାଦା" (ନିର୍ବାଚିତ ପରିଷଦ) ଗଠିତ ହୋଇଥିଲ । "ଇଜ୍‌ବ୍ରାନାୟା ରାଦାର" ଶାସନ କାଳରେ ୧୫୪୯, ୧୫୫୦ ଏବଂ ୧୫୫୧ ମାହାଲଗୁଡ଼ିକର ପ୍ରଥମ ବିଧାନସଭା ଗଠିତ ହୋଇଥିଲ ଏବଂ କେନ୍ଦ୍ରୀୟ ତଥା ସ୍ଥାନୀୟ ସରକାରମାନଙ୍କରେ ବିଗ୍ରରାଳୟ ଏବଂ ସାମରିକ ସଂସ୍ଥାମାନଙ୍କରେ ବୃହତ୍ ସଂସ୍କାରମାନ କାର୍ଯ୍ୟକାରୀ ହୋଇଥିଲ । ଦ୍ୱରିଆନେଙ୍କୁ ନେଇ ଗଠିତ ସାମରିକ ତଥା ଅସାମରିକ ଅମଲତନ୍ତ୍ରର ପ୍ରତିଷ୍ଠା ଦିଗରେ ଏସବୁ ଅବଦାନ ରଖିଥିଲ, ଦ୍ୱରିଆନେଙ୍କର ଅର୍ଥନୈତିକ ତଥା ରାଜନୈତିକ ଅବସ୍ଥାନକୁ ଦୃଢ଼ କରିଥିଲ ଏବଂ କିଛି ପରିମାଣରେ ସହରର ଉପର ସ୍ତର ପାଇଁ କିଛି ପରିମାଣରେ ଅନୁକୂଳ ହୋଇଥିଲ (ଏକ ଧରଣର ମାପ ଆଉ ଶୁଳ୍କର ପ୍ରଚଳନ, ନିର୍ବାଚିତ ସ୍ଥାନୀୟ ସରକାରୀ ସଂସ୍ଥା ଆଦିର ପ୍ରତିଷ୍ଠା) । ପୁସ୍ତକ ମୁଦ୍ରଣ ଦିଗରେ ଏହି ସମୟରେ ସଫଳ ଉଦ୍ୟମ କରାଯାଇଥିଲ: ୧୫୬୪ ଖ୍ରୀଷ୍ଟାବ୍ଦରେ ରୁଷିଆରେ ପୁସ୍ତକ ମୁଦ୍ରଣର ଜନକ, ଇଭାନ୍ ଫିଓଦରଭ, ରୁଷ୍ ଭାଷାରେ ପ୍ରଥମ ମୁଦ୍ରିତ ପୁସ୍ତକ – "ଆପୋସ୍ତୋଲ" ("ଦେବଦୂତ") ପ୍ରକାଶ କରିଥିଲେ । ୧୬ଶ ଶତାବ୍ଦୀର ପୁସ୍ତକ ମୁଦ୍ରଣ ଜଗତରେ ଏହା ଥିଲ ଏକ ଉଚ୍ଚକୋଟିର ରଚନା । ୧୫୫୦ ଦଶକର ସଂସ୍କାରରାଜି ଦେଶର ରାଷ୍ଟ୍ରୀୟ ଯନ୍ତ୍ରକୁ ପୂର୍ବନିର୍ଦ୍ଧାରିତ କରି ଦେଇଥିଲ ଏବଂ ଏହା ତିଷ୍ଠି ରହିଥିଲ ୧୭ଶ ଶତାବ୍ଦୀର ଶେଷ ଭାଗ ପର୍ଯ୍ୟନ୍ତ ।

୧୫୬୦ ଦଶକରେ ଲିଭୋନିଆନ ଯୁଦ୍ଧକୁ ଚଳାଇଯିବା ପାଇଁ ଭୟଙ୍କର ଇଭାନ୍‌ଙ୍କ ଅଭିପ୍ରାୟ ଫଳରେ "ଇଜ୍‌ବ୍ରାନାୟା ରାଦାର" ଅଧିକାଂଶ ବୟାରଙ୍କ ସହିତ ତାଙ୍କର ମତ ପାର୍ଥକ୍ୟ ଦେଖାଦେଇଥିଲ । ବୟାରମାନଙ୍କ ପକ୍ଷରୁ ତାଙ୍କ ଦ୍ୱାରା ଅନୁସୃତ ନୀତିର ବିରୋଧିତା ଆଉରି ତୀବ୍ର ହୋଇ ଉଠିଥିଲ ୧୫୬୪ ମସିହାରେ ଲିଭୋନିଆ ଯୁଦ୍ଧରେ ରୁଷ୍ ସୈନ୍ୟମାନେ ପରାଜୟ ବରଣ କଲ ପରେ ।

ଇଭାନ୍ ଭୟଙ୍କର ତାଙ୍କ ବୈଦେଶିକ ରାଜନୈତିକ ଅଭିପ୍ରାୟ ହାସଲ କରିବା ନିମିତ୍ତ ଦେଶର ସମସ୍ତ ଶକ୍ତିଙ୍କୁ ଏକତ୍ରିତ କରିବାକୁ ଏବଂ ରାଷ୍ଟ୍ରର କେନ୍ଦ୍ରୀକରଣ ତଥା ଏକଛତ୍ର ଶାସନ ପଥରେ ସମସ୍ତ ପ୍ରତିବନ୍ଧକକୁ ଦୂରେଇ ଦେବାକୁ ଇଚ୍ଛୁକ ଥିଲେ । ୧୫୬୦ ଦଶକର ମଧ୍ୟ ଭାଗରେ ସେ ସ୍ଥିର କଲେ ବୟାରମାନଙ୍କ ବିରୋଧିତାକୁ ଦୂର କରି ତାଙ୍କର ବହୁ ଦିନ ଆକାଂକ୍ଷିତ ସ୍ୱପ୍ନ – ନିରଙ୍କୁଶ କ୍ଷମତା ଲଭ ପାଇଁ ରାଜନୈତିକ ପଦକ୍ଷେପମାନ ଗ୍ରହଣ କରିବାକୁ ।

ଏହି ନୀତିଟିର ସୂତ୍ରପାତ ହୋଇଥିଲ ୧୫୬୫ ଶତାବ୍ଦୀରେ ପ୍ରତିଷ୍ଠିତ ଓପ୍ରିଚ୍‌ନିନା ଦ୍ୱାରା । ଏହି ବ୍ୟବସ୍ଥାଟି ଥିଲ ତାଙ୍କ କ୍ଷମତାକୁ ଦୃଢ଼ କରିବା ଏବଂ ସାମନ୍ତ ରାଜା ତଥା ବୟାରମାନଙ୍କ କ୍ରମବର୍ଦ୍ଧମାନ ପ୍ରତିରୋଧକୁ ଧୂଳିସାତ୍ କରିବା ଦିଗରେ କେତେକ

ଅସାଧାରଣ ପଦକ୍ଷେପ । ରାଷ୍ଟ୍ର କ୍ଷମତାର ସମସ୍ତ କେନ୍ଦ୍ରୀୟ ସଂସ୍ଥାକୁ ଦୁଇ ଭାଗରେ ବିଭକ୍ତ କରି ଦିଆଯାଇଥିଲା — ଓପ୍ରିଚ୍‌ନି ଏବଂ ଜେମ୍‌ସ୍ତି ବିଗ୍ରରାଳୟ । ତା'ପରେ ଦେଶର ସମସ୍ତ ଅଞ୍ଚଳକୁ ମସ୍କୋ ସମେତ, ଜେମସ୍ତିନା ଏବଂ ଓପ୍ରିଚ୍‌ନିନାରେ ବିଭକ୍ତ କରି ଦିଆଗଲା । ଶେଷୋକ୍ତ ଅଞ୍ଚଳଗୁଡ଼ିକରେ ମୁଖ୍ୟତଃ ସେହିସବୁ ଅଞ୍ଚଳ ଅନ୍ତର୍ଭୁକ୍ତ ଥିଲା, ଯେଉଁଥିରେ ସାମନ୍ତ ରାଜା ଏବଂ ବୟାରମାନଙ୍କ ଭୂଖଣ୍ଡସମୂହ — ମଧ୍ୟ ଏବଂ କେତେକ ଦକ୍ଷିଣାଞ୍ଚଳ — ଅନ୍ତର୍ଭୁକ୍ତ ।

ସାମନ୍ତ ରାଜା ତଥା ବୟାରମାନଙ୍କ ଠାରୁ ଛଡ଼େଇ ଆଣିଥିବା ଅଞ୍ଚଳସମୂହକୁ ଓ ଓପ୍ରିଚ୍‌ନିକି, ଜାର୍‌ଙ୍କ ସେବାରେ ନିଯୁକ୍ତ ଲୋକଙ୍କୁ ପ୍ରଦାନ କରାଯାଇଥିଲା । ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ମଧ୍ୟ ଧରଣର ପୋମେସ୍ତିଏ ଯୁକ୍ତ ଦ୍ୱରିଆନେ । ଭୟଙ୍କର ଇଭାନ୍ ତାଙ୍କର ପ୍ରତ୍ୟକ୍ଷ ପରିଗ୍ରଳନାଧୀନରେ ଏକ ବିଶେଷ ସାମରିକ ବାହିନୀ ଗଠନ କରିଥିଲେ । ଏହା ଓପ୍ରିଚ୍‌ନିକିମାନଙ୍କୁ ନେଇ ଗଠିତ ହୋଇଥିଲା ଏବଂ ତାଙ୍କର ଆଇନୋର୍ଦ୍ଧ୍ୱ ନିରଙ୍କୁଶ ଶାସନର ଏକ ସଂସ୍ଥା ଥିଲା ।

ଗୁପ୍ତ ନିର୍ଯ୍ୟାତନା, ଗଣ ଉତ୍ପୀଡ଼ନ ଏବଂ ହତ୍ୟା ଦ୍ୱାରା ଓପ୍ରିଚ୍‌ନିକି ବୟାରମାନଙ୍କର ମୁଖ୍ୟ ଶକ୍ତିଟିକୁ ଧ୍ୱଂସ କରି ଦେଇଥିଲା । ଏହା ଜାର୍‌ଙ୍କ ବିଷଦୃଷ୍ଟିରେ ପଡ଼ିଥିବା ବୟାରମାନଙ୍କ ମହାଲଗୁଡ଼ିକୁ ଲୁଣ୍ଠନ କରି ଧ୍ୱଂସ କରି ଦେଉଥିଲା ଏବଂ ବେଳେ ବେଳେ ସମଗ୍ର ସହର ଓ ଜିଲ୍ଲମାନଙ୍କ ବିରୁଦ୍ଧରେ ପିଟୁଣି ଅଭିଯାନ ଚଳାଉଥିଲା । ଏସବୁ ଦ୍ୱାରା ରାଷ୍ଟ୍ରର କେନ୍ଦ୍ରୀକରଣ ପଥରୁ ମୁଖ୍ୟ ପ୍ରତିବନ୍ଧକସମୂହକୁ ହଟେଇ ଦିଆଯାଇଥିଲା ।

କେବଳ ବହୁ ବୟାର ଏବଂ ଦିୟାକ (କର୍ମକର୍ତ୍ତାବୃନ୍ଦ) ଓପ୍ରିଚ୍‌ନିକର ଶିକାର ହୋଇ ନଥିଲେ, ଓପ୍ରିଚ୍‌ନିକିର ଅତ୍ୟାଗ୍ରର ଫଳରେ ସହର ଏବଂ ଗ୍ରାମମାନଙ୍କର ଜନସାଧାରଣ ପ୍ରବଳ ଦୁରବସ୍ଥା ଏବଂ ଯାତନା ଭୋଗିଥିଲେ । ଏହି ଭାବେ ନୋଭ୍‌ଗୋରଦରେ ପରିଗ୍ରଳିତ ଗଣ ହତ୍ୟା ଦ୍ୱାରା ହଜାର ହଜାର ଲୋକେ ମୃତ୍ୟୁ ମୁଖରେ ପଡ଼ିଥିଲେ । କୃଷକମାନଙ୍କର ଅବସ୍ଥାରେ ଅବନତି ଘଟିଥିଲା ଏବଂ ବେଗାରି ପ୍ରଥା କ୍ରମଶଃ ବ୍ୟାପକ ଏବଂ ଦୁର୍ବହ ହୋଇ ପଡ଼ିଥିଲା । କୃଷକମାନଙ୍କୁ ଜଣେ ଭୂସ୍ୱାମୀ ଅଧୀନରୁ ଆଉ ଏକ ଭୂସ୍ୱାମୀର ଅଧୀନକୁ ଯିବାକୁ ବେଆଇନ୍ କରି ଦିଆଗଲା । ଦେଶର ପୁରୁଣା ଏବଂ ଜନବସତିପୂର୍ଣ୍ଣ ଅଞ୍ଚଳରେ (ଉତ୍ତର-ପଶ୍ଚିମ ଏବଂ କେନ୍ଦ୍ର) ଲୋକ ସଂଖ୍ୟା କମି ଆସିଲା । ଏଥି ସଙ୍ଗେ ସଙ୍ଗେ ରୁଷିଆର ଅର୍ଥନୈତିକ ଜୀବନରେ ନୂଆ କରି ଅଧିକୃତ ଅଞ୍ଚଳଗୁଡ଼ିକର ଭୂମିକା ବୃଦ୍ଧି ପାଇବାକୁ ଲଗିଲା । ଅର୍ଥନୈତିକ ସଂକଟ ଓପ୍ରିଚ୍‌ନିକିର ଅତ୍ୟଧିକତା ଏବଂ କ୍ରମାଗତ ଲିଭୋନୀୟ ଯୁଦ୍ଧ ଫଳରେ ବିଶେଷ ଭାବେ ତୀବ୍ର ହୋଇ ଉଠିଲା ।

# ୬ଷ୍ଠ ପରିଚ୍ଛେଦ

## ୧୭ଶ ଶତାବ୍ଦୀ : ବିଦ୍ରୋହର ଯୁଗ

ବହୁ ପଳାତକ କୃଷକ ଏବଂ କ୍ରୀତଦାସ ଦେଶର ଦକ୍ଷିଣ ତଥା ପୂର୍ବସ୍ଥିତ ଉପାନ୍ତ ଅଞ୍ଚଳରେ ଅବସ୍ଥିତ କସାକ ବସତିସମୂହକୁ ଏକାଠି ଚାଲି ଯାଇଥିଲେ । କସାକମାନେ ରାଷ୍ଟ୍ରର ସେବାରେ ନିଜକୁ ଉତ୍ସର୍ଗ କରି ସୀମାନ୍ତକୁ ରକ୍ଷା କରୁଥିଲେ । ଏଥି ସଙ୍ଗେ ସଙ୍ଗେ କସାକ ଦଳଗୁଡ଼ିକ ଥିଲେ ବାସ୍ତବରେ ରାଜନୈତିକ ଭାବେ ସ୍ୱୟଂଶାସିତ । ଏମାନେ ଏକ କେନ୍ଦ୍ରୀୟଭୂତ ରାଷ୍ଟ୍ରର ବିରୋଧିତା କରୁଥିଲେ ଏବଂ ରାଷ୍ଟ୍ରକୁ ଏକ "ଉତ୍ତମ" ଜାର୍ ଶାସନ କରିବେ ବୋଲି ସ୍ୱପ୍ନ ଦେଖୁଥିଲେ । ଏହିମାନେ ହିଁ ବିଦ୍ରୋହର ନିଆଁକୁ ଘୃତ ଯୋଗାଇଥିଲେ, ଯାହାକି ପରେ, ୧୭ଶ ଏବଂ ୧୮ଶ ଶତାବ୍ଦୀର କୃଷକ ଯୁଦ୍ଧର ରୂପ ଧାରଣ କରିଥିଲା । ବାହାର ଦୁନିଆ ସହିତ କୃଷକମାନଙ୍କର ଦୁର୍ବଳ ଅର୍ଥନୈତିକ ତଥା ସାମାଜିକ ସଂପର୍କରାଜି ତଥା ସେମାନଙ୍କର ଦୃଷ୍ଟିକୋଣର ସଂକୀର୍ଣ୍ଣତା ହେତୁ ସାଧାରଣ ଭାବେ ସ୍ଥାନୀୟ ଆକାରରେ ଦେଖା ଦେଉଥିବା କୃଷକମାନଙ୍କର ଅସନ୍ତୋଷ ବ୍ୟାପକ ଆନ୍ଦୋଳନର ବୈଶିଷ୍ଟ୍ୟ ଲାଭ କରିଥିଲା ।

ବିଦ୍ରୋହୀମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ଲକ୍ଷ୍ୟ ସେମାନଙ୍କ ସଂଗ୍ରାମର ଆଧେୟ ଅପେକ୍ଷା କମ୍ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା । କେତେକ ଜିନିଷ ଲାଭ କରିବା ନିମିତ୍ତ ସଂଗ୍ରାମ କରିବା ପରିବର୍ତ୍ତେ ସେମାନେ କେତେକ ଜିନିଷ ବିରୁଦ୍ଧରେ ସଂଗ୍ରାମ କରୁଥିଲେ । ସେମାନଙ୍କ ସଂଗ୍ରାମର ଉଦ୍ଦେଶ୍ୟ ହେଲା ସାଧାରଣତଃ, ବିଦ୍ୟମାନ ଅବସ୍ଥାରାଜିର ଧ୍ୱଂସ ସାଧନ ଏବଂ ଯେଉଁମାନେ ସେମାନଙ୍କ ଦରିଦ୍ରତା ପାଇଁ ଦାୟୀ ବା ଜଣାଯାଉଥିଲେ ଦାୟୀ ବୋଲି ସେମାନଙ୍କର ଧ୍ୱଂସ ସାଧନ । ଯେଉଁମାନେ ଅମଙ୍ଗଳ କରୁଛନ୍ତି ବୋଲି ସେମାନେ ଜାଣିଥିଲେ, ସେମାନଙ୍କୁ ଦଣ୍ଡ ଦେବାକୁ ଏବଂ ସ୍ଥାନୀୟ ଅବସ୍ଥାରାଜିର ପରିବର୍ତ୍ତନ ସାଧନ କରିବାକୁ ସେମାନେ ଯଥେଷ୍ଟ ବୋଲି ମନେ କରୁଥିଲେ । ତା'ପରେ ସେ ସଂଗ୍ରାମକୁ ଆଗେଇ ନେବାରେ ଯୁକ୍ତି ଅଛି ବୋଲି ସେମାନେ ଅନୁଭବ କରୁ ନଥିଲେ । ତା'ଛଡ଼ା, ଜାର୍ ଲୋକମାନଙ୍କ ପାଇଁ ଭଲ କରିବାକୁ ଚାହେଁ ଏବଂ କେତେକ ଉଚ୍ଚ ପଦସ୍ଥ ଅଫିସର ଏବଂ

ସ୍ଥାନୀୟ ଶାସକମାନଙ୍କର ଅପକର୍ମ ସଂପର୍କରେ ସେ ଜାଣେ ନାହିଁ ବୋଲି ସେମାନେ ମଧ୍ୟ ଭାବୁଥିଲେ । "ଦୟାଳୁ ଜାର୍" ଉପରେ ସରଳ ବିଶ୍ୱାସ ହେତୁ ୧୭ଶ ଏବଂ ୧୮ଶ ଶତାବ୍ଦୀରେ ରୁଷିଆରେ ଛଳନାକାରୀମାନେ ଜନପ୍ରିୟତା ଲାଭ କରିଥିଲେ । ଜନଗୋଷ୍ଠୀର କେତେକ ସ୍ତର ମଧ୍ୟରେ ଏତାଦୃଶ ଆଦିମ ଏବଂ ଗୋଳମାଳିଆ ଚିନ୍ତା ଏବଂ ତୁଳନାମୂଳକ ଭାବେ ଦୁର୍ବଳ ରାଜନୈତିକ ଚେତନା ଏଭଳି ଏକ ଅବସ୍ଥା ସୃଷ୍ଟି କରିଥିଲା, ଯେଉଁଥିରେ ପ୍ରଥମେ ବହୁ କିସମର ଲୋକେ ଅଂଶଗ୍ରହଣ କରିଥିଲେ । ପରବର୍ତ୍ତୀ ସମୟରେ ଶ୍ରେଣୀ ସଂଗ୍ରାମ ମଧ୍ୟ ଦେଇ ସେମାନେ ଆନ୍ଦୋଳନ ପରିତ୍ୟାଗ କରିଥିଲେ, କିମ୍ବା ବିଶ୍ୱାସଘାତକତା କରିଥିଲେ । ଏହା ଦ୍ୱାରା ସେମାନେ ଆନ୍ଦୋଳନର ବିପୁଳ କ୍ଷତିସାଧନ କରିଥିଲେ ।

୧୭ଶ ଶତାବ୍ଦୀଟି "ବିଦ୍ରୋହୀ ଶତାବ୍ଦୀ" ନାମରେ ପରିଚିତ । ବ୍ୟାପକ ସାମାଜିକ ଆନ୍ଦୋଳନ କ୍ଷେତ୍ରରେ ଏହା ଏକ ଆକସ୍ମିକ ବିପଦ ରୂପେ ଆରମ୍ଭ ହୋଇଥିଲା । ଏହା "ଅଶାନ୍ତ କାଳ" ନାମରେ ପରିଚିତ । ଏହିସବୁ ଘଟଣାକୁ ଇନ୍ଧନ ଯୋଗାଇଥିଲା ଶାସକ ରାଜବଂଶର ଅବସାନ (ରିଉରିକଭିଚ୍‌ଙ୍କର ଶେଷ, ଫିଓଦର ଇଭାନୋଭିଚ୍, ସେ ଅପୁତ୍ରିକ ଥିଲେ ଏବଂ ୧୫୯୮ ଖ୍ରୀଷ୍ଟାବ୍ଦରେ ମୃତ୍ୟୁ ବରଣ କରିଥିଲେ; ତାଙ୍କର ଶ୍ୟାଳକ ବୋରିସ୍ ଗୋଡୁନୋଭ୍ ତାଙ୍କ ପରେ ସିଂହାସନ ଲାଭ କରିଥିଲେ, ୧୬୦୫ରେ ତାଙ୍କର ମୃତ୍ୟୁ ଘଟିଥିଲା), ତେବେ ଏହିସବୁ ଘଟଣାବଳୀ ପଛରେ ଥିଲା ଅର୍ଥନୈତିକ ନିପୀଡ଼ନ ଏବଂ ସାମାଜିକ ବିଶୃଙ୍ଖଳା ହେତୁ ସୃଷ୍ଟ ଗଣ ଅସନ୍ତୋଷ । କ୍ରମାନ୍ୱୟରେ ବହୁ ବର୍ଷ ଧରି ଫସଲହାନି ଫଳରେ ସୃଷ୍ଟ ଭୟଙ୍କର ଦୁର୍ଭିକ୍ଷ ଏହି ଅସନ୍ତୋଷକୁ ହଠାତ୍ ପ୍ରଜ୍ୱଳିତ କରି ଦେଇଥିଲା । ବୈଦେଶିକ ଘଟଣାବଳୀ ଏହାକୁ ଆଉରି ତୀବ୍ର କରି ପକାଇଲା । ସେସବୁ ଘଟଣାବଳୀ ମଧ୍ୟରେ ଥିଲା ରୁଷିଆ ଉପରେ ପ୍ରଥମତଃ ପୋଲ୍‌ମାନଙ୍କ, ତା'ପରେ ସୁଇଡିସ୍‌ମାନଙ୍କ ଆକ୍ରମଣ । ପୋଲିସ୍ ଆକ୍ରମଣକାରୀ ସାମନ୍ତମାନେ ଛଦ୍ମବେଶୀ ନକଲୀ-ଦ୍‌ମିତ୍ରୀ ୧ମଙ୍କୁ (ଯିଏକି ନିଜକୁ ଇଭାନ୍ ୪ର୍ଥଙ୍କ କନିଷ୍ଠ ପୁତ୍ର ବୋଲି ଦାବୀ କରୁଥିଲେ, ଯାହାଙ୍କୁ ଶିଶୁ ଅବସ୍ଥାରେ ହତ୍ୟା କଲାବେଳେ ଅଲୌକିକ ଭାବେ ବଞ୍ଚି ଯାଇଥିଲେ) ମସ୍କୋ ରାଜସିଂହାସନରେ ବସାଇ ରୁଷ୍ ରାଷ୍ଟ୍ରକୁ ଶାସନ କରିବାକୁ ଚାହୁଁଥିଲେ । ତାଙ୍କ ସିଂହାସନରୁ ଏବଂ ପୋଲ୍‌ମାନଙ୍କୁ ମସ୍କୋରୁ ହଟେଇ ଦେଲା ପରେ ପୋଲିସ୍ ହସ୍ତକ୍ଷେପକାରୀମାନେ ଏହି ଉଦ୍ଦେଶ୍ୟ ସାଧନ ଲକ୍ଷ୍ୟରେ ଆଉ ଜଣେ ଛଦ୍ମବେଶୀକୁ ସିଂହାସନରେ ବସାଇବାକୁ ଚେଷ୍ଟା କରିଥିଲେ । କିନ୍ତୁ ତା'ପରେ ସ୍ଥିର ହୋଇଥିଲା ରୁଷ୍ ଭୂଖଣ୍ଡକୁ ଦୁଇଟି ବିଦେଶୀ ରାଜବଂଶ ମଧ୍ୟରେ ଭାଗ ଭାଗ କରି ଦେବାକୁ । ରୁଷ୍ ଶାସକ ଶ୍ରେଣୀମାନଙ୍କର ଏକ ଅଂଶ ଅବିଳମ୍ବେ ହସ୍ତକ୍ଷେପକାରୀମାନଙ୍କ ସହିତ ଏକମତ ହୋଇ ଜାତୀୟ ସ୍ୱାର୍ଥର ବିଶ୍ୱାସଘାତକତା କରିଥିଲେ । କିନ୍ତୁ ଜନଗୋଷ୍ଠୀର ଏକ ବିପୁଳ ଅଂଶ ବିଦେଶୀ ବିଜୟୀମାନଙ୍କ ବିରୁଦ୍ଧରେ ସଂଗ୍ରାମ ଘୋଷଣା କରିଥିଲେ ।

ଏହି "ଅଶାନ୍ତ କାଳରେ" ସବୁ ଠାରୁ ଗୁରୁତ୍ୱପୂର୍ଣ୍ଣ ଘଟଣାଟି ହେଲା ଇଭାନ୍ ବଲୋଟ୍‌ନିକୋଭ୍‌ଙ୍କ ଦ୍ୱାରା ପରିଚାଳିତ ଜନପ୍ରିୟ ଗଣ ଯୁଦ୍ଧ (୧୬୦୬-୧୬୦୭) । ଇଭାନ୍ ବଲୋଟ୍‌ନିକୋଭ୍ ଇତି ପୂର୍ବରୁ ଜଣେ କ୍ରୀତଦାସ ଥିଲେ । ଏହି ବିଦ୍ରୋହର କେନ୍ଦ୍ରସ୍ଥଳୀ ଥିଲା ରାଷ୍ଟ୍ରର ଦକ୍ଷିଣବର୍ତ୍ତୀ କସାକ ଅଧ୍ୟୁଷିତ ଅଞ୍ଚଳସମୂହ । ଏହି ବିଦ୍ରୋହର ପରିଚାଳିକା ଶକ୍ତିମାନଙ୍କ ମଧ୍ୟରେ ବି କୃଷକ ଭୂମିଦାସ, କ୍ରୀତଦାସ ଏବଂ ସହର ଜନବସତିର ନିମ୍ନ ସ୍ତରର ଲୋକେ ଥିଲେ । ପ୍ରଥମେ କେତେକ ଦ୍ୱରିଆନେ ମଧ୍ୟ ଏହି ବିଦ୍ରୋହରେ ଯୋଗ ଦେଇଥିଲେ । ବିଦ୍ରୋହୀମାନଙ୍କର ସଂଖ୍ୟା ଏକ ଲକ୍ଷକୁ ବଳି ଯାଇଥିଲା । ସେମାନେ ରାଷ୍ଟ୍ରର କେନ୍ଦ୍ରୀୟ ଅଂଶକୁ ଅଧିକାର କରି ନେଇ ମସ୍କୋ ପର୍ଯ୍ୟନ୍ତ ଆଗେଇ ଆସିଥିଲେ । ତା'ପରେ ଅଭ୍ୟୁତ୍ଥାନର ଢେଉ ଭୋଲ୍‌ଗା ଅଞ୍ଚଳ, ପଶ୍ଚିମ ୟୁରାଲସ୍ ଏବଂ ଉତ୍ତର-ପଶ୍ଚିମ ଅଞ୍ଚଳର ସହରମାନଙ୍କୁ (ସେସବୁ ମଧ୍ୟରେ ପ୍‌ସ୍କୋଭ୍ ଥିଲା) ମାଡ଼ି ଯାଇଥିଲା । ରୁଷ୍ ଲୋକଙ୍କ ସହିତ କାନ୍ଧକୁ କାନ୍ଧ ମିଳେଇ ତାତାର, ଚୁଭାସ୍, ମାରି ଏବଂ ମୋର୍ଦଭୀୟମାନେ ଲଢ଼େଇ କରିଥିଲେ ଭୋଲ୍‌ଗା ଅଞ୍ଚଳରେ । ୧୭ଶ ଏବଂ ୧୮ଶ ଶତାବ୍ଦୀରେ ଏହା ହିଁ ଥିଲା ପ୍ରଥମ ବଡ଼ ଧରଣର କୃଷକ ଯୁଦ୍ଧ ।

ଜାର୍ ସରକାର ଦ୍ୱରିଆନ ଭୂସ୍ୱାମୀମାନଙ୍କୁ ଏହି ବିଦ୍ରୋହରୁ ଭିନ୍ନ ମୁଖୀ କରିବା ନିମିତ୍ତ ସବୁକିଛି କରିଥିଲା (ପଳାତକ କୃଷକମାନେ ପୁଣି ନିଜ ଜାଗାକୁ ଫେରି ଆସିବାର ସମୟ ବଢ଼ାଇ ଦିଆଯାଇଥିଲା), ଏବଂ ଦ୍ୱରିଆନ ସେନାଦଳର ବିଶ୍ୱାସଘାତକତା ଥିଲା ଏହି ବିଦ୍ରୋହର ପରାଜୟ ପଛରେ ଅନ୍ୟତମ କାରଣ । ବଲୋଟ୍‌ନିକୋଭ୍ ଏବଂ ତାଙ୍କ ସୈନ୍ୟବାହିନୀର ଅବଶେଷାଂଶ ତୁଲା ଅଞ୍ଚଳକୁ ପଳାଇ ଯାଇଥିଲେ । ଜାର୍‌ର ପ୍ରଧାନ ସେନାଦଳଗୁଡ଼ିକ ପ୍ରେରିତ ହୋଇଥିଲେ ବିଦ୍ରୋହୀମାନଙ୍କୁ ନିଶେଷ କରି ଦେବା ପାଇଁ । ନେତୃବୃନ୍ଦଙ୍କ ସମେତ ବିଦ୍ରୋହୀମାନଙ୍କ ଉପରେ ନିର୍ମମ ଅତ୍ୟାଚାର କରାଯାଇଥିଲା ।

ଏସବୁ ସତ୍ତ୍ୱେ ସରକାରର ଅବସ୍ଥା (ସେତେବେଳେ ସୁଇସ୍କି ରାଜାମାନଙ୍କ ପରିବାର ଜାତ ଭାସିଲି ୪ର୍ଥ ଥିଲେ ଜାର୍) ସାମନ୍ତ ଗୋଷ୍ଠୀମାନଙ୍କ ମଧ୍ୟରେ ସଂଘର୍ଷ, ବିଶେଷ କରି ହସ୍ତକ୍ଷେପକାରୀ ଶକ୍ତିମାନଙ୍କର କ୍ରିୟାକଳାପ ଫଳରେ ଅତି ଜଟିଳ ହୋଇ ପଡ଼ିଥିଲା (ଯେଉଁମାନେ ସାଧାରଣତଃ ସାମନ୍ତୀୟ ଉଚ୍ଚ ଶ୍ରେଣୀମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱରାଜିର ସୁଯୋଗ ନେଉଥିଲେ) । ହସ୍ତକ୍ଷେପକାରୀମାନେ ଦେଶର ସମସ୍ତ ଅଂଶର ବ୍ୟାପକ ଜନସାଧାରଣଙ୍କ ପକ୍ଷରୁ ପ୍ରତିରୋଧର ସମ୍ମୁଖୀନ ହୋଇଥିଲେ । ଗଣସେନାଦଳମାନ ଗଠିତ ହୋଇଥିଲେ ହସ୍ତକ୍ଷେପକାରୀମାନଙ୍କ ସହିତ ଲଢ଼େଇ କରିବା ପାଇଁ । ପ୍ରଥମ ଗଣସେନାଦଳଟିରେ ଦେଖା ଦେଇଥିଲା ଆଭ୍ୟନ୍ତରୀଣ କନ୍ଦଳ, ବିଶେଷ କରି ଦ୍ୱରିଆନ ଗୋଷ୍ଠୀସମୂହର ନେତୃବୃନ୍ଦ ଓ କସାକମାନଙ୍କ (ଏମାନଙ୍କ ମଧ୍ୟରେ ଅଧିକାଂଶ ଥିଲେ ପୂର୍ବତନ ଭୂମିଦାସ ଓ କୃଷକ) ମଧ୍ୟରେ । ତା'ପରେ ଏହି ଗଣସେନାଦଳଟି ଭାଗ

ଭାଗ ହୋଇ ଯାଇଥିଲା । ଦ୍ୱିତୀୟ ଗଣସେନାଦଳଟି ଗଠିତ ହୋଇଥିଲା ଜଣେ ପୋସାଦ ମୁଖିଆ, କୁଜ୍‌ମା ମିିନିନ୍‌ଙ୍କ ଉଦ୍ୟମରେ ୧୬୧୧ ଖ୍ରୀଷ୍ଟାବ୍ଦରେ ନିଝନି-ନୋଭ୍‌ଗୋରଦରେ । ସାମନ୍ତ ରାଜା ଦ୍‌ମିତ୍ରି ପୋଝାର୍‌ସ୍କିଙ୍କୁ ନିମନ୍ତ୍ରଣ କରାଯାଇଥିଲା ଏହି ଗଣବାହିନୀକୁ ନେତୃତ୍ୱ ଦେବା ପାଇଁ । ଇତିପୂର୍ବରୁ ସେ ହସ୍ତକ୍ଷେପକାରୀ ଶକ୍ତିମାନଙ୍କ ବିରୁଦ୍ଧରେ ଲଢ଼େଇ ପାଇଁ ଖ୍ୟାତି ଅର୍ଜନ କରିଥିଲେ । ପ୍ରଥମେ ଉତ୍ତର ଭୋଲ୍‌ଗା ଅଞ୍ଚଳଟିକୁ ଆକ୍ରମଣକାରୀଙ୍କ ହାତରୁ ମୁକ୍ତ କରାଯାଇଥିଲା (ୟାରୋସ୍ଲାଭ୍ଲ ଏବଂ ଅନ୍ୟାନ୍ୟ ଅଞ୍ଚଳ) । "ସମସ୍ତ ଭୂଖଣ୍ଡର ପରିଷଦଟି" (ଜେମ୍‌ସ୍କି ସୋବରର ଗଠନ ଏବଂ କ୍ଷମତାର ଅନୁରୂପ) ଗଠିତ ହୋଇଥିଲା ଏବଂ ଏହା ସଂଗ୍ରାମର ଏକ କର୍ମସୂଚୀ ଗଠନ କରିଥିଲା । ଏହି ପରିଷଦରେ ଅଗ୍ରଣୀ ଭୂମିକା ପାଳନ କରିଥିଲେ ପୋସାଦ ଜନଗୋଷ୍ଠୀ ଏବଂ ଦ୍ୱରିଆନ ବାହିନୀର ପ୍ରତିନିଧିଗଣ । ଯୁଦ୍ଧ ପରେ ଗଣସେନାବାହିନୀ ମସ୍କୋ ଅଭିମୁଖେ ଆଗେଇଥିଲେ ଏବଂ ୧୬୧୨ ମସିହାରେ ପୋଲିସ୍ ସେନାମାନଙ୍କ କବଳରୁ ରାଜଧାନୀକୁ ମୁକ୍ତ କରିଥିଲେ । ଏହି ଘଟଣାର ଅନେକ ବର୍ଷ ପରେ ହସ୍ତକ୍ଷେପକାରୀ ଶକ୍ତିମାନେ ବାଧ୍ୟ ହୋଇଥିଲେ ସେମାନଙ୍କ ଦେଶକୁ ଫେରିଯିବା ପାଇଁ, କିନ୍ତୁ ସେମାନଙ୍କ ଅଧୀନରେ କେତେକ ରୁଷ୍ ଅଞ୍ଚଳ ରହି ଯାଇଥିଲା ।

ରୁଷିଆରେ ସାମାଜିକ ସଂଘର୍ଷ ପ୍ରକୋପିତ ହେବା ସାଥେ ସାଥେ ଜେମ୍‌ସ୍କି ସୋବୋରସମୂହ ମାହାଲଗୁଡ଼ିକର ପ୍ରତିନିଧିମାନଙ୍କର ସଭାକୁ ପୁନର୍ସ୍ଥାପିତ କରାଯାଇଥିଲା । ୧୬୧୩ ପ୍ରତିନିଧି ବିଶିଷ୍ଟ ଏହି ସଭାରେ ମିଖାଇଲ୍ ରୋମାନୋଭ୍ (ସର୍ବଶେଷ ରିଉରିକଭିଚିଙ୍କର ସଂପର୍କୀୟ, ଜନୈକ ପୁରାତନ ବୟାର ପରିବାରରେ ଜାତ) ଜାର୍ ରୂପେ ନିର୍ବାଚିତ ହୋଇଥିଲେ ଏବଂ ରୋମାନୋଭ୍ ରାଜବଂଶର ପ୍ରତିଷ୍ଠାତା ରୂପେ ସେ ପରିଚିତ । ସେତେବେଳେ ଏହି ଜାର୍‌ଙ୍କ ବୟସ ୧୬ ବର୍ଷ ହୋଇଥିଲା; ଯେଉଁସବୁ ବୟାର ତାଙ୍କୁ ସମର୍ଥନ କରିଥିଲେ, ସେମାନେ ଆଶା କରିଥିଲେ ରାଜପରିଷଦରେ ସେମାନଙ୍କ ଆସ୍ଥାନକୁ ସୁଦୃଢ଼ କରି ନେବେ । ସେମାନେ କହିଥିଲେ, "ମିଶା ରୋମାନୋଭ୍‌ଙ୍କୁ ନିର୍ବାଚନ କରିବା ଭଲ, ସେ ଏବେ ତରୁଣ, ବୁଦ୍ଧିସୁଧି ପରିପକ୍ୱ ହୋଇନି ।" ମସ୍କୋର ଅବସ୍ଥା ସେତେବେଳେ ଏପରି ଧ୍ୱସ୍ତବିଧ୍ୱସ୍ତ ହୋଇ ପଡ଼ିଥିଲା ଯେ, ନୂଆ ନିର୍ବାଚିତ ଜାର୍‌ଙ୍କର ବସବାସ କରିବା ପାଇଁ ସ୍ଥାନ ନଥିଲା । ଅନେକ ବର୍ଷ ପରେ ଏହି ଜାର୍‌ଙ୍କ ପିତା, ଯିଏକି ପୋଲାଣ୍ଡର ବନ୍ଦୀଶାଳାରୁ ମୁକ୍ତ ପାଇ ଆସିଥିଲେ ଏବଂ ପୂର୍ବେ ଫିଲରେଟ୍ ନାମ ଧାରଣ କରି ସନ୍ନ୍ୟାସୀ ଜୀବନଯାପନ କରିବାକୁ ବାଧ୍ୟ ହୋଇଥିଲେ । ସେ ଜାର୍‌ଙ୍କ ନାମରେ ଶାସନ କରିବାକୁ ଆରମ୍ଭ କରି ଦେଲେ । ମୁଖ୍ୟ ଯାଜକ ରୂପେ ନିର୍ବାଚିତ ହେଲା ପରେ (୧୫୮୯ରେ ରୁଷୀୟ ଗିର୍ଜାର ମୁଖ୍ୟ ଯାଜକଙ୍କ ଉପାଧି ପ୍ରତିଷ୍ଠା କରାଯାଇଥିଲା) ସେ ବିଧ୍ୱଂସର କୁଫଳକୁ ଦୂର କରିବା ଦିଗରେ ଅନେକ କିଛି କରିବା ସଙ୍ଗେ ସଙ୍ଗେ ସ୍ୱେଚ୍ଛାଚାରୀ ଶାସନର ଶକ୍ତିକୁ ଦୃଢ଼ କରିଥିଲେ ।

୧୭ଶ ଶତାବ୍ଦୀର ମଧ୍ୟ ଭାଗରେ ଦେଶର ପଶ୍ଚିମ ଅଞ୍ଚଳଗୁଡ଼ିକରେ କୃଷକ ବିଦ୍ରୋହ ଦେଖା ଦେଲା ଏବଂ ଭୋଲ୍‌ଗା ଓ ୟୁରାଲ ଅଞ୍ଚଳମାନଙ୍କରେ ଗଣ ଅସନ୍ତୋଷ ଫାଟି ପଡ଼ିଲା । ଏହି ସମୟରେ ସହରମାନଙ୍କରେ ମଧ୍ୟ ବ୍ୟାପକ ଅଭ୍ୟୁତ୍‌ଥାନ ଘଟିଥିଲା : ୧୬୪୮ରେ ମସ୍କୋ ତଥା ଅନ୍ୟାନ୍ୟ ସହର ଉପରେ ବିଦ୍ରୋହର ଢେଉ ବହି ଯାଇଥିଲା । ୧୬୪୯ରେ ଜେମ୍‌ସ୍କି ସୋବର ଗ୍ରହଣ କରିଥିଲା ଏକ ଆଇନ୍‌ସଂହିତା – ଉଲୋଝେନିୟେ, ସାମନ୍ତବାଦୀ ଭୂମିଦାସ-ମାଲିକମାନଙ୍କ ଶକ୍ତିକୁ ଦୃଢ଼ କରିବା ଉଦ୍ଦେଶ୍ୟରେ । ଏହା ଫଳରେ କୃଷକମାନେ ଚୂଡ଼ାନ୍ତ ଭାବେ ଏବଂ ସଂପୂର୍ଣ୍ଣ ଭାବେ ଭୂସ୍ୱାମୀମାନଙ୍କ ପାଖରେ ବାନ୍ଧି ହୋଇ ପଡ଼ିଲେ । ଇତିପୂର୍ବରୁ ଏପରି କୌଣସି ଆଇନ୍ ନଥିଲା, ଯଦ୍ୱାରା କୌଣସି ପଳାତକ କୃଷକକୁ ଧରି ପୁଣି ତା ପ୍ରଭୁ ପାଖକୁ ଫେରେଇ ଦିଆଯିବ । କିନ୍ତୁ ଗୃହୀତ ଏହି ଆଇନ୍‌ସମୂହ ଦ୍ୱାରା ଗଣ ଅସନ୍ତୋଷର ଜୁଆରକୁ ରୋକି ହେଲା ନାହିଁ । ୧୬୫୦ରେ ନୋଭ୍‌ଗୋରଦ ଏବଂ ପ୍‌ସ୍କୋଭ୍‌ରେ (ପ୍‌ସ୍କୋଭ୍‌ରେ ବିଦ୍ରୋହୀମାନେ ଗାଭ୍ରିଲା ଦେମିଦୋଭ୍ ନାମକ ଜଣେ ରୁଟିସେକାଳୀଙ୍କ ନେତୃତ୍ୱରେ ସହରଟିକୁ ୬ ମାସ କାଳ ଶାସନ କରିଥିଲେ) ଅଭ୍ୟୁତ୍‌ଥାନ ଦେଖା ଦେଇଥିଲା ଏବଂ ୧୬୬୨ ମସିହାରେ ମସ୍କୋରେ ମଧ୍ୟ ଆଉ ଏକ ବିଦ୍ରୋହ ମୁଣ୍ଡ ଟେକି ଉଠିଥିଲା । ରକ୍ତରେ ବୁଡ଼େଇ ଦେଇଥିବା ଏହି ଅଭ୍ୟୁତ୍‌ଥାନର କାରଣସମୂହ ତା'ର ନାମ ମଧ୍ୟରେ ନିହିତ ରହିଛି । ଏହା "ଲବଣ ଅଭ୍ୟୁତ୍‌ଥାନ" (ଲବଣର ଅତି ମୂଲ୍ୟ ବୃଦ୍ଧି) ଏବଂ "ତାମ୍ର ଅଭ୍ୟୁତ୍‌ଥାନ" ନାମରେ (ରୌପ୍ୟ ମୁଦ୍ରାର ସମାନ ମୂଲ୍ୟରେ ତାମ୍ର ମୁଦ୍ରା ପ୍ରଚଳନ) ଇତିହାସରେ ପରିଚିତ ।

ପୋଲ୍‌ମାନଙ୍କ ଶାସନାଧୀନରେ ଥିବା ୟୁକ୍ରାଇନ୍ ଏବଂ ବେଲୋରୁଷିଆରେ ମଧ୍ୟ ଗଣ ଅଭ୍ୟୁତ୍‌ଥାନ ଦେଖା ଦେଇଥିଲା । ଏସବୁ ସ୍ଥାନରେ ଅଭ୍ୟୁତ୍‌ଥାନସମୂହ ଲକ୍ଷ୍ୟ କେବଳ ସାମନ୍ତମାନଙ୍କ ବିରୁଦ୍ଧରେ ନହୋଇ ଜାତିଗତ ତଥା ଧର୍ମୀୟ ନିର୍ଯ୍ୟାତନା ବିରୁଦ୍ଧରେ ପରିଚାଳିତ ହୋଇଥିଲା । ୧୬୪୦ ଦଶକର ଶେଷ ଭାଗରେ ବିଖ୍ୟାତ ସେନାପତି ଏବଂ ରାଷ୍ଟ୍ରନୀତିଜ୍ଞ ବଗ୍‌ଦାନ ଖ୍ମେଲ୍‌ନିତ୍‌ସ୍କିଙ୍କ ନେତୃତ୍ୱରେ ୟୁକ୍ରାଇନ୍‌ର ଜନସାଧାରଣ ପୋଲିସ୍ ଜମିଦାରମାନଙ୍କ ବିରୁଦ୍ଧରେ ତୁମୂଳ ସଂଗ୍ରାମ ଚଳାଇଥିଲେ । ଖ୍ମେଲ୍‌ନିତ୍‌ସ୍କିଙ୍କ ଲକ୍ଷ୍ୟ ଥିଲା ୟୁକ୍ରେନୀୟ ଜନସାଧାରଣଙ୍କୁ ସେମାନଙ୍କ ଭ୍ରାତୃପ୍ରତୀମ ରୁଷୀୟ ଜନସାଧାରଣଙ୍କ ସହିତ ଗୋଟିଏ ରାଷ୍ଟ୍ର ମଧ୍ୟରେ ଐକ୍ୟବଦ୍ଧ କରିବା । ପୋଲିସ୍ ସେନାବାହିନୀ ବିରୁଦ୍ଧରେ କେତେକ ଉଲ୍ଲେଖନୀୟ ବିଜୟ ହାସଲ କଲା ପରେ ଖ୍ମେଲ୍‌ନିତ୍‌ସ୍କି ମସ୍କୋର ଶାସକମାନଙ୍କ ସହିତ ଆଳାପ ଆଲୋଚନା କରିଥିଲେ ରୁଷିଆ ମଧ୍ୟରେ ୟୁକ୍ରାଇନ୍‌କୁ ଅନ୍ତର୍ଭୁକ୍ତ କରି ନେବା ସଂପର୍କରେ । ୧୬୫୩ ଖ୍ରୀଷ୍ଟାବ୍ଦରେ ଜେମ୍‌ସ୍କି ସୋବର ଖ୍ମେଲ୍‌ନିତ୍‌ସ୍କିଙ୍କ ଆବେଦନକୁ ଅନୁମୋଦନ ଜଣାଇଥିଲା ଏବଂ ୧୬୫୪, ଜାନୁଆରୀ ୮ ତାରିଖରେ ପେରେୟାସ୍ଲାଭ୍‌ଲର ରାଦା (ୟୁକ୍ରାଇନ୍‌ର କସାକ, ସହର ଏବଂ ଗ୍ରାମସମୂହର ପ୍ରତିନିଧିମାନଙ୍କର ସଭା) ନିଷ୍ପତ୍ତି ନେଇଥିଲା ସ୍ୱେଚ୍ଛାକୃତ ଭାବେ ରୁଷ୍ ରାଷ୍ଟ୍ର ସହିତ ଯୋଗ ଦେବାକୁ । ବହୁ

ଜାତୀୟ ରୁଷ୍ ରାଷ୍ଟ୍ର ଗଠନର ଇତିହାସରେ ଏହି ଘଟଣାଟି ଏକ ବଡ଼ ଦିକ୍‌ଚିହ୍ନ ସ୍ୱରୂପ ।

ଗିର୍ଜାରେ ଉପାସନାଦିର ବ୍ୟବସ୍ଥା ସହିତ ଧର୍ମୀୟ ଗ୍ରନ୍ଥସମୂହକୁ ଐକ୍ୟବଦ୍ଧ କରିବା ଲକ୍ଷ୍ୟରେ ପରିଚାଳିତ ଗିର୍ଜା ସଂସ୍କାରସକଳ ଫଳରେ ରୁଷିଆରେ ଜନ ଅସନ୍ତୋଷ ମଧ୍ୟ ଦେଖା ଦେଇଥିଲା । କ୍ଷମତାଲୋଭୀ ମୁଖ୍ୟ ଧର୍ମ ଯାଜକ ନିକନଙ୍କ ଦ୍ୱାରା ପ୍ରବର୍ତ୍ତିତ ସଂସ୍କାର ବିରୁଦ୍ଧରେ ପୁରାତନ ପରମ୍ପରା ପ୍ରତି ଅନୁରକ୍ତି – ପ୍ରବଣ ଧର୍ମବିଶ୍ୱାସୀମାନଙ୍କ ମଧ୍ୟରୁ ଏକାଂଶ ପ୍ରତିବାଦର ଧ୍ୱନି ଚୋଳିଥିଲେ, ଫଳରେ ଏକ ଧର୍ମୀୟ ଗୋଷ୍ଠୀର ଆବିର୍ଭାବ ଘଟିଥିଲା । ରାସ୍କୋଲ୍‌ନିକି ନାମରେ ପରିଚିତ ଏହି ଧର୍ମୀୟ ଗୋଷ୍ଠୀ ବିରୁଦ୍ଧରେ ନିକନ ଜୟ ଲାଭ କରିଥିଲେ, କିନ୍ତୁ ଜାର୍‌ର କ୍ଷମତା ଅପେକ୍ଷା ଗିର୍ଜାର କ୍ଷମତାକୁ ଉଚ୍ଚତର କରିବା ଦିଗରେ ତାଙ୍କର ଉଦ୍ୟମ ବିଫଳ ହୋଇଥିଲା । ସେ ୧୬୬୬ ଖ୍ରୀଷ୍ଟାବ୍ଦରେ ମୁଖ୍ୟ ଧର୍ମ ଯାଜକ ପଦରୁ (ଜାର୍ ଆଲେକ୍‌ସେଇ ମିଖାଇଲୋଭିଚ୍‌ଙ୍କ ଦାବୀ ଫଳରେ) ବିତାଡ଼ିତ ହୋଇଥିଲେ । ସ୍ୱୈରାଚାରୀ ଶାସନର ଆଉରି ଦୃଢ଼ୀକରଣର ପ୍ରକ୍ରିୟା ଏହା ପରେ ଜେମ୍‌ସ୍କି ସୋବରମାନଙ୍କ ଦ୍ୱାରା (୧୭ଶ ଶତାବ୍ଦୀର ମଧ୍ୟ ଭାଗ ଠାରୁ ଏହା ଆଉ ବସି ନଥିଲା), କିମ୍ବା ଗିର୍ଜାର ମୁଖ୍ୟଙ୍କ ଧର୍ମୀୟ ପ୍ରବଣତା ଦ୍ୱାରା ବ୍ୟାହତ ହୋଇ ନଥିଲା (ସେପର୍ଯ୍ୟନ୍ତ ଗିର୍ଜା ତା'ର ଜମିଜମା ଏବଂ ଆଭ୍ୟନ୍ତରୀଣ ସ୍ୱାଧୀନତା ଉପଭୋଗ କରୁଥିଲା) ।

ସରକାରୀ ଗିର୍ଜାକୁ ପୁରାତନ ଧର୍ମବିଶ୍ୱାସୀମାନେ ବିରୋଧ କରୁଥିଲେ : ୧୭ଶ ଶତାବ୍ଦୀର ଶେଷ ଭାଗକୁ ସେମାନଙ୍କ ସଂଖ୍ୟା ବୃଦ୍ଧି ପାଇଥିଲା । ଏହିସବୁ ପଠିତ ଅଜ୍ଞ ଜନସାଧାରଣ ଗ୍ରାମ୍ୟ ତଥା ସହରର ନିମ୍ନ ଶ୍ରେଣୀମାନଙ୍କ ସାମାଜିକ ପରିସ୍ଥିତିର ଅଧୋଗତିକୁ ନିକନଙ୍କ ଗିର୍ଜା ସଂସ୍କାରର ଫଳ ବୋଲି ବିଚାର କରୁଥିଲେ । ଏହି ଅଧୋଗତିର ପ୍ରକୃତ କାରଣ ଥିଲା ସାମନ୍ତୀୟ ପ୍ରଭୁମାନଙ୍କର ଉତ୍ପୀଡ଼ନ ଏବଂ ରାଷ୍ଟ୍ରୀୟ ଶାସନ ଯନ୍ତ୍ରର ଦୃଢ଼ୀକରଣ । ସେମାନେ ଖ୍ରୀଷ୍ଟ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଭ୍ରାତୃତ୍ୱ ପାଇଁ ଧର୍ମାଦେଶ ଏବଂ ପାର୍ଥିବ ଜୀବନରୁ ଦୂରେଇ ରହିବାର ନିବେଦନ ସେମାନଙ୍କୁ ଆକର୍ଷିତ ହୋଇଥିଲେ । କେତେକ ପୁରାତନ ଧର୍ମବିଶ୍ୱାସୀ ଭାବାଦର୍ଶବାଦୀ (ଆର୍କପ୍ରିଷ୍ଟ ଆଭାକୁମଙ୍କ ସମେତ, ଯିଏକି ଥିଲେ ଜଣେ ପ୍ରତିଭାବାନ ଲେଖକ, ଭାବପ୍ରବଣ ଧର୍ମ ପ୍ରଚାରକ, ବିଖ୍ୟାତ ଆତ୍ମଜୀବନୀମୂଳକ ଗଳ୍ପକାର) ଲୋକଙ୍କୁ ଆବେଦନ କରୁଥିଲେ ନିର୍ଜନ ଜୀବନଯାପନ କରିବାକୁ, ବନାନୀ ମଧ୍ୟରେ ବାସ କରିବାକୁ ଏପରିକି ଅଗ୍ନି ମଧ୍ୟରେ ଆତମାହୂତି ଦେବାକୁ । ଏହି ଧର୍ମୀୟ ଗୋଷ୍ଠୀର ଲୋକମାନଙ୍କ ସହିତ କେତେକ ଧନୀ ବଣିକ ଏବଂ ବୟାର ଯୋଗ ଦେଇଥିଲେ । ଷ୍ଟ୍ରେଲେଟ୍‌ସି ନାମକ ଏକ ବିଶେଷ ସାମରିକ ବାହିନୀର ଲୋକଙ୍କ ମଧ୍ୟରେ ମଧ୍ୟ କେତେକ ପୁରାତନ ଧର୍ମବିଶ୍ୱାସୀ ଥିଲେ । ଏହି ସାମରିକ ବାହିନୀର

ଲୋକେ ସାମରିକ କାର୍ଯ୍ୟ ସାଙ୍ଗକୁ କାରିଗର ରୂପେ କାର୍ଯ୍ୟ କରୁଥିଲେ । ୧୭ଶ ଶତାବ୍ଦୀର ଶେଷରେ ଷ୍ଟ୍ରେଲେତ୍‌ସମାନେ ଧର୍ମ ନିରପେକ୍ଷ ଶକ୍ତିସମୂହ ତଥା ତରୁଣ ପ୍ରଥମ ପିଟରଙ୍କ ଦ୍ୱାରା ପ୍ରବର୍ତ୍ତିତ ନୂତନ ସଂସ୍କାର ବିରୁଦ୍ଧରେ ବିଦ୍ରୋହ କରିଥିଲେ । ଏହି ଧର୍ମୀୟ ଗୋଷ୍ଠୀର ଭାବାଦର୍ଶ ସମସ୍ତ ନୂତନତ୍ୱର ବିରୋଧିତା କରୁଥିଲେ ମଧ୍ୟ, ଧର୍ମ ନିରପେକ୍ଷ ଜ୍ଞାନର ପ୍ରତି ଶତ୍ରୁ ଭାବାପନ୍ନ ଥିଲେ ମଧ୍ୟ ଏବଂ ରହସ୍ୟବାଦ ତଥା ଧର୍ମୀୟ ବାତୁଳତାର ପ୍ରସାର କରୁଥିଲେ ମଧ୍ୟ ପୁରାତନ ଧର୍ମବିଶ୍ୱାସୀମାନଙ୍କ ଆନ୍ଦୋଳନ ଏପରି ଏକ ରୂପ ଧାରଣ କରିଥିଲା, ଯେଉଁଥିରେ ୧୭ଶ-୧୮ଶ ଶତାବ୍ଦୀରେ ବ୍ୟାପକ ଜନସାଧାରଣଙ୍କର ସାମାଜିକ ପ୍ରତିବାଦ ପ୍ରକାଶ ପାଇଥିଲା ।

ନୂଆ ଏକ କୃଷକ ସଂଗ୍ରାମ ପାଇଁ ପୂର୍ବାବସ୍ଥା ଦେଖା ଦେଇଥିଲା ୧୬୬୦ ଦଶକରେ । ଏହି ଯୁଦ୍ଧ ପରିପକ୍ୱତା ଲାଭ କରୁଥିଲା ଦନ୍ ନଦୀର ତୀରବର୍ତ୍ତୀ କସାକ ବସତି ଅଞ୍ଚଳରେ, ଯେଉଁଠିକି ସର୍ବାଧିକ ପଳାତକ କୃଷକମାନେ ପ୍ରଳିଯାଇ ବାସ କରୁଥିଲେ । ୧୬୬୬ ମସିହା ଗ୍ରୀଷ୍ମ କାଳରେ କସାକମାନଙ୍କ ନେତା ଭାସିଲି ଉସ୍ ରାଷ୍ଟ୍ରର ମଧ୍ୟ ଅଞ୍ଚଳକୁ ଏକ ଅଭିଯାନ ଚଳେଇ ତୁଲା ନିକଟରେ ପହଞ୍ଚି ଯାଇଥିଲେ ; ସ୍ଥାନୀୟ କୃଷକମାନେ କସାକମାନଙ୍କୁ ସମର୍ଥନ ଦେଇଥିଲେ । ୧୬୬୭ ଖ୍ରୀଷ୍ଟାବ୍ଦରେ ଅଭ୍ୟୁତ୍‌ଥାନ ବିଶେଷ ରୂପ ଧାରଣ କରିଥିଲା ଏବଂ ଏହାର ନେତୃତ୍ୱ ନେଇଥିଲେ ଷ୍ଟେପାନ୍ ରାଜିନ୍ । ରାଜିନ୍ ଥିଲେ ଜଣେ ଆଜନ୍ମ ସଂଗଠକ ଏବଂ ବକ୍ତା ତଥା ପ୍ରତିଭାବାନ ସେନାପତି । ସେ ଗରିବ କସାକମାନଙ୍କ ଉପରେ ନିର୍ଭର କରୁଥିଲେ । ପ୍ରଥମେ କସାକମାନେ ଭୋଲ୍‌ଗା ନଦୀରେ ବାଣିଜ୍ୟତରି ଏବଂ କାସ୍‌ପିଆନ ସାଗର ତୀରବର୍ତ୍ତୀ ପାରସ୍ୟ ସହରମାନଙ୍କ ଉପରେ ଆକ୍ରମଣ ଚଳେଇ ଧନସଂପଦ ଲୁଟ୍ କରି ନେଉଥିଲେ ଏବଂ ସେସବୁକୁ ଭାଗ ଭାଗ କରୁଥିଲେ । ରାଜିନ୍‌ଙ୍କ ସୈନ୍ୟମାନେ ଭୋଲ୍‌ଗା କୂଳର ଆସ୍ତ୍ରାଖାନ ସହର ଦଖଲ କରି ଦନ୍ ଅଭିମୁଖେ ଯାତ୍ରା କରିଥିଲେ । ଏଠାରେ କସାକ ଏବଂ ପଳାତକ କୃଷକମାନେ ବିଦ୍ରୋହୀମାନଙ୍କ ସହିତ ମିଳିତ ହୋଇଥିଲେ । ସେମାନଙ୍କ ରଣଧ୍ୱନି ଥିଲା : ବୟାର, ଜାର୍‌ସାହୀ ଅଫିସର ଏବଂ ଧନୀ ଲୋକଙ୍କ ବିରୁଦ୍ଧରେ ଲଢ଼େଇ ଏବଂ ଦାସତ୍ୱ ତଥା ଭୂମିଦାସତ୍ୱ ଶୃଙ୍ଖଳରୁ ମୁକ୍ତି । କିନ୍ତୁ ଲୋକେ ତଥାପି ବି "ଦୟାଳୁ ଜାର୍" ଉପରେ ବିଶ୍ୱାସ ରଖିଥିଲେ ଏବଂ ରାଜିନ୍‌ଙ୍କ ସୈନ୍ୟମାନଙ୍କ ମଧ୍ୟରେ ଜାର୍‌ର ଜଣେ ପୁତ୍ର ଆଲେକ୍‌ସେଇ ମିଖାଇଲୋଭିଚ୍ ଅଛନ୍ତି ବୋଲି ଗୁଜବ୍ ରଟି ଯାଇଥିଲା । ବିଦ୍ରୋହୀମାନେ ତା'ପରେ ଆଗେଇଥିଲେ ଭୋଲ୍‌ଗା ଅଞ୍ଚଳ ଆଡ଼କୁ । ଏହି ଅଞ୍ଚଳର ଲୋକେ ଏବଂ ଗରିବ ସହରବାସୀମାନେ ସେମାନଙ୍କୁ ସମର୍ଥନ ଜଣାଇଥିଲେ । ସେମାନଙ୍କ ଦ୍ୱାରା ଅଧିକୃତ ସହରଗୁଡ଼ିକର ଶାସନକୁ କସାକ ଧରଣରେ ସଂଗଠିତ କରାଯାଇଥିଲା । ଦେଶର ଅନ୍ୟାନ୍ୟ ଅଞ୍ଚଳରେ ବିଦ୍ରୋହ ଘୋଷଣା କରିବା ନିମିତ୍ତ ରାଜିନ୍ ତପସିଲ ଫର୍ମାନ ପ୍ରେରଣ

କରିଥିଲେ । ୧୬୭୦ ଖ୍ରୀଷ୍ଟାବ୍ଦ ପରେ ଭୂସ୍ୱାମୀମାନଙ୍କ ବିରୁଦ୍ଧରେ ଲଢ଼େଇ କରୁଥିବା କୃଷକମାନେ କ୍ରମାଧିକ ଭାବେ ଅଭ୍ୟୁତ୍‌ଥାନରେ ଅଧିକ ସକ୍ରିୟ ହୋଇ ଉଠିଥିଲେ । ବ୍ଲେଟ୍‌ନିକୋଭ୍‌ଙ୍କ ଦ୍ୱାରା ପରିଗ୍ରଳିତ ଅଭ୍ୟୁତ୍‌ଥାନର ସାମାଜିକ ବିନ୍ୟାସ ଭଳି ଏହି ବିଦ୍ରୋହରେ ଯୋଗଦାନକାରୀମାନେ ବାରମିଶା ନଥିଲେ । ବିଦ୍ରୋହୀମାନେ ଭୂମିଦାସ ପ୍ରଥାର ବିଲୋପ ଗ୍ରହିଁଥିଲେ । ଦ୍ୱରିଆନ୍‌ମାନେ ରାଜିନ୍‌ଙ୍କ ସୈନ୍ୟମାନଙ୍କ ଐକ୍ୟବଦ୍ଧ ଭାବେ ବାଧା ଦେଇଥିଲେ । ଅଭ୍ୟୁତ୍‌ଥାନକୁ ନିର୍ମମ ଭାବେ ଦମନ କରାଯାଇଥିଲା ଏବଂ ରାଜିନ୍‌ଙ୍କ ଧନୀ କସାକମାନେ ପରିତ୍ୟାଗ କରିଥିଲେ । ତା'ପରେ ତାଙ୍କୁ ମସ୍କୋରେ ହତ୍ୟା କରାଯାଇଥିଲା । ୧୬୭୦-୧୬୭୧ର ଜନପ୍ରିୟ ଅଭ୍ୟୁତ୍‌ଥାନ ଥିଲା ରୁଷ୍ ଜନସାଧାରଣଙ୍କର ଶ୍ରେଣୀ ସଂଗ୍ରାମର ପରମ୍ପରା ତଥା ଅତ୍ୟାଗ୍ରରୀମାନଙ୍କ ବିରୁଦ୍ଧରେ ବିଭିନ୍ନ ଜାତିମାନଙ୍କର ମିଳିତ ସଂଗ୍ରାମର ପରମ୍ପରା ଗଠନ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟ । ରାଜିନ୍‌ଙ୍କ ନାମ ଲୋକକଥାରେ ପରିଣତ ହେଲା ଏବଂ ଏହି ଜନପ୍ରିୟ ସାମରିକ ନେତା ବହୁ ସ୍ୱାଧୀନତା ସଂଗୀତ ଓ ଗାଥାର ନାୟକରେ ପରିଣତ ହେଲେ । ତାଙ୍କର ଦ୍ୱାରା ପରିଗ୍ରଳିତ ଏହି ବିରାଟ କୃଷକ ଯୁଦ୍ଧ ଥିଲା ବିଦ୍ରୋହୀ ୧୭ଶ ଶତାବ୍ଦୀର ଏକ ପ୍ରଧାନ ଘଟଣା ।

# ୭ମ ପରିଚ୍ଛେଦ

## ୧୮ଶ ଶତାବ୍ଦୀର ପ୍ରଥମ କାଳରେ ରୁଷିଆ— ଏକଚ୍ଛତ୍ରବାଦୀ ରାଜତନ୍ତ୍ର ପ୍ରତିଷ୍ଠା—ମହାନ୍ ପିଟରଙ୍କ ସଂସ୍କାରମୂଳକ କାର୍ଯ୍ୟ

୧୮ଶ ଶତାବ୍ଦୀରେ ନୂଆ ଏକ ଯୁଗର ଆରମ୍ଭ ଘଟିଥିଲା । ୧୭୦୦ ଖ୍ରୀଷ୍ଟାବ୍ଦରେ ରୁଷିଆରେ ନବ ବର୍ଷ ପୂର୍ବ ପରି ସେପ୍‌ଟେମ୍ବରରେ ପାଳିତ ନହୋଇ ଜାନୁଆରୀ ପହିଲାରେ ପାଳିତ ହୋଇଥିଲା । ଏହା ପରେ ଖୁବ୍ ଶୀଘ୍ର ଘୋଷିତ ହୋଇଥିଲା ଆଉ ଏକ ନବାୟନ : ପୁରାତନ ରୁଷୀୟ ପୋଷାକ ସ୍ଥାନରେ ପ୍ରଚଳିତ ହେଲା "ହଙ୍ଗେରୀୟ ଶୈଳୀର କୋଟ୍" ଏବଂ ଏହାର ଦେଢ଼ ମାସ ପରେ ପ୍ରଥମ ପିଟର ପୁରୁଣାକାଳିଆ ଆଇନ୍‌ସମୂହ ସ୍ଥାନରେ ନୂଆ ଏକ ଆଇନ୍‌ସଂହିତା ରଚନା ପାଇଁ ଏକ ନିର୍ଦ୍ଦେଶନାମାରେ ସ୍ୱାକ୍ଷର କରିଥିଲେ । ଏହାର ନାମ ଥିଲା ସବୋର୍ଣ୍ଣୟେ ଉଲୋଝେନିଏ । ଦୀର୍ଘ କାଳ ଧରି ଚାଲିଥିବା ସୁଇଡେନ୍ ବିରୁଦ୍ଧରେ ପରିଚାଳିତ "ଉତ୍ତର ଯୁଦ୍ଧ" ଆରମ୍ଭ ହୋଇଥିଲା ୧୭୦୦ ଖ୍ରୀଷ୍ଟାବ୍ଦରେ ।

ପ୍ରଥମ ପିଟର ଅନେକଗୁଡ଼ିଏ ନିର୍ଦ୍ଦେଶନାମା ଜାରି କରିଥିଲେ ; ସେସବୁ ମଧ୍ୟରୁ କେତେକ "ଯାବତ୍ ଚନ୍ଦ୍ରାର୍କେ" ଆଇନ୍‌ସିଦ୍ଧ ହୋଇ ରହିବ ବୋଲି ପିଟର ନିଜେ କହିଥିଲେ । ଆଉ କେତେକ ସ୍ୱଳ୍ପ ସ୍ଥାୟୀ ହେବ ବୋଲି ସେ ବିଶ୍ୱାସ କରୁଥିଲେ । ତାଙ୍କ ପୂର୍ବରୁ କୌଣସି ଜାର୍ ସରକାରୀ କାର୍ଯ୍ୟକଳାପରେ ଏତେ ଶକ୍ତିଶାଳୀ ଏବଂ ନିରବଚ୍ଛିନ୍ନ ଭାବେ ହସ୍ତକ୍ଷେପ କରି ନଥିଲେ କି ରୁଷୀୟ ଜୀବନ କ୍ଷେତ୍ରରେ ଏତେ ମୌଳିକ ପରିବର୍ତ୍ତନ କରି ନଥିଲେ । ଏହିସବୁ ନବାୟନ ଅନେକ ସମୟରେ ଏପରି ଭାବେ ସ୍ୱେଚ୍ଛାଚାରୀ ପଦ୍ଧତିରେ କାର୍ଯ୍ୟକାରୀ ହୋଇଥିଲା, ଯାହାକି ମନେ ପକାଇ ଦେଉଥିଲା ଇଭାନ୍ ଭୟଙ୍କରଙ୍କ ଯୁଗ କଥା । ଲେନିନ୍ ଲେଖିଥିଲେ, "ପିଟର ପାଶ୍ଚାତ୍ୟ ସଂସ୍କୃତିକୁ ଅସଭ୍ୟ ରୁଷିଆ ଦ୍ୱାରା ଅନୁକରଣ କରାଇଥିଲେ ଅସଭ୍ୟତା ବିରୁଦ୍ଧରେ ଅସଭ୍ୟ ପଦ୍ଧତି ଦ୍ୱାରା ଲଢ଼େଇ କରି" । ମହାନ୍ ପିଟର ବୋଲି ପରିଚିତ ପ୍ରଥମ ପିଟର (୧୬୭୨-୧୭୨୫) ୧୬୮୨ ଖ୍ରୀଷ୍ଟାବ୍ଦରେ ଜାର୍ ହୋଇ ରୁଷିଆରେ ସ୍ୱୈରତନ୍ତ୍ରକୁ ଚୂଡ଼ାନ୍ତ ଭାବେ ପ୍ରତିଷ୍ଠା କରିଥିଲେ ।

୧୮ଶ ଶତାବ୍ଦୀର ପ୍ରଥମ ଚଉଠରେ ପ୍ରବର୍ତ୍ତିତ ପରିବର୍ତ୍ତନସମୂହ ଦେଶର ପୂର୍ବବର୍ତ୍ତୀ

ଐତିହାସିକ ବିକାଶ ଦ୍ୱାରା ବିଶେଷ ଭାବେ ରଚିତ ହୋଇଥିଲା : ୧୭ଶ ଶତାବ୍ଦୀରେ ରୁଷିଆରେ ଶିଳ୍ପର ଆବିର୍ଭାବ ଘଟିଥିଲା , ବୃହତ୍ ବାଣିଜ୍ୟିକ ପୁଞ୍ଜିର ସଞ୍ଚୟନ ହୋଇଥିଲା । ଏହା ସ୍ଥାନୀୟ ଅର୍ଥନୈତିକ ବିଚ୍ଛିନ୍ନତାକୁ ଅତିକ୍ରମ କରିବା ଦିଗରେ ଏକ ଉଲ୍ଲେଖନୀୟ ଭୂମିକା ପାଳନ କରିଥିଲା । ଏହା ଫଳରେ, ଭୋଟ୍ଚିନା ଏବଂ ପୋମେସ୍ତି ଧରଣର ଭୂମିମାଲିକାନା ଏବଂ ଜମିଦାରମାନଙ୍କ ଅଧୀନରେ ଥିବା କୃଷକମାନଙ୍କର ବିଭିନ୍ନ ସ୍ତର ମଧ୍ୟରେ ପାର୍ଥକ୍ୟସମୂହ ଲୋପ ପାଇଗଲା । ସରକାରୀ ବ୍ୟବସ୍ଥା ମଧ୍ୟ କ୍ରମଶଃ ଅଧିକରୁ ଅଧିକ ଅମଲାତାନ୍ତ୍ରିକ ହୋଇ ଉଠିଲା । ଧର୍ମନିରପେକ୍ଷ ସାମନ୍ତ ପ୍ରଭୁମାନଙ୍କ ମଧ୍ୟରେ ସେମାନଙ୍କ ସମ୍ଭ୍ରାନ୍ତ ବଂଶରତ ତଥା ସେମାନଙ୍କ ପୂର୍ବପୁରୁଷମାନଙ୍କ ପଦାଧିଷ୍ଠାନ ଅନୁସାରେ ସାମରିକ, ପ୍ରଶାସନିକ ଏବଂ ରାଜପରିଷଦର ସ୍ଥାନ ବଣ୍ଟନ ମଧ୍ୟ ବନ୍ଦ କରି ଦିଆଗଲା ଏବଂ ସ୍ୱୈରାଗ୍ରରୀ ଶାସକଙ୍କ ତୁଳନାରେ ଗିର୍ଜା ଏକ ଅଧସ୍ତନ ଆସ୍ଥାନ ଲାଭ କଲା । ଆନ୍ତର୍ଜାତିକ ସଂପର୍କରାଜି କ୍ଷେତ୍ରରେ ରୁଷିଆର ଭୂମିକା ସକ୍ରିୟ ଏବଂ ବହୁ ମୁଖୀ ହୋଇ ଉଠିଲା । ଅନ୍ୟାନ୍ୟ ଜାତିମାନଙ୍କ ସହିତ ସାଂସ୍କୃତିକ ପାରସ୍ପରିକ ସଂପର୍କ ପାଇଁ ସୁବିଧା ସୁଯୋଗର ପ୍ରବଣତା ଅଧିକ ଭାବେ ଅନୁଭୂତ ହେଲା । ରାଜନୀତି ତଥା ସରକାରର ବିକାଶକୁ ଏବେ ସହଜରେ ଲକ୍ଷ୍ୟ କରାଗଲା ବୟାର ଡୁମା ଓ ବୟାର ଅମଲାତନ୍ତ୍ର ସହିତ ରାଜତନ୍ତ୍ରରୁ ଏବଂ ଅମଲାତାନ୍ତ୍ରିକ ଦ୍ୱରିଆନ ରାଜତନ୍ତ୍ରକୁ ।

ତେବେ, ଏହି ପ୍ରକ୍ରିୟା ତ୍ୱରାନ୍ୱିତ ହୋଇଥିଲା ସର୍ବୋଚ୍ଚ ଶକ୍ତି ପକ୍ଷରୁ ହସ୍ତକ୍ଷେପ ଫଳରେ । ସମକାଳୀନ ଲୋକେ ଅତିବିସ୍ମିତ ହୋଇଥିଲେ ଜାର୍ ଏବଂ ତାଙ୍କ ପ୍ରଜାମାନଙ୍କ ଜୀବନ ଧାରାର ପରମ୍ପରାଗତ ଚିନ୍ତାରାଜିର ଏହି ଦ୍ରୁତ ଅବସାନ ଦେଖି । ପ୍ରଥମ ପିଟର ତାଙ୍କର କ୍ରୋଧପୂର୍ଣ୍ଣ ମିଜାଜ୍, ବହୁ ମୁଖୀ ପାରଙ୍ଗମତା ଏବଂ ବିରଳ କୌତୂହଳ ନେଇ ଜାର୍ ଜୀବନର ପବିତ୍ର ବିବେଚିତ ଆନୁଷ୍ଠାନିକତାକୁ ଭାଙ୍ଗିବାକୁ ସାହସ କରିଥିଲେ : ସେ ୟୁରୋପୀୟ ପୋଷାକ ପିନ୍ଧିଥିଲେ, ଅସମ୍ଭ୍ରାନ୍ତ ବଂଶୀୟ ସମବୟସୀ ଲୋକଙ୍କ ସହିତ (ସେହିସବୁ ଲୋକମାନଙ୍କ ମଧ୍ୟରେ ଆଲେକ୍‌ଜାଣ୍ଡାର ମେନ୍‌ଶିକୋଭ୍ ଖୁବ୍ ଶୀଘ୍ର ସୁପରିଚିତ ହୋଇ ଉଠିଥିଲେ ଏବଂ ପ୍ରଥମ ପିଟରଙ୍କ ଶାସନର ଶେଷ ବେଳକୁ ରାଷ୍ଟ୍ରରେ ଜାର୍‌ଙ୍କ ପରେ ଦ୍ୱିତୀୟ ବ୍ୟକ୍ତି ରୂପେ ଗଣ୍ୟ ହୋଇଥିଲେ) ଏବଂ ମସ୍କୋର ବିଦେଶୀମାନଙ୍କ ବସତିରେ ବାସ କରୁଥିବା ଲୋକମାନଙ୍କ ସହିତ ବନ୍ଧୁତ୍ୱ ପାତିଥିଲେ ଏବଂ ନିଜକୁ "ଅଶାସକ" କରାଇ କାୟିକ ଶ୍ରମ କରିଥିଲେ । ରୁଷିଆର ଜାର୍‌ମାନଙ୍କ ମଧ୍ୟରୁ ସିଏ ହିଁ ପ୍ରଥମେ ବିଦେଶ ଯାତ୍ରା କରିଥିଲେ (୧୬୯୭-୧୬୯୮ରେ ମହାନ୍ ରାଜ ଦୂତାଳୟର ଛଦ୍ମବେଶୀ ସଦସ୍ୟ ହିସାବରେ, ହଲାଣ୍ଡ ଏବଂ ଇଂଲଣ୍ଡରେ ସେ ନୌଚଳାଚଳ ବ୍ୟବସ୍ଥା ଅନୁଧ୍ୟାନ କରିଥିଲେ ଏବଂ ଜାହାଜ ନିର୍ମାଣସ୍ଥଳୀରେ କାର୍ଯ୍ୟ କରିଥିଲେ) । ପ୍ରଥମ ପିଟର ତାଙ୍କର ପ୍ରଥମ ସ୍ତ୍ରୀଙ୍କୁ ପରିତ୍ୟାଗ କରି ଜଣେ ଲିଥୁଆନୀୟ କୃଷକର କନ୍ୟାଙ୍କୁ ବିବାହ କରିଥିଲେ । ତାଙ୍କର ପ୍ରଥମ ସ୍ତ୍ରୀ ଥିଲେ ମସ୍କୋର ଜଣେ ବୟାର ପରିବାରର

କନ୍ୟା । ୧୭୦୮ ମସିହାରେ ଲିଥୁଆନୀୟ କୃଷକଙ୍କ କନ୍ୟାଙ୍କୁ ସେ ତାଙ୍କର ଅବିବାହିତା ସ୍ତ୍ରୀ ରୂପେ ଗ୍ରହଣ କରିଥିଲେ ଏବଂ ୧୭୧୨ ମସିହାରେ ସେମାନଙ୍କ ବିବାହ ଏକ ଗିର୍ଜାରେ ସଂପନ୍ନ ହୋଇଥିଲା । ପିଟରଙ୍କ ମୃତ୍ୟୁ ପରେ ତାଙ୍କ ସ୍ତ୍ରୀ ରାଣୀ ପ୍ରଥମ କ୍ୟାଥରିନ ହୋଇଥିଲେ ।

୧୭ଶ ଶତାବ୍ଦୀର ଋଷୀୟ ପୁରାତନ ସାମାଜିକ ଭିତ୍ତି ଉପରେ ଦୁଃସାହସିକ ଆକ୍ରମଣ କରିବା ପାଇଁ ନିଜର ସଠିକତା ଉପରେ କେବଳ ଗଭୀର ବିଶ୍ୱାସର ପ୍ରୟୋଜନ ନଥିଲା, ବିପୁଳ ସାହସର ମଧ୍ୟ ଆବଶ୍ୟକତା ଥିଲା । ତେବେ, ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥାଟି ହେଲା ପିଟର କୌଣସି ମତେ ଶାସକ ଶ୍ରେଣୀର ସୁସମ୍ପୋଗର ଭିତ୍ତି ଉପରେ ଆକ୍ରମଣ କରି ପାରି ନଥିଲେ । ଏହାର ବିପରୀତରେ ସେ ଭୂମିଦାସତ୍ୱ ଯୁକ୍ତ ରାଷ୍ଟ୍ରକୁ ଶକ୍ତିଶାଳୀ କରିବାକୁ ଚାହିଁଥିଲେ । ନିମ୍ନ ବଂଶଜାତ ଲୋକେ, ଯେଉଁମାନେ ନିଜକୁ ଶୀଘ୍ର ପ୍ରତିଷ୍ଠିତ କରି ପାରୁଥିଲେ ସେମାନେ ଦ୍ୱରିଆନ (ଏପରିକି ଉପାଧି ଲାଭ କରିଥିଲେ) ହୋଇ ଯାଇଥିଲେ । ଏହା ଛଡ଼ା, ସରକାରୀ ନୀତିସମୂହ ଫଳରେ ୧୮ଶ ଶତାବ୍ଦୀର ପ୍ରାରମ୍ଭରେ ଶ୍ରେଣୀ ସଂଗ୍ରାମ ତୀବ୍ରତର ହୋଇ ଉଠିଥିଲା । ୧୭୦୫ ମସିହାରେ ଆସ୍ତ୍ରାଖାନ ଏବଂ ବାସ୍କିରିଆରେ ବଡ଼ ଧରଣର ବିଦ୍ରୋହମାନ ଦେଖା ଦେଇଥିଲା । ଛଅ ମାସ କାଳ ଲୋକମାନଙ୍କ ହାତରେ ଶାସନ କ୍ଷମତା ରହିଥିଲା । ୧୭୦୭-୧୭୦୯ ଖ୍ରୀଷ୍ଟାବ୍ଦରେ କୋଦ୍ରାଟି ବୁଲାଭିନ୍‌ଙ୍କ ନେତୃତ୍ୱରେ ପରିଚାଳିତ ଦନ୍ କସାକ ଆନ୍ଦୋଳନର ଜୁଆର ବ୍ୟାପି ଯାଇଥିଲା ଋଷୀୟ ଆଉ ୟୁକ୍ରେନୀୟ ଅଧ୍ୟୁଷିତ ଦକ୍ଷିଣ ଏବଂ କେନ୍ଦ୍ରୀୟ ଜିଲାମାନଙ୍କୁ । ଏସବୁ ୧୭ଶ ଶତାବ୍ଦୀର ଜନପ୍ରିୟ ଯୁଦ୍ଧର ରୂପ ପରିଗ୍ରହ କରିଥିଲା ଏବଂ ଏସବୁକୁ ଭୟଙ୍କର ନିର୍ମମ ଭାବେ ଦମନ କରାଯାଇଥିଲା ।

ପ୍ରଥମ ପିଟର ଥିଲେ ଜଣେ ଆଜନ୍ମ ସଂଗଠକ ଏବଂ ବୈଦେଶିକ ପ୍ରଶାସନିକ ତଥା ଅର୍ଥନୈତିକ ଅଭିଜ୍ଞତାର ବିପୁଳ ଉପଯୋଗିତା ଦ୍ୱାରା ସେ ବହୁବିଧ ସଂସ୍କାର ସାଧନ କରିଥିଲେ । ତାଙ୍କର ଅଫୁରନ୍ତ ଶକ୍ତି, ଉଦ୍ୟମ ଏବଂ ସୃଜନମୂଳକ ମନୋବଳ ତାଙ୍କ ଘନିଷ୍ଠ ଅନୁଗାମୀମାନଙ୍କୁ ବାଧ୍ୟ କରିଥିଲା ତାଙ୍କୁ ଅନୁସରଣ କରିବାକୁ । ଏହା ଥିଲା ଜାର୍‌ଙ୍କ ଶୁଭଦୃଷ୍ଟି ଲାଭ କରିବା ପକ୍ଷରେ ସର୍ବୋତ୍କୃଷ୍ଟ ରାସ୍ତା : ତେଣୁ ଏହି ସମୟରେ ବହୁବିଧ ସଂସ୍କାରମୂଳକ ଯୋଜନା ଦେଖାଦେଇଥିଲା ।

କେନ୍ଦ୍ରୀୟ ସରକାରକୁ ପୁନର୍ଗଠିତ କରାଯାଇଥିଲା : ବୟାର ଡୁମା ପରିବର୍ତ୍ତେ ବ୍ୟାପକ ଆଇନ, ବିଚାର ଓ ନିୟନ୍ତ୍ରଣମୂଳକ କ୍ରିୟାକଳାପର କ୍ଷମତାସଂପନ୍ନ ସିନେଟ ଗଠିତ ହୋଇଥିଲା ; ପରିଷ୍କାର ଭାବେ ବିଶ୍ଳେଷିତ କ୍ରିୟାକଳାପ ଯୁକ୍ତ ବହୁ ନିର୍ବାଚନ ସଂଘ ଏବଂ ଆଭ୍ୟନ୍ତରୀଣ ସଂଗଠନ ସୃଷ୍ଟ ହୋଇଥିଲା ପ୍ରିକାଜର ପୂର୍ବତନ ତାଲିକା କେନ୍ଦ୍ରୀୟ ସରକାରୀ ସଂସ୍ଥାମାନଙ୍କୁ ସ୍ଥାନାନ୍ତରିତ କରିବା ପାଇଁ । ଫଳରେ ସିନୋଦ ଗଠିତ ହୋଇଥିଲା ଗିର୍ଜାର ବ୍ୟାପାର ପରିଚାଳନା କରିବା ପାଇଁ ଉଚିଖାତ

ପାଟ୍ରିଆରଚେଟ୍ ସ୍ଥାନରେ । ଏହା ଏକ ନିର୍ବାଚନ ସଂଘରେ ପରିଣତ ହୋଇଥିଲା । ୧୭୦୮ ଖ୍ରୀଷ୍ଟାବ୍ଦରେ ସାରା ଦେଶକୁ ୮ଟି ପ୍ରଦେଶରେ ବିଭକ୍ତ କରି ଦିଆଗଲା । ଏହିସବୁ ପ୍ରଦେଶ ବା ଗୁବେର୍ଣିଆ ଛୋଟ ଛୋଟ ପ୍ରଶାସନିକ ଜିଲ୍ଲାକୁ ନେଇ ଗଠିତ ହୋଇଥିଲା । ସର୍ବୋପରି, ଏସବୁ କରିବା ପଛରେ ସରକାରଙ୍କ ଉଦ୍ଦେଶ୍ୟ ଥିଲା ଆର୍ଥିକ ଏବଂ ସାମରିକ। ବିଶେଷ ପୁଲିସ୍ ବିଭାଗମାନ ମଧ୍ୟ ପ୍ରତିଷ୍ଠା କରାଯାଇଥିଲା । ପରିବାରମାନଙ୍କ ଉପରେ ଟିକସ ବସାଇବା ପରିବର୍ତ୍ତେ ବ୍ୟକ୍ତିସମୂହଙ୍କ ଉପରେ ଟିକସ ବସାଗଲା (ଲୋକଙ୍କ ଉପରେ କେବଳ ଟିକସ ବସାଗଲା) । ଏ ଉଦ୍ଦେଶ୍ୟରେ ପରିଦର୍ଶନମୂଳକ ଲୋକ ଗଣନା ପ୍ରବର୍ତ୍ତନ କରାଯାଇଥିଲା ।

ସହରମାନଙ୍କ ଉପରେ ଶାସନ କରିବାର ଏକ ପଦ୍ଧତି ମଧ୍ୟ ଗଠନ କରାଗଲା (ମାଜିଷ୍ଟ୍ରେଟ୍); ସହରବାସିନ୍ଦାମାନଙ୍କୁ ସେମାନଙ୍କ ବୈଷୟିକ ଅବସ୍ଥାନ ଏବଂ ବେଉଷା ଅନୁଯାୟୀ ବିଭିନ୍ନ ବର୍ଗରେ ବିଭକ୍ତ କରାଗଲା । ଅମଲାତାନ୍ତ୍ରିକ ବ୍ୟବସ୍ଥା ସର୍ବତ୍ର ବହୁବିଧ ନିୟମ, ନିର୍ଦ୍ଦେଶ ପ୍ରଣୟନ କଲା । ଏସବୁ ମଧ୍ୟରେ ଥିଲା ସୈନ୍ୟମାନଙ୍କ ପାଇଁ ସାମରିକ ନିୟମ ଏବଂ ଯାଜକମାନଙ୍କ ପାଇଁ ଧର୍ମ ନିର୍ଦ୍ଦେଶ । ସୈନ୍ୟବାହିନୀରେ କାର୍ଯ୍ୟ କରିବା ପାଇଁ ସୈନ୍ୟମାନଙ୍କ ସାରଣି (୧୭୨୨) ନିୟମମାନ ପ୍ରଣୟନ କରିଥିଲା (୧୫ ବର୍ଷରୁ ଊର୍ଦ୍ଧ୍ୱ ସମସ୍ତ ଦ୍ୱରିଆନେଙ୍କ ପାଇଁ ବାଧ୍ୟତାମୂଳକ) ଏବଂ ସାମରିକ କାର୍ଯ୍ୟ ସହିତ ନାଗରିକ ସର୍ଭିସ୍‌କୁ ସମାନ ମର୍ଯ୍ୟାଦା ପ୍ରଦାନ କରାଗଲା (ଇତିପୂର୍ବରୁ କେବଳ ଦ୍ୱରିଆନମାନେ ସାମରିକ କାର୍ଯ୍ୟ ପାଇଁ ଉପଯୁକ୍ତ ବିବେଚିତ ହେଉଥିଲେ); ଗୁରୁତ୍ୱ ଦୃଷ୍ଟିରୁ ସାଧାରଣ ସୈନିକମାନେ କ୍ରମଶଃ ସମ୍ଭ୍ରାନ୍ତଙ୍କ ସ୍ଥାନ ଗ୍ରହଣ କରିଥିଲେ । ପିଟରଙ୍କ ଅନୁଗାମୀମାନଙ୍କ ମଧ୍ୟରେ ଥିଲେ ସମ୍ଭ୍ରାନ୍ତ ସଂପ୍ରଦାୟର ସଦସ୍ୟବୃନ୍ଦ ଏବଂ ନୀଚ ଶ୍ରେଣୀର ପ୍ରତିଭାବାନ ଲୋକେ, ଯେଉଁମାନେ କି ସଂପଦ, ପଦବି ଏବଂ ରାଷ୍ଟ୍ରରେ ସମ୍ମାନଜନକ ଅବସ୍ଥାନ ଗ୍ରହଣ କରିଥିଲେ (ମେନ୍‌ଶିକୋଭ୍, ଶାଫିରୋଭ୍, ୟାଗୁଝିନ୍‌ସ୍କି ଏବଂ ଅନ୍ୟମାନେ) ।

କୃଷକ ତଥା ସହରର ବାସିନ୍ଦାମାନଙ୍କ ମଧ୍ୟରୁ ପ୍ରତିବର୍ଷ ସୈନ୍ୟମାନଙ୍କୁ ବଛାଯାଉଥିଲା ଏବଂ ସେହିମାନଙ୍କୁ ନେଇ ଗଠିତ ହୋଇଥିଲା ନିୟମିତ ଜାତୀୟ ସେନାବାହିନୀ । ସେନାବାହିନୀର ଶ୍ରେଷ୍ଠ ସେନାଦଳଗୁଡ଼ିକ ହେଲେ ରକ୍ଷୀ ବାହିନୀ ଏବଂ ସାଧାରଣ ସୈନିକ ଭାବେ ପ୍ରଥମେ କାର୍ଯ୍ୟ କରି ଦ୍ୱରିଆନେମାନଙ୍କୁ ଅଫିସର ସ୍ତରକୁ ପଦୋନ୍ନତି କରିବାକୁ ନିଷିଦ୍ଧକରଣର ଫଳରେ ସେନାପତିମାନଙ୍କର ଦକ୍ଷତା ବୃଦ୍ଧି ପାଇଥିଲା । ଏବେ ଅନ୍ୟାନ୍ୟ ସାମାଜିକ ସ୍ତରରୁ ଲୋକେ ସେମାନଙ୍କର ଉଲ୍ଲେଖନୀୟ କାର୍ଯ୍ୟ ପାଇଁ ପଦୋନ୍ନତି ଲାଭ କଲେ । ଦ୍ୱରିଆନେମାନଙ୍କୁ ବାଧ୍ୟତାମୂଳକ ଭାବେ ଶିକ୍ଷା ଲାଭ କରିବାକୁ ପଡ଼ିଲା; ସ୍ୱଳ୍ପ ବୟସମାନଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ପାଇଁ କେବଳ ସେହିମାନଙ୍କୁ ବିବାହ ପାଇଁ ଅନୁମତି ଦିଆଗଲା, ଯେଉଁମାନେ ଗଣିତ ଆଉ ଜ୍ୟାମିତିରେ ଜ୍ଞାନ ଥିବାର ପ୍ରମାଣପତ୍ର ପ୍ରଦାନ କଲେ ।

ଶିକ୍ଷାର ସ୍ତରକୁ ଉନ୍ନତ କରିବା ପାଇଁ ସରକାର ପକ୍ଷରୁ ଯଥେଷ୍ଟ ଦୃଷ୍ଟି ଦିଆଗଲା । ନୂଆ ଏକ ଧର୍ମ ନିରପେକ୍ଷ ଟାଇପ୍ ମୁଦ୍ରଣ କ୍ଷେତ୍ରରେ ପ୍ରବର୍ତ୍ତନ କରିବା ସଙ୍ଗେ ସଙ୍ଗେ ମୁଦ୍ରଣାଳୟମାନ ପ୍ରତିଷ୍ଠା କରାଗଲା (କେବଳ ଗିର୍ଜାର ପୁସ୍ତକାବଳୀ ମୁଦ୍ରିତ ହେଲା ପୁରୁଣା ଟାଇପ୍ ସାହାଯ୍ୟରେ) । ଏକ ଧର୍ମ ନିରପେକ୍ଷ ସ୍କୁଲ ବ୍ୟବସ୍ଥା, ଭେଷଜବିଦ୍ୟା, ଇଂଜିନିୟରିଂ ଏବଂ ନୌବିଦ୍ୟା କ୍ଷେତ୍ରରେ ବିଶେଷ ଧରଣର ସ୍କୁଲମାନ ପ୍ରତିଷ୍ଠିତ ହେଲା । ଏସବୁ ମଧ୍ୟରୁ କେତେକକୁ ବାସ୍ତବରେ ଉଚ୍ଚତର ଶିକ୍ଷାନୁଷ୍ଠାନରେ ପରିଣତ କରି ଦିଆଗଲା । ଯୁବକମାନଙ୍କୁ ପ୍ରେରଣ କରାଗଲା ଶିକ୍ଷା ଲାଭ ପାଇଁ ବିଦେଶକୁ । ୧୭୨୪ ଖ୍ରୀଷ୍ଟାବ୍ଦରେ ପ୍ରଥମ ପିଟର ବିଜ୍ଞାନ ଆକାଡେମିର ଏକ ସନନ୍ଦକୁ ଅନୁମୋଦନ ଦାନ କରିଥିଲେ । ଏହି ଆକାଡେମିକୁ ବିଦେଶରୁ ପଣ୍ଡିତମାନଙ୍କୁ ଆମନ୍ତ୍ରଣ କରାଗଲା । ବିଦେଶର ଏହି ଧରଣର ଆକାଡେମି ଠାରୁ ଏହାର ପାର୍ଥକ୍ୟ ହେଲା, ଏହାର ଧର୍ମତତ୍ତ୍ୱ ସହିତ କିଛି ସଂପର୍କ ନଥିଲା ଏବଂ ଏହାର ଲକ୍ଷ୍ୟ ହେଲା ବିଜ୍ଞାନସମ୍ମତ ଜ୍ଞାନର ପରିପ୍ରସାର କରିବା ।

ରାଷ୍ଟ୍ର ପକ୍ଷରୁ ବ୍ୟାପକ ଭାବେ ଶିଳ୍ପ (ରାଷ୍ଟ୍ରୀୟ ପାଣ୍ଠିରୁ ଶିଳ୍ପ କ୍ଷେତ୍ରରେ ଶତକଡ଼ା ୪୩ ଭାଗ ଉଦ୍ୟୋଗ ନିର୍ମିତ ହୋଇଥିଲା) ଏବଂ ବାଣିଜ୍ୟକୁ ପୃଷ୍ଠପୋଷକତା ଯୋଗାଇ ଦିଆଗଲା ଏବଂ ଏଥି ସାଥେ ସାଥେ ବିଭିନ୍ନ ଧରଣର ନିୟମବଦ୍ଧତା ଦ୍ୱାରା ସେସବୁକୁ ମଧ୍ୟ ସୀମିତ କରି ଦିଆଯାଇଥିଲା । ଶିଳ୍ପ କ୍ଷେତ୍ରରେ ବିଶେଷ ସାଫଲ୍ୟ ଅର୍ଜିତ ହୋଇଥିଲା ଜାହାଜ ନିର୍ମାଣ, ବସ୍ତ୍ର, ଲୌହ ଏବଂ ଇସ୍‌ପାତ ଶିଳ୍ପ କ୍ଷେତ୍ରରେ । ୟୁରାଲ ଅଞ୍ଚଳ ପୃଥିବୀର ଧାତୁ ଶିଳ୍ପର ଅନ୍ୟତମ କେନ୍ଦ୍ର ରୂପେ ଗଢ଼ି ଉଠିଲା । ବାଣିଜ୍ୟିକ ଏବଂ ଶିଳ୍ପୋଦ୍ୟୋଗୀ କଂପାନିମାନ ପ୍ରତିଷ୍ଠିତ ହେଲେ । ରାଷ୍ଟ୍ର ପକ୍ଷରୁ ରକ୍ଷାମୂଳକ ନୀତିରାଜି ଶୁଳ୍କ ସନନ୍ଦରେ ପ୍ରତିଫଳିତ ହୋଇଥିଲା ।

ଏକଛତ୍ର ରାଜତନ୍ତ୍ରର ଲକ୍ଷ୍ୟ ରୂପେ "ସାର୍ବିକ ବିକାଶକୁ" ଘୋଷଣା କରାଗଲା । ଦେଶର ସମସ୍ତ କ୍ଷେତ୍ରର ପୁଙ୍ଖାନୁପୁଙ୍ଖ ନିୟମକାନୁନ୍‌କୁ ଏହି ଲକ୍ଷ୍ୟ ହାସଲ ଦିଗରେ ମୁଖ୍ୟ ମାଧ୍ୟମ ରୂପେ ବିଚାର କରାହେଲା । ଆଇନଗତ ଭାବେ ସ୍ୱେଚ୍ଛାଚାରୀ ସମ୍ରାଟ ହେଲେ ରାଷ୍ଟ୍ରର ମୁଖ୍ୟ ଏବଂ ସେ "ପୃଥିବୀର କୌଣସି ବ୍ୟକ୍ତି ପ୍ରତି ଦାୟୀ ହେଲେ ନାହିଁ", କେବଳ "ଈଶ୍ୱରଙ୍କ ଇଚ୍ଛାକୁ ସର୍ବୋଚ୍ଚ ଶକ୍ତି କେବଳ ଭୟରେ ନୁହେଁ, ସାଧୁତା ହେତୁ ସେ ମାନିବେ" ।

ଏସବୁ ସତ୍ତ୍ୱେ, ପ୍ରଥମ ପିଟରଙ୍କର ଏହି ରୂପାନ୍ତରଣସମୂହ ଜନସାଧାରଣଙ୍କର ମୁଖ୍ୟ ଅଂଶଟି ଉପରେ ଏକ ଅଧିକା (ଜନସଂଖ୍ୟାର ଶତକଡ଼ା ୯୦ ଭାଗ ଥିଲେ କୃଷକ) ବୋଝରେ ପରିଣତ ହୋଇଥିଲା । ଏହିସବୁ ଲୋକଙ୍କୁ ବାଧ୍ୟତାମୂଳକ ଭାବେ ସେନାବାହିନୀରେ ନିଯୁକ୍ତ କରାଯାଉଥିଲା, କଳକାରଖାନାରେ କାମ କରିବାକୁ ବାଧ୍ୟ କରାଯାଉଥିଲା, ନିର୍ମାଣ କାର୍ଯ୍ୟରେ ବ୍ୟାପକ ଆକାରରେ ଖଟାଯାଉଥିଲା (ବିଶେଷ କରି ଯେଉଁ ଜଳାଭୂଇଁ ଉପରେ ରାଜଧାନୀ ସେଣ୍ଟ୍ ପିଟରସ୍‌ବୁର୍ଗ ନିର୍ମିତ ହୋଇଥିଲା) । ସେ ସୈନ୍ୟମାନଙ୍କୁ ଶିବିରରେ ଲଗେଇବା ଏବଂ ସେନା ବିଭାଗରେ କର ନିଯୁକ୍ତି କରିବା,

ଅଫିସରମାନଙ୍କ ପରିଦର୍ଶନ, ଉତ୍କୋଚ ନେବା ଏବଂ ରାଷ୍ଟ୍ର ପାଣ୍ଠିର ଅପହରଣ ଆଦି ଦ୍ୱାରା (ପିଟରଙ୍କ ଦ୍ୱାରା କଠୋର ଦଣ୍ଡାଦେଶ ସତ୍ତ୍ୱେ ଜନସାଧାରଣ ତଥା ରାଷ୍ଟ୍ର ପକ୍ଷରେ ଏହା ଏକ କ୍ରମବର୍ଦ୍ଧମାନ ଅଶୁଭ ଶକ୍ତିରେ ପରିଣତ ହୋଇଥିଲା) ଲୋକେ ଅତିଷ୍ଠ ହୋଇ ପଡ଼ିଥିଲେ । ନାନା ଧରଣର ଟିକସର ବୋଝ—ଦାଢ଼ି ଉପରେ ଟିକସ, ଗାଧୁଆଘର ଏବଂ ଓକ କାଠରେ ତିଆରି ଶବାଧାର ଉପରେ ଟିକସ ଏବଂ ଅଣରୁଷୀୟ ଜାତିମାନଙ୍କ ଦ୍ୱାରା ଜାତୀୟ ପରମ୍ପରା ପାଳନ ଉପରେ ଟିକସ—ଲୋକଙ୍କ ପକ୍ଷରେ ଅସହ୍ୟ ହୋଇ ପଡ଼ିଥିଲା ।

ସ୍ଥାୟୀ ମାଲିକାନା ନିମିତ୍ତ ନିର୍ଭରଶୀଳ ଜନଗୋଷ୍ଠୀ ସମେତ ଭୂମିଦାନ ବୃଦ୍ଧି ପାଇବାକୁ ଲାଗିଲା; କୃଷକମାନଙ୍କୁ ମଧ୍ୟ କାରଖାନା ସହିତ ଯୁକ୍ତ କରି ଦିଆଗଲା । ୧୭୨୪ ମସିହା ବେଳକୁ ରାଷ୍ଟ୍ର କୋଷର ଅବସ୍ଥା ଖୁବ୍ ଖରାପ ହୋଇ ପଡ଼ିଥିଲା: ବ୍ୟକ୍ତିଗତ ଟିକସର ପ୍ରାୟ ଶତକଡ଼ା ୨୦ ଭାଗ ଆଦାୟ ହୋଇ ପାରି ନଥିଲା । କୃଷକ ଟିକସଦାତାମାନେ ଧ୍ୱଂସ ପାଇବା ଦ୍ୱାରା ଜମିଦାରମାନେ ମଧ୍ୟ କ୍ଷତିଗ୍ରସ୍ତ ହୋଇଥିଲେ । ଦେଶ ପକ୍ଷରେ ଏପରି ଅର୍ଥନୈତିକ ଏବଂ ରାଜନୈତିକ ବୋଝ ବହନ କରିବା ଆଉ ବେଶି ଦିନ ସମ୍ଭବ ହେଲା ନାହିଁ ।

କୃଷକ ଏବଂ ଶ୍ରମଜୀବୀ ଜନସାଧାରଣ ସେମାନଙ୍କ କର୍ତ୍ତବ୍ୟ ସଂପନ୍ନ କରିବାକୁ ଅସ୍ୱୀକାର କଲେ ଏବଂ ଦେଶର ଉପାନ୍ତ ଅଞ୍ଚଳକୁ ପଳାଇଗଲେ, ପୁରାତନ ଧର୍ମବିଶ୍ୱାସୀମାନଙ୍କ ଜନବସତିରେ ଆଶ୍ରୟ ନେଲେ । ଖ୍ରୀଷ୍ଟଙ୍କ ବିରୋଧୀ ଏକ ଜାର୍‌ଙ୍କ ବିରୁଦ୍ଧରେ ଅଶୁଭଜନକ ଗୁଜବମାନ ଲୋକମାନଙ୍କ ମଧ୍ୟରେ ଖେଳିବାକୁ ଲାଗିଲା । ପିଟରଙ୍କ କାର୍ଯ୍ୟକଳାପସମୂହ ମଧ୍ୟ ଶାସକ ଶ୍ରେଣୀ ମଧ୍ୟରୁ କେତେକ ପ୍ରତିକ୍ରିୟା ଚକ୍ରଙ୍କ ମଧ୍ୟରେ ଅସନ୍ତୋଷ ସୃଷ୍ଟି କରିଥିଲା—ସେମାନଙ୍କ ମଧ୍ୟରେ ଥିଲେ ବୟାରମାନେ, ଯେଉଁମାନେ ରାଜପରିଷଦରେ ସେମାନଙ୍କ ପ୍ରଭାବ ହରେଇଥିଲେ ଏବଂ ଯାଜକ ସଂପ୍ରଦାୟ, ଯେଉଁମାନେ କି ପାଶ୍ଚାତ୍ୟ ପ୍ରଭାବକୁ ଭୟ କରୁଥିଲେ । ଏହିସବୁ ସଂପ୍ରଦାୟ ଜାର୍‌ଙ୍କ ପ୍ରଥମ ସ୍ତ୍ରୀଙ୍କ ପୁତ୍ର, ଦୁର୍ବଳମନା ଜାରେଭିଚ୍ ଆଲେକ୍‌ସିଙ୍କ ଉପରେ ଭରସା ରଖିଥିଲେ । ଆଲେକ୍‌ସି ଏକ ଷଡ଼ଯନ୍ତ୍ରରେ ଲିପ୍ତ ହୋଇ ଶେଷକୁ ବନ୍ଦୀ ହେଲେ (୧୭୧୮) ଏବଂ ଅତ୍ୟାଗ୍ରରିତ ହୋଇ ପ୍ରାଣ ହରେଇଲେ । ପିଟର ତାଙ୍କ ଉଦ୍ଦେଶ୍ୟ ସାଧନ ପାଇଁ ନିର୍ଦ୍ଦୟ ଥିଲେ ଏବଂ କୌଣସି କିଛି ତାଙ୍କୁ ଏ ଦିଗରେ ବାଧା ଦେଇ ପାରୁ ନଥିଲା ।

ପ୍ରଥମ ପିଟରଙ୍କ ରାଜତ୍ୱକାଳରେ ରାଷ୍ଟ୍ରର ବୈଦେଶିକ ନୀତି ଓ ଆଭ୍ୟନ୍ତରୀଣ ନୀତିରାଜି ମଧ୍ୟରେ ନିବିଡ଼ ସଂପର୍କ ପରିଲକ୍ଷିତ ହୋଇଥାଏ । ଅର୍ଥନୈତିକ ବିକାଶର କ୍ରମବର୍ଦ୍ଧମାନ ପ୍ରବଣତାଯୁକ୍ତ ବିଶାଳ ରୁଷ୍ ଦେଶ ସେତେବେଳେ ପ୍ରଧାନ ସମୁଦ୍ର ତଥା ତତ୍କାଳୀନ ବହିର୍ବାଣିଜ୍ୟ ପଥ ଠାରୁ ବିଛିନ୍ନ ହୋଇ ରହିଥିଲା । ରୁଷିଆର ଉତ୍ତରସ୍ଥ

ସମୁଦ୍ରଗୁଡ଼ିକ ନୌଚାଳନ ପକ୍ଷରେ ଅତ୍ୟଧିକ ଅସୁବିଧାଜନକ ଥିବାରୁ ଏବଂ ୟୁରୋପର ଅନ୍ୟାନ୍ୟ ଦେଶର ବନ୍ଦରଗୁଡ଼ିକ ଠାରୁ ରୁଷିଆର ଉତ୍ତରର ବନ୍ଦରଗୁଡ଼ିକର ଦୂରତା ଅନେକ ବେଶି ହୋଇଥିବାରୁ ନିୟମିତ ବାଣିଜ୍ୟିକ ବିନିମୟ ପାଇଁ ସୁବିଧାରାଜି ସୀମିତ ଥିଲା । ସମୁଦ୍ରକୁ ଯିବା ପାଇଁ ଏକ ପଥ ଦେଶ ପକ୍ଷରେ ଅତ୍ୟନ୍ତ ଜରୁରୀ ହୋଇ ପଡ଼ିଥିଲା । ଏହା ହିଁ ଥିଲା ପିଟରଙ୍କର ବହୁ ଦିନର ସ୍ୱପ୍ନ : ୧୬୯୬ ବେଳକୁ ସେ ଯୁଦ୍ଧ ଜାହାଜ ନିର୍ମାଣ କରିବାକୁ ଆରମ୍ଭ କରି ଦେଇଥିଲେ ଏବଂ ରୁଷିଆର ନୌସେନା ପାଇଁ ମୂଳ ଭିତ୍ତି ସ୍ଥାପନ କରିଥିଲେ ।

ଦକ୍ଷିଣରେ ଅଧିକ ସକ୍ରିୟ ନୀତି ଦ୍ୱାରା ତାଙ୍କର କାର୍ଯ୍ୟକଳାପ ଆରମ୍ଭ କରି (ତୁର୍କୀ ବିରୁଦ୍ଧରେ ପରିଚାଳିତ ଆଜଭ୍ ଅଭିଯାନ) ପିଟର ଅନୁଭବ କଲେ ଯେ, ତୁର୍କୀ ବିରୁଦ୍ଧରେ ୟୁରୋପୀୟ ଦେଶମାନଙ୍କୁ ନେଇ ମେଣ୍ଟ ଗଠନ କରିବା ଏକେବାରେ ସମ୍ଭବ ନୁହେଁ ଏବଂ ଅନ୍ୟ ଦିଗରେ ଦକ୍ଷିଣ ସମୁଦ୍ରକୁ ଏକ ପ୍ରବେଶ ପଥ ପାଇଁ ରୁଷିଆ ପକ୍ଷରେ ଲଢ଼େଇ କରିଯିବା ମଧ୍ୟ କଷ୍ଟକର । କିନ୍ତୁ ବଲ୍‌ଟିକ୍ ସମୁଦ୍ରକୁ ଏକ ପ୍ରବେଶ ପଥ ପାଇଁ ଲଢ଼େଇ କରିବାଟା ବରଂ ଅନୁକୂଳ । ସ୍ପେନୀୟ ଉତ୍ତରାଧିକାର ଯୁଦ୍ଧର ପୂର୍ବାହ୍ନରେ ବଲ୍‌ଟିକ୍ ଯୁଦ୍ଧରେ ୟୁରୋପର ମହାଶକ୍ତିମାନଙ୍କ ପକ୍ଷରୁ ହସ୍ତକ୍ଷେପ କରିବାର ସମ୍ଭାବନା ଖୁବ୍ କମ୍ ଥିଲା । ଏହି ଯୁଦ୍ଧର ପ୍ରାରମ୍ଭ ତ୍ୱରାନ୍ୱିତ ହୋଇଥିଲା ସୁଇଡେନ୍‌ର ତରୁଣ ରାଜା ୧୨ଶ ଚାର୍ଲସ୍‌ଙ୍କ ଶତ୍ରୁତା ହେତୁ । ଡେନ୍‌ମାର୍କ ଏବଂ ପୋଲାଣ୍ଡ ରୁଷିଆର ମିତ୍ର ହୋଇଗଲେ ।

ଏହା ସତ୍ତ୍ୱେ ଯୁଦ୍ଧ ବିଫଳତାର ସହିତ ଆରମ୍ଭ ହୋଇଥିଲା । ପିଟରଙ୍କ ମିତ୍ରମାନେ ମୂଳପୋଛ ହୋଇଗଲେ ଏବଂ ସୁଇଡେନ୍ ଭଳି ଏକ ପ୍ରବଳ ଶତ୍ରୁ ବିରୁଦ୍ଧରେ ଲଢ଼ିବା ପାଇଁ ଏକାନ୍ତ ଅପ୍ରସ୍ତୁତ ରୁଷୀୟ ସେନାବାହିନୀ ୧୭୦୦ ଖ୍ରୀଷ୍ଟାବ୍ଦରେ ନାର୍‌ଭା ଠାରେ ପରାଜୟ ବରଣ କଲେ । ସେନାବାହିନୀକୁ ପୁନର୍ଗଠିତ ଏବଂ ପୁନର୍ସଜ୍ଜିତ କରିବା ନିମିତ୍ତ ଦକ୍ଷ ଅଫିସରମାନଙ୍କୁ ତାଲିମ୍ ଦେବା ନିମିତ୍ତ ସୁଦୃଢ଼ ପଦକ୍ଷେପମାନ ଗ୍ରହଣ କରାଗଲା । ଏହାର ଦୁଇ ବର୍ଷ ପରେ ପିଟରଙ୍କ ସୈନ୍ୟମାନେ ସେମାନଙ୍କ ପ୍ରଥମ ବିଜୟ ହାସଲ କଲେ । ସେଣ୍ଟ୍ ପିଟର୍‌ସବୁର୍ଗ ୧୭୦୩ରେ ପ୍ରତିଷ୍ଠିତ ହୋଇ ଦେଶର ରାଜଧାନୀରେ ପରିଣତ ହେଲା । ରୁଷିଆର ଜାହାଜମାଳା ବଲ୍‌ଟିକ୍ ସମୁଦ୍ର ଉପରେ ଯାତାୟତ କଲେ ଏବଂ ରୁଷୀୟ ସେନାମାନେ କ୍ରମଶଃ ପୂର୍ବବର୍ତ୍ତୀ ବଲ୍‌ଟିକ୍ ଅଞ୍ଚଳ ଆଡ଼କୁ ଆଗେଇଲେ । ରୁଷୀୟ ଅଞ୍ଚଳରେ ଏକ ଆସ୍ଥାନ ଲାଭ କରିବା ପାଇଁ ସୁଇଡେନ୍ ସେନାବାହିନୀର ଉଦ୍ୟମ ବିଫଳତାରେ ପର୍ଯ୍ୟବସିତ ହେଲା ; ଗଣ ଗେରିଲା ଯୁଦ୍ଧ ଆରମ୍ଭ ହୋଇଗଲା । ୟୁକ୍ରେନ୍‌ର ନେତା ମାଜେପା ରୁଷିଆ ସହିତ ବିଶ୍ୱାସଘାତକତା କରି ଚାର୍ଲସଙ୍କ ସହ ଯୋଗ ଦେଲା ବେଳେ ୟୁକ୍ରାଇନ୍‌ର ଲୋକେ ଏହି ବିଶ୍ୱାସଘାତକ ଏବଂ ତାଙ୍କ ଅନୁଗାମୀମାନଙ୍କର ବିଚ୍ଛିନ୍ନତାବାଦୀ ପ୍ରବଣତାକୁ ସମର୍ଥନ କରି ନଥିଲେ । ୧୭୦୯, ଜୁନ୍ ୨୭ ତାରିଖରେ ଚାର୍ଲସ୍‌ଙ୍କ ସେନାବାହିନୀ ପିଟରଙ୍କ ସେନାବାହିନୀ ଦ୍ୱାରା ପଲ୍‌ଟାଭା ଠାରେ ସଂପୂର୍ଣ୍ଣ

ରୂପେ ପରାଭୂତ ହୋଇଥିଲେ । ପଲ୍‌ତାଭା ଯୁଦ୍ଧ ପୂର୍ବ ଦିଗକୁ ସୁଇଡେନ୍‌ର ସଂପ୍ରସାରଣ ଉପରେ ଏକ ଚୂଡ଼ାନ୍ତ ଆଘାତ ହାଣିଥିଲା ଏବଂ ଏକ ସାମୁଦ୍ରିକ ଶକ୍ତି ହିସାବରେ ରୁଷିଆର ଭବିଷ୍ୟତକୁ ପୂର୍ବନିର୍ଦ୍ଧାରିତ କରି ଦେଲା । ସୁଲ୍‌ତାନକୁ ପଳାୟନ କରି ୧୨ଶ ଚାର୍ଲସ୍ ରୁଷିଆ ବିରୁଦ୍ଧରେ ତୁର୍କୀକୁ ଲଗାଇ ଦେବାରେ ସଫଳ ହୋଇଥିଲେ । କିନ୍ତୁ ବଲ୍‌ଟିକ୍ ଅଞ୍ଚଳରେ ରୁଷିଆର ଅବସ୍ଥାନକୁ ଅକ୍ଷୁଣ୍ଣ ରଖିବା ନିମିତ୍ତ ପିଟର ଥିଲେ ଏକାନ୍ତ ନଛୋଡ଼ବନ୍ଧା । ତୁର୍କୀ ବିରୁଦ୍ଧରେ ରୁଷିଆର ଯୁଦ୍ଧର ଅସଫଳତାକୁ ଲକ୍ଷ୍ୟ କରି (୧୭୧୧ ମସିହାରେ ପିଟରଙ୍କ ୩୮,୦୦୦ ସୈନ୍ୟ ବିଶିଷ୍ଟ ବାହିନୀକୁ ତୁର୍କୀର ପ୍ରାୟ ୨୦୦,୦୦୦ ସୈନ୍ୟ ବିଶିଷ୍ଟ ବାହିନୀ ପ୍ରୁଥ୍ ନଦୀ ନିକଟରେ ଘେରଉ କରି ନେଇଥିଲେ) ପିଟର ତାଙ୍କର ଆଜଭ୍ ସାଗରର ପୂର୍ବବର୍ତ୍ତୀ ଅର୍ଜିତ ସାଫଲ୍ୟକୁ ପରିତ୍ୟାଗ କରି ଶାନ୍ତି ଚୁକ୍ତି ପାଇଁ ସମ୍ମତ ହୋଇଥିଲେ । ୧୭୧୪ ଏବଂ ୧୭୨୦ରେ ନୂତନ ରୁଷ୍ ନୌବାହିନୀ ସୁଇଡେନ୍‌ର ନୌବହରକୁ ପରାସ୍ତ କରି ଦେଲେ । ୧୭୨୧ ଖ୍ରୀଷ୍ଟାବ୍ଦରେ ଉତ୍ତରବର୍ତ୍ତୀ ଯୁଦ୍ଧର ଅବସାନ ଘଟିଥିଲା ନିସ୍ତାଦ୍‌ତ ଚୁକ୍ତି ସ୍ୱାକ୍ଷର ଦ୍ୱାରା । ଏହା ଦ୍ୱାରା ରୁଷିଆ ଲାଭ କଲା ଏସ୍ତୋନିଆ, ଲିଭୋନିଆ ଏବଂ କାରେଲିଆନ ଇସ୍‌ଥମୁସ୍‌କୁ । ପାରସ୍ୟ ବିରୁଦ୍ଧରେ ପରବର୍ତ୍ତୀ ଯୁଦ୍ଧ ଫଳରେ (୧୭୨୨-୧୭୨୩) ଟ୍ରାନ୍‌ସ କକେସିଆର ଜନସାଧାରଣଙ୍କର ସମର୍ଥନରେ ରୁଷିଆ କାସ୍ପିଆନ ସାଗରର ପଶ୍ଚିମ (ବାକୁ ସମେତ) ଏବଂ ଦକ୍ଷିଣବର୍ତ୍ତୀ ଉପକୂଳ ଅଞ୍ଚଳଗୁଡ଼ିକୁ ଲାଭ କରିଥିଲା । ଉତ୍ତରାଞ୍ଚଳୀୟ ଯୁଦ୍ଧର ଅବସାନ ପରେ ପ୍ରଥମ ପିଟରଙ୍କୁ ୧୭୨୧ ମସିହାରେ ସମ୍ରାଟ ଉପାଧିରେ ଭୂଷିତ କରାଯାଇଥିଲା ।

ପ୍ରଥମ ପିଟରଙ୍କ ଦ୍ୱାରା କାର୍ଯ୍ୟକାରୀ ହୋଇଥିବା ସଂସ୍କାରସମୂହର ଲକ୍ଷ୍ୟ କେବଳ ତତ୍‌କାଳୀନ ନୀତିରାଜିର ପ୍ରତିବନ୍ଧକସମୂହକୁ ଦୂର କରିବା ନଥିଲା, ସେସବୁର ଉଦ୍ଦେଶ୍ୟ ଥିଲା ସୁଦୂର ପ୍ରସାରୀ ଏବଂ ପରବର୍ତ୍ତୀ ରାଜନୈତିକ କ୍ରିୟାକଳାପର କର୍ମସୂଚୀରେ ସେସବୁ ପରିଣତ ହୋଇଥିଲା । ପ୍ରଥମ ପିଟରଙ୍କ ଦ୍ୱାରା ପ୍ରବର୍ତ୍ତିତ ସାମାଜିକ ପରିବର୍ତ୍ତନସମୂହର ଲକ୍ଷ୍ୟ ଥିଲା ରୁଷିଆର ଅର୍ଥନୈତିକ ଅନଗ୍ରସରତାକୁ ଅତିକ୍ରମ କରିବା ଏବଂ ରୁଷିଆର ସମ୍ଭ୍ରାନ୍ତ ଶ୍ରେଣୀ, ବଣିକମାନଙ୍କର ଅର୍ଥନୈତିକ ତଥା ରାଜନୈତିକ ଅବସ୍ଥାନକୁ ଏବଂ ସ୍ୱୈରତାନ୍ତ୍ରିକ ରାଷ୍ଟ୍ରର ବୈଦେଶିକ ଏବଂ ଆଭ୍ୟନ୍ତରୀଣ ଅବସ୍ଥାନକୁ ସୁଦୃଢ଼ କରିବା ।

ଏହିସବୁ ପରିବର୍ତ୍ତନ ଥିଲା ଅତ୍ୟଧିକ ଐତିହାସିକ ଗୁରୁତ୍ୱପୂର୍ଣ୍ଣ । ଅର୍ଥନୈତିକ ତଥା ସାମରିକ ଦୃଷ୍ଟିରୁ ରୁଷିଆ ୟୁରୋପର ଶକ୍ତିଶାଳୀ ରାଷ୍ଟ୍ରମାନଙ୍କ ମଧ୍ୟରୁ ଅନ୍ୟତମ ରାଷ୍ଟ୍ରରେ ପରିଣତ ହୋଇଥିଲା । ଏହାର ବିଶାଳାକାରର ଶିଳ୍ପସମାହାର, ବିପୁଳ ଜାତୀୟ ବଜାର ଏବଂ ଦ୍ରୁତ ବିକାଶ ଲାଭ କରୁଥିବା ଆନ୍ତର୍ଜାତିକ ବାଣିଜ୍ୟିକ ସଂପର୍କ ୟୁରୋପରେ ଏହିସବୁ ଦେଶମାନଙ୍କର ମଧ୍ୟରେ ଏହାକୁ ଏକ ବିଶେଷ ସ୍ଥାନରେ ପ୍ରତିଷ୍ଠା କରିଥିଲା । ଭବିଷ୍ୟତରେ ପୁଞ୍ଜିବାଦର ବିକାଶ ପାଇଁ ଏସବୁ ସୃଷ୍ଟି କରିଥିଲା ପୂର୍ବାବସ୍ଥାସମୂହ । କିନ୍ତୁ ପିଟରଙ୍କର ଏହିସବୁ ସଂସ୍କାର ଦେଶରେ ସାମାଜିକ ସଂପର୍କସମୂହରେ, ଏହାର ଭୂମିଦାସଯୁକ୍ତ ସାମାଜିକ ଅବସ୍ଥାରେ ପରିବର୍ତ୍ତନ ଆଣି ନଥିଲା ।

# ୮ମ ପରିଚ୍ଛେଦ

## ପ୍ରାସାଦ ଷଡ଼ଯନ୍ତ୍ରର ଯୁଗ — ୧୮ଶ ଶତାବ୍ଦୀର ମଧ୍ୟ ଏବଂ ଦ୍ୱିତୀୟାର୍ଦ୍ଧରେ ରୁଷିଆ

ପିଟରଙ୍କ ମୃତ୍ୟୁ ପରେ (୧୭୨୫) ପ୍ରାସାଦ ଷଡ଼ଯନ୍ତ୍ର ଯୁଗ ନାମରେ କଥିତ କାଳଟି ଆରମ୍ଭ ହୋଇଥିଲା । ଶାସକ ଶ୍ରେଣୀ, ସମ୍ଭ୍ରାନ୍ତମାନଙ୍କର ବିଭିନ୍ନ ଗୋଷ୍ଠୀ ମଧ୍ୟରେ କ୍ଷମତା ପାଇଁ ଆରମ୍ଭ ହୋଇ ଯାଇଥିଲା ତୀବ୍ର ଲଢ଼େଇ । ୧୭୬୨ରେ ଦ୍ୱିତୀୟ କ୍ୟାଥେରିନ୍ ସିଂହାସନ ଆରୋହଣ କରିବାର ସମୟର ପୂର୍ବବର୍ତ୍ତୀ ୩୭ ବର୍ଷ ମଧ୍ୟରେ ରୁଷିଆର ସିଂହାସନରେ ସାତଜଣ ଶାସକ ଜଣକ ପରେ ଜଣେ ବସିଥିଲେ ।

ଲକ୍ଷ୍ୟ କରିବାର କଥା ଯେ, ଏହିସବୁ ଅଗ୍ନନକ ପ୍ରାସାଦ କ୍ଷମତା ଦଖଲ ଫଳରେ ଏଭଳିସବୁ ଲୋକ ସିଂହାସନରେ ବସିଥିଲେ, ଯେଉଁମାନେ କି ରାଷ୍ଟ୍ର ଶାସନ କରିବାକୁ ଅନୁପଯୁକ୍ତ ଥିଲେ । ସେମାନଙ୍କ ମଧ୍ୟରେ ଥିଲେ ପିଟରଙ୍କ ଦ୍ୱିତୀୟ ସ୍ତ୍ରୀ, ଜନୈକ ଧର୍ମ ଯାଜକଙ୍କର ପୂର୍ବତନ ଭୃତ୍ୟ, ପ୍ରଥମ କ୍ୟାଥେରିନ୍ (୧୭୨୫-୧୭୨୭), ପିଟରଙ୍କ ବାରବର୍ଷୀୟ ପ୍ରପୌତ୍ର ଦ୍ୱିତୀୟ ପିଟର (୧୭୨୭-୧୭୩୦), ପିଟରଙ୍କ ଭ୍ରାତୁଷ୍ପୁତ୍ରୀ, ବଲ୍ଟିକ୍ ଅଞ୍ଚଳର ଜନୈକା ଡଚ୍ ମହିଳା ଆନ୍ନା ଇଭାନୋଭ୍ନା (୧୭୩୦-୧୭୪୦) । ତାଙ୍କ ଭ୍ରାତୁଷ୍ପୁତ୍ରୀଙ୍କର ତିନିମାସୀୟ ପୁତ୍ର ଷଷ୍ଠ ଇଭାନ୍ ଏବଂ ପରେ ଭ୍ରାତୁଷ୍ପୁତ୍ରୀ ଆନ୍ନା ଲିଓପୋଲଦୋଭ୍ନା (୧୭୪୦-୧୭୪୧) । ବାସ୍ତବରେ ଅନ୍ୟ ଲୋକେ ଶାସନ କରୁଥିଲେ । ପିଟରଙ୍କ ପ୍ରିୟପାତ୍ର ଏ.ଡି. ମେନ୍ଶିକୋଭ୍ ପ୍ରଥମ କ୍ୟାଥେରିନ୍ଙ୍କ ଅମଳରେ ଏବଂ ପୁରାତନ ମସ୍କୋ ସମ୍ଭ୍ରାନ୍ତମାନେ ଦ୍ୱିତୀୟ ପିଟରଙ୍କ ଅମଳରେ ରାଜତ୍ୱ କରୁଥିଲେ । ୧୭୩୦-୧୭୪୧ ମଧ୍ୟରେ ଦେଶର ପ୍ରକୃତ କ୍ଷମତା ନିହିତ ଥିଲା ବଲ୍ଟିକ୍ ଜର୍ମାନ୍ ସମ୍ଭ୍ରାନ୍ତମାନଙ୍କର ଏକ ଗୋଷ୍ଠୀ ହାତରେ । ଏମାନେ ସରକାରର ବହୁ ଉଚ୍ଚ ପଦରେ ଅଧିଷ୍ଠିତ ଥିଲେ ଏବଂ ଏମାନଙ୍କର ମୁଖ୍ୟ ଥିଲେ ଆନ୍ନା ଇଭାନୋଭ୍ନାଙ୍କ ପ୍ରିୟପାତ୍ର ଏର୍ଣ୍ଣଷ୍ଟ ଜୋହନ୍ ବିରୋନ୍ । ଏହି କ୍ଷୁଦ୍ର ଗୋଷ୍ଠୀଟିର ଶାସନ ଜାତୀୟ ସ୍ୱାର୍ଥ ବିରୋଧୀ ନୀତି, ଅର୍ଥହୀନ ଯୁଦ୍ଧସମୂହ, ରାଜକୋଷର ବିନର୍ବ୍ୟୟ, ଆତ୍ମସାତ୍କରଣ, ଦେଶର ଅର୍ଥନୀତି ଉପରେ ବିରାଟ ଆଘାତ ହାଣିଥିଲା ଏବଂ ସର୍ବତ୍ର ଅସନ୍ତୋଷ ଏବଂ

ଘୃଣା ଉଦ୍ରେକ କରିଥିଲା । ୧୭୪୧, ନଭେମ୍ବର ମାସରେ ସମ୍ଭ୍ରାନ୍ତ-ରକ୍ଷୀମାନେ (ଏକ ସେନାଦଳ, ଯେଉଁଥିରେ ଶାସକଙ୍କ ଦେହରକ୍ଷୀମାନେ ଅନ୍ତର୍ଗତ ଥିଲେ) ଆଉ ଏକ ଅଗ୍ରନକ କ୍ଷମତା ଦଖଲର ଆୟୋଜନ କରି ଏହି ବଲ୍‌ଟିକ୍ ଗୋଷ୍ଠୀଟିକୁ ହଟେଇ ଦେଇଥିଲେ । ପିଟର ଏବଂ ପ୍ରଥମ କ୍ୟାଥେରିନ୍‌ଙ୍କ କନ୍ୟା ଏଲିଜାବେଥ୍ ସାମ୍ରାଜ୍ଞୀ ହେଲେ ଏବଂ ତାଙ୍କ ମୃତ୍ୟୁ ପରେ (୧୭୬୧ ମସିହାର ଶେଷରେ) ତାଙ୍କ ଦ୍ୱାରା ନିଯୁକ୍ତ ତାଙ୍କର ଭଗିନୀଙ୍କ ପୁତ୍ର, ଜନୈକ ଜର୍ମାନ୍ ସାମନ୍ତରାଜା ତୃତୀୟ ପିଟର ଉତ୍ତରାଧିକାରୀ ରୂପେ ଶାସନ କରିଥିଲେ । ତାଙ୍କର ଏହି ରାଜତ୍ୱ ସ୍ୱଳ୍ପ କାଳ ପାଇଁ ସ୍ଥାୟୀ ହୋଇଥିଲା । ୧୭୬୨, ଗ୍ରୀଷ୍ମକାଳରେ ରକ୍ଷୀବାହିନୀ ଆଉ ଏକ ଆଗ୍ରନକ କ୍ଷମତା ଦଖଲ ଘଟାଇଥିଲେ ଏବଂ ଏଥର ଏହା ଥିଲା ୩ୟ ପିଟରଙ୍କ ରାଣୀଙ୍କ ସପକ୍ଷରେ । ଏହି ରାଣୀ ଥିଲେ ଜନୈକ ଜର୍ମାନ୍ ରାଜକନ୍ୟା ଏବଂ ସେ ରୁଷିଆର ଦ୍ୱିତୀୟ କ୍ୟାଥେରିନ୍‌ରେ ପରିଣତ ହେଲେ ।

ଏହିସବୁ ପ୍ରାସାଦୀୟ ଷଡ଼ଯନ୍ତ୍ରମୂଳକ କ୍ଷମତା ଦଖଲର ଏକ ଅଭିନ୍ନ ବୈଶିଷ୍ଟ୍ୟ ହେଲା, ରକ୍ଷୀବାହିନୀର (ଶାସକଙ୍କ ଦେହରକ୍ଷୀମାନଙ୍କର) ସକ୍ରିୟ ଅଂଶଗ୍ରହଣ । ନୂତନ ଶାସନ ପ୍ରତିଷ୍ଠା ହେଲା କ୍ଷଣି ଏହି ରକ୍ଷୀମାନେ ପ୍ରଥମେ ସମ୍ରାଟଙ୍କ ଶୁଭଦୃଷ୍ଟି ଲାଭ କରୁଥିଲେ । ରକ୍ଷୀମାନେ ଥିଲେ ରୁଷୀୟ ସମ୍ଭ୍ରାନ୍ତମାନଙ୍କର ପ୍ରତିମୂର୍ତ୍ତି ଏବଂ ଶାସକଙ୍କ ସହିତ ସେମାନଙ୍କ ଐକ୍ୟ ଦେଶର ଉପର ମାହାଲ ଆଉ ସର୍ବୋଚ୍ଚ ଶକ୍ତି ମଧ୍ୟରେ ଐକ୍ୟକୁ ପ୍ରକାଶ କରୁଥିଲା । ଏହା ବହୁ ପରିମାଣରେ ରାଜପ୍ରାସାଦର ଷଡ଼ଯନ୍ତ୍ରମୂଳକ କ୍ଷମତା ଦଖଲର ତଥାକଥିତ "ଶାନ୍ତିପୂର୍ଣ୍ଣ ଚରିତ୍ରକୁ" ବୁଝାଉଥିଲା । ଏଥି ସଙ୍ଗେ ସଙ୍ଗେ ଏହିସବୁ କ୍ଷମତା ଦଖଲ ଅମଲାତନ୍ତ୍ରର, ଏପରିକି ତା'ର ଉପରି ଅଂଶର କୌଣସି କ୍ଷତି ଘଟାଉ ନଥିଲା । ସେମାନେ ୧ମ ପିଟରଙ୍କ ଦ୍ୱାରା ପ୍ରବର୍ତ୍ତିତ ଅଫିସରମାନଙ୍କ ବିନ୍ୟାସର ଭିତ୍ତି ଅନୁଯାୟୀ ଦୃଢ଼ ଥିଲେ ଏବଂ ଉଦୀୟମାନ ଅଫିସର – ସମ୍ଭ୍ରାନ୍ତ ରାଜତନ୍ତ୍ରର ମୁଖ୍ୟ ରାଜନୈତିକ ଶକ୍ତି ରୂପେ ଗଢ଼ି ଉଠିଥିଲେ । ଲେନିନ୍‌ଙ୍କ ଭାଷାରେ, ଅମଲାତନ୍ତ୍ର (ସମ୍ରାଟଙ୍କ ନିକଟବର୍ତ୍ତୀ ବିଦେଶୀମାନଙ୍କ ସମେତ) "ଏକ ବିଶେଷ ଜବରଦସ୍ତ ପ୍ରତିକ୍ରିୟାଶୀଳ ସଂସ୍ଥାରେ" ପରିଣତ ହୋଇ କ୍ରମଶଃ "ରୁଷୀୟ ରାଷ୍ଟ୍ରର କାର୍ଯ୍ୟତଃ ଶାସକ ପାଲଟି ଯାଇଥିଲା" । କୃଷକ ତଥା ସହରର ନିମ୍ନ ସ୍ତରର ଲୋକମାନଙ୍କ ଉପରେ କ୍ରମବର୍ଦ୍ଧମାନ ଶୋଷଣ ଫଳରେ ଶ୍ରମଜୀବୀ ଜନସାଧାରଣଙ୍କ ମଧ୍ୟରେ, ଗଣ ବିକ୍ଷୋଭ ସମେତ, ବହୁବିଧ ପ୍ରତିରୋଧକୁ ଜନ୍ମ ଦେଇଥିଲା । ଏହା ଫଳରେ ଶ୍ରମଜୀବୀମାନଙ୍କ ବିରୁଦ୍ଧରେ ଦମନମୂଳକ ବ୍ୟବସ୍ଥା ଆଉରି ଶକ୍ତିଶାଳୀ କରାଗଲା, ଅର୍ଥାତ୍, ଅମଲାତନ୍ତ୍ର ଏବଂ ସୈନ୍ୟବାହିନୀକୁ ଆଉରି ଦୃଢ଼ କରାଗଲା । ଶ୍ରେଣୀ ସଂଗ୍ରାମ ସରକାରର ଆଇନ୍ ପ୍ରଣୟନ କାର୍ଯ୍ୟ ତଥା ସମ୍ଭ୍ରାନ୍ତ ସଂପ୍ରଦାୟର ଯୋଜନାର ଚରିତ୍ରକୁ ନିର୍ଦ୍ଧାରିତ କରି ଦେଇଥିଲା । ଭୂମିଦାସମାନଙ୍କ ପ୍ରଭୁମାନେ ଶାସକ ଶ୍ରେଣୀମାନଙ୍କ ସ୍ୱାର୍ଥରେ "ଜ୍ଞାନାଲୋକକୁ" "ଜ୍ଞାନାଲୋକମୂଳକ

ସ୍ୱୈରତନ୍ତ୍ରର" ଭାବାଦର୍ଶ ରୂପେ ବ୍ୟବହାର କରିଥିଲେ । "ସମସ୍ତ ଜନସାଧାରଣଙ୍କ କଲ୍ୟାଣ" ବୋଇଲେ କାର୍ଯ୍ୟତଃ "ସମସ୍ତ ସମ୍ଭ୍ରାନ୍ତମାନଙ୍କ କଲ୍ୟାଣକୁ" ବୁଝାଇଲା । "ଜ୍ଞାନାଲୋକ ଯୁଗର" ବଡ଼ ବଡ଼ କଥାକୁ ବ୍ୟବହାର କରାଗଲା ଆଇନହୀନ ସ୍ୱୈରତନ୍ତ୍ର ଏବଂ ଭୂମିଦାସ ପ୍ରଥାର ଯୁକ୍ତିଯୁକ୍ତତାକୁ ପ୍ରମାଣ କରିବା ଦିଗରେ ।

୧୮ଶ ଶତାବ୍ଦୀଟି ଥିଲା ସାମନ୍ତୀୟ ଭୂମିଦାସମାଲିକମାନେ ନୂଆ ନୂଆ ସୁବିଧା ହାସଲ କରିବା ଏବଂ ଦାସତ୍ୱରେ ଆବଦ୍ଧ ଶ୍ରମଜୀବୀ ଜନସାଧାରଣ ସେମାନଙ୍କ ସ୍ୱାଧୀନତାର ସର୍ବଶେଷ ଚିହ୍ନତକ ହରେଇବାର ଯୁଗ । ଏହି ସାମାଜିକ ନୀତିର କ୍ରମାନୁବର୍ତ୍ତିତା (ଏବଂ ସେହିସବୁ ବର୍ତ୍ତମାନଙ୍କର ଇତିହାସର ମୂଳରେ କ୍ଷମତାରେ ପ୍ରତିଷ୍ଠିତ ବ୍ୟକ୍ତିବିଶେଷସମୂହ ନଥିଲେ, ଥିଲା ଏହି କ୍ରମାନୁବର୍ତ୍ତିତା) ସହଜରେ ପରିଲକ୍ଷିତ ହୋଇଥାଏ ଆଇନ୍‌ସମୂହରେ : ଶାସକଙ୍କ ପ୍ରତି ଭୂମିଦାସମାନଙ୍କର ଆନୁଗତ୍ୟରୁ ଅବ୍ୟାହତି ଏବଂ ଟିକସ ପ୍ରଦାନ ଦିଗରୁ ଜମିଦାରମାନଙ୍କ ପ୍ରତି ଅଧୀନତା ସାଥେ ସାଥେ ସମ୍ଭ୍ରାନ୍ତ ସଂପ୍ରଦାୟର ସାମରିକ ସେବା ସମୟର କାର୍ଯ୍ୟତଃ ହ୍ରାସ, ଜମିଦାରମାନଙ୍କର ସେମାନଙ୍କ କୃଷକମାନଙ୍କୁ ସାଇବେରିଆକୁ ନିର୍ବାସିତ କରିବାର ଅଧିକାର ଲାଭ, ଜମିଦାରମାନଙ୍କ ନିଷ୍ଠୁରତା ବିରୁଦ୍ଧରେ ଅଭିଯୋଗ କରିବାର ନିଷିଦ୍ଧକରଣ ଏବଂ ସମ୍ଭ୍ରାନ୍ତମାନଙ୍କୁ "ସ୍ୱାଧୀନତା" ଦାନ – ବାଧ୍ୟତାମୂଳକ ସାମରିକ କାର୍ଯ୍ୟରୁ ସେମାନଙ୍କୁ ଅବ୍ୟାହତି ଦାନ (୧୭୬୨, ୩ୟ ପିଟରଙ୍କ ରାଜତ୍ୱକାଳରେ) ଥିଲା ୨ୟ କ୍ୟାଥେରିନ୍‌ଙ୍କ ଶାସନାଧୀନରେ କ୍ରମବର୍ଦ୍ଧମାନ ପରନିର୍ଭରଶୀଳ ସମ୍ଭ୍ରାନ୍ତ ସଂପ୍ରଦାୟର ଅଧିକାରର ଆଉରି ବ୍ୟାପକକରଣ । ଏହି କାରଣରୁ ୧ମ କ୍ୟାଥେରିନ୍‌ଙ୍କ ରାଜତ୍ୱକାଳକୁ (୧୭୬୨-୧୭୯୦) ରୁଷୀୟ ସମ୍ଭ୍ରାନ୍ତ ସଂପ୍ରଦାୟର "ସ୍ୱର୍ଣ୍ଣଯୁଗ" ବୋଲି କୁହାଯାଏ ।

୧୭୪୦ ଦଶକରେ ରୁଷିଆ ବୀରୋନ୍‌ଙ୍କ ଦଶ ବର୍ଷ କାଳ କୁଶାସନର ଦାରୁଣ ଆଘାତରୁ କ୍ରମଶଃ ସୁଧାରିବାକୁ ଆରମ୍ଭ କରିଥିଲା : ବୃହଦାକାର ଉତ୍ପାଦନ, ହସ୍ତଶିଳ୍ପ ଏବଂ ଘରୋଇ ତଥା ବୈଦେଶିକ ବାଣିଜ୍ୟ ବିକାଶ ଲାଭ କରିଥିଲା ।

ଦେଶଟିର ଅର୍ଥନୀତିରେ ପୁଞ୍ଜିବାଦୀ ସଂପର୍କରାଜିର ବୈଶିଷ୍ଟ୍ୟରାଜି ୧୮ଶ ଶତାବ୍ଦୀର ମଧ୍ୟ ଭାଗରେ କ୍ରମଶଃ ଅଧିକ ସ୍ପଷ୍ଟ ହେବାକୁ ଲାଗିଲା । ବାଣିଜ୍ୟ ଏବଂ ଶିଳ୍ପର ଏହି ବିକାଶ ମଧ୍ୟରେ ରାଷ୍ଟ୍ର ଲକ୍ଷ୍ୟ କରିଥିଲା ଜାତୀୟ ଶକ୍ତି ତଥା ଏହାର ନିଜସ୍ୱ ବୁଦ୍ଧିମତା ପାଇଁ ଆବଶ୍ୟକୀୟ ପୂର୍ବାବସ୍ଥାସମୂହକୁ । ସମ୍ଭ୍ରାନ୍ତ ସଂପ୍ରଦାୟର ଉପରି ଅଂଶଟି ଅର୍ଥନୀତିର ନୂଆ ନୂଆ ଶାଖାରେ ଯୋଗ ଦେଇଥିଲେ; ଭୂମି ଏବଂ ଭୂମିଦାସମାନଙ୍କୁ ଶୋଷଣ କରିବା ନିମିତ୍ତ ଏମାନେ ସମସ୍ତ ପ୍ରକାରର ଅର୍ଥନୈତିକ କ୍ରିୟାକଳାପ ଉପରେ ଏକଗ୍ରଟିଆ ଅଧିକାର ପାଇଁ ଆଗ୍ରହୀ ହୋଇ ପଡ଼ିଥିଲେ । ତେବେ ସାମନ୍ତ ମାହାଲମାନଙ୍କରେ ଭୂମିଦାସତ୍ୱ ଉପରେ ପ୍ରତିଷ୍ଠିତ ଶିଳ୍ପୋତ୍ପାଦନ ପୁଞ୍ଜିବାଦୀ ସଂପର୍କରାଜିର ବିକାଶରେ ବାଧା ଦେଇଥିଲା ।

ପ୍ରଥମ ପିଟରଙ୍କ ଦ୍ୱାରା ପ୍ରବର୍ତ୍ତିତ ପରିବର୍ତ୍ତନସମୂହର ଅସ୍ତିବାଚକ ଫଳାଫଳ କ୍ରମାଧିକ ଭାବେ ରୁଷିଆର ଘରୋଇ ଏବଂ ବୈଦେଶିକ ନୀତିରେ ଅନୁଭୂତ ହୋଇଥିଲା ଏବଂ ବିଶେଷ କରି ସାଂସ୍କୃତିକ କ୍ଷେତ୍ରରେ । ଏଲିଜାବେଥ୍‌ଙ୍କ ଶାସନକାଳରେ ସେଇ ଯୁଗର କ୍ରମାନୁବର୍ତ୍ତିତା ମଧ୍ୟ ପରିଲକ୍ଷିତ ହୋଇଥିଲା ।

ଏହିସବୁ ବର୍ଷମାନଙ୍କରେ ଦେଶର ଆଉରି ଅଧିକ ବିକାଶ ପାଇଁ ଗୁରୁତ୍ୱପୂର୍ଣ୍ଣ ସଂସ୍କାରମାନ ପ୍ରସ୍ତାବିତ ହୋଇ କାର୍ଯ୍ୟକର ହୋଇଥିଲା । ଅଧିକାଂଶ ଉଦ୍ୟୋଗ ଶୁଭାଲୋଭ୍ ପରିବାର ସହିତ ଯୁକ୍ତ ଥିଲା । ଧନୀ ଜମିଦାର ଏବଂ ଶିଳ୍ପୋଦ୍ୟୋଗୀ ପିଟର ଶୁଭାଲୋଭ୍ ସର୍ବଦା ରାଷ୍ଟ୍ରୀୟ ବିଷୟରେ ସଂପୃକ୍ତ ଥିଲେ, ସେ ସମ୍ଭବତଃ ୧୭୩୦ ଦଶକର ରାଷ୍ଟ୍ରନୀତିଜ୍ଞ ଆର୍ଟେମି ଭୋଲିନ୍‌ସ୍କିଙ୍କ ଯୋଜନାର ଉପଯୋଗ କରିଥିଲେ । ଭୋଲିନ୍‌ସ୍କି ବିରୋନ୍‌ଙ୍କ ନୀତି ବିରୁଦ୍ଧରେ ସଂଗ୍ରାମ କରିଥିଲେ । ସାମ୍ରାଜ୍ଞୀ ଏଲିଜାବେଥ୍‌ଙ୍କ ପ୍ରିୟପାତ୍ର ଇଭାନ୍ ଶୁଭାଲୋଭ୍ ସାଂସ୍କୃତିକ କ୍ରିୟାକଳାପର ଜଣେ ପୃଷ୍ଠପୋଷକ ଥିଲେ ।

୧୭୫୪ ଖ୍ରୀଷ୍ଟାବ୍ଦରେ ଦେଶାଭ୍ୟନ୍ତରର ଶୁଳ୍‌କସମୂହକୁ ଉଠାଇ ଦିଆଯାଇଥିଲା । ଏହା ନିଖିଳ ରୁଷ୍ ଘରୋଇ ବଜାର ଗଠନକୁ ତ୍ୱରାନ୍ୱିତ କରିଥିଲା ଏବଂ ଏହା ଥିଲା ବୁର୍ଜୁଆ ଚରିତ୍ରସଂପନ୍ନ । ଆର୍ଥିକ ସଂସ୍କାରସମୂହକୁ କାର୍ଯ୍ୟକାରୀ କରାଯାଇଥିଲା (ବ୍ୟାଙ୍କ୍‌ସବୁ ପ୍ରତିଷ୍ଠିତ ହୋଇଥିଲା ଏବଂ ଟିକସ ପ୍ରଥା ବଦଳିଥିଲା) ଏବଂ ଆଞ୍ଚଳିକ ଶାସନ କ୍ଷେତ୍ରରେ ସମ୍ଭ୍ରାନ୍ତମାନଙ୍କ ଭୂମିକାରେ ଅଭିବୃଦ୍ଧି ଘଟିଥିଲା । ଆଭ୍ୟନ୍ତରୀଣ ରାଜନୈତିକ ଯୋଜନାସମୂହ ଘନିଷ୍ଠ ଭାବେ ଯୁକ୍ତ ହୋଇଥିଲା ସାମରିକ ସଂସ୍କାରର ଯୋଜନା ସହିତ ।

ପ୍ରୁସିଆ ବିରୁଦ୍ଧରେ ପରିଚାଳିତ ସାତ ବର୍ଷିଆ (୧୭୫୬-୧୭୬୩) ଯୁଦ୍ଧ ଚାଲିଥିଲା । ଏହି ଯୁଦ୍ଧରେ ଅଷ୍ଟ୍ରିଆ ଏବଂ ଫ୍ରାନ୍‌ସ ରୁଷିଆର ମିତ୍ର ରୂପେ ଏବଂ ଇଂଲଣ୍ଡ ପ୍ରୁସିଆର ମିତ୍ର ଥିଲେ । ଅନେକଗୁଡ଼ିଏ ସାଫଲ୍ୟ ମଣ୍ଡିତ ଯୁଦ୍ଧ ପରେ ରୁଷିଆର ସେନାବାହିନୀ ବର୍ଲିନ୍ ଅଧିକାର କରି ନେଇଥିଲେ ୧୭୬୦ ମସିହାରେ । ରୁଷିଆର ସାମ୍ରାଜ୍ଞୀଙ୍କ ଅପ୍ରତ୍ୟାଶିତ ମୃତ୍ୟୁ ପରେ ଦ୍ୱିତୀୟ ଫ୍ରେଡେରିକ୍ ରକ୍ଷା ପାଇ ଯାଇଥିଲେ । ସାମ୍ରାଜ୍ଞୀଙ୍କ ଉତ୍ତରାଧିକାରୀ ୩ୟ ପିଟର, ପ୍ରୁସୀୟ ରାଜାଙ୍କର ପ୍ରଶଂସକ ଥିଲେ, କେବଳ ବର୍ଜିତ ଅଞ୍ଚଳସମୂହକୁ ଫେରେଇ ଦେଇ ନଥିଲେ, ରୁଷିଆର ପୂର୍ବତନ ମିତ୍ରମାନଙ୍କ ବିରୁଦ୍ଧରେ ରୁଷୀୟ ସୈନ୍ୟଦଳ ପ୍ରେରଣ କରିବାକୁ ରାଜି ହୋଇ ଯାଇଥିଲେ । ଏସବୁ ସତ୍ତ୍ୱେ, ସାତବର୍ଷିଆ ଯୁଦ୍ଧରେ ରୁଷିଆ ଦ୍ୱାରା ଅର୍ଜିତ ବିଜୟସମୂହ ପୂର୍ବ ୟୁରୋପର ଆନ୍ତର୍ଜାତିକ ସଂପର୍କରାଜିକୁ ବହୁଦିନ ପର୍ଯ୍ୟନ୍ତ ନିର୍ଦ୍ଧାରଣ କରି ଦେଇଥିଲା ।

ପ୍ରଥମ ପିଟରଙ୍କର ବିଦ୍ୱାନ୍ ଦଳ ମଧ୍ୟରୁ ତରୁଣମାନେ ସେମାନଙ୍କ କ୍ରିୟାକଳାପ ବିକାଶ ସାଧନ କରିଥିଲେ । ସେମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ ଐତିହାସିକ ("ରୁଷ୍ ଇତିହାସ"ର ପ୍ରଥମ ଲେଖକ), ଭୌଗୋଳିକ ଏବଂ ୟୁରାଲସରେ ଶିଳ୍ପ ପ୍ରତିଷ୍ଠାତା ଭାସିଲି ତାତିଶ୍ଚେଭ୍ ଏବଂ ହାସ୍ୟରସିକ କବି ତଥା କୂଟନୀତିବିଦ୍ ଆନ୍ତିଓଖ୍ କାନ୍ତେମିର୍ । ପ୍ରଥମ ପିଟରଙ୍କ ଦ୍ୱାରା ପ୍ରତିଷ୍ଠିତ କୁନସ୍ତକାମେରା ପ୍ରତିଷ୍ଠାନଟି ଥିଲା ପ୍ରାକୃତିକ ବିଜ୍ଞାନର ବସ୍ତୁରାଜି, ଐତିହାସିକ ତଥା ସ୍ମୃତିଗାଥା ସହିତ ସଂପୃକ୍ତ ଉପାଦାନ ସଂଗ୍ରହ କରିବାର ପ୍ରଥମ ପ୍ରତିଷ୍ଠାନ । ୧୭୨୦-୧୭୫୦ ମଧ୍ୟରେ ପରିଚାଳିତ ବିରାଟ ଉତ୍ତରାଞ୍ଚଳୀୟ ଅଭିଯାନ ଆର୍କଟିକ ମହାସାଗରର ଉପକୂଳ ଅଞ୍ଚଳର ଆବିଷ୍କାର ଦିଗରେ

ଅତୀବ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲା । ଏହି ଅଭିଯାନର ଦୁଃସାହସିକ ନାବିକ ଏବଂ ଆବିଷ୍କାରକମାନଙ୍କ ନାମ (ଲେପଟେଭ୍‌ବ୍ରନ୍ଦ, ପ୍ରୋଞ୍ଚିଶେଭ୍, ଚେଲ୍ୟୁସ୍କିନ୍ ଏବଂ ଅନ୍ୟମାନେ) ଅମର ହୋଇ ରହିଛି ସାଗର, ଦ୍ୱୀପ ଏବଂ ଉପଦ୍ୱୀପରାଜିର ନାମ ମଧ୍ୟରେ । ଭିଟ୍‌ସ୍ ବେରିଂ ଏବଂ ଆଲେକ୍‌ସି ଚିରିକୋଭ୍‌ଙ୍କ ଦ୍ୱାରା ପରିଚାଳିତ ଅଭିଯାନ ଉତ୍ତର-ପୂର୍ବ ଏସିଆ ଏବଂ ଉତ୍ତର-ପଶ୍ଚିମ ଆମେରିକା ଆବିଷ୍କାର କରିଥିଲା ଏବଂ ଏହି ଦୁଇ ମହାଦେଶକୁ ବିଭକ୍ତ କରୁଥିବା ଜଳପ୍ରଣାଳୀଟି ତାଙ୍କ ନାମ ବହନ କରିଛି । ସ୍ତେପାନ୍ କ୍ରାସେନିନ୍ନିକୋଭ୍ କାମଚାତକା ଉପଦ୍ୱୀପର ବ୍ୟାପକ ବର୍ଣ୍ଣନା ପ୍ରଦାନ କରିଥିଲେ ଏବଂ ମିଲର ସାଇବେରିଆର ଇତିହାସ ସହିତ ଯୁକ୍ତ ଦଲିଲପତ୍ର ସଂଗ୍ରହ କରି ସାଇବେରିଆର ପ୍ରଥମ ପାଣ୍ଡିତ୍ୟପୂର୍ଣ୍ଣ ଇତିହାସ ରଚନା କରିଥିଲେ । ଏହି ଆବିଷ୍କାରମୂଳକ ଅଭିଯାନ ତା'ପରେ ୧୭୬୦-୧୭୮୦ ପର୍ଯ୍ୟନ୍ତ ପରିଚାଳିତ ହୋଇଥିଲା ରୁଷିଆର ଉଭୟ ୟୁରୋପୀୟ ଏବଂ ଏସୀୟ ଅଞ୍ଚଳରେ । ଏହିସବୁ ଅଭିଯାନର ନେତୃତ୍ୱ ଗ୍ରହଣ କରିଥିଲେ ପିଟର ସିମନ୍ ପାଲ୍ଲାସ୍, ଇଭାନ୍ ଲିପିଓଖିନ୍, ଇଭାନ୍ ଗିଓର୍ଗି ପ୍ରମୁଖ ଯେଉଁମାନେ ବହୁବିଧ ବୈଜ୍ଞାନିକ ତଥ୍ୟ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ସେସବୁର ସାଧାରଣୀକରଣ କରିଥିଲେ । ସର୍ଟୋଗ୍ରାଫିକ୍ କ୍ରିୟାକଳାପ ମଧ୍ୟ ବିକାଶ ଲାଭ କରିଥିଲା । ୧୭୩୧ ମସିହାର ପ୍ରାରମ୍ଭ ବେଳକୁ ଇଭାନ୍ କିରିଲୋଭ୍ ରୁଷିଆର ପ୍ରଥମ ଭୌଗୋଳିକ ଭୂଚିତ୍ରାବଳୀ ପ୍ରକାଶ କରିଥିଲେ ।

୧୮ଶ ଶତାବ୍ଦୀର ମଧ୍ୟ ଭାଗ ବେଳକୁ ପରିଷ୍କାର ଭାବେ ଜଣାଗଲା ଯେ, ରୁଷିଆର ବିଦ୍ୱାନ୍‌ମାନେ ୟୁରୋପୀୟ ବିଜ୍ଞାନସମୂହର କୃତିରାଜିକୁ କେବଳ ଆୟତ୍ତ କରିବାକୁ ସକ୍ଷମ ହୋଇ ନାହାନ୍ତି, ରୁଷ୍ ବିଜ୍ଞାନ ପ୍ରତି ବିଶ୍ୱ ସ୍ୱୀକୃତି ଅର୍ଜନ କରିବାକୁ ପ୍ରସ୍ତୁତ ହୋଇ ଯାଇଛନ୍ତି । ମିଖାଇଲ ଲୋମୋନୋସୋଭ୍ (୧୭୧୧-୧୭୬୫) ଥିଲେ ଜଣେ ବିଖ୍ୟାତ ବିଶ୍ୱକୋଷ ରଚନାକ୍ଷମ ପଣ୍ଡିତ । ଆର୍ଖାଙ୍ଗେଲ୍‌ସର ଜଣେ କୃଷକଙ୍କର ସନ୍ତାନ ଏହି ମହାଜ୍ଞାନୀ ୨୦ବର୍ଷ ବୟସରେ ମସ୍କୋକୁ ଆସିଥିଲେ ବିଦ୍ୟାଧ୍ୟୟନ କରିବାକୁ ଏବଂ ତା'ପରେ କିୟେଭ୍, ସେଣ୍ଟ୍ ପିଟରସ୍‌ବୁର୍ଗ୍ ଏବଂ ଜର୍ମାନୀରେ ଶିକ୍ଷା ଲାଭ କରିଥିଲେ । ୧୭୪୫ ଖ୍ରୀଷ୍ଟାବ୍ଦରେ ଲୋମୋନୋସୋଭ୍ ଆକାଡେମିସିଆନ ଉପାଧି ଲାଭ କରିଥିଲେ । ତାଙ୍କର ଆବିଷ୍କାରସମୂହ ଜ୍ଞାନଜଗତର ବହୁ କ୍ଷେତ୍ରକୁ ସମୃଦ୍ଧ କରିଥିଲା । ସେସବୁ ମଧ୍ୟରେ ଥିଲା – ରସାୟନବିଦ୍ୟା, ବସ୍ତୁବିଦ୍ୟା, ଜ୍ୟୋତିର୍ବିଜ୍ଞାନ, ଭୂତତ୍ତ୍ୱବିଦ୍ୟା, ଆକରବିଦ୍ୟା, ଭୂଗୋଳ ଏବଂ ଧାତୁବିଦ୍ୟା । ଲୋମୋନୋସୋଭ୍‌ଙ୍କର କେତେକ ଚିନ୍ତାଧାରା ତାଙ୍କ ସମୟ ଠାରୁ ୧୦୦-୧୫୦ ବର୍ଷ ଆଗେଇକି ଥିଲା । ସେ ରୁଷ୍ ଭାଷାର ପ୍ରଥମ ବ୍ୟାକରଣ ପ୍ରଣୟନ କରିଥିଲେ ଏବଂ ରୁଷ୍ ଇତିହାସର ଉପରେ ବହୁ ଲେଖା ରଚନା କରିଥିଲେ । ବହୁ ପାଠ୍ୟ ପୁସ୍ତକ ରଚନା କରିବା ସଙ୍ଗେ ସଙ୍ଗେ ଜନଶିକ୍ଷା ତଥା ଜାତୀୟ ସାଂସ୍କୃତିକ ପରମ୍ପରା ପ୍ରତି ସମ୍ମାନ ପ୍ରଦର୍ଶନ କରିବାକୁ କହୁଥିଲେ । ସେ

ଥିଲେ ବିଜ୍ଞାନର ଜଣେ ବିରାଟ ସଂଗଠକ ଏବଂ ଯୁବକ ସଂପ୍ରଦାୟର ଗୁରୁ । ଲେମୋନୋସୋଭ୍‌ଙ୍କ ଉଦ୍ୟୋଗରେ ତାଙ୍କର ପରିକଳ୍ପନା ଅନୁଯାୟୀ ମସ୍କୋ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା ୧୭୫୫ । ଏବେ ଏହି ବିଶ୍ୱବିଦ୍ୟାଳୟ ତାଙ୍କ ନାମରେ ନାମିତ ହୋଇଛି । ଲେମୋନୋସୋଭ୍‌ଙ୍କ ଅନୁଗାମୀ, ବିଶ୍ୱବିଦ୍ୟାଳୟର ପ୍ରଥମ ସ୍ନାତକଗଣ ବହୁଜାତୀୟ ବିଜ୍ଞାନର ବିକାଶ ପାଇଁ ଭିତ୍ତି ସ୍ଥାପନ କରିଥିଲେ ।

ପ୍ରତିଭାବାନ ସ୍ୱଶିକ୍ଷିତ ଲୋକଙ୍କର ବହୁ କାରିଗରୀ କ୍ଷେତ୍ରରେ ଆବିର୍ଭାବ ଘଟିଥିଲା । ତେବେ ଭୂମିଦାସ ରୁଷିଆରେ ସେମାନଙ୍କର ଉଦ୍‌ଭାବନକୁ ଅନେକ ସମୟରେ ନ୍ୟୂନ କରି ଦେଖାଯାଇଥିଲା, କିମ୍ବା କେଭେ କାର୍ଯ୍ୟକାରୀ ବି କରାଯାଉ ନଥିଲା । ଆଲତାଇ କାରଖାନାରେ କାମ କରୁଥିବା, ଜଣେ ସୈନିକଙ୍କ ପୁତ୍ର ଇଭାନ୍ ପଲ୍‌ଜୁନୋଭ୍ ୧୭୬୦ ଦଶକରେ ଏକ ବାଷ୍ପୀୟ ଇଂଜିନ୍ ଉଦ୍‌ଭାବନ କରିଥିଲେ । କିନ୍ତୁ ଇଂଜିନ୍‌ଟିକୁ ପରୀକ୍ଷା କରିବା ପୂର୍ବରୁ ଦାରୁଣ ଶ୍ରମ କ୍ଳାନ୍ତି ହେତୁ ତାଙ୍କ ମୃତ୍ୟୁ ଘଟିଥିଲା । ତା'ପରେ ସେ ଇଂଜିନ୍‌ଟିକୁ ଅଳିଆ ଗଦାକୁ ଫିଙ୍ଗି ଦିଆଯାଇଥିଲା କୌଣସି ପରୀକ୍ଷା ନିରୀକ୍ଷା ନକରି । ସେଇ ଆଲତାଇରେ କର୍ମରତ କୋଜ୍‌ମା ଫ୍ରୋଲଭ୍ ଏକ ଜଟିଳ ଜଳୀୟକାରିଗରୀ ବ୍ୟବସ୍ଥାସମୂହର ଏକ ଡିଜାଇନ୍ ତିଆରି କରିଥିଲେ । ନିଝନି ନୋଭଗୋରଦର ଇଭାନ୍ କୁଲିବିନ୍‌ଙ୍କ (୧୭୩୫-୧୮୧୮) ଭଳି ରୁଷିଆର ବିଖ୍ୟାତ ଉଦ୍‌ଭାବକଙ୍କ ଦୁର୍ଭାଗ୍ୟର କଥା ଅନେକଙ୍କୁ ଜଣା । ୧୭୬୯ ମସିହାରେ ଦ୍ୱିତୀୟ କ୍ୟାଥେରିନ୍‌ଙ୍କୁ ଡିମ୍ବାକୃତି ବିଶିଷ୍ଟ ସ୍ୱୟଂଚାଳିତ ସେ ଏକ ଜଟିଳ ଘଣ୍ଟା ଉପହାର ଦେଇଥିଲେ । କୁଲିବିନ୍ ଏକ ସର୍ଚ୍ଚଲାଇଟ୍ ବଣ, ଅପଟିକାର ତାରଯନ୍ତ୍ର, ଓ୍ୱାଗନ୍ ସାଇକେଲ ଏବଂ ନେଭା ନଦୀ ଉପରେ ଏକକ ତୋରଣାକୃତି ବିଶିଷ୍ଟ ନଦୀର ବହୁ ଡିଜାଇନ୍ ତିଆରି କରିଥିଲେ । ବିଶ୍ୱର ବଡ଼ ବଡ଼ ବିଜ୍ଞାନୀମାନେ ଏସବୁର ଅଧିକ ପ୍ରଶଂସା କରି ଯାଇଛନ୍ତି । ତେବେ ଅନ୍ୟାନ୍ୟ ବହୁ ଯୋଜନା ଭଳି ଶେଷୋକ୍ତ ଯୋଜନାଟି କାର୍ଯ୍ୟକାରୀ ନହୋଇ ଏମିତି ରହି ଯାଇଥିଲା । ଏହି ପ୍ରତିଭାବାନ କାରିଗର ଅଧିକାଂଶ ସମୟରେ ରାଜପରିଷଦ ପାଇଁ ଖେଳନା ଆଉ ବାଜି ତିଆରି କରିବାରେ ସମୟ ବିତଉଥିଲେ ଏବଂ ଶେଷକୁ ବରଖାସ୍ତ ହୋଇ ଦରିଦ୍ରତା ମଧ୍ୟରେ ପ୍ରାଣ ହରେଇଥିଲେ ।

ରୁଷିଆରେ ଅନେକ ବିଖ୍ୟାତ ବିଦେଶୀ ବିଜ୍ଞାନୀ ମଧ୍ୟ କାର୍ଯ୍ୟ କରିଥିଲେ ସେତେବେଳେ । ସେମାନଙ୍କ ମଧ୍ୟରେ ଥିଲେ କାରିଗର ଏବଂ ଗଣିତବିଦ୍ ନିକୋଲାସ୍ ଏବଂ ଦାନିଏଲ ବେର୍ନୋଇଲି, ଗଣିତ ବିଦ୍ୟା, କାରିଗରି ତଥା ପଦାର୍ଥବିଦ୍ୟା କ୍ଷେତ୍ରରେ ଧୁରନ୍ଧର ଲିଓନାର୍ଡ ୟୁଲେର, ବିଖ୍ୟାତ ପ୍ରକୃତି ବିଜ୍ଞାନୀ ଏବଂ ବିଶ୍ୱକୋଷ ରଚୟିତା ପିଟର ପାଲ୍ଲାସ, ଯିଏକି ରୁଷିଆକୁ ଅନୁଧ୍ୟାନ କରିବାର ବହୁ ବର୍ଷବ୍ୟାପୀ ଅଭିଯାନର ମୁଖ୍ୟ ଥିଲେ ।

୧୭୫୦ ଦଶକର ମଧ୍ୟ ଭାଗରେ ସେଣ୍ଟ୍ ପିଟର୍ସବୁର୍ଗରେ ପ୍ରଥମ ଗଣ ଥିଏଟରଟି

ପ୍ରତିଷ୍ଠିତ ହୋଇଥିଲା । ଏହାର ନିର୍ଦ୍ଦେଶକ ଥିଲେ ଫିଓଦର ଭୋଲ୍‌କୋଭ୍, ଯିଏକି ଇତିପୂର୍ବରୁ ୟାରୋସ୍ଲାଭରେ ଏକ ଥିଏଟର ପ୍ରତିଷ୍ଠା କରିଥିଲେ । ଏହି ସମୟରେ ସେଣ୍ଟ୍ ପିଟର୍ସବୁର୍ଗରେ ଏକ ଶ୍ରେଷ୍ଠକଳା ଆକାଡେମି ମଧ୍ୟ ପ୍ରତିଷ୍ଠିତ ହୋଇଥିଲା । ନଗର ନିର୍ମାଣ କାର୍ଯ୍ୟ ମଧ୍ୟ ସଫଳତାର ସହିତ ଚାଲିଥିଲା । ସମ୍ଭ୍ରାନ୍ତମାନଙ୍କ ପାଇଁ ପ୍ରାସାଦ ଏବଂ ଗ୍ରାମ୍ୟନିବାସମାନ ନିର୍ମାଣ ହୋଇଥିଲା । ୧୮ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ରୁଷୀୟ ଚିତ୍ରଶିଳ୍ପୀ (ସ୍ଥପତି ଫେଦୋତ୍ ଶୁବିନ୍, ଶିଳ୍ପୀ ରୋକୋଟୋଭ୍ ଏବଂ ଲେଭିତ୍‌ସ୍କି) ଏବଂ ସ୍ଥପତିମାନେ (ବାଝେନୋଭ ଓ କାଜାକୋଭ୍) ୟୁରୋପର କଳା କ୍ଷେତ୍ରରେ ବିଶିଷ୍ଟ ଆସନ ଅଧିକାର କରିଥିଲେ । ବିଖ୍ୟାତ ବିଦେଶୀ କଳାକର ଏବଂ ସ୍ଥପତିମାନେ ମଧ୍ୟ ରୁଷିଆକୁ ଆସିଥିଲେ ।

୧୮ଶ ଶତାବ୍ଦୀର ମଧ୍ୟ ଭାଗରେ ସାହିତ୍ୟିକ ତଥା ମୁଦ୍ରଣ କ୍ରିୟାକଳାପ ଆଉରି ସକ୍ରିୟ ହୋଇ ଉଠିଥିଲା । ନାଟ୍ୟକାର ଡେନିସ୍ ଫୋନ୍‌ଭିଜିନ୍ ଥିଲେ ସାହିତ୍ୟ କ୍ଷେତ୍ରରେ ସମାଲୋଚନାମୂଳକ ବିଦ୍ରୂପାତ୍ମକ ଧାରାର ପ୍ରତିଷ୍ଠାତା । କବିତା ଜଗତରେ ଏକ ବିଶେଷ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲେ ଗାଭ୍ରିଲା ଦେର୍‌ଝାଭିନ୍ । ସେ ଥିଲେ ତତ୍କାଳୀନ ଚିରାୟତ ସାହିତ୍ୟ ଶୈଳୀର ଜନୈକ ବିଖ୍ୟାତ ପ୍ରବକ୍ତା । ଏହି ଶତାବ୍ଦୀର ଶେଷରେ ଭାବାବେଗର ଅଭ୍ୟୁତ୍ଥାନ ଘଟିଥିଲା । ଏହା ପ୍ରକାଶ ପାଇଥିଲା ନିକଲାଇ କାରାମଜିନ୍‌ଙ୍କ ରଚନାବଳୀରେ, ଯିଏକି ପରବର୍ତ୍ତୀ ଶତାବ୍ଦୀରେ ଜଣେ ଜଣେ ବିଖ୍ୟାତ ଇତିହାସବିଦ୍‌ରେ ପରିଣତ ହୋଇଥିଲେ । ଏସବୁ ସତ୍ତ୍ୱେ ରୁଷୀୟ ଜନଗୋଷ୍ଠୀର ଏକ ସାମାନ୍ୟ ଅଂଶ ୟୁରୋପୀୟ ସଂସ୍କୃତି ସହିତ ପରିଚିତ ହୋଇଥିଲେ । ବିପୁଳ ସଂଖ୍ୟାଗରିଷ୍ଠ ଅଂଶ – ପ୍ରଥମ ପିଟରଙ୍କ ସମୟରୁ ଏ ଶତାବ୍ଦୀର ଶେଷ ମଧ୍ୟରେ, ଜନସଂଖ୍ୟା ଅଢ଼େଇଗୁଣ ବୃଦ୍ଧି ପାଇ ୩୭.୭ ନିୟୁତରେ ପହଞ୍ଚିଥିଲା – ନିରକ୍ଷର ହୋଇ ରହି ଯାଇଥିଲେ ।

ୟୁରୋପର ଅର୍ଥନୈତିକ ଭାବେ ସର୍ବାଧିକ ଅଗ୍ରସର ଦେଶମାନଙ୍କରେ ଅଷ୍ଟାଦଶ ଶତାବ୍ଦୀର ଶେଷ ଦଶକଟିରେ ସାମନ୍ତବାଦୀ ବ୍ୟବସ୍ଥାରେ ସଂକଟ ମୁଣ୍ଡ ଟେକି ଉଠିଥିଲା । ଇଂଲଣ୍ଡରେ ଏହା ପ୍ରକଟିତ ହୋଇଥିଲା ଶିଳ୍ପ ବିପ୍ଳବ ମଧ୍ୟରେ, ଯିଏକି ଅତି ଶୀଘ୍ର ଗତିମାନ ହୋଇ ଉଠିଥିଲା ଏବଂ ପୁଞ୍ଜିବାଦୀ ଶିଳ୍ପୋତ୍ପାଦନ ବ୍ୟାପକ ହୋଇଥିଲା । ଫ୍ରାନ୍‌ସ, ପ୍ରୁସିଆ ଏବଂ ଅନ୍ୟ କେତେକ ପଶ୍ଚିମ ୟୁରୋପୀୟ ଦେଶରେ ଉତ୍ପାଦନର ପୁଞ୍ଜିବାଦୀ ଚରିତ୍ର ପ୍ରକାଶ ପାଇଥିଲା ବିଶାଳ ଶିଳ୍ପ ରୂପରେ ।

ଏହି ସମୟରେ ପ୍ରଗତିଶୀଳ ଲୋକେ ଏହିସବୁ ଦେଶରେ ପ୍ରତିକ୍ରିୟାଶୀଳ ସାମନ୍ତବାଦୀ ନୀତିକୁ ତୀବ୍ର ଭାବେ ସମାଲୋଚନା କରିଥିଲେ ଏବଂ ଫରାସୀ ଜ୍ଞାନାଲୋକବାଦୀମାନଙ୍କ ଦ୍ୱାରା ପ୍ରଦତ୍ତ ଏକ ଦିଗରେ ସମ୍ରାଟ ଏବଂ ଅନ୍ୟ ଦିଗରେ ଦାର୍ଶନିକମାନଙ୍କ ମଧ୍ୟରେ ଏକ ମୈତ୍ରୀର ଭାବନାଟି ଖୁବ୍ ଜନପ୍ରିୟତା ଲାଭ କରିଥିଲା । ଅବସ୍ଥା ଚକ୍ରରେ ଫ୍ରାନ୍‌ସ, ପ୍ରୁସିଆ ଏବଂ ଅଷ୍ଟ୍ରିଆର ସମ୍ରାଟମାନେ ଚେଷ୍ଟା କରୁଥିଲେ

ସେମାନଙ୍କ ସରକାରକୁ "ଜ୍ଞାନାଲୋକଯୁକ୍ତ ସ୍ୱୈରତନ୍ତ୍ର" ରୂପେ ପରିଚିତ କରିବାକୁ ଏବଂ ଜନପ୍ରିୟ ଦାର୍ଶନିକ ତଥା ବିଖ୍ୟାତ ଲୋକମାନଙ୍କ ଦୃଷ୍ଟିରେ ଉଦାରତାବାଦୀ ବୋଲି ପରିଚିତ ହେବାକୁ । କିନ୍ତୁ ଫରାସୀ ବୁର୍ଜୁଆ ବିପ୍ଳବ ସଂଘଟିତ ହେବା ସଙ୍ଗେ ସଙ୍ଗେ ସେମାନଙ୍କର ଏହି ଉଦାରତାବାଦୀ ଚିନ୍ତାଧାରା ପ୍ରଦର୍ଶନ କରିବା ବନ୍ଦ ହୋଇଗଲା ଏବଂ ୟୁରୋପରେ ସମ୍ରାଟମାନେ ପ୍ରତିକ୍ରିୟାଶୀଳ ଶକ୍ତି ରୂପେ ପ୍ରକାଶ୍ୟରେ ନିଜକୁ ପ୍ରକାଶ କରିଥିଲେ ।

ରୁଷିଆରେ ଏହି ସମୟରେ ପଣ୍ୟ ସଂପର୍କ ପୁଞ୍ଜିବାଦୀ ଢଙ୍ଗରେ ବିକାଶ ଲାଭ କରିବାକୁ ଆରମ୍ଭ କରିଥିଲା । ଏହା ସ୍ପଷ୍ଟ ରୂପେ ପ୍ରକାଶ ପାଇଥିଲା ବସ୍ତ୍ର ଶିଳ୍ପ ଭଳି ନୂଆ ଏକ ଶିଳ୍ପ କ୍ଷେତ୍ରରେ (ଏହା ୧୭୬୦ ଦଶକରେ ପ୍ରତିଷ୍ଠିତ ହୋଇଥିଲା) । ୧୭୯୦ ଦଶକରେ ବସ୍ତ୍ରକଳମାନଙ୍କର ଶତକଡ଼ା ୯୦ ଭାଗ ଶ୍ରମିକ ଥିଲେ ଭଡ଼ାଟିଆ (ଏମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ କୃଷକ, ଏମାନେ ମାର୍ଫି ଜମା ବା କୁଇଟ୍ ରେଣ୍ଟ୍ ଦେବା ଉଦ୍ଦେଶ୍ୟରେ ଏପରି କରୁଥିଲେ) । ଭଡ଼ାଟିଆ ଶ୍ରମିକମାନେ ମଧ୍ୟ କାର୍ପାସ, ରେଶମ ଏବଂ ଧାତୁକାରଖାନାରେ କାମ କରୁଥିଲେ । ଲୌହପିଣ୍ଡ ଉତ୍ପାଦନ କ୍ଷେତ୍ରରେ ରୁଷିଆର ସ୍ଥାନ ବିଶ୍ୱରେ ପ୍ରଥମ ହେଲେ ମଧ୍ୟ ଧାତବ ଶିଳ୍ପୋତ୍ପାଦନରେ ଭୂମିଦାସ ଶ୍ରମିକ ପ୍ରଥା ଚାଲୁଥିଲା ।

୧୮ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଭୂମିଦାସ ପ୍ରଥା କେବଳ ରୁଷିଆର କୃଷି କ୍ଷେତ୍ରରେ ଚାଲୁ ନଥିଲା, ଅତି ନିର୍ମମ ରୂପରେ ପ୍ରତିଷ୍ଠିତ ଥିଲା । ଦ୍ୱିତୀୟ କ୍ୟାଥେରିନ୍‌ଙ୍କର ବହୁ ପ୍ରିୟପାତ୍ର, ଯେଉଁମାନେ ପରସ୍ପରକୁ ଶୀଘ୍ର ଶୀଘ୍ର ସ୍ଥାନାନ୍ତରିତ କରୁଥିଲେ, ସେମାନେ ବହୁ ପରିମାଣର ଜମି ଲାଭ କରିଥିଲେ ଏବଂ ସେଥିରେ ଭୂମିଦାସମାନଙ୍କୁ ବଳପୂର୍ବକ ବସାଯାଇଥିଲା । ତାଙ୍କ ରାଜତ୍ୱକାଳରେ ଜମିଦାରମାନେ ୮୫୦,୦୦୦ ଭୂମିଦାସ ଲାଭ କରିଥିଲେ । ଭୂମିଦାସ ପ୍ରଥାର ଗଠନ କାର୍ଯ୍ୟ ରୁଷିଆ ସହିତ ସଂପ୍ରତି ଯୁକ୍ତ ହୋଇଥିବା ୟୁକ୍ରେନୀୟ ଅଞ୍ଚଳ ସମେତ ସମଗ୍ର ୟୁକ୍ରାଇନ୍‌ରେ ସଂପୂର୍ଣ୍ଣ ହୋଇଥିଲା । ମଠମାନଙ୍କର ଜମିମାଲିକାନାକୁ ଉଚ୍ଛେଦ କରାଯାଇଥିଲା ଜମିଦାରମାନଙ୍କର ଶକ୍ତି ଓ କ୍ଷମତା ଅଭିବୃଦ୍ଧି କରିବା ଲକ୍ଷ୍ୟରେ । ଜମିଦାରମାନେ ସେମାନଙ୍କ କୃଷକମାନଙ୍କୁ କଠିନ ଶ୍ରମଦଣ୍ଡରେ ଦଣ୍ଡିତ କରିବାର ଅଧିକାର ଲାଭ କରିଥିଲେ । ଭୂମିଦାସଗୃଷୀମାନଙ୍କର ଆଇନଗତ ଅବସ୍ଥାନ କ୍ରୀତଦାସମାନଙ୍କ ଠାରୁ ବିଶେଷ ତଫାତ୍ ନଥିଲା । ତେଣୁ ସେମାନଙ୍କ ପକ୍ଷରେ ମାଲିକମାନଙ୍କ ବିରୁଦ୍ଧରେ ଅଭିଯୋଗ କରିବା ଦୃଢ଼ ଭାବେ ନିଷିଦ୍ଧ ଥିଲା । ସମ୍ଭ୍ରାନ୍ତମାନଙ୍କର କ୍ରମାଗତ ଭାବେ ସଂପଦର ଅଭିବୃଦ୍ଧି ଘଟୁଥିଲା ଏବଂ ଲୋକେ କ୍ରମାଗତ ଗରିବ ହେବାରେ ଲାଗିଥିଲେ ଏବଂ ଉଭୟ ସଂପ୍ରଦାୟ ମଧ୍ୟରେ ଜୀବନର ସମସ୍ତ କ୍ଷେତ୍ରରେ ପାର୍ଥକ୍ୟ ବଢ଼ି ଚାଲିଥିଲା । ଏପରିକି ଭାଷା କ୍ଷେତ୍ରରେ ମଧ୍ୟ । ସମ୍ଭ୍ରାନ୍ତମାନେ ଫରାସୀକୁ ନିଜର ଭାଷା କରି ନେଇଥିଲେ ।

ଦେଶର ଦକ୍ଷିଣାଂଶରେ ବଡ଼ ବଡ଼ ମାହାଲସବୁ ଏବଂ ଅପେକ୍ଷାକୃତ ଛୋଟ ମାହାଲସବୁ କେନ୍ଦ୍ରାଞ୍ଚଳର କୃଷ୍ଣ ମୃତ୍ତିକା ଭୂଖଣ୍ଡରେ ମଧ୍ୟ ଭଡ଼ାରେ କୃଷକମାନଙ୍କୁ ନେବାକୁ ଆରମ୍ଭ କରି ଦେଇଥିଲେ । ଶିଳ୍ପୋଦ୍ୟୋଗଗୁଡ଼ିକରେ କୃଷକମାନେ ଏପରି କରିବାର ଉଦ୍ଦେଶ୍ୟ ହେଲା ସେମାନଙ୍କ ଜମିଦାରମାନଙ୍କୁ ମାଫି ଜମା ଦେବା ପାଇଁ ଅର୍ଥ ଉପାର୍ଜ୍ଜନ କରିବା । କିନ୍ତୁ କୃଷକମାନଙ୍କ ମଧ୍ୟରୁ ଅଧିକାଂଶ ସେପର୍ଯ୍ୟନ୍ତ ଭୂମିଦାସ ଥିଲେ ଏବଂ ବେଗାର ଖଟୁଥିଲେ ।

ପଶ୍ଚିମ ୟୁରୋପର କେତେକ ସମ୍ରାଟମାନଙ୍କ ଭଳି ଦ୍ୱିତୀୟ କ୍ୟାଥେରିନ୍ – ତାଙ୍କ ଶାସନର ପ୍ରଥମ ଦଶକରେ ଜ୍ଞାନାଲୋକର ଚିନ୍ତାଧାରାର ଉପଯୋଗ କରିବାକୁ ଚେଷ୍ଟା କରିଥିଲେ । ସେସବୁ ଚିନ୍ତାଧାରା ସେତେବେଳେ ରୁଷିଆରେ, ସମ୍ଭ୍ରାନ୍ତ ସଂପ୍ରଦାୟର କେତେକ ପ୍ରଗତିଶୀଳ ଗୋଷ୍ଠୀଙ୍କ ମଧ୍ୟରେ ଜନପ୍ରିୟ ଥିଲା ସ୍ୱୈରତନ୍ତ୍ର ଏବଂ ଭୂମିଦାସ ପ୍ରଥାର ସ୍ୱାର୍ଥରେ । ଦ୍ୱିତୀୟ କ୍ୟାଥେରିନ୍ ଭୋଲ୍‌ଟାୟାର, ଡିଡେରୋଟ ଏବଂ ଅନ୍ୟାନ୍ୟ ଫରାସୀ ଜ୍ଞାନାଲୋକବାଦୀଙ୍କ ସହିତ ପତ୍ରାଳାପ କରୁଥିଲେ । ତାଙ୍କର ଏହି ନୀତିର, ଦୃଷ୍ଟାନ୍ତ ସ୍ୱରୂପ, ୧୭୬୭ ଖ୍ରୀଷ୍ଟାବ୍ଦରେ ଏକ କମିସନ ସେ ବସାଇଥିଲେ ଏକ ନୂତନ ଆଇନ୍ ସଂହିତା ପ୍ରଣୟନ କରିବା ନିମିତ୍ତ; ଏହି କମିସନକୁ ନିର୍ବାଚନ କରିବାରେ କେବଳ ସମ୍ଭ୍ରାନ୍ତ ଏବଂ ବଣିକମାନେ ଅଂଶଗ୍ରହଣ କରି ନଥିଲେ, ରାଷ୍ଟ୍ରୀୟ କୃଷକମାନେ ମଧ୍ୟ ଅଂଶଗ୍ରହଣ କରିଥିଲେ । କମିସନକୁ କ୍ୟାଥେରିନ୍‌ଙ୍କ ଦ୍ୱାରା ଲିଖିତ କେତେକ ନିର୍ଦ୍ଦେଶରେ ଫରାସୀ ଜ୍ଞାନାଲୋକବାଦୀମାନଙ୍କର କେତେକ ଚିନ୍ତାଧାରାକୁ ଉଧାର କରାଯାଇଥିଲା । କିନ୍ତୁ କମିସନରେ ଯେଉଁମାନେ କୃଷକମାନଙ୍କ ଦୁଃଖ ଦୁର୍ଦ୍ଦଶାକୁ ଲାଘବ କରିବା ନିମିତ୍ତ ଏବଂ ଜମିଦାରମାନଙ୍କ ମନ ଇଚ୍ଛା କ୍ରିୟାକଳାପର ତୀବ୍ର ସମାଲୋଚନା କରିଥିଲେ ସେମାନଙ୍କ ଚୁପ୍ କରି ଦିଆଯାଇଥିଲା ଏବଂ କମିସନରେ କାର୍ଯ୍ୟକୁ ବନ୍ଦ କରି ଦିଆଗଲା ।

ରୁଷିଆରେ "ଜ୍ଞାନାଲୋକବାଦୀ ସ୍ୱୈରତନ୍ତ୍ରର" ତଥାକଥିତ ନୀତି ଅଧିକାଂଶ ସମୟରେ ଦ୍ୱିତୀୟ କ୍ୟାଥେରିନ୍‌ଙ୍କ ପ୍ରତି ମୁଖ୍ୟତଃ ପ୍ରଯୁଜ୍ୟ ହୋଇଥାଏ, କିନ୍ତୁ ପ୍ରକୃତରେ ଏହା ଦେଖା ଦେଇଥିଲା ୧୭୫୦ ଦଶକରେ (ଏଲିଜାବେଥ୍‌ଙ୍କ ଶାସନ କାଳରେ) ।

ଦ୍ୱିତୀୟ କ୍ୟାଥେରିନ୍‌ଙ୍କ ରାଜତ୍ୱକାଳରେ ରୁଷିଆର ବହୁ ସାଫଲ୍ୟର ମୂଳରେ ଥିଲା ତାଙ୍କର ଶାସନର ପୂର୍ବବର୍ତ୍ତୀ ଦଶକର ସଂସ୍କାରକ, ସେନାପତି ଏବଂ ବିଦ୍ୱାନ୍‌ମାନଙ୍କର କ୍ରିୟାକଳାପ ।

ରୁଷିଆର ଦକ୍ଷିଣବର୍ତ୍ତୀ କୃଷ୍ଣ ମୃତ୍ତିକା ଅଞ୍ଚଳଗୁଡ଼ିକର ବିକାଶ ଓ ଫଳପ୍ରଦ ଉପଯୋଗ ଯେଉଁଠି କିୟେଭ୍ ରୁଷିଆ ଅମଳରେ ସ୍ଲାଭ୍‌ମାନେ ବାସ କରିଥିଲେ, ଜରୁରୀ ହୋଇ ପଡ଼ିଥିଲା ତୁର୍କୀର ଏକ କରଦରାଜ୍ୟ କ୍ରିମୀୟ ଖାନାତେର ଧ୍ୱଂସାତ୍ମକ ଆକ୍ରମଣର ଅବସାନ ଘଟାଇବା । ତେବେ ତୁର୍କୀ ବିରୁଦ୍ଧରେ ସଂଗ୍ରାମ କେବଳ ସଫଳ ହୋଇ

ପାରନ୍ତା , ଯଦି ପଶ୍ଚିମ ୟୁରୋପର ଦେଶମାନଙ୍କ ସହିତ ଦୃଢ଼ ଶାନ୍ତିପୂର୍ଣ୍ଣ ସଂପର୍କ ରହେ । କିନ୍ତୁ ଫ୍ରାନ୍‌ସ ଏବଂ ଅଷ୍ଟ୍ରିଆ ଥିଲେ ରୁଷିଆ ପ୍ରତି ଶତ୍ରୁ ଭାବାପନ୍ନ ଏବଂ କୃଷ୍ଣ ସାଗର ଆଡ଼କୁ ରୁଷିଆର ଅଗ୍ରଗତିମୂଳକ ନୀତିକୁ ଇଂଲଣ୍ଡ ଏବଂ ସୁଇଡେନ୍ ଅପେକ୍ଷାକରି ଅବସ୍ଥାନ ଗ୍ରହଣ କରିଥିଲେ । ରୁଷିଆ କେବଳ ପ୍ରୁସିଆ ଏବଂ ଡେନ୍‌ମାର୍କ ସହିତ ମିତ୍ର ଚୁକ୍ତିରେ ଆବଦ୍ଧ ଥିଲା ।

ଏହିଭଳି ଅବସ୍ଥାରେ ଅଷ୍ଟ୍ରିଆ ଏବଂ ଫ୍ରାନ୍‌ସର ପ୍ରରୋଚନା କ୍ରମେ ୧୭୬୮ ମସିହାରେ ତୁର୍କୀ ରୁଷିଆ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ଦେଲା । ତୁର୍କୀର ସାମନ୍ତ ପ୍ରଭୁମାନଙ୍କ ଦ୍ୱାରା ଉତ୍ପୀଡ଼ିତ କକେସୀୟ ଏବଂ ବଲକାନ୍ ଜାତିମାନଙ୍କର ସମବେଦନା ତଥା ସହାୟତାରେ ରୁଷିଆର ସେନାପତି (ପି.ଏ.ରୁମ୍ୟାନ୍‌ତ୍ସେଭ୍ ଏବଂ ଏ.ଭି.ସୁଭୋରୋଭ୍) ଏବଂ ଆଡମିରାଲଗଣଙ୍କ (ପି.ଏ.ସ୍ପିରିଦୋଭ୍ ପ୍ରମୁଖ) ପ୍ରତିଭା ଏବଂ ସର୍ବୋପରି ରୁଷୀୟ ସୈନିକମାନଙ୍କର ବୀରତ୍ୱ ଫଳରେ ଏହି ଯୁଦ୍ଧରେ ବିଜୟ ହାସଲ ହୋଇଥିଲା ।

୧୭୭୪ ମସିହାରେ ତୁର୍କୀ ସହିତ ରୁଷିଆ ସନ୍ଧିରେ ସ୍ୱାକ୍ଷର କଲା । ପୂର୍ବେ ତୁର୍କୀ ଦ୍ୱାରା ଅଧିକୃତ ଉତ୍ତର କକେସସ୍‌ର ଭୂଖଣ୍ଡସମୂହକୁ ରୁଷିଆ ଫେରି ପାଇଲା । କ୍ରିମୀୟ ଖାନାତେ ତୁର୍କୀର କରଦରାଜ୍ୟ ହୋଇ ଆଉ ରହିଲା ନାହିଁ ଏବଂ କିଛି ବର୍ଷ ପରେ ରୁଷିଆ ସହିତ ମିଶିଗଲା । ରୁଷିଆର ବାଣିଜ୍ୟ ତରୀଗୁଡ଼ିକ ତା'ପରେ କୃଷ୍ଣ ସାଗରରୁ ଭୂମଧ୍ୟ ସାଗରକୁ ଜଳପ୍ରଣାଳୀ ଦେଇ ଅବାଧରେ ପ୍ରବେଶ କରିବାର ଅଧିକାର ଲାଭ କଲେ ।

ତେବେ, ଏହିସବୁ ସାମରିକ ବିଜୟ ଦ୍ୱାରା ବ୍ୟାପକ କୃଷକ ଜନସାଧାରଣଙ୍କ କୌଣସି ଲାଭ ହେଲା ନାହିଁ । କ୍ରମବର୍ଦ୍ଧମାନ ସାମନ୍ତୀୟ ଉତ୍ପୀଡ଼ନ ଫଳରେ ୧୮ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ରୁଷିଆରେ ଗଣ ଅସନ୍ତୋଷ ଦେଖା ଦେବାକୁ ଲାଗିଲା । ୧୭୬୨ ମସିହାରେ ଦ୍ୱିତୀୟ କ୍ୟାଥେରିନ୍ ସ୍ୱୀକାର କରିଥିଲେ ଯେ, ପ୍ରାୟ ଦୁଇ ଲକ୍ଷ କୃଷକ ବିଦ୍ରୋହ କରିବା ଅବସ୍ଥାକୁ ଆସି ଯାଇଛନ୍ତି । ସର୍ବବୃହତ୍ ଭୂମିଦାସ ପ୍ରଥା ବିରୋଧୀ ଅଭ୍ୟୁତ୍‌ଥାନଟି ଘଟିଥିଲା ୧୭୭୩-୧୭୭୫ ଖ୍ରୀଷ୍ଟାବ୍ଦରେ : ଏହି କୃଷକ ସମରର ନେତୃତ୍ୱ ନେଇଥିଲେ ୟେମେଲ୍ୟାନ୍ ପୁଗାଚୋଭ୍ । ପୁଗାଚୋଭ୍ ଥିଲେ ଦନ୍‌ର ଜଣେ କସାକ, ତେଜସ୍ୱୀ ଏବଂ ଦୁଃସାହସିକ ସଂଗଠକ । ସେ ନିଜକୁ ସମ୍ରାଟ ତୃତୀୟ ପିଟର ବୋଲି ଘୋଷଣା କରିଥିଲେ । ଏହି ଅଭ୍ୟୁତ୍‌ଥାନର ନିଆଁ ଜଳି ଉଠିଥିଲା ୟାଇକ୍ କସାକ୍‌ମାନଙ୍କ ମଧ୍ୟରେ ଏବଂ ଅବିଳମ୍ବେ ଏହା ୟୁରାଲ୍ ତଥା ଭୋଲ୍‌ଗାର ବ୍ୟାପକ ଅଞ୍ଚଳକୁ ବ୍ୟାପୀ ଯାଇଥିଲା । ବିଦ୍ରୋହୀମାନଙ୍କ ସହିତ ଯୋଗ ଦେଇଥିଲେ ଭୂମିଦାସ କୃଷକଗଣ ଏବଂ ଜାର୍‌ତନ୍ତ୍ର ଦ୍ୱାରା ଉତ୍ପୀଡ଼ିତ ଅଣରୁଷୀୟ ଶ୍ରମଜୀବୀ ଲୋକେ । ବାସ୍‌କିର କବି ସାଲାଭାତ ୟୁଲାଏଭ୍ ଥିଲେ ପୁଗାଚୋଭ୍‌ଙ୍କ ଅନୁଗାମୀମାନଙ୍କ ମଧ୍ୟରେ

ଅନ୍ୟତମ । ଏହି ଅଭ୍ୟୁତ୍‌ଥାନରେ କଳକାରଖାନାର ଶ୍ରମିକମାନଙ୍କର ଅଂଶଗ୍ରହଣଟି ଥିଲା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ; ୟୁରାଲସ୍‌ର ଶିଳ୍ପକାରଖାନାର ଶତକଡ଼ା ୭୫ ଭାଗ ବିଦ୍ରୋହୀମାନଙ୍କ ଦଖଲକୁ ଆସି ଯାଇଥିଲା । ପ୍ରଥମ ଥର ପାଇଁ ଶ୍ରମଜୀବୀ ଜନସାଧାରଣ, ପୂର୍ବ-ସର୍ବହରା ଏବଂ କୃଷକମାନେ ମିଳିତ ଭାବେ ସାମନ୍ତୀୟ ବିଶେଷ ସୁବିଧାରାଜି ବିରୁଦ୍ଧରେ ଲଢ଼େଇ କରିଥିଲେ । ଏହି ବିଦ୍ରୋହର ସ୍ଫୁଲିଙ୍ଗ ମସ୍କୋରେ ଆସି ପହଞ୍ଚି ଯାଇଥିଲା । ବିଦ୍ରୋହୀମାନେ ଜମିଦାର, କାରଖାନା ମାଲିକ ତଥା ସେମାନଙ୍କ ଦଲାଲମାନଙ୍କ ପ୍ରତି କୌଣସି ଦୟା ପ୍ରଦର୍ଶନ କରି ନଥିଲେ । ସମ୍ଭ୍ରାନ୍ତମାନେ ଭୟଭୀତ ହୋଇ ପଡ଼ିଲେ ଏବଂ ବିରାଟ ଆକାରର ସାମରିକ ବାହିନୀକୁ ପ୍ରେରଣ କରାଯାଇଥିଲା ଏହି ବିଦ୍ରୋହକୁ ଦମନ କରିବା ପାଇଁ ।

ନିୟମିତ ସେନାଦଳଗୁଡ଼ିକ ସହିତ ବିଦ୍ରୋହୀମାନେ ଲଢ଼ି ପାରି ନଥିଲେ । ରାଜିନ୍‌ଙ୍କ ନେତୃତ୍ୱରେ ପରିଚାଳିତ କୃଷକ ସମର ଭଳି, ଏହି ଯୁଦ୍ଧରେ ଅଂଶଗ୍ରହଣକାରୀମାନଙ୍କ ସାମାଜିକ-ରାଜନୈତିକ ଚିନ୍ତାଧାରା ଥିଲା ଅପରିପୁଷ୍ଟ ଏବଂ ସରଳ । ସେମାନେ "ଦୟାଳୁ କୃଷକ ଜାର୍" ଉପରେ ବିଶ୍ୱାସ କରୁଥିଲେ ଏବଂ ସାମନ୍ତୀୟ ନିର୍ଭରଶୀଳତା ବିରୁଦ୍ଧରେ ପରିଚାଳିତ ସାଧାରଣ ସଂଗ୍ରାମରେ ସ୍ଥାନୀୟ ଅଥବା ସଂକୀର୍ଣ୍ଣ ସାମାଜିକ ସ୍ୱାର୍ଥ ଦ୍ୱାରା ସୀମିତ ହୋଇ ପଡ଼ିଥିଲେ । ଜମିଦାରମାନଙ୍କ ଅଧୀନସ୍ଥ କୃଷକମାନେ ଥିଲେ ଭୂମିଦାସ ପ୍ରଥା ବିରୁଦ୍ଧରେ ସବୁଠାରୁ ସକ୍ରିୟ ଯୋଦ୍ଧା । କିନ୍ତୁ ସେମାନଙ୍କର ସ୍ଥାନୀୟ ଦାବିଗୁଡ଼ିକ ମେଣ୍ଟିଗଲା ପରେ ସେମାନେ ମଧ୍ୟ ଯୁଦ୍ଧରୁ ଓହରି ଯାଇଥିଲେ । ଏସବୁ ଫଳରେ ପୁଗାଚୋଭ୍‌ଙ୍କ ଶକ୍ତି ଦୁର୍ବଳ ହୋଇ ପଡ଼ିଥିଲା । ଶେଷରେ ପୁଗାଚୋଭ୍‌ଙ୍କ ସହିତ ବିଶ୍ୱାସଘାତକତା କଲେ ଧନୀ କସାକ୍‌ମାନେ । ମସ୍କୋରେ ତାଙ୍କୁ ମୃତ୍ୟୁଦଣ୍ଡ ଦିଆଗଲା । ତା'ପରେ ବହି ଯାଇଥିଲା ରକ୍ତର ସୁଅ । ଭେଳା ଉପରେ ହଜାର ହଜାର ଫାଶିଖୁଣ୍ଟକୁ ବି ଭସାଇ ଦିଆଗଲା ନଦୀମାନଙ୍କରେ । ବିଦ୍ରୋହୀମାନଙ୍କ କପାଳରେ ତାତିଲା ଲୁହାରେ ଲେଖା ହୋଇଥିଲା "ବଦମାସ୍" । ସେମାନଙ୍କ ନାକ ପୁଡ଼ାକୁ ଚିରି ଓଲଟେଇ ଦିଆଯାଇଥିଲା ଏବଂ କଠୋର ଶ୍ରମଦଣ୍ଡ ସେମାନେ ଭୋଗିଥିଲେ ।

ଏହି କୃଷକ ଯୁଦ୍ଧ ଫଳରେ ସାମନ୍ତଭୂମିଦାସ ରାଷ୍ଟ୍ର କଂପି ଉଠିଥିଲେ ଏବଂ ସାମ୍ରାଜ୍ଞୀଙ୍କ ଚତୁର୍ପାର୍ଶ୍ୱରେ ସମ୍ଭ୍ରାନ୍ତମାନେ ଏକଜୁଟ ହୋଇଥିଲେ ଦ୍ୱିତୀୟ କ୍ୟାଥେରିନ୍‌ଙ୍କ ସରକାର ଶାସକ ଶ୍ରେଣୀଗୁଡ଼ିକର ଅଧିକାର ତଥା ସୁବିଧାସମୂହକୁ ସୁଦୃଢ଼ କରିବା ନିମିତ୍ତ ସଂସ୍କାରମାନ କାର୍ଯ୍ୟକାରୀ କରି ଚାଲିଥିଲା ।

୧୭୭୫ ମସିହାରେ "ରୁଷ୍ ସାମ୍ରାଜ୍ୟର ପ୍ରଦେଶଗୁଡ଼ିକର ଶାସନ ସଂପର୍କରେ ଏକ ନିର୍ଦ୍ଦେଶନାମା" ଜାରି କରାଗଲା । ସମଗ୍ର ସାମ୍ରାଜ୍ୟକୁ ୫୦ଟି ପ୍ରଦେଶରେ ଭାଗ କରି ଦିଆଗଲା ଏବଂ ପ୍ରତ୍ୟେକଟି ପ୍ରଦେଶକୁ ଶାସନ କଲେ ସାମ୍ରାଜ୍ଞୀଙ୍କର ଜଣେ ଜଣେ ବିଶ୍ୱସ୍ତ ବଡ଼ଲାଟ୍ । ଏହି ଭାବେ କେନ୍ଦ୍ରୀକୃତ ସରକାରର ପୁଲିସ୍-ଅମଲାତାନ୍ତ୍ରିକ ଚରିତ୍ରକୁ

ଦ୍ରୁତ ଗତିରେ ଦୃଢ଼ କରାଗଲା ଏବଂ ସ୍ଥାନୀୟ ଭାବେ ସମ୍ଭ୍ରାନ୍ତଙ୍କ କ୍ଷମତାକୁ ବଢ଼ାଇ ଦିଆଗଲା । ୧୭୭୫ ମସିହାରେ ପ୍ରବର୍ତ୍ତିତ ମୁକ୍ତ ବାଣିଜ୍ୟ ଏବଂ ଶିଳ୍ପ ସଂକ୍ରାନ୍ତ ଇସ୍ତାହାର ଦ୍ୱାରା ସାମନ୍ତମାନଙ୍କ ମାହାଲଗୁଡ଼ିକ ନିଜକୁ ନୂଆ ଅବସ୍ଥା ସହିତ ଖାପ ଖୁଆଇ ନେଇଥିଲେ । ୧୭୮୫ରେ ପ୍ରବର୍ତ୍ତିତ ଏକ ବିଶେଷ ସନନ୍ଦରେ ସମ୍ଭ୍ରାନ୍ତମାନଙ୍କର ଅଧିକାର ତଥା ସୁବିଧା ସୁଯୋଗସମୂହକୁ ଲିପିବଦ୍ଧ କରାଯାଇଥିଲା । ଏହା ଦ୍ୱାରା ସହରସ୍ଥ ଜମି ଏବଂ କୃଷକ ଭୂମିଦାସମାନଙ୍କ ଉପରେ ସମ୍ଭ୍ରାନ୍ତମାନଙ୍କ ଏକଛତ୍ର ଅଧିକାରକୁ ପୁନର୍ବାର ସ୍ୱୀକାର କରାଗଲା । ସହରଗୁଡ଼ିକ ସଂପର୍କିତ ସନନ୍ଦଟି (୧୭୮୫) ସହରର ଉଚ୍ଚ ଶ୍ରେଣୀମାନଙ୍କର ଆବଶ୍ୟକତାକୁ ପୂରଣ କରିବା ସଙ୍ଗେ ସଙ୍ଗେ ସହର ଜୀବନର ସାମନ୍ତୀୟ ରୂପକୁ ଦୃଢ଼ୀଭୂତ କରିଥିଲା ।

ସମଗ୍ର ଦେଶରେ କେନ୍ଦ୍ରୀୟଭୂତ ଅମଲାତାନ୍ତ୍ରିକ ରାଷ୍ଟ୍ର ବ୍ୟବସ୍ଥାର ପ୍ରଚଳନ ଉଦ୍ଦେଶ୍ୟରେ ଦ୍ୱିତୀୟ କ୍ୟାଥେରିନ୍‌ଙ୍କ ସରକାର ଜାପୋରୋଝ୍‌ସ୍କାୟା ସେଚ୍ (ଦନିପର ନଦୀର କୂଳବର୍ତ୍ତୀ ସ୍ୱାୟତ୍ତଶାସିତ ଅଞ୍ଚଳ), ଦନିପରର ପୂର୍ବବର୍ତ୍ତୀ ୟୁକ୍ରାଇନ୍‌ର ସ୍ୱାୟତ୍ତଶାସନର ଅବଶେଷାଂଶକୁ ଉଚ୍ଛେଦ କରି ତତ୍‌କାଳୀନ ରୁଷିଆରେ ପ୍ରଚଳିତ ଏକ ପ୍ରକାରର ଶାସନ ବ୍ୟବସ୍ଥା ପ୍ରଚଳନ କରିଥିଲେ, ଅର୍ଥାତ୍, ସେସବୁ ଅଞ୍ଚଳକୁ କେତୋଟି ପ୍ରଦେଶରେ ଭାଗଭାଗ କରି ଦେଇଥିଲେ । କସାକ୍‌ମାନଙ୍କ ଉପରି ସ୍ତରଟିକୁ ସମ୍ଭ୍ରାନ୍ତମାନଙ୍କ ସହିତ ସମାନ ଅଧିକାର ପ୍ରଦାନ କରାଗଲା । ୟୁକ୍ରାଇନ୍‌ର ଭୂମିଦାସମାନଙ୍କ ଉପରେ କ୍ରମାଧିକ ଉତ୍ପୀଡ଼ନ ଫଳରେ କୃଷକମାନେ ବହୁବାର ପ୍ରତିବାଦ କରିଥିଲେ ।

କସାକମାନଙ୍କୁ ଏକ ସୁସଂଗଠିତ ସାମରିକ ଶକ୍ତି ହିସାବରେ ରୁଷିଆରେ ଅନ୍ୟାନ୍ୟ ଉପାନ୍ତ ଅଞ୍ଚଳରେ କେବଳ ଏହାର ସୀମାନ୍ତର ସୁରକ୍ଷା ପାଇଁ ବ୍ୟବହାର କରାଯାଇ ନଥିଲା । ଜାର୍‌ସାହୀ ସରକାରର ଉପନିବେଶବାଦୀ ନୀତିରାଜି ବିରୁଦ୍ଧରେ ସେସବୁ ଅଞ୍ଚଳର ଜନ ଅଭ୍ୟୁତ୍‌ଥାନକୁ ଦମନ କରିବା ଉଦ୍ଦେଶ୍ୟରେ ସରକାର କସାକମାନଙ୍କୁ ଏକ ବିଚ୍ଛିନ୍ନ ଅର୍ଦ୍ଧସୁବିଧାଭୋଗୀ ମାହାଲରେ ପରିଣତ କରି ଦେଇଥିଲା ଏବଂ ସେମାନଙ୍କ ଉପର ସ୍ତରର ଅର୍ଥନୈତିକ ପ୍ରାଧାନ୍ୟ ତଥା ରାଜନୈତିକ ଶକ୍ତିକୁ ଦୃଢ଼ କରିଥିଲା । ବାତିର୍ ସ୍ରିମ୍‌ଙ୍କ ନେତୃତ୍ୱରେ ପରିଚାଳିତ ମଧ୍ୟ ଏସିଆର କାଜାଖ୍ ପଶୁପାଳକମାନଙ୍କର ଗଣ ଆନ୍ଦୋଳନ (୧୭୮୩-୧୭୯୭) ସମେତ ଜାର୍ ଦ୍ୱାରା ଉତ୍ପୀଡ଼ିତ ଅନ୍ୟାନ୍ୟ ଜାତିମାନଙ୍କର "ସେମାନଙ୍କ" ସାମନ୍ତ ପ୍ରଭୁ ତଥା ଜାର୍‌ଶାହୀ ଉପନିବେଶବାଦୀମାନଙ୍କ ବିରୁଦ୍ଧରେ ଅନ୍ୟାନ୍ୟ ଅଭ୍ୟୁତ୍‌ଥାନକୁ ଦମନ କରିବା ଦିଗରେ ଦ୍ୱିତୀୟ କ୍ୟାଥେରିନ୍ ସରକାର ସ୍ଥାନୀୟ ସାମନ୍ତବାଦୀ ଉପର ସ୍ତରକୁ ସମସ୍ତ ପ୍ରକାରର ସହାୟତା ପ୍ରଦାନ କରିଥିଲା ଏବଂ ଜନସାଧାରଣଙ୍କୁ ନିର୍ମମ ଭାବେ ଦମନ କରିଥିଲା ।

୧୮ଶ ଶତାବ୍ଦୀର ଶେଷ ଅଂଶରେ ଜାର୍‌ତନ୍ତ୍ରର ବୈଦେଶିକ ନୀତି ମଧ୍ୟ ପ୍ରତିକ୍ରିୟାଶୀଳ ଥିଲା । ବିପ୍ଳବୀ ଫ୍ରାନ୍‌ସ ବିରୁଦ୍ଧରେ ବ୍ରିଟେନ୍‌ର ନେତୃତ୍ୱ ତଥା

ଅନୁପ୍ରେରଣାରେ ୟୁରୋପର ସମ୍ରାଟମାନଙ୍କର ମେଣ୍ଟ ଗଠନରେ ଦ୍ୱିତୀୟ କ୍ୟାଥେରିନ୍‌ଙ୍କ ସରକାର ଏକ ସକ୍ରିୟ ଭୂମିକା ପାଳନ କରିଥିଲ ।

ପୋଲଣ୍ଡ ସମସ୍ୟା କ୍ଷେତ୍ରରେ ମଧ୍ୟ ଏହି ପ୍ରତିକ୍ରିୟାଶୀଳ ନୀତିର ପରିପ୍ରକାଶ ଘଟିଥିଲ । ଜାର୍‌ସାହୀ ସରକାର ତା'ର କୂଟନୈତିକ ଉଦ୍ଦେଶ୍ୟ ସାଧନ କରିବା ଆଶାରେ ପ୍ରୁସିଆର ରାଜା ଦ୍ୱିତୀୟ ଫ୍ରେଡେରିକ୍‌ଙ୍କ ପ୍ରସ୍ତାବ କ୍ରମେ ପୋଲଣ୍ଡର ଭୂଖଣ୍ଡକୁ ପ୍ରୁସିଆ, ଅଷ୍ଟ୍ରିଆ ଏବଂ ରୁଷିଆ ମଧ୍ୟରେ ଭାଗ ଭାଗ କରି ନେବାକୁ ୧୭୭୨ ମସିହାରେ ରାଜି ହୋଇଥିଲ । ଏହା ଫଳରେ ରୁଷିଆ ତା'ର ପୂର୍ବତନ ଅଞ୍ଚଳଗୁଡ଼ିକୁ ଫେରି ପାଇଥିଲ । ଏହିସବୁ ଅଞ୍ଚଳର ଅଧିବାସୀ ଥିଲେ ବେଲରୁଷୀୟ ଏବଂ ୟୁକ୍ରେନୀୟ ଲୋକେ । ପୂର୍ବେ ଏହିସବୁ ଅଞ୍ଚଳକୁ ପୋଲଣ୍ଡ ଦଖଲ କରି ନେଇଥିଲ । ୧୭୯୩, ଦ୍ୱିତୀୟ କ୍ୟାଥେରିନ୍ ସରକାର ଫରାସୀ ବିପ୍ଳବ ଏବଂ ଏହି ବିପ୍ଳବ ଦ୍ୱାରା ଅନୁପ୍ରାଣିତ ପୋଲଣ୍ଡରେ ମୁକ୍ତି ଆନ୍ଦୋଳନ ପ୍ରତି ଘୃଣା ଦ୍ୱାରା ପରିଚାଳିତ ହୋଇ ପୋଲଣ୍ଡକୁ ପୁନର୍ବିଭାଗ କରିବାକୁ ରାଜି ହୋଇ ଯାଇଥିଲ । ଏହି ପୁନର୍ବିଭାଜନ ଥିଲ ଫ୍ରାନ୍‌ସ ବିରୋଧୀ ମେଣ୍ଟରେ ପ୍ରୁସିଆର ଯୋଗଦାନ ପାଇଁ ତାକୁ ପୁରସ୍କାର ପ୍ରଦାନ ସ୍ୱରୂପ । ପ୍ରୁସିଆ, ଅଷ୍ଟ୍ରିଆ ଏବଂ ରୁଷିଆ ମଧ୍ୟରେ ପୋଲଣ୍ଡର ଏହି ତୃତୀୟ ବିଭାଜନ ଫଳରେ (୧୭୯୫) ପୋଲିସ୍ ରାଷ୍ଟ୍ର ତା'ର ଅସ୍ତିତ୍ୱ ହରେଇ ବସିଲ । ରୁଷିଆ ଲଭ କଲ ପଶ୍ଚିମ ବେଲୋରୁଷିଆ, ଭୋଲିନିଆ ଏବଂ କେତେକ ବଲ୍‌ଟିକ୍ ଅଞ୍ଚଳ । ପ୍ରାଚୀନ ପୋଲିସ୍ ଅଞ୍ଚଳଗୁଡ଼ିକୁ ପ୍ରୁସିଆ ଏବଂ ଅଷ୍ଟ୍ରିଆ ମଧ୍ୟରେ ଭାଗ ଭାଗ କରି ଦିଆଗଲ ।

ୟୁକ୍ରେନୀୟ ଏବଂ ବେଲୋରୁଷୀୟମାନେ ବାସ କରୁଥିବା ପୂର୍ବତନ ରୁଷୀୟ ଭୂଖଣ୍ଡଗୁଡ଼ିକର ରୁଷିଆ ସହିତ ପୁନର୍ମିଳନ ଥିଲ ରୁଷିଆର ଏକ ପରମ୍ପରାଗତ ନୀତି । ଏହି ନୀତିକୁ ରୁଷିଆ ଉତ୍ତରାଧିକାର ସୂତ୍ରରେ ଲଭ କରିଥିଲ ୧୫ଶ ଶତାବ୍ଦୀର ମସ୍କୋ ମହାରାଜାମାନଙ୍କ ଠାରୁ । ତେବେ ସେ ନୀତି କେବେହେଲେ ଇତିପୂର୍ବରୁ ପୋଲିସ୍ ରାଷ୍ଟ୍ରକୁ ଧ୍ୱଂସ କରି ଦେବା ଲକ୍ଷ୍ୟରେ ପରିଚାଳିତ ହୋଇ ନଥିଲ । ଦ୍ୱିତୀୟ କ୍ୟାଥେରିନ୍‌ଙ୍କ ପକ୍ଷରୁ ପୋଲଣ୍ଡକୁ ଭାଗ ଭାଗ କରି ଦେବା ପାଇଁ ସ୍ୱୀକୃତି ପ୍ରଦାନ ଥିଲ ରୁଷିଆର ପାରମ୍ପରିକ ନୀତି ତଥା ତା'ର ଜାତୀୟ ସ୍ୱାର୍ଥର ବିରୋଧୀ । ଏହି ଜାତୀୟତା ବିରୋଧୀ ନୀତି ପରସ୍ପର ସହିତ ସଂପୃକ୍ତ ସ୍ଲାଭ–ପୋଲ୍ ଏବଂ ରୁଷୀୟମାନଙ୍କ ମଧ୍ୟରେ ଶତ୍ରୁତାର ନିଆଁ ଜଳାଇବା ପାଇଁ ଇନ୍ଧନ ଯୋଗାଇଥିଲ ।

ଦ୍ୱିତୀୟ କ୍ୟାଥେରିନ୍ ସଂପୂର୍ଣ୍ଣ ରୂପେ ଭୁଲି ଗଲେ ଜ୍ଞାନାଲୋକବାଦୀଗଣଙ୍କୁ ଏବଂ ତାଙ୍କର ପୂର୍ବତନ ମୋହକୁ ପାସୋରି ପକାଇଲେ । ଅସ୍ଥିରଚିତ୍ତ ପ୍ରଥମ ପଲ (୧୭୯୬-୧୮୦୧) ତାଙ୍କ ମାଙ୍କ ପରେ ସିଂହାସନରେ ବସିଲେ । ସେ ତାଙ୍କ ମାଙ୍କୁ ତୀବ୍ର ଭାବେ ଘୃଣା କରୁଥିଲେ, କିନ୍ତୁ ସେମାନଙ୍କ ରୁଚି ଆଉ ଆଚରଣ ମଧ୍ୟରେ ପାର୍ଥକ୍ୟ ସତ୍ତ୍ୱେ ମଧ୍ୟ ସେ ତାଙ୍କ ମାଙ୍କ ପଥ ଅନୁସରଣ କରିଥିଲେ । ମାଙ୍କ ପରି ସେ ଫରାସୀ

ବିପ୍ଳବର "ରୋଗର" ଉତ୍ସକୁ ମୂଳପୋଛ କରିବା ନିମିତ୍ତ ସବୁମତେ ଉଦ୍ୟମ କରିଥିଲେ । ବିପ୍ଳବୀ ଫ୍ରାନ୍ସ ବିରୋଧରେ ପ୍ରୁସିଆ ତଥା ଅଷ୍ଟ୍ରିଆର ସମସ୍ତ କାର୍ଯ୍ୟକୁ ରୁଷିଆ ସମର୍ଥନ କରିଥିଲା । ଜାର୍‌ତନ୍ତ୍ର ରାଜଭକ୍ତ ଫରାସୀ ଦେଶତ୍ୟାଗୀମାନଙ୍କୁ ସ୍ୱାଗତ ଜଣାଇଲା ।

ଦେଶ ମଧ୍ୟରେ ପ୍ରତିକ୍ରିୟାଶୀଳ ପ୍ରବଣତାସମୂହ ଅସାଧାରଣ ଭାବେ ବୃଦ୍ଧି ପାଇଥିଲା, କିନ୍ତୁ ପ୍ରଗତିଶୀଳ ଜନସାଧାରଣ ଫ୍ରାନ୍ସର ଘଟଣାବଳୀ ପ୍ରତି ସମବେଦନା ଜଣାଇଥିଲେ । ଫରାସୀ ପତ୍ରପତ୍ରିକା ଏବଂ ପରେ ସମସ୍ତ ବୈଦେଶିକ ପ୍ରକାଶନଗୁଡ଼ିକୁ ରୁଷିଆରେ ନିଷିଦ୍ଧ କରି ଦିଆଗଲା । ସମାଲୋଚନାମୂଳକ ସାହିତ୍ୟ ଏବଂ ଶିକ୍ଷାମୂଳକ କ୍ରିୟାକଳାପକୁ ଦମନ କରାଗଲା । ବିଖ୍ୟାତ ନାଟ୍ୟକର, ଭୂମିଦାସ ପ୍ରଥାର ରୂପ ଉଦ୍‌ଘାଟନ କରିଥିବା ଏକ ବିଦ୍ରୂପାତ୍ମକ ନାଟକର ରଚୟିତା ଡେନିସ୍ ଫନ୍‌ଭିଜିନ୍, ପ୍ରାଚୀନ ନୋଭ୍‌ଗୋରଦର ସ୍ୱାଧୀନତାକୁ ପଦ୍ୟାକାରରେ ରଚନା କରିଥିବା କବି ୟାକୋଭ୍ କ୍ନ୍ୟାଝନିନ୍‌ଙ୍କୁ ଚୁପ୍ କରି ଦିଆଗଲା ଏବଂ ପ୍ରକାଶକ ତଥା ଜ୍ଞାନାଲୋକବାଦୀ ନିକୋଲାଇ ନୋଭିକୋଭ୍‌ଙ୍କୁ ବନ୍ଦୀ କରାଗଲା ଏବଂ ଏକ ଦୁର୍ଗକୁ ପଠାଗଲା । ଶେଷକୁ, "ଜ୍ଞାନାଲୋକବାଦୀ ସ୍ୱୈରାଗ୍ରରର" ଛଳନାତ୍ମକ ନୀତିର ଅବସାନ ଘଟିଲା ଏବଂ ଜାର୍‌ତନ୍ତ୍ର ତା'ର ପ୍ରତିକ୍ରିୟାଶୀଳ ଚରିତ୍ରକୁ ଘୋଡ଼େଇବାକୁ ଆବଶ୍ୟକ ମନେ କଲା ନାହିଁ । ୧୮ଶ ଶତାବ୍ଦୀର ଶେଷ ଭାଗକୁ ଭୂମିଦାସ ପ୍ରଥା ତଥା ଭୂମିଦାସ-ଅର୍ଥନୀତି ତା'ର ବିକାଶର ଶୀର୍ଷବିନ୍ଦୁରେ ପହଞ୍ଚି ଯାଇଥିଲା । ଏହି ଧରଣର ଏକ ସଂକଟର ଲକ୍ଷଣସମୂହ କ୍ରମଶଃ ଅଧିକ ସ୍ପଷ୍ଟ ହୋଇ ଉଠିଲା । ସମ୍ଭ୍ରାନ୍ତ ସଂପ୍ରଦାୟରୁ ବୁଦ୍ଧିଜୀବୀ ସ୍ତରରେ ସ୍ୱୈରାଗ୍ରରୀ ଶାସନର ଉତ୍‌ଖାତ ପାଇଁ ଦୃଢ଼ମନା ପ୍ରବକ୍ତାମାନେ ଦେଖାଦେଲେ ।

୧୮ଶ ଶତାବ୍ଦୀର ମୁକ୍ତିକାମୀ ଚିନ୍ତାଧାରାର ସାଫଲ୍ୟ ମଣ୍ଡିତ କୃତିଟି ହେଲା ଆଲେକ୍‌ଜାଣ୍ଡାର ର୍‌ୟାଦିଶ୍ଚେଭ୍‌ଙ୍କ (୧୭୪୯-୧୮୦୨) ରଚନା, "ସେଣ୍ଟ୍ ପିଟର୍ସବୁର୍ଗରୁ ମସ୍କୋକୁ ଯାତ୍ରା" ଶୀର୍ଷକ ପୁସ୍ତକଟି । ଏହା ୧୭୯୦ରେ ପ୍ରକାଶ ପାଇଥିଲା । ର୍‌ୟାଦିଶ୍ଚେଭ୍ ତାଙ୍କର ଏହି ରଚନାରେ ଜନସାଧାରଣଙ୍କ ଅସହଣୀୟ ଦୁଃଖ ଦୁର୍ଦ୍ଦଶାର ପ୍ରକୃତ ଚିତ୍ରକୁ ଆଙ୍କିଥିଲେ । ଜମିଦାରମାନଙ୍କୁ ସେ କ୍ରୋଧପୂର୍ଣ୍ଣ ଭାଷାରେ କହିଥିଲେ, "କୃପଣ ପଶୁଦଳ, ଅତୃପ୍ତ ରକ୍ତ ଶୋଷକଗଣ, ଆମେ ଚ୍ଚଷୀମାନଙ୍କୁ କ'ଣ ଦେଇଛେ ? କେବଳ ଗୋଟିଏ ଜିନିଷରୁ ଆମେ ସେମାନଙ୍କୁ ବଞ୍ଚିତ କରି ପାରିବେ, ସେ ହେଉଛି ପବନ । ହଁ, କେବଳ ପବନ ।" ଭୂମିଦାସ ପ୍ରଥା ବିରୁଦ୍ଧରେ ଉଦ୍ଦିଷ୍ଟ ଏହି ପୁସ୍ତକଟି ଜାର୍‌କୁ ନିନ୍ଦା କରିବା ପାଇଁ ଆହ୍ୱାନ ଦେଇଥିଲା, ଅଭ୍ୟୁତ୍‌ଥାନ ଏବଂ ବୁର୍ଜୁଆ ବିପ୍ଳବର ଚିନ୍ତାଧାରାକୁ ସମର୍ଥନ କରିବା ପାଇଁ ଆହ୍ୱାନ ଦେଇଥିଲା । ପୁସ୍ତକଟିକୁ ଦେଖିଲା କ୍ଷଣି ଶାସକ ଚକ୍ରଗୁଡ଼ିକ ସନ୍ତ୍ରସ୍ତ ହୋଇ ପଡ଼ିଥିଲେ । ଦ୍ୱିତୀୟ କ୍ୟାଥେରିନ୍ ପୁସ୍ତକଟିର ଧାରରେ ଲେଖିଥିଲେ, "...ସେ ହେଉଛି ପୁଗାଚୋଭ୍ ଠାରୁ ଆହୁରି ଭୟଙ୍କର ବିଦ୍ରୋହୀ" । ପୁସ୍ତକଟିକୁ ଧ୍ୱଂସ କରି ଦିଆଯାଇଥିଲା ଏବଂ ଲେଖକ ମୃତ୍ୟୁଦଣ୍ଡ

ପାଇଥିଲେ । କିନ୍ତୁ ପରେ ମୃତ୍ୟୁଦଣ୍ଡ ଶିଥିଳ କରି ସାଇବେରିଆକୁ ତାଙ୍କୁ ନିର୍ବାସିତ କରାଗଲା ।

ର୍‌ୟାଦିଶ୍ଚେଭ୍ "ଦେଶପ୍ରେମିକତାର" ଅବଧାରଣାକୁ ବୈପ୍ଳବିକ ଆଧେୟରେ ଭରି ଦେଇଥିଲେ । ସମ୍ଭ୍ରାନ୍ତ ସଂପ୍ରଦାୟର ସର୍ବପ୍ରଥମ ବିପ୍ଳବୀ ଲେଖକ ର୍‌ୟାଦିଶ୍ଚେଭ୍ ତାଙ୍କ ସମକାଳୀନମାନଙ୍କ ଠାରୁ ଅନେକ ଦିଗରୁ ଅନେକ ଆଗରେ ଥିଲେ । ସେ ସଂପୂର୍ଣ୍ଣ ଯଥାର୍ଥତାର ସହିତ କହିଥିଲେ : "ମୁଁ ସମଗ୍ର ଶତାବ୍ଦୀକୁ ଦେଖି ପାରୁଛି" । ଡିସେମ୍ବରପନ୍ଥୀମାନଙ୍କ ଠାରୁ ଆରମ୍ଭ କରି ରୁଷିଆର ପରବର୍ତ୍ତୀ ବଂଶଧରଗୁଡ଼ିକର ବିପ୍ଳବୀମାନେ ତାଙ୍କ ନାମକୁ ଏକ ବିଶେଷ ସମ୍ମାନର ସହିତ ଉଚ୍ଚାରଣ କରୁଥିଲେ, ଯିଏକି ବିଶ୍ୱାସ କରୁଥିଲେ ତାଙ୍କ ଜନସାଧାରଣଙ୍କ ବୈପ୍ଳବିକ ଭବିଷ୍ୟତ ଉପରେ ।

# ୯ମ ପରିଚ୍ଛେଦ

## ରୁଷିଆରେ ୧୯ଶ ଶତାବ୍ଦୀର ପ୍ରଥମାର୍ଦ୍ଧ—୧୮୧୨ ମସିହାର ଦେଶାତ୍ମକ ଯୁଦ୍ଧ—ଭୂମିଦାସ ପ୍ରଥାରେ ସଂକଟ

ରୁଷିଆରେ ୧୯ଶ ଶତାବ୍ଦୀର "ଉଷା ତା'ର ଗୋଲାପୀ ଆଲୋକ ନେଇ ପ୍ରସ୍ଫୁଟିତ ହୋଇ ନଥିଲା, ଏହା ଆସିଥିଲା ତା'ର ଯୁଦ୍ଧର ଅଗ୍ନି ଶିଖା ନେଇ..." ଏହି କଥାଟି ଲେଖିଥିଲେ ଡିସେମ୍ବର ଅଭ୍ୟୁତ୍ଥାନର ଜନୈକ ଅଂଶଗ୍ରହଣକାରୀ ଆଲେକ୍‌ଜାଣ୍ଡାର ବେସ୍ତୁଝେଭ୍ ।

୧୮ଶ ଶତାବ୍ଦୀର ଶେଷରେ ଫରାସୀ ବୁର୍ଜୁଆ ବିପ୍ଳବ ସଂଘଟିତ ହୋଇଥିଲା ମୁକ୍ତି, ସାମ୍ୟ ଆଉ ଭ୍ରାତୃତ୍ୱର ମହାନ୍ ଧ୍ୱନିର ପତାକା ତଳେ ଏବଂ ୧୯ଶ ଶତାବ୍ଦୀର ପ୍ରାରମ୍ଭରେ ଏହା ସୃଷ୍ଟି କରିଥିଲା ସମ୍ରାଟ ନେପୋଲିଅନଙ୍କୁ । ଫ୍ରାନ୍‌ସର ସୀମା ବାହାରେ ସାମରିକ ଅଭିଯାନ ଚଳାଇ ସେ ଗ୍ରହିଁ ନଥିଲେ ୟୁରୋପୀୟ ଜାତିମାନଙ୍କୁ ମୁକ୍ତି ପ୍ରଦାନ କରିବାକୁ, ବରଂ ବିଦେଶୀ ଭୂଖଣ୍ଡମାନ ଅଧିକାର କରି ସେ ଏକ ସାମ୍ରାଜ୍ୟ ପ୍ରତିଷ୍ଠା କରିବାକୁ ଚେଷ୍ଟା କରିଥିଲେ । ଫରାସୀ ପ୍ରଜାତନ୍ତ୍ରର ବୈପ୍ଳବିକ ପ୍ରତିରକ୍ଷାମୂଳକ ଯୁଦ୍ଧସମୂହ ନେପୋଲିଅନ କ୍ଷମତାସୀନ ହେଲା କ୍ଷଣି ଆକ୍ରମଣାତ୍ମକ ଯୁଦ୍ଧର ରୂପ ପରିଗ୍ରହ କରିଥିଲା । ନେପୋଲିଅନଙ୍କ ବିରୁଦ୍ଧରେ ପରିଚାଳିତ ଯୁଦ୍ଧଗୁଡ଼ିକରେ ପ୍ରକାଶ ପାଇଥିଲା ମୁକ୍ତି ଯୁଦ୍ଧର ଚରିତ୍ର ।

୧୮୧୧ ମସିହା ବେଳକୁ ନେପୋଲିଅନ ପ୍ରାୟ ସମସ୍ତ ପାଶ୍ଚାତ୍ୟ ୟୁରୋପର ଶାସକରେ ପରିଣତ ହୋଇଥିଲେ । ତାଙ୍କୁ କେବଳ ବିରୋଧିତା କରୁଥିଲା ରୁଷିଆ ଏବଂ ସେ ସ୍ଥିର କରିଥିଲେ ରୁଷିଆର ସୈନ୍ୟବାହିନୀକୁ ସୀମାନ୍ତ ଯୁଦ୍ଧରେ ପରାସ୍ତ କରି ଏହାକୁ ଖତମ୍ କରି ଦେବେ ।

୬ ଲକ୍ଷ ୪୦ ହଜାରରୁ ଅଧିକ ସୈନ୍ୟଙ୍କୁ ନେଇ ଗଠିତ ନେପୋଲିଅନଙ୍କ "ଗ୍ରାଣ୍ଡେ ଆର୍ମୀ" ଜେନେରାଲ ବାରକ୍ଲାଇ ଓ ବାଗ୍ରାତିଅନଙ୍କ ନେତୃତ୍ୱରେ ଆକ୍ରମଣ କରିଥିବା ରୁଷିଆର ସେନାବାହିନୀ ଠାରୁ ସଂଖ୍ୟାଗତ ଭାବେ ଏହା ପ୍ରାୟ ତିନି ଗୁଣ ଅଧିକ ଥିଲା । ଯୁଦ୍ଧ ଘୋଷଣା ନକରି, ୧୮୧୨, ଜୁନ୍ ୧୨ ତାରିଖର ପୂର୍ବ ରାତ୍ରିରେ ନେପୋଲିଅନଙ୍କ

ସୈନ୍ୟମାନେ ନିଏମାନ ଅତିକ୍ରମ କରିବାକୁ ଆରମ୍ଭ କରି ଦେଇଥିଲେ । ରୁଷ୍ ସୈନ୍ୟମାନେ କୌଣସି ନିଷ୍ପତ୍ତିମୂଳକ ଯୁଦ୍ଧରେ ଲିପ୍ତ ନହୋଇ ଏବଂ ସୈନ୍ୟମାନଙ୍କର ପଶ୍ଚାଦ୍‌ଭାଗ ରକ୍ଷାକାରୀମାନଙ୍କ ସହିତ ତୁମୂଳ ଯୁଦ୍ଧ କରି, ଦେଶର ଆଭ୍ୟନ୍ତରକୁ ପଶ୍ଚାଦ୍‌ପସରଣ କରି ଆସିଥିଲେ । ସ୍ମୋଲେନ୍‌ସ୍କ ଠାରେ ରୁଷୀୟ ସୈନ୍ୟଦଳଗୁଡ଼ିକ ଏକତ୍ରିତ ହୋଇଥିଲେ ଏବଂ ଶତ୍ରୁ ପକ୍ଷର ପ୍ରବଳ ଆକ୍ରମଣକୁ ପ୍ରତିହତ କରିବା ସଙ୍ଗେ ସଙ୍ଗେ ପଶ୍ଚାଦ୍‌ପସରଣ କରିଥିଲେ । ରୁଷୀୟମାନଙ୍କର ଏତାଦୃଶ ଅନମନୀୟତା ଦେଖି ନେପୋଲିଅନ ବିସ୍ମିତ ହୋଇ ପଡ଼ିଥିଲେ । ସ୍ମୋଲେନ୍‌ସ୍କ ଅଧିକାର କଲା ପରେ ପ୍ରଥମ ଆଲେକ୍‌ଜାଣ୍ଡାରଙ୍କ ସହିତ ଶାନ୍ତି ଆଲୋଚନାର ପ୍ରସ୍ତାବ ସେ ଦେଇଥିଲେ, କିନ୍ତୁ ତାଙ୍କ ପ୍ରସ୍ତାବର କୌଣସି ଜବାବ ମିଳି ନଥିଲା ।

ଇତିମଧ୍ୟରେ ରୁଷ୍ ସେନାବାହିନୀ ଜଣେ ପ୍ରକୃତ ନେତା ପାଇଗଲା : ଜନମତର ଚାପରେ ପ୍ରଥମ ଆଲେକ୍‌ଜାଣ୍ଡାର ଫିଲଡ୍ ମାର୍ଶାଲ ମିଖାଇଲ୍ କୁତୁଜୋଭ୍‌ଙ୍କୁ ସର୍ବାଧିନାୟକ ରୂପେ ନିୟୋଜିତ କରିଥିଲେ । ମସ୍କୋର ୧୦୦ କିଲୋମିଟର ପଶ୍ଚିମରେ ଫରାସୀ ସୈନ୍ୟମାନଙ୍କ ସହିତ ଯୁଦ୍ଧରେ ସମ୍ମୁଖୀନ ହେବାକୁ କୁତୁଜୋଭ୍ ସ୍ଥିର କରି ଦେଲେ । ଏହି ଯୁଦ୍ଧ ପାଇଁ ବରୋଦିନୋ ଗ୍ରାମର ନିକଟବର୍ତ୍ତୀ ଏକ କ୍ଷେତ୍ରକୁ ବଛାଗଲା । ଅଗଷ୍ଟ ୨୬ ତାରିଖରେ ଏହି ଯୁଦ୍ଧାଭିଯାନର ଅନ୍ୟତମ ସର୍ବବୃହତ୍ ରକ୍ତାକ୍ତ ଯୁଦ୍ଧଟି ଅନୁଷ୍ଠିତ ହୋଇଥିଲା ଏହିଠାରେ । ନେପୋଲିଅନ ତାଙ୍କର ୧୩୫,୦୦୦ ସୈନ୍ୟଙ୍କୁ ନେଇ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ ଏବଂ କୁତୁଜୋଭ୍ ନେତୃତ୍ୱ ଦେଇଥିଲେ ୧୩୨,୦୦୦ ସୈନ୍ୟଙ୍କୁ । ସଂଧ୍ୟା ହେଲା ବେଳକୁ ଫରାସୀ ବାହିନୀ ୫୮,୦୦୦ ସୈନ୍ୟଙ୍କୁ ହରେଇଥିଲା । କୁତୁଜୋଭ୍ ସୈନ୍ୟଦଳଗୁଡ଼ିକ ହରେଇଥିଲେ ୪୫,୦୦୦ ସୈନ୍ୟଙ୍କୁ । ତା'ପରେ ଉଭୟ ପକ୍ଷ ନିଜ ନିଜର ପ୍ରାଥମିକ ସ୍ଥାନକୁ ଫେରି ଆସିଥିଲେ । କୁତୁଜୋଭ୍ କିନ୍ତୁ ପ୍ରତ୍ୟକ୍ଷ ଯୁଦ୍ଧରେ ଲିପ୍ତ ନହୋଇ ମସ୍କୋ ପରିତ୍ୟାଗ କରିବାକୁ ସ୍ଥିର କରି ନେଲେ । ସେ ଏକ ସେନାପରିଷଦରେ କହିଥିଲେ, "ମସ୍କୋକୁ ହରେଇବା ଅର୍ଥ ରୁଷିଆକୁ ହରେଇବା ନୁହେଁ, ସେନାବାହିନୀକୁ ହରେଇବା ଅର୍ଥ ରୁଷିଆକୁ ହରେଇବା । ପଶ୍ଚାଦ୍‌ପସରଣ କରିବାକୁ ମୁଁ ନିର୍ଦ୍ଦେଶ ଦେଉଛି !"

ମସ୍କୋ ପରିତ୍ୟାଗ କଲା ପରେ କୁତୁଜୋଭ୍ ତାଙ୍କର ସୈନ୍ୟମାନଙ୍କୁ ଦକ୍ଷିଣ-ପୂର୍ବକୁ ପରିଚାଳିତ କରିଥିଲେ, କିନ୍ତୁ ହଠାତ୍ ସେ ପଶ୍ଚିମ ଆଡ଼କୁ ଗତି ପରିବର୍ତ୍ତନ କରି ନେଲେ । ତା'ପରେ ଆକ୍ରମଣକାରୀ ସେନାବାହିନୀର ପାର୍ଶ୍ୱ ଦେଶକୁ ଆସିଯାଇ ତାରୁଟିନୋ ନାମକ ଏକ ଗ୍ରାମ ନିକଟରେ ଏକ ସେନା ଶିବିର ସ୍ଥାପନ କଲେ । ରୁଷ୍ ସେନାବାହିନୀ ପକ୍ଷରୁ ପ୍ରତିଆକ୍ରମଣ ପାଇଁ ପ୍ରସ୍ତୁତି ଆରମ୍ଭ ହୋଇଗଲା । ନୂଆ ନୂଆ ସୈନ୍ୟଦଳ, ଅସ୍ତ୍ରଶସ୍ତ୍ର ତଥା ଖାଦ୍ୟ ପେୟ ଆସି ସେମାନଙ୍କ ନିକଟରେ ପହଞ୍ଚିଥିଲା । ଆକ୍ରମଣକାରୀମାନଙ୍କ ପଶ୍ଚାଦ୍‌ଭାଗରେ ବ୍ୟାପକ ଆକାରରେ ଗେରିଲା ଯୁଦ୍ଧ ଆରମ୍ଭ

ହୋଇଗଲା । ଗେରିଲାମାନଙ୍କ ସାହାଯ୍ୟାର୍ଥେ କୁତୁଜୋଭ୍ ଅନେକଗୁଡ଼ିକ ଅଶ୍ୱାରୋହୀ ସେନାଦଳ ପ୍ରେରଣ କରିଥିଲେ ଏବଂ ସେମାନେ କାର୍ଯ୍ୟତଃ ମସ୍କୋ ଚତୁର୍ପାର୍ଶ୍ୱରେ ଏକ ଅବରୁଦ୍ଧ ବେଷ୍ଟନି ଗଢ଼ି ଦେଲେ । ରୁଷିଆ ପକ୍ଷରୁ ଏହି ଯୁଦ୍ଧ ଏକ ଗଣଯୁଦ୍ଧର ଚରିତ୍ର ଧାରଣ କଲା । ରୁଷ୍ ଇତିହାସରେ ଏହି ଯୁଦ୍ଧ ଦେଶପ୍ରେମୀ ଯୁଦ୍ଧ ନାମରେ ପରିଚିତ ।

ନେପୋଲିଅନ ଶୀତ ଋତୁରେ ଯୁଦ୍ଧାଭିଯାନ ପାଇଁ ପ୍ରସ୍ତୁତ ନଥିଲେ । ମସ୍କୋରେ ଯୁଦ୍ଧ ପରିଚାଳନାର କୌଣସି ସମ୍ଭାବନା ନାହିଁ ବୋଲି ସେ ଅନୁଭବ କରିଥିଲେ । ତାଙ୍କ ପକ୍ଷରୁ ପ୍ରେରିତ ତିନୋଟି ଶାନ୍ତି ପ୍ରସ୍ତାବର କୌଣସି ଜବାବ ନମିଳିବାରୁ ମସ୍କୋ ପରିତ୍ୟାଗ କରି କୁତୁଜୋଭ୍‌ଙ୍କ ସୈନ୍ୟବାହିନୀକୁ ପରାସ୍ତ କରି ଯୁଦ୍ଧରେ ବିଧ୍ୱସ୍ତ ନହୋଇଥିବା ପ୍ରଦେଶଗୁଡ଼ିକ ମଧ୍ୟ ଦେଇ ପଶ୍ଚିମ ଆଡ଼କୁ ଆଗେଇବା ପାଇଁ ନେପୋଲିଅନ ସ୍ଥିର କରି ନେଲେ । ୧୮୧୨, ଅକ୍ଟୋବର ମାସରେ ଫରାସୀ ସୈନ୍ୟବାହିନୀର ଛାମୁଆ ବାହିନୀ, ମୁରାଟ୍‌ଙ୍କ ସେନାଦଳଟି ମୂଳପୋଛ ହୋଇ ଗଲେ ତାରୁତିନୋ ଠାରେ । ଏହା ପରେ ଫରାସୀ ବାହିନୀ ମାଲୋୟାରୋସ୍ଲାଭେଟ୍ ଯୁଦ୍ଧରେ ସାଂଘାତିକ ଭାବେ ପରାଜୟ ବରଣ କଲା । ନେପୋଲିଅନ ବାଧ୍ୟ ହେଲେ ସ୍ମୋଲେନ୍‌ସ୍କକୁ ଯାଇଥିବା ବିଧ୍ୱସ୍ତ ପଥରେ ପଶ୍ଚାଦ୍‌ପସରଣ କରିବାକୁ । ଏହା ଘଟିଥିଲା ତଲସ୍ତୟଙ୍କ ଭାଷାରେ ସେତିକିବେଳେ, "ଯେତେବେଳେ ଗଣଯୁଦ୍ଧର ଗଦା ମୁଦ୍‌ଗର ତା'ର ସମସ୍ତ ଦୃଢ଼ତା ସହ ସର୍ବୋଚ୍ଚ ଶକ୍ତି ଆହରଣ କରିଥିଲା" । ନେପୋଲିଅନଙ୍କ "ଗ୍ରାଣ୍ଡେ ଆର୍ମୀ" ଛିନ୍ନଛତ୍ର ହୋଇ ପଡ଼ିଲା । ଦାଭୋଟ୍‌ଙ୍କ ସୈନ୍ୟମାନେ ଭ୍ୟାଜ୍‌ମା ଠାରେ ମୂଳପୋଛ ହୋଇଗଲେ । ନେଇଙ୍କ ସୈନ୍ୟମାନେ ଅବରୁଦ୍ଧ ଅବସ୍ଥାରେ କ୍ରାସ୍ନୋୟେ ନିକଟରେ ପରାଜିତ ହେଲେ । ବେରେଜିନା ନଦୀ କୂଳର ଯୁଦ୍ଧ ପରେ ନେପୋଲିଅନଙ୍କ ସେନାବାହିନୀ ଲୋପ ପାଇଗଲା । ଡିସେମ୍ବର ମାସର ପ୍ରାରମ୍ଭରେ ଯାହା କିଛି ସୈନ୍ୟ ବର୍ତ୍ତି ଥିଲେ ସେମାନଙ୍କୁ ପରିତ୍ୟାଗ କରି ନେପୋଲିଅନ ବିନା ଦେହରକ୍ଷୀରେ ପ୍ୟାରିସ୍‌କୁ ପଳାୟନ କରିଥିଲେ । ଏକ ବିଶେଷ ବୁଲେଟିନ୍‌ରେ ସେ ଘୋଷଣା କରିଥିଲେ, ତାଙ୍କ ସେନାବାହିନୀର ପରାଜୟର କାରଣ ହେଲା ଅପ୍ରତ୍ୟାଶିତ ଶୀତଳ ପାଗ । ୧୮୧୩ ମସିହାର ନବ ବର୍ଷର ପ୍ରଥମ ଦିନ ସେଣ୍ଟ୍ ପିଟର୍ସବୁର୍ଗର ସେଣ୍ଟ୍ ପିଟର ଏବଂ ପଲ ଦୁର୍ଗର କମାଣଗୁଡ଼ିକର ତୋପଧ୍ୱନି ରୁଷିଆର ସଂପୂର୍ଣ୍ଣ ମୁକ୍ତିର ସମ୍ମାନାର୍ଥେ ଗର୍ଜନ କରି ଉଠିଥିଲେ ।

ରୁଷିଆର ସମ୍ରାଟ ପ୍ରଥମ ଆଲେକ୍‌ଜାଣ୍ଡାରଙ୍କ ସଂପର୍କରେ ମହାନ୍ ରୁଷ୍ କବି ପୁସ୍କିନ୍ ଲେଖିଥିଲେ :

"ଅଯୋଗ୍ୟ, ଦୁର୍ବଳ ଏକ ଶାସକ
କପଟୀ ମଣିଷ ମଧ୍ୟରେ ନୀଚ
ଅକସ୍ମାତ୍ ବିଭୂଷିତ ବିଜୟ ମୁକୁଟେ
ଥିଲେ ଯେ ଶାସକ ଏ ଦେଶରେ ସେତେବେଳେ ।"

"ଅକସ୍ମାତ୍ ବିଭୂଷିତ ବିଜୟ ମୁକୁଟେ ଥିଲେ" ଅର୍ଥ ପ୍ରଥମ ଆଲେକ୍‌ଜାଣ୍ଡାର ନେପୋଲିଅନଙ୍କୁ ଜୟ କରିବାର ସମ୍ମାନରେ ନିଜକୁ ନିଜେ ମଣ୍ଡିତ କରି ପକାଇଥିଲେ । ଏହାକୁ ସେ ବିପ୍ଳବ ଉପରେ ବିଜୟ, ପୁରୁଣା ସାମନ୍ତ ବ୍ୟବସ୍ଥାର ପୁନର୍ସ୍ଥାପନ ବୋଲି ବିଗ୍ଚର କରିଥିଲେ ଏବଂ ପାଶବିକ ପ୍ରତିକ୍ରିୟାର ପ୍ରରୋଚକ ତଥା ସଂଗଠକରେ ନିଜକୁ ପରିଣତ କରିଥିଲେ । ଦେଶପ୍ରେମୀ ଯୁଦ୍ଧ ପୂର୍ବରୁ, ତାଙ୍କ ରାଜତ୍ୱର ପ୍ରାରମ୍ଭରେ ପ୍ରଥମ ଆଲେକ୍‌ଜାଣ୍ଡାର ଉଦାରତାବାଦୀ ସଂସାର ବିଷୟରେ କହୁଥିଲେ । ଏହି ବିଜୟ ପରେ ମିଖାଇଲ୍ ସ୍ପେରାନ୍‌ସ୍କିଙ୍କ (ବହୁ ଉଦାରତାବାଦୀ ଯୋଜନାର ରଚୟିତା, ୟୁରୋପୀୟ ରାଜନୈତିକ ସାହିତ୍ୟରେ ସୁପଣ୍ଡିତ) ଅନୁଗାମୀମାନଙ୍କୁ ରାଷ୍ଟ୍ର ପ୍ରଶାସନରୁ ହଟେଇ ଦିଆଯାଇଥିଲା, ସୁଭୋରୋଭ୍ ଏବଂ କୁଟୁଜୋଭ୍‌ପନ୍ଥୀ ଅଫିସରମାନଙ୍କୁ ସେନାବିଭାଗରୁ ବରଖାସ୍ତ କରାଯାଇଥିଲା । ଭୂମିଦାସ ପ୍ରଥାର ଉଗ୍ର ପ୍ରବକ୍ତା ଆରାକ୍‌ଚେୟେଭ୍ ସମ୍ରାଟଙ୍କର ବିଶ୍ୱସ୍ତ ପରାମର୍ଶଦାତା ରୂପେ ନିଯୁକ୍ତ ହେଲେ । ସେ ମୁଖ୍ୟତଃ ବ୍ୟସ୍ତ ରହୁଥିଲେ ୟୁରୋପରେ ବିପ୍ଳବୀ ଆନ୍ଦୋଳନ ବିରୁଦ୍ଧରେ ସଂଗ୍ରାମ କରିବାରେ । ଆରାକ୍‌ଚେୟେଭ୍ ତାଙ୍କର ତଥାକଥିତ ସାମରିକ ଜନବସତି ପ୍ରତିଷ୍ଠା ପାଇଁ ସର୍ବାପେକ୍ଷା ଅଧିକ ପରିଚିତ । ଏହିସବୁ ଜନବସତିରେ ସାମରିକ କ୍ରିୟାକଳାପ କେବଳ ପରିଗ୍ଚଳିତ ହେଉ ନଥିଲା, ସୈନ୍ୟମାନେ କୃଷକ ଭୂମିଦାସ ରୂପେ କୃଷିକାର୍ଯ୍ୟ କରୁଥିଲେ । ସରକାର ପକ୍ଷରୁ ଯାଞ୍ଚ ବ୍ୟବସ୍ଥାକୁ ଅତ୍ୟନ୍ତ କଠୋର କରାଯାଇଥିଲା ଏବଂ ଶିକ୍ଷାନୁଷ୍ଠାନମାନଙ୍କରେ ଧର୍ମତତ୍ତ୍ୱ ଶିକ୍ଷା ପ୍ରବର୍ତ୍ତନ କରାଗଲା ।

ଏସବୁ ସତ୍ତ୍ୱେ, ଭୂମିଦାସ ପ୍ରଥାର ପ୍ରବକ୍ତାମାନଙ୍କର ଅଖଣ୍ଡ ରାଜତ୍ୱର ଅବସାନ ଘନେଇ ଆସିଥିଲା । ୧୯ଶ ଶତାବ୍ଦୀର ଦ୍ୱିତୀୟ ଚଉଠରେ ରୁଷିଆରେ ସାମନ୍ତବାଦୀ-ଭୂମିଦାସ ପ୍ରଥାରେ ସଂକଟ ଦେଖାଦେଲା । ଏହି ସଂକଟ ପ୍ରକାଶ ପାଇଥିଲା, ସର୍ବୋପରି, ପଶ୍ଚିମ ୟୁରୋପୀୟ ଦେଶମାନଙ୍କ ଠାରୁ ରୁଷିଆର କ୍ରମାଗତ ପଶ୍ଚାତ୍‌ପଦତା ପାଇଁ । ସେସବୁ ଦେଶରେ ପୁଞ୍ଜିବାଦ ଦ୍ରୁତ ଗତିରେ ବୃଦ୍ଧି ପାଇବାରେ ଲାଗିଥିଲା । ୧୮ଶ ଶତାବ୍ଦୀରେ ଲୌହପିଣ୍ଡ ଉତ୍ପାଦନ କ୍ଷେତ୍ରରେ ରୁଷିଆ ପ୍ରଥମ ସ୍ଥାନ ଅଧିକାର କରୁଥିଲା ବେଳେ ୧୯ଶ ଶତାବ୍ଦୀର ପ୍ରାରମ୍ଭରେ ବ୍ରିଟେନ୍‌ର ଧାତୁଶିଳ୍ପ ରୁଷିଆର ଧାତୁଶିଳ୍ପକୁ ଅନେକ ପଛରେ ପକେଇ ଦେଇ ୧୮୬୦ ମସିହାରେ ପ୍ରାୟ ୧୨ ଗୁଣ ଅଧିକ ହୋଇଯାଇଥିଲା । ୧୮୫୧ ମସିହାରେ ସେଣ୍ଟ୍ ପିଟର୍ସବୁର୍ଗ ଓ ମସ୍କୋ ମଧ୍ୟରେ ରେଳଗାଡ଼ି ଯିବା ଆସିବା କଲା ଏବଂ ୧୮୬୧ ମସିହାରେ ଦେଶ ମଧ୍ୟରେ ରେଳପଥର ଦୈର୍ଘ୍ୟ ପ୍ରାୟ ୧,୫୦୦ କିଲୋମିଟର ଥିଲା ବେଳେ ବ୍ରିଟେନ୍‌ରେ ମୋଟ ରେଳପଥର ଦୈର୍ଘ୍ୟ ୧୫,୦୦୦ କିଲୋମିଟର ଏବଂ ଜର୍ମାନୀରେ ୧୦,୦୦୦ କିଲୋମିଟର ଥିଲା ।

ସାମନ୍ତବାଦୀ-ଭୂମିଦାସ ପ୍ରଥାର ସଂକଟ ଆଉରି ପ୍ରତିଫଳିତ ହୋଇଥିଲା କ୍ରମବର୍ଦ୍ଧମାନ ସଂଖ୍ୟାରେ ଘଟୁଥିବା କୃଷକ ବିଦ୍ରୋହ ଏବଂ ସୈନ୍ୟମାନଙ୍କ ମଧ୍ୟରେ

ଦେଖାଦେଉଥିବା ଅସନ୍ତୋଷ ମଧ୍ୟରେ । ୧୮୧୯ ଖ୍ରୀଷ୍ଟାବ୍ଦରେ ଚୁଗୁୟେଭ୍ ସହରର (ୟୁକ୍ରାଇନ୍) ସୈନ୍ୟମାନଙ୍କ ଜନବସତିମାନଙ୍କର ଅଭ୍ୟୁତ୍ଥାନ ଏବଂ ୧୮୨୦ରେ ରାଜଧାନୀରେ ସେମିଓନୋଭ୍ସି ରକ୍ଷୀ ସୈନ୍ୟମାନଙ୍କ ମଧ୍ୟରେ ବିଦ୍ରୋହ ଫଳରେ ସ୍ୱୈରତନ୍ତ୍ର ବିଶେଷ ଭାବେ ବିବ୍ରତ ହୋଇ ପଡ଼ିଥିଲା । ସାମନ୍ତବାଦୀ-ଭୂମିଦାସ ପ୍ରଥାରେ ଦେଖାଦେଉଥିବା ସଂକଟର ଆଉ ଏକ ପରିପ୍ରକାଶ ଘଟିଥିଲା ଭୂମିଦାସବିରୋଧୀ ଏବଂ ସାମନ୍ତବାଦବିରୋଧୀ ଭାବାଦର୍ଶର ସକ୍ରିୟ ଅଭ୍ୟୁଦୟ ମଧ୍ୟରେ ।

ପଶ୍ଚିମ ୟୁରୋପୀୟ ଦେଶମାନଙ୍କରେ ବିପ୍ଳବର ଗତି ଧାରା ମଧ୍ୟରେ ସାମନ୍ତବାଦୀ ବ୍ୟବସ୍ଥା ବିରୁଦ୍ଧରେ ସଂଗ୍ରାମର ନେତୃତ୍ୱ ନେଇଥିଲା ବୁର୍ଜୁଆ ଶ୍ରେଣୀ । କିନ୍ତୁ ରୁଷିଆରେ ପୁଞ୍ଜିବାଦର ଦୁର୍ବଳ ବିକାଶ ହେତୁ ରାଜନୈତିକ ଆନ୍ଦୋଳନରେ ୧୯ଶ ଶତାବ୍ଦୀର ମଧ୍ୟ ଭାଗ ପର୍ଯ୍ୟନ୍ତ ନେତୃତ୍ୱ ଗ୍ରହଣ କରିଥିଲେ ସମ୍ଭ୍ରାନ୍ତ ସଂପ୍ରଦାୟର ପ୍ରଗତିଶୀଳ ବୁଦ୍ଧିଜୀବୀ ଗୋଷ୍ଠୀଗୁଡ଼ିକ ।

ଜାର୍‌ତନ୍ତ୍ର ବିରୁଦ୍ଧରେ ରୁଷିଆରେ ସର୍ବପ୍ରଥମ ବିପ୍ଳବାତ୍ମକ ଆନ୍ଦୋଳନ ଦେଖାଦେଇଥିଲା ୧୮୨୫ ମସିହା ଡିସେମ୍ବର ମାସରେ । ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ ସମ୍ଭ୍ରାନ୍ତ ସଂପ୍ରଦାୟର ପ୍ରଗତିମନା ଅଫିସରମାନେ । ଇତିହାସ ପୃଷ୍ଠାରେ ଏମାନେ ଡିସେମ୍ବରପନ୍ଥୀ ନାମରେ ପରିଚିତ । ଏମାନଙ୍କର ଭାବାଦର୍ଶ ତଥା ରଣକୌଶଳ ରଚିତ ହୋଇଥିଲା ତରୁଣ ଅଫିସରମାନଙ୍କ ମଧ୍ୟରେ ଦେଖାଦେଇଥିବା ଅସନ୍ତୋଷ ଏବଂ ପ୍ରତିବାଦର ପରିପ୍ରେକ୍ଷୀତରେ । ଏହିସବୁ ଅଫିସରମାନେ ବିଦେଶରୁ ସାମରିକ ଅଭିଯାନ ପରେ ପ୍ରତ୍ୟାଗମନ କରିଥିଲେ ଏବଂ ୧୮୨୦-୧୮୨୧ରେ ୟୁରୋପର ନୂତନ ବୈପ୍ଳବିକ ଜାଗରଣ ଦ୍ୱାରା ପ୍ରଭାବିତ ହୋଇଥିଲେ (ସ୍ପେନ୍ ଏବଂ ପର୍ତ୍ତୁଗାଲରେ ବିପ୍ଳବ, ଇଟାଲୀରେ ଗଣ ଅଭ୍ୟୁତ୍ଥାନ ଏବଂ ଗ୍ରୀସ୍‌ରେ ସ୍ୱାଧୀନତା ସଂଗ୍ରାମ) ।

ଡିସେମ୍ବରପନ୍ଥୀମାନଙ୍କର ପ୍ରଥମ ସଂଗଠନ, ମୁକ୍ତି ମେଣ୍ଟ, ପ୍ରତିଷ୍ଠିତ ହୋଇଥିଲା ୧୮୧୬ ଖ୍ରୀଷ୍ଟାବ୍ଦରେ । ୧୮୧୮ରେ ଏହା ଜନକଲ୍ୟାଣ ମେଣ୍ଟକୁ ପରିବର୍ତ୍ତିତ ହୋଇଥିଲା । ଏହି ମେଣ୍ଟର ସଦସ୍ୟମାନେ ଭୂମିଦାସ ପ୍ରଥାର ଉଚ୍ଛେଦ ଏବଂ ସମ୍ବିଧାନ ପ୍ରବର୍ତ୍ତନ ଚାହୁଁଥିଲେ । ଆଲେକ୍‌ଜାଣ୍ଡାର ଗ୍ରିବୋୟେଦୋଭ୍‌ଙ୍କ "ତୀକ୍ଷ୍ଣ ବୁଦ୍ଧି ଦୁଃଖର କାରଣ" ଶୀର୍ଷକ ବିୟୋଗାନ୍ତକ ନାଟକଟି, ଯିଏକି ରୁଷିଆର ବାସ୍ତବତାବାଦୀ ରଙ୍ଗମଞ୍ଚ କ୍ଷେତ୍ରରେ ବିରାଟ ଭୂମିକା ପାଳନ ଥିଲା, ଏହି ଡିସେମ୍ବରପନ୍ଥୀମାନଙ୍କ ଭାବାଦର୍ଶ ଦୃଷ୍ଟିରୁ ରଚିତ ହୋଇଥିଲା । ବିପ୍ଳବୀ ସଦସ୍ୟମାନଙ୍କ ପ୍ରଭାବରେ ଜନକଲ୍ୟାଣ ମେଣ୍ଟଟି ୧୮୨୧ ମସିହାରେ ପରିତ୍ୟକ୍ତ ହୋଇଥିଲା । ସେହି ବର୍ଷ ୟୁକ୍ରାଇନ୍‌ରେ ଦକ୍ଷିଣବର୍ତ୍ତୀ ସମିତିଟି କଲୋନେଲ ପାଭେଲ ପେସ୍ତେଲଙ୍କ ନେତୃତ୍ୱରେ ମୁଣ୍ଡଟେକି ଉଠିଥିଲା । କଲୋନେଲ ପାଭେଲ ପେସ୍ତେଲ ଥିଲେ ଏହି ଆନ୍ଦୋଳନରେ ଜଣେ ସୁପରିଚିତ ନେତା । ଉତ୍ତରାଞ୍ଚଳୀୟ ସମାଜଟି ଗଠିତ ହୋଇଥିଲା ସେଣ୍ଟ୍ ପିଟର୍ସବର୍ଗରେ । ଏଥିରେ ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ

ଭୂମିକା ପାଳନ କରିଥିଲେ କବି କୋନ୍ଦ୍ରାତି ରିଲେୟେଭ୍ । ଏହିସବୁ ସମିତି ଏକ ବିପ୍ଳବୀ ଷଡ଼ଯନ୍ତ୍ରମୂଳକ କ୍ଷମତା ଦଖଲର ପ୍ରସ୍ତୁତି କରୁଥିଲେ । ଏଥିରେ ନିଷ୍ପତ୍ତିମୂଳକ ଭୂମିକା ପାଳନ କରିବାର ଥିଲା ରାଜଧାନୀର ଅବସ୍ଥିତ ସେନାବାହିନୀର ସେନାଦଳଗୁଡ଼ିକ ମଧ୍ୟରେ ଥିବା ଗୁପ୍ତ ସଂଗଠନଟି ।

ପ୍ରଥମ ଆଲେକ୍‌ଜାଣ୍ଡାରଙ୍କ ମୃତ୍ୟୁ ଏହି ଅଭ୍ୟୁତ୍‌ଥାନକୁ ତ୍ୱରାନ୍ୱିତ କରି ଦେଇଥିଲା । ଉତ୍ତରାଞ୍ଚଳୀୟ ସମିତିର ଯୋଜନା ଅନୁଯାୟୀ ବିଦ୍ରୋହୀ ସେନାଦଳଗୁଡ଼ିକ ଜାର୍‌ଙ୍କ ବାସଭବନ – ଶୀତ ପ୍ରାସାଦ ଏବଂ ସେଣ୍ଟ୍ ପିଟର ଓ ପଲ୍ ଦୁର୍ଗ ଦୁଇଟିକୁ ଅଧିକାର କରି ନେଇ ସିନେଟକୁ ଘେରଉ କରିବେ । ତା'ପରେ ସିନେଟକୁ ବାଧ୍ୟ କରିବେ "ରୁଷିଆର ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଏକ ଇସ୍ତାହାର" ଘୋଷଣା କରିବାକୁ । ଏହି ଇସ୍ତାହାରରେ ରୁଷିଆରେ ସ୍ୱୈରତନ୍ତ୍ର ତଥା ଭୂମିଦାସ ପ୍ରଥାର ଲୋପ କଥା ଘୋଷଣା କରାଯିବ । ଡିସେମ୍ବର ୧୪ ତାରିଖ ସକାଳେ ପ୍ରାୟ ୩,୦୦୦ ବିଦ୍ରୋହୀ ସୈନିକ ସିନେଟ (ଇସାକିୟେଭ୍‌ସ୍କାୟା) ଚୌକ ନିକଟକୁ ଆସି ଯାଇଥିଲେ । କିନ୍ତୁ ନେତାମାନଙ୍କ ପକ୍ଷରୁ ଦୃଢ଼ତାର ଅଭାବ ହେତୁ ବିଦ୍ରୋହୀମାନେ ସକ୍ରିୟ ପଦକ୍ଷେପ ନେଇ ପାରିଲେ ନାହିଁ । ନୂତନ ଜାର୍ ପ୍ରଥମ ନିକୋଲାଇ ସ୍ୱୈରତନ୍ତ୍ର ପ୍ରତି ଅନୁଗତ ସେନାଦଳମାନଙ୍କ ଦ୍ୱାରା ଚୌକଟିକୁ ଘେରଉ କରି ନେଲେ ଏବଂ ଏହି ସେନାଦଳଗୁଡ଼ିକ ତୋପ ଫାଏର କରି ବିଦ୍ରୋହୀମାନଙ୍କୁ ଘଉଡ଼ାଇ ଦେଲେ । ପାଞ୍ଚଜଣ ଡିସେମ୍ବରପନ୍ଥୀ – ପାଭେଲ ପେଷ୍ଟେଲ, କୋନ୍ଦ୍ରାତି ରିଲେୟେଭ୍, ସେର୍ଗେଇ ମୁରାଭିଓଭ୍-ଆପୋଷ୍ଟଲ, ମିଖାଇଲ ବେସ୍ତୁଝେଭ୍-ରିଉମିନ୍ ଏବଂ ପିଓତର କାଖୋଭ୍‌ସ୍କିଙ୍କୁ ସେଣ୍ଟ୍ ପିଟର ଏବଂ ପଲ୍ ଦୁର୍ଗରେ ଫାଶି ଦିଆଗଲା ଏବଂ ଶହେରୁ ଊର୍ଦ୍ଧ୍ୱ ବିଦ୍ରୋହୀଙ୍କୁ ପୂର୍ବ ସାଇବେରିଆରେ ନିର୍ବାସିତ କରାଗଲା କିମ୍ବା କକେସସ୍‌ର ପାହାଡ଼ୀମାନଙ୍କ ବିରୁଦ୍ଧରେ ଲଢ଼େଇ କରିବା ନିମିତ୍ତ ପଠାଇ ଦିଆଗଲା ।

ରୁଷିଆର ଜନୈକ ଲେଖକ ଏବଂ ବିପ୍ଳବୀ ଆଲେକ୍‌ଜାଣ୍ଡାର ହେର୍ଜେନ୍ ପରେ ଡିସେମ୍ବରପନ୍ଥୀମାନଙ୍କ ସଂପର୍କରେ ଲେଖିଥିଲେ, "ଇସାକିୟେଭ୍‌ସ୍କାୟା ଚୌକର କମାଣ ଧ୍ୱନି ଏକ ସମଗ୍ର ବଂଶଧରଙ୍କୁ ଜାଗ୍ରତ କରି ଦେଇଥିଲା ।"

୧୯ଶ ଶତାବ୍ଦୀର ଦ୍ୱିତୀୟ ଚୌଠରେ ରୁଷିଆର ଅବସ୍ଥା ଜଟିଳ ଏବଂ କେତେକ ପରିମାଣରେ ବିରୋଧାଭାସାତ୍ମକ ହୋଇ ଉଠିଥିଲା । ଏହି ସମୟଟି ଥିଲା ପ୍ରବଳ ପ୍ରତିକ୍ରିୟାର ଯୁଗ । ଡିସେମ୍ବରପନ୍ଥୀମାନଙ୍କୁ ଦମନ କରି ପ୍ରଥମ ନିକୋଲାଇ ତାଙ୍କ ରାଜତ୍ୱ ଆରମ୍ଭ କରିଥିଲେ । ତାଙ୍କ ଆଭ୍ୟନ୍ତରୀଣ ତଥା ବୈଦେଶିକ ନୀତିର ଲକ୍ଷ୍ୟ ଥିଲା ବିପ୍ଳବ ବିରୁଦ୍ଧରେ ସଂଗ୍ରାମ କରିଯିବା ଏବଂ ସ୍ୱୈରତନ୍ତ୍ର ତଥା ଭୂମିଦାସ ପ୍ରଥାକୁ ରକ୍ଷା କରିବା । ସମ୍ଭ୍ରାନ୍ତ ସଂପ୍ରଦାୟର ଅବସ୍ଥାନକୁ ସୁଦୃଢ଼ କରିବା ଉଦ୍ଦେଶ୍ୟରେ ଏହି ସଂପ୍ରଦାୟ ମଧ୍ୟକୁ ଅନ୍ୟ ସଂପ୍ରଦାୟର ଲୋକଙ୍କର ଅନପ୍ରବେଶକୁ ଜାର୍ କଟକଣା କରି ଦେଇଥିଲେ ।

ରାଷ୍ଟ୍ରୀୟ କ୍ଷମତାକୁ ସର୍ବାଧିକ ଭାବେ କେନ୍ଦ୍ରୀୟଭୂତ କରାଗଲା ଏବଂ ଜାର୍ ବ୍ୟକ୍ତିଗତ ଭାବେ ରାଷ୍ଟ୍ରର ସମସ୍ତ ବିଷୟରେ ହସ୍ତକ୍ଷେପ କରିବାକୁ ଲାଗିଲେ । ଅଧିକାଂଶ ମନ୍ତ୍ରଣାଳୟର ମୁଖ୍ୟ ଥିଲେ ସେନାପତିମାନେ । ଯାଞ୍ଚ ବ୍ୟବସ୍ଥାକୁ କଠୋର କରାଗଲା । ଏସବୁ ସତ୍ତ୍ୱେ ଏହି ସମୟ କାଳରେ ସାମାଜିକ ଚେତନାର ତୀବ୍ର ବିକାଶ ଘଟିଥିଲା ଏବଂ ଏହାକୁ ଭିତ୍ତି କରି ରୁଷୀୟ ଜାତୀୟ ସଂସ୍କୃତି ରୂପ ପରିଗ୍ରହ କରିବା ସାଥେ ସାଥେ ବିକାଶ ଲାଭ କଲା । ଏହି ପ୍ରକ୍ରିୟାଟି ପ୍ରତିଷ୍ଠିତ ହୋଇଥିଲା ବାସ୍ତବ ନୀତିରାଜିର ବିଜୟ ଉପରେ । ଭାବାବେଗବାଦ ଓ ରୋମାଞ୍ଚବାଦ ମଧ୍ୟ ଦେଇ ଅନ୍ଧ ବିଶ୍ୱାସ ତଥା ଶାସ୍ତ୍ରୀୟବାଦରୁ ଉତ୍ତରଣ କାର୍ଯ୍ୟତଃ ଗୋଟିଏ ବଂଶଧରର ଜୀବନ କାଳ ମଧ୍ୟରେ ସଂଘଟିତ ହୋଇଥିଲା । ଏହି ଉତ୍ତରଣ ଅତି ନିରବଚ୍ଛିନ୍ନ ଭାବେ ପ୍ରକାଶ ପାଇଥିଲା ରୁଷ୍ ସାହିତ୍ୟର ବିକାଶ ମଧ୍ୟରେ, ଯାହାକୁ ଆଲୋକମଣ୍ଡିତ କରିଥିଲା ଆଲେକ୍‌ଜାଣ୍ଡାର ପୁସ୍କିନ୍‌ଙ୍କ ପ୍ରତିଭା । ରୁଷୀୟ ସାହିତ୍ୟିକ ଭାଷାକୁ ପୁସ୍କିନ୍ ତାଙ୍କ ଲୋକଙ୍କର ଭାବ ରୂପ ତଥା ଭାଷାର ନିକଟବର୍ତ୍ତୀ କରାଇଥିଲେ ଏବଂ ରୁଷୀୟ ଲୋକଗୀତ, ପରିକାହାଣୀ ତଥା କିଂବଦନ୍ତୀର ଅମୂଲ୍ୟ ବୁଦ୍ଧିମତା ତଥା କବିତାକୁ ପାଠକ ଜନସାଧାରଣଙ୍କ ଆଗରେ ଉନ୍ମୁକ୍ତ କରି ଦେଇଥିଲେ । ସ୍ୱୈରାଚାର ଏବଂ ଆଇନ୍ ଶୂନ୍ୟତା ବିରୁଦ୍ଧରେ ରୁଷିଆର ଯେଉଁସବୁ ସର୍ବୋତ୍କୃଷ୍ଟ ଲୋକେ ସଂଗ୍ରାମ କରିଥିଲେ; ସେମାନଙ୍କ ଚିନ୍ତା ଏବଂ ଆବେଗକୁ, ଅତ୍ୟାଚାର, ଭୂମିଦାସତ୍ୱ ତଥା ଏକଛତ୍ରବାଦ ପ୍ରତି ଘୃଣା ସମେତ ସେମାନଙ୍କ ଦେଶପ୍ରେମକୁ ସିଏହିଁ ରୂପ ଦେଇଥିଲେ ତାଙ୍କ କବିତାବଳୀରେ । ପୁସ୍କିନ୍‌ଙ୍କ ଜୀବନ କାଳ ସ୍ୱଳ୍ପ ହେଲେ ହିଁ ପ୍ରତିଭାପୂର୍ଣ୍ଣ ଥିଲା ଏବଂ ଏହି ସ୍ୱଳ୍ପସ୍ଥାୟୀ ଜୀବନ କାଳ ମଧ୍ୟରେ ସେ ବ୍ୟକ୍ତିଗତ ତଥା ନାଗରିକ ସାହସ, ସମ୍ମାନ ତଥା କର୍ତ୍ତବ୍ୟ ବୋଧର ନମୁନା ହୋଇ ଉଠିଥିଲେ ଏବଂ ଏହା ଥିଲା ତାଙ୍କ ସମୟର "ଉଚ୍ଚ ସମାଜର" ଆଚାର ଆଚରଣର ମାନ ସହିତ ପ୍ରତ୍ୟକ୍ଷ ଭାବେ ବିରୋଧାତ୍ମକ । ଏହି "ଉଚ୍ଚ ସମାଜ" ବିରୁଦ୍ଧରେ ମୁକାବିଲା କରି ତାଙ୍କୁ ମୃତ୍ୟୁବରଣ କରିବାକୁ ପଡ଼ିଥିଲା । ରୁଷୀୟ ସ୍ୱାଧୀନ ଚିନ୍ତାବିଦ୍‌ମାନେ ପୁସ୍କିନ୍‌ଙ୍କୁ ଦେଶର ପ୍ରଜ୍ଞା ତଥା ବିବେକ ବୋଲି ଆଖ୍ୟା ଦେଇଥିଲେ ।

ପୁସ୍କିନ୍‌ଙ୍କ ମୃତ୍ୟୁରେ କବି ମିଖାଇଲ ଲେର୍‌ମନ୍ତୋଭ୍ ଗଭୀର ଭାବେ ବିଚଳିତ ହୋଇ ପଡ଼ିଥିଲେ । ଲେର୍‌ମନ୍ତୋଭ୍ ପ୍ରଥମ ନିକୋଲାଇ ଏବଂ ତାଙ୍କ ପରିଷଦବର୍ଗଙ୍କୁ "ସ୍ୱାଧୀନତା, ପ୍ରତିଭା ତଥା ଗୌରବର ତଣ୍ଡିଚିପା" ବୋଲି ବର୍ଣ୍ଣନା କରିଥିଲେ । ଏହା ଥିଲା ସେମାନଙ୍କ ପ୍ରତି ଅତୀବ ଘୃଣାପୂର୍ଣ୍ଣ ଭର୍ତ୍ସନା ଏବଂ ସେମାନଙ୍କ ମସ୍ତକ ଉପରେ ଏହା ଏକ ଦଣ୍ଡାଦେଶ ଏବଂ ଅପରିହାର୍ଯ୍ୟ ମୁକ୍ତିର ଭବିଷ୍ୟତବାଣୀ ପରି ଝୁଲୁଥିଲା । ଲେଖକ ନିକୋଲାଇ ଗୋଗଲଙ୍କୁ ଦୁଇଟି ବିଖ୍ୟାତ ରଚନା, "ଇନ୍‌ସପେକ୍ଟର ଜେନେରାଲ" ଓ "ମୃତାତ୍ମାସମୂହ"ର ବିଷୟବସ୍ତୁ ଯୋଗାଇ ଦେଇଥିଲେ ପୁସ୍କିନ୍ । ଏହି ପୁସ୍ତକ ଦୁଇଟିର ନାମ ଆଉ ଚରିତ୍ରସମୂହ ଅଜ୍ଞତା, ନିର୍ବୋଧତା, ମୂର୍ଖତା ତଥା ଗତିହୀନତା

ଏବଂ ପ୍ରଥମ ନିକୋଲାଇଙ୍କ ଭୂମିଦାସତ୍ୱ ତଥା ଅଫିସର ଜଗତର ପ୍ରତୀକ ଥିଲେ । କବି ନିକୋଲାଇ ନେକ୍ରାସୋଭ୍ ପୁସ୍କିନ୍‌ଙ୍କ ଦ୍ୱାରା ପ୍ରତିଷ୍ଠିତ ପତ୍ରିକା "ସୋଭ୍ରେମେନ୍ନିକ୍"କୁ ("ଆଧୁନିକ") ପୁନର୍ଜୀବିତ କରିବାରେ ସକ୍ଷମ ହୋଇଥିଲେ । ଏହି ପତ୍ରିକାର ପୃଷ୍ଠାରେ ପ୍ରକାଶ ପାଇଥିଲା ବିଖ୍ୟାତ ବ୍ୟଙ୍ଗ ରଚନାତ୍ମକ ଲେଖକ ମିଖାଇଲ ସାଲତିକଭ୍-ଷେଦ୍ରିନ୍‌ଙ୍କ ରଚନାସମୂହ, ଇଭାନ୍ ତୁର୍ଗେନେଭ୍‌ଙ୍କ ଗଳ୍ପସମ୍ଭାର, ମହାନ୍ ଲିଓ ତଲସ୍ତୟଙ୍କ ପ୍ରଥମ ଲେଖାସମୂହ ଏବଂ ନେକ୍ରାସୋଭ୍‌ଙ୍କର ନିଜସ୍ୱ କବିତାଗୁଚ୍ଛ । ନେକ୍ରାସୋଭ୍ ରୁଷୀୟ ସାହିତ୍ୟର ଗଣତନ୍ତ୍ରୀକରଣ ପଥରେ ନୂତନ ପଦକ୍ଷେପ ନେଇଥିଲେ ।

୧୯ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ରୁଷୀୟ ଶିଳ୍ପକଳାର ଅନ୍ୟାନ୍ୟ କ୍ଷେତ୍ରର ବିକାଶ ପାଇଁ ବାସ୍ତବତାବାଦର ଅଭ୍ୟୁଦୟ ଥିଲା ବୈଶିଷ୍ଟ୍ୟସୂଚକ । ଗ୍ରିବୋୟେଦୋଭ୍ ଏବଂ ଗୋଗଲଙ୍କ ସମେତ ୧୮୫୦ର ପ୍ରାରମ୍ଭରେ ଆଲେକ୍‌ଜାଣ୍ଡାର ଅସ୍ତ୍ରୋଭ୍‌ସ୍କିଙ୍କ ରଚନାବଳୀର ମଞ୍ଚରୂପାୟନ ଦାବୀ କରୁଥିଲା ସଂପୂର୍ଣ୍ଣ ନୂତନ ଧରଣର ଅଭିନୟ । ମସ୍କୋ ମାଲି ଥିଏଟରର କଳାକାର ମିଖାଇଲ ଷେପ୍‌କିନ୍ ଜଣେ ଭୂମିଦାସ କୃଷକଙ୍କର ସନ୍ତାନ ଥିଲେ ଏବଂ ସିଏହିଁ ହେଲେ "ପ୍ରଥମ କଳାକାର, ଯିଏକି ନାଟକରେ ନାଟକୀୟ ଭାବେ ଅଭିନୟ କରୁ ନଥିଲେ" । ଏହି ସମୟରେ ମୌଳିକ ରୁଷୀୟ ଶୈଳୀର ସଂଗୀତ ମଧ୍ୟ ରୂପ ପରିଗ୍ରହ କରିଥିଲା । ଆଲେକ୍‌ଜାଣ୍ଡାର ଆଲ୍ୟାବୟେଭ୍, ଆଲେକ୍‌ଜାଣ୍ଡାର ଗୁରିଲେଭ୍ ଏବଂ ଆଲେକ୍‌ଜାଣ୍ଡାର ଭାର୍ଲାମୋଭ୍ ରୁଷୀୟ ଲୋକ ଗୀତର ସାଂଗୀତିକ ଶୈଳୀରେ ନିବିଡ଼ ଆଗ୍ରହ ପ୍ରତିଫଳିତ କରିଥିଲେ । ମିଖାଇଲ ଗ୍ଲିଙ୍କା ଥିଲେ ରୁଷୀୟ ଶାସ୍ତ୍ରୀୟ ସଂଗୀତର ପ୍ରତିଷ୍ଠାତା । ତାଙ୍କର କୃତିରାଜି ଏବେବି ସଂଗୀତ ଥିଏଟର (ତାଙ୍କ ଅପେରା "ଇଭାନ୍ ସୁସାନିନ୍" ଏବଂ "ରୁସ୍‌ଲନ୍ ଏବଂ ଲୁଦ୍‌ମିଲ୍ଲ") ଏକତାନ ସଂଗୀତ ତଥା ମିଳିତ ସଂଗୀତ ଭଣ୍ଡାରରେ ପ୍ରଖ୍ୟାତ ହୋଇ ରହିଛି ।

ସ୍ଥପତିକଳା ଏବଂ ସ୍ଥାପତ୍ୟବିଦ୍ୟା କ୍ଷେତ୍ରରେ ଶାସ୍ତ୍ରୀୟତାର ପ୍ରାଧାନ୍ୟ ବିରାଜୁଥିଲା ଏବଂ ଏହା ଚମତ୍କାର ଭାବେ ପ୍ରକାଶ ପାଇଥିଲା କାର୍ଲ ବ୍ରିଉଲୋଭ୍‌ଙ୍କ ରଚନାବଳୀରେ । ୧୯ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ସେଣ୍ଟ୍ ପିଟର୍ସବୁର୍ଗ୍‌ରେ କାର୍ଲୋ ରୋଷିଙ୍କ ଦ୍ୱାରା ଏବଂ ମସ୍କୋରେ ମାତ୍‌ଭେଇ କାଜାକୋଭ୍‌ଙ୍କ ଦ୍ୱାରା ନିର୍ମିତ ସ୍ଥାପତ୍ୟ ଶୈଳୀପୂର୍ଣ୍ଣ ଭବନଗୁଡ଼ିକ ରୁଷୀୟ ଶାସ୍ତ୍ରୀୟତାର ଉଦାହରଣ ସ୍ୱରୂପ । ଏଥି ସଙ୍ଗେ ସଙ୍ଗେ ଭାସିଲି ଟ୍ରୋପିନିନ୍ ଏବଂ ଓରେଷ୍ଟ କିପ୍ରେନ୍‌ସି ମଣିଷର ବୌଦ୍ଧିକ ଜୀବନ ପ୍ରତି ଆଗ୍ରହ ପ୍ରଦର୍ଶନ କରିଥିଲେ, ଆଲେକ୍‌ଜାଣ୍ଡାର ଭେନେସିଆନୋଭ୍ ଗ୍ରାମ୍ୟ ଜୀବନର ବିଷୟବସ୍ତୁ ପ୍ରତି ଦୃଷ୍ଟି ଫେରେଇଲା ବେଳେ ଚିତ୍ରଶିଳ୍ପୀ ଇଭାନ୍ ଆଇଭାଜୋଭ୍‌ସ୍କି ତାଙ୍କର ସମୁଦ୍ର ଦୃଶ୍ୟାବଳୀର ଅଙ୍କନସମୂହ ପାଇଁ ବ୍ୟାପକ ଭାବେ ପ୍ରଶଂସା ଲାଭ କରିଥିଲେ । ରୁଷୀୟ ସ୍ଥାପତ୍ୟ କଳା ମଧ୍ୟକୁ ଏମ୍ପାୟାର ଶୈଳୀର ଅନୁପ୍ରବେଶ ଘଟିଥିଲା ।

ବିଗତ ଶତାବ୍ଦୀର ପ୍ରଥମାର୍ଦ୍ଧର ରୁଷୀୟ ପ୍ରଗତିଶୀଳ ଶିଳ୍ପକଳା ରୁଷିଆର ଅନ୍ୟାନ୍ୟ

ଜାତିମାନଙ୍କ କଳାର ବିକାଶ ଉପରେ କଲ୍ୟାଣକର ପ୍ରଭାବପାତ କରିଥିଲା – ୟୁକ୍ରେନୀୟ (ତାରାସ୍ ଶେଭ୍‌ଚେଙ୍କୋଙ୍କ କବିତା), ଜର୍ଜୀୟ (ନିକୋଲାସ୍ ବାରାଟାସ୍‌ଭିଲି, ଗ୍ରିଗୋଲ ଓର୍ବେଲିଆନି ଏବଂ ଆଲେକ୍‌ଜାଣ୍ଡାର ଗ୍ରଭ୍‌ଗ୍ରଭାଦ୍‌ଜେଙ୍କ ସୁକଳିତ କବିତା), ଆଜର୍‌ବୈଜାନୀୟ (ମିର୍ଜା ଫାଟାଲି ଆଖୁନ୍ଦୋଭ୍) ଏବଂ ଆର୍ମେନୀୟ (ଖାଗ୍‌ତୁର ଆବୋଭିଆନ୍‌ଙ୍କ ଗଦ୍ୟ ଏବଂ ପଦ୍ୟ) ।

ସାମାଜିକ ଚେତନାର ଢେଉ ଉପରେ ଗର୍ଜି ଉଠୁଥିବା ରୁଷୀୟ ସାହିତ୍ୟ ତା ନିଜ ପକ୍ଷରୁ ସମାଜ ଉପରେ ଏକ ସକ୍ରିୟ ପ୍ରଭାବ ପକାଇଥିଲା ଏବଂ ଚିନ୍ତା ଏବଂ ଅନୁଭବକୁ ଜନ୍ମ ଦେଇଥିଲା । ଫଳରେ ସ୍ୱୈରାଗ୍ରର ଏବଂ ଭୂମିଦାସ ପ୍ରଥା ବିରୁଦ୍ଧରେ ସଂଗ୍ରାମୀଙ୍କ ସଂଖ୍ୟା ବହୁ ଗୁଣିତ ହୋଇ ଯାଇଥିଲା । ୧୮୨୦ ଦଶକର ଶେଷ ଆଡ଼କୁ ମସ୍କୋ, ଓରେନ୍‌ବୁର୍ଗ୍ ଏବଂ ଅନ୍ୟାନ୍ୟ ସହରରେ ସରକାରବିରୋଧୀ ଚକ୍ରସବୁ ଧରା ପଡ଼ିଥିଲେ । ସେମାନଙ୍କ ମଧ୍ୟରୁ କେତେକଙ୍କର ମସ୍କୋ ବିଶ୍ୱବିଦ୍ୟାଳୟ ସହିତ ଯୋଗସୂତ୍ର ଥିବାର ପ୍ରମାଣ ମିଳିଥିଲା । ଏହି ବିଶ୍ୱବିଦ୍ୟାଳୟ ଥିଲା ରୁଷିଆର ପ୍ରଗତିଶୀଳ ଯୁବ ଶକ୍ତିର ଦୃଷ୍ଟି କେନ୍ଦ୍ର ସ୍ୱରୂପ । ଆଲେକ୍‌ଜାଣ୍ଡାର ହେର୍ଜେନ୍ ଏବଂ ନିକୋଲାଇ ଓଗାରିଓଭ୍‌ଙ୍କ ଭଳି ବିପ୍ଲବୀମାନେ ଏହି ବିଶ୍ୱବିଦ୍ୟାଳୟରୁ ସୃଷ୍ଟି ହୋଇଥିଲେ । ଛାତ୍ର ହିସାବରେ ସେମାନେ ସେମାନଙ୍କ ସଂଗ୍ରାମ ପ୍ରତି ନିଜକୁ ଉତ୍ସର୍ଗ କରିଥିଲେ ଏବଂ ଜୀବନର ଶେଷ ଦିନ ପର୍ଯ୍ୟନ୍ତ କେବେ ସେଥିରୁ ଓହରି ନଥିଲେ । ହେର୍ଜେନ୍‌ଙ୍କ ସହିତ ଏକକାଳୀନ ବିଶ୍ୱବିଦ୍ୟାଳୟରେ ଯୋଗ ଦେଇଥିଲେ ଭିଷାରିଅନ୍ ବେଲିନ୍‌ସ୍କି । ଭୂମିଦାସ ପ୍ରଥା ବିରୁଦ୍ଧରେ ଉଦ୍ଦିଷ୍ଟ ଏକ ନାଟକ ଲେଖିବା ଫଳରେ ବେଲିନ୍‌ସ୍କିଙ୍କୁ ବିଶ୍ୱବିଦ୍ୟାଳୟରୁ ବରଖାସ୍ତ କରାଯାଇଥିଲା ଏବଂ ଜାର୍‌ଶାହୀ ଯାଞ୍ଚ ବ୍ୟବସ୍ଥା ଦ୍ୱାରା ଏହି ନାଟକଟିର ମଞ୍ଚାୟନକୁ ନିଷିଦ୍ଧ କରି ଦିଆଯାଇଥିଲା । ତା'ପରେ ବେଲିନ୍‌ସ୍କି ସାମ୍ବାଦିକତା କରିଥିଲେ ଏବଂ ଜଣେ ପ୍ରଖ୍ୟାତ ସାହିତ୍ୟ ସମାଲୋଚକ ଏବଂ ୧୮୩୦ ତଥା ୧୮୪୦ ଦଶକରେ ପ୍ରଗତିଶୀଳ ଯୁବ ସମାଜର ଭାବାଦର୍ଶଗତ ନେତାରେ ପରିଣତ ହୋଇଥିଲେ । ବେଲିନ୍‌ସ୍କି ଏବଂ ହେର୍ଜେନ୍‌ଙ୍କ ନାମ ରୁଷିଆର ସାମାଜିକ ଚିନ୍ତା ଜଗତରେ ବିପ୍ଳବୀ-ଗଣତାନ୍ତ୍ରିକ ଧାରାର ଅଭ୍ୟୁଦୟ ସହିତ ସଂଯୁକ୍ତ । ଏହି ଧାରାଟି ଦେଶର କ୍ରମଶଃ ସଂସ୍କାର ଗ୍ରହୁଁଥିବା ଉଦାରତାବାଦୀମାନଙ୍କ ଠାରୁ ସଂପର୍କ ଛିନ୍ନ କରି ସ୍ୱତନ୍ତ୍ର ପଥରେ ଆଗେଇଥିଲା । ଏହିଭଳି ବିଭାଜନ ମଧ୍ୟ ମିଶାଇଲା ପେଟ୍ରାଶେଭ୍‌ସ୍କିଙ୍କ ଗୋଷ୍ଠୀରେ ୧୮୪୦ ଦଶକର ଦ୍ୱିତୀୟ ଭାଗରେ ଦେଖାଦେଇଥିଲା । ଏହି ଗୋଷ୍ଠୀର ସଦସ୍ୟମାନଙ୍କ ମଧ୍ୟରେ ଅନେକ ଭବିଷ୍ୟତ ଆକାଡେମିସିଆନ, ଲେଖକ ଫିଓଦର ଦସ୍ତୟେଭ୍‌ସ୍କି ଏବଂ କବି ଆଲେକ୍‌ସେଇ ପ୍ଲେଷ୍ଟେୟେଭ୍ ଥିଲେ । ଏହି ଗୋଷ୍ଠୀର ସଦସ୍ୟମାନଙ୍କ ମତାମତ ଉପରେ ଚୂଡ଼ାନ୍ତ ପ୍ରଭାବ ପାତ କରିଥିଲେ ବେଲିନ୍‌ସ୍କି ଏବଂ ହେର୍ଜେନ୍‌ଙ୍କ ସମେତ ପାଶ୍ଚାତ୍ୟ ସମାଜବାଦୀ ଚିନ୍ତାବିତ୍‌ଗଣ (ସର୍ବୋପରି, ଫୁରିଅର) । ଜନୈକ ଦଲାଲ-ପ୍ରରୋଚକର ବିଶ୍ୱାସଘାତକତା

ଫଳରେ ଏହି ଗୋଷ୍ଠୀର ସଦସ୍ୟମାନେ ଗିରଫ୍ ହୋଇଥିଲେ ଏବଂ ସେମାନଙ୍କ ମଧ୍ୟରୁ ୨୧ ଜଣଙ୍କୁ ମୃତ୍ୟୁଦଣ୍ଡ ଦିଆଯାଇଥିଲା; ତା'ପରେ ଏହି ଦଣ୍ଡକୁ କୋହଳ କରି ସେମାନଙ୍କୁ ସାଇବେରିଆରେ ନିର୍ବାସିତ କରାଗଲା ଏବଂ ଏହା ଘୋଷଣା କରାଯାଇଥିଲା ଦଣ୍ଡିତ ବ୍ୟକ୍ତିମାନେ ଫାଶିଖୁଣ୍ଟରେ ଚଢ଼ିବା ପାଇଁ ପୋଷାକ ପିନ୍ଧିବା ଏବଂ ଫାଶି ଦେବା ପୂର୍ବର ଢୋଲ ବାଜିବା ପରେ । ଏହିସବୁ ଦଣ୍ଡିତ ବ୍ୟକ୍ତିମାନଙ୍କ ମଧ୍ୟରେ ଥିଲେ ଫିଓଦର୍ ଦସ୍ତୟେଭ୍‌ସ୍କି ଏବଂ ସେ ଏହି ଦୃଶ୍ୟକୁ ତାଙ୍କ ଉପନ୍ୟାସ "ଇଦିଓତ୍"ରେ ("ନିର୍ବୋଧ") ବର୍ଣ୍ଣନା କରିଛନ୍ତି ।

ପ୍ରଗତିଶୀଳ ରୁଷୀୟ ସାମାଜିକ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇ କିୟେଭ୍‌ରେ କିରିଲ୍ ଏବଂ ମେଥଡିଅସ୍ ସମିତି ଗଠିତ ହୋଇଥିଲା ଏବଂ ଏହା ୟୁକ୍ରାଇନ୍‌ର ସାମାଜିକ ତଥା ଜାତୀୟ ମୁକ୍ତି ପାଇଁ ସ୍ୱର ଉତ୍ତୋଳନ କରିଥିଲା । ୟୁକ୍ରାଇନ୍‌ର ବିପ୍ଳବୀ-ଗଣତନ୍ତ୍ରବାଦୀ ଏବଂ ମହାନ୍ କବି ତଥା ଶିଳ୍ପୀ ତାରାସ୍ ଶେଭ୍‌ଚେଙ୍କୋ ଏହି ସମିତିର ସଦସ୍ୟମାନଙ୍କ ମଧ୍ୟରୁ ଅନ୍ୟତମ ଥିଲେ । ଶେଭ୍‌ଚେଙ୍କୋ ସାଧାରଣତଃ ସଂସାରବାଦୀ ମତ ଏବଂ ରଣକୌଶଳର ସପକ୍ଷରେ ଥିଲେ । ସେ ବିଶ୍ୱାସ କରୁଥିଲେ, ଜାର୍‌ଶାହୀ ସ୍ୱୈରତନ୍ତ୍ର ବିରୁଦ୍ଧରେ ସଂଗ୍ରାମର ସାଫଲ୍ୟ ଏବଂ ୟୁକ୍ରାଇନ୍‌ର ମୁକ୍ତି ଅର୍ଜିତ ହୋଇ ପାରିବ ଜାର୍‌ତନ୍ତ୍ର ଦ୍ୱାରା ଉତ୍ପୀଡ଼ିତ ସମସ୍ତ ଜାତି ଏବଂ ସମଗ୍ର ଦେଶର ବିପ୍ଳବୀ ଶକ୍ତିମାନଙ୍କ ମଧ୍ୟରେ ଐକ୍ୟ ଦ୍ୱାରା । ସମିତିର ଧ୍ୱଂସସାଧନ ପରେ (୧୮୪୭) ଶେଭ୍‌ଚେଙ୍କୋଙ୍କୁ କାସ୍ପିଆନ୍ ମରୁଭୂମି ଅଞ୍ଚଳରେ ନିର୍ବାସିତ ହୋଇଥିଲେ ଏବଂ ସେଠାରେ ତାଙ୍କୁ ସାଧାରଣ ସୈନିକର କଠିଣ କାର୍ଯ୍ୟ କରିବାକୁ ପଡ଼ୁଥିଲା । ସ୍ୱୈରତନ୍ତ୍ର ଏବଂ ଭୂମିଦାସ ପ୍ରଥା ବିରୁଦ୍ଧରେ ପରିଚାଳିତ ସଂଗ୍ରାମରେ ରୁଷ୍ ବାସୀମାନଙ୍କ ସହିତ ଦୃଢ଼ ଯୋଗସୂତ୍ର ପ୍ରତିଷ୍ଠା କରିବାକୁ ଚାହିଁଥିଲେ ଏସ୍ତୋନିଆରେ ଫ୍ରିଦରିକ୍ କ୍ରିଉତ୍‌ଜ୍ୟାଲ୍ଡ, ଜର୍ଜିଆରେ ଆଲେକ୍‌ଜାଣ୍ଡାର ଚାଭ୍‌ଚାଭାଦ୍‌ଜେ ଏବଂ ନିକୋଲାସ୍ ବାରାତାସ୍‌ଭିଲି, ଆଜର୍‌ବୈଜାନ୍‌ରେ ମିର୍ଜା ଫାତାଲି ଆଖୁନ୍ଦୋଭ୍ ଏବଂ ଆର୍ମେନିଆରେ ଖାଚ୍ଚତୁର ଆବୋଭିଆନ୍ ।

୧୮୫୦ ଦଶକର ପ୍ରାରମ୍ଭରେ ଜନୈକ ରୁଷୀୟ ବିପ୍ଳବୀ, ଚିନ୍ତାବିଦ୍ ଏବଂ ଦାର୍ଶନିକ ଆଲେକ୍‌ଜାଣ୍ଡାର ହେର୍ଜେନ୍ ଲଣ୍ଡନରେ ଏକ ବେଆଇନ୍ ପତ୍ରିକା, "କୋଲକୋଲ" ("ଘଣ୍ଟା") ପ୍ରତିଷ୍ଠା କରିଥିଲେ । ନେକ୍ରାସୋଭ୍‌ଙ୍କ ଦ୍ୱାରା ସଂପାଦିତ "ସୋଭ୍ରେମେନ୍ନିକ୍" ପତ୍ରିକାଟି ବିପ୍ଳବୀ ଗଣତନ୍ତ୍ରବାଦୀ ନିକଲାଇ ଚେର୍ଣ୍ଣିଶେଭ୍‌ସ୍କି ଏବଂ ନିକଲାଇ ଦୋବ୍ରୋଲିଉବୋଭ୍‌ଙ୍କ ଭର୍ତ୍ସନା ଏବଂ ଆବେଦନ ଆଦିକୁ ପ୍ରକାଶ କରୁଥିଲା । ସ୍ୱୈରତନ୍ତ୍ର ତଥା ଭୂମିଦାସ ପ୍ରଥା ବିରୁଦ୍ଧରେ ଏକ ଗଣ ଅଭ୍ୟୁତ୍ଥାନ ପାଇଁ କ୍ରିୟାକଳାପ ଏବଂ ପ୍ରସ୍ତୁତି ଚଳାଇଯିବାକୁ ସେମାନେ ଆହ୍ୱାନ ଦେଉଥିଲେ ଏବଂ ଏକ ବେଆଇନୀ ବିପ୍ଳବୀ ସଂଗଠନ ପ୍ରତିଷ୍ଠା କରିବାରେ ଅଂଶଗ୍ରହଣ କରିଥିଲେ । ୧୮୫୦ ଏବଂ ୧୮୬୦ ଦଶକରେ ରୁଷିଆର ସାମାଜିକ ଚିନ୍ତା ଜଗତରେ ବିପ୍ଳବୀ, ଚିନ୍ତାବିଦ୍, ଦାର୍ଶନିକ,

ଅର୍ଥନୀତିବିଦ୍, ଲେଖକ, ସାହିତ୍ୟ ସମାଲୋଚକ ଚେର୍ଣ୍ଣିଶେଭସ୍କି ଥିଲେ ସର୍ବ ବିଖ୍ୟାତ ନେତା । ସେଣ୍ଟ ପିଟର ଏବଂ ପଲ ଦୁର୍ଗରେ ବନ୍ଦୀ ବ୍ୟବସ୍ଥାରେ ତାଙ୍କ ଦ୍ୱାରା ରଚିତ "କ'ଣ କରିବାକୁ ହେବ ?" ଉପନ୍ୟାସଟି ଅସାଧାରଣ ସାଫଲ୍ୟ ଅର୍ଜନ କରିଥିଲା । ଦେଶର ନବାୟନ ଏବଂ ସ୍ୱୈରତନ୍ତ୍ରର ଉତ୍ଖାତ ପାଇଁ ପରିଚାଳିତ ସଂଗ୍ରାମ ପ୍ରତି ନିବେଦିତ "ନୂତନ ଲୋକମାନେ" ଥିଲେ ତାଙ୍କ ଉପନ୍ୟାସର ନାୟକବୃନ୍ଦ । ଚେର୍ଣ୍ଣିଶେଭ୍ସ୍କିଙ୍କର ଏହି ପୁସ୍ତକଟି ବହୁ ଦଶକ ଧରି ତରୁଣ ରୁଷୀୟ ବୁଦ୍ଧିଜୀବୀମାନଙ୍କର ଅତୀବ ପ୍ରିୟ ପୁସ୍ତକ ରୂପେ ବିବେଚିତ ହୋଇ ଆସିଥିଲା ।

ହେର୍ଜେନ୍ ଏବଂ ଚେର୍ଣ୍ଣିଶେଭ୍ସ୍କିଙ୍କ ଚିନ୍ତାଧାରାସମୂହର ବ୍ୟାପକ ବିସ୍ତୃତି ଏକ ବୈପ୍ଳବିକ ଅବସ୍ଥା ସୃଷ୍ଟିର ସୂଚନା ଦେଇଥିଲା । ଏହି ଅବସ୍ଥାର ଆଉରି ଅବନତି ଘଟିଥିଲା ୧୮୫୩-୧୮୫୬ର କ୍ରିମିଆ ଯୁଦ୍ଧରେ ରୁଷିଆର ପରାଜୟ ଦ୍ୱାରା ।

ମଧ୍ୟ ପ୍ରାଚ୍ୟରେ ବ୍ରିଟେନ୍, ଫ୍ରାନ୍ସ ଏବଂ ରୁଷିଆ – ଏହି ମହାଶକ୍ତିମାନଙ୍କର ସ୍ୱାର୍ଥରେ ସଂଘର୍ଷ ହେତୁ ଏହି ଯୁଦ୍ଧ ସୃଷ୍ଟି ହୋଇଥିଲା । ଏହି ଶକ୍ତିମାନେ ଦକ୍ଷିଣରେ ଦୁର୍ବଳ ତୁର୍କୀର ସମ୍ମୁଖୀନ ହୋଇଥିଲେ । ୧୮୨୮-୧୮୨୯ର ରୁଷ୍-ତୁର୍କୀ ଯୁଦ୍ଧ ପରେ ବଲକାନ୍ ଅଞ୍ଚଳରେ ରୁଷିଆର ଅବସ୍ଥାନ ଶକ୍ତିଶାଳୀ ହୋଇ ଉଠିଥିଲା : ରୁଷିଆ ଦାନ୍ୟୁବ୍ ନଦୀର ମୁହାଣ ଏବଂ କୃଷ୍ଣ ସାଗରର ପୂର୍ବୋପକୂଳ ଲାଭ କରିଥିଲା ଏବଂ ତୁର୍କୀ ସୁଲତାନ ଗ୍ରୀସ୍, ସର୍ବିଆ, ମୋଲଦାଭିଆ ଏବଂ ଓ୍ୱାଲଚିଆର ଆଭ୍ୟନ୍ତରୀଣ ସ୍ୱାୟତ୍ତଶାସନକୁ ମାନି ନେଇଥିଲେ । ୟୁରୋପର କେତେକ ଦେଶରେ ୧୮୪୮ ମସିହାର ବିପ୍ଳବର ପରାଜୟ ଫଳରେ ବଲକାନ୍ ଅଞ୍ଚଳରେ ରୁଷିଆର ପ୍ରଭାବ ଆଉରି ଦୃଢ଼ ହେବା ଦିଗରେ ଅନୁକୂଳ ପରିସ୍ଥିତି ସୃଷ୍ଟି କରିଛି ବୋଲି ପ୍ରଥମ ନିକଲାଇ ଅନୁଭବ କରିଥିଲେ । ତେବେ ପ୍ରଥମ ନିକଲାଇ ଆଉରି ଅନେକଗୁଡ଼ିଏ ବିଷୟକୁ ହିସାବକୁ ନେଇ ପାରି ନଥିଲେ । ମୋଲଦାଭିଆ ଓ ଓ୍ୱାଲଚିଆ ଅଧିକାର କରିବା ପାଇଁ ରୁଷିଆର ସୈନ୍ୟମାନଙ୍କୁ ଜାର୍ ନିର୍ଦ୍ଦେଶ ଦେଲା ବେଳେ ତୁର୍କୀ ରୁଷିଆ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ଦେଲା (୧୮୫୩, ଅକ୍ଟୋବର ୧୬) । ଏହାର ମାସକ ପରେ ଆଡମିରାଲ ପାଭେଲ ନାଖିମୋଭ୍ ସିନୋପ ଯୁଦ୍ଧରେ ତୁର୍କୀର ନୌବହରକୁ ମୂଳପୋଛ କରି ଦେଇଥିଲେ ଏବଂ ପ୍ରଥମ ନିକଲାଇଙ୍କ ପକ୍ଷରେ ଅପ୍ରତ୍ୟାଶିତ ଭାବେ ଏକ ଆଙ୍ଗ୍ଲୋ-ଫରାସୀ ନୌବହର ହଠାତ୍ କୃଷ୍ଣ ସାଗର ମଧ୍ୟରେ ପ୍ରବେଶ କଲା । ୧୮୫୪ ମସିହା ମାର୍ଚ୍ଚ ମାସରେ ବ୍ରିଟେନ୍ ଏବଂ ଫ୍ରାନ୍ସ ରୁଷିଆ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ଦେଲେ । ଶିଳ୍ପଗତ ଭାବେ ଅତୀବ ବିକଶିତ ଏହି ଦୁଇଟି ଦେଶ କାରିଗରି, ଅର୍ଥନୀତି ତଥା ସାମରିକ ଭାବେ ଅନଗ୍ରସର ରୁଷିଆର ବିରୋଧିତା କରୁଥିଲେ । ୧୮୫୪ ମସିହା ଗ୍ରୀଷ୍ମ କାଳରେ ରୁଷିଆର ବଲ୍ଟିକ୍, ଶ୍ୱେତ ସାଗର ଏବଂ ପ୍ରଶାନ୍ତ ମହାସାଗର ଉପକୂଳବର୍ତ୍ତୀ ବନ୍ଦରଗୁଡ଼ିକ ଉପରେ ଆଙ୍ଗ୍ଲୋ-ଫରାସୀ ନୌତରୀଗୁଡ଼ିକ ଆକ୍ରମଣ ଆରମ୍ଭ କରି ଦେଲେ । ରୁଷୀୟ ସ୍ଥଳସେନା ଏବଂ ନୌସେନା

ତୁଳନାମୂଳକ ଭାବେ ସହଜରେ ଏହିସବୁ ଆକ୍ରମଣକୁ ପ୍ରତିହତ କରି ଦେଇଥିଲେ । କିନ୍ତୁ କ୍ରିମିଆ ଉପରେ ମିତ୍ର ଗୋଷ୍ଠୀ ଯେତେବେଳେ ଚୂଡ଼ାନ୍ତ ଆଘାତ ହାଣିଲେ, ରୁଷୀୟ ସୈନ୍ୟବାହିନୀର ଅବସ୍ଥା ସଂକଟସଂପନ୍ନ ହୋଇ ପଡ଼ିଲା । ମସ୍କୋର ଦକ୍ଷିଣାଞ୍ଚଳରେ ରେଳପଥ ନଥିବାରୁ ରୁଷିଆ ଦ୍ରୁତ ଭାବେ କ୍ରିମିଆକୁ ଅଧିକ ସୈନ୍ୟ ପଠାଇ ପାରିଲା ନାହିଁ କି କ୍ରିମିଆରେ ଅବସ୍ଥିତ ସୈନ୍ୟମାନଙ୍କୁ ଅସ୍ତ୍ରଶସ୍ତ୍ର ତଥା ଖାଦ୍ୟ ସାମଗ୍ରୀ ଯୋଗାଇ ପାରିଲା ନାହିଁ । ମିତ୍ରଗୋଷ୍ଠୀର ସେନାବାହିନୀଗୁଡ଼ିକ ମଧ୍ୟ ଅସ୍ତ୍ରଶସ୍ତ୍ର ଦିଗରୁ ଅଧିକ ସୁସଜ୍ଜିତ ଥିଲେ : ସେମାନଙ୍କ ସୈନ୍ୟମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ହାତରେ ରାଇଫେଲ ଥିଲା ବେଳେ ରୁଷୀୟମାନଙ୍କ ହାତରେ ଥିଲା ସାର୍ଡିନିଆ ନଳୀ ବନ୍ଧୁକ । ଯେଭ୍‌ପାତୋରିଆରେ ଓଲ୍‌ହାଇ ଏବଂ ସଂଖ୍ୟାଗତ ଦିଗରୁ ଦୁଇ ଗୁଣ ଅଧିକ ହୋଇଥିବାର ସୁଯୋଗ ନେଇ ମିତ୍ର ଶକ୍ତିମାନେ ରୁଷୀୟ ସେନାବାହିନୀକୁ ବାଖ୍‌ଚିସାରାଇକୁ ପଶ୍ଚାଦ୍‌ପସରଣ କରିବାକୁ ବାଧ୍ୟ କରିଥିଲେ । କିନ୍ତୁ ପ୍ରଧାନ ରୁଷୀୟ ନୌଘାଟି ସେଭାସ୍ତୋପୋଲ୍ ଆତ୍ମସମର୍ପଣ କରିବାକୁ ଅସ୍ୱୀକାର କରିଥିଲା । ସେମାନଙ୍କ ଆଡମିରାଲ ପାଭେଲ ନାଖିମୋଭ୍, ଭ୍ଲାଦିମିର୍ କର୍ନିଲେଭ୍ ଏବଂ ଭ୍ଲାଦିମିର୍ ଇସ୍ତୋମିନ୍‌ଙ୍କ ନେତୃତ୍ୱାଧୀନରେ କୃଷ୍ଣସାଗରୀୟ ନୌବହରର ନୌସୈନିକମାନେ ସମଗ୍ର ସହରକୁ ଏକ ଅଭେଦ୍ୟ ଦୁର୍ଗରେ ପରିଣତ କରି ଦେଇ ବୀରତ୍ୱପୂର୍ଣ୍ଣ ଭାବେ ଦୁର୍ଗ ଉପରୁ ଯୁଦ୍ଧ କରିଥିଲେ । ତେବେ ଉଭୟ ଶକ୍ତି ମଧ୍ୟରେ ଅସାମ୍ୟତା ଅନେକ ବେଶି ଥିଲା । କର୍ନିଲେଭ୍ ସମ୍ମୁଖ ରଣାଙ୍ଗନରେ ପ୍ରାଣ ଦେଲେ ଏବଂ ପରେ ଇସ୍ତୋମିନ୍ ଏବଂ ନାଖିମୋଭ୍ ମଧ୍ୟ ମୃତ୍ୟୁବରଣ କଲେ । ୩୪୯ ଦିନ ବ୍ୟାପୀ ପ୍ରତିରକ୍ଷା ପରେ ୧୮୫୫, ଅଗଷ୍ଟ ୨୭ ତାରିଖ ଦିନ ରୁଷ୍ ସୈନ୍ୟମାନେ ସେଭାସ୍ତୋପୋଲ ପରିତ୍ୟାଗ କରିଥିଲେ । ଏହି ବିଜୟ ପାଇଁ ମିତ୍ର ଶକ୍ତିକୁ ଅନେକ ମୂଲ୍ୟ ଦେବାକୁ ପଡ଼ିଥିଲା । ସେଭାସ୍ତୋପୋଲ୍‌ରେ ସେମାନଙ୍କୁ ୭୦,୦୦୦ ସୈନ୍ୟଙ୍କୁ ହରେଇବାକୁ ପଡ଼ିଥିଲା ଏବଂ ସେମାନଙ୍କ ସାଫଲ୍ୟକୁ ସେମାନେ ବିକଶିତ କିମ୍ବା ଦୃଢ଼ୀଭୂତ କରି ପାରି ନଥିଲେ । ତା'ଛଡ଼ା ରୁଷୀୟ ସୈନ୍ୟଦଳଗୁଡ଼ିକ କକେସସ୍ ରଣାଙ୍ଗନରେ ଆକ୍ରମଣ ଆରମ୍ଭ କରିବାକୁ ସକ୍ଷମ ହୋଇଥିଲେ, ବ୍ରିଟିଶ୍ ଜେନେରାଲଙ୍କ ନେତୃତ୍ୱରେ ପରିଚାଳିତ ୩୩,୦୦୦ ତୁର୍କୀ ସେନାଙ୍କର ଶକ୍ତ ପ୍ରତିରୋଧକୁ ପଣ୍ଡ କରି ୧୮୫୫, ନଭେମ୍ବର ମାସରେ କାରସ୍ ଦଖଲ କରି ନେଲେ ।

ତେବେ ସବୁ ଦିଗରୁ ଦେଖିଲେ ରୁଷିଆ ଏହି ଯୁଦ୍ଧରେ ପରାଜିତ ହୋଇଥିଲା । ଅଷ୍ଟ୍ରିଆ ପକ୍ଷରୁ ସାମରିକ ହସ୍ତକ୍ଷେପ ଭୟରେ ନୂତନ ଜାର୍ ଦ୍ୱିତୀୟ ଆଲେକ୍‌ଜାଣ୍ଡାର (୧୮୫୫-୧୮୮୧) ଶାନ୍ତି ଚୁକ୍ତି କରିବାକୁ ରାଜି ହୋଇ ଯାଇଥିଲେ । ୧୮୫୬ ମସିହା ମାର୍ଚ୍ଚ ମାସରେ ପ୍ୟାରିସ୍ ଠାରେ ସ୍ୱାକ୍ଷରିତ ଏହି ଚୁକ୍ତି ଅନୁଯାୟୀ ରୁଷିଆକୁ ଦାନ୍ୟୁବ୍ ନଦୀର ମୁହାଣ ଏବଂ ଦକ୍ଷିଣ ବାସାରାବିଆ ଛାଡ଼ିବାକୁ ପଡ଼ିଥିଲା ଏବଂ କୃଷ୍ଣ ସାଗରରେ ନୌବହର ରଖିବାରୁ ବଞ୍ଚିତ ହେଲା ।

ଯୁଦ୍ଧରେ ରୁଷିଆର ପରାଜୟ ଫଳରେ ଦେଶର ବ୍ୟାପକ ଜନସାଧାରଣଙ୍କ ମଧ୍ୟରେ ଗଭୀର ଅସନ୍ତୋଷ ସୃଷ୍ଟି କରିଥିଲା । ଦେଶ ସାରା କୃଷକ ବିଦ୍ରୋହର ଜୁଆର ଖେଳି ଗଲା । ଜାର୍‌ତନ୍ତ୍ର ତା'ର ଅବସ୍ଥାନକୁ ସୁଦୃଢ଼ କରିବା ଉଦ୍ଦେଶ୍ୟରେ ଦେଶରେ ବୁର୍ଜୁଆ ସଂସ୍କାରସମୂହ କାର୍ଯ୍ୟକାରୀ କରିବାକୁ ବାଧ୍ୟ ହୋଇଥିଲା । ୧୮୬୧, ଫେବୃଆରୀ ୧୯ ତାରିଖ ଦିନ ଦ୍ୱିତୀୟ ଆଲେକ୍‌ଜାଣ୍ଡର ଭୂମିଦାସ ପ୍ରଥା ଉଚ୍ଛେଦର ଏକ ଇସ୍ତାହାରରେ ସ୍ୱାକ୍ଷର କରିଥିଲେ । ମୋଟ ୨୨.୫ ନିୟୁତ କୃଷକ ଭୂମିଦାସତ୍ୱର ଶୃଙ୍ଖଳରୁ ମୁକ୍ତ ହେଲେ ଏବଂ ପ୍ରକୃତ ମାହାଲ କିଣିବାର, ବାଣିଜ୍ୟ ତଥା ଶିଳ୍ପ ଆଦି କାର୍ଯ୍ୟରେ ଅଂଶଗ୍ରହଣ କରିବାର ଏବଂ ବିଚାରାଳୟରେ ନାଲିଶ କରିବାର ଅଧିକାର ଲାଭ କଲେ । ୧୮୬୪ ମସିହାରେ ଜେମସ୍ତଭୋ ନିର୍ବାଚିତ ଗ୍ରାମ୍ୟ ପରିଷଦସମୂହର ସରକାରୀ ନିର୍ଦ୍ଦେଶ ଏବଂ ୧୮୭୦ରେ ସହର ସଂକ୍ରାନ୍ତ ସରକାରୀ ନିର୍ଦ୍ଦେଶ ସରକାର ପକ୍ଷରୁ ଜାରି ହେଲା । ପ୍ରାଦେଶିକ ସରକାରୀ ନିର୍ଦ୍ଦେଶ ଅନୁଯାୟୀ ପ୍ରଦେଶ ଏବଂ ଉଏଜ୍‌ଦ (ଜିଲ୍ଲା) ପ୍ରତିନିଧିମୂଳକ ପରିଷଦମାନ ପ୍ରତିଷ୍ଠିତ ହେଲା କାର୍ଯ୍ୟକାରୀ ବୋର୍ଡ ସମେତ, ସହରମାନଙ୍କରେ ସହର ଡୁମା (ପରିଷଦ) ଏବଂ ଉପ୍ରାଭାମାନଙ୍କରେ (ବୋର୍ଡ) ଗଠିତ ହେଲା । ସମ୍ଭ୍ରାନ୍ତମାନେ ଜେମସ୍ତଭୋରେ ଏବଂ ବୁର୍ଜୁଆ ଶ୍ରେଣୀର ଧନିକ ଅଂଶଟି ସହର ପରିଷଦମାନଙ୍କରେ ପ୍ରାଧାନ୍ୟ ଲାଭ କରିଥିଲେ । ଜେମସ୍ତଭୋ ଏବଂ ସହର ପରିଷଦମାନଙ୍କ କ୍ରିୟାକଳାପ ସ୍ଥାନୀୟ ଅର୍ଥନୀତି, ସ୍ୱାସ୍ଥ୍ୟ ଏବଂ କିଛି ପରିମାଣରେ ଶିକ୍ଷା ମଧ୍ୟରେ ସୀମିତ ଥିଲା ।

୧୮୬୪ ମସିହାରେ ବିଚାରାଳୟ ବ୍ୟବସ୍ଥାରେ ମଧ୍ୟ ସଂସ୍କାର ସାଧନ କରାଯାଇଥିଲା : ସମସ୍ତ ମାହାଲ ପାଇଁ ବିଚାରାଳୟ ସ୍ଥାପନ କରାଯିବା ସଙ୍ଗେ ସଙ୍ଗେ ପ୍ରକାଶ୍ୟରେ ବିଚାରର କାର୍ଯ୍ୟ ପରିଚାଳନା କରାଗଲା । ଫୌଜଦାରି କେଶ୍‌ସମୂହର ବିଚାର ଏକ ଜୁରିର ଅଂଶଗ୍ରହଣରେ ଚାଲିଲା ଏବଂ ବିଚାରାଳୟରେ ଖୋଲା ଅଦାଲତ୍ ସ୍ଥାପିତ ହେଲା । ଦଶ ବର୍ଷ ପରେ ୧୮୭୪ ମସିହାରେ ସାମରିକ ସଂସ୍କାରସମୂହକୁ ଆଇନ୍‌ବଦ୍ଧ କରାଗଲା । ଏହିସବୁ ସଂସ୍କାର ଆରମ୍ଭ ହୋଇଥିଲା ୧୮୬୦ ଦଶକରେ । ପୂର୍ବତନ ନିଯୁକ୍ତି ବ୍ୟବସ୍ଥାକୁ ଉଠେଇ ଦିଆଗଲା ଏବଂ ସାର୍ବଜନୀନ ନିଯୁକ୍ତି ବ୍ୟବସ୍ଥା ଚାଲୁ କରାଗଲା; ୨୫ ବର୍ଷିଆ ସାମରିକ ଚାକିରିକୁ ୬-୭ ବର୍ଷକୁ ହ୍ରାସ କରାଗଲା ।

ଭୂମିଦାସମାନଙ୍କର ଏକ ସରକାର ଦ୍ୱାରା ୧୮୬୦ ଦଶକ ଏବଂ ୧୮୭୦ ଦଶକରେ ଅନୁଷ୍ଠିତ ସଂସ୍କାରସମୂହ କୌଣସି ପ୍ରକାରେ ବିପ୍ଳବାତ୍ମକ ହୋଇ ପାରେ ନାହିଁ । ସମ୍ଭ୍ରାନ୍ତ ସଂପ୍ରଦାୟ ଏବଂ ଉଚ୍ଚ ପଦସ୍ଥ ଅମଲାମାନେ ଦେଶର ଅର୍ଥନୈତିକ ତଥା ରାଜନୈତିକ ଜୀବନରେ ଗୁରୁତ୍ୱପୂର୍ଣ୍ଣ ପଦବିରେ ଅଧିଷ୍ଠିତ ଥିଲେ । ଏହା ବିଶେଷ ଭାବେ ଘଟିଥିଲା କୃଷି ଏବଂ କୃଷକ ସଂକ୍ରାନ୍ତ ସମସ୍ୟା କ୍ଷେତ୍ରରେ ।

୧୮୬୧ ମସିହାର ସଂସ୍କାର ଆଇନ୍‌ସମୂହ ଅନୁଯାୟୀ ବୃହତ୍ ଯୋତଗୁଡ଼ିକରେ

କୌଣସି ଆଞ୍ଚ ଲଗି ନଥିଲ । ତା'ଛଡ଼ା କୃଷକମାନଙ୍କୁ ଯେଉଁ ଜମି ଦିଆଗଲ, ତାହା ସେମାନଙ୍କ ଦ୍ୱାରା ସଂସ୍କାର ପୂର୍ବରୁ ବ୍ୟବହୃତ ଜମିର ପରିମାଣ ଠାରୁ ଅନେକ କମ୍ ଥିଲ । ନିୟମ ଅନୁଯାୟୀ, କୃଷକମାନଙ୍କୁ ସେହିସବୁ ଭୂମିରୁ ବଞ୍ଚିତ କରାଯାଇଥିଲ, ଯେଉଁସବୁ ବିନା କୃଷକମାନେ ଚଳି ପାରନ୍ତି ନାହିଁ । ବିଶେଷ କରି, ସେସବୁ ହେଲ ଜଙ୍ଗଲ, ନଡ଼ାକ୍ଷେତ ଏବଂ ପଶୁଚରଣ ଭୂଇଁ । ଏସବୁ ଜମିଦାରମାନଙ୍କ ଅଧିକାରରେ ରହିଥିଲ । ସଂସ୍କାର ଆଇନ୍ ଅନୁଯାୟୀ କୃଷକମାନଙ୍କୁ ମିଳୁଥିବା ଜମିରେ ମାଲିକ ହେବା ପାଇଁ ମୂଲ୍ୟ ଦେବାକୁ ପଡ଼ୁଥିଲ ଏବଂ ଏହି ମୂଲ୍ୟର ମାତ୍ରା ଥିଲ ବଜାର ମୂଲ୍ୟ ଅପେକ୍ଷା ଅନେକ ଗୁଣ ବେଶି (କେବଳ ୧୯୦୫-୧୯୦୭ର ବିପ୍ଳବ ଫଳରେ ଜାର୍‌ତନ୍ତ୍ର ବାଧ୍ୟ ହୋଇଥିଲ ସେଇସବୁ ମୂଲ୍ୟ ବାବଦକୁ ଥିବା ବାକିଆ ଅର୍ଥକୁ ନାକଚ କରି ଦେବାକୁ) । ଜମିଦାରମାନେ ଯେଉଁସବୁ ସର୍ତ୍ତ ଉପରେ କୃଷକମାନଙ୍କୁ ଜମି ବ୍ୟବହାର କରିବାକୁ ଦେଉଥିଲେ, ତାହା ଅତ୍ୟନ୍ତ ଅନ୍ୟାୟମୂଳକ ଥିଲ । ଏସବୁ ସତ୍ତ୍ୱେ ୧୮୬୦ ଦଶକ ଏବଂ ୧୮୭୦ ଦଶକର ସଂସ୍କାରସମୂହ ଥିଲ ଅତୀବ ଗୁରୁତ୍ୱପୂର୍ଣ୍ଣ । ସାମନ୍ତତାନ୍ତ୍ରିକ-ଭୂମିଦାସ ପ୍ରଥାଯୁକ୍ତ ରୁଷିଆର ଇତିହାସର ଶେଷ ପୃଷ୍ଠାଟି ଏହା ଫଳରେ ଓଲଟି ଗଲ ଏବଂ ଦେଶ ପ୍ରବେଶ କଲ ପୁଞ୍ଜିବାଦୀ ଯୁଗ ମଧ୍ୟକୁ ।

# ୧୦ମ ପରିଚ୍ଛେଦ

# ସଂସ୍କାର ପରେ ରୁଷିଆର ସାମାଜିକ-ଅର୍ଥନୈତିକ ବିକାଶ

ଭୂମିଦାସ ପ୍ରଥାର ବିଲୋପର ପରବର୍ତ୍ତୀ ପ୍ରଥମ ଚାଳିଶ ବର୍ଷ, ୧୮୬୧-୧୯୦୦ ପର୍ଯ୍ୟନ୍ତ କାଳଟି ଥିଲା ରୁଷିଆ ପକ୍ଷରେ ଶିଳ୍ପଗତ ପୁଞ୍ଜିବାଦର (ଏକଚେଟିଆ ପୂର୍ବ) ଯୁଗ । ଅନ୍ୟାନ୍ୟ ପୁଞ୍ଜିବାଦୀ ଦେଶସମୂହ ଭଳି ଏହି ଯୁଗର ଆଧେୟ ଏବଂ ଫଳ ହେଲା ଅର୍ଥନୈତିକ କ୍ଷେତ୍ରରେ ବୃହଦାକାର ଶିଳ୍ପ ଉତ୍ପାଦନ ବ୍ୟବସ୍ଥାର ଉଦ୍‌ଭବ ଏବଂ ସାମାଜିକ କ୍ଷେତ୍ରରେ ବୁର୍ଜୁଆ ସମାଜର ମୂଳ ଶ୍ରେଣୀସମୂହ, ବୁର୍ଜୁଆ ତଥା ସର୍ବହରା ଶ୍ରେଣୀ ସୃଷ୍ଟି ।

୨୦ଶ ଶତାବ୍ଦୀର ପ୍ରାରମ୍ଭ ବେଳକୁ ଦେଶ ମଧ୍ୟରେ ୨୫,୦୦୦ ଶିଳ୍ପୋଦ୍ୟୋଗ ରହିଥିଲା ଏବଂ ଏସବୁଥିରେ ୨୦ ଲକ୍ଷ ଲୋକ କାର୍ଯ୍ୟରତ ଥିଲେ । ଶିଳ୍ପୋତ୍ପାଦନରେ ଶତକଡ଼ା ୨୫ ଭାଗ ଉତ୍ପାଦିତ ହେଉଥିଲା ଭାରୀ ଶିଳ୍ପରେ । ଆମେରିକା ଯୁକ୍ତ ରାଷ୍ଟ୍ର, ଜର୍ମାନୀ ଏବଂ ବ୍ରିଟେନ୍‌ର ଶିଳ୍ପ କ୍ଷମତା ଠାରୁ ରୁଷିଆ ଅନେକ ପଛରେ ଥିଲେ ମଧ୍ୟ ଏହା ଅଷ୍ଟ୍ରିଆ-ହଙ୍ଗେରୀ, ଇଟାଲୀ ଏବଂ ଜାପାନ୍‌କୁ ପଛରେ ପକାଇ ଫ୍ରାନ୍‌ସ ସହିତ ସମାନ ସ୍ତରକୁ ଆସି ଯାଇଥିଲା ।

ରୁଷିଆରେ ସେତେବେଳେ ୫୩.୦୦୦ କିଲୋମିଟର ଲମ୍ବର ରେଳପଥ ପ୍ରତିଷ୍ଠିତ ହୋଇଥିଲା ଏବଂ ଦେଶର ୟୁରୋପୀୟ ଅଂଶର ମୁଖ୍ୟ ଶିଳ୍ପାଞ୍ଚଳ ସହିତ ଖାଉଟି ଅଞ୍ଚଳଗୁଡ଼ିକୁ ସଂଯୁକ୍ତ କରୁଥିଲା । ଏହା ଦ୍ୱାରା ପୁଞ୍ଜିବାଦ ଆଗରେ ଉନ୍ମୋଚିତ ହୋଇ ଯାଇଥିଲା ସାଇବେରିଆ, କକେସସ୍ ଏବଂ ମଧ୍ୟ ଏସିଆର କେତେକାଂଶ । ସ୍ୱଳ୍ପ କାଳ ମଧ୍ୟରେ ଦେଶରେ ବୃହତ୍ ଜଏଣ୍ଟ୍‌ଷ୍ଟକ ବାଣିଜ୍ୟିକ ବ୍ୟାଙ୍କ୍‌କୁ ଭିତ୍ତି କରି ଗଢ଼ି ଉଠିଥିଲା ଏକ ଋଣଦାନ ବ୍ୟବସ୍ଥା ।

ବୃହତ୍ ଶିଳ୍ପ ଉତ୍ପାଦନର ବିକାଶ ଫଳରେ ରୁଷିଆରେ ସୃଷ୍ଟି ହୋଇଥିଲା ଏକ ଶିଳ୍ପ ସର୍ବହରା ଶ୍ରେଣୀ । ଶିଳ୍ପୋତ୍ପାଦନ, ଖଣି ଏବଂ ଧାତୁ ଶିଳ୍ପସମୂହ ଏବଂ ୟୁରୋପୀୟ ରୁଷିଆର ରେଳପଥରେ ୧୮୬୫ରେ ନିଯୁକ୍ତ ଥିଲେ ୭୦୬,୦୦୦ ଲୋକ ଏବଂ ୧୯୦୩ରେ ୨,୨୦୮ ନିୟୁତ ଲୋକ । ଶତାବ୍ଦୀର ପ୍ରାୟ ଏକଚତୁର୍ଥାଂଶ ସମୟରେ ଦେଶର

ୟୁରୋପୀୟ ଅଂଶରେ ଶ୍ରମିକମାନଙ୍କ ସଂଖ୍ୟା ୩ ଗୁଣ ବୃଦ୍ଧି ଯାଇଥିଲା ବେଳେ ଦେଶର ଜନସଂଖ୍ୟା ବୃଦ୍ଧି ପାଇଥିଲା ମାତ୍ର ଶତକଡ଼ା ୫୦ ଭାଗ । ୧୮୮୦ ଏବଂ ୧୮୯୦ ଦଶକରେ ଏହି ସର୍ବହରାର ଶତକଡ଼ା ୪୦ ଭାଗ ବୃହଦାକାର ଶିଳ୍ପରେ, ବିଶେଷ କରି କେନ୍ଦ୍ରୀୟ ଶିଳ୍ପାଞ୍ଚଳର କେତେକ ଶିଳ୍ପରେ ବଂଶାନୁଗତ ଶ୍ରମିକମାନଙ୍କ ଭାଗ ମଧ୍ୟ ଆଉରି ଅଧିକ ଥିଲା ।

ରୁଷିଆର ସର୍ବହରାମାନଙ୍କର ଅତି ମାତ୍ରାରେ ଠୁଳୀକରଣ ମଧ୍ୟ ଲକ୍ଷ୍ୟ କରିବାର କଥା । ୧୯୦୩ ମସିହାରେ ୟୁରୋପୀୟ ରୁଷିଆରେ ବୃହତ୍ ଶିଳ୍ପୋଦ୍ୟୋଗମାନଙ୍କରେ (୧୦୦ ଜଣରୁ ଅଧିକ ଶ୍ରମିକ କାମ କରୁଥିବା) ସମସ୍ତ କାରଖାନା ଶ୍ରମିକମାନଙ୍କର ଶତକଡ଼ା ୭୫ ଭାଗରୁ ଅଧିକ ନିଯୁକ୍ତ ଥିଲେ ଏବଂ ପ୍ରାୟ ଅର୍ଦ୍ଧେକ ନିଯୁକ୍ତ ଥିଲେ ବୃହତ୍ ଶିଳ୍ପୋଦ୍ୟୋଗଗୁଡ଼ିକରେ (୫୦୦ରୁ ଅଧିକ ଶ୍ରମିକ କାମ କରୁଥିବା) । ତୁଳନାଗତ ଦୃଷ୍ଟିରୁ ଜର୍ମାନୀରେ ଏହି ସମୟରେ ସମଗ୍ର ଶ୍ରମିକମାନଙ୍କ ମଧ୍ୟରୁ ମାତ୍ର ଶତକଡ଼ା ୧୫.୩ ଭାଗ ୫୦୦ରୁ ଉର୍ଦ୍ଧ୍ୱ ଶ୍ରମିକ ନିଯୁକ୍ତ ଥିବା ଶିଳ୍ପୋଦ୍ୟୋଗମାନଙ୍କରେ କାର୍ଯ୍ୟ କରୁଥିଲେ । ସର୍ବଶେଷରେ ଲକ୍ଷ୍ୟ କରିବାର କଥା ଯେ, ଅର୍ଦ୍ଧେକରୁ ଅଧିକ କାରଖାନା ଅବସ୍ଥିତ ଥିଲା ସହରମାନଙ୍କ ବାହାରେ ଏବଂ ଏହି କାରଣରୁ ରୁଷିଆର ଶିଳ୍ପାଞ୍ଚଳୀୟ ଜନସଂଖ୍ୟା ଏହାର ସହରାଞ୍ଚଳୀୟ ଜନସଂଖ୍ୟା ଠାରୁ ଅନେକ ବେଶି ଥିଲା । ବୃହଦାକାର ଶିଳ୍ପର ଏହି ଧରଣର ଅବସ୍ଥା ଫଳରେ ଶ୍ରମିକ ଶ୍ରେଣୀ ଏବଂ କୃଷକ ଜନସଂଖ୍ୟା ମଧ୍ୟରେ ସଂପର୍କକୁ ଦୃଢ଼ ହୋଇଥିଲା ଏବଂ ଗ୍ରାମାଞ୍ଚଳରେ ଶ୍ରମିକମାନଙ୍କ ପ୍ରଭାବକୁ ଶକ୍ତିଶାଳୀ କରିବା ଦିଗରେ ସହାୟକ ହୋଇଥିଲା ।

ଏହି ଭାବେ ଜାତୀୟ ଅର୍ଥନୀତିର ମୂଳଭିତ୍ତି ହିସାବରେ ବୃହଦାକାର ଶିଳ୍ପ ଉତ୍ପାଦନର ଏକ ବ୍ୟବସ୍ଥା ୧୯ଶ ଶତାବ୍ଦୀର ଶେଷରେ ରଚିତ ହୋଇଥିଲା ପଶ୍ଚିମ ୟୁରୋପୀୟ ଦେଶମାନଙ୍କରେ ପୁଞ୍ଜିବାଦୀ ଦେଶମାନଙ୍କର "ପ୍ରଥମ ଏଚେଲନରେ" ଯେପରି ଘଟିଥିଲା । ତେବେ ପଶ୍ଚିମ-ୟୁରୋପୀୟ ପୁଞ୍ଜିବାଦୀ ଦେଶମାନଙ୍କରେ ଯେଉଁ କ୍ରମ ପର୍ଯ୍ୟାୟରେ ବୃହଦାକାର ଶିଳ୍ପୋତ୍ପାଦନର ବିକାଶ ଘଟିଥିଲା – ଲଘୁଶିଳ୍ପରୁ ଉତ୍ପାଦନର ଉପାୟ ଉପକରଣ ଉତ୍ପାଦନକାରୀ ଶିଳ୍ପସମୂହ, ତା'ପରେ ବାଷ୍ପଚାଳିତ ଗମନାଗମନ ବ୍ୟବସ୍ଥା – ତା'ଠାରୁ ଅଧିକ ମୌଳିକ ଭାବେ ରୁଷିଆରେ ପରିବର୍ତ୍ତନ ଘଟିଥିଲା । ଶିଳ୍ପ ବିପ୍ଳବ, ଅର୍ଥାତ୍, ହସ୍ତଶିଳ୍ପରୁ ଶିଳ୍ପଜାତ ଦ୍ରବ୍ୟ ଉତ୍ପାଦନକୁ ଉତ୍ତରଣ ରୁଷିଆରେ ସଂପନ୍ନ ହୋଇଥିଲା ୧୮୭୦ ଦଶକର ଶେଷରେ । ଏଥି ସାଥେ ସାଥେ ୟୁରୋପୀୟ ରୁଷିଆରେ ସଘନ ରେଳ ଚଳାଚଳ ବ୍ୟବସ୍ଥା ଆରମ୍ଭ ହୋଇଯାଇଥିଲା ୧୮୬୦ ଏବଂ ୧୮୭୦ ଦଶକରେ । ଏହି ସମୟରେ ବର୍ଷକୁ ୧,୫୦୦ କିଲୋମିଟରରୁ କମ୍ ରେଳପଥ ନିର୍ମିତ ହୋଇ ନଥିଲା । ୧୮୯୦ ଦଶକରେ ଏହି ନିର୍ମାଣର ତୀବ୍ରତା ବୃଦ୍ଧି ପାଇ ବାର୍ଷିକ ୨,୫୦୦ କିଲୋମିଟର ପର୍ଯ୍ୟନ୍ତ ରେଳପଥ ନିର୍ମିତ ହୋଇଥିଲା । ଏସବୁ ଘଟିଥିଲା ସରକାର ପକ୍ଷରୁ

ରେଳପଥ, କେତେକ ଭାରୀ ଶିଳ୍ପ ତଥା ବ୍ୟାଙ୍କ୍ ପ୍ରତିଷ୍ଠା କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ଦିଗରେ ଏକନିଷ୍ଠ ନୀତି ହେତୁ । ୧୯ଶ ଶତାବ୍ଦୀର ଶେଷକୁ ଏହା ଶିଳ୍ପ ଉତ୍ପାଦନକୁ ଚପାଇ ଦେବା ନୀତି ନାମରେ କଥିତ । ଏହି ନୀତି ଅନୁସରଣ କରିବା ସମ୍ଭବ ହୋଇଥିଲା ବଜେଟ୍ କରର ଅଭିବୃଦ୍ଧି ଫଳରେ ଏବଂ ଏହା ପୁଣି ସମ୍ଭବ ହୋଇଥିଲା ନିରବଚ୍ଛିନ୍ନ ବାଣିଜ୍ୟିକ ସୁରକ୍ଷା ନୀତି ଏବଂ ଜାତୀୟ ଅର୍ଥନୀତି ମଧ୍ୟକୁ ବୈଦେଶିକ ପୁଞ୍ଜିର ଆଗମନ ଫଳରେ । ଏହା ହିଁ ଥିଲା ଦ୍ରୁତ ଗତିରେ ରେଳପଥ ନିର୍ମାଣ ଏବଂ ରୁଷିଆର ୟୁରୋପୀୟ ଅଂଶରେ, ଦନ୍‌ବାସ୍—ଦନେତ୍‌ସ ଉପତ୍ୟକା ଏବଂ କ୍ରିଭୋଇ ରଗ୍ ଅଞ୍ଚଳରେ ୧୭ଟି ନୂତନ ଧାତୁଶିଳ୍ପ କାରଖାନା ସମେତ ବଡ଼ ବଡ଼ କୋଇଲା, ଲୌହ ଏବଂ ଇସ୍‌ପାତ ଅଞ୍ଚଳ ଏବଂ ଡଜନ୍ ଡଜନ୍ ଲୁହା କୋଇଲା ଖଣି ଆଉ ଇଂଜିନିୟରିଂ କାରଖାନାସମୂହର ପ୍ରତିଷ୍ଠା । ଏସବୁ ସେତେବେଳେ ଥିଲା ଆଧୁନିକ । ଦକ୍ଷିଣବର୍ତ୍ତୀ ଖଣି ଲୌହ ଏବଂ ଇସ୍‌ପାତ୍ ଅଞ୍ଚଳ ସୃଷ୍ଟି ହେବା ସଥେ ସାଥେ ବୃହଦାକାର ପୁଞ୍ଜିବାଦୀ ଉତ୍ପାଦନ ବ୍ୟବସ୍ଥା ରଚନା ସଂପନ୍ନ ହୋଇଯାଇଥିଲା । ୧୯ଶ ଶତାବ୍ଦୀର ଶେଷରେ ଦେଶର ଉତ୍ପାଦନ କ୍ଷେତ୍ରରେ ଭାରୀ ଶିଳ୍ପର ଭାଗ ଅନେକ ପରିମାଣରେ ବୃଦ୍ଧି ପାଇଥିଲା (ପ୍ରାୟ ଶତକଡ଼ା ୩୦ ଭାଗ) । ଏକଚ୍ଛଟିଆମାନଙ୍କର ଆବିର୍ଭାବ ଏବଂ ପୁଞ୍ଜିବାଦୀ ବିକାଶରେ ସାମ୍ରାଜ୍ୟବାଦୀ ସ୍ତରକୁ ରୂପାନ୍ତରଣ ପାଇଁ ଜାତୀୟ ଅର୍ଥନୀତିରେ ପୂର୍ବାବସ୍ଥାସମୂହ ଦେଖା ଦେଇଥିଲା । ରୁଷିଆରେ ପ୍ରଥମ ଏକଚ୍ଛଟିଆଗୁଡ଼ିକର ଆବିର୍ଭାବ ଘଟିଥିଲା ୧୮୮୦ ଏବଂ ୧୮୯୦ ଦଶକରେ ଏବଂ ୨୦ଶ ଶତାବ୍ଦୀର ପ୍ରାରମ୍ଭରେ ଏକଚ୍ଛଟିଆଗୁଡ଼ିକ ଦେଶର ଅର୍ଥନୈତିକ ଜୀବନରେ ଏକ ବିଶେଷ ଲକ୍ଷଣରେ ପରିଣତ ହୋଇଥିଲେ ।

ରୁଷିଆର କୃଷିରେ ମଧ୍ୟ ପୁଞ୍ଜିବାଦ ବିକାଶ ଲାଭ କରିଥିଲା । ଏହା ପ୍ରକାଶ ପାଇଥିଲା କୃଷି ଯନ୍ତ୍ରପାତିର ଅଧିକ ବ୍ୟବହାର ଏବଂ କେତେକ ନିର୍ଦ୍ଦିଷ୍ଟ ଅଞ୍ଚଳରେ କେତେକ ନିର୍ଦ୍ଦିଷ୍ଟ ଉତ୍ପାଦନର ବିଶେଷୀକରଣ ମଧ୍ୟରେ ଏବଂ ଶେଷତଃ, କୃଷକମାନଙ୍କ ମଧ୍ୟରେ ବିଭିନ୍ନ ସ୍ତରର ସୃଷ୍ଟି ତଥା ଗ୍ରାମ୍ୟ ବୁର୍ଜୁଆର ଏବଂ କୃଷି-ସର୍ବହରାର ସୃଷ୍ଟି ମଧ୍ୟରେ । ଏଥି ସଙ୍ଗେ ସଙ୍ଗେ ପଶ୍ଚିମ ୟୁରୋପର କୌଣସି ଦେଶରେ ରୁଷିଆ ଭଳି ସାମନ୍ତବାଦ ତଥା ଭୂମିଦାସ ପ୍ରଥାର ଏତେ ବିପୁଳ ଅବଶେଷାଂଶ ନଥିଲା, ଯେଉଁଠି ବିଜୟମଣ୍ଡିତ ବା ଅସଂପୂର୍ଣ୍ଣ ବୁର୍ଜୁଆ ବିପ୍ଳବ ଫଳରେ ପୁଞ୍ଜିବାଦୀ ଗଢ଼ଣକୁ ଉତ୍ତରଣ ଘଟିଥିଲା । ଏହିସବୁ ଅବଶେଷାଂଶ ପ୍ରଥମତଃ ବୃହତ୍ ଭୂମିମାଲିକାନାକୁ ନେଇ ଗଠିତ ହୋଇଥିଲା ଏବଂ ଯା'ର ମୂଳରେ ଥିଲା ଭୂସ୍ୱାମୀମାନଙ୍କର ଲାଟିଫୁଣ୍ଡିଆ । ସେସବୁର ଆକାର ନିମ୍ନୋକ୍ତ ସଂଖ୍ୟାସମୂହରେ ପ୍ରତିଫଳିତ ହୋଇଥିଲା : ୧୫୫ଜଣ ଭୂସ୍ୱାମୀଙ୍କ ହାତରେ ଥିଲା ୧୭,୭ ନିୟୁତ ହେକ୍ଟର ଜମି, ଅର୍ଥାତ୍, ଦେଶର କୃଷିଯୋଗ୍ୟ ଜମିର ଶତକଡ଼ା ୨୦ ଭାଗ । ସର୍ବସାଧାରଣ କୃଷକ ଜମିର ଭୋଗ ଦଖଲ ଏବଂ ଚେରେସ୍‌ପୋଲେସିତ୍‌ସା ବ୍ୟବସ୍ଥା (ଯେଉଁଥିରେ ଜଣେ ଗୃହସ୍ଥ ଜମିକୁ ଅନ୍ୟ କେତେକ ଗୃହସ୍ଥଙ୍କ ଜମି ସହିତ ଅଦଳବଦଳ

କରାଯାଏ) ମଧ୍ୟ ଥିଲା ଭୂମିଦାସ ପ୍ରଥାର ଅବଶେଷାଂଶ । ପଶ୍ଚିମ ୟୁରୋପୀୟ ଦେଶମାନଙ୍କରେ ମୋଟାମୋଟ ଭାବେ ପୁଞ୍ଜିବାଦୀ ଭିତ୍ତି ଉପରେ କୃଷି ବ୍ୟବସ୍ଥାର ଇତିପୂର୍ବରୁ ପରିବର୍ତ୍ତନ ଘଟି ସାରିଥିଲା ଏବଂ ଏହିସବୁ ଦେଶ ମଧ୍ୟରୁ ପ୍ରତ୍ୟେକଟିର କୃଷିଗତ-ପୁଞ୍ଜିବାଦୀ କ୍ରମବିକାଶର ବୈଶିଷ୍ଟ୍ୟର ପଥ ଚୂଡ଼ାନ୍ତ ଭାବେ ପ୍ରତିଷ୍ଠିତ ହୋଇ ସାରିଥିଲା ବେଳେ ରୁଷିଆରେ କୃଷି କ୍ଷେତ୍ରରେ ପୁଞ୍ଜିବାଦର ବିକାଶର ଦୁଇଟି ସମ୍ଭାବ୍ୟ ପଥ ମଧ୍ୟରୁ କେଉଁଟିକୁ ଗ୍ରହଣ କରିବ : ପ୍ରୁସୀୟ ପଥ (ଜମିଦାରମାନଙ୍କ ଜୋତ, ଇଟିଫୁଣ୍ଡିଆକୁ ଭିତ୍ତି କରି) ବା ଆମେରିକାନ ପଥ (କୃଷକମାନଙ୍କର କ୍ଷୁଦ୍ର ଖମାରକୁ ଭିତ୍ତି କରି) । ଏହି ସମସ୍ୟାର ସମାଧାନ ଦୁଇଟି ପଥରେ ହେବାର ଥିଲା—କୃଷକମାନଙ୍କ ଅନୁକୂଳରେ ସମାହିତ ହୋଇ ପାରିବ କୃଷିଗତ-କୃଷକ ବିପ୍ଳବର ବିଜୟ ଦ୍ୱାରା ଏବଂ ଜମିଦାରମାନଙ୍କ ଅନୁକୂଳରେ ଜମିଦାରମାନଙ୍କ ଜୋତକୁ କ୍ରମଶଃ ବୁର୍ଜୁଆ ପଥରେ ପୁନର୍ଗଠନ କରିବା ଦ୍ୱାରା । ଶେଷୋକ୍ତ ପ୍ରକ୍ରିୟାଟି ସହିତ କୃଷକମାନଙ୍କ ବିରୁଦ୍ଧରେ ବ୍ୟାପକ ବଳ ପ୍ରୟୋଗ ଏବଂ କ୍ରମଶଃ କେତେକ ସଂଖ୍ୟକ କୁଲାକ୍ (ଧନୀ କୃଷକ) ଖମାର—ଗ୍ରାମ୍ୟ ବୁର୍ଜୁଆମାନଙ୍କ ଅଭ୍ୟୁଦୟ ଦ୍ୱାରା — ସାଧାରଣ କୃଷକମାନଙ୍କ ମଧ୍ୟରୁ ଗ୍ଭଲିବ ।

ଏହି ଭାବେ, ଶିଳ୍ପଗତ ଭାବେ ଉନ୍ନତ ଦେଶମାନଙ୍କ ଭଳି ଶିଳ୍ପ କ୍ଷେତ୍ରରେ ରୁଷିଆ ପୁଞ୍ଜିବାଦର ସମାନ ସ୍ତର ମଧ୍ୟ ଦେଇ ଗତି କଲା ବେଳେ କୃଷିଗତ ସଂପର୍କ କ୍ଷେତ୍ରରେ ଏପରି ଏକ ପର୍ଯ୍ୟାୟ ଦେଇ ଯାଉଥିଲା, ଯାହା ମଧ୍ୟ ଦେଇ ପଶ୍ଚିମ ୟୁରୋପୀୟ ଦେଶମାନେ ସେମାନଙ୍କ ବୁର୍ଜୁଆ ବିପ୍ଳବ ପୂର୍ବରୁ ଗତି କରି ସାରିଥିଲେ । ପ୍ରାଥମିକ ପୁଞ୍ଜିବାଦୀ ବିକାଶର ଦେଶସମୂହରେ ପୁଞ୍ଜିବାଦର ଯେଉଁ ଦୁଇ ବୃହତ୍ ଐତିହାସିକ ଯୁଗଗୁଡ଼ିକ ମଧ୍ୟରେ ଶହେ କିମ୍ବା ତତୋଧିକ ବର୍ଷର ବ୍ୟବଧାନ ଥିଲା, ସେସବୁ ୧୯ଶ ଶତାବ୍ଦୀର ଶେଷରେ ରୁଷିଆରେ ଏକକାଳୀନ ଘଟୁଥିଲା ।

ତେବେ ୧୯ଶ ଶତାବ୍ଦୀର ଆରମ୍ଭକୁ ରୁଷିଆର ବିଭିନ୍ନ ଅଞ୍ଚଳରେ ପୁଞ୍ଜିବାଦୀ ବିକାଶର ସ୍ତର ସମାନ ନଥିଲା । ସେତେବେଳକୁ ରୁଷିଆର ବିଭିନ୍ନ ପ୍ରଦେଶରେ ଶିଳ୍ପ ଉତ୍ପାଦନ ଖୁବ୍ ବୃଦ୍ଧି ପାଇଥିଲା : ୟୁରାଲରେ ଧାତୁଶିଳ୍ପ, ସେଣ୍ଟ୍ ପିଟର୍ସବୁର୍ଗ୍‌ରେ ଇଂଜିନିୟରିଂ, ମସ୍କୋର ଶିଳ୍ପାଞ୍ଚଳରେ ବସ୍ତ୍ରଶିଳ୍ପ । ରୁଷିଆର ପ୍ରଦେଶଗୁଡ଼ିକର ପୁଞ୍ଜିବାଦୀ ଶିଳ୍ପ ବିକାଶର ସ୍ତର ସହିତ ୟୁକ୍ରାଇନ୍ (ଦେନ୍‌ବାସ୍‌ର କୋଇଲା ଉତ୍ତୋଳନ ଏବଂ ଦକ୍ଷିଣ ୟୁକ୍ରାଇନ୍‌ରେ ଧାତୁ ଇଂଜିନିୟରିଂ), ପୋଲାଣ୍ଡର ରାଜଧାନୀ (ଦମ୍‌ବ୍ରୋଭ୍‌ର କୋଇଲା ଖଣି) ଏବଂ ବଲ୍‌ଟିକ୍ ଅଞ୍ଚଳ ସମାନ ସ୍ତରକୁ ଆସି ଯାଇଥିଲା ।

ଟ୍ରାନ୍‌ସକକେସିଆରେ ମଧ୍ୟ ଲଗାତର ପୁଞ୍ଜିବାଦୀ ବିକାଶ ଘଟୁଥିଲା : ଆଜର୍‌ବୈଜାନ (ବାକୁର ତୈଳ ଖଣି), ଜର୍ଜିଆ (ମାଙ୍ଗାନିଜ ଶିଳ୍ପ), ଆର୍ମେନିଆରେ । ରୁଷିଆର ବିଭିନ୍ନ ପ୍ରଦେଶମାନଙ୍କ ଅପେକ୍ଷା (୧୮୬୦ ଦଶକର ଶେଷ ସୁଦ୍ଧା) କୃଷି ସଂସ୍କାର ଏସବୁଥିରେ ପରବର୍ତ୍ତୀ ସମୟରେ କାର୍ଯ୍ୟକାରୀ ହୋଇଥିଲେ ମଧ୍ୟ ଏବଂ

ଭୂମିଦାସ ପ୍ରଥାର ଅବଶେଷାଂଶ ଅଧିକ ପରିମାଣରେ ବିରାଜମାନ କରୁଥିଲେ ମଧ୍ୟ ଏହା ଘଟିଥିଲ ।

ସାଇବେରିଆର ସ୍ୱର୍ଣ୍ଣ ତଥା କୋଇଲା ଆଦି ଶିଳ୍ପରେ ପୁଞ୍ଜିବାଦୀ ସଂପର୍କ ମଧ୍ୟ ବ୍ୟାପକ ଥିଲା ।

୧୮୬୦ ଓ ୧୮୮୦ ଦଶକ ମଧ୍ୟରେ ରୁଷିଆ ସହିତ ସଂଯୁକ୍ତ ହୋଇଥିବା ମଧ୍ୟ ଏସିଆର ବିଭିନ୍ନ ଅଞ୍ଚଳରେ (କୋକାନ୍ଦ, ବୁଖାରା ଏବଂ ଖିଭା ପୂର୍ବତନ ଖାନେତ୍‌ସମୂହ) ପୁଞ୍ଜିବାଦୀ ଅର୍ଥନୈତିକ ରୂପସମୂହ ଦେଖାଦେବାକୁ ଆରମ୍ଭ କରୁଥିଲା । କିନ୍ତୁ ଜାର୍‌ତନ୍ତ୍ର ଦ୍ୱାରା ଅନୁସୃତ ଉପନିବେଶବାଦୀ ଉତ୍ପୀଡ଼ନ ନୀତି ଫଳରେ ମଧ୍ୟ ଏସିଆ ୧୯ଶ ଶତାବ୍ଦୀର ଶେଷକୁ ପୁଞ୍ଜିବାଦୀ ବିକାଶର ପଥ ଗ୍ରହଣ କରି ପାରି ନଥିଲା । ଏହିସବୁ ଭୂଖଣ୍ଡ ରୁଷିଆ ସହିତ ଯୋଗ ଦେବା ପୂର୍ବରୁ ଏସବୁଥିରେ ବିରାଜ କରୁଥିବା ସାମନ୍ତବାଦୀ, ଏପରିକି ପିତୃ-ପ୍ରାଧାନ୍ୟ-ସାମନ୍ତବାଦୀ ସଂପର୍କରାଜି ୨୦ଶ ଶତାବ୍ଦୀର ପ୍ରାରମ୍ଭ ପର୍ଯ୍ୟନ୍ତ ମୌଳିକ ଭାବେ ରହି ଯାଇଥିଲା ।

ତଥାପି, ରୁଷିଆ ମଧ୍ୟରେ ଏହିସବୁ ଭୂଖଣ୍ଡର ଅନ୍ତର୍ଭୁକ୍ତ ମଧ୍ୟ ଏସିଆର ଜାତିମାନଙ୍କ ପାଇଁ ବସ୍ତୁନିଷ୍ଠ ଭାବେ ସଦର୍ଥକ ସୂଚନା ସୃଷ୍ଟି କରିଥିଲା : ଅଧିକ ଉନ୍ନତ ଅର୍ଥନୈତିକ ରୂପସମୂହ ଦେଖା ଦେଇଥିଲା, ସ୍ଥାନୀୟ ଅଧିବାସୀମାନଙ୍କର ସାଂସ୍କୃତିକ ମାନର ବିକାଶ ଘଟିଥିଲା (ଯଦିଓ ମନ୍ଥର ଭାବେ) ଏବଂ ଧର୍ମନିରପେକ୍ଷ ଶିକ୍ଷାର ପ୍ରଥମ ଜୀବାଣୁଗୁଡ଼ିକ ଜନ୍ମ ନେଇଥିଲେ । ଏହିସବୁ ଅଞ୍ଚଳକୁ ଆସିଥିବା ହଜାର ହଜାର ରୁଷୀୟ ଶ୍ରମିକମାନଙ୍କ ପ୍ରଭାବରେ ସ୍ଥାନୀୟ ଜନଗୋଷ୍ଠୀ ମଧ୍ୟରେ ଏକ ସର୍ବହରା ଶ୍ରେଣୀ ସୃଷ୍ଟି ହୋଇଥିଲା । ରୁଷୀୟ ତଥା ରୁଷିଆର ଅନ୍ୟାନ୍ୟ ଜାତିମାନଙ୍କର ନିକଟବର୍ତ୍ତୀ ହେବା ଫଳରେ ମଧ୍ୟ ଏସିଆର ଲୋକେ ସେମାନଙ୍କର ଅଭିନ୍ନ ବିପ୍ଳବୀ ସଂଗ୍ରାମରେ ସାମିଲ ହୋଇଥିଲେ ।

ରୁଷିଆର ସମସ୍ତ ଅଧିଜାତି ଏବଂ ଜାତି କେବଳ ରାଜନୈତିକ ଭାବେ ନୁହେଁ, ଅଞ୍ଚଳଗତ ଭାବେ ମିଳିତ ରାଷ୍ଟ୍ର ଅଧୀନରେ ବାସ କରିବା ଫଳରେ ସେମାନଙ୍କର ମୁକ୍ତି ପାଇଁ ସଂଗ୍ରାମ ଜାର୍‌ତନ୍ତ୍ର ତଥା ସାମ୍ରାଜ୍ୟବାଦ ବିରୁଦ୍ଧରେ ଦେଶ ବ୍ୟାପୀ ସଂଗ୍ରାମର ଅନ୍ତର୍ଭୁକ୍ତ ହୋଇ ପାରିଥିଲା ।

୨୦ଶ ଶତାବ୍ଦୀର ପ୍ରାରମ୍ଭରେ ଏହା ହିଁ ଥିଲା ରୁଷିଆର ସାମାଜିକ-ଅର୍ଥନୈତିକ ଗଢ଼ଣ । ତତ୍‌କାଳୀନ ବିଶ୍ୱର ସମସ୍ତ ବୈଶିଷ୍ଟ୍ୟସୂଚକ ଦ୍ୱନ୍ଦ୍ୱସମୂହ ମଧ୍ୟ ରୁଷିଆରେ ବିରାଜ କରୁଥିଲା : ଶ୍ରମ ଆଉ ପୁଞ୍ଜି ମଧ୍ୟରେ, ପୁଞ୍ଜିବାଦ ଏବଂ ସାମନ୍ତବାଦ ଓ ଭୂମିଦାସ ପ୍ରଥାର ଅବଶେଷାଂଶ ମଧ୍ୟରେ, ଏବଂ ଅତି ବିକଶିତ ଶିଳ୍ପାଞ୍ଚଳ ଏବଂ ପଶ୍ଚାଦ୍‌ପଦ ଉପାନ୍ତ ଅଞ୍ଚଳ ମଧ୍ୟରେ । ଏହିସବୁ ଦ୍ୱନ୍ଦ୍ୱ ଜାର୍‌ସାହୀ ସ୍ୱୈରତନ୍ତ୍ର ଦ୍ୱାରା ରାଜନୈତିକ, ଜାତୀୟ ଏବଂ ବୌଦ୍ଧିକ ଉତ୍ପୀଡ଼ନ ଫଳରେ ବିଶେଷ ଭାବେ ତୀବ୍ର ହୋଇ ଉଠିଥିଲା । ୨୦ଶ ଶତାବ୍ଦୀର ପ୍ରାରମ୍ଭରେ ରୁଷିଆ କିଛି କାଳ ପାଇଁ ତତ୍‌କାଳୀନ

ଦୁନିଆର ବୈପରୀତ୍ୟର ଏକ ଜୀବନ୍ତ ପ୍ରତୀକରେ ପରିଣତ ହୋଇଥିଲା । ଏହା ଏକ ବୈପ୍ଳବିକ-ଗଣତାନ୍ତ୍ରିକ ଆନ୍ଦୋଳନର ପର୍ଯ୍ୟାୟ ମଧ୍ୟକୁ ପ୍ରବେଶ କରୁଥିଲା , ଯାହାକୁ ଦେଶର ପ୍ରାଥମିକ ପୁଞ୍ଜିବାଦୀ ବିକାଶ ଇତି ମଧ୍ୟରେ ଅତିକ୍ରମ କରି ସାରିଥିଲା , କିନ୍ତୁ ପ୍ରାଚ୍ୟର ବହୁ ଔପନିବେଶିକ ଏବଂ ଅର୍ଦ୍ଧ-ଔପନିବେଶିକ ଦେଶ ସେପର୍ଯ୍ୟନ୍ତ ପହଞ୍ଚି ନଥିଲେ । ଏଥି ସଙ୍ଗେ ସଙ୍ଗେ ରୁଷିଆରେ ସେତେବେଳେ ବୃହଦାକାର ପୁଞ୍ଜିବାଦୀ ଉତ୍ପାଦନ ବ୍ୟବସ୍ଥା ସୃଷ୍ଟି ହୋଇଯାଇଥିଲା ପଶ୍ଚିମ ୟୁରୋପର ଦେଶମାନଙ୍କ ଭଳି ଏବଂ ପୁଞ୍ଜିବାଦର ଏକଚାଟିଆ ସ୍ତରକୁ ଉତ୍ତରଣ ଆରମ୍ଭ ହୋଇ ଯାଇଥିଲା ଏବଂ ଶିଳ୍ପ ସର୍ବହରା ଶ୍ରେଣୀର ଉଦ୍‌ଭବ ଘଟିଥିଲା । ପୁଞ୍ଜିବାଦ ବିରୁଦ୍ଧରେ ସଂଗ୍ରାମ ଏବଂ ସମାଜର ସମାଜବାଦୀ ପରିବର୍ତ୍ତନ ସେତେବେଳେ କାର୍ଯ୍ୟ ତାଲିକାର ଅନ୍ତର୍ଭୁକ୍ତ ହୋଇ ପଡ଼ିଥିଲା । ବିଶ୍ୱ ଇତିହାସରେ ପ୍ରଥମ ଥର ପାଇଁ ଗଣତନ୍ତ୍ର ପାଇଁ ସଂଗ୍ରାମ ସହିତ ସମାଜବାଦ ପାଇଁ ସଂଗ୍ରାମ ନିମିତ୍ତ ବାସ୍ତବ ସୁଯୋଗ ଉପସ୍ଥିତ ହୋଇଥିଲା । ୧୯ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଏବଂ ୨୦ଶ ଶତାବ୍ଦୀର ପ୍ରାରମ୍ଭରେ ରୁଷିଆର ବିଶେଷ ଅଭିଜ୍ଞତା ଦର୍ଶାଇ ଦେଇଥିଲା ଯେ , ଏପରି ଏକ ସଂଯୋଗକୁ କାର୍ଯ୍ୟକାରୀ କରି ହେବ ଏବଂ ସାଫଲ୍ୟମଣ୍ଡିତ କରି ହେବ କେବଳ ସର୍ବହରାର ନେତୃତ୍ୱାଧୀନରେ ।

# ୧୧ଶ ପରିଚ୍ଛେଦ

## ନାରୋଦ୍‌ନିକ ଆନ୍ଦୋଳନରୁ ମାର୍କସ୍‌ବାଦ – ଲେନିନ୍‌ଙ୍କ ବୈପ୍ଳବିକ କ୍ରିୟାକଳାପର ପ୍ରାରମ୍ଭ

ଭୂମିଦାସ ପ୍ରଥାର ଉଚ୍ଛେଦ ପରେ ମୁକ୍ତି ଆନ୍ଦୋଳନରେ ବୁର୍ଜୁଆ-ଗଣତାନ୍ତ୍ରିକ ବା ରାଜ୍‌ନୋଚିନ୍‌ସ୍କି କାଳଟି ରୁଷିଆରେ ଆରମ୍ଭ ହୋଇଯାଇଥିଲା । ରାଜ୍‌ନୋଚିନ୍‌ସ୍କିମାନେ ଥିଲେ ବଣିକ ସଂପ୍ରଦାୟ, ନିମ୍ନ ସ୍ତରର ସହର ଅଧିବାସୀ, ନିମ୍ନ ସ୍ତରର ଯାଜକ ଏବଂ କୃଷକ ସଂପ୍ରଦାୟର ଲୋକ । ସେମାନଙ୍କ ମଧ୍ୟରୁ ଯେଉଁମାନେ ସାଧାରଣ ଲୋକଙ୍କୁ ସାହାଯ୍ୟ କରିବାକୁ ଯାଇ ନ୍ୟାୟପୂର୍ଣ୍ଣ ସୁଖମୟ ଜୀବନ ନିମିତ୍ତ ବିପ୍ଳବୀ ସଂଗ୍ରାମର ପଥ ଗ୍ରହଣ କରିଥିଲେ, ସେମାନଙ୍କୁ ନାରୋଦ୍‌ନିକ (ଜନସାଧାରଣଙ୍କ ପନ୍ଥୀ) ବୋଲି କୁହାଯାଉଥିଲା । ନାରୋଦ୍‌ନିକମାନେ ମୁକ୍ତି ସଂଗ୍ରାମରେ କୃଷକମାନଙ୍କୁ ମୁଖ୍ୟ ଶକ୍ତି ଏବଂ ମାନଧାତା ଅମଳରୁ ରହି ଆସିଥିବା କୃଷକ କମ୍ୟୁନ୍‌କୁ ସୋସାଲିଷ୍ଟ ସଂପର୍କର ଭ୍ରୂଣ ବୋଲି ବିଚାର କରୁଥିଲେ । ଏହିସବୁ କୃଷକ କମ୍ୟୁନ୍ ଥିଲା କର୍ତ୍ତୃପକ୍ଷଙ୍କ ନିକଟରେ ବିଭିନ୍ନ ପ୍ରକାରର ଟିକସ କର ଏବଂ କର୍ତ୍ତବ୍ୟ ସଂପାଦନ ପାଇଁ କୃଷକମାନଙ୍କ ପକ୍ଷରୁ ଦାୟୀ । ନାରୋଦ୍‌ନିକମାନେ ବିଶ୍ୱାସ କରୁଥିଲେ, କମ୍ୟୁନ୍‌ର ଅବାଧ ବିକାଶ ପଥରେ ଥିବା ପ୍ରତିବନ୍ଧକରାଜିକୁ ଯଦି ହଟେଇ ଦିଆଯାଏ, ଅର୍ଥାତ୍, ସ୍ୱୈରତନ୍ତ୍ର ଏବଂ ଜମିଦାରମାନଙ୍କୁ ଏକ ଦିଗରେ ଏବଂ ପୁଞ୍ଜିବାଦକୁ ଅନ୍ୟ ଦିଗରୁ ହଟେଇ ଦିଆଯାଏ, ଯିଏକି ସମାଜକୁ ଧ୍ୱଂସ କରି ଦେଉଛି, ତେବେ ଏକ ନ୍ୟାୟପୂର୍ଣ୍ଣ ସମାଜ, ସମାଜବାଦ, ଦେଶରେ ଗଢ଼ି ଉଠିବ ।

ଏକ ଭାବାଦର୍ଶଗତ ଆନ୍ଦୋଳନ ହିସାବରେ ନାରୋଦ୍‌ନିକମାନେ ଐକ୍ୟବଦ୍ଧ ନଥିଲେ । ମିଖାଇଲ ବାକୁନିନ୍‌ଙ୍କ ଅନୁଗାମୀମାନେ ଭାବୁଥିଲେ, ଲୋକେ ବିପ୍ଳବୀ ସଂଗ୍ରାମ ପାଇଁ ପ୍ରସ୍ତୁତ ହୋଇ ଗଲେଣି ଏବଂ ତେଣୁ ବୁଦ୍ଧିଜୀବୀମାନେ ସେମାନଙ୍କ ପାଖକୁ ଯାଇ ବିପ୍ଳବୀ ଆନ୍ଦୋଳନାତ୍ମକ କ୍ରିୟାକଳାପ ରୁଷିଆରେ ସେମାନଙ୍କୁ ସେମାନଙ୍କ ଅତ୍ୟାଚାରୀମାନଙ୍କ ବିରୋଧରେ ଉଠାଇବା ଦରକାର । ପିଓତର ଲାଭ୍ରୋଭ୍‌ଙ୍କ ଅନୁଗାମୀମାନେ କିନ୍ତୁ ଭାବୁଥିଲେ, ଲୋକେ ବିପ୍ଳବ ପାଇଁ ପ୍ରସ୍ତୁତ ନୁହନ୍ତି ଏବଂ ବିପ୍ଳବୀ ବୁଦ୍ଧିଜୀବୀମାନେ

କୃଷକମାନଙ୍କ ମଧ୍ୟରେ ବ୍ୟାପକ ପ୍ରଚାର ଚଳାଇବା ଉଚିତ ଏବଂ ଏହି ଉଦ୍ଦେଶ୍ୟରେ ସାରା ଦେଶରେ ଏକ ବିପ୍ଳବୀ ସଂଗଠନ ସ୍ଥାପନ କରିବା ଦରକାର । ଶେଷରେ ପିଓତର ତ୍‌କାଚେଭ୍‌ ଏବଂ ତାଙ୍କ ଅନୁଗାମୀମାନଙ୍କ ମତରେ ରୁଷୀୟ ସ୍ୱୈରତନ୍ତ୍ରର ସାମାଜିକ-ଅର୍ଥନୈତିକ ବାସ୍ତବତା ମଧ୍ୟରେ କୌଣସି ଚେର ନାହିଁ, ତେଣୁ ଲୋକଙ୍କ ମଧ୍ୟରୁ ଏକାଂଶର ସହାନୁଭୂତି ଏବଂ ନିଷ୍କ୍ରିୟ ସମର୍ଥନ ଉପରେ ନିର୍ଭର କରି ଏକ ବିପ୍ଳବୀ ପାର୍ଟି ଏହାକୁ ଧ୍ୱଂସ କରି ଦେଇ ପାରିବ । ସଂଗ୍ରାମ ମଧ୍ୟ ଦେଇ ନାରୋଦ୍‌ନିକମାନଙ୍କ ଭାବାଦର୍ଶ ଗୋଟିକ ପରେ ଗୋଟିଏ ପ୍ରୟୋଗ ଦ୍ୱାରା ପରୀକ୍ଷିତ ହୋଇ ତା'ର ଅବାସ୍ତବତା ପ୍ରମାଣିତ କରିଥିଲା ।

୧୮୭୪ ମସିହାର ବସନ୍ତ କାଳରେ ସ୍ୱୈରତନ୍ତ୍ର ତଥା ଜମିଦାରମାନଙ୍କ ବିରୁଦ୍ଧରେ ଏକ ଆଶୁ ଅଭ୍ୟୁତ୍‌ଥାନ ପାଇଁ ୟୁରୋପୀୟ ରୁଷିଆର ୩୭ଟି ପ୍ରଦେଶରେ ସକ୍ରିୟ ଭାବେ ପ୍ରଚାର ହୋଇଥିଲା । କିନ୍ତୁ କୃଷକମାନଙ୍କ ମଧ୍ୟରୁ ଅଧିକାଂଶ ଆନ୍ଦୋଳନକାରୀମାନଙ୍କ ଆବେଦନ ପ୍ରତି ଉଦାସୀନ ରହିଥିଲେ ।

ନାରୋଦ୍‌ନିକମାନେ ସେମାନଙ୍କ କ୍ରିୟାକଳାପର ଚରିତ୍ର ପରିବର୍ତ୍ତନ କରିଥିଲେ । "ଭୂମି ଏବଂ ସ୍ୱାଧୀନତା" ନାମରେ ଏକ ଗୁପ୍ତ ସମିତି ୧୮୭୬ ମସିହାରେ ସ୍ଥାପିତ ହୋଇଥିଲା ସେଣ୍ଟ୍‌ ପିଟର୍ସବୁର୍ଗ୍‌ରେ (ଏହାର ସଂଗଠକମାନଙ୍କ ମଧ୍ୟରେ ଥିଲେ ଆଲେକ୍‌ଜାଣ୍ଡର ମିଖାଇଲୋଭ୍‌, ଗିଓର୍ଗି ପ୍ଲେଖାନୋଭ୍‌ ଏବଂ ସୋଫିଆ ପେରୋଭ୍‌ସ୍କାୟା) । କୃଷକମାନଙ୍କୁ ବିପ୍ଳବୀ ଅଭ୍ୟୁତ୍‌ଥାନ ନିମିତ୍ତ କ୍ରମଶଃ ପ୍ରସ୍ତୁତ କରିବା ପାଇଁ ଦୀର୍ଘ ଏବଂ ନିୟମିତ ପ୍ରଚାର ଲକ୍ଷ୍ୟ ନେଇ ଏହି ସମିତି ଅନେକଗୁଡ଼ିଏ ବିଭାଗ ସ୍ଥାପନ କରିଥିଲା । କିନ୍ତୁ ଏହି ସମିତି ମଧ୍ୟ କୃଷକ ଜନସାଧାରଣଙ୍କୁ ସଚେତନ ବିପ୍ଳବୀ ସଂଗ୍ରାମରେ ସଂପୃକ୍ତ କରିବାକୁ ଅକ୍ଷମ ହୋଇଥିଲା । ବିପ୍ଳବୀମାନଙ୍କ ମଧ୍ୟରେ ଏକ ଗଭୀର ଭାବାଦର୍ଶଗତ ସଂକଟ ପରିପକ୍ୱ ହୋଇ ଉଠୁଥିବାର ଦେଖାଗଲା । ୧୮୭୮ ଏବଂ ୧୮୭୯ ଖ୍ରୀଷ୍ଟାବ୍ଦରେ ନାରୋଦ୍‌ନିକମାନେ ଅନେକଗୁଡ଼ିଏ ସନ୍ତ୍ରାସମୂଳକ କାର୍ଯ୍ୟ କରିଥିଲେ ଏବଂ ସେସବୁ ମଧ୍ୟରେ ଥିଲା ଦ୍ୱିତୀୟ ଆଲେକ୍‌ଜାଣ୍ଡରଙ୍କୁ ହତ୍ୟା କରିବାର ଅସଫଳ ଉଦ୍ୟମ । ସେହି ସମୟରୁ ନାରୋଦ୍‌ନିକ୍‌ମାନେ ସନ୍ତ୍ରାସବାଦକୁ ସ୍ୱୈରତନ୍ତ୍ର ବିରୁଦ୍ଧରେ ସଂଗ୍ରାମର ଏକମାତ୍ର ଉପାୟ ବୋଲି ନିୟମିତ ପ୍ରଚାର ଚଳାଇ ଯାଇଥିଲେ । ଏହି ସଂତ୍ରାସବାଦର ପ୍ରବକ୍ତାମାନଙ୍କ ମଧ୍ୟରେ ଏକ ସାଂଗଠନିକ ଐକ୍ୟବଦ୍ଧତା ଘଟିଥିଲା ୧୮୭୯ ମସିହାରେ । ଭୋରୋନେଝରେ ଅନୁଷ୍ଠିତ ଏହି ସଂଗଠନର ଏକ ସାଧାରଣ ବୈଠକରେ "ରାଜନୀତିଜ୍ଞମାନଙ୍କ" — ସଂତ୍ରାସବାଦୀ (ଆଲେକ୍‌ଜାଣ୍ଡର ଝେଲ୍ୟାବଭ୍‌ଙ୍କ ନେତୃତ୍ୱରେ) ଏବଂ "ଗ୍ରାମବାସୀମାନଙ୍କ" (ଗିଓର୍ଗି ପ୍ଲେଖାନୋଭ୍‌ଙ୍କ ନେତୃତ୍ୱରେ) ମଧ୍ୟରେ ଏକ ସଂଘର୍ଷ ଦେଖାଦେଇଥିଲା । ସନ୍ତ୍ରାସବାଦୀମାନେ କହିଲେ, ସାମାନ୍ୟତମ ରାଜନୈତିକ ସ୍ୱାଧୀନତା ଯେଉଁଠି ନାହିଁ, ସେଠାରେ ଗ୍ରାମବାସୀମାନଙ୍କ ମଧ୍ୟରେ କାର୍ଯ୍ୟକଳାପ ଚଳାଇବା ବୃଥା ଏବଂ

"ଗ୍ରାମବାସୀମାନେ" ପୁରୁଣା କୌଶଳକୁ ଅବଲମ୍ବନ କରିଯିବା ନିମିତ୍ତ ଜୋର ଦେଇଥିଲେ, କାରଣ, ସେମାନଙ୍କ ମତରେ ସଂତ୍ରାସବାଦ କେବଳ ସରକାରକୁ ଦୁର୍ବଳ କରେ ନାହିଁ, ବିପ୍ଳବୀମାନଙ୍କୁ ମଧ୍ୟ ଦୁର୍ବଳ କରି ଦିଏ । "ଭୂମି ଏବଂ ସ୍ୱାଧୀନତା" ସଂଗଠନର ଏହି ଦୁଇ ପ୍ରବଣତା ମଧ୍ୟରେ ଲଢ଼େଇ ଶେଷକୁ ୧୮୭୯, ଅଗଷ୍ଟ ୧୫ ତାରିଖରେ ସେଣ୍ଟ୍ ପିଟର୍ସବୁର୍ଗ୍‌ରେ ଅନୁଷ୍ଠିତ କଂଗ୍ରେସରେ ଏହାକୁ ଦୁଇଟି ସଂଗଠନ ମଧ୍ୟରେ ବିଭକ୍ତ କରି ଦେଲା – "ଚେର୍ନି ପେରେଦେଲ" (ସାଧାରଣ ପୁନର୍ବଣ୍ଟନ) ଏବଂ "ନାରୋଦ୍‌ନାୟା ଭୋଲ୍ୟା" (ଜନସାଧାରଣଙ୍କ ଇଚ୍ଛା) । "ଚୋର୍ନି ପେରେଦେଲର" ସଦସ୍ୟମାନେ ପ୍ଲେଖାନୋଭ୍‌ଙ୍କ ନେତୃତ୍ୱରେ କିଛି କାଳ ପାଇଁ କୃଷକମାନଙ୍କ ମଧ୍ୟରେ ପ୍ରଚାର କାର୍ଯ୍ୟ ଚଳାଇ ଯାଇଥିଲେ । "ନାରୋଦ୍‌ନାୟା ଭୋଲ୍ୟା" ସରକାର ବିରୁଦ୍ଧରେ ତା'ର ସଂତ୍ରାସମୂଳକ କ୍ରିୟାକଳାପ ମଧ୍ୟ ଚଳାଇ ଯାଇଥିଲା । ସେମାନେ ବିଶ୍ୱାସ କରୁଥିଲେ, ଜାର୍‌କୁ ହତ୍ୟା କରିବାର ଉଦ୍ୟମ ସଫଳ ହେଲେ (ଜାର୍‌କୁ "ନାରୋଦ୍‌ନାୟା ଭୋଲ୍ୟା" ମୃତ୍ୟୁଦଣ୍ଡାଦେଶ ଦେଇଥିଲା) ଲୋକେ ବିପ୍ଳବ ପାଇଁ ଆଗେଇ ଆସିବେ । ୧୮୮୧, ମାର୍ଚ୍ଚ ପହିଲା ଦିନ ଇଗ୍‌ନାତି ଗ୍ରିନେଭିତ୍‌ସ୍କିଙ୍କ ଦ୍ୱାରା ନିକ୍ଷିପ୍ତ ଏକ ବୋମା ବିସ୍ଫୋରଣରେ ଜାର୍‌ର ମୃତ୍ୟୁ ଘଟିଲା ।

କିନ୍ତୁ "ନାରୋଦ୍‌ନାୟା ଭୋଲ୍ୟାର" ସଦସ୍ୟମାନଙ୍କର ପ୍ରତ୍ୟାଶା ଅନୁଯାୟୀ ଏହା ପରେ କୌଣସି ସରକାରବିରୋଧୀ ଅଭ୍ୟୁତ୍‌ଥାନ ଦେଖାଦେଲା ନାହିଁ । ନୂତନ ଜାର୍ ତୃତୀୟ ଆଲେକ୍‌ଜାଣ୍ଡରଙ୍କୁ ଲିଖିତ ଏକ ପତ୍ରରେ, "ନାରୋଦ୍‌ନାୟା ଭୋଲ୍ୟାର" କାର୍ଯ୍ୟକାରୀ କମିଟି ପ୍ରତିଶ୍ରୁତି ଦେଇ ଲେଖିଥିଲା, ରାଜବିଦ୍ରୋହରେ ଅଭିଯୁକ୍ତ ବ୍ୟକ୍ତିମାନଙ୍କୁ ସାଧାରଣ ଭାବେ ମାଫି ମିଳି ଗଲେ, ସେମାନେ ସଂତ୍ରାସମୂଳକ କ୍ରିୟାକଳାପ ବନ୍ଦ କରି ଦେବେ ଏବଂ ରୁଷ୍ ଜନସାଧାରଣଙ୍କ ପ୍ରତିନିଧିମାନେ ପ୍ରତିଷ୍ଠିତ ସାମାଜିକ ବ୍ୟବସ୍ଥା ତଥା ରାଷ୍ଟ୍ରୀୟ ଜୀବନକୁ ଫେରି ଆସିବେ । ସେମାନଙ୍କ ପତ୍ରର ଜବାବରେ ଜାର୍ ଉତ୍ପୀଡ଼ନ ଏବଂ ରାଜନୈତିକ ନିର୍ଯ୍ୟାତନାକୁ ଆଉରି ତୀବ୍ରତର କରିଥିଲା । କାର୍ଯ୍ୟକାରୀ କମିଟିର ଅଧିକାଂଶ ସଦସ୍ୟ ଶୀଘ୍ର ଗିରଫ୍ ହେଲେ ଏବଂ ୧୮୮୧, ଏପ୍ରିଲ ୩ ତାରିଖ ଦିନ "ନାରୋଦ୍‌ନାୟା ଭୋଲ୍ୟାର" ନେତୃବୃନ୍ଦ ଏବଂ ଯେଉଁମାନେ ଦ୍ୱିତୀୟ ଆଲେକ୍‌ଜାଣ୍ଡରଙ୍କ ହତ୍ୟା ପାଇଁ ମୃତ୍ୟୁଦଣ୍ଡ ପାଇଥିଲେ, ସେମାନଙ୍କୁ ଫାଶି ଦିଆଗଲା ।

ନାରୋଦ୍‌ନିକମାନଙ୍କର ବୈପ୍ଳବିକ ବୀରତ୍ୱ ତଥା ନିସ୍ୱାର୍ଥତା ସତ୍ତ୍ୱେ ସମାଜର ବିକାଶର ନିୟମ ତଥା ଚାଳିକା ଶକ୍ତିମାନଙ୍କ ବିଷୟ ଭୁଲ ଧାରଣା ହେତୁ ଏବଂ ତଜ୍ଜନିତ ବିପ୍ଳବୀ ସଂଗ୍ରାମର ଭୁଲ ପଦ୍ଧତିସମୂହ ନାରୋଦ୍‌ନିକ ସଂଗଠନସମୂହର କ୍ରିୟାକଳାପର ବ୍ୟର୍ଥତାକୁ ପୂର୍ବନିର୍ଦ୍ଧାରିତ କରି ଦେଇଥିଲା । ରୁଷିଆରେ ପୁଣି ଦୀର୍ଘ ଦିନ ପାଇଁ ଆରମ୍ଭ ହୋଇଗଲା ପାଶବିକ ପ୍ରତିକ୍ରିୟାର ସମୟ ।

ନାରୋଦ୍‌ନିକମାନଙ୍କ ଆନ୍ଦୋଳନ ସଂକଟ ଦ୍ୱାରା ଅଚଳାବସ୍ଥାରେ ପଡ଼ିଥିବା ବେଳେ ରୁଷ୍ ମୁକ୍ତି ଆନ୍ଦୋଳନକୁ ପଥ ଦେଖାଇଥିଲା ରୁଷ୍ ଶ୍ରମିକମାନଙ୍କର ସଂଗ୍ରାମ ।

ଭୂମିଦାସ ପ୍ରଥାର ଉଚ୍ଛେଦ ପରେ ଶିଳ୍ପପତିମାନଙ୍କ ବିରୁଦ୍ଧରେ ସର୍ବହରାର ସଂଗ୍ରାମ ଆଉରି ତୀବ୍ର ହୋଇ ଉଠିବା ସଙ୍ଗେ ସଙ୍ଗେ ବର୍ଷ ପରେ ବର୍ଷ ଆଉରି ସୁସଂଗଠିତ ହେବାକୁ ଲାଗିଲା । ୧୮୬୦ ଦଶକରେ ଶ୍ରମିକ ଶ୍ରେଣୀ ଆନ୍ଦୋଳନରେ ଅସନ୍ତୋଷର ରୂପଟା ଥିଲା ପ୍ରତିବାଦ, ଅର୍ଥାତ୍, ଅଳ୍ପ ବହୁତ ଗଣ ପ୍ରତିବାଦ, ଯାହାର ଶିଳ୍ପୋଦ୍ୟୋଗର କାର୍ଯ୍ୟ ବନ୍ଦ ସହିତ କୌଣସି ସଂପର୍କ ନଥିଲା । ୧୮୭୦ ଦଶକରେ ପ୍ରତିବାଦର ସଂଖ୍ୟା ବଢ଼ିବା ସାଥେ ସାଥେ ଧର୍ମଘଟ ପ୍ରତିବାଦର ପ୍ରଧାନ ରୂପ ଧାରଣ କଲା । ଶ୍ରମିକମାନେ କାର୍ଯ୍ୟ ବନ୍ଦ କରି ଦେଇ ଶିଳ୍ପପତିମାନଙ୍କ ଆଗରେ ନିଜର ଦାବି ଉପସ୍ଥାପିତ କଲେ । ୧୮୭୦ ଦଶକର ଦ୍ୱିତୀୟାର୍ଦ୍ଧରେ ଶ୍ରମିକମାନେ ସେମାନଙ୍କର ପ୍ରଥମ ରାଜନୈତିକ ସଂଗଠନ ଦୁଇଟି – "ରୁଷ୍ ଶ୍ରମିକମାନଙ୍କର ଉତ୍ତର ୟୁନିଅନ୍" (ସେଣ୍ଟ୍ ପିଟର୍ସବୁର୍ଗ୍‌ରେ) ଏବଂ "ଦକ୍ଷିଣ ରୁଷ୍ ଶ୍ରମିକ ୟୁନିଅନ୍" (ଓଡ଼େଶାରେ) ଗଠନ କରିଥିଲେ । ଓରେଖୋଭୋ-ଜୁୟେଭୋଷ୍ଠ (ଭ୍ଲାଦିମିର୍ ପ୍ରଦେଶ, ୧୮୮୫) ନିକୋଲ୍‌ସ୍କାୟା ବସ୍ତ୍ରକାରଖାନାର ୧୧,୦୦୦ ଶ୍ରମିକମାନଙ୍କର ଏକ ସୁସଂଗଠିତ ଧର୍ମଘଟ ବେଳେ ମଜୁରି, ଭଡ଼ାର ସର୍ତ୍ତ ଏବଂ ଜରିମାନାର ମାତ୍ରା ଉପରେ ରାଷ୍ଟ୍ରୀୟ ନିୟନ୍ତ୍ରଣ ଜାରି କରିବାକୁ ଦାବି କରାଯାଇଥିଲା । ଏହି ଧର୍ମଘଟର ଅନ୍ୟତମ ନେତା ଥିଲେ ରୁଷ୍ ଶ୍ରମିକମାନଙ୍କର ଉତ୍ତର ୟୁନିଅନ୍‌ର ଜନୈକ ସଦସ୍ୟ ପିଓତର ମଇସିୟେଙ୍କୋ । ସରକାର ଏହା ପରେ ସଂପୃକ୍ତ ନିୟମମାନ ଘୋଷଣା କରିଥିଲେ । ସର୍ବହରାମାନଙ୍କ ସଂଗ୍ରାମ ଫଳରେ ଦେଶରେ ଏକ ଶ୍ରମ ଆଇନ୍ ଜାରୀ କରାଯାଇଥିଲା । ଏହି ଧର୍ମଘଟଟି ଅଧିକାଂଶ ଶ୍ରମିକଙ୍କୁ ଦେଖାଇ ଦେଇଥିଲା ଯେ, ସେମାନଙ୍କ ସ୍ୱାର୍ଥ ହେଉଛି ଶିଳ୍ପପତିମାନଙ୍କ ସ୍ୱାର୍ଥର ବିପରୀତ । କିନ୍ତୁ ସେମାନଙ୍କ ଅବସ୍ଥାନର ପରିବର୍ତ୍ତନ ପାଇଁ ପୁଞ୍ଜିବାଦର ଉତ୍‌ଖାତ ଯେ ଦରକାର, ଏହି ସଚେତନତା ଜାଗ୍ରତ କଲା ପର୍ଯ୍ୟନ୍ତ ଯାଇ ପାରି ନଥିଲା ।

୧୮୯୦ ଦଶକର ପ୍ରଥମାର୍ଦ୍ଧରେ ଆନ୍ଦୋଳନରେ ଏକାଠି ଧର୍ମଘଟ କରିବା ଏକ ଉଲ୍ଲେଖନୀୟ ସ୍ଥାନ ଗ୍ରହଣ କରିଥିଲା – ଅନେକ କାରଖାନାର ଶ୍ରମିକମାନେ ଏକାବେଳକେ କାର୍ଯ୍ୟ ବନ୍ଦ କରି ଦେଉଥିଲେ । ଶ୍ରମିକ ସଂହତି ଦୃଢ଼ ହୋଇଥିଲା । ଶ୍ରମିକ ଆନ୍ଦୋଳନ ପାଇଁ ଅବସ୍ଥା ଦେଖା ଦେଇଥିଲା ।

ନାରୋଦ୍‌ନିକମାନଙ୍କ ଅଭିଜ୍ଞତାରୁ "କୃଷକ ସମାଜବାଦର" ଅବାସ୍ତବ ଚିନ୍ତାକୁ ଅନୁଭବ କରି ପାରିଥିଲେ ରୁଷ୍ ବୁଦ୍ଧିଜୀବୀ ସଂପ୍ରଦାୟର ସେରା ଲୋକମାନେ । ସେମାନେ ଅଧିକରୁ ଅଧିକ ଦୃଷ୍ଟି ପ୍ରଦାନ କରିଥିଲେ ଦ୍ରୁତ ବୃଦ୍ଧି ପାଉଥିବା ନୂଆ ଏକ ସାମାଜିକ ଶକ୍ତି, ଶ୍ରମିକ ଶ୍ରେଣୀ ଆଡ଼କୁ, ତା'ର ମୁଖ୍ୟ ସମସ୍ୟା ଏବଂ ସଂଗ୍ରାମୀ କ୍ରିୟାକଳାପ ଆଡ଼କୁ । ସେମାନେ କ୍ରମଶଃ ଅଧିକରୁ ଅଧିକ ଆଗ୍ରହ ପ୍ରକାଶ କରିଥିଲେ ମାର୍କସ୍‌ବାଦ –

ସର୍ବହରା ଶ୍ରେଣୀର ମୁକ୍ତି ତଥା ସମାଜବାଦ ପାଇଁ ତା'ର ବୈପ୍ଳବିକ ସଂଗ୍ରାମ ସଂପର୍କିତ ଏକ ଶିକ୍ଷା ପ୍ରତି ।

୧୮୮୦ ଖ୍ରୀଷ୍ଟାବ୍ଦରେ ପୁଲିସ୍ ହାତରୁ ଖସିଯାଇ ପ୍ଲେଖାନୋଭ୍ "ସାଧାରଣ ପୁନର୍ବଣ୍ଟନର" ଅନ୍ୟାନ୍ୟ ସଦସ୍ୟମାନଙ୍କ ସହିତ ବିଦେଶକୁ ପଳାଇ ଯାଇଥିଲେ । ଏହାର ଦୁଇ ବର୍ଷ ପରେ ପ୍ଲେଖାନୋଭ୍ କାର୍ଲ ମାର୍କସ୍ ଏବଂ ଏଙ୍ଗେଲସ୍‌ଙ୍କର ଏକ କର୍ମସୂଚୀମୂଳକ ରଚନା, "କମ୍ୟୁନିଷ୍ଟ ପାର୍ଟିର ଇସ୍ତାହାର"ର ରୁଷ୍ ଅନୁବାଦ ପ୍ରକାଶ କରିଥିଲେ । ୧୮୮୩, ସେପ୍‌ଟେମ୍ବର ୨୫ ତାରିଖରେ "ଆଧୁନିକ ସମାଜବାଦର ଏକ ପାଠାଗାର ପ୍ରକାଶନର ନୋଟିସ୍" ପ୍ରକାଶ ପାଇଲା । ଏଥିରେ ପ୍ଲେଖାନୋଭ୍ ଲେଖିଥିଲେ, " 'ସାଧାରଣ ପୁନର୍ବଣ୍ଟନର' ପୂର୍ବତନ ସଦସ୍ୟମାନେ ଏବେ ଏକ ନୂତନ ଗୋଷ୍ଠୀ, "ଶ୍ରମ ମୁକ୍ତି ସଂଘ", ଗଠନ କରିଛନ୍ତି ଏବଂ ଅତୀତର ଅରାଜକତାବାଦୀ ପ୍ରବଣତାସମୂହକୁ ସଂପୂର୍ଣ୍ଣ ରୂପେ ବର୍ଜନ କରିଛନ୍ତି ।" ନାରୋଦ୍‌ନିକ ଭାବାଦର୍ଶରାଜିକୁ ସମାଲୋଚନା କରିବା ଏବଂ ବୈଜ୍ଞାନିକ ସମାଜବାଦର ଚିନ୍ତାଧାରାକୁ ପ୍ରଚାର କରିବାକୁ ଏହି ଗୋଷ୍ଠୀଟି ମୁଖ୍ୟ କର୍ତ୍ତବ୍ୟ ବୋଲି ଅନୁଭବ କରିଥିଲା । ଶେଷୋକ୍ତ କାର୍ଯ୍ୟଟି ପାଇଁ ସେମାନେ ସ୍ଥିର କରିଥିଲେ, "ମାର୍କସ୍ ଏବଂ ଏଙ୍ଗେଲସ୍‌ଙ୍କ ଗୋଷ୍ଠୀର ମୁଖ୍ୟ ରଚନାବଳୀକୁ ରୁଷ୍ ଭାଷାରେ ଅନୁବାଦ କରିବାକୁ ଏବଂ ବିଭିନ୍ନ ସ୍ତରର ପାଠକମାନଙ୍କ ପାଇଁ ଉଦ୍ଦିଷ୍ଟ ମୌଳିକ ରଚନାମାନ ପ୍ରକାଶ କରିବାକୁ ।"

ପ୍ଲେଖାନୋଭ୍‌ଙ୍କର ପ୍ରଥମ ମୌଳିକ ରଚନାଟି ହେଲା "ସମାଜବାଦ ଏବଂ ରାଜନୈତିକ ସଂଗ୍ରାମ" । ଏହି ପୁସ୍ତକଟିରେ ପ୍ଲେଖାନୋଭ୍ ମାର୍କସ୍‌ବାଦୀ ଅବସ୍ଥାନରୁ ନାରୋଦ୍‌ବାଦୀ ମତାବଳୀକୁ ଅତ୍ୟନ୍ତ ତୀକ୍ଷ୍ଣ ଭାବେ ସମାଲୋଚନା କରିଥିଲେ ଏବଂ ରୁଷୀୟ ବିପ୍ଳବୀମାନଙ୍କ ପକ୍ଷରେ ଏକ ଜରୁରୀ କର୍ତ୍ତବ୍ୟ ହିସାବରେ ପ୍ରସ୍ତାବ ଦେଇଥିଲେ ଅଗ୍ରଣୀ ତତ୍ତ୍ୱ ଦ୍ୱାରା "ସୁସଜ୍ଜିତ ଭବିଷ୍ୟତର ଶ୍ରମିକ ସମାଜବାଦୀ ପାର୍ଟି ଗଠନ ନିମିତ୍ତ ଉପାଦାନଗୁଡ଼ିକୁ ବିକାଶ କରିବାକୁ ହେବ" । ନାରୋଦ୍‌ନିକ ଆନ୍ଦୋଳନର ଭାବାଦର୍ଶବାଦୀମାନେ ଯେତେବେଳେ ପୁଞ୍ଜିବାଦର ପ୍ରତ୍ୟକ୍ଷ ବିକାଶ ହିସାବରେ ପ୍ଲେଖାନୋଭ୍‌ଙ୍କ ଦ୍ୱାରା ବିକଶିତ ପ୍ରପାଦ୍ୟସମୂହର ପ୍ରତିନିଧି ରୂପେ ନିଜକୁ ପ୍ରତିପାଦିତ କରିବାକୁ ଚାହିଁଲେ ପ୍ଲେଖାନୋଭ୍ ଆଉ ଏକ ନୂତନ ପୁସ୍ତକ, "ଆମମାନଙ୍କ ପାର୍ଥକ୍ୟସମୂହ" ଲେଖିଥିଲେ । ରୁଷୀୟ ଜୀବନରୁ ବିଭିନ୍ନ ତଥ୍ୟାଦି ପ୍ରଦାନ କରି ପ୍ଲେଖାନୋଭ୍ ଦର୍ଶାଇଥିଲେ ଯେ, ରୁଷିଆ ପୁଞ୍ଜିବାଦୀ ପଥରେ ଇତି ମଧ୍ୟରେ ଆଗେଇ ଗଲାଣି ଏବଂ ଏକ ସର୍ବହରା ଶ୍ରେଣୀ ମଧ୍ୟ ବିକାଶ ଲାଭ କରିବାରେ ଲାଗିଛି । ସେ ରୁଷିଆର ମାର୍କସ୍‌ବାଦୀମାନଙ୍କର ମୁଖ୍ୟ କର୍ତ୍ତବ୍ୟରାଜିକୁ ନିମ୍ନ ମତେ ବ୍ୟାଖ୍ୟା କରିଥିଲେ : "ଏକ ଶ୍ରମିକ ପାର୍ଟିର ଅତି ଶୀଘ୍ର ଗଠନ ହେଉଛି ବର୍ତ୍ତମାନ ରୁଷିଆର ସମସ୍ତ ଅର୍ଥନୈତିକ ତଥା ରାଜନୈତିକ ଦ୍ୱନ୍ଦ୍ୱର ସମାଧାନର ଏକମାତ୍ର ପଥ ।"

ରୁଷିଆର ସାମାଜିକ ଚିନ୍ତାଜଗତରେ ମାର୍କସ୍‌ବାଦ ଏକ ସ୍ୱାଧୀନ ଧାରାରେ ପରିଣତ ହେଲା । "ଶ୍ରମ ମୁକ୍ତି ସଂଘ" ଗଠନ ପରେ ମାର୍କସ୍‌ବାଦୀ ଗୋଷ୍ଠୀଗୁଡ଼ିକ ସେଣ୍ଟ୍ ପିଟର୍ସବୁର୍ଗ୍, କାଜାନ୍ ଏବଂ ଅନ୍ୟାନ୍ୟ ସହରସମୂହରେ ଦେଖାଦେଇଥିଲେ । ସେମାନେ ଛୋଟ ଛୋଟ ଶ୍ରମିକ ଗୋଷ୍ଠୀ ମଧ୍ୟରେ ମାର୍କସ୍‌ବାଦୀ ଚିନ୍ତାଧାରାସମୂହକୁ ପ୍ରଚାର କରିବାକୁ ଲାଗିଲେ ଏବଂ ତା'ପରେ ଶ୍ରମିକ ଆନ୍ଦୋଳନ ଗଠନ କରିବା ଦିଗରେ ପ୍ରଥମ ପଦକ୍ଷେପମାନ ଗ୍ରହଣ କରିଥିଲେ । ମିଖାଇଲ ବ୍ରୁଶ୍‌ନେଭ୍‌ଙ୍କ ଗୋଷ୍ଠୀଟି (୧୮୮୯ରେ ପ୍ରତିଷ୍ଠିତ) ୧୮୯୧, ଏପ୍ରିଲ ମାସରେ ଗଣତାନ୍ତ୍ରିକ ଲେଖକ ନିକଲାଇ ଶେଲ୍‌ଗୁନୋଭ୍‌ଙ୍କ ଶବସତ୍କାର ବେଳେ ପ୍ରଥମ ପ୍ରକାଶ୍ୟ ଶ୍ରମିକ ବିକ୍ଷୋଭର ଆୟୋଜନ କରିଥିଲେ । ଏହା ପରେ ସେମାନେ ସେଣ୍ଟ୍ ପିଟର୍ସବୁର୍ଗ୍‌ରେ ଆୟୋଜନ କରିଥିଲେ ମେ ଦିବସର ପ୍ରଥମ ଉଦ୍‌ଯାପନ ।

ଏହିସବୁ ଘଟଣାବଳୀ ଥିଲା ପ୍ୟାରିସ୍‌ରେ ଅନୁଷ୍ଠିତ (୧୮୮୯) ଆନ୍ତର୍ଜାତିକ ଶ୍ରମିକ ସମାଜବାଦୀ କଂଗ୍ରେସରେ ପ୍ଲେଖାନୋଭ୍‌ଙ୍କ ଉକ୍ତିର ସ୍ୱୀକୃତି ସ୍ୱରୂପ । ଏହି କଂଗ୍ରେସରେ ସେ ରୁଷ୍ ସୋସାଲ-ଡେମୋକ୍ରାଟ୍‌ମାନଙ୍କର ପ୍ରତିନିଧି ରୂପେ ପ୍ରଥମ ଥର ପାଇଁ କହିଥିଲେ "ରୁଷିଆରେ ବିପ୍ଲବୀ ଆନ୍ଦୋଳନ କେବଳ ଶ୍ରମିକମାନଙ୍କ ବିପବୀ ଆନ୍ଦୋଳନ ରୂପେ ବିଜୟ ମଣ୍ଡିତ ହେବ । ଏହା ବ୍ୟତୀତ ଆମ ଆଗରେ କୌଣସି ପଥ ନାହିଁ କି ହୋଇ ବି ପାରିବ ନାହିଁ !"

"ଶ୍ରମ ମୁକ୍ତି ସଂଘର" କ୍ରିୟାକଳାପ, ଏବଂ ମୁଖ୍ୟତଃ ପ୍ଲେଖାନୋଭ୍‌ଙ୍କ କ୍ରିୟାକଳାପ ଫଳରେ ରୁଷିଆରେ ସୋସାଲ-ଡେମୋକ୍ରାଟିକ୍ ବିଶ୍ୱଦୃଷ୍ଟିକୋଣର ଭିତ୍ତି ସ୍ଥାପିତ ହୋଇଥିଲା ।

ତେବେ କେବଳ ଭିତ୍ତି ହିଁ ପ୍ରତିଷ୍ଠିତ ହୋଇଥିଲା । ରୁଷିଆର ବାସ୍ତବତା ପ୍ରତି ମାର୍କସ୍‌ବାଦକୁ ପ୍ରୟୋଗ କରିବା ଏବଂ ନୂତନ ଐତିହାସିକ ଯୁଗ ଦୃଷ୍ଟିରୁ ଏହାକୁ ବିକଶିତ କରିବାର ଦାୟିତ୍ୱ ପଡ଼ିଥିଲା ଲେନିନ୍‌ଙ୍କ ଉପରେ ।

"ରୁଷିଆ ମାର୍କସ୍‌ବାଦ—ଏକମାତ୍ର ସଠିକ ବିପ୍ଳବୀ ତତ୍ତ୍ୱକୁ ଲାଭ କରିଥିଲା—ଅର୍ଦ୍ଧଶତାବ୍ଦୀର ଅତୁଳନୀୟ ଦୁଃଖ ଏବଂ ତ୍ୟାଗ, ଅତୁଳନୀୟ ବିପ୍ଳବୀ ବୀରତ୍ୱ, ଅବିଶ୍ୱାସ୍ୟ ଶକ୍ତି, ଏକନିଷ୍ଠ ଅନ୍ୱେଷଣ ମଧ୍ୟ ଦେଇ, ଯନ୍ତ୍ରଣା ମଧ୍ୟ ଦେଇ...", ଲେନିନ୍ ଏହି କଥାଗୁଡ଼ିକୁ କହିଥିଲେ ୧୯୨୦ ମସିହାରେ । ଏହା କେବଳ ବିପ୍ଳବୀମାନଙ୍କର ପୂର୍ବବର୍ତ୍ତୀ ବଂଶଧରମାନଙ୍କ ପ୍ରତି ପ୍ରଯୋଜ୍ୟ ନୁହେଁ, ଲେନିନ୍ ଯେଉଁ ପରିବାରରେ ଜନ୍ମ ନେଇ ବଢ଼ିଥିଲେ, ତା ପ୍ରତି ମଧ୍ୟ ପ୍ରଯୋଜ୍ୟ ।

ଭ୍ଲାଦିମିର୍ ଉଲ୍ୟାନୋଭ୍‌ଙ୍କର ବିପ୍ଳବୀ ଛଦ୍ମନାମ ଥିଲା ଲେନିନ୍ । ତାଙ୍କ ପିତା, ଇଲ୍ୟା ଉଲ୍ୟାନୋଭ୍, ଜନଶିକ୍ଷା କ୍ଷେତ୍ରରେ ଜଣେ ପ୍ରଖ୍ୟାତ ଲୋକ ଥିଲେ । ଲେନିନ୍‌ଙ୍କ

ବଡ଼ ଭାଇ, ଆଲେକ୍‌ଜାଣ୍ଡର "ନାରୋଦ୍‌ନାୟା ଭୋଲ୍ୟାର" ପଥ ଗ୍ରହଣ କରିଥିଲେ : ଜାର୍ ବିରୁଦ୍ଧରେ ଏକ ଷଡ଼ଯନ୍ତ୍ରରେ ଅଂଶଗ୍ରହଣ କରି ୧୮୮୭ ମସିହାରେ ଶ୍ଲିସେଲ୍‌ବୁର୍ଗ୍ ଦୁର୍ଗରେ ଫାଶି ପାଇଥିଲେ । ଏହାର ପରବର୍ଷ, ଅର୍ଥାତ୍, ୧୮୮୮ ମସିହାରେ ଭ୍ଲାଦିମିର୍ ଉଲ୍ୟାନୋଭ୍‌ଙ୍କୁ କାଜାନ୍ ବିଶ୍ୱବିଦ୍ୟାଳୟରୁ ବହିଷ୍କାର କରାଯାଇଥିଲା ଏକ ଛାତ୍ର ସଭାର ଆୟୋଜନ କରିଥିବାରୁ । ଭ୍ଲାଦିମିର୍ ଉଲ୍ୟାନୋଭ୍ କାଜାନ୍‌ର ମାର୍କସ୍‌ବାଦୀ ଗୋଷ୍ଠୀରେ ଯୋଗ ଦେଇଥିଲେ । ମାର୍କସ୍‌ବାଦ ଅଧ୍ୟୟନ କରି ଜୀବନ ତଥା ସଂଗ୍ରାମର ଜରୁରୀ ପ୍ରଶ୍ନସମୂହର ଉତ୍ତର ପାଇବାକୁ ସେ ଚେଷ୍ଟା କରିଥିଲେ ।

ଲେନିନ୍ ସେଣ୍ଟ୍ ପିଟର୍ସବୁର୍ଗ୍ ବିଶ୍ୱବିଦ୍ୟାଳୟର ଆଇନ୍ ବିଭାଗରୁ ଜଣେ ଘରୋଇ ଛାତ୍ର ଭାବେ ବି.ଏ. ପାଶ୍ କରିଥିଲେ । ୧୮୯୩ ମସିହାରେ ସେ ଏହି ଶିଳ୍ପ ତଥା ସଂସ୍କୃତିର ବୃହତ୍ କେନ୍ଦ୍ରରେ ପହଞ୍ଚିଥିଲେ ଏବଂ ଜଣେ ପୂର୍ଣ୍ଣ ମାର୍କସ୍‌ବାଦୀ ରୂପେ କାରିଗରୀ ଶିକ୍ଷା ପ୍ରତିଷ୍ଠାନରେ ଛାତ୍ରମାନଙ୍କର ସୋସାଲ-ଡେମୋକ୍ରାଟିକ୍ ଗୋଷ୍ଠୀରେ ଯୋଗ ଦେଇଥିଲେ । ଏଥି ସଙ୍ଗେ ସଙ୍ଗେ ଲେନିନ୍ ଭେଟିଥିଲେ ସେଣ୍ଟ୍ ପିଟର୍ସବୁର୍ଗ୍‌ର ଶ୍ରମିକମାନଙ୍କର ନେତାମାନଙ୍କୁ । ସେମାନଙ୍କ ମଧ୍ୟରେ ଥିଲେ ଭାସିଲି ଶେଲ୍‌ଗୁନୋଭ୍, ଇଭାନ୍ ବାବୁସ୍‌କିନ୍ ଏବଂ ବୋରିସ୍ ଜିନୋଭିଏଭ୍ ପ୍ରମୁଖ । ଏମାନଙ୍କ ଜରିଆରେ ସେ ସେଣ୍ଟ୍ ପିଟର୍ସବୁର୍ଗ୍‌ର ବିଭିନ୍ନ ଶ୍ରମିକ ଗୋଷ୍ଠୀ ସହିତ ଘନିଷ୍ଠ ହୋଇ ପାରିଥିଲେ । ୧୮୯୪ ମସିହାରେ ଲେନିନ୍‌ଙ୍କ ପ୍ରଥମ ପୁସ୍ତକଟି ପ୍ରକାଶ ପାଇଥିଲା — "ଲୋକଙ୍କର ବନ୍ଧୁଗଣ କିଏ ଏବଂ ସେମାନେ କେମିତି ସୋସାଲ-ଡେମୋକ୍ରାଟ୍‌ଙ୍କ ସହିତ ଲଢ଼େଇ କରନ୍ତି ?" ଏହା ପରେ ୧୮୯୫ ମସିହାରେ ତାଙ୍କର ଆଉ ଏକ ପୁସ୍ତକ — "ନାରୋଦ୍‌ବାଦର ଅର୍ଥନୈତିକ ଆଧେୟ ଏବଂ ମିଷ୍ଟର ଷ୍ଟ୍ରୁଭେଙ୍କ ପୁସ୍ତକରେ ଏହାର ସମାଲୋଚନା" ଶୀର୍ଷକ ପୁସ୍ତକଟି ପ୍ରକାଶ ପାଇଥିଲା । ଏହି ୧୮୯୫ ଖ୍ରୀଷ୍ଟାବ୍ଦରେ ଲେନିନ୍ ତାଙ୍କ ମାର୍କସ୍‌ବାଦୀ ଗୋଷ୍ଠୀର ସାଥୀମାନଙ୍କ ସହିତ ମିଶି "ଶ୍ରମିକ ଶ୍ରେଣୀର ମୁକ୍ତି ପାଇଁ ସେଣ୍ଟ୍ ପିଟର୍ସବୁର୍ଗ୍ ସଂଗ୍ରାମୀ ସଂଘ" ଗଠନ କରିଥିଲେ । ଏହା ଥିଲା ରୁଷିଆରେ ପ୍ରଥମ ସୋସାଲ-ଡେମୋକ୍ରାଟିକ୍ ସଂଗଠନ । ଏହାର ଥିଲା ଏକ କେନ୍ଦ୍ରୀୟ ନେତୃତ୍ୱ, ପାର୍ଟି ଦାୟିତ୍ୱର ପରିଷ୍କାର ବଣ୍ଟନ ଏବଂ ସୁଦୃଢ଼ ଶୃଙ୍ଖଳା । ଏହି ସଂଗଠନଟି ଅବିଳମ୍ବେ ରାଜଧାନୀର ଶ୍ରମିକ ଶ୍ରେଣୀ ଆନ୍ଦୋଳନର ନେତୃତ୍ୱ ଗ୍ରହଣ କରିଥିଲା । ଛୋଟ ଛୋଟ ଗୋଷ୍ଠୀ ମଧ୍ୟରେ ମାର୍କସ୍‌ବାଦ ପ୍ରଚାର କରିବା ଠାରୁ ଆରମ୍ଭ କରି "ସଂଗ୍ରାମୀ ସଂଘ" ସେଣ୍ଟ୍ ପିଟର୍ସବୁର୍ଗ୍‌ର ସର୍ବହରାମାନଙ୍କର ମଧ୍ୟରେ ବ୍ୟାପକ ଆନ୍ଦୋଳନାତ୍ମକ କ୍ରିୟାକଳାପ ଚଳାଇଥିଲା । ବୈଜ୍ଞାନିକ ସମାଜବାଦର ତତ୍ତ୍ୱକୁ ସାଧାରଣ ଲୋକଙ୍କ ଭାଷାରେ ଅନୁବାଦ କରାଗଲା । ଏହା ପରେ, ଲେନିନ୍‌ଙ୍କ ଭାଷାରେ, "ଆରମ୍ଭ ହୋଇଥିଲା ସୋସାଲ-ଡେମୋକ୍ରାସି ସହିତ ଯୁକ୍ତ ନିରବଚ୍ଛିନ୍ନ ଶ୍ରମିକ ଆନ୍ଦୋଳନ", ଏବଂ ରୁଷିଆର ମୁକ୍ତି ଆନ୍ଦୋଳନରେ ଆରମ୍ଭ ହୋଇଥିଲା ସର୍ବହରା ଯୁଗ । ରାଜ୍‌ନୋଚିନ୍‌ସି ବୁଦ୍ଧିଜୀବୀଙ୍କ

ପରିବର୍ତ୍ତେ ରୁଷ୍ ଶ୍ରମିକ ଶ୍ରେଣୀ ବିପ୍ଳବୀ ଆନ୍ଦୋଳନରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା ।

ଏହି ଭାବେ ଲେନିନ୍ ପ୍ରତ୍ୟକ୍ଷ ଭାବେ ତାତ୍ତ୍ୱିକ, ସାଂଗଠନିକ ଏବଂ ବାସ୍ତବ ରାଜନୈତିକ କ୍ରିୟାକଳାପକୁ ଏକତ୍ର କରି ବିପ୍ଳବ ପଥରେ ଆଗେଇଥିଲେ ।

ଲେନିନ୍ ତାହେଲେ ରୁଷିଆର ଶ୍ରମିକ ତଥା ସୋସାଲ-ଡେମୋକ୍ରାଟ୍‌ମାନଙ୍କୁ କ'ଣ ପ୍ରଦାନ କରିଥିଲେ ? ତାଙ୍କ ଦ୍ୱାରା ଲିଖିତ "'ଲୋକଙ୍କର ବନ୍ଧୁମାନେ' କିଏ ଏବଂ ସେମାନେ କିପରି ସୋସାଲ-ଡେମୋକ୍ରାଟ୍‌ଙ୍କ ବିରୁଦ୍ଧରେ ସଂଗ୍ରାମ କରନ୍ତି..." ପୁସ୍ତକଟିର ଶେଷରେ ଏହି କଥାଟି ଥିଲା, "...ରୁଷିଆର ଶ୍ରମିକ ଶ୍ରେଣୀ, ସମସ୍ତ ଗଣତାନ୍ତ୍ରିକ ଉପାଦାନର ଅଗ୍ର ଭାଗରେ ରହି, ସ୍ୱୈରତନ୍ତ୍ରକୁ ଉତ୍‌ଖାତ କରିବ ଏବଂ ରୁଷିଆର ସର୍ବହରାକୁ ନେତୃତ୍ୱ ଦେବ (ଅନ୍ୟ ସମସ୍ତ ଦେଶର ସର୍ବହରା ସହିତ) ବିଜୟମଣ୍ଡିତ କମ୍ୟୁନିଷ୍ଟ ବିପ୍ଳବ ଆଡ଼କୁ ଖୋଲା ରାଜନୈତିକ ସଂଗ୍ରାମର ସିଧା ରାସ୍ତାରେ ଆଗେଇଯିବା ପାଇଁ ।"

୧୯ଶ ଶତାବ୍ଦୀର ଶେଷରେ ଏବଂ ୨୦ଶ ଶତାବ୍ଦୀର ପ୍ରାରମ୍ଭରେ ରୁଷିଆରେ ଏକ ବୁର୍ଜୁଆ ବିପ୍ଳବ ପରିପକ୍ୱ ହୋଇ ଉଠୁଥିବା କଥା ଆମେ ଭୁଲିଗଲେ ଚଳିବ ନାହିଁ । ଲେନିନ୍ ଏହାକୁ କିପରି ଭାବେ ଅନୁଧ୍ୟାନ କରିଥିଲେ ଦେଖିବା କଥା । ଲେନିନ୍ ଏହି ଉପସଂହାରରେ ଆସି ପହଞ୍ଚିଥିଲେ, ଯାହାକି ବିଂଶ ଶତାବ୍ଦୀର ପ୍ରାରମ୍ଭରେ ବିରାଟ ଏକ ମାର୍କସ୍‌ବାଦୀ ଆବିଷ୍କାରରେ ପରିଣତ ହୋଇଥିଲା । ସେ ହେଲା, ନୂଆ ଐତିହାସିକ ଯୁଗରେ ଉନ୍ନତ ଏକ ସର୍ବହରା ଶ୍ରେଣୀ ଥିବା ଦେଶରେ ବୁର୍ଜୁଆ-ଗଣତାନ୍ତ୍ରିକ ବିପ୍ଳବର ଚାଳିକା ଶକ୍ତି ପୂର୍ବ ଅପେକ୍ଷା ଭିନ୍ନ ହେବ । ବୁର୍ଜୁଆଙ୍କ ପରିବର୍ତ୍ତେ ସର୍ବହରା ହିଁ ଶ୍ରମଜୀବୀ ଏବଂ ନିପୀଡ଼ିତ ଜନସାଧାରଣଙ୍କୁ ଏକଜୁଟ କରିବ ଏବଂ ସ୍ୱୈରତନ୍ତ୍ର ବିରୁଦ୍ଧରେ ସେମାନଙ୍କୁ ପରିଚାଳିତ କରିବ । ରୁଷିଆରେ ଆସନ୍ନ ବୁର୍ଜୁଆ-ଗଣତାନ୍ତ୍ରିକ (ଆଧେୟ ଦୃଷ୍ଟିରୁ) ବିପ୍ଳବ ସଂଗ୍ରାମର ଉପାୟ ହିସାବରେ ହେବ ସର୍ବହରାତ୍ମକ ଏବଂ ସାଧାରଣ ବୁର୍ଜୁଆ ବିପ୍ଳବର ଚଉକାଠକୁ ଅତିକ୍ରମ କରିଯିବ ଏବଂ ଏକ ସମାଜବାଦୀ ବିପ୍ଳବ ମଧ୍ୟକୁ ବିକାଶ ଲାଭ କରିବ ।

ଏହି ଉପସଂହାରକୁ ପ୍ରାଞ୍ଜଳ ଭାବେ ୧୯୦୫-୧୯୦୭ ମସିହାର ପ୍ରଥମ ରୁଷ୍ ବିପ୍ଳବର ବର୍ଷମାନଙ୍କରେ ଲେନିନ୍ ବ୍ୟାଖ୍ୟା କରିଥିଲେ । ବିପ୍ଳବ ଆରମ୍ଭ ହେବାର ଦଶ ବର୍ଷ ପୂର୍ବରୁ ସମାଜବାଦ ପାଇଁ ସଂଗ୍ରାମକୁ ଗଣତନ୍ତ୍ର ପାଇଁ ସଂଗ୍ରାମ ସହିତ ଐକ୍ୟବଦ୍ଧ କରିବା ନିମିତ୍ତ ରୁଷିଆର ଉଭୟ ମାର୍କସ୍‌ବାଦୀ ଏବଂ ଶ୍ରମିକ ଶ୍ରେଣୀକୁ ପ୍ରସ୍ତୁତ କଲା ବେଳେ ଲେନିନ୍ ବାରମ୍ବାର କହୁଥିଲେ, ସମାଜବାଦୀ ଏବଂ ଗଣତାନ୍ତ୍ରିକ ପ୍ରଚାର ତଥା ଆନ୍ଦୋଳନାତ୍ମକ କ୍ରିୟାକଳାପ ମଧ୍ୟରେ ଘନିଷ୍ଠ ସଂପର୍କ ରଖିବାକୁ ଏବଂ ଉଭୟ କ୍ଷେତ୍ରରେ ସଂପୂର୍ଣ୍ଣ ସମାନ୍ତରାଳ ଚରିତ୍ରର ବିପ୍ଳବୀ ସଂଗ୍ରାମ ଚଳାଇ ଯିବାକୁ ।

ପିଟର୍ସବର୍ଗ୍‌ର "ଶ୍ରମିକ ଶ୍ରେଣୀର ମୁକ୍ତି ପାଇଁ ସଂଗ୍ରାମୀ ସଂଘର" କ୍ରିୟାକଳାପ ଶୀର୍ଷଦେଶରେ ପହଞ୍ଚିଥିଲା ସେଣ୍ଟ୍ ପିଟର୍ସବର୍ଗ୍‌ର ୩୦,୦୦୦ ବସ୍ତ୍ରଶିଳ୍ପ ଶ୍ରମିକଙ୍କ ୧୮୯୬

ମସିହାର ମେ ଏବଂ ଜୁନ୍ ମାସର ଧର୍ମଘଟ ଦ୍ୱାରା । ସମ୍ଭାବନା ଏବଂ ସଂଗଠନ ଦୃଷ୍ଟିରୁ ଏହା ଥିଲା ଅଭୂତପୂର୍ବ । ଧର୍ମଘଟର ଅବ୍ୟବହିତ ପୂର୍ବରୁ "ସଂଗ୍ରାମୀ ସଂଘ" ଏକ ମେ ଦିବସ ପ୍ରସ୍ତାବପତ୍ର ବଣ୍ଟନ କରିଥିଲା । ସେଣ୍ଟ୍ ପିଟର୍ସବର୍ଗ୍‌ର ୪୦ଟି ଶିଳ୍ପୋଦ୍ୟୋଗରେ ୨ ହଜାର ପ୍ରସ୍ତାବପତ୍ର ବଣ୍ଟା ହୋଇଥିଲା । ଏହିସବୁ ପ୍ରସ୍ତାବପତ୍ର ଦ୍ୱାରା ସୁସ୍ପଷ୍ଟ ଅସନ୍ତୋଷ ଆଉ ରୋଷ ଏକ ସଂଗଠିତ ଧର୍ମଘଟର ରୂପ ଧାରଣ କରିଥିଲା । ଦାବୀସମୂହ ମଧ୍ୟରେ ମୁଖ୍ୟ ଦାବୀଟି ଥିଲା ଶ୍ରମ ଦିବସକୁ ୧୦ $\frac{୧}{୨}$ ଘଣ୍ଟାକୁ ହ୍ରାସ କରିବା । ଏହି ଦାବୀ ସମେତ ଅନ୍ୟାନ୍ୟ ଦାବୀ ଧର୍ମଘଟକାରୀ କାରଖାନାଗୁଡ଼ିକର ପ୍ରତିନିଧିମାନଙ୍କ ସଭାରେ ଆଲୋଚିତ ହୋଇ ଉପସ୍ଥାପନ କରାଯାଇଥିଲା । ଏହିସବୁ ଦାବୀ ପ୍ରଦାନ କରାଯାଇଥିଲା "ସଂଗ୍ରାମୀ ସଂଘ" ହାତକୁ ଏବଂ ଏହା ସେସବୁକୁ ପ୍ରସ୍ତାବପତ୍ର ଆକାରରେ ପ୍ରକାଶ କରିଥିଲା ଏବଂ ଏହା କେବଳ ଶ୍ରମିକମାନଙ୍କ ପ୍ରତି ଉଦ୍ଦିଷ୍ଟ ନହୋଇ ସମଗ୍ର ରୁଷ୍ ସମାଜ ଏବଂ ଜାର୍‌ସାହୀ ସରକାରକୁ ଉଦ୍ଦିଷ୍ଟ ହୋଇଥିଲା । ମାସକ ପର୍ଯ୍ୟନ୍ତ ଏହି ଧର୍ମଘଟ ଚାଲିଥିଲା । ଧର୍ମଘଟର ଜୁଆର କମି ଆସିଲା ବେଳେ କେତେକ କାରଖାନାର ଶ୍ରମିକ ସେମାନଙ୍କ ପକ୍ଷରୁ ହ୍ରାସକୃତ ଶ୍ରମ ଦିବସ ଚାଲୁ କରିଥିଲେ ; ଅର୍ଥାତ୍, ଧର୍ମଘଟକାରୀମାନଙ୍କର ମୁଖ୍ୟ ଦାବୀଟିକୁ କାର୍ଯ୍ୟକାରୀ କରିଥିଲେ ।

ଅର୍ଥନୈତିକ ଦାବୀସମୂହ ଦୃଷ୍ଟିରୁ ଶ୍ରମିକମାନେ ବିଶେଷ ହାସଲ କରି ପାରି ନଥିଲେ । ସେମାନଙ୍କ ମୁଖ୍ୟ ଦାବୀ, ଶ୍ରମ ଦିବସର ସମୟ ହ୍ରାସ କରିବା, ପୂରଣ ହୋଇ ନଥିଲା । କିନ୍ତୁ ପରବର୍ଷ ଶ୍ରମିକମାନେ ଯେତେବେଳେ ଧର୍ମଘଟ ଆରମ୍ଭ କଲେ, ସରକାର ଏ ସଂପର୍କରେ ଏକ ଆଇନ୍‌କୁ ବାଧ୍ୟ ହୋଇ କାର୍ଯ୍ୟକାରୀ କରିଥିଲା । ୧୮୯୭, ଜୁନ୍ ୨ ତାରିଖ ଦିନ ଆଇନ୍ ଦ୍ୱାରା ସମଗ୍ର ରୁଷିଆରେ କାର୍ଯ୍ୟ ଦିବସର ସମୟକୁ କମାଇ ଅଣାଯାଇଥିଲା ୧୧ $\frac{୧}{୨}$ ଘଣ୍ଟାକୁ । ଅଧିକାଂଶ କାରଖାନାରେ ଅନେକ ବର୍ଷ ପର୍ଯ୍ୟନ୍ତ ଶ୍ରମ ଦିବସର ସମୟ ବାସ୍ତବରେ କମି ନଥିଲେ ମଧ୍ୟ ଏହି ଆଇନ୍‌ର ପରିବର୍ତ୍ତନଟା ଶ୍ରମିକ ଶ୍ରେଣୀର ଗଣ ଆନ୍ଦୋଳନ ପକ୍ଷରେ ଏକ ବିରାଟ ବିଜୟ ସ୍ୱରୂପ ଥିଲା, ଲେନିନ୍ ଏହାର ଉଚ୍ଚ ମୂଲ୍ୟାଙ୍କନ କରିଥିଲେ । ତେବେ ଲେନିନ୍ ସ୍ୱୟଂ ସେହି ସମୟରେ ଗିରଫ୍ ହୋଇ ପୂର୍ବ ସାଇବେରିଆର ସୁସେନ୍‌ସ୍କୋୟେ ଗ୍ରାମରେ ନିର୍ବାସିତ ହୋଇଥିଲେ । କିନ୍ତୁ ତାଙ୍କ ଦ୍ୱାରା ଗୃହୀତ ପଥରୁ ସେ ଫେରି ଯାଇ ନଥିଲେ କେବେ । ରୁଷୀୟ ମାର୍କସ୍‌ବାଦୀ ଏବଂ ରୁଷୀୟ ସର୍ବହରାମାନଙ୍କର ସ୍ୱୀକୃତ ନେତାରେ ସେ ପରିଣତ ହେଲେ ।

# ୧୨ଶ ପରିଚ୍ଛେଦ

## ପ୍ରଥମ ବିପ୍ଳବର ଅବ୍ୟବହିତ ପୂର୍ବରୁ ରୁଷିଆ – ୧୯୦୫-୧୯୦୭ ବିପ୍ଳବ : ସାମ୍ରାଜ୍ୟବାଦୀ ଯୁଗରେ ପ୍ରଥମ ଜନପ୍ରିୟ ବିପ୍ଳବ

୨୦ଶ ଶତାବ୍ଦୀର ପ୍ରାରମ୍ଭଟି ଥିଲା ଉଲ୍ଲେଖନୀୟ ବିପ୍ଳବୀ ଏବଂ ସାମାଜିକ ଅଭ୍ୟୁତ୍‌ଥାନର ସମୟ କାଳ । ଏହି ଅଭ୍ୟୁତ୍‌ଥାନର ଚାଳିକା ଶକ୍ତି ଥିଲା ରୁଷିଆର ସର୍ବହରା । ୧୯ଶ ଶତାବ୍ଦୀର ଅର୍ଥନୈତିକ ଧର୍ମଘଟସମୂହରୁ ସରକାରବିରୋଧୀ ବିକ୍ଷୋଭ ଏବଂ ତା'ପରେ ରାସ୍ତାମାନଙ୍କରେ ପୁଲିସ୍ ତଥା ସୈନ୍ୟମାନଙ୍କ ସହିତ ମୁହାଁ ମୁହିଁ ସଂଘର୍ଷ ; ଏକକ କାରଖାନାମାନଙ୍କରେ ଧର୍ମଘଟସମୂହରୁ ବଡ଼ ବଡ଼ ଶିଳ୍ପ କେନ୍ଦ୍ରମାନଙ୍କରେ ଧର୍ମଘଟ ତଥା ବିକ୍ଷୋଭ ଏବଂ ୧୯୦୩ରେ ବିରାଟ ଏକ ଅର୍ଥନୈତିକ ଅଞ୍ଚଳରେ ; ଅର୍ଥନୈତିକ ଦାବୀରୁ ରାଜନୈତିକ ଦାବୀକୁ ଅଗ୍ରଗତି । ଏସବୁ ଥିଲା ରୁଷ୍ ସର୍ବହରାର ଶ୍ରେଣୀ ସଂଗ୍ରାମର ଗତିଚଞ୍ଚଳତା ଏବଂ ବ୍ୟାପକତାକୁ ପ୍ରତିଫଳିତ କରୁଥିବା ଅତି ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟସମୂହ ।

ସର୍ବାପେକ୍ଷା ତାତ୍ପର୍ଯ୍ୟପୂର୍ଣ୍ଣ ଦିକ୍‌ଚିହ୍ନଗୁଡ଼ିକ ହେଲା : ୧୯୦୧ ମସିହାର ପ୍ରାରମ୍ଭରେ ଅନୁଷ୍ଠିତ ଛାତ୍ର ଧର୍ମଘଟରେ ଶ୍ରମିକମାନଙ୍କର ଅଂଶଗ୍ରହଣ ; ଏହି ବର୍ଷ ମେ ମାସରେ ଓବୁଖୋଭ୍ କାରଖାନାର ଶ୍ରମିକମାନଙ୍କ ତରଫରୁ ସେଇ ବିଖ୍ୟାତ ପ୍ରତିରକ୍ଷା ବା ଧର୍ମଘଟ ଏବଂ ଏଥିରେ କେନ୍ଦ୍ରୀୟ ଘଟଣାଟି ଥିଲା ରାଜନୈତିକ ପୁଲିସ୍ ଏବଂ ନିୟମିତ ସୈନ୍ୟମାନଙ୍କ ସହିତ ଶ୍ରମିକମାନଙ୍କର ରାସ୍ତାରେ ସଂଘର୍ଷ ; ୧୯୦୨ ଖ୍ରୀଷ୍ଟାବ୍ଦରେ ସୋରମୋଭରେ ମେ ଦିବସର ଶୋଭାଯାତ୍ରା , ଯେଉଁଥିରେ ଶ୍ରମିକ ପିଓତର ଜାଲେମୋଭ୍ "ସ୍ୱୈରତନ୍ତ୍ର ଧ୍ୱଂସ ହେଉ !" ଏବଂ "ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ଦୀର୍ଘ ଜୀବୀ ହେଉ !" ଧ୍ୱନି ଦେଇ ଏକ ଲାଲ ପତାକା ଉଡ଼ାଇ ଦେଇଥିଲେ । ଶେଷତଃ , ରୋଷ୍ଟଭ୍-ଅନ୍-ଦନ୍‌ରେ ନଗରବ୍ୟାପୀ ଧର୍ମଘଟ (୧୯୦୨ , ନଭେମ୍ବର ମାସ) , ଯିଏକି ସୋସାଲ-ଡେମୋକ୍ରାଟିକ୍ ସଂଗଠନସମୂହର ନେତୃତ୍ୱରେ ଗଣ ରାଜନୈତିକ ସଭାର ଆରମ୍ଭର ସୂଚନା ଦେଇଥିଲା । ଗୃହୀତ ପଦ୍ଧତି , ସଂଗ୍ରାମର ରୂପ ତଥା ପ୍ରଣାଳୀ ସାଧାରଣୀକୃତ ସଂଯୁକ୍ତ ଏବଂ ବିକଶିତ ହୋଇଥିଲା ୧୯୦୩ , ଗ୍ରୀଷ୍ମ କାଳରେ ରୁଷିଆର ଦକ୍ଷିଣରେ , ସାଧାରଣ ଧର୍ମଘଟ

ମଧ୍ୟରେ । ଏହା ୟୁକ୍ରାଇନ୍, ଦନ୍‌ବାସ୍, ଉତ୍ତର କକେସସ୍ ଏବଂ ଟ୍ରାନ୍‌ସକକେସସ୍‌ର ଡଜନ ଡଜନ ସହର ଓ ଶିଳ୍ପ କେନ୍ଦ୍ର ଦେଇ ଖେଳି ଯାଇଥିଲା ।

ଅର୍ଥନୈତିକ ସଂଗ୍ରାମରୁ ସ୍ୱେରାଚାରୀ ସରକାର ବିରୁଦ୍ଧରେ, ଅର୍ଥାତ୍, ରାଜନୈତିକ ସଂଗ୍ରାମକୁ ରୁଷୀୟ ସର୍ବହରାମାନଙ୍କର ଅଗ୍ରଗତି ଏବଂ ସଶସ୍ତ୍ର ସଂଗ୍ରାମ ଆଗରେ ଦ୍ୱିଧାବୋଧ ନକରି ଲକ୍ଷ୍ୟ ହାସଲ ପାଇଁ ଅବିଚଳ ଭାବେ ସେ ସଂଗ୍ରାମକୁ ଚଳେଇଯିବା ଦ୍ୱାରା ରୁଷ୍ ସମାଜର ଅନ୍ୟାନ୍ୟ ସଂପ୍ରଦାୟ ତଥା ଶ୍ରେଣୀମାନଙ୍କୁ ସକ୍ରିୟ ପଦକ୍ଷେପ ନେବା ଦିଗରେ ଅନୁପ୍ରାଣିତ କରିଥିଲେ । ଛାତ୍ରମାନଙ୍କ ମଧ୍ୟରେ ଅସନ୍ତୋଷର ନିଆଁ ଜଳିବାକୁ ଲାଗିଲା । ବିଶ୍ୱବିଦ୍ୟାଳୟ ଥିବା ସହରଗୁଡ଼ିକ ବିରାଟ ବିକ୍ଷୋଭ ସ୍ଥଳୀରେ ପରିଣତ ହେଲେ, ଶ୍ରେଣୀ ମଧ୍ୟରେ ସଭା କାର୍ଯ୍ୟ ଚାଲିଲା । ୧୯୦୨ ମସିହା ବସନ୍ତକାଳରେ ପୋଲ୍‌ତାଭା ତଥା ଖାର୍‌କୋଭ୍ ପ୍ରଦେଶରେ କୃଷକମାନେ ବିଦ୍ରୋହ କଲେ, ରୁଷ୍ ସାମ୍ରାଜ୍ୟର ଅଣରୁଷୀୟ ଅଞ୍ଚଳଗୁଡ଼ିକ ମଧ୍ୟ ଶାନ୍ତ ରହିଲା ନାହିଁ । ୧୯୦୩ ମସିହାର ଗ୍ରୀଷ୍ମ କାଳରେ ଆର୍ମେନୀୟ ଚର୍ଚ୍ଚର ସଂପତ୍ତିକୁ ସରକାର ଦ୍ୱାରା ବାଜ୍ୟାପ୍ତ କରି ଏକ ନିର୍ଦ୍ଦେଶନାମା ଜାରି ହେବା ଫଳରେ ଟ୍ରାନ୍‌ସକକେସିଆରେ ଏକ ପ୍ରତିବାଦର ଝଡ଼ ବହିଗଲା । ଏହି ଚର୍ଚ୍ଚର ଆୟକୁ ଜାର୍ ସରକାର ଆତ୍ମସାତ୍ କରି ନେବାକୁ ଚାହିଁଥିଲା । ସମଗ୍ର ଦେଶ ବିପ୍ଳବୀ ଖଣ୍ଡ ଯୁଦ୍ଧସମୂହର ଏକ କାଳ ମଧ୍ୟକୁ ପ୍ରବେଶ କରୁଥିଲା ଏହି ସମୟରେ । ଆଉ କିଛି ବର୍ଷ ପରେ ଅନୁଷ୍ଠିତ ମୁଖ୍ୟ ସଂଗ୍ରାମଗୁଡ଼ିକରେ ଯେଉଁସବୁ ସାମାଜିକ ଏବଂ ରାଜନୈତିକ ଶକ୍ତିମାନେ ନିଜକୁ ପ୍ରକଟିତ କରିଥିଲେ, ସେମାନେ ମୁଣ୍ଡଟେକି ଉଠୁଥିଲେ । ବିପ୍ଳବୀ ସଂଗ୍ରାମସମୂହର ପୂର୍ବସୂରୀ ରୂପେ ଭାବାଦର୍ଶଗତ ପ୍ରଶ୍ନସମୂହକୁ କେନ୍ଦ୍ର କରି ସଂଗ୍ରାମ ଚାଲିବାକୁ ଲାଗିଲା । ଅବସ୍ଥା ଚକ୍ରରେ, ଶ୍ରମିକ ଶ୍ରେଣୀ ଚାହୁଁଥିଲା ଏକ ପ୍ରକୃତ ବିପ୍ଳବୀ ପାର୍ଟି, ଯିଏକି ସମାଜର ବୈପ୍ଳବିକ ପରିବର୍ତ୍ତନ ନିମିତ୍ତ ସର୍ବହରାର ସଂଗ୍ରାମକୁ ନେତୃତ୍ୱ ଦେବ ।

କେତେକ ରୁଷ୍ ସୋସାଲ-ଡେମୋକ୍ରାଟିକ୍ ସଂଗଠନର ପ୍ରତିନିଧିମାନଙ୍କର ଏକ କଂଗ୍ରେସ ୧୮୯୮, ମାର୍ଚ୍ଚ ମାସରେ ମିନସ୍କ ସହରରେ ଗୋପନରେ ଅନୁଷ୍ଠିତ ହେଲା । ଏହି କଂଗ୍ରେସ ରୁଷୀୟ ସୋସାଲ-ଡେମୋକ୍ରାଟିକ୍ ଶ୍ରମିକ ପାର୍ଟିର ପ୍ରତିଷ୍ଠା ଘୋଷଣା କରିଥିଲା । କିନ୍ତୁ କାର୍ଯ୍ୟତଃ ଏହି କଂଗ୍ରେସ ଏକକ କର୍ମସୂଚୀ ଏବଂ ସମ୍ବିଧାନ ଯୁକ୍ତ ଏକ ଐକ୍ୟବଦ୍ଧ କେନ୍ଦ୍ରୀୟତ ପାର୍ଟି ପ୍ରତିଷ୍ଠା କରିବାକୁ ଅକ୍ଷମ ହୋଇଥିଲା ।

ରୁଷିଆରେ ଏକ ବିପ୍ଳବୀ ସର୍ବହରା ପାର୍ଟିର ପ୍ରତିଷ୍ଠା ଦିଗରେ ଭାବାଦର୍ଶଗତ ଏବଂ ସାଂଗଠନିକ ପ୍ରସ୍ତୁତି କ୍ଷେତ୍ରରେ ବିରାଟ ଭୂମିକା ପାଳନ କରିଥିଲା ସମ୍ବାଦପତ୍ର "ଇସ୍‌କ୍ରା" ("ସ୍ଫୁଲିଙ୍ଗ") । ନିର୍ବାସନରୁ ଫେରିଲା ପରେ ଲେନିନ୍ ଅବିଳମ୍ବେ ଏହି ପତ୍ରିକାଟି ପ୍ରତିଷ୍ଠା କରିଥିଲେ । "ଇସ୍‌କ୍ରାର" ପ୍ରଥମ ସଂଖ୍ୟାଟି ପ୍ରକାଶ ପାଇଥିଲା ୧୯୦୦, ଡିସେମ୍ବର ୨୪ ତାରିଖ ଦିନ । ସମ୍ବାଦପତ୍ରର ସଂପାଦକମଣ୍ଡଳୀ (ଭି.ଲେନିନ୍,

ଜି.ପ୍ଲେଖାନୋଭ୍, ପି.ଆକ୍ସେଲରୋଦ, ଭି.ଜାସୁଲିଚ୍, ୟୁ.ମାର୍ତୋଭ୍ ଏବଂ ଏ.ପୋଟ୍ରେସୋଭ୍) ବିଦେଶରେ, ପ୍ରଥମେ ମିଉନିକ୍‌ରେ ଏବଂ ପରେ ଲଣ୍ଡନ ଓ ଜେନିଭାରେ ରହି କାର୍ଯ୍ୟ କରୁଥିଲେ । "ଇସ୍କ୍ରାକୁ" ସାହାଯ୍ୟ କରିବା ନିମିତ୍ତ ଅନେକଗୁଡ଼ିଏ ଗୋଷ୍ଠୀ ରୁଷିଆରେ ସୃଷ୍ଟି କରାଗଲା ଏବଂ ସେସବୁକୁ ଭିତ୍ତି କରି "ଇସ୍କ୍ରାର" ରୁଷୀୟ ସଂଗଠନସମୂହର ଶାଖା ପ୍ରଶାଖା ସତର୍କତାର ସହିତ ଗୋପନରେ ଗଢ଼ାଗଲା । ଏସବୁଥିରେ ରହିଥିଲେ ପେଶାଦାର ବିପ୍ଳବୀଗଣ – ଏନ୍.ବାଉମାନ, ଜି.କ୍ରଝିଝାନୋଭ୍‌ସ୍କି, ଆଇ.ରାଦ୍‌ଚେଙ୍କୋ ଏବଂ ଏମ୍.ଲିଟଭିନୋଭ୍, ପ୍ରମୁଖ । ଏହିସବୁ ସଂଗଠନ ସ୍ଥାନୀୟ ପାର୍ଟି କମିଟି ସହିତ ଏବଂ ସେମାନଙ୍କ ମାଧ୍ୟମରେ କାରଖାନାର କ୍ଷୁଦ୍ର ଦଳଗୁଡ଼ିକ ସହିତ ଯୁକ୍ତ ଥିଲେ ।

"ଇସ୍କ୍ରା" ତା'ର ଆନ୍ଦୋଳନାତ୍ମକ, ପ୍ରଚାରାତ୍ମକ ଏବଂ ସାଂଗଠନିକ କ୍ରିୟାକଳାପ କ୍ଷେତ୍ରରେ ପରିଚାଳିତ ହେଉଥିଲା ରୁଷିଆରେ ଆସନ୍ନ ବୁର୍ଜୁଆ-ଗଣତାନ୍ତ୍ରିକ ବିପ୍ଳବରେ ଶ୍ରମିକ ଶ୍ରେଣୀର ନେତୃତ୍ୱ ସଂକ୍ରାନ୍ତ ପ୍ରସ୍ତାବିତ ବିବୃତି ଦ୍ୱାରା । ସମ୍ବାଦପତ୍ରଟି ଶ୍ରମିକମାନଙ୍କୁ ସାହାଯ୍ୟ କରୁଥିଲା ସେମାନଙ୍କ ସଂଗ୍ରାମର ରୂପକୁ ଆଉରି ବ୍ୟାପକ କରିବା ଦିଗରେ, ଯାହାକି ସମଗ୍ର ରୁଷୀୟ ସମାଜକୁ ପ୍ରତ୍ୟକ୍ଷ ଭାବେ ପ୍ରଭାବିତ କରୁଥିଲା । ଏହା ଛଡ଼ା ଅଗ୍ରଣୀ ସର୍ବହରାମାନଙ୍କୁ ଏହା ଦର୍ଶାଇ ଦେଉଥିଲା ଯେ, ଅନ୍ୟାନ୍ୟ ସାମାଜିକ ସ୍ତର ତଥା ଶକ୍ତିସମୂହ, ବିଶେଷ କରି କେନ୍ଦ୍ରୀୟ ଅଞ୍ଚଳ ତଥା ଜାତୀୟ ଉପାନ୍ତ ଅଞ୍ଚଳର କୃଷକମାନେ ସଂଗ୍ରାମରେ ଯୋଗ ଦେବା ପାଇଁ ଜାଗ୍ରତ ହେବାର ସମ୍ଭାବନା ରହିଛି । ରୁଷୀୟ ଉଦାରତାବାଦୀ ବୁର୍ଜୁଆର ପ୍ରତିକ୍ରିୟାଶୀଳ ଅବସ୍ଥାନକୁ ମଧ୍ୟ ଏହା ପଦାରେ ପକାଇ ଦେଇଥିଲା । ଫଳରେ ନୂଆ ରକମର ଏକ ବୈପ୍ଳବିକ ମୁକ୍ତି ଆନ୍ଦୋଳନ ଗଢ଼ି ଉଠିଲା, ଯାହାକି ଥିଲା ନୂତନ ଐତିହାସିକ ଯୁଗର ବୈଶିଷ୍ଟ୍ୟ । ଜାର୍‌ତନ୍ତ୍ର ବିରୁଦ୍ଧରେ ସଂଗ୍ରାମରେ ଅଂଶଗ୍ରହଣ କରୁଥିବା ଶକ୍ତିମାନଙ୍କ ମଧ୍ୟରେ ଏହା ଥିଲା ନୂତନ, କାରଣ ଏଥିରେ ନିହିତ ଥିଲା ସର୍ବହରାର ଶ୍ରେଣୀ ସଂଗ୍ରାମ, ଯା'ର ଲକ୍ଷ୍ୟ ହେଲା ସମାଜବାଦ, କୃଷକ କୃଷି ବିପବ ଏବଂ ଜାତୀୟ-ମୁକ୍ତି ଆନ୍ଦୋଳନ ଗୋଟିଏ ସ୍ରୋତରେ ମିଳିତ ହୋଇଥିଲା । ସେଇ ବିପ୍ଳବୀ ସ୍ରୋତରେ ଅଗ୍ରଣୀ ଶକ୍ତିଟି ମଧ୍ୟ ନୂତନ ଥିଲା : ବୁର୍ଜୁଆଙ୍କ ହାତରେ ସେ ନେତୃତ୍ୱ ନଥିଲା, ନେତୃତ୍ୱ ଥିଲା ସର୍ବହରା ହାତରେ, ଯାହା ପକ୍ଷରେ ବୁର୍ଜୁଆ -ଗଣତାନ୍ତ୍ରିକ ବିପ୍ଳବରେ ବିଜୟ ଥିଲା ସମାଜବାଦୀ ବିପବ ପାଇଁ ଏକ ପ୍ରାଥମିକ ବିନ୍ଦୁ । ଏବଂ ଶେଷତଃ, ଏହା ଆଉ ଏକ କାରଣରୁ ମଧ୍ୟ ନୂତନ ହେଲା, ଏହାକୁ ନେତୃତ୍ୱ ଦେଉଥିଲା ନୂଆ ଧରଣର ଏକ ବିପ୍ଳବୀ ମାର୍କସ୍‌ବାଦୀ ପାର୍ଟି ।

ସେଇ ଧରଣର ଏକ ପାର୍ଟି ପ୍ରତିଷ୍ଠା କରିବା ଥିଲା "ଇସ୍କ୍ରାର" କ୍ରିୟାକଳାପର ମୁଖ୍ୟ ଫଳଶ୍ରୁତି । ଏହି ସମ୍ବାଦପତ୍ରର ନିରବଚ୍ଛିନ୍ନ, ଉଦ୍ଦେଶ୍ୟମୂଳକ କ୍ରିୟାକଳାପ ଫଳରେ ରୁଷ୍ ସୋସାଲ-ଡେମୋକ୍ରାଟିକ୍ ଶ୍ରମିକ ପାର୍ଟିର ଦ୍ୱିତୀୟ କଂଗ୍ରେସ ଆହୂତ ହେଲା

(୧୯୦୩, ଜୁଲାଇ ଏବଂ ଅଗଷ୍ଟ, ବ୍ରସେଲସ୍ ଏବଂ ଲଣ୍ଡନରେ) । "ଇସ୍କ୍ରା" ଦ୍ୱାରା ପ୍ରସ୍ତୁତ ପାର୍ଟି ପାଇଁ କର୍ମସୂଚୀ ତଥା ନିୟମାବଳୀକୁ କଂଗ୍ରେସ ଗ୍ରହଣ କରିଥିଲା । ଏଥି ସାଥେ ସାଥେ ସମ୍ପାଦକମଣ୍ଡଳୀର ସଦସ୍ୟମାନଙ୍କ ମଧ୍ୟରେ ଗୁରୁତର ମତପାର୍ଥକ୍ୟ ମଧ୍ୟ ଦେଖାଦେଇଥିଲା ଏହି କଂଗ୍ରେସରେ । ଶେଷକୁ, "ଇସ୍କ୍ରାର" କ୍ରିୟାକଳାପର କେନ୍ଦ୍ରୀୟ ଚିନ୍ତାଟିକୁ ସେମାନଙ୍କୁ ଗ୍ରହଣ କରିବାକୁ ହେବ ନଚେତ ବର୍ଜନ କରିବାକୁ ପଡ଼ିବ । ସେ ଚିନ୍ତାଟି ହେଲା ବୁର୍ଜୁଆ-ଗଣତାନ୍ତ୍ରିକ ବିପ୍ଳବରେ ସର୍ବହରାର ନେତୃତ୍ୱ । ଦ୍ୱିତୀୟ କଂଗ୍ରେସରେ ଏହି ମତପାର୍ଥକ୍ୟ ଫଳରେ ରୁଷ୍ ସୋସାଲ-ଡେମୋକ୍ରାଟିକ୍ ଶ୍ରମିକ ପାର୍ଟି ବଲ୍ଶେଭିକ୍ ଏବଂ ମେନ୍ଶେଭିକ୍ ପାର୍ଟି ମଧ୍ୟରେ ବିଭକ୍ତ ହୋଇଗଲା । ପ୍ରଥମଟିରେ ଥିଲେ ଲେନିନ୍ଙ୍କର ଅନୁଗାମୀ, ସୁସଙ୍ଗତ ବିପ୍ଳବୀ-ମାର୍କସ୍‌ବାଦୀଗଣ ଏବଂ ଦ୍ୱିତୀୟଟିରେ ପ୍ଲେଖାନୋଭ୍ ଓ ମାର୍ତୋଭ୍ଙ୍କ ଅନୁଗାମୀମାନେ । ଏହି ଭାବେ ସାମାଜିକ ଚିନ୍ତା ଜଗତରେ ସ୍ୱତନ୍ତ୍ର ଏକ ଧାରା ରୂପେ ବଲ୍ଶେଭିକ୍‌ବାଦ ତଥା ବଲ୍ଶେଭିକ୍ ପାର୍ଟିର ଇତିହାସ ଆରମ୍ଭ ହୋଇଥିଲା ୨ୟ କଂଗ୍ରେସଠାରୁ । ପ୍ରଥମ ଥର ପାଇଁ ବିଶ୍ୱ ଇତିହାସରେ, ସର୍ବହରା ଶ୍ରେଣୀ ବୁର୍ଜୁଆ-ଗଣତାନ୍ତ୍ରିକ ବିପ୍ଳବରେ ପ୍ରବେଶ କରିଥିଲା ତା'ର ଏକ ସ୍ୱାଧୀନ ରାଜନୈତିକ ପାର୍ଟି, ବଲ୍ଶେଭିକ୍ ପାର୍ଟି ନେତୃତ୍ୱରେ (ଏହି ପାର୍ଟି ପରେ ସୋଭିଏତ୍ ୟୁନିଅନ୍‌ର କମ୍ୟୁନିଷ୍ଟ ପାର୍ଟିରେ ପରିଣତ ହୋଇଥିଲା) ।

୧୯୦୪-୧୯୦୫ର ରୁଷ୍-ଜାପାନ୍ ଯୁଦ୍ଧ ରୁଷିଆରେ ବୈପ୍ଳବିକ ସଂକଟକୁ ଆଉରି ଗଭୀର କରି ଦେଲା ।

ବ୍ରିଟେନ୍ ଏବଂ ଆମେରିକା ଯୁକ୍ତ ରାଷ୍ଟ୍ରର ସକ୍ରିୟ ପ୍ରରୋଚନାରେ ଏହି ଯୁଦ୍ଧ ଆରମ୍ଭ କରିଥିଲା ଜାପାନ୍ । ୧୯୦୪, ଜାନୁଆରୀରେ ଜାପାନ୍‌ର ନୌତରୀଗୁଡ଼ିକ ପୋର୍ଟ-ଆର୍ଥୁରରେ ଲଙ୍ଗର ପକାଇଥିବା ରୁଷ୍ ନୌତରୀ ଉପରେ (ପୀତ ସାଗରବର୍ତ୍ତୀ) ଅଗ୍ନନକ ଆକ୍ରମଣ ଆରମ୍ଭ କରି ଦେଲା କ୍ଷଣି ଯୁଦ୍ଧ ଆରମ୍ଭ ହୋଇଗଲା । ଉଭୟ ପକ୍ଷରୁ ଏହି ଯୁଦ୍ଧ ଥିଲା ଲୁଣ୍ଠନମୂଳକ ଏବଂ ଅନ୍ୟାୟ । ସାମ୍ରାଜ୍ୟବାଦୀ ଜାପାନ୍ ଚାହିଁଥିଲା କୋରିଆକୁ, ସାଖାଲିନ୍ ଦ୍ୱୀପର ଦକ୍ଷିଣାଞ୍ଚଳ ଏବଂ ଦୂର ପ୍ରାଚ୍ୟର ଅନ୍ୟାନ୍ୟ ଅଞ୍ଚଳକୁ ଦଖଲ କରି ନେବାକୁ । ଜାର୍‌ଶାହୀ ରୁଷିଆର ଲକ୍ଷ୍ୟ ହେଲା ଏସିଆର ଦୂର ପ୍ରାଚ୍ୟ ଅଞ୍ଚଳଗୁଡ଼ିକରେ ତା'ର ପ୍ରଭାବ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ତା'ର ସୀମାରେଖାକୁ ଆଉରି ସଂପ୍ରସାରିତ କରିବା ଏବଂ ଦେଶ ମଧ୍ୟରେ ବୈପ୍ଳବିକ ଅଭ୍ୟୁତ୍ଥାନକୁ ରୋକିବା ।

ଜାପାନ୍‌ର ନୌସେନା ତଥା ସ୍ଥଳବାହିନୀର ଅସ୍ତ୍ରଶସ୍ତ୍ର କ୍ଷେତ୍ରରେ ଉତ୍କର୍ଷତା ହେତୁ ଏହା ମହାଦେଶରେ ଦ୍ରୁତତାର ସହିତ ଅନେକଗୁଡ଼ିଏ ସେନାବାହିନୀକୁ ପହଞ୍ଚାଇ ପାରିଥିଲା ଏବଂ ମାଞ୍ଚୁରିଆରେ ରୁଷ୍ ସେନାଦଳଗୁଡ଼ିକ ବିରୁଦ୍ଧରେ ଆକ୍ରମଣ ଆରମ୍ଭ କରିବା ସଙ୍ଗେ ସଙ୍ଗେ ପୋର୍ଟ-ଆର୍ଥୁରକୁ ଅବରୋଧ କରି ନେଲା (ସ୍ଥଳ ଏବଂ ଜଳ ଉଭୟ ପକ୍ଷରୁ ଅବରୋଧ) ।

ରୁଷୀୟ ସୈନିକ ତଥା ଅଫିସରମାନଙ୍କର, ବିଶେଷ କରି, ପୋର୍ଟ-ଆର୍ଥୁରର ବୀର ପ୍ରତିରକ୍ଷାକାରୀମାନଙ୍କର ସାହସ ଆଉ ଶୌର୍ଯ୍ୟ (ଆଡମିରାଲ ଏସ୍.ମାକାରୋଭ୍ ଏବଂ ଜେନେରାଲ ଆର୍.କୋନ୍ଦ୍ରାଟେଙ୍କୋଙ୍କ ଭଳି ପ୍ରତିଭାବାନ ସାମରିକ ନେତାମାନଙ୍କ ସମେତ) ସତ୍ତ୍ୱେ ବହୁ ସ୍ଥଳ ଯୁଦ୍ଧ, ସୁସିମା ପ୍ରଣାଳୀର ନୌଯୁଦ୍ଧରେ ପରାଜୟ ପରେ ରୁଷିଆ ଚୂଡ଼ାନ୍ତ ଭାବେ ପରାଜୟ ବରଣ କଲା । ରୁଷିଆର ପରାଜୟର କାରଣ ହେଲା ତା'ର ଅର୍ଥନୈତିକ ଏବଂ ସାମରିକ ଅନଗ୍ରସରତା, ତା'ର ସର୍ବାଧିନାୟକଙ୍କ (ଜେନେରାଲ କୁରୋପାଟ୍‌କିନ୍) ଅପାରଗତା ଏବଂ କେତେକ ସେନାପତିଙ୍କ (ଷ୍ଟେସେଲ, ଫୋକ୍ ଏବଂ ଅନ୍ୟମାନେ) ବିଶ୍ୱାସଘାତକତା । ୧୯୦୫, ଅଗଷ୍ଟ ମାସରେ ରୁଷିଆ ଏବଂ ଜାପାନ୍ ଏକ ସନ୍ଧିରେ ସ୍ୱାକ୍ଷର କରିଥିଲେ ଆମେରିକାନ୍ ସହର ପୋର୍ଟସମାଉଥ୍‌ଠାରେ । ରୁଷିଆକୁ ପୋର୍ଟ-ଆର୍ଥୁର ଛାଡ଼ିବାକୁ ପଡ଼ିଲା । ସାଖାଲିନ୍‌ର ଦକ୍ଷିଣବର୍ତ୍ତୀ ଅଞ୍ଚଳ ଜାପାନ୍‌କୁ ଦେଲା, ମାଞ୍ଚୁରିଆରୁ ସୈନ୍ୟ ଅପସାରଣ କରି ନେଲା ଏବଂ କୋରିଆ ଉପରେ ଜାପାନ୍‌ର ପ୍ରଭାବ ପାତକୁ ମାନି ନେଲା ।

ବିଂଶ ଶତାବ୍ଦୀର ପ୍ରଥମ ବର୍ଷଗୁଡ଼ିକ ଥିଲା ଦେଶର ଜନସାଧାରଣଙ୍କ ଦୁରବସ୍ଥାର ଆଉରି ଦ୍ରୁତ ଅବନତିର କାଳ । ଏହା ଘଟିଥିଲା ୧୯୦୦-୧୯୦୩ ମସିହାର ଅର୍ଥନୈତିକ ସଂକଟ ହେତୁ । ବହୁ ଲୋକ ବେକାର ହୋଇ ପଡ଼ିଥିଲେ ଏବଂ ଶ୍ରମଜୀବୀମାନଙ୍କ ମଧ୍ୟରୁ ଅଧିକାଂଶ ସେଲର ଏବଂ ସେନା ଛାଉଣୀରେ ଅର୍ଦ୍ଧାହାରରେ କାଳାତିପାତ କରୁଥିଲେ । ସେମାନଙ୍କ କର୍ମ ଦିବସର ସମୟ ୧୩-୧୪ ଘଣ୍ଟା ପର୍ଯ୍ୟନ୍ତ ଗ୍ଲୁଥିଲା ।

ରୁଷ୍-ଜାପାନ୍ ଯୁଦ୍ଧ ଫଳରେ ଦେଶର ଶିଳ୍ପ, କୃଷି ଏବଂ ଯାନବାହନ ବ୍ୟବସ୍ଥା ଆଉରି ଖରାପ ହୋଇଗଲା ଏବଂ ଏହା ପରେ ଅବସ୍ଥା ଆଉରି ଅସମ୍ଭାଳ ହୋଇ ପଡ଼ିଲା । ଦେଶରେ ଦେଖାଦେଲା ଏକ ବୈପ୍ଳବିକ ସଂକଟ । ଜାର୍‌ଶାହୀ ସରକାରର ଆଶା ମୁତାବକ ଯୁଦ୍ଧ ଫଳରେ ସଂକଟ ପ୍ରତିହତ ହେଲା ନାହିଁ, ବରଂ ତ୍ୱରାନ୍ୱିତ ହେବାକୁ ଲାଗିଲା ।

୧୯୦୪, ଡିସେମ୍ବର ମାସରେ ଲେନିନ୍ ଏହି ଯୁଦ୍ଧର ଅପମାନଜନକ ଫଳ ସଂପର୍କରେ ଭବିଷ୍ୟତବାଣୀ କରିଥିଲେ । ସେ ଲେଖିଥିଲେ, "ରୁଷିଆର ଜନସାଧାରଣ ଏହି ଅପମାନଜନକ ପରାଜୟ ବରଣ କରି ନାହାନ୍ତି, ରୁଷିଆର ସ୍ୱେଚ୍ଛାଚାରୀ ଶାସନ ହିଁ ବରଣ କରିଛି ...। ପୋର୍ଟ-ଆର୍ଥୁର ଆତ୍ମସମର୍ପଣ ହେଉଛି ଜାର୍‌ତନ୍ତ୍ରର ଆତ୍ମସମର୍ପଣର ସୂଚନା ।"

ସମ୍ବାଦପତ୍ର "ଭ୍‌ପେରିଓଦ୍‌ରେ" ଉପରୋକ୍ତ ପଂକ୍ତିଗୁଡ଼ିକ ପ୍ରକାଶ ପାଇବା ପୂର୍ବରୁ ବିପ୍ଳବ ଆରମ୍ଭ ହୋଇ ଯାଇଥିଲା ।

୧୯୦୫, ଜାନୁଆରୀ ୯ ତାରିଖ ଦିନ ଶ୍ରମିକମାନଙ୍କର ଏକ ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରା

ଅନୁଷ୍ଠିତ ହୋଇଥିଲା । ଶ୍ରମିକମାନେ ଚାହିଁଥିଲେ ସେମାନଙ୍କ ଅଭାବ ଅଭିଯୋଗ ସମ୍ବଳିତ ଏକ ଆବେଦନପତ୍ର ଜାର୍‌ଙ୍କୁ ପ୍ରଦାନ କରିବାକୁ । କିନ୍ତୁ ସେଣ୍ଟ୍ ପିଟର୍ସବୁର୍ଗ୍‌ରେ ଦ୍ୱିତୀୟ ନିକୋଲାଇଙ୍କ ନିର୍ଦ୍ଦେଶ ଅନୁଯାୟୀ ଏହି ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରା ଉପରେ ଗୁଳି ବର୍ଷିତ ହେଲା । ଦେଶ ସାରା ଏହାର ପ୍ରତିବାଦରେ ଖେଳିଗଲା ଭର୍ତ୍ସନାର ଝଡ଼ । ଏକ ବିପ୍ଳବ ଆରମ୍ଭ ହୋଇଗଲା । ଏହା ଥିଲା ବିଶ୍ୱ ଇତିହାସରେ ଏକ ଉଲ୍ଲେଖନୀୟ ଘଟଣା ଏବଂ ନୂଆ ଧରଣର ଅନେକ ବୁର୍ଜୁଆ-ଗଣତାନ୍ତ୍ରିକ ବିପ୍ଳବର ଶୁଭାରମ୍ଭର ସୂଚନା ଏହା ଦେଇଥିଲା । ସେ ବିପ୍ଳବ ଥିଲା ସାମ୍ରାଜ୍ୟବାଦୀ ଯୁଗର ବୈଶିଷ୍ଟ୍ୟସୂଚକ । ରୁଷିଆରେ ଏହି ବିପ୍ଳବର ମୁଖ୍ୟ ଏବଂ ବିଶେଷ ଲକ୍ଷଣଟି ହେଲା । ଏହା ଆଧେୟ ଏବଂ ଲକ୍ଷ୍ୟ ଦୃଷ୍ଟିରୁ ବୁର୍ଜୁଆ-ଗଣତାନ୍ତ୍ରିକ ହେଲେ ମଧ୍ୟ ଏହି ବିପ୍ଳବର ସଂଗ୍ରାମର ପଦ୍ଧତି ହେଲା ସର୍ବହରାତ୍ମକ ଏବଂ ଏଥିରେ ସର୍ବହରା ଏବଂ ଅର୍ଦ୍ଧସର୍ବହରାମାନେ ଅଂଶଗ୍ରହଣ କରିଥିଲେ । ବିପ୍ଳବର ଏହି ବୈଶିଷ୍ଟ୍ୟଟି ଅବିଳମ୍ବେ ପ୍ରକଟିତ ହୋଇଥିଲା । ୧୯୦୫, ଜାନୁଆରୀ ମାସରେ ୪୪୦,୦୦୦ ଶ୍ରମିକ ଧର୍ମଘଟରେ ଯୋଗ ଦେଇଥିଲେ (ଅସଂପୂର୍ଣ୍ଣ ସରକାରୀ ତଥ୍ୟାନୁଯାୟୀ) । ଏହି ସଂଖ୍ୟାଟି ଥିଲା ପୂର୍ବବର୍ତ୍ତୀ ଦଶକର ହାରାହାରି ବାର୍ଷିକ ସଂଖ୍ୟା ଠାରୁ ୧୦ଗୁଣ ଅଧିକ । ବିପ୍ଳବର ପ୍ରଥମ ତିନି ମାସ ମଧ୍ୟରେ ୮୧୦,୦୦୦ ସର୍ବହରା ଧର୍ମଘଟ କରିଥିଲେ । ସେଇସବୁ ବିପ୍ଳବୀ ଦିନମାନଙ୍କରେ ଅନୁଷ୍ଠିତ ଧର୍ମଘଟଗୁଡ଼ିକର ବିଶିଷ୍ଟ ଲକ୍ଷଣ ଜାଣିବା ନିମିତ୍ତ ଶ୍ରମିକମାନଙ୍କର ସର୍ବାଧିକ ଉଲ୍ଲେଖନୀୟ କ୍ରିୟାକଳାପ ସଂପର୍କରେ କେତୋଟି ବର୍ଣ୍ଣନା ଆମେ ଦେଉଛୁ ।

ଭ୍ଲାଦିମିର୍ ପ୍ରଦେଶର ଏକ ବୃହତ୍ ଶିଳ୍ପ କେନ୍ଦ୍ର, ଇଭାନୋଭୋ-ଭୋଜ୍‌ନେସେନ୍‌ସ୍କରେ ୧୯୦୫, ମେ ମାସରେ ଧର୍ମଘଟ ଆରମ୍ଭ ହୋଇ ଯାଇଥିଲା । ଶ୍ରମିକମାନେ ପ୍ରଥମେ କେବଳ ଅର୍ଥନୈତିକ ଦାବୀସମୂହ ଉପସ୍ଥାପିତ କରିଥିଲେ । କିନ୍ତୁ ଧର୍ମଘଟ ଚାଲିଲା ବେଳେ ଅଂଶଗ୍ରହଣକାରୀମାନେ ଅନୁଭବ କଲେ ଯେ, ସେମାନଙ୍କ ରାଜନୈତିକ ଅବସ୍ଥାନର ପରିବର୍ତ୍ତନ ନିମିତ୍ତ ସେମାନଙ୍କୁ ସଂଗ୍ରାମ କରିବା ଦରକାର । ଶ୍ରମିକମାନଙ୍କର ବଡ଼ ବଡ଼ ସମାବେଶମାନ ଘଟିବାକୁ ଲାଗିଲା ଏବଂ ସେସବୁଥିରେ ରାଜନୈତିକ ବକ୍ତୃତାମାନ ଶୁଣାଗଲା । ଶ୍ରମିକ ପ୍ରତିନିଧିମାନଙ୍କୁ ନେଇ ଗଢ଼ାଗଲା ଏକ ସଭା । କାର୍ଯ୍ୟତଃ, ଏହା ହିଁ ଥିଲା ରୁଷିଆରେ ଶ୍ରମିକ ପ୍ରତିନିଧିମାନଙ୍କର ପ୍ରଥମ ନଗର ସୋଭିଏତ୍ । ଏହି ସୋଭିଏତ୍ ପ୍ରତ୍ୟକ୍ଷ ଭାବେ ନଗର ପାର୍ଟି କମିଟି ସହିତ ଯୁକ୍ତ ଥିଲା । ନଗର ପାର୍ଟି କମିଟିର ମୁଖ୍ୟ ଥିଲେ ମିଖାଇଲ ଫ୍ରୁଞ୍ଜେ । ଧର୍ମଘଟକୁ ନେତୃତ୍ୱ ଦେଉଥିଲା ଏହି କମିଟି ଏବଂ ନଗରରେ ବୈପ୍ଳବିକ ଶୃଙ୍ଖଳା ରକ୍ଷା କରୁଥିଲା । ଇଭାନୋଭୋ-ଭୋଜ୍‌ନେସେନ୍‌ସ୍କକୁ ସୈନ୍ୟମାନେ ଆସିଲେ ଏବଂ ଧର୍ମଘଟକାରୀମାନଙ୍କ ବିରୁଦ୍ଧରେ ଗୁଳି ବନ୍ଧୁକ ଆଦି ବ୍ୟବହାର କରାଗଲା, ଏହି ନଗର ସୋଭିଏତ୍ କେଇ ଡଜନ୍ ଶ୍ରମିକମାନଙ୍କୁ ବନ୍ଧୁକରେ ସଜ୍ଜିତ କରି ଏକ ଅର୍ଦ୍ଧସାମରିକ ଦଳ ଗଠନ କରିଥିଲା । ଏହି

ଧର୍ମଘଟ ଗ୍ଭଲିଥିଲା ୭୨ ଦିନ ପର୍ଯ୍ୟନ୍ତ । ଶ୍ରମିକମାନେ ସେମାନଙ୍କ ପ୍ରଥମ ସାଫଲ୍ୟ ଅର୍ଜନ କରିଥିଲେ : ଶିଳ୍ପପତିମାନେ ଶ୍ରମ ଦିବସର ସମୟ ୧୦ ଘଣ୍ଟାକୁ କମେଇ ଆଣି ମଜୁରି ବୃଦ୍ଧି କରିଥିଲେ ।

ଜୁନ୍ ମାସରେ ଲୋଡ୍‌ଜରେ ଏକ ରାଜନୈତିକ ବିକ୍ଷୋଭ ଉପରେ ଗୁଳି ଗ୍ଭଲିବା ଫଳରେ ବାରିକେଡ୍ ଯୁଦ୍ଧ ଆରମ୍ଭ ହୋଇ ଯାଇଥିଲା । ସାମାନ୍ୟ ଅସ୍ତ୍ରଶସ୍ତ୍ର ନେଇ ଶ୍ରମିକମାନେ ନିୟମିତ ସୁସଜ୍ଜିତ ସେନାଦଳଗୁଡ଼ିକୁ ତିନି ଦିନ କାଳ ରୋକି ଦେଇଥିଲେ । ଏହି ସମୟରେ ଓଡେଶାରେ ଏକ ସାଧାରଣ ଧର୍ମଘଟ ଆରମ୍ଭ ହୋଇ ଯାଇଥିଲା ଏବଂ ଏଥିରେ ଧର୍ମଘଟକାରୀ ଏବଂ ପୁଲିସ୍ ଓ ସୈନ୍ୟଦଳଗୁଡ଼ିକ ମଧ୍ୟରେ ସଂଘର୍ଷ ଲାଗିଥିଲା । ସହରର ଉପାନ୍ତ ଅଞ୍ଚଳରେ ବ୍ୟାରିକେଡ୍ ଗଠନ କରି ଶ୍ରମିକମାନେ ଲଢ଼େଇ କରିଥିଲେ । ଘଟଣାବଳୀର ବିକାଶ ଆଗେଇ ଯାଇଥିଲା ଏକ ଅଭ୍ୟୁତ୍‌ଥାନ ଦିଗକୁ । ଶ୍ରମିକମାନେ ଗ୍ରହିଥିଲେ ଅସ୍ତ୍ରଶସ୍ତ୍ର, କିନ୍ତୁ ସହରର କୌଣସି ବିପ୍ଳବୀ ସଂଗଠନ ହାତରେ ସେସବୁ ନଥିଲା ।

ଧର୍ମଘଟଗୁଡ଼ିକର ସଂଖ୍ୟା ବୃଦ୍ଧି ପାଇବା ସାଥେ ସାଥେ ସେସବୁର ଚରିତ୍ରରେ ମଧ୍ୟ ପରିବର୍ତ୍ତନ ଦେଖାଦେଇଥିଲା । ଏହି ବିପ୍ଳବୀ ସମୟରେ ଧର୍ମଘଟ ମଧ୍ୟରେ ପ୍ରକାଶ ପାଇଥିଲା ଏହାର ସର୍ବୋଚ୍ଚ ରୂପଟି : ଲେନିନ୍ ଏହାକୁ କହିଥିଲେ, ଗଣ ବିପ୍ଳବୀ ଧର୍ମଘଟ । ଏକ ଦିଗରେ ଏହାର ଚରିତ୍ର ହେଲା, ଅର୍ଥନୈତିକ ତଥା ରାଜନୈତିକ ଧର୍ମଘଟସମୂହର ପ୍ରତ୍ୟକ୍ଷ ଏକତ୍ରୀକରଣ ଓ ପାରସ୍ପରିକ ପ୍ରଭାବୀକରଣ, ତତ୍କାଳୀନ ଶ୍ରମିକ ଶ୍ରେଣୀ ଦ୍ୱାରା ଅନୁଷ୍ଠିତ ଦୁଇ ସାମାଜିକ ସଂଗ୍ରାମର ଯୁକ୍ତିକରଣ : ସ୍ୱୈରତନ୍ତ୍ର ବିରୁଦ୍ଧରେ ଜନପ୍ରିୟ ସଂଗ୍ରାମ ଏବଂ ବୁର୍ଜୁଆ ଶ୍ରେଣୀ ବିରୁଦ୍ଧରେ ଶ୍ରେଣୀ ସଂଗ୍ରାମ । ଏହିଭଳି ଏକ ଏକତ୍ରୀକରଣ ଫଳରେ ଆନ୍ଦୋଳନର ସର୍ବାପେକ୍ଷା ଅଗ୍ରଣୀ ସର୍ବହରା ଠାରୁ ଆରମ୍ଭ କରି ସର୍ବାପେକ୍ଷା ପଶ୍ଚାତ୍‌ପଦ ସର୍ବହରା, ତା'ର ସମସ୍ତ ସ୍ତର ଅବିଳମ୍ବେ ଏହି ସଂଗ୍ରାମରେ ସଂପୃକ୍ତ ହୋଇ ପଡ଼ିଥିଲେ । ଏହା ଛଡ଼ା, ସ୍ୱୈରତାନ୍ତ୍ରିକ ଶାସନ ବିରୁଦ୍ଧରେ ସଂଗ୍ରାମରତ ସମସ୍ତ ବିପ୍ଳବୀ-ଗଣତାନ୍ତ୍ରିକ ଶକ୍ତିସମୂହଙ୍କର ଦୃଷ୍ଟି କେନ୍ଦ୍ରରେ ପରିଣତ ହୋଇଥିଲା ଏହି ଆନ୍ଦୋଳନ ଏବଂ ଏହା ଗଣଚରିତ୍ର ଧାରଣ କରୁଥିଲା ।

ଅନ୍ୟ ଦିଗରେ, ବିପ୍ଳବୀ ଗଣ ଧର୍ମଘଟସମୂହ ପ୍ରତ୍ୟକ୍ଷ ଭାବେ ଜାର୍‌ତନ୍ତ୍ର ବିରୁଦ୍ଧରେ ପରିଗ୍ଭଳିତ ପ୍ରକାଶ୍ୟ ସଶସ୍ତ୍ର ସଂଗ୍ରାମ ଏବଂ ଅଭ୍ୟୁତ୍‌ଥାନ ସହିତ ଯୁକ୍ତ ହୋଇଥିଲା । ଗଣ ଧର୍ମଘଟସମୂହର ଏହିସବୁ ଉପର ବର୍ଣ୍ଣିତ ବୈଶିଷ୍ଟ୍ୟସମୂହ ୧୯୦୫-୧୯୦୭ ମସିହାର ସମସ୍ତ ବିପ୍ଳବୀ ଘଟଣାବଳୀସମୂହ ପଛରେ ଏକ ମୁଖ୍ୟ ଗ୍ଭଳିକା ଶକ୍ତି ହୋଇ ଦେଖାଦେଲା ।

ଶ୍ରମିକ ଶ୍ରେଣୀର ସଂଗ୍ରାମ ଗ୍ରାମାଞ୍ଚଳର ଅବସ୍ଥା ଉପରେ ଏକ ଆଶୁ ପ୍ରଭାବ ପକାଇଥିଲା । ଜାନୁଆରୀ ମାସରେ ବେଆଇନ୍ ଭାବେ ଜଙ୍ଗଲ କାଟିବା, ଖାଦ୍ୟଶସ୍ୟ

ଗୋଦାମ ଦଖଲ କରି ନେବା ଏବଂ ଜମିଦାରମାନଙ୍କ ମାହାଲ ପୋଡ଼ି ଦେବା ବୃଦ୍ଧି ପାଇଥିଲା । ୧୯୦୫, ବସନ୍ତକାଳକୁ କୃଷକ ବିପ୍ଳବୀ ଆନ୍ଦୋଳନର ତିନୋଟି ମୁଖ୍ୟ କେନ୍ଦ୍ର ମୁଣ୍ଡ ଟେକି ଉଠିଥିଲା : କେନ୍ଦ୍ରୀୟ କୃଷ୍ଣ ମୃତ୍ତିକା ଭୂଖଣ୍ଡସମୂହ, ପଶ୍ଚିମ ଅଞ୍ଚଳସମୂହ (ପୋଲାଣ୍ଡ ଏବଂ ବଲ୍‌ଟିକ୍ ପ୍ରଦେଶ) ଏବଂ ଜର୍ଜିଆ । ଆନ୍ଦୋଳନରେ ଶ୍ରେଣୀ ଚେତନାର ଆଦି ଉପାଦାନ ଏବଂ ସଂଗଠନ ଦେଖାଦେବାକୁ ଲାଗିଲେ : ସଶସ୍ତ୍ର କୃଷକ ଗୋଷ୍ଠୀସବୁ ସୃଷ୍ଟି ହେବାକୁ ଲାଗିଲେ । ସେମାନେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇ ଲୋକଙ୍କୁ ମତେଇଲେ ଜମିଦାରଙ୍କ ମାହାଲସବୁକୁ ଧୂଳିସାତ୍ କରି ଦେବା ପାଇଁ । ପୋଲାଣ୍ଡ ଏବଂ ଲାଟ୍‌ଭିଆରେ, ଯେଉଁଠି ପୁଞ୍ଜିବାଦ ତୁଳନାମୂଳକ ଭାବେ ଅଧିକ ବିକାଶ ଲାଭ କରିଥିଲା । ସେଠାରେ କୃଷି ମଜୁରିଆମାନେ ଜମିଦାରମାନଙ୍କ ବିରୁଦ୍ଧରେ ଏହି ଆନ୍ଦୋଳନରେ ଏକ ସକ୍ରିୟ ଭୂମିକା ପାଳନ କରିଥିଲେ । ସେମାନେ ସଫଳତାର ସହିତ ସର୍ବହରା ପଦ୍ଧତିରେ ସଂଗ୍ରାମ – ଧର୍ମଘଟ ଚଳାଇଥିଲେ ।

ଜାର୍‌ତନ୍ତ୍ରର ମୂଳଭିତ୍ତି – ସୈନ୍ୟ ଏବଂ ନୌବାହିନୀ ଟଳମଳ ହେବାକୁ ଲାଗିଲା । ବିପ୍ଳବରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଲା "ପୋଟେମ୍‌କିନ୍" ଯୁଦ୍ଧ ଜାହାଜର ବିଦ୍ରୋହ । ଏହି ବିଦ୍ରୋହୀ ରଣ ତରୀଟି ଓଡେଶାରେ ଜୁନ୍ ୧୪ ତାରିଖ ଦିନ ଆସି ଲାଗିଥିଲା ଏବଂ ଏହି ସମୟରେ ଓଡେଶାରେ ଅଭ୍ୟୁତ୍‌ଥାନ ଘଟିବାକୁ ଯାଉଥାଏ । ଶ୍ରମିକ ଏବଂ ନାବିକମାନେ ସେମାନଙ୍କ ବିଦ୍ରୋହୀ କ୍ରିୟାକଳାପକୁ ଐକ୍ୟ ଭାବେ ପ୍ରଦର୍ଶନ କରିବାର ସମ୍ଭାବନା ଦେଖାଦେଇଥିଲା । କିନ୍ତୁ ଏହି ସୁଯୋଗ ରୂପ ପରିଗ୍ରହ କରି ପାରିଲା ନାହିଁ । ଜୁନ୍ ୧୭ ତାରିଖ ଦିନ କୃଷ୍ଣ ସାଗର ନୌବହରର ଏକ ଯୁଗ୍ମ ରଣତରୀଗୁଚ୍ଛ ଓଡେଶାରେ ଆସି ପହଞ୍ଚିଗଲେ "ପୋଟେମ୍‌କିନ୍‌ର" ନାବିକମାନେ ରଣତରୀଗୁଚ୍ଛର ନାବିକମାନଙ୍କୁ ଆହ୍ୱାନ ଦେଇଥିଲେ ଅଭ୍ୟୁତ୍‌ଥାନରେ ଯୋଗ ଦେବାକୁ । ତେବେ ବିଦ୍ରୋହୀମାନଙ୍କ ମଧ୍ୟରେ ମତ ପାର୍ଥକ୍ୟ ଏବଂ ନାବିକମାନଙ୍କର ଅଳ୍ପ ରାଜନୈତିକ ଅଭିଜ୍ଞତା ସେମାନଙ୍କର ଏହି ସାଫଲ୍ୟ ଅର୍ଜନ ପଥରେ ବାଧା ହୋଇ ଛିଡ଼ା ହେଲା । "ପୋଟେମ୍‌କିନ୍" ତା'ପରେ ଓଡେଶା ବନ୍ଦର ପରିତ୍ୟାଗ କରିଥିଲା ଅପରାଜିତ ଭାବେ । କିନ୍ତୁ ତୈଳ ଏବଂ ଖାଦ୍ୟ ଶେଷ ହୋଇଯିବାରୁ ନାବିକମାନେ ବାଧ୍ୟ ହୋଇ ରୁମାନିଆର କର୍ତ୍ତୃପକ୍ଷଙ୍କ ହାତରେ ଜାହାଜଟିକୁ ଅର୍ପଣ କରି ଦେଇଥିଲେ ।

୧୬ଶ-୧୯ଶ ଶତାବ୍ଦୀର ୟୁରୋପରେ ପ୍ରଥମ ବୁର୍ଜୁଆ ବିପ୍ଳବଗୁଡ଼ିକରେ ସାଧାରଣ ଜନତା ବୁର୍ଜୁଆ ଶ୍ରେଣୀର ନେତୃତ୍ୱାଧୀନରେ ପରିଚାଳିତ ହୋଇଥିଲେ । ସେତେବେଳେ ସେଠାରେ ଦୁଇଟି ମାତ୍ର ଶିବିର ଥିଲା : ସରକାର (ସାମନ୍ତବାଦୀ) ଏବଂ ସରକାରବିରୋଧୀ (ବୁର୍ଜୁଆଜି) । ବିପ୍ଳବରେ ରୁଷୀୟ ସର୍ବହରାର ଅଗ୍ରଣୀ ଶକ୍ତି ରୂପେ ଅଭ୍ୟୁଦୟ ଏବଂ ଉଭୟ ସରକାର ଏବଂ ବୁର୍ଜୁଆଜି ବିରୁଦ୍ଧରେ ଏହାର ସଂଗ୍ରାମ ନୀତିଗତ ଦୃଷ୍ଟିରୁ ଶ୍ରେଣୀ ଶକ୍ତିସମୂହର ସାଧାରଣ ମେଣ୍ଟକୁ ବଦଳେଇ ଦେଲା । ରୁଷୀୟ ବିପ୍ଳବରେ

ଦୁଇଟି ଶିବିର ପରିବର୍ତ୍ତେ ତିନୋଟି ଶିବିର ଲଢ଼େଇ କରୁଥିଲେ : ସରକାର, ଉଦାରପନ୍ଥୀ ଏବଂ ସର୍ବହରାର ନେତୃତ୍ୱରେ ବିପବୀ-ଗଣତନ୍ତ୍ରୀ ଶିବିର । ସର୍ବତୋଭାବେ ବିପ୍ଳବୀ-ଗଣତାନ୍ତ୍ରିକ ଶିବିରର ଏକତ୍ରୀକରଣ ଥିଲା ଲେନିନ୍‌ଙ୍କ ନେତୃତ୍ୱରେ ବଲ୍‌ଶେଭିକ୍ ପାର୍ଟିର ମୁଖ୍ୟ କର୍ତ୍ତବ୍ୟ ।

୧୯୦୫ରେ ରୁଷ୍ ସୋସାଲ-ଡେମୋକ୍ରାଟିକ୍ ଲେବର ପାର୍ଟିର ୩ୟ କଂଗ୍ରେସ ଲଣ୍ଡନରେ ଅନୁଷ୍ଠିତ ହେଲା ଏବଂ ଏଥିରେ କେବଳ ବଲ୍‌ଶେଭିକ୍ ପ୍ରତିନିଧିମାନେ ଅଂଶଗ୍ରହଣ କରିଥିଲେ । ଏହି ସମୟରେ ମେନ୍‌ଶେଭିକ୍‌ମାନଙ୍କ ସମ୍ମିଳନୀ ବସିଥିଲା ଜେନିଭାରେ । ପ୍ରଥମୋକ୍ତ କଂଗ୍ରେସ ଏବଂ ଦ୍ୱିତୀୟୋକ୍ତ ସମ୍ମିଳନୀରେ ଗୃହୀତ ପ୍ରସ୍ତାବସମୂହରେ ପ୍ରକାଶ ପାଇଥିଲା ଉଭୟ ଗୋଷ୍ଠୀ ମଧ୍ୟରେ ରାଜନୈତିକ ତଥା ସଂଗ୍ରାମ କୌଶଳଗତ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନରାଜି ଉପରେ ମୌଳିକ ପାର୍ଥକ୍ୟସମୂହ । ଏହା ପ୍ରମାଣ କରିଥିଲା, ରୁଷିଆର ସାମାଜିକ-ଗଣତାନ୍ତ୍ରିକ ଆନ୍ଦୋଳନରେ ଦୁଇଟି ପାର୍ଟିର ଗଠନକୁ । ବିପ୍ଳବରେ ସର୍ବହରାର ପ୍ରକୃତ ଅବସ୍ଥାନକୁ ବଲ୍‌ଶେଭିକ୍‌ମାନଙ୍କ ରଣକୌଶଳ ହିସାବ ମଧ୍ୟକୁ ନେଇଥିଲା ବିପ୍ଳବୀ-ଗଣତାନ୍ତ୍ରିକ ଶିବିର ଦ୍ୱାରା ଅନୁଷ୍ଠିତ ସଂଗ୍ରାମରେ ସର୍ବହରାର ଅଗ୍ରଣୀ ଭୂମିକା ପ୍ରତି ଅବଦାନ ରଖିବାକୁ ଚାହୁଁଥିଲେ । ବଲ୍‌ଶେଭିକ୍‌ମାନେ ଜନସାଧାରଣଙ୍କର ବୈପ୍ଳବିକ ଶକ୍ତିକୁ ବିକଶିତ କରି ଏକ ସଶସ୍ତ୍ର ଅଭ୍ୟୁତ୍‌ଥାନ ଆଡ଼କୁ ଆଗେଇ ନେବାକୁ ଚାହୁଁଥିଲେ । ସେମାନେ ଚାହୁଁଥିଲେ ଜାର୍ ତନ୍ତ୍ର ଉପରେ ବିଜୟକୁ ସେହିସବୁ ଶକ୍ତିମାନଙ୍କ ଏକନାୟକତ୍ୱ ଦ୍ୱାରା ମଣ୍ଡିତ କରିବାକୁ ଯେଉଁମାନେ ପ୍ରକୃତରେ ବିପ୍ଳବକୁ କାର୍ଯ୍ୟକାରୀ କରିବେ ଏବଂ ଏହାରି ମୁଖ୍ୟ ଚାଳିକା ଶକ୍ତି ହେବେ – ସେ ଶକ୍ତିଗୁଡ଼ିକ ହେଲେ ସର୍ବହରା ଓ କୃଷକର ବୈପ୍ଳବିକ-ଗଣତାନ୍ତ୍ରିକ ଏକନାୟକତ୍ୱ । ମେନ୍‌ଶେଭିକ୍‌ମାନଙ୍କ ରଣକୌଶଳ ପ୍ରତିଷ୍ଠିତ ଥିଲା ପୂର୍ବର ବୁର୍ଜୁଆ ବିପ୍ଳବରେ ଅର୍ଜିତ ଅଭିଜ୍ଞତାସମୂହ ଉପରେ ଏବଂ ଏହି ସୂତ୍ର ଦ୍ୱାରା ସେମାନେ ଆଗଉଥିଲେ : ବୁର୍ଜୁଆ ବିପ୍ଳବର ବିଜୟ ବୁର୍ଜୁଆର ବିଜୟରେ ପର୍ଯ୍ୟବସିତ ହୁଏ । ଏହି ଅବସ୍ଥାନ ହେତୁ ସଂଗ୍ରାମରେ ସର୍ବହରାର ଭୂମିକାକୁ ନ୍ୟୂନ କରି ଦେଖାଯାଉଥିଲା ଏବଂ ଶ୍ରମିକମାନଙ୍କ ଆକ୍ରମଣକୁ ସୀମାବଦ୍ଧ କରି ଦେବାକୁ ଉଦ୍ୟମ ହେଉଥିଲା ଏବଂ ଏହା ଫଳରେ ବୁର୍ଜୁଆ ଭୟଭୀତ ହେଉ ନଥିଲା । ଏହି ଭାବେ ସର୍ବହରାକୁ ଉଦାରତାବାଦୀ-ବୁର୍ଜୁଆ ଗୋଷ୍ଠୀ ଏକ ସ୍ୱତନ୍ତ୍ର ଭାବେ ତାଲିମପ୍ରାପ୍ତ ଶକ୍ତି ରୂପେ ବିଚାର କରୁଥିଲା, କୃଷକମାନଙ୍କ କଥା ନକହିବା ଭଲ, ମେନ୍‌ଶେଭିକ୍‌ମାନେ ସେମାନଙ୍କ କାର୍ଯ୍ୟକଳାପକୁ ମୋଟେ ଗୁରୁତ୍ୱ ଦେଉ ନଥିଲେ । ଆନୁଷଙ୍ଗିକ ଭାବେ ବିପ୍ଳବର ବିକାଶର ସମ୍ଭାବନାକୁ ବିଭିନ୍ନ ଭାବେ ବିଚାର କରାଯାଉଥିଲା । ବଲ୍‌ଶେଭିକ୍‌ମାନେ ସର୍ବହରା ଏବଂ କୃଷକମାନଙ୍କର ବିପ୍ଳବୀ-ଗଣତାନ୍ତ୍ରିକ ଏକନାୟକତ୍ୱ ପ୍ରତିଷ୍ଠାକୁ ଗଣତାନ୍ତ୍ରିକ ବିପ୍ଳବ ପାଇଁ ପ୍ରାରମ୍ଭିକ ବିନ୍ଦୁ ବୋଲି ବିଚାର କରି ଏହାକୁ ଅବିଳମ୍ବେ ସମାଜବାଦୀ ବିପ୍ଳବକୁ ବିକଶିତ କରିବାକୁ କହୁଥିଲେ । ମେନ୍‌ଶେଭିକ୍‌ମାନେ, ଏହାର ବିପରୀତରେ,

ଭାବୁଥିଲେ , ବୁର୍ଜୁଆ ବିପ୍ଳବର ବିଜୟ ଏବଂ ସମାଜବାଦୀ ବିପ୍ଳବକୁ ଏହାର ଉତ୍ତରଣ ମଧ୍ୟରେ ସ୍ୱଳ୍ପ କିମ୍ବା ଦୀର୍ଘ ଶାନ୍ତିପୂର୍ଣ୍ଣ କାଳ ରହିବ । ଏହି ସମୟ ମଧ୍ୟରେ ସର୍ବହରାକୁ ଅନ୍ୟାନ୍ୟ ଶ୍ରେଣୀ ତଥା ସାମାଜିକ ଗୋଷ୍ଠୀ ଅପେକ୍ଷା ସଂଖ୍ୟାଗତ ଭାବେ ଗରିଷ୍ଠତା ଅର୍ଜନ କରିବାକୁ ପଡ଼ିବ ।

ବିପ୍ଳବରେ ସର୍ବହରା ସମ୍ମୁଖରେ ଥିବା ଲକ୍ଷ୍ୟ ଏବଂ କର୍ତ୍ତବ୍ୟ ସଂପର୍କରେ ବିଭିନ୍ନ ଧାରଣା ହେତୁ ବଲ୍‌ଶେଭିକ୍ ଏବଂ ମେନ୍‌ଶେଭିକ୍‌ମାନେ ବିଭିନ୍ନ ଧରଣର ଆଚରଣ କରିଥିଲେ । ବିପ୍ଳବ ପୂର୍ବ ପରି ବଲ୍‌ଶେଭିକ୍‌ମାନେ ସର୍ବହରାମାନଙ୍କ ମଧ୍ୟରେ କ୍ରିୟାକଳାପ ଉପରେ ମୁଖ୍ୟ ଦୃଷ୍ଟି ପ୍ରଦାନ କରିଥିଲେ । ଏବେ କିନ୍ତୁ ଏହି କ୍ରିୟା ମୂଳରେ ରହିଲା "ବାମପନ୍ଥୀ ଗୋଷ୍ଠୀ" ରଣକୌଶଳ , ଯାହାକି ବଲ୍‌ଶେଭିକ୍‌ମାନଙ୍କ ଦ୍ୱାରା ନିରବଚ୍ଛିନ୍ନ ଭାବେ କାର୍ଯ୍ୟକାରୀ ହେବାକୁ ଲାଗିଲା ଏବଂ ଏହାର ଲକ୍ଷ୍ୟ ହେଲା ଭାବାଦର୍ଶଗତ ତଥା ସାଂଗଠନିକ ଦିଗରୁ ବିପ୍ଳବୀ-ଗଣତାନ୍ତ୍ରିକ ଶକ୍ତିମାନଙ୍କୁ , ସର୍ବୋପରି କୃଷକମାନଙ୍କୁ , ସର୍ବହରାର ଗ୍ୱରି ପାଖରେ ଏକଜୁଟ କରିବା ।

୧୯୦୫ ଗ୍ରୀଷ୍ମକାଳରେ ବ୍ୟାପକ ଭାବେ କୃଷକ ସମାବେଶ ଏବଂ ବିକ୍ଷୋଭମାନ ଦେଖାଦେଇଥିଲା । ଅଧିକାଂଶ ସମୟରେ ଶ୍ରମିକମାନଙ୍କ ନେତୃତ୍ୱାଧୀନରେ ଏହା ହେଉଥିଲା ଏବଂ ବେଳେବେଳେ କସାକ୍ ଏବଂ ପୁଲିସ୍ ସହିତ ସଂଘର୍ଷ ମଧ୍ୟ ଦେଇ ସମାପ୍ତ ହେଉଥିଲା । ସର୍ବତ୍ର ଗଢ଼ି ଉଠୁଥିବା ବିପ୍ଳବୀ କୃଷକ କମିଟିମାନ ରାଜନୈତିକ ଚେତନାକୁ ଉନ୍ନତ କରିବାରେ ଏବଂ କୃଷକ ଆନ୍ଦୋଳନର ସଂଗଠନକୁ ବିକଶିତ କରିବାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲେ । ନିଖିଳ ରୁଷୀୟ କୃଷକ ୟୁନିଅନ୍‌ର କଂଗ୍ରେସ ଅନୁଷ୍ଠିତ ହୋଇଥିଲା ଜୁଲାଇ ୩୧ ଏବଂ ଅଗଷ୍ଟ ପହିଲାରେ । ୧୯୦୫ , ନଭେମ୍ବର ମାସକୁ ଏହାର ସଦସ୍ୟ ସଂଖ୍ୟା ପ୍ରାୟ ୨ ଲକ୍ଷ ଥିଲା । ଏଥିରୁ ପ୍ରମାଣିତ ହୁଏ ଯେ , ୧୯ଶ ଶତାବ୍ଦୀରେ ୟୁରୋପରେ ବୁର୍ଜୁଆ ବିପ୍ଳବ ଅପେକ୍ଷା ରୁଷିଆର କୃଷକ ସଂପ୍ରଦାୟ ବିପ୍ଳବର ପ୍ରଥମ ପର୍ବରେ ଅନେକ ଶକ୍ତିଶାଳୀ ସାମାଜିକ ଆନ୍ଦୋଳନ ସୃଷ୍ଟି କରି ପାରିଥିଲା ।

ସର୍ବହରା ସଂଗ୍ରାମର ପ୍ରତ୍ୟକ୍ଷ ପ୍ରଭାବରେ କୃଷକ ପ୍ରତିନିଧିମାନଙ୍କର ସୋଭିଏତ୍‌ସମୂହ ମୁଣ୍ଡ ଟେକି ଉଠିଥିଲା ୧୯୦୫ , ଶରତକାଳରେ ।

ସେନାବାହିନୀ ମଧ୍ୟରେ ସମର୍ଥକ ଲାଭ କରିବା ପାଇଁ ବଲ୍‌ଶେଭିକ୍‌ମାନେ ୧୯୦୫-୧୯୦୭ ମସିହାରେ ଗୁରୁତର ସଂଗ୍ରାମ ଆରମ୍ଭ କରି ଦେଇଥିଲେ । ଏବଂ ସର୍ବହରାର ନେତୃତ୍ୱରେ ଔପନିବେଶିକ ଅଞ୍ଚଳଗୁଡ଼ିକରେ ତଥା ଜାର୍‌ତନ୍ତ୍ର ଦ୍ୱାରା ନିପୀଡ଼ିତ ଜାତିମାନଙ୍କ ମଧ୍ୟରେ ପରବର୍ତ୍ତୀ ଅଭ୍ୟୁତ୍‌ଥାନ ପାଇଁ ଅନେକ କିଛି କରାଯାଇ ପାରିଥିଲା ।

୧୯୦୫ ଶରତକାଳ ବେଳକୁ ମସ୍କୋ ନଗରୀ ବିପ୍ଳବୀ ଆନ୍ଦୋଳନର କେନ୍ଦ୍ରରେ ପରିଣତ ହୋଇଗଲା । ଦେଶର ବୃହତ୍ ସହରଗୁଡ଼ିକର ଶିଳ୍ପ ଶ୍ରମିକମାନଙ୍କର ବ୍ୟାପକ ଜନସାଧାରଣ ଏହି ବିପ୍ଳବୀ ସଂଗ୍ରାମରେ ଝାସ ଦେଇଥିଲେ । ଏକକ ଧର୍ମଘଟଗୁଡ଼ିକ

ଏକତ୍ର ହୋଇ ଦେଶବ୍ୟାପୀ ଧର୍ମଘଟର ରୂପ ଧାରଣ କଲା । ଏସବୁଥିରେ ୧.୫ ନିୟୁତ ଶିଳ୍ପ ଏବଂ ରେଳବାଇ ଶ୍ରମିକମାନଙ୍କ ସହିତ ୨ ଲକ୍ଷ ଅଫିସ୍ କର୍ମଚାରୀ, ରାଷ୍ଟ୍ରୀୟ ଓ ବ୍ୟବସାୟୀ ପ୍ରତିଷ୍ଠାନର, ନଗର ଯାନବାହନର କର୍ମଚାରୀ, ବୁଦ୍ଧିଜୀବୀ ଏବଂ ଛାତ୍ର ଯୋଗ ଦେଇଥିଲେ ।

ଅବସ୍ଥା ବଡ଼ ଗୁରୁତର ହୋଇ ଉଠିଥିଲା । ସରକାର ବାଧ୍ୟ ହୋଇ କେତେ ସୁବିଧା ପ୍ରଦାନ କଲା । ଅକ୍ଟୋବର ୧୭ ତାରିଖ ଦିନ ଜାର୍ ଏକ ଇସ୍ତାହାରରେ ଦସ୍ତଖତ କଲା, ଯେଉଁଥିରେ ପ୍ରତିଶ୍ରୁତି ଦିଆଯାଇଥିଲା ଆଇନ୍ ପ୍ରଣୟନକାରୀ ଏକ ରାଷ୍ଟ୍ରୀୟ ଡୁମା ଡାକିବାକୁ ଏବଂ ଡୁମାର ସ୍ୱୀକୃତି ବିନା କୌଣସି ଆଇନ୍‌କୁ କାର୍ଯ୍ୟକାରୀ ନକରିବାକୁ । ଏଥି ସାଥେ ସାଥେ, ମନ୍ତ୍ରୀମାନଙ୍କ ପରିଷଦ ସ୍ଥାୟୀ ଭାବେ କାର୍ଯ୍ୟରତ ସର୍ବୋଚ୍ଚ ସରକାରୀ ସଂସ୍ଥାରେ ପରିଣତ ହେଲା ବୋଲି ଏହା ଘୋଷଣା କରିଥିଲା ।

ଅକ୍ଟୋବର ୧୭ ତାରିଖର ଇସ୍ତାହାରଟି ପ୍ରକାଶ ପାଇଲା ପରେ ଉଦାରପନ୍ଥୀ ବୁର୍ଜୁଆମାନେ ପ୍ରତିବିପ୍ଳବୀମାନଙ୍କ ପକ୍ଷ ନେବାକୁ ଆରମ୍ଭ କରି ଦେଲେ । ଦେଶରେ ବୁର୍ଜୁଆ-ଜମିଦାର ପାର୍ଟିସବୁ ଗଢ଼ି ଉଠିଲେ । ସେସବୁ ମଧ୍ୟରେ ସର୍ବବୃହତ୍ ଥିଲା ସମ୍ବିଧାନପନ୍ଥୀ-ଗଣତାନ୍ତ୍ରିକ ପାର୍ଟି (କିମ୍ବା ପାଭେଲ ମିଲ୍ୟୁକୋଭ୍‌ଙ୍କ ନେତୃତ୍ୱାଧୀନ କାଦେତ୍‌ଗଣ) ଏବଂ "ଅକ୍ଟୋବର ୧୭ର ୟୁନିଅନ୍" (ଅଥବା ଅକ୍ଟୋବରପନ୍ଥୀଗଣ, ଆଲେକ୍‌ଜାଣ୍ଡର ଗୁଚକୋଭ୍ ଏବଂ ମିଖାଇଲ ରୋଦ୍‌ଜ୍ୟାଙ୍କୋଙ୍କ ନେତୃତ୍ୱରେ ପରିଚାଳିତ) । ଏଥି ସାଥେ ସାଥେ ରାସ୍ତାମାନଙ୍କରେ "ଦେଶପ୍ରେମୀ ବିକ୍ଷୋଭମାନ" ଦେଖାଦେଲା — ଜାର୍‌ତନ୍ତ୍ର ପୁଲିସ୍, କସାକ୍ ଏବଂ ସୈନ୍ୟମାନଙ୍କ ସହାୟତାରେ ତା'ର ସମର୍ଥକମାନଙ୍କୁ ଏକଜୁଟ କରାଇଲା । ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଶ୍ରେଣୀଚ୍ୟୁତ ଗୋଷ୍ଠୀସମୂହ — କୃଷ୍ଣ ଶତକର ସଦସ୍ୟମାନେ ବିପ୍ଳବୀ, ଶ୍ରମିକମାନଙ୍କ ନେତା ଏବଂ ବୁଦ୍ଧିଜୀବୀମାନଙ୍କୁ ହତ୍ୟା କଲେ । ୨-୩ ସପ୍ତାହ ମଧ୍ୟରେ ୧୦୦ଟି ସହରରେ ୪,୦୦୦ଙ୍କୁ ହତ୍ୟା କରାଗଲା ଏବଂ ୧୦,୦୦୦ ଆହତ ହେଲେ । ବିଖ୍ୟାତ ପେଶାଦାର ବିପ୍ଳବୀ ଏବଂ ବଲ୍‌ଶେଭିକ୍ ନିକୋଲାଇ ବାଉମାନ୍‌ଙ୍କୁ ମସ୍କୋରେ ହତ୍ୟା କରାଗଲା । ଅକ୍ଟୋବର ୨୦ରେ ମସ୍କୋରେ ଅନୁଷ୍ଠିତ ତାଙ୍କ ଶବଯାତ୍ରା ୩୦୦,୦୦୦ ଲୋକଙ୍କର ରାଜନୈତିକ ବିକ୍ଷୋଭରେ ପରିଣତ ହେଲା ।

ବିପ୍ଳବର ଶକ୍ତିମାନେ ମଧ୍ୟ ସଂଗଠିତ ହେଉଥିଲେ । ସର୍ବହରା ଶ୍ରେଣୀ ପକ୍ଷରୁ ବୈପ୍ଳବିକ ବିକାଶର ଚୂଡ଼ାନ୍ତ ଅବସ୍ଥାରେ, ଯେଉଁସବୁ ସ୍ଥାନରେ ସ୍ୱତଃସ୍ଫୂର୍ତ୍ତ ଭାବେ ଅଭ୍ୟୁତ୍‌ଥାନ ଦେଖାଦେଇଥିଲା, ସେସବୁ ସ୍ଥାନରେ ସାଧାରଣ ବିପ୍ଳବୀ ସଂଗ୍ରାମର ଗଣତାନ୍ତ୍ରିକ ସଂଗଠନମାନ — ଶ୍ରମିକ ଜନପ୍ରତିନିଧିମାନଙ୍କ ସୋଭିଏତ୍‌ସମୂହ ପ୍ରତିଷ୍ଠିତ ହେଲା । ସୋଭିଏତ୍‌ଗୁଡ଼ିକ ଥିଲେ ଅଣପାର୍ଟି ସଂଗଠନ, ସର୍ବହରା ଏବଂ ପେଟି-ବୁର୍ଜୁଆ ବିପ୍ଳବୀ ଗଣତନ୍ତ୍ରବାଦୀମାନଙ୍କ ମଧ୍ୟରେ ସଂଗ୍ରାମୀ ମେଣ୍ଟର ପ୍ରତୀକ ସ୍ୱରୂପ । ଏଥିରେ ପ୍ରଧାନ

ଭୂମିକାଟି ପାଳନ କରୁଥିଲେ ଶିଳ୍ପ ଶ୍ରମିକମାନେ । ଫଳରେ ସୋସାଲ-ଗଣତାନ୍ତ୍ରିକ ପ୍ରଭାବ ବିରାଜ କରୁଥିଲା ଏବଂ ଏହା ଦ୍ୱାରା ବିପ୍ଲବର ମୌଳିକ କର୍ତ୍ତବ୍ୟଗୁଡ଼ିକୁ ସଫଳତାର ସହିତ ସଂପନ୍ନ କରିବା ସୁନିଶ୍ଚିତ ହୋଇଥିଲା । ଶ୍ରମିକ ଜନପ୍ରତିନିଧିମାନଙ୍କର ସୋଭିଏତ୍‌ସମୂହ ସଶସ୍ତ୍ର ଅଭ୍ୟୁତ୍ଥାନର ସଂଗଠନ ଏବଂ ବିପ୍ଳବୀ କ୍ଷମତାର ଭ୍ରୂଣ ଥିଲା ।

୧୯୦୫, ନଭେମ୍ବର-ଡିସେମ୍ବର ମାସରେ କୃଷକ ଆନ୍ଦୋଳନ ତା'ର ଶୀର୍ଷଦେଶରେ ପହଞ୍ଚିଥିଲା ; ଦେଶ ବ୍ୟାପୀ ରାଜନୈତିକ ଧର୍ମଘଟର ପ୍ରତ୍ୟକ୍ଷ ପ୍ରଭାବରେ ରୁଷିଆର ୟୁରୋପୀୟ ଅଞ୍ଚଳର ୨୪୦ ଉଏଜଦ୍‌କୁ, ଅର୍ଥାତ୍ ଅର୍ଦ୍ଧେକ ଅଞ୍ଚଳକୁ କୃଷକ ଆନ୍ଦୋଳନ ବ୍ୟାପୀ ଯାଇଥିଲା (ବଲ୍‌ଟିକ୍ ଏବଂ କକେସସ୍ ଅଞ୍ଚଳ ବ୍ୟତୀତ) । ଲକ୍ଷ ଲକ୍ଷ କୃଷକଙ୍କ ଦ୍ୱାରା ଆକ୍ରମଣାତ୍ମକ ପ୍ରକାଶ୍ୟ ବିଦ୍ରୋହର ରୂପ ଗ୍ରହଣ କରିଥିଲା ଏହି ଆନ୍ଦୋଳନ ।

ସୈନିକମାନଙ୍କ ମଧ୍ୟରେ ବିଦ୍ରୋହ ବ୍ୟାପକ ଆକାର ଧାରଣ କଲା । ବିପ୍ଳବର ପ୍ରଥମ ମାସଗୁଡ଼ିକରେ ୭୬ଟି ଏବଂ ଅକ୍ଟୋବର-ଡିସେମ୍ବର ମାସରେ ୧୯୫ଟି ସୈନିକ ବିଦ୍ରୋହ ଦେଖାଦେଇଥିଲା । ଅକ୍ଟୋବର ମାସ ଶେଷରେ କ୍ରୋନ୍‌ଷ୍ଟାଦ୍‌ତରେ ଦେଖା ଦେଇଥିଲା ଏକ ଅଭ୍ୟୁତ୍‌ଥାନ । ବିଦ୍ରୋହୀମାନେ ଦୁଇ ଦିନ ଧରି ଏହି ଦୁର୍ଗଟିକୁ ଦଖଲ କରି ରଖିଥିଲେ । ଏହାର କିଛି ଦିନ ପରେ ଭ୍ଲାଦିଭୋଷ୍ଟକରେ ନାବିକ ଏବଂ ସୈନିକମାନଙ୍କ ମଧ୍ୟରେ ଏକ ଅଭ୍ୟୁତ୍‌ଥାନ ଦେଖାଦେଇଥିଲା । ସୈନିକ ଏବଂ ନାବିକମାନଙ୍କର ସର୍ବବୃହତ୍ ଅଭ୍ୟୁତ୍‌ଥାନଟି ଘଟିଥିଲା ୧୯୦୫ ନଭେମ୍ବର ସେଭାଷ୍ଟୋପୋଲ୍‌ରେ । ଏହି ଆନ୍ଦୋଳନକୁ ନେତୃତ୍ୱ ଦେଇଥିଲା ନାବିକ, ଶ୍ରମିକ ଏବଂ ସୈନିକମାନଙ୍କ ପ୍ରତିନିଧିମାନଙ୍କର ଏକ ସୋଭିଏତ୍ । ଲେଫ୍‌ଟେନାଣ୍ଟ ପିଓତର ସ୍ମିଦ୍‌ଥ ବିରୋଧୀ ନୌତରୀଗୁଡ଼ିକୁ ନେତୃତ୍ୱ ଦେଇଥିଲେ ଏଠାରେ । ଏହିସବୁ ଅଭ୍ୟୁତ୍‌ଥାନକୁ ନିର୍ମମ ଭାବେ ଦମନ କରାଯାଇଥିଲା ।

୧୯୦୫ ମସିହା ଡିସେମ୍ବର ମାସଟି ଥିଲା ସଶସ୍ତ୍ର ଅଭ୍ୟୁତ୍‌ଥାନର ମାସ ଏବଂ ଏହି ମାସରେ ବିପ୍ଳବୀ ସଂଗ୍ରାମ ତା'ର ଶୀର୍ଷଦେଶରେ ପହଞ୍ଚିଥିଲା । ଦେଶର ବହୁ ସହରରେ ଶ୍ରମିକମାନେ ସଶସ୍ତ୍ର ବିଦ୍ରୋହ କରିଥିଲେ ।

ମସ୍କୋରେ ଘଟିଥିବା ସଶସ୍ତ୍ର ଅଭ୍ୟୁତ୍‌ଥାନଟି ଥିଲା ବିପ୍ଳବର କେନ୍ଦ୍ରୀୟ ଘଟଣା । ଡିସେମ୍ବର ୭ ତାରିଖରେ ଆରମ୍ଭ ହୋଇଥିବା ଏକ ସାଧାରଣ ରାଜନୈତିକ ଧର୍ମଘଟରୁ ଏହି ଅଭ୍ୟୁତ୍‌ଥାନ ବିକାଶ ଲାଭ କରିଥିଲା । ଏହି ସାଧାରଣ ଧର୍ମଘଟର ଡାକରା ଦେଇଥିଲେ ରୁଷ୍ ସୋସାଲ-ଡେମୋକ୍ରାଟିକ୍ ଶ୍ରମିକ ପାର୍ଟିର ମସ୍କୋ କମିଟି ଏବଂ ଶ୍ରମିକ ପ୍ରତିନିଧିମାନଙ୍କ ମସ୍କୋ ସୋଭିଏତ୍ । ମାତ୍ର କେଇ ଦିନ ମଧ୍ୟରେ ସହର ସାରା ବ୍ୟାରିକେଡ୍‌ମାନ ଗଢ଼ି ଉଠିଥିଲା । ମସ୍କୋର ଅନ୍ୟତମ ଶ୍ରମିକ ଅଧ୍ୟୁଷିତ ଜିଲ୍ଲା ପ୍ରେସନିଆ ପରିଣତ ହୋଇଥିଲା ପ୍ରକୃତ ଦୁର୍ଗରେ । ଡିସେମ୍ବର ୧୫ ତାରିଖ ଜାର୍‌ଶାହୀ ସରକାର ସେଣ୍ଟ୍ ପିଟର୍ସବର୍ଗ୍ ଏବଂ ଅନ୍ୟାନ୍ୟ ସାମରିକ ଜିଲ୍ଲାରୁ ସେନାଦଳମାନ

ମସ୍କୋକୁ ପଠାଇଥିଲେ । ଶକ୍ତିର ଭାରସାମ୍ୟର ତରାଜୁଟା ଢଳିଥିଲା ଜାର୍‌ତନ୍ତ୍ର ସପକ୍ଷରେ । ପିଟୁଣି ସେନାମାନେ ପ୍ରତିଆକ୍ରମଣ ଆରମ୍ଭ କରି ଦେଇଥିଲେ । ସର୍ବାଧିକ ସମୟ ଧରି ପ୍ରେସନିଆ ନିଜକୁ ରକ୍ଷା କରିଥିଲା । ଏହାର ଚତୁର୍ପାର୍ଶ୍ୱରୁ ଘେରିଯାଇ ଜାର୍‌ର ସୈନ୍ୟଦଳଗୁଡ଼ିକ କମାଣ ମାରି ବ୍ୟାରିକେଡ୍ ଏବଂ ଘର ଦ୍ୱାରକୁ ଧ୍ୱସ୍ତବିଧ୍ୱସ୍ତ କରି ଦେଇଥିଲେ । ଡିସେମ୍ବର ୧୯ ତାରିଖ ଦିନ ମସ୍କୋ ସୋଭିଏତ୍‌ର ନିଷ୍ପତ୍ତି ଅନୁଯାୟୀ ସଶସ୍ତ୍ର ପ୍ରତିରୋଧ ବନ୍ଦ ହୋଇଥିଲା । ପ୍ରେସନିଆ ପ୍ରତିରୋଧ ବାହିନୀର ସେନାପତିଙ୍କ ଦ୍ୱାରା ପ୍ରଣ୍ୱରିତ ଶେଷ ନିର୍ଦ୍ଦେଶରେ କୁହାଯାଇଥିଲା : "ଆମେ ଅଭ୍ୟୁତ୍‌ଥାନ ଆରମ୍ଭ କରିଥିଲେ, ଏବେ ଆମେ ଏହାକୁ ବନ୍ଦ କରୁଛେ ।"

ତା'ପରେ ବିପ୍ଳବ ପଶ୍ଚାଦ୍‌ପସରଣ କରିବାକୁ ଆରମ୍ଭ କରିଥିଲା । ଦେଶ ସାରା ପିଟୁଣି ଅଭିଯାନମାନ ଆତଙ୍କ ସୃଷ୍ଟି କରି ଦେଲା । ଏବଂ କୋର୍ଟ ମାର୍ସାଲ ବିଗ୍ଭର ଦ୍ୱାରା ଦଣ୍ଡ ଦିଆଗଲା । କୃଷ୍ଣ ଶତକ ଦଳସବୁ ସୋଭିଏତ୍, ଅନ୍ୟାନ୍ୟ ଗଣ ଶ୍ରମିକ ଓ କୃଷକ ସଂଗଠନ ଉପରେ ଆକ୍ରମଣ ଆରମ୍ଭ କରି ଦେଇଥିଲେ । ଏସବୁ ସତ୍ତ୍ୱେ ୧୯୦୭ ମସିହା ପର୍ଯ୍ୟନ୍ତ ଧର୍ମଘଟସବୁ ଗ୍ଭଲିଥିଲା । ସାଧାରଣ ଶ୍ରମିକମାନେ ଯୁଦ୍ଧ କରି ଧର୍ମଘଟରୁ କ୍ରମଶଃ ପଶ୍ଚାଦ୍‌ପସରଣ କରିଥିଲେ । ୧୯୦୬, ବସନ୍ତକାଳରେ ପୁଣି ଜଳି ଉଠିଲା କୃଷକ ଆନ୍ଦୋଳନର ନିଆଁ ଏବଂ ଏହା ୧୯୦୫ର ଶରତ ଅଭ୍ୟୁତ୍‌ଥାନ ଭଳି ତୀବ୍ର ହୋଇ ଉଠିଥିଲା । ସୈନ୍ୟବାହିନୀ ତଥା ନୌବାହିନୀରେ ବିପ୍ଳବୀ କ୍ରିୟାକଳାପ ଲାଗି ରହିଥିଲା ଏବଂ ବଲ୍‌ଟିକ୍ ନୌବହରରେ ସ୍ୱତଃସ୍ଫୂର୍ତ୍ତ ଅଭ୍ୟୁତ୍‌ଥାନ ପୁଣି ଦେଖାଦେଇଥିଲା ।

ମୋଟ ଉପରେ, ୧୯୦୬ ବେଳକୁ ଜାର୍ ସରକାର କୌଣସି ପ୍ରକାରେ ବିପ୍ଳବୀ ପ୍ରକ୍ରିୟାରେ ଏକ ନିଷ୍ପତ୍ତିମୂଳକ ଗତି ପରିବର୍ତ୍ତନ ଆଣି ପାରିଥିଲା । ରୁଷିଆର ବିଭିନ୍ନ ଅଞ୍ଚଳରେ ଜନସାଧାରଣଙ୍କ ବିପ୍ଳବୀ କ୍ରିୟାକଳାପ ସର୍ବରୁଷୀୟ ଅଭ୍ୟୁତ୍‌ଥାନ ରୂପ ପରିଗ୍ରହ କରି ପାରିଲା ନାହିଁ ଏବଂ ସର୍ବହରାର ଅଭ୍ୟୁତ୍‌ଥାନ କୃଷକ ତଥା ଶ୍ରମିକମାନଙ୍କ ପକ୍ଷରୁ ଯଥେଷ୍ଟ ସମର୍ଥନ ଲାଭ କଲା ନାହିଁ । ଶ୍ରମଜୀବୀ ଜନସାଧାରଣଙ୍କ ବିପ୍ଳବୀ ସଂଗ୍ରାମ ଦ୍ୱାରା ଭୟଭୀତ ହୋଇ ମସ୍କୋରେ ସଂଗ୍ରାମ ଚୂଡ଼ାନ୍ତ ଅବସ୍ଥାରେ ପହଞ୍ଚିଲା ବେଳେ ଜାର୍‌ଶାହୀ ସରକାର ଅନ୍ୟ କେତେକ ପଦକ୍ଷେପ ନେଇଥିଲା । ଏହା ଜନସାଧାରଣଙ୍କୁ ବୁଝାଇଥିଲା ଯେ, ସେମାନେ ସେମାନଙ୍କ ଦାବୀସମୂହକୁ ଶାନ୍ତିପୂର୍ଣ୍ଣ ପଥରେ, "ପାର୍ଲିଆମେଣ୍ଟାରୀ" ପଦ୍ଧତିରେ ହାସଲ କରି ପାରିବେ । ଏହା ଛଡ଼ା ଡୁମା ଜରିଆରେ ଜମିଦାରମାନଙ୍କ ଜମି କୃଷକମାନେ ପାଇ ପାରିବେ ବୋଲି ଏକ ଭ୍ରାନ୍ତ ଧାରଣା ସୃଷ୍ଟି କରିବାକୁ ସରକାର ଚେଷ୍ଟା କରିଥିଲା । ଏହି ଭାବେ ଏହା କୃଷକମାନଙ୍କୁ ବିପ୍ଳବୀ ସଂଗ୍ରାମଠାରୁ ଦୂରେଇ ନେଇ, ଜନସାଧାରଣଙ୍କୁ ଭାଗଭାଗ କରି ଦେଇ ବିପ୍ଳବକୁ ସଂପୂର୍ଣ୍ଣ ରୂପେ ଦମନ କରିଥିଲା ।

ଏହି ଉଦ୍ଦେଶ୍ୟରେ ୧୯୦୫, ଡିସେମ୍ବର ମାସରେ ରାଷ୍ଟ୍ରୀୟ ଡୁମାକୁ ନିର୍ବାଚନ

ସଂପର୍କରେ ଏକ ଆଇନ୍ ଜାରି କରିଥିଲା ଏବଂ ୧୯୦୬ ମସିହାର ପ୍ରାରମ୍ଭରେ ଏହି ନିର୍ବାଚନ ହୋଇଥିଲା । ଏହି ଆଇନ୍ ଅନୁଯାୟୀ ନିର୍ବାଚନ ଗ୍ରୋଟି କୁରିଆରେ—ଜମିଦାର, ସହର, କୃଷକ ଏବଂ ଶ୍ରମିକ—ଅନୁଷ୍ଠିତ ହୋଇଥିଲା ଏବଂ ଏହା ପ୍ରତ୍ୟକ୍ଷ ନଥିଲା କି ସମାନ ବି ନଥିଲା । ପ୍ରଥମେ ନିର୍ବାଚକମାନେ କୁରିଆରେ, ତା'ପରେ ଗୁବେର୍ନିଆରେ ନିର୍ବାଚିତ ହେଉଥିଲେ । ତା'ପରେ ସେମାନେ ଦୁମାକୁ ନିର୍ବାଚିତ କରୁଥିଲେ ପ୍ରତିନିଧି । ଜଣେ ଜମିଦାରର ଗୋଟିଏ ଭୋଟ ସହିତ ସହରର ବୁର୍ଜୁଆର ୩ ଭୋଟ ସହିତ, ୧୫ଟି କୃଷକ ଭୋଟ ଏବଂ ୪୫ଟି ଶ୍ରମିକ ଭୋଟ ସହିତ ସମାନ ଥିଲା । ଜାର୍‌ଶାହୀ କର୍ତ୍ତୃପକ୍ଷ ସେପର୍ଯ୍ୟନ୍ତ କୃଷକମାନଙ୍କୁ "ରାଷ୍ଟ୍ର ଏବଂ ସିଂହାସନର ମୁଖ୍ୟ ଖୁଣ୍ଟି" ବୋଲି ବିଗ୍ଭର କରୁଥିବାରୁ ପ୍ରତିନିଧିମାନଙ୍କ ମଧ୍ୟରୁ ଶତକଡ଼ା ୪୩ ଭାଗ ପ୍ରତିନିଧି ଦୁମାକୁ ନିର୍ବାଚିତ ହୋଇଥିଲେ । ଏସବୁ ସତ୍ତ୍ୱେ ଜାର୍‌ତନ୍ତ୍ର ଏପରି ଏକ ଦୁମା ସହିତ ଚଳି ପାରି ନଥିଲା । କୃଷକ ପ୍ରତିନିଧିମାନେ ଜମି ପାଇଁ ଦାବୀ କରିଥିଲେ । ସରକାର ପକ୍ଷରୁ ଦ୍ୱିଧାହୀନ ଭାବେ ଘୋଷଣା କରାଗଲା ଯେ, ଜମିଦାରଙ୍କ ସଂପତ୍ତି ହସ୍ତାନ୍ତର ଯୋଗ୍ୟ ନୁହେଁ ଏବଂ ପ୍ରରୋଚନା ତଥା ଜାଲିଆତିର ଆଶ୍ରୟ ନେଇ ପ୍ରଥମ ଦୁମାକୁ ଭାଙ୍ଗି ଦିଆଗଲା । (ଏହା ୧୯୦୬ ଏପ୍ରିଲ ୨୭ରୁ ଜୁଲାଇ ୮ ପର୍ଯ୍ୟନ୍ତ ତିଷ୍ଠିଥିଲା) । ତା'ପରେ ଦ୍ୱିତୀୟ ଦୁମାଟି ଗଠିତ ହେଲା ଏବଂ ଏହା ଆଉରି ବାମପନ୍ଥୀରେ ପରିଣତ ହେଲା (୧୯୦୭, ଫେବୃଆରୀ ୨୦ରୁ ଜୁନ୍ ୩ ଯାଏ) । ଏଥି ସାଥେ ସାଥେ ଦୁମାକୁ ନିର୍ବାଚନ ସଂପର୍କରେ ସରକାର ଜାରି କଲା ନୂଆ ଏକ ଆଇନ୍ । ଏହା ଦ୍ୱାରା ତୃତୀୟ ଦୁମାରେ ଜମିଦାର ଏବଂ ବଡ଼ ବଡ଼ ବୁର୍ଜୁଆମାନେ ସୀମାହୀନ ପ୍ରାଧାନ୍ୟ ଲାଭ କରିଥିଲେ (୧୯୦୭ ନଭେମ୍ବରରୁ ୧୯୧୨ ଜୁଲାଇ) ।

୧୯୦୫-୧୯୦୭ର ବିପ୍ଳବ ପରାଜୟ ବରଣ କରିବା ସତ୍ତ୍ୱେ ରୁଷିଆର ଶ୍ରମଜୀବୀମାନଙ୍କ ଜାର୍‌ସାହୀ ସ୍ୱୈରାଗ୍ଭର ଏବଂ ଜମିଦାର ତଥା ବୁର୍ଜୁଆ ନିର୍ଯାତନାରୁ ମୁକ୍ତି ପାଇଁ ସଂଗ୍ରାମ ପକ୍ଷରେ ଏହା ଅତୀବ ଗୁରୁତ୍ୱପୂର୍ଣ୍ଣ ଥିଲା । ଜନସାଧାରଣଙ୍କ ବିପ୍ଳବୀ ସଂଗ୍ରାମ ଦ୍ୱାରା ଏପରି ଏକ ମୁକ୍ତି ଅର୍ଜିତ ହୋଇ ପାରେ ବୋଲି ଏହି ବିପ୍ଳବ ପ୍ରମାଣ କରିଥିଲା ।

ବିପ୍ଳବର ବର୍ଷମାନଙ୍କରେ ବିଭିନ୍ନ ପାର୍ଟିମାନଙ୍କ କ୍ରିୟାକଳାପ ଦର୍ଶାଇ ଦେଇଥିଲା, କେଉଁ ପାର୍ଟି, କେଉଁ ଶ୍ରେଣୀ ପାଇଁ ଲଢ଼ୁଛି ଏବଂ କେଉଁ ଶ୍ରେଣୀର ସ୍ୱାର୍ଥକୁ ରକ୍ଷା କରୁଛି । ବିପ୍ଳବ ଆଉ ଥରେ ପ୍ରମାଣ କଲା ଯେ, ବିପ୍ଳବରେ ବିଜୟ ପାଇଁ ଶ୍ରମିକ ଶ୍ରେଣୀର ଐକ୍ୟ ହେଉଛି ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ସର୍ତ୍ତ । ଶ୍ରମିକ ଶ୍ରେଣୀ ମଧ୍ୟ ବାସ୍ତବ କ୍ଷେତ୍ରରେ ଦର୍ଶାଇ ଦେଇଥିଲା ଯେ, ଏହା ହେଉଛି ବିପ୍ଳବୀ ସଂଗ୍ରାମରେ ଅଗ୍ରଣୀ ଶକ୍ତି ।

ଶ୍ରମଜୀବୀ କୃଷକମାନେ ସେମାନଙ୍କ ଦୋଦୁଲ୍ୟମାନତା ସତ୍ତ୍ୱେ ଶ୍ରମିକ ଶ୍ରେଣୀର ମିତ୍ର ରୂପେ କାର୍ଯ୍ୟ କରିଥିଲେ । ତେବେ, ଶ୍ରମିକ ଏବଂ କୃଷକମାନଙ୍କ ମଧ୍ୟରେ ଦୃଢ଼ ଐକ୍ୟ ପ୍ରତିଷ୍ଠିତ ହୋଇ ପାରି ନଥିଲା ସେତେବେଳେ ଏବଂ ଅନେକ ସମୟରେ ଏହା ସ୍ୱତଃସ୍ଫୂର୍ତ୍ତ ଏବଂ

ଚେତନାହୀନ ଥିଲ । ଶ୍ରମିକ ଏବଂ କୃଷକ ଶକ୍ତିସମୂହ ବିଭକ୍ତ ଏବଂ ଆଶାନୁରୂପ ସଂଗଠିତ ନଥିଲେ ।

ବିପ୍ଳବ ମଧ୍ୟ ଆଉରି ପରିଷ୍କାର ଭାବେ ଦର୍ଶାଇ ଦେଲ ଉଦାରତାବାଦର ମୁଖା ପରିହିତ ମହଲଗୁଡ଼ିକ ସମେତ ବୁର୍ଜୁଆମାନଙ୍କର ପ୍ରତିବିପ୍ଳବୀ ଚରିତ୍ରକୁ ।

ଶ୍ରମଜୀବୀ ଜନତାର ବିପ୍ଳବୀ ସଂଗ୍ରାମ ମଧ୍ୟ ସେମାନଙ୍କ ଜୀବନ ଓ ସଂଗ୍ରାମର ଅବସ୍ଥାରାଜି ଉପରେ କେତେକ ଅସ୍ତିବାଚକ ପ୍ରଭାବ ପକାଇଥିଲ ।

ଖୁବ୍ ବେଶି ନହେଲେ ମଧ୍ୟ ଲେକମାନେ କିଛି ପରିମାଣରେ ରାଜନୈତିକ ଅଧିକାର ଲଭ କରିଥିଲେ । ଆଇନସମ୍ମତ ଟ୍ରେଡ୍‌ୟୁନିଅନ୍ ଏବଂ ଅନ୍ୟାନ୍ୟ ଶ୍ରମିକ ସଂଗଠନସମୂହ ଦେଖାଦେଇଥିଲ । ଦୁମାକୁ ରାଜନୈତିକ ପ୍ରଚାରର ମଞ୍ଚ ରୂପେ ବ୍ୟବହାର କରିବାର ସୁବିଧା ମଧ୍ୟ ରହିଥିଲ । ବିଦ୍ୟମାନ ବ୍ୟବସ୍ଥାକୁ ସମାଲେଚନା କରି ଉଦାରତାବାଦୀ ସମ୍ବାଦପତ୍ରମାନଙ୍କରେ ଅଧିକରୁ ଅଧିକ ପ୍ରବନ୍ଧାଦି ପ୍ରକାଶ ପାଇବାକୁ ଲଗିଲ ।

ତେବେ ମୁଖ୍ୟ କଥାଟି ହେଲ, ଦେଶର ଶ୍ରମିକ ଶ୍ରେଣୀ ଏବଂ ଏହାର ପାର୍ଟି—ବଲ୍‌ଶେଭିକ୍ ପାର୍ଟି ବିପ୍ଳବୀ ଧର୍ମଘଟ ଏବଂ ସଶସ୍ତ୍ର ଧର୍ମଘଟ ମଧ୍ୟରୁ ବ୍ୟାପକ ଅଭିଜ୍ଞତା ଲଭ କରିଥିଲ ଏବଂ ଭବିଷ୍ୟତରେ ନୂତନ ସଂଗ୍ରାମ ପାଇଁ ସେଥିରୁ ଗୁରୁତ୍ୱପୂର୍ଣ୍ଣ ଶିକ୍ଷାମାନ ଲଭ କରିଥିଲ ।

ରୁଷିଆରେ ୧୯୦୫-୧୯୦୭ ବିପ୍ଳବ କେବଳ ଏହି ଦେଶର ଇତିହାସ ପାଇଁ ନୁହେଁ, ବିଶ୍ୱ ଇତିହାସ ପକ୍ଷରେ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଥିଲ । ବିଶ୍ୱ ଇତିହାସରେ ପ୍ରଥମ ଥର ପାଇଁ ଏପରି ଏକ ବୁର୍ଜୁଆ-ଗଣତାନ୍ତ୍ରିକ ବିପ୍ଳବ ଘଟିଲ, ଯେଉଁଥିରେ ନେତୃତ୍ୱ ଥିଲ ଶ୍ରମିକ ଶ୍ରେଣୀ ହାତରେ ଏବଂ ଏହି ଶ୍ରମିକ ଶ୍ରେଣୀ କୃଷକମାନଙ୍କ ସହିତ ମିଳି ଏହି କାର୍ଯ୍ୟାନୁଷ୍ଠାନ କରିଥିଲ । ସର୍ବହରାର ସଂଗ୍ରାମର ପଦ୍ଧତି ରୂପେ ସଶସ୍ତ୍ର ଅଭ୍ୟୁତ୍ଥାନର ଅଭିଜ୍ଞତା ଏବଂ ସୋଭିଏତ୍‌ସମୂହର କ୍ରିୟାକଳାପର ଅଭିଜ୍ଞତାସମୂହ, ଯିଏକି ପରବର୍ତ୍ତୀ ସମୟରେ ଶ୍ରମିକ ଶ୍ରେଣୀ ତଥା ସମସ୍ତ ଶ୍ରମଜୀବୀ ଜନସାଧାରଣଙ୍କ ସରକାରର ରାଷ୍ଟ୍ରୀୟ ରୂପ ପରିଗ୍ରହ କରିଥିଲ—ସମସ୍ତ ଦେଶର ଶ୍ରମଜୀବୀ ଲେକଙ୍କ ବିପ୍ଳବୀ ସଂଗ୍ରାମର ଅଭିଜ୍ଞତା ଭଣ୍ଡାର ପ୍ରତି ମୂଲ୍ୟବାନ ଅବଦାନ ରୂପେ ପରିଗଣିତ ହୋଇଥିଲ । ଏଇଥି ପାଇଁ ଲେନିନ୍ ଏହି ବିପ୍ଳବକୁ ୧୯୧୭ ମସିହାର ମହାନ୍ ଅକ୍ଟୋବର ସମାଜବାଦୀ ବିପ୍ଳବର "ପୂର୍ବାଭିନୟ" ବୋଲି ଆଖ୍ୟାୟିତ କରିଥିଲେ । ୧୯୦୫-୧୯୦୭ର ବିପ୍ଳବ ଦର୍ଶାଇ ଦେଇଥିଲ ଯେ, ବିଶ୍ୱ ବିପ୍ଳବୀ ଆନ୍ଦୋଳନର କେନ୍ଦ୍ର ରୁଷିଆକୁ ସ୍ଥାନାନ୍ତରିତ ହୋଇଯାଇଛି ।

# ୧୩ଶ ପରିଚ୍ଛେଦ

## ପ୍ରତିକ୍ରିୟାରୁ ନୂତନ ବୈପ୍ଳବିକ ଅଭ୍ୟୁତ୍‌ଥାନ — ୧୯ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଏବଂ ୨୦ଶ ଶତାବ୍ଦୀର ପ୍ରାରମ୍ଭରେ ରୁଷ୍ ସଂସ୍କୃତି

୧୯୦୬ରେ ମନ୍ତ୍ରୀ ପରିଷଦର ଚେୟାରମ୍ୟାନ ପିଓତର ଷ୍ଟଲିପିନ୍ ତାଙ୍କ କର୍ମନୀତି ବ୍ୟାଖ୍ୟା କରି କହିଥିଲେ, "ପ୍ରଥମେ ଶାନ୍ତି ସ୍ଥାପନା, ତା'ପରେ ସଂସ୍କାର ।"

ଏହି ଶାନ୍ତି ସ୍ଥାପନ ପରିଣତ ହୋଇଥିଲା ଲଗାମ ଛଡ଼ା ସନ୍ତ୍ରାସରେ । ଜନସାଧାରଣଙ୍କ ପକ୍ଷରୁ ସକ୍ରିୟ ପ୍ରତିରୋଧ ନଥିଲେ ମଧ୍ୟ ଏହି ସନ୍ତ୍ରାସ ବେଆଇନ୍ ରୂପ ଧାରଣ କରିଥିଲା — ମୃତ୍ୟୁ ଦଣ୍ଡ ଏବଂ ବ୍ୟାପକ ଦମନର ଆକାର ନେଇଥିଲା । ଅସଂପୂର୍ଣ୍ଣ ତଥ୍ୟାନୁଯାୟୀ ୧୯୦୭-୧୯୦୯ ମଧ୍ୟରେ ୨୬,୦୦୦ ଲୋକ ରାଜନୈତିକ ବିଗ୍ରହରେ ଦଣ୍ଡିତ ହୋଇଥିଲେ ଏବଂ ସେମାନଙ୍କ ମଧ୍ୟରୁ ୫,୦୦୦ଙ୍କୁ ମୃତ୍ୟୁଦଣ୍ଡ ମିଳିଥିଲା । ଜାର୍‌ତନ୍ତ୍ର ବିଶେଷ ଘୃଣାର ସହିତ ଶ୍ରମିକ ଶ୍ରେଣୀ ଏବଂ ତା'ର ପାର୍ଟି ଉପରେ ଆଘାତ ହାଣିଥିଲା । ୧୯୦୬ରୁ ୧୯୧୨ ମଧ୍ୟରେ ୬୦୦ ଟ୍ରେଡ୍‌ୟୁନିଅନ୍‌କୁ ଏବଂ ସ୍ୱଳ୍ପ କାଳ ମଧ୍ୟରେ ୯୭୮ ସମ୍ବାଦପତ୍ର ଏବଂ ସାମୟିକ ପତ୍ରିକାକୁ ବନ୍ଦ କରି ଦିଆଗଲା ଏବଂ ବଲ୍‌ଶେଭିକ୍ ସଂଗଠନର ନେତାମାନେ ବନ୍ଦୀ ଏବଂ ନିର୍ବାସିତ ହେଲେ ।

ତେବେ ଜାର୍‌ତନ୍ତ୍ର ଏବଂ ଜମିଦାରମାନେ ହୃଦୟଙ୍ଗମ କରିଥିଲେ ଯେ, ବିପ୍ଳବୀ ଶକ୍ତିସମୂହ ବିରୁଦ୍ଧରେ ବାଛବିଗ୍ରହହୀନ ନିର୍ମମ ଅତ୍ୟାଚାର ଚଳେଇ ରୁଷିଆରେ ପୁଣି ବିପ୍ଳବ ପୂର୍ବ ଅବସ୍ଥାକୁ ଫେରିଯିବା ଅସମ୍ଭବ, ତେଣୁ ରୁଷିଆରେ ପୁଞ୍ଜିବାଦର ବିକାଶ ସହିତ ନିଜକୁ ଖାପ ଖୁଆଇ ନେବା ଦରକାର ଏବଂ ଦେଶରେ ସେମାନଙ୍କ ରାଜନୈତିକ ଓ ଅର୍ଥନୈତିକ ପ୍ରାଧାନ୍ୟ ବଜାଏ ରଖିବା ନିମିତ୍ତ ସହର ଏବଂ ଗ୍ରାମାଞ୍ଚଳର ବୁର୍ଜୁଆମାନଙ୍କୁ ସେମାନଙ୍କ ପାଖକୁ ଟାଣି ଆଣିବା ଉଚିତ । ଏହି ଲକ୍ଷ୍ୟ ନେଇ ଜାର୍‌ସାହୀ ସରକାର ବଡ଼ ବଡ଼ ବୁର୍ଜୁଆ ଏବଂ ଅର୍ଥପତି ବୁର୍ଜୁଆ ସ୍ୱାର୍ଥକୁ ରକ୍ଷା କରିଥିଲା । ରୁଷିଆର ଅନ୍ୟତମ ବୃହତ୍ ଜମିଦାର ଷ୍ଟଲିପିନ୍‌ଙ୍କ ନେତୃତ୍ୱରେ ଏହି ସରକାର ତା'ର କୃଷି ନୀତିସମୂହ କାର୍ଯ୍ୟକାରୀ କରିବାକୁ ଯାଇ ଏହି ଲକ୍ଷ୍ୟ ଅନୁସରଣ କରିଥିଲା ।

ଷ୍ଟଲିପିନ୍‌ଙ୍କ ପ୍ରତିକ୍ରିୟାର ବର୍ଷଗୁଡ଼ିକରେ ଦେଖାଦେଇଥିଲା ଶିଳ୍ପ କ୍ଷେତ୍ରରେ, ବିଶେଷ

କରି ଭାରୀ ଶିଳ୍ପ କ୍ଷେତ୍ରରେ ପରିଷ୍କାର ଭାବେ ଅନୁଭୂତ ୧୯୦୬-୧୯୦୯ରେ ମାନ୍ଦାବସ୍ଥା । କାରଖାନାମାନଙ୍କରେ କେତେକ ବିପ୍ଲବ ପୂର୍ବ ନିୟମ ପୁଣି ଚାଲୁ ହୋଇଥିଲା, କର୍ମ ଦିବସର ସମୟ ବୃଦ୍ଧି ପାଇଥିଲା, ମଜୁରି କମିଥିଲା ଏବଂ ଯେତେବେଳେ ପାରି ସେତେବେଳେ ଜରିମାନା ଆଦାୟ କରାଗଲା । ଶିଳ୍ପପତିମାନଙ୍କ ତରଫରୁ ଏତାଦୃଶ ଆକ୍ରମଣକୁ ପ୍ରତିରୋଧ କରୁଥିବା ଶ୍ରମିକମାନଙ୍କୁ ଛଟେଇ କରାଗଲା ଏବଂ ସନ୍ଦେହୀ ଅପରାଧୀମାନଙ୍କ ତାଲିକା ଭୁକ୍ତ କରାଗଲା ଏବଂ ପରେ ସେମାନଙ୍କୁ ଅନ୍ୟ ଶିଳ୍ପୋଦ୍ୟୋଗମାନଙ୍କରେ ନିଆଗଲା ନାହିଁ ।

ପୁଞ୍ଜିପତିମାନଙ୍କ ବିରୁଦ୍ଧରେ ଦୁଃଖକର ଅବସ୍ଥାରାଜି ମଧ୍ୟରେ (ଶିଳ୍ପ କ୍ଷେତ୍ରରେ ମାନ୍ଦାବସ୍ଥା ଏବଂ ବେକାରି) ଶ୍ରମିକମାନେ ସଂଗ୍ରାମ କରୁଥିଲେ ମଧ୍ୟ ୧୯୦୫ ପୂର୍ବ ଅପେକ୍ଷା ୧୯୦୬-୧୯୦୯ରେ ବାର୍ଷିକ ଧର୍ମଘଟର ସଂଖ୍ୟା ଥିଲା ପ୍ରାୟ ଦୁଇ ଗୁଣ ଅଧିକ । ଧର୍ମଘଟକାରୀମାନଙ୍କ ବିରୁଦ୍ଧରେ ପୁଞ୍ଜିପତିମାନଙ୍କୁ ସଂଗ୍ରାମ କରିବାରେ ଜାର୍‌ସାହୀ ସରକାର ସର୍ବତୋଭାବେ ସାହାଯ୍ୟ କରିଥିଲା : ସେମାନେ କଳକାରଖାନାକୁ ଗୋଇନ୍ଦା ଏବଂ ଦଲାଲ ପ୍ରରୋଚକମାନଙ୍କୁ ପଠାଉଥିଲେ ଶ୍ରମିକ-ବିପ୍ଳବୀମାନଙ୍କୁ ଧରିବା ପାଇଁ, ଧର୍ମଘଟ ସଂଗଠକମାନଙ୍କୁ ଗିରଫ କରୁଥିଲେ, ଶ୍ରମିକମାନଙ୍କ ସଭା ସମିତି ଆଦିକୁ ଭାଙ୍ଗି ଦେଉଥିଲେ ।

୧୯୦୬ ଏବଂ ୧୯୧୦ ମସିହାର କୃଷି ସଂକ୍ରାନ୍ତ ଆଇନ୍‌ସମୂହ ଅନୁଯାୟୀ ଭୂମିମାହାଲଗୁଡ଼ିକ ଉପରେ କୌଣସି ହସ୍ତକ୍ଷେପ କରା ନଯାଇ ସର୍ବସାଧାରଣ କୃଷକ ଜମିକୁ ବଳପୂର୍ବକ ଭାଗଭାଗ କରି ଦିଆଯାଇଥିଲା । ପ୍ରତ୍ୟେକ କୃଷକ ତାକୁ ମିଳୁଥିବା ଜମିକୁ ତା'ର ବ୍ୟକ୍ତିଗତ ସଂପତ୍ତି ବୋଲି ଦାବି କରି ପାରୁଥିଲା । ଗ୍ରାମ୍ୟ ବୁର୍ଜୁଆଗଣ – କୁଲାକ୍‌ମାନେ (ଧନୀ ଚାଷୀ) କମ୍ୟୁନ୍ ପରିତ୍ୟାଗ କଲା ବେଳେ ସର୍ବୋତ୍କୃଷ୍ଟ ଜମିସବୁ ପାଉଥିଲେ ଏବଂ ପୁଞ୍ଜିବାଦୀ ଢାଞ୍ଚାର ଖମାର (ଖୁଟୋର୍) ପ୍ରତିଷ୍ଠା କରିଥିଲେ । ଏହା ଛଡ଼ା ସେମାନେ ସରକାରୀ ବ୍ୟାଙ୍କ୍‌ରୁ ପାଉଥିଲେ ଋଣ ଏବଂ ତା ଦ୍ୱାରା ସେମାନେ ସ୍ୱଳ୍ପ ମୂଲ୍ୟରେ ଗରିବ କୃଷକମାନଙ୍କର ଜମିକୁ କିଣି ନେଉଥିଲେ, ଯେଉଁମାନେ ବାଧ୍ୟ ହୋଇ ସେମାନଙ୍କ ଜୋତକୁ ବିକି ଦେଇ ସହରକୁ ଚାଲି ଯାଉଥିଲେ ଜୀବିକା ନିର୍ବାହ କରିବାକୁ । କୃଷି ସଂସ୍କାରକୁ ସହଜରେ କାର୍ଯ୍ୟକାରୀ କରିବା ନିମିତ୍ତ ସରକାର ତରଫରୁ ବ୍ୟାପକ ଆକାରରେ ଭୂମିହୀନ କୃଷକମାନଙ୍କୁ, "ବିଶୃଙ୍ଖଳାକାରୀ ଉପାଦାନ" ବୋଲି କହି ସ୍ଥାନାନ୍ତରଣ କରିଥିଲା ସାଇବେରିଆ ଏବଂ ମଧ୍ୟ ଏସିଆର ଜନବସତି ବିରଳ ଅଞ୍ଚଳଗୁଡ଼ିକୁ । ଏହି ଭାବେ କୃଷକ କମ୍ୟୁନ୍‌ଗୁଡ଼ିକୁ ଧ୍ୱଂସ କରି ଦିଆଗଲା ଏବଂ ହଠାତ୍ କୃଷକମାନଙ୍କ ମଧ୍ୟରେ ସାମାଜିକ ସ୍ତରବିନ୍ୟାସ ବୃଦ୍ଧି ପାଇଲା । ଏଥି ସାଥେ ସାଥେ ସରକାର ଯାହାକୁ ନିଜର ମିତ୍ର ବୋଲି ବିଚାର କରୁଥିଲା, ସେଇ ଗ୍ରାମ୍ୟ ବୁର୍ଜୁଆ ଦ୍ରୁତ ଗତିରେ ବୃଦ୍ଧି ପାଇଲା । ୧୯୦୮ ମସିହାରେ ସ୍ତଲିପିନ୍ ପ୍ରକାଶ୍ୟରେ

ଘୋଷଣା କରିଥିଲେ ଯେ, ସରକାର "ଦୃଢ଼ ଏବଂ ଶକ୍ତ" ଉପରେ ବାଜି ରଖୁଛି, ଯିଏକି "ବିପ୍ଳବୀ ଆନ୍ଦୋଳନର ବିକାଶ ପଥରେ ପ୍ରତିବନ୍ଧକ ହୋଇ ଛିଡ଼ା ହେବ" ।

କିନ୍ତୁ କୃଷକମାନଙ୍କ ମଧ୍ୟରେ ସ୍ତରବିନ୍ୟାସକୁ ବୃଦ୍ଧି କରି ଜାର୍‌ତନ୍ତ୍ର ଗ୍ରାମ୍ୟ ଜୀବନ କ୍ଷେତ୍ରରେ ମୁଖ୍ୟ ଦ୍ୱନ୍ଦ୍ୱ – କୃଷକ ଏବଂ ଜମିଦାରମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱକୁ ଲୋପ କରି ପାରି ନଥିଲା । ତେଣୁ କୃଷକ ସଂପ୍ରଦାୟ ସମେତ ଦେଶର ସମଗ୍ର ଶ୍ରମଜୀବୀ ଜନତା ପାଇଁ ଜାର୍‌ତନ୍ତ୍ର ପ୍ରଥମ ନମ୍ବର ଶତ୍ରୁ ହୋଇ ରହିଗଲା ।

୧୯୧୦ ମସିହାର ମଧ୍ୟ ଭାଗରେ ରୁଷିଆ ପ୍ରବେଶ କଲା ଅର୍ଥନୈତିକ ଉନ୍ନତିର ଏକ ପର୍ଯ୍ୟାୟରେ । ୧୯୧୩ ମସିହାରେ ବିଶ୍ୱ ଯୁଦ୍ଧର ପୂର୍ବ ବର୍ଷରେ ରୁଷିଆର ପୁଞ୍ଜିବାଦ ତା'ର ସର୍ବୋଚ୍ଚ ଶିଖରରେ ପହଞ୍ଚିଥିଲା । ବିଶ୍ୱ ଶିଳ୍ପ ଉତ୍ପାଦନ କ୍ଷେତ୍ରରେ ରୁଷିଆର ଅଂଶ ଥିଲା ପଞ୍ଚମ ସ୍ଥାନରେ (ଫ୍ରାନ୍‌ସ ପରେ), କିନ୍ତୁ କେତେକ ଅଗ୍ରଣୀ ଶିଳ୍ପରେ ଏହା ଥିଲା ଫ୍ରାନ୍‌ସଠାରୁ ଆଗରେ । ବଡ଼ ବଡ଼ ଶିଳ୍ପୋଦ୍ୟୋଗ କ୍ଷେତ୍ରରେ ଶ୍ରମିକମାନଙ୍କର ଠୁଳୀକରଣ ଦୃଷ୍ଟିରୁ ରୁଷିଆର ସ୍ଥାନ ଥିଲା ପ୍ରଥମ : ଦେଶର ଶ୍ରମିକମାନଙ୍କ ମଧ୍ୟରୁ ଅର୍ଦ୍ଧେକ ନିଯୁକ୍ତ ଥିଲେ ସେଇସବୁ ଉଦ୍ୟୋଗମାନଙ୍କରେ, ଯେଉଁଠି ୫୦୦ କିମ୍ବା ତଦୂର୍ଦ୍ଧ୍ୱ ଶ୍ରମିକ କାର୍ଯ୍ୟ କରୁଥିଲେ । ଏଦିଗରୁ ଆମେରିକା ଯୁକ୍ତ ରାଷ୍ଟ୍ରର ଏକତୃତୀୟାଂଶ ଶ୍ରମିକ ସେଭଳି ଉଦ୍ୟୋଗମାନଙ୍କରେ ନିଯୁକ୍ତ ଥିଲେ ।

କୋଇଲା ଖଣି, ଇସ୍‌ପାତ, ବସ୍ତ୍ରଶିଳ୍ପ ଏବଂ ଚିନିର ଉତ୍ପାଦନ ଦ୍ରୁତ ଗତିରେ ବୃଦ୍ଧି ପାଇବାକୁ ଲାଗିଥିଲା । ଏକଚେଟିଆ ସଂଘଗୁଡ଼ିକ ବହୁ ଶିଳ୍ପଶାଖା ପରିବହନ ସିଣ୍ଡିକେଟଗୁଡ଼ିକରେ ପ୍ରଭୁତ୍ୱ ବିସ୍ତାର କରିଥିଲେ, ସେସବୁ ମଧ୍ୟରେ ଥିଲେ ପ୍ରୋଦାମେଟ (ଧାତୁ ଉତ୍ପାଦନ କ୍ଷେତ୍ରରେ), ପ୍ରଦୁଗୋଲ (କୋଇଲା ଖଣି କ୍ଷେତ୍ରରେ), ଟ୍ରଷ୍ଟ ଏବଂ କନ୍‌ସର୍ଣ୍ଣସ୍ । ବ୍ୟାଙ୍କର ଭୂମିକା ଏବଂ ଶିଳ୍ପ ସହିତ ସେସବୁର ମିଶ୍ରଣ ବୃଦ୍ଧି ପାଇଥିଲା ! ରୁଷୀୟ ପୁଞ୍ଜିପତି ଏବଂ ରୁଷିଆର ଅର୍ଥନୀତିରେ ପୁଞ୍ଜି ଲଗି୍ନ କରିଥିବା ବିଦେଶୀ ପୁଞ୍ଜିପତିମାନଙ୍କର ଲାଭର ମାତ୍ରା ବୃଦ୍ଧି ପାଇଥିଲା ଜନସାଧାରଣଙ୍କର ଶୋଷଣ ଏବଂ ଦରିଦ୍ରତା ହେତୁ । ଲୋକଙ୍କ ଜୀବନଧାରଣର ମୂଲ୍ୟ ବୃଦ୍ଧି ପାଇଲା ଏବଂ ଶ୍ରମିକମାନଙ୍କ ଅବସ୍ଥା ଆଉରି ଖରାପ ଆଡ଼କୁ ଗଲା ।

ଶିଳ୍ପ କ୍ଷେତ୍ରରେ ଅଭିବୃଦ୍ଧିର ପର୍ଯ୍ୟାୟ ଆରମ୍ଭ ହେବା ସାଥେ ସାଥେ ଆକ୍ରମଣାତ୍ମକ ଧର୍ମଘଟ ଆରମ୍ଭ କରିବା ସମ୍ଭବ ହୋଇଥିଲା । ୧୯୧୦, ଗ୍ରୀଷ୍ମକାଳରେ ମସ୍କୋ ତଥା ମସ୍କୋ ଗୁବେର୍ଣ୍ଣିଆର ଶ୍ରମିକମାନେ ଏହା ଆରମ୍ଭ କରି ଦେଇଥିଲେ । ଏହାର ପରବର୍ଷ, ଧର୍ମଘଟକାରୀମାନଙ୍କ ସଂଖ୍ୟା ଦୁଇଗୁଣ ବୃଦ୍ଧି ପାଇଥିଲା ଏବଂ ଏହି ସଂଖ୍ୟା ୧୦୫,୦୦୦ରେ ପହଞ୍ଚିଥିଲା । ଶ୍ରମିକ ଶ୍ରେଣୀର ସଂଗ୍ରାମ କରିବାର ଦୃଢ଼ ସଂକଳ୍ପକୁ ଭାଙ୍ଗିବାକୁ ଯାଇ ପ୍ରତିକ୍ରିୟା ବିଫଳ ହେଲା ।

ଗ୍ରାମାଞ୍ଚଳରେ ଜମିଦାରମାନଙ୍କର ପୂର୍ଣ୍ଣ କ୍ଷମତା ଅକ୍ଷୁଣ୍ଣ ରହିଥିଲା, କୁଲାକ୍

ପରିବାରମାନଙ୍କର ସଂଖ୍ୟା ଏବଂ ଶକ୍ତି ବୃଦ୍ଧି ପାଇଲା, ମଧ୍ୟବିତ୍ତ ଚାଷୀମାନେ ଗରିବ ହୋଇ ପଡ଼ିଲେ ଏବଂ କୃଷକମାନେ ସେମାନଙ୍କ ଜମିଜମା ହରେଇ ବହୁସଂଖ୍ୟାରେ ସର୍ବହରାରେ ଦ୍ରୁତ ପରିଣତ ହେଲେ । ସମସ୍ତ କୃଷକଙ୍କର ମୁଖ୍ୟ ଦାବି – ଜମିଦାରମାନଙ୍କ ଜମି ସେମାନଙ୍କୁ ଦିଆଯିବ ଦରକାର – ଅପୂର୍ଣ୍ଣ ରହିଗଲା । ଯେଉଁସବୁ କୃଷକ ଅନ୍ୟତ୍ର ଚାଲିଯାଇ ବାସ କରୁଥିଲେ, ସେମାନଙ୍କ ମଧ୍ୟରୁ ଅର୍ଦ୍ଧେକ ବାଧ୍ୟ ହୋଇ ଫେରି ଆସିଥିଲେ ସେମାନଙ୍କ ପୂର୍ବତନ ବାସସ୍ଥାନକୁ । ୧୯୧୧-୧୯୧୨ରେ ରୁଷିଆର ଗ୍ରାମାଞ୍ଚଳରେ ଦେଖାଦେଇଥିବା ଦୁର୍ଭିକ୍ଷ, ଯେଉଁଥିରେ ୩ କୋଟି ଚାଷୀ ଦୁଃଖକଷ୍ଟ ଭୋଗିଥିଲେ, ପ୍ରମାଣ କଲା ଯେ, ଷ୍ଟଲିପିନ୍‌ଙ୍କ କୃଷି ସଂସ୍କାର ବିଫଳ ହୋଇଛି । କୃଷକମାନଙ୍କ ମଧ୍ୟରେ ଅସନ୍ତୋଷର ନିଆଁ ଜଳିବାକୁ ଲାଗିଲା । ୧୯୧୦ ମସିହାରେ କୃଷକମାନଙ୍କ ତରଫରୁ ୬,୦୦୦ ପ୍ରତିବାଦର ଘଟଣା ରେକର୍ଡବଦ୍ଧ ହୋଇଥିବାର ଜଣାଯାଏ । କୃଷକମାନେ ଜମିଦାର ଏବଂ କୁଲାକ୍‌ମାନଙ୍କ ଘର ଦ୍ୱାର ପୋଡ଼ି ଦେଲେ ଏବଂ ଜମିଦାରମାନଙ୍କ ଜଙ୍ଗଲକୁ କାଟି ପକାଇଲେ ।

୧୯୧୨, ଏପ୍ରିଲ ୪ ତାରିଖ ଦିନ ଲେନା ନଦୀ କୂଳବର୍ତ୍ତୀ ସୁନାଖଣିର ଧର୍ମଘଟକାରୀ ଶ୍ରମିକମାନଙ୍କ ଉପରେ ନିର୍ମମ ଗୁଳି ଚାଳନା ଘଟଣାଟି ରୁଷିଆର ଶ୍ରମିକମାନଙ୍କୁ ଉତ୍‌ଥିତ କରି ଦେଇଥିଲା । ଦେଶ ସାରା ଧର୍ମଘଟ ଏବଂ ପ୍ରତିବାଦ ସଭାମାନ ସଂଗଠିତ ହେଲା ।

ମୁଖ୍ୟ ଶିଳ୍ପ କେନ୍ଦ୍ରଗୁଡ଼ିକରେ ଶ୍ରମିକମାନେ ସଂଗ୍ରାମ ଆରମ୍ଭ କରି ଦେଲେ । ପ୍ରାୟ ୩୦୦,୦୦୦ ଶ୍ରମିକ ପ୍ରତିବାଦ ଜଣାଇଥିଲେ ।

ଏହି ଭାବେ ଦେଶରେ ଆରମ୍ଭ ହୋଇଥିଲା ନୂଆ ଏକ ବୈପ୍ଳବିକ ଜୁଆର । ୧୯୦୫ ଭଳି ଏହାର ମୁଖ୍ୟ ଚାଳିକା ଶକ୍ତି ଥିଲା ସର୍ବହରା । ଗଣ ବିପ୍ଳବୀ ଧର୍ମଘଟ, ଅର୍ଥନୈତିକ, ରାଜନୈତିକ, ଖାଣ୍ଟି ସର୍ବହରା ଏବଂ ଜାତୀୟ ଲକ୍ଷ୍ୟସମୂହର ପ୍ରତ୍ୟକ୍ଷ ସମ୍ମିଶ୍ରଣ – ଆନ୍ଦୋଳନର ପଦ୍ଧତି ଏବଂ ଉଦ୍ଦେଶ୍ୟ ପୁଣି ଥରେ ସଂଗ୍ରାମର ମୁଖ୍ୟ ରୂପ ହୋଇ ଉଠିଥିଲା ।

ବଲ୍‌ଶେଭିକ୍‌ମାନଙ୍କର ପ୍ରଭାବାଧୀନରେ ସର୍ବହରାମାନଙ୍କର ସଂଗ୍ରାମ ବିକାଶ ଲାଭ କରୁଥିଲା । ବେଆଇନୀ ପାର୍ଟି ଉପରେ, ସର୍ବୋପରି, ନିର୍ଭର କରି, ଯେକୌଣସି ଆଇନସମ୍ମତ ସମ୍ଭାବନା ତଥା ସଂଗଠନର ବିଶେଷ କରି ଦେଶବ୍ୟାପୀ ଆଇନସମ୍ମତ ସମ୍ବାଦପତ୍ରର ପୂର୍ଣ୍ଣ (ବଲ୍‌ଶେଭିକ୍ ସମ୍ବାଦପତ୍ର "ପ୍ରାଭଦାର" ପ୍ରଥମ ସଂଖ୍ୟା ପ୍ରକାଶ ପାଇଥିଲା ୧୯୧୨, ମେ ମାସ ୫ ତାରିଖ) ଉପଯୋଗ କରି, ଚତୁର୍ଥ ଡୁମାରେ ଏକ ସ୍ୱାଧୀନ ଗୋଷ୍ଠୀ ହିସାବରେ କାର୍ଯ୍ୟ କରି, ବଲ୍‌ଶେଭିକ୍‌ମାନେ ଆନ୍ଦୋଳନକୁ ନୂଆ ଏକ ପର୍ଯ୍ୟାୟକୁ ନେଇଯିବାରେ, ଏହାକୁ ସୁସଂଗଠିତ ଏବଂ ସଂଗ୍ରାମକୁ ବିଭିନ୍ନ ରୂପ ଦେବାରେ ସଫଳ ହୋଇଥିଲେ । ଗୋଟିଏ ଗୋଟିଏ ଶିଳ୍ପୋଦ୍ୟୋଗରେ ଧର୍ମଘଟସମୂହକୁ ମିଳିତ

ଧର୍ମଘଟରେ ପରିଣତ କରାଯାଇଥିଲା, ସହରମାନଙ୍କରେ ସାଧାରଣ ଧର୍ମଘଟକୁ କେତେକ ଶିଳ୍ପାଞ୍ଚଳର ଏକକାଳୀନ ଧର୍ମଘଟରେ ପରିଣତ କରାଗଲା । ସମସ୍ତ ସ୍ଥାନରେ ଧର୍ମଘଟ ସହିତ ସଭା ଏବଂ ବିକ୍ଷୋଭ ପ୍ରଦର୍ଶନ ଏକତ୍ର ଅନୁଷ୍ଠିତ ହେଉଥିଲା ।

୧୯୦୫ ତୁଳନାରେ ସୈନ୍ୟବାହିନୀ ଏବଂ ନୌବାହିନୀରେ ବିପ୍ଳବୀମାନେ ଅଧିକ ସକ୍ରିୟ ହୋଇ ଉଠିଥିଲେ । ବାଲ୍‌ଟିକ୍ ନୌବହରରେ ଏକ ଅଭ୍ୟୁତ୍‌ଥାନର ପ୍ରସ୍ତୁତି ପାଇଁ ୫୨ ଜଣ ନୌସେନାଙ୍କୁ ମୃତ୍ୟୁ ଦଣ୍ଡ ଦେବାର ଭୟ ଦେଖାଇବାର ଜବାବରେ ସର୍ବହରାମାନେ ୧ ଲକ୍ଷ ଶ୍ରମିକଙ୍କର ଧର୍ମଘଟ କରିଥିଲେ । ସରକାର ବାଧ୍ୟ ହୋଇଥିଲା ପଶ୍ଚାଦ୍‌ପସରଣ କରିବାକୁ : କୌଣସି ଲୋକକୁ ମୃତ୍ୟୁ ଦଣ୍ଡ ଦିଆଗଲା ନାହିଁ ।

ତୁଳନାମୂଳକ ଭାବେ ଶାନ୍ତିପୂର୍ଣ୍ଣ ଧର୍ମଘଟ ଏବଂ ବିକ୍ଷୋଭ ପ୍ରଦର୍ଶନର ସମୟର ଅବସାନ ଘଟିଥିଲା । ଜୁଲାଇ ୩ ତାରିଖ ଦିନ ସେଣ୍ଟ୍ ପିଟର୍ସବୁର୍ଗ୍‌ର ପୁଟିଲୋଭ୍ କାରଖାନାରେ ଅନୁଷ୍ଠିତ ୧୨,୦୦୦ ଶ୍ରମିକଙ୍କ ସଭା ଉପରେ ପୁଲିସ୍ ଗୁଳି ଚାଳନା କରିଥିଲା । ଏହାର ପରଦିନ—୯୦,୦୦୦ ଏବଂ ଜୁଲାଇ ୮ ତାରିଖ ଦିନ ୧୫୦,୦୦୦ ଲୋକେ ସେଠାରେ ଧର୍ମଘଟ କରିଥିଲେ । ପୁଲିସ୍ ସହିତ ବହୁ ସଂଘର୍ଷ ଘଟିଥିଲା ଏବଂ ବାରିକେଡ୍‌ମାନ ଗଢ଼ାଯାଇଥିଲା ।

୧୯୧୪, ଗ୍ରୀଷ୍ମକାଳ ବେଳକୁ ବିପ୍ଳବୀ ଧର୍ମଘଟସମୂହର ପରିସର ୧୯୦୫ ଅପେକ୍ଷା ବଢ଼ି ଯାଇଥିଲା । ତେବେ ଅଧିକାଂଶ ବିପ୍ଳବୀ କ୍ରିୟାକଳାପ ଘଟିଥିଲା ମୁଖ୍ୟ ଶିଳ୍ପ କେନ୍ଦ୍ରଗୁଡ଼ିକରେ—ସେଣ୍ଟ୍ ପିଟର୍ସବୁର୍ଗ୍, ମସ୍କୋ, ରିଗା ଏବଂ ବାକୁରେ । ଅନ୍ୟାନ୍ୟ ଅଞ୍ଚଳରେ ଶ୍ରମିକମାନେ ସଂଗ୍ରାମ ପାଇଁ ଜାଗ୍ରତ ହେଉଥିଲା ବେଳେ ଛାମୁବାହିନୀ ଆଗକୁ ମାଡ଼ି ଚାଲିଥିଲା । ଗ୍ରାମାଞ୍ଚଳମାନଙ୍କରେ ଫାଟି ପଡ଼ୁଥିବା ଅସନ୍ତୋଷ ଗଣ ବିକ୍ଷୋଭର ରୂପ ନେଇ ପାରିଲା ନାହିଁ । ଅବସ୍ଥାକୁ ଧୀର ସ୍ଥିର ଭାବେ ବିଚାର କରି ବଲ୍‌ଶେଭିକ୍‌ମାନେ ଡାକ ଦେଲେ ସଂଗଠିତ ଭାବେ ପ୍ରତିବାଦ ଆନ୍ଦୋଳନକୁ ସ୍ତବ୍ଧ କରିବା ପାଇଁ । ରୁଷ୍ ସୋସାଲ-ଡେମୋକ୍ରାଟିକ୍ ଶ୍ରମିକ ପାର୍ଟିର ସେଣ୍ଟ୍ ପିଟର୍ସବୁର୍ଗ୍ କମିଟିର ସୁନିର୍ଦ୍ଦିଷ୍ଟ ସ୍ୱର ଶୁଣାଗଲା ଏତିକିବେଳେ : "ସମଗ୍ର ଶାସକ ଗୋଷ୍ଠୀର ବିରାଟ ଗଣବିଚାରର ଦିନମାନ ଆଉ ଡେରି ନାହିଁ !"

ପ୍ରଥମ ବିଶ୍ୱଯୁଦ୍ଧ ଲାଗିଯିବା ଫଳରେ ବିପ୍ଳବୀ ଅଭ୍ୟୁତ୍‌ଥାନର ଆଉରି ଅଗ୍ରଗତି ପ୍ରତିହତ ହେଲା ।

ଏକ ଦିଗରେ ଶିଳ୍ପ ବିକାଶ ଏବଂ ଅନ୍ୟ ଦିଗରେ ମୁକ୍ତି ଆନ୍ଦୋଳନର ଅଭିବୃଦ୍ଧି ଏବଂ ବିପ୍ଳବୀ ଅଭ୍ୟୁତ୍‌ଥାନର ଯୁଗ ମଧ୍ୟକୁ ରୁଷିଆର ଅନୁପ୍ରବେଶ ୧୯ଶ ଏବଂ ୨୦ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଦେଶର ସାଂସ୍କୃତିକ ଜୀବନ ଉପରେ ଏକ ନିଷ୍ପତ୍ତିମୂଳକ

ପ୍ରଭାବ ପକାଇଥିଲା । ସେଇ ସମୟରେ ଏହାର ସୂଚନା ସ୍ୱରୂପ ପ୍ରାଥମିକ, ମାଧ୍ୟମିକ ତଥା ଉଚ୍ଚ ଶିକ୍ଷାର ପରିସର ଉଲ୍ଲେଖନୀୟ ଭାବେ ବୃଦ୍ଧି ପାଇଥିଲା । ୧୮୭୪ ମସିହାରେ ପ୍ରାପ୍ତ ବୟସ୍କମାନଙ୍କ ମଧ୍ୟରୁ ମାତ୍ର ଶତକଡ଼ା ୨୧ ଜଣ ସାକ୍ଷର ଥିଲେ, କିନ୍ତୁ ଏହି ଶତାବ୍ଦୀର ପ୍ରାରମ୍ଭରେ ସେ ସଂଖ୍ୟା ଶତକଡ଼ା ୫୦ ଭାଗରେ ପହଞ୍ଚିଥିଲା । ଜିଲ୍ଲାବୋର୍ଡ ଅଧୀନସ୍ଥ ପ୍ରାଥମିକ ସ୍କୁଲଗୁଡ଼ିକ ଗ୍ରାମ୍ୟ ପିଲମାନଙ୍କ ପଢ଼ିବା ଲେଖିବା କ୍ଷେତ୍ରରେ ବ୍ୟାପକ କାର୍ଯ୍ୟ କରିଥିଲେ ।

ମାଧ୍ୟମିକ ସାଧାରଣ ସ୍କୁଲ ଏବଂ ଉଚ୍ଚତର ସ୍କୁଲଗୁଡ଼ିକର ସଂଖ୍ୟା ବୃଦ୍ଧି ପାଇଥିଲା । ୧୮୯୬ ମସିହାରେ ଜନଶିକ୍ଷା ମନ୍ତ୍ରଣାଳୟ ବ୍ୟବସ୍ଥାରେ ବିଭିନ୍ନ କିସମର ୮୯୮ଟି ମାଧ୍ୟମିକ ସ୍କୁଲ ଥିଲା ବେଳେ ୧୯୧୫ ମସିହାରେ ୧୭୯୮ଟି ହୋଇଥିଲା । ପ୍ରଥମ ବିଶ୍ୱ ଯୁଦ୍ଧର ପ୍ରାକ୍କାଳରେ ଦେଶର ୯୩ ଉଚ୍ଚ ଶିକ୍ଷା ପ୍ରତିଷ୍ଠାନରେ ୧୧୭,୦୦୦ ଛାତ୍ର ଅଧ୍ୟୟନ କରୁଥିଲେ ।

୧୯ଶ ଶତାବ୍ଦୀର ମଧ୍ୟ ଭାଗରେ ନାରୀ ଶିକ୍ଷା କ୍ଷେତ୍ରରେ ମଧ୍ୟ ଉନ୍ନତି ଘଟିଥିଲା । ୧୮୫୯ ମସିହାରେ ବିଶ୍ୱବିଦ୍ୟାଳୟମାନଙ୍କରେ ମହିଳାମାନଙ୍କୁ ଶିକ୍ଷା ଲାଭ କରିବାକୁ ଅନୁମତି ଦିଆଯାଇଥିଲା, ଯଦିଓ ସେମାନେ ନିୟମିତ ଛାତ୍ରୀ ଭାବେ ନାମ ଲେଖାଇ ପାରୁ ନଥିଲେ । ଏହାର ଦଶ ବର୍ଷ ପରେ ମସ୍କୋ ଏବଂ ସେଣ୍ଟ୍ ପିଟର୍ସବୁର୍ଗ୍‌ରେ ମହିଳାମାନଙ୍କ ପାଠ୍ୟକ୍ରମ ଶିକ୍ଷା ଦିଆଗଲା ।

ପୁସ୍ତକ ମୁଦ୍ରଣ ଏବଂ ସାମୟିକ ପତ୍ରପତ୍ରିକା ପ୍ରକାଶନ କ୍ଷେତ୍ରରେ ଅଗ୍ରଗତି ଦେଖାଦେଲା ଏବଂ ସେ କ୍ଷେତ୍ରରେ ବିପୁଳ ଲଗ୍ନି ମଧ୍ୟ ହେଲା । ୧୯୧୩ ମସିହାରେ ଏହା ଫଳରେ ରୁଷିଆରେ କେବଳ ରୁଷ୍ ଭାଷାରେ ପ୍ରକାଶ ପାଇଥିଲା ୧୦୬.୮ ନିୟୁତ ପୁସ୍ତକ, ଯା'ର ମୂଲ୍ୟ ଥିଲା ୪୦ ନିୟୁତ ରୁବଲରୁ ଅଧିକ, ୧୯୬୩ ପତ୍ରପତ୍ରିକା ଏବଂ ୮୭୪ଟି ସମ୍ବାଦପତ୍ର । ସବୁଠାରୁ ବିଖ୍ୟାତ ପ୍ରକାଶକ ଥିଲେ ଇଭାନ୍ ସିତିନ୍ ।

ପୁଞ୍ଜିବାଦୀ ଯୁଗରେ ରୁଷିଆର ବିଜ୍ଞାନ ମଧ୍ୟ ବିଜ୍ଞାନର କେତେକ ମୁଖ୍ୟ ଶାଖାରେ ବିପୁଳ ଅଗ୍ରଗତି ହାସଲ କରିଥିଲା । ବିଖ୍ୟାତ ରୁଷ୍ ବିଜ୍ଞାନୀ ମିଖାଇଲ ଅସ୍ତ୍ରୋଗ୍ରାଦ୍‌ସ୍କି ୟୁରୋପରେ ତାଙ୍କର ଗଣିତ, କାରୁବିଜ୍ଞାନ ଏବଂ ନମନୀୟତା ତତ୍ତ୍ୱ ପାଇଁ ସ୍ୱୀକୃତି ଅର୍ଜନ କରିଥିଲେ । ସେଣ୍ଟ୍ ପିଟର୍ସବୁର୍ଗ୍ ଗଣିତ ବିଦ୍ୟା ପ୍ରତିଷ୍ଠାନ ପୃଥିବୀରେ ଖ୍ୟାତି ଲାଭ କରିଥିଲା : ଏଥିରେ ଥିଲେ ପାଫ୍‌ନୁତି ଚେବିଶେଭ୍, ଆଲେକ୍‌ଜାଣ୍ଡାର ଲିଆପୁନୋଭ୍, ରୁଷିଆ ତଥା ସମଗ୍ର ୟୁରୋପର ପ୍ରଥମ ନାରୀ ଗଣିତବିଦ୍ ସୋଫିଆ କୋଭାଲେଭ୍‌ସ୍କାୟା । ବ୍ୟୋମଯାନ ବିଦ୍ୟା ଉପରେ ଚମତ୍କାର ସାଫଲ୍ୟ ଅର୍ଜନ କରିଥିଲେ ନିକଲାଇ ଝୁକୋଭ୍‌ସ୍କି, ଯିଏକି କେବଳ ରୁଷିଆରେ ନୁହେଁ, ବିଦେଶରେ ମଧ୍ୟ ଖ୍ୟାତି ଅର୍ଜନ କରିଥିଲେ । ଜେଟ୍‌ଚାଳନା ସଂପର୍କିତ ମୌଳିକ ତତ୍ତ୍ୱଟିକୁ ରଚନା କରିଥିଲେ ଇଭାନ୍

ମେଷ୍ଟେରସ୍କି ଏବଂ କନ୍‌ଷ୍ଟାଣ୍ଟିନ୍ ତ୍‌ସିଓଲ୍‌କୋଭ୍‌ସ୍କି । ତ୍‌ସିଓଲ୍‌କୋଭ୍‌ସ୍କି ସର୍ବପ୍ରଥମ ମହାକାଶ ଯାତ୍ରାରେ ରକେଟର ବ୍ୟବହାର ନେଇ ବ୍ୟାଖ୍ୟା କରିଥିଲେ ।

ଦ୍ମିତ୍ରି ମେନ୍ଦେଲେୟେଭ୍‌ଙ୍କ ଦ୍ୱାରା ରାସାୟନିକ ଉପାଦାନସମୂହର ସାମୟିକ ନିୟମର ଆବିଷ୍କାର ରସାୟନବିଜ୍ଞାନକୁ ଗୁଣଗତ ଭାବେ ନୂଆ ଏକ ସ୍ତରକୁ ଉନ୍ନୀତ କରିଥିଲା । ଇଭାନ୍ ଶେଚେନୋଭ୍ ଏବଂ ଇଭାନ୍ ପାଭ୍‌ଲଭ୍‌ଙ୍କ କୃତିରାଜି ମଣିଷ ଏବଂ ପଶୁଜଗତର ଉଚ୍ଚତର ସ୍ନାୟବିକ କ୍ରିୟାକଳାପର ତତ୍ତ୍ୱକୁ ଅନେକ ଆଗେଇ ନେଇଥିଲା । ଫଟୋ ସଂଶ୍ଲେଷଣ କ୍ଷେତ୍ରରେ କ୍ଲିମେଣ୍ଟ ତିମିରିୟାଜେଭ୍ ବିପୁଳ ସାଫଲ୍ୟ ଅର୍ଜନ କରିଥିଲେ ।

ଭେଷଜ ବିଜ୍ଞାନର ସଫଳ ବିକାଶ ସହିତ ନିକୋଲାଇ ପିରୋଗୋଭ୍‌ଙ୍କ ନାମଟି ଯୁକ୍ତ । ସେ ଥିଲେ ସାମରିକ ଅସ୍ତ୍ରୋପଚାରର ପ୍ରତିଷ୍ଠାତା । ତାଙ୍କର ପରମ୍ପରାକୁ ନିକୋଲାଇ ସ୍କ୍ଲିଫୋସୋଭ୍‌ସ୍କି (ଅସ୍ତ୍ରୋପଚାର), ନିଲ ଫିଲାତୋଭ୍ (ଶିଶୁ ଚିକିତ୍ସା) ଏବଂ ସେର୍ଗେଇ ଭୋଟ୍‌କିନ୍ (ବ୍ୟାବହାରିକ ଚିକିତ୍ସାଗତ ଔଷଧ ସଂପର୍କିତ ବୃହତ୍ ବିଭାଗର ପ୍ରତିଷ୍ଠାତା) ପ୍ରମୁଖ ସେମାନଙ୍କ କାର୍ଯ୍ୟ କ୍ଷେତ୍ରରେ ଆଗେଇ ନେଇଥିଲେ ।

ରୁଷିଆର ଭୂଗୋଳ ଅଧ୍ୟୟନ କ୍ଷେତ୍ରରେ ବହୁ ଗୌରବର ଅଧିକାରୀ ହେଉଛନ୍ତି ପିଓତର ସେମିଓନୋଭ୍-ତିଆନ୍-ଶାନ୍‌ସ୍କି ଏବଂ ପିଓତର କ୍ରପୋଟ୍‌କିନ୍ । ସେମାନେ ଆଗ୍ରହୀ ଥିଲେ ଆଲଟାଇ, ତିଆନ୍ ଶାନ୍ ଏବଂ ପୂର୍ବ ସାଇବେରିଆ ସଂପର୍କରେ । ଗିଓର୍ଗି ସିଦୋଭ୍ ଉତ୍ତର ମହାସାଗର ଆବିଷ୍କାର କରିବା ଦିଗରେ ଅନେକ ସାଫଲ୍ୟ ଅର୍ଜନ କରିଥିଲେ । ନିକୋଲାଇ ପ୍ରଝେଭାଲ୍‌ସ୍କି ଏବଂ ପିଓତର କୋଜ୍‌ଲଭ୍‌ଙ୍କ ଭ୍ରମଣ ଫଳରେ ମଧ୍ୟ ଏସିଆର ଅନୁଧ୍ୟାନ ଦିଗରେ ଅନେକ କିଛି ଜାଣି ହୋଇଥିଲା । ନିକୋଲାଇ ମିକ୍ଲୁଖୋ-ମ୍ୟାକଲେ ବହୁ ବର୍ଷ ଧରି ଦକ୍ଷିଣ-ପୂର୍ବ ଏସିଆ, ଅଷ୍ଟ୍ରେଲିଆ ଏବଂ ଓସେନିୟାର ଆଦିମ ଅଧିବାସୀମାନଙ୍କ ସଂପର୍କରେ ଅନୁଧ୍ୟାନ କରିଥିଲେ ।

ରୁଷିଆର ଇତିହାସ ଉପରେ ବହୁ ଉପାଦାନ ସଂଗ୍ରହ କରିଥିଲେ ବିଖ୍ୟାତ ବୁର୍ଜୁଆ ଐତିହାସିକ ସେର୍ଗେଇ ସୋଲୋଭିୟୋଭ୍ ("ପ୍ରାଚୀନ କାଳରୁ ରୁଷିଆର ଇତିହାସ", ୨୯ ଖଣ୍ଡ ବିଶିଷ୍ଟ) ଏବଂ ତାଙ୍କ ଛାତ୍ର ଭାସିଲି କ୍ଲିଉଚେଭ୍‌ସ୍କି, "ରୁଷ୍ ଇତିହାସର ଏକ ପାଠ୍ୟକ୍ରମର" ଲେଖକ ।

ଯେଉଁସବୁ ପଣ୍ଡିତ ବ୍ୟକ୍ତିମାନେ ଇତିହାସ, ଦର୍ଶନ, ବିଚାର, ଅର୍ଥନୀତି ସଂପୃକ୍ତ ବିଜ୍ଞାନ କ୍ଷେତ୍ରକୁ ଅବଦାନ ରଖିଥିଲେ, ସେମାନଙ୍କ ମଧ୍ୟରେ ଏକ ବିଶେଷ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛନ୍ତି ଲେନିନ୍ । ତାଙ୍କ ଦ୍ୱାରା ସାମାଜିକ-ଅର୍ଥନୈତିକ ସମସ୍ୟାବଳୀର ଅନୁଧ୍ୟାନ, "ରୁଷିଆରେ ପୁଞ୍ଜିବାଦର ବିକାଶ" (୧୮୯୯) ସମେତ ରୁଷିଆରେ ପୁଞ୍ଜିବାଦୀ ପରିବର୍ତ୍ତନର ଗଭୀର ବ୍ୟାଖ୍ୟା ନିହିତ ଅଛି । ତାଙ୍କ ଦ୍ୱାରା ରଚିତ "ମ୍ୟାଟେରିଆଲିଜମ୍ ଆଣ୍ଡ ଏମ୍ପିରିଓ-କ୍ରିଟିସିଜମ୍" (୧୯୦୯) ପୁସ୍ତକଟି ଦର୍ଶନର ଇତିହାସ କ୍ଷେତ୍ରରେ ଏକ ବୃହତ୍ ପଦକ୍ଷେପ ସ୍ୱରୂପ । ଲେନିନ୍‌ଙ୍କ "ସାମ୍ରାଜ୍ୟବାଦ, ପୁଞ୍ଜିବାଦର ସର୍ବୋଚ୍ଚ ପର୍ଯ୍ୟାୟ"

(୧୯୧୬) ରଚନାଟି ଆମ ଯୁଗର ବିଶ୍ୱ ମାର୍କସ୍‌ବାଦୀ ସାମାଜିକ-ଅର୍ଥନୈତିକ ବିଜ୍ଞାନର ବିକାଶ କ୍ଷେତ୍ରରେ ଏକ ଭିତ୍ତି ପ୍ରସ୍ତର ଭଳି ।

ପୁଞ୍ଜିବାଦୀ ରୁଷିଆର ସାହିତ୍ୟ ଏବଂ କଳା କ୍ଷେତ୍ରରେ ମୌଳିକ ପ୍ରବଣତାଗୁଡ଼ିକରେ ଐକ୍ୟ ମଧ୍ୟ ଥିଲା : ଏକ ପଦ୍ଧତି ରୂପେ ବାସ୍ତବତାବାଦ, ରୂପ କଳ୍ପର ଉତ୍ସ ରୂପେ ଜନପ୍ରିୟ ପରମ୍ପରା, ପୁଙ୍ଖାନୁପୁଙ୍ଖତା ଏବଂ ସଂଗୀତ, ସାମାଜିକ ତାତ୍ପର୍ଯ୍ୟର ପ୍ରତିଫଳନ ରୂପେ ନାଗରିକ କର୍ତ୍ତବ୍ୟ । ଏହି ଐକ୍ୟ ଉପରେ ନିର୍ଭର କରି ବହୁବିଧ ପ୍ରବଣତା ଏବଂ ଶିଳ୍ପକଳାର ଶୈଳୀର ପ୍ରସ୍ଫୁଟନ ଘଟିଥିଲା ।

ଲିଓ ତଲସ୍ତୟ, ଇଭାନ୍ ତୁର୍ଗେନେଭ୍, ଫିଓଦର ଦସ୍ତୟେଭ୍‌ସ୍କି, ଆନ୍ତନ୍ ଚେଖୋଭ୍, ଭ୍ଲାଦିମିର୍ କୋରୋଲେଙ୍କୋ ଏବଂ ମ୍ୟାକ୍‌ସିମ୍ ଗର୍କିଙ୍କ ରଚନାବଳୀରେ ବାସ୍ତବତାବାଦ ବିଶେଷ ଭାବେ ପ୍ରତିଫଳିତ ହୋଇଥିଲା । ୧୮୬୦ ଦଶକ ଏବଂ ୧୮୭୦ ଦଶକର କବିତା ରାଜ୍ୟରେ ନିକୋଲାଇ ନେକ୍ରାସୋଭ୍‌ଙ୍କ କବିତାଗୁଡ଼ିକ ପ୍ରାଧାନ୍ୟ ଲାଭ କରିଥିଲା । ଆଲେକ୍‌ଜାଣ୍ଡାର ବ୍ଲକ୍‌ଙ୍କ ଅସାଧାରଣ ପ୍ରତିଭା ପ୍ରଥମେ ପ୍ରକାଶ ପାଇଥିଲା ବିଂଶ ଶତାବ୍ଦୀର ପ୍ରାରମ୍ଭରେ । ତାଙ୍କର ନାମଟି ଏକ ବୈପ୍ଳବିକ-ରୋମାଣ୍ଟିକ ପ୍ରବଣତା ପ୍ରତିଷ୍ଠା ସହିତ ଯୁକ୍ତ ଏବଂ ଏହା ବିପ୍ଳବ ପରିବର୍ତ୍ତନସମୂହର ପୂର୍ବ ମନୋଭାବକୁ ପରିଷ୍କାର ଭାବେ ପ୍ରତିଫଳିତ କରିଥିଲା । ଏହି ପ୍ରବଣତାଟିକୁ ମଧ୍ୟ ଭ୍ଲାଦିମିର୍ ମାୟାକୋଭ୍‌ସ୍କି ପ୍ରାରମ୍ଭିକ ରଚନାଗୁଡ଼ିକରେ ଏବଂ ସଂଗୀତ (ଆଲେକ୍‌ଜାଣ୍ଡାର ସ୍କ୍ରିଆବିନ୍‌ଙ୍କ କୃତିସମୂହ) ଏବଂ ଅଙ୍କନରେ (ମିଖାଇଲ ଭ୍ରୁବେଲ୍ ଏବଂ ନିକୋଲାଇ ରେରିଖ୍‌ଙ୍କ ଅଙ୍କନସମୂହ) ଦେଖିବାକୁ ମିଳେ ।

୧୯ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଏବଂ ୨୦ଶ ଶତାବ୍ଦୀର ପ୍ରାରମ୍ଭଟି ରୁଷୀୟ ସଂଗୀତ ଜଗତରେ ମିଖାଇଲ ଗ୍ଲିଙ୍କାଙ୍କ ପରମ୍ପରାରାଜିର ଅସାଧାରଣ ବିକାଶର କାଳ ରୂପେ ପରିଚିତ : ସେ ଗଭୀର ଭାବେ ରୁଷୀୟ ସଂଗୀତଜ୍ଞ ହେଲେ ମଧ୍ୟ ତତ୍ ସଙ୍ଗେ ସଙ୍ଗେ ତାଙ୍କ କୃତିରାଜିରେ ୟୁରୋପୀୟ ସଂଗୀତ ସଂସ୍କୃତିର ସର୍ବୋଚ୍ଚ ସାଫଲ୍ୟରାଜିକୁ ପ୍ରତିଫଳିତ କରିଥିଲେ । ଯେଉଁମାନେ ତାଙ୍କ ଆଦର୍ଶକୁ ଆଗେଇ ନେଇଥିଲେ, ସେମାନଙ୍କ ସୃଷ୍ଟିରେ ମଧ୍ୟ ଏହି ଅଭିନ୍ନ ବୈଶିଷ୍ଟ୍ୟରାଜି ଲକ୍ଷଣୀୟ । ସେମାନଙ୍କ ସଂଗୀତସମୂହର ଜାତୀୟ ଲକ୍ଷଣସମୂହ ପ୍ରକଟିତ ହୋଇଥିଲା "ମହାଶକ୍ତି ଗୋଷ୍ଠୀର" ବହୁ ପ୍ରତିଭାବାନ ସଂଗୀତଜ୍ଞଙ୍କ କୃତିରେ (ବିଶେଷ କରି ମୋଡେଷ୍ଟ ମୁସୋର୍‌ଗସ୍କି, ଆଲେକ୍‌ଜାଣ୍ଡାର ବୋରୋଦିନ୍ ଏବଂ ନିକୋଲାଇ ରିମ୍‌ସ୍କି-କର୍‌ସାକୋଭ୍‌ଙ୍କ କୃତିରାଜିରେ) । ପଶ୍ଚିମ ୟୁରୋପର ଶାସ୍ତ୍ରୀୟ ସଂଗୀତର ପରମ୍ପରାସମୂହ ଆଉରି ବିକାଶ ଲାଭ କରିଥିଲା ରୁଷୀୟ ସଂଗୀତର ପ୍ରତିଭାଧର ଶିଳ୍ପୀ ପିଓତର ଚାଇକୋଭ୍‌ସ୍କିଙ୍କ ଗଭୀର ଜାତୀୟ ତଥା ଗଣତାନ୍ତ୍ରିକ କୃତିରାଜିରେ । ଏହି "ମହାଶକ୍ତି ଗୋଷ୍ଠୀର" ବିଶେଷ ଲକ୍ଷଣରାଜି ପରବର୍ତ୍ତୀ ସମୟରେ ପରିଷ୍କାର ଭାବେ ପ୍ରତିଫଳିତ ହୋଇଥିଲା କନ୍‌ସ୍ତାନ୍ତିନ୍ ଲିଆଦୋଭ୍ ଏବଂ

ଇଗୋର ଷ୍ଟ୍ରାଭିନ୍ସ୍କିଙ୍କ କୃତିସମୂହରେ । ଚାଇକୋଭ୍‌ସ୍କିଙ୍କ ପରମ୍ପରା ପ୍ରତିଫଳିତ ହୋଇଥିଲା ସେର୍ଗେଇ ତାନେଏଭ୍, ସେର୍ଗେଇ ରାଖ୍‌ମାନିନୋଭ୍ ଏବଂ ଆଲେକ୍‌ଜାଣ୍ଡାର ଗ୍ଲାଜୁନୋଭ୍‌ଙ୍କ ସଂଗୀତରେ ।

୧୯ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଏବଂ ୨୦ଶ ଶତାବ୍ଦୀର ପ୍ରାରମ୍ଭିକ କାଳଟି ଥିଲା ନୃତ୍ୟ ଜଗତରେ ନୂତନ ପରମ୍ପରା ଏବଂ ନୂତନ ସଂଗୀତ ନାଟକ ସୃଷ୍ଟିର ସମୟ । ଚାଇକୋଭ୍‌ସ୍କିଙ୍କ ନୃତ୍ୟନାଟ୍ୟ ("ୟୁଜେନି ଓନେଗିନ୍" ଏବଂ "କୁଇନ୍ ଅଫ୍ ସ୍ପେଡସ୍") ଭଳି ଐତିହାସିକ ବିଷୟକୁ ନେଇ ମୁସୋରଗ୍‌ସ୍କିଙ୍କ ଦ୍ୱାରା ("ବୋରିସ୍ ଗଦୁନୋଭ୍"), ବୋରୋଦିନ୍‌ଙ୍କ ("ରାଜା ଇଗୋର") ଏବଂ ରିମ୍‌ସ୍କି-କର୍ସାକୋଭ୍‌ଙ୍କ ପରିକାହାଣୀର ନୃତ୍ୟନାଟ୍ୟ ("ସାଦ୍‌କୋ", "ସ୍ନେଗୁରଚକା") ଏହି ସମୟରେ ରୂପ ଲାଭ କରିଥିଲା । ପ୍ରଥମତଃ ଚାଇକୋଭ୍‌ସ୍କିଙ୍କର ଏବଂ ପରେ ଗ୍ଲାଜୁନୋଭ୍‌ଙ୍କ ପ୍ରତିଭା ବ୍ୟାଲେ ବା ନୃତ୍ୟନାଟ୍ୟଗୁଡ଼ିକୁ ଐକ୍ୟତାନ ସଂଗୀତର ଅତି ନିକଟବର୍ତ୍ତୀ କରାଇ ପାରିଥିଲା । ଷ୍ଟ୍ରାଭିନ୍ସ୍କିଙ୍କ ବ୍ୟାଲେଗୁଡ଼ିକ ଥିଲା ସଂଗୀତରେ କବିତାସମୂହ ପରି । ଏହିସବୁ କୃତି ଆବଶ୍ୟକ କରିଥିଲା ବିଭିନ୍ନ ଶୈଳୀ ଏବଂ ମଞ୍ଚାୟନର ରୂପ । ଅପେରା ଏବଂ ବ୍ୟାଲେ ପରିବେଷଣଗୁଡ଼ିକ ସଂଗୀତ, ଅଙ୍କନ ଏବଂ ଏକକ ଶିଳ୍ପୀମାନଙ୍କର (ଗାୟକ ଏବଂ ନୃତ୍ୟକାର) ନୃତ୍ୟ ଏବଂ ବାଦନ ଶୈଳୀର ଏକ ସମ୍ମିଶ୍ରଣ ଏବଂ ଅର୍କେଷ୍ଟ୍ରା, ମିଳିତ କଣ୍ଠଶିଳ୍ପୀଦଳ ଏବଂ ବ୍ୟାଲେ ନୃତ୍ୟକାରୀମାନଙ୍କ ମଧ୍ୟରେ ଐକ୍ୟକୁ ପ୍ରତିଫଳିତ କରୁଥିଲା । ନୃତ୍ୟନାଟ୍ୟ ଥିଏଟରଗୁଡ଼ିକରେ ଅର୍କେଷ୍ଟ୍ରା ପରିଚାଳକମାନେ ମଧ୍ୟ ମଞ୍ଚାୟନର ଆୟୋଜନ କରୁଥିଲେ । ୨୦ଶ ଶତାବ୍ଦୀରେ ରୁଷୀୟ କଣ୍ଠ ସଂଗୀତ କ୍ଷେତ୍ରରେ ବାସ୍ତବବାଦୀ ଧାରାର ପ୍ରତିନିଧି ସ୍ଥାନୀୟ ବୈଶିଷ୍ଟ୍ୟସମୂହ ଫିଓଦର ଶାଲ୍ୟାପିନ୍, ଆନ୍ତୋନିନା ନେଝଦାନୋଭା ଏବଂ ଲିଓନିଦ୍ ସୋଭିନୋଭ୍‌ଙ୍କ ଭଳି ସଂଗୀତଜ୍ଞଙ୍କ ସଂଗୀତ ପରିବେଷଣରେ ଅତୀବ ପରିଷ୍କାର ଭାବେ ପ୍ରକଟିତ ହୋଇଥିଲା । "ଗାୟକ ଅଭିନେତା" କଥାଟିର ସଂଜ୍ଞାଟି ଏହିସବୁ ଅପେରା ମଞ୍ଚର ଗୁରୁମାନଙ୍କ ପ୍ରତି ସର୍ବାଧିକ ଭାବେ ପ୍ରଯୋଜ୍ୟ ।

ଚାଇକୋଭ୍‌ସ୍କି ଏବଂ ଗ୍ଲାଜୁନୋଭ୍‌ଙ୍କ ବ୍ୟାଲେ-ଏକତାନ ସଂଗୀତଗୁଡ଼ିକ କରିଓଗ୍ରାଫିକାଲ ଏକତାନ ଦାବୀ କରିଥିଲା । ଉଲ୍ଲେଖନୀୟ ପରିବେଷଣକାରୀବୃନ୍ଦ (ପ୍ରତ୍ୟୁସର) – ମାରିଅସ୍ ପେଟିପା, ଲେଭ୍ ଇଭାନୋଭ୍, ଆଲେକ୍‌ଜାଣ୍ଡାର ଗୋର୍ସ୍କି ଏବଂ ମିଖାଇଲ ଫକିନ୍ – କରିଓଗ୍ରାଫି ମାଧ୍ୟମରେ ନାଟ୍ୟଗତ ଉତ୍ତେଜନା ଏବଂ ଆବେଗର ସୂକ୍ଷ୍ମାନୁଭୂତିଗୁଡ଼ିକୁ ପ୍ରକାଶ କରି ପାରିଥିଲେ । ସେମାନେ ମଧ୍ୟ ବହୁ ପ୍ରତିଭାବାନ ବ୍ୟାଲେ ନୃତ୍ୟକାରୀ ସୃଷ୍ଟି କରି ପାରିଥିଲେ ବିଶେଷ କରିଓଗ୍ରାଫିକାଲ ପ୍ରତିଭା ସହିତ ଅଭିନୟଗତ ପ୍ରତିଭାର ସମ୍ମିଶ୍ରଣ ଦ୍ୱାରା ।

ନାଟ୍ୟ ତଥା ଶିଳ୍ପ ଜଗତର ପ୍ରଖ୍ୟାତ କଳାକାର ସେର୍ଗେଇ ଦ୍ୟାଗିଲେଭ୍‌ଙ୍କ ଦ୍ୱାରା

ମଧ୍ୟ ଏସିଆ ପ୍ରତି ନିବେଦିତ ହୋଇଥିଲା । ରୁଷ୍ ଭାଷାରେ ଅନୂଦିତ ହୋଇଥିବା ରୁଷିଆର ବିଭିନ୍ନ ଜାତିଙ୍କର ବହୁ କବି ଏବଂ ଲେଖକଙ୍କର ରଚନାମାନ ଅନ୍ୟମାନେ ପଢ଼ୁଥିଲେ ।

ବିଶ୍ୱର ସ୍ୱଚ୍ଛକଳା ଭଣ୍ଡାରକୁ ରୁଷିଆ ୧୯ଶ ଶତାବ୍ଦୀର ଶେଷ ଭାଗ ଏବଂ ୨୦ଶ ଶତାବ୍ଦୀର ପ୍ରାରମ୍ଭରେ ଅମୂଲ୍ୟ ଅବଦାନ ରଖିଥିଲା । ଏଥି ସଙ୍ଗେ ସଙ୍ଗେ ଦେଶ ମଧ୍ୟରେ ଏକ ସୁସ୍ପଷ୍ଟ ବିରୋଧ ରହି ଯାଇଥିଲା ବିଜ୍ଞାନ ତଥା ସଂସ୍କୃତିର ସାଫଲ୍ୟରାଜି ଏବଂ ଜନସାଧାରଣଙ୍କର ବ୍ୟାପକ ନିରକ୍ଷରତା ମଧ୍ୟରେ । ଦେଶର ପ୍ରଗତିଶୀଳ ଜନନେତାମାନେ ଏହି ପାର୍ଥକ୍ୟର କୁପରିମାଣ କେବଳ ଜନସାଧାରଣଙ୍କ ଉପରେ ନୁହେଁ, ସଂସ୍କୃତି ଉପରେ ବୋଲି ଅନୁଭବ କରିଥିଲେ । ୨୦ଶ ଶତାବ୍ଦୀର ପ୍ରାରମ୍ଭରେ, ରୁଷିଆର ସେରା ସାଧାରଣ ଲୋକେ, ବିଶେଷ କରି ରୁଷିଆର ସର୍ବହରା ଶ୍ରେଣୀ ଜ୍ଞାନାହରଣ ପାଇଁ ବ୍ୟାପକ ଆଗ୍ରହ ପ୍ରକାଶ କରିଥିଲା । ଏହି ସଚେତନତା ଶୋଷଣଯୁକ୍ତ ବ୍ୟବସ୍ଥା ବିରୁଦ୍ଧରେ ସଂଗ୍ରାମକୁ ତୀବ୍ରତର କରିବାରେ ଏକ କାରଣ ଥିଲା ।

# ୧୪ଶ ପରିଚ୍ଛେଦ

## ବିଶ୍ୱଯୁଦ୍ଧର ପ୍ରଥମ ବର୍ଷସମୂହ – ରୁଷିଆରେ ଦ୍ୱିତୀୟ ବିପ୍ଳବ

୧୯ଶ ଶତାବ୍ଦୀର ଶେଷ ଭାଗରେ ଅର୍ଥନୈତିକ ଭାବେ ବିକଶିତ ଦେଶମାନଙ୍କରେ ପୁଞ୍ଜିବାଦ ସାମ୍ରାଜ୍ୟବାଦ ପର୍ଯ୍ୟାୟରେ ପହଞ୍ଚି ଯାଇଥିଲା । ଏହାର ମୁଖ୍ୟ ଲକ୍ଷଣୀୟ ବୈଶିଷ୍ଟ୍ୟସମୂହ ହେଲା ପୁଞ୍ଜିବାଦୀ ଏକଗୁଟିଆ – ସିଣ୍ଡିକେଟ, ଟ୍ରଷ୍ଟ୍ ଏବଂ କନସର୍ଣ୍ଣସମୂହର ଏକାଧିପତ୍ୟ । ଏହାର ଅର୍ଥନୈତିକ ତଥା ସାମରିକ ଶକ୍ତିକୁ ଦୃଢ଼ କରିବା ଏ[illegible] ଅନ୍ୟାନ୍ୟ ଜାତିମାନଙ୍କୁ ଲୁଣ୍ଠନ ଏବଂ ଉତ୍ପୀଡ଼ନ କରିଆରେ ଏହାର ସଂପଦ [illegible] କରିବା ଲକ୍ଷ୍ୟରେ ସାମ୍ରାଜ୍ୟବାଦୀ ଦେଶମାନଙ୍କର ଏକଗୁଟିଆ ପୁଞ୍ଜି ଯାଇଥିଲା ଉପନି[illegible] ଏବଂ ଅର୍ଥନୈତିକ ଭାବେ ଦୁର୍ବଳ ଦେଶମାନଙ୍କୁ । ୨୦ଶ ଶତାବ୍ଦୀ ବେଳକୁ ସମ[illegible] ପୃଥିବୀ ସାମ୍ରାଜ୍ୟବାଦୀ ଦେଶମାନଙ୍କ ମଧ୍ୟରେ ଶାସନ ବା ପ୍ରଭାବ କ୍ଷେତ୍ର ହିସାବରେ ଭାଗଭାଗ ହୋଇ ଯାଇଥିଲା ।

ସାମ୍ରାଜ୍ୟବାଦୀ ଯୁଗରେ ପୁଞ୍ଜିବାଦୀ ଦେଶମାନଙ୍କର କ୍ରମବର୍ଦ୍ଧମାନ ଅସମ ବିକାଶ ହେତୁ ସେମାନଙ୍କ ଅର୍ଥନୈତିକ ତଥା ସାମରିକ ଶକ୍ତିସମୂହ ମଧ୍ୟରେ ଭାରସାମ୍ୟ ହଠାତ୍ ପରିବର୍ତ୍ତିତ ହୋଇଗଲା । ଅର୍ଥନୈତିକ ତଥା ସାମରିକ ବିକାଶ କ୍ଷେତ୍ରରେ ଯେଉଁସବୁ ସାମ୍ରାଜ୍ୟବାଦୀ ଦେଶ ସେମାନଙ୍କ ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ପଛରେ ପକେଇ ଦେଇ ଆଗେଇଗଲେ, ସେମାନେ ଦାବୀ କଲେ, ନୂତନ ଭାରସାମ୍ୟ ଅନୁଯାୟୀ ଉପନିବେଶ ତଥା ପ୍ରଭାବ କ୍ଷେତ୍ରମାନ ପୁନର୍ବାର ଭାଗ ଭାଗ ହେଉ । ଏଭଳି ପୁନର୍ବିଭାଜନ କେବଳ ବଳପ୍ରୟୋଗ ଦ୍ୱାରା, ଅର୍ଥାତ୍ ଯୁଦ୍ଧ ଦ୍ୱାରା ହେବାର ଥିଲା ।

ସାମ୍ରାଜ୍ୟବାଦୀ ଦେଶମାନେ ପୃଥିବୀର ପୁନର୍ବିଭାଜନ ଉଦ୍ଦେଶ୍ୟରେ ଅନେକ ଦିନ ଧରି ଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଥିଲେ । ୧୯ଶ ଶତାବ୍ଦୀର ଶେଷ ଭାଗରେ ଶିଳ୍ପ ବିକାଶ କ୍ଷେତ୍ରରେ ବ୍ରିଟେନ୍‌କୁ ପଛରେ ପକାଇ ଜର୍ମାନୀ ଆଗେଇ ଗଲା । ଏହା ଦାବି କରିଥିଲା ପୃଥିବୀର ଏକ ମୌଳିକ ପୁନର୍ବିଭାଜନ ଏବଂ ଏହା ଥିଲା ଅତୀବ ଯୁଦ୍ଧକାମୀ । ସାମ୍ରାଜ୍ୟବାଦୀ ଦେଶମାନଙ୍କୁ ନେଇ ଗଠିତ ତ୍ରିମେଣ୍ଟରେ ଏହା ଅଗ୍ରଣୀ ଭୂମିକା ନେଇଥିଲା ଏବଂ ଏହାକୁ

ସ୍ୱୟଂ ପ୍ରତିଷ୍ଠା କରିଥିଲା । ଏଥିରେ ଥିଲେ ସ୍ୱୟଂ ଜର୍ମାନୀ, ଅଷ୍ଟ୍ରିଆ-ହଙ୍ଗେରୀ ଏବଂ ଇଟାଲୀ । ବ୍ରିଟେନ୍, ଫ୍ରାନ୍ସ ଏବଂ ରୁଷିଆ ନିଜକୁ ପ୍ରସ୍ତୁତ କରୁଥିଲେ ଏହି ମେଣ୍ଟ ସହିତ ଲଢ଼େଇ କରିବା ନିମିତ୍ତ, ଔପନିବେଶିକ ତଥା ପରାଧୀନ ଦେଶମାନଙ୍କରେ (ବିଶେଷ କରି ମଧ୍ୟ ପ୍ରାଚ୍ୟରେ) ଏବଂ ବଲକାନରେ ଆଧିପତ୍ୟ ପ୍ରତିଷ୍ଠା ପାଇଁ । ଏମାନେ ଏଣ୍ଟାଣ୍ଟ ନାମରେ ଏକ ସାମ୍ରାଜ୍ୟବାଦୀ ମେଣ୍ଟ ପ୍ରତିଷ୍ଠା କରିଥିଲେ (ପରେ ଏଥିରେ ଆଉରି ଅନେକ ରାଷ୍ଟ୍ର ଯୋଗ ଦେଇଥିଲେ) ।

ଆମେରିକାନ୍ ଏବଂ ଜାପାନୀ ସାମ୍ରାଜ୍ୟବାଦୀମାନେ ରାଜ୍ୟ ଜୟର ବାସନା ମନରେ ନେଇ ଜୋର୍ ସୋରରେ ଯୁଦ୍ଧର ପ୍ରସ୍ତୁତି ଚଳେଇ ଯାଉଥିଲେ ।

ପୃଥିବୀର ପୁନର୍ବିଭାଜନ ଦୃଷ୍ଟିରୁ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଏହିସବୁ ଆକ୍ରମଣାତ୍ମକ ଅଭିପ୍ରାୟର ଫଳ ସ୍ୱରୂପ ୧୯୧୪-୧୯୧୮ ମସିହାର ବିଶ୍ୱ ସାମ୍ରାଜ୍ୟବାଦୀ ଯୁଦ୍ଧ ଲାଗିଗଲା । ଲୋକ କ୍ଷୟ, ଦୁଃଖ ଦୁର୍ଦ୍ଦଶା ଏବଂ ଧ୍ୱଂସ ଦୃଷ୍ଟିରୁ ଏହି ଯୁଦ୍ଧ ଥିଲା ଅଭୂତପୂର୍ବ । ଏହି ଯୁଦ୍ଧରେ ୧ କୋଟି ଲୋକ ପ୍ରାଣ ଦେଇଥିଲେ ଏବଂ ୨ କୋଟିରୁ ଅଧିକ ଲୋକ ଆହତ, ଗୋଳାବାରୁଦ, ବିଷାକ୍ତ ଗ୍ୟାସରେ କ୍ଷତବିକ୍ଷତ ହୋଇଥିଲେ ।

ସର୍ବମୋଟ ୩୮ଟି ଦେଶ ଏବଂ ୧୫୦ କୋଟିରୁ ଊର୍ଦ୍ଧ୍ୱ ଲୋକ କ୍ରମଶଃ ଏହି ବିଶ୍ୱ ଯୁଦ୍ଧ ସହିତ ସଂପୃକ୍ତ ହୋଇ ପଡ଼ିଥିଲେ । ଏହି ଯୁଦ୍ଧ ଥିଲା ପୁଞ୍ଜିବାଦର ସାଧାରଣ ସଂକଟର ଜ୍ୱଳନ୍ତ ପ୍ରକାଶ ।

ଏହି ଯୁଦ୍ଧ ଭିଆଇବାରେ ଅଗ୍ରପଦକ୍ଷେପ ନେଇଥିଲା ଜର୍ମାନୀ । ତେବେ ଏହା ଦ୍ୱାରା ଏକଥା କୁହାଯିବ ନାହିଁ ଯେ, ଏହି ରକ୍ତସ୍ନାନ ପାଇଁ ଅନ୍ୟ ସାମ୍ରାଜ୍ୟବାଦୀ ଶକ୍ତିମାନେ ଦାୟୀ ନୁହନ୍ତି ବୋଲି । ଉଭୟ ଦିଗରୁ ଏହି ଯୁଦ୍ଧ ଥିଲା ଅନ୍ୟାୟ ଏବଂ ଆକ୍ରମଣାତ୍ମକ । କିନ୍ତୁ ଜର୍ମାନୀ ଏଣ୍ଟାଣ୍ଟ ଅନ୍ତର୍ଗତ ଦେଶମାନଙ୍କୁ ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତାରେ ପଛରେ ପକାଇ ଦେଇ ପ୍ରଥମେ ଯୁଦ୍ଧ ଆରମ୍ଭ କରି ଦେଲା ।

ପ୍ରତ୍ୟେକଟି ଯୁଦ୍ଧରତ ଦେଶ ବାଧ୍ୟ ହୋଇ ଏଥିରେ ଅଂଶଗ୍ରହଣ କରିଥିଲେ ଦୁର୍ଦ୍ଦାନ୍ତ ଏକ ଶତ୍ରୁର ଆକ୍ରମଣ ବିରୁଦ୍ଧରେ ପ୍ରତିରକ୍ଷା ହିସାବରେ ଏବଂ ନିଜ ନିଜର ଆକ୍ରମଣାତ୍ମକ ଅଭିପ୍ରାୟକୁ ଗୋପନ ରଖି । ରୁଷୀୟ ଜାର୍‌ତନ୍ତ୍ରର ସାମ୍ରାଜ୍ୟବାଦୀ ଲକ୍ଷ୍ୟ ଥିଲା ଦକ୍ଷିଣ, ଦକ୍ଷିଣ-ପଶ୍ଚିମ ଆଡ଼କୁ, ଗାଲିସିଆ, ବଲ୍‌କାନ, ତୁର୍କୀ ଏବଂ ପାରସ୍ୟ ପ୍ରତି । ଏହିସବୁ ଅଞ୍ଚଳରେ ଅଷ୍ଟ୍ରିଆ-ହଙ୍ଗେରୀ ଥିଲା ରୁଷିଆର ପ୍ରତ୍ୟକ୍ଷ ଶତ୍ରୁ ଏବଂ ଏହି ଦେଶଟି ସହିତ ରୁଷିଆକୁ ସର୍ବୋପରି ଯୁଦ୍ଧ କରିବାକୁ ପଡ଼ିଲା । ତେବେ, ରୁଷିଆ ଏବଂ ଅଷ୍ଟ୍ରିଆ-ହଙ୍ଗେରୀ ଯେହେତୁ ପରସ୍ପର ପ୍ରତି ଶତ୍ରୁତାସଂପନ୍ନ ମେଣ୍ଟରେ ଯୋଗ ଦେଇଥିଲେ, ତେଣୁ ସେମାନଙ୍କ ସାମରିକ ପରିକଳ୍ପନାଗୁଡ଼ିକୁ ସେମାନଙ୍କର "ନିଜ ନିଜର" ମେଣ୍ଟଗୁଡ଼ିକର ସ୍ୱାର୍ଥସମୂହକୁ ବିଚାର କରିବାକୁ ପଡ଼ିଥିଲା । ଜର୍ମାନ୍ ସେନାବାହିନୀ ଦ୍ୱାରା ଫ୍ରାନ୍ସର ପରାଜୟକୁ ରୋକିବାକୁ ପଡ଼ିବ : ଜାର୍‌ତନ୍ତ୍ର ଅନୁଭବ କଲା, ଏହା ଏକୁଟିଆ ଜର୍ମାନୀ ଏବଂ

ଅଷ୍ଟ୍ରିଆ-ହଙ୍ଗେରୀ ସହିତ ଲଢ଼େଇ କରି ପାରିବ ନାହିଁ । ତେଣୁ କରି ଏହା ଯୁଦ୍ଧର ପ୍ରାରମ୍ଭିକ ପର୍ଯ୍ୟାୟରେ ସ୍ଥିର କରି ନେଲା ଅଷ୍ଟ୍ରିଆ-ହଙ୍ଗେରୀ ବିରୁଦ୍ଧରେ ଗାଲିସିଆରେ ଏବଂ ଜର୍ମାନୀ ବିରୁଦ୍ଧରେ ପୂର୍ବ ପ୍ରୁସିଆରେ ସକ୍ରିୟ ଯୁଦ୍ଧ ଆରମ୍ଭ କରି ଦେବାକୁ । ରୁଷିଆର ମଧ୍ୟ ଆଉ ଗୋଟିଏ ତୃତୀୟ ଯୁଦ୍ଧ କ୍ଷେତ୍ର ଥିଲା, ତାହା ହେଲା ଟ୍ରାନ୍ସକକେସିଆରେ ତୁର୍କୀ ବିରୁଦ୍ଧରେ ପାରସ୍ୟ ଆଡ଼କୁ ଆଗେଇବା ନିମିତ୍ତ ।

୧୯୧୪, ଜୁନ୍ ୨୮ ତାରିଖ ଦିନ ଜନୈକ ସେର୍ବୀୟ ଜାତୀୟତାବାଦୀ ଦ୍ୱାରା ଅଷ୍ଟ୍ରୀୟ ସିଂହାସନର ଉତ୍ତରାଧିକାରୀ ଫ୍ରାନ୍ଜ ଫର୍ଡିନାଣ୍ଡଙ୍କୁ ହତ୍ୟା କରିବାଟା ଥିଲା ଯୁଦ୍ଧ ଲାଗିଯିବାର ଏକ ସରକାରୀ ଆଳ । ଜର୍ମାନୀର ଚାପରେ ପଡ଼ି ଅଷ୍ଟ୍ରିଆ-ହଙ୍ଗେରୀ ଜୁଲାଇ ୨୩ ତାରିଖ ଦିନ ସେର୍ବିଆକୁ ଏକ ଚରମପତ୍ର ପ୍ରଦାନ କରିଥିଲା ଏବଂ ସେର୍ବିଆ ତରଫରୁ ଏହା ପୂରଣ କରା ନଯିବାରୁ ଅଷ୍ଟ୍ରିଆ-ହଙ୍ଗେରୀ ଜୁଲାଇ ୨୮ ତାରିଖରେ ଯୁଦ୍ଧ ଘୋଷଣା କରି ଦେଲା । ଅଗଷ୍ଟ ପହିଲା ଦିନ ଜର୍ମାନୀ ଯୁଦ୍ଧ ଘୋଷଣା କଲା ରୁଷିଆ ବିରୁଦ୍ଧରେ ଏବଂ ଅଗଷ୍ଟ ୩ ତାରିଖ ଦିନ ଫ୍ରାନ୍ସ ବିରୁଦ୍ଧରେ । ଜର୍ମାନୀ ବିରୁଦ୍ଧରେ ବ୍ରିଟେନ୍ ଯୁଦ୍ଧ ଘୋଷଣା କଲା ଅଗଷ୍ଟ ୪ ତାରିଖ ଦିନ ।

ଯୁଦ୍ଧର ପ୍ରଥମ ଦିନଗୁଡ଼ିକରେ ଜର୍ମାନୀର ସେନାଗୁଡ଼ିକ ଫ୍ରାନ୍ସ ମଧ୍ୟକୁ ଏତେ ସଫଳତାର ସହିତ ଆଗେଇ ଯାଇଥିଲେ ଯେ, ପ୍ୟାରିସ୍ ଦଖଲ ହୋଇଯିବାର ବିପଦ ଦେଖାଦେଲା । ରୁଷିଆ ତା'ର ମିତ୍ରମାନଙ୍କୁ ସାହାଯ୍ୟ କରିବାକୁ ଯାଇ ନିର୍ଘଣ୍ଟ ସମୟ ପୂର୍ବରୁ ପୂର୍ବ ପ୍ରୁସିଆ ଉପରେ ଆକ୍ରମଣ ଆରମ୍ଭ କରି ଦେଲା । ପ୍ରଥମେ ରୁଷୀୟ ସେନାବାହିନୀ ଶତ୍ରୁ ପକ୍ଷକୁ ପରାସ୍ତ କରିବାକୁ ସକ୍ଷମ ହେଲେ ମଧ୍ୟ ପରବର୍ତ୍ତୀ ସମୟରେ ରୁଷୀୟ ସର୍ବୋଚ୍ଚ ସେନାଧ୍ୟକ୍ଷଙ୍କ ଖାମଖିଆଲୀ ପଣିଆ ତଥା ଅପାରଗତା ପାଇଁ ସେମାନେ ପରାଜୟ ବରଣ କଲେ । ତେବେ ପୂର୍ବ ପ୍ରୁସିଆରେ ଯୁଦ୍ଧ ଲାଗିଯିବା ଫଳରେ ଅନେକ ଜର୍ମାନ୍ ସୈନ୍ୟଙ୍କୁ ପଶ୍ଚିମ ପଟୁ ହଟେଇ ଆଣିବାକୁ ପଡ଼ିଥିଲା ଏବଂ ଏହା ଫଳରେ ୧୯୧୪, ସେପ୍ଟେମ୍ବର ମାସରେ ମାର୍ନେ ନଦୀ କୂଳରେ ଫ୍ରାନ୍ସ ଯୁଦ୍ଧରେ ଜୟୀ ହେବାରେ ସକ୍ଷମ ହୋଇଥିଲା ଏବଂ ପ୍ୟାରିସ୍ ରକ୍ଷା ପାଇ ଯାଇଥିଲା । ଏହା ଅର୍ଥ, ଫ୍ରାନ୍ସ ଏବଂ ରୁଷିଆକୁ ଏକାବେଳକେ ପରାଜିତ କରିବା ପାଇଁ ଜର୍ମାନ୍ କମାଣ୍ଡର ଯୋଜନାଟି ପଣ୍ଡ ହୋଇଗଲା । ଏଥର ଜର୍ମାନୀକୁ ଏକାବେଳକେ ଯୁଦ୍ଧ କରିବାକୁ ପଡ଼ିଲା ପଶ୍ଚିମ ଏବଂ ପୂର୍ବ ରଣାଙ୍ଗନରେ ।

ଅଷ୍ଟ୍ରିଆ-ହଙ୍ଗେରୀ ବିରୁଦ୍ଧରେ ରୁଷ୍ ସୈନ୍ୟବାହିନୀର ଆକ୍ରମଣ ଆରମ୍ଭ ହୋଇଥିଲା ଅଗଷ୍ଟ ୧୦ ତାରିଖ ଦିନ । ଗାଲିସିଆର ଯୁଦ୍ଧ ଘଟିଥିଲା ମାସକ ମଧ୍ୟରେ ଏବଂ ଏହି ଯୁଦ୍ଧରେ ରୁଷିଆ ଏକ ଉଲ୍ଲେଖନୀୟ ସାମରିକ-କୌଶଳଗତ ବିଜୟ ହାସଲ କରିଥିଲା : ରୁଷୀୟ ସେନାବାହିନୀ ପଶ୍ଚିମକୁ ୨୮୦-୩୦୦ କିଲୋମିଟର ପର୍ଯ୍ୟନ୍ତ ଆଗେଇ ଯାଇଥିଲା ଏବଂ ଗାଲିସିଆ ଓ ତା'ର ପ୍ରାଚୀନ ରାଜଧାନୀ ଲଭୋଭ ଅଧିକାର କରି ନେଲା ।

ବିପୁଳ ହତାହତ ମଧ୍ୟରେ ପୋଲଣ୍ଡରେ ୧୯୧୪, ଅକ୍ଟୋବର-ନଭେମ୍ବରରେ ଯୁଦ୍ଧ ଆରମ୍ଭ ହୋଇଗଲା । ପୂର୍ବ ପ୍ରୁସିଆ ମଧ୍ୟ ଦେଇ ଜର୍ମାନୀର ଅଭ୍ୟନ୍ତରକୁ ପ୍ରବେଶ କରିବା ପାଇଁ ରୁଷ୍ ସୈନ୍ୟବାହିନୀ ପ୍ରଚେଷ୍ଟା କରିଥିଲେ । ଜର୍ମାନ୍ ସେନାବାହିନୀ ଏହି ଆକ୍ରମଣକୁ ପ୍ରତିହତ କଲେ ମଧ୍ୟ ରୁଷିଆର ସେନାବାହିନୀକୁ ପରାଜିତ କରି ପାରି ନଥିଲେ । ବରଂ, ଶେଷୋକ୍ତ ସେନାବାହିନୀ ଜର୍ମାନୀର ଭୂଖଣ୍ଡ ମଧ୍ୟକୁ ଆଉଥରେ ଆଗେଇ ଯିବାର ଭୟ ସୃଷ୍ଟି କରିଥିଲେ ।

କକେସୀୟ ରଣାଙ୍ଗନରେ, ରୁଷ୍ ସେନାବାହିନୀର ଅସ୍ତ୍ରଶସ୍ତ୍ର, ସଂଗଠନ ଏବଂ ପ୍ରସ୍ତୁର କୌଶଳ ଦିଗରୁ ସ୍ୱାଭାବିକ ସୁବିଧା ହେତୁ ୧୯୧୪ ଡିସେମ୍ବର ମାସରେ ପ୍ରଥମ ବୃହତ୍ ଆକ୍ରମଣଟିର ଫଳ ସ୍ୱରୂପ ତୁର୍କୀ ପରାଜୟ ବରଣ କଲା । ଏହା ପରେ ୧୯୧୬, ଗ୍ରୀଷ୍ମକାଳ ପର୍ଯ୍ୟନ୍ତ ଟ୍ରାନ୍ସକକେସିଆରେ ଆଉ କୌଣସି ସକ୍ରିୟ ଯୁଦ୍ଧାଭିଯାନ ଚାଲି ନଥିଲା ।

ଏହା ହିଁ ହେଲା ୧୯୧୪ ମସିହାର ସାମରିକ ଯୁଦ୍ଧାଭିଯାନର ଫଳ । ପ୍ରଥମତଃ, ଏହା ଦର୍ଶାଇ ଦେଲା ଯେ, ଯେଉଁସବୁ ରଣକୌଶଳବିତ୍ ଏବଂ ରାଜନୀତିଜ୍ଞମାନେ କେଇ ମାସ ମଧ୍ୟରେ ଯୁଦ୍ଧର ଅବସାନ କରିବାକୁ ଚାହୁଁଥିଲେ, ସେମାନେ ସଂପୂର୍ଣ୍ଣ ଭୁଲ ବୋଲି ପ୍ରମାଣିତ ହେଲେ; ଯୁଦ୍ଧ ଦୀର୍ଘସ୍ଥାୟୀ ଏବଂ ବିଷମ ଚରିତ୍ର ଲାଭ କଲା । ଯୁଦ୍ଧର ମୋଟ ଫଳାଫଳ ପାଇଁ ରୁଷୀୟ ରଣାଙ୍ଗନର ନିଷ୍ପତ୍ତିମୂଳକ ଗୁରୁତ୍ୱକୁ ଏହା ମଧ୍ୟ ଦର୍ଶାଇ ଦେଲା: ପ୍ରଧାନ ଯୁଦ୍ଧଗୁଡ଼ିକ ଏହିଠାରେ ଘଟିଥିଲା ଏବଂ ରୁଷିଆ ବିରୁଦ୍ଧରେ ଅଧିକରୁ ଅଧିକ ଅଷ୍ଟ୍ରୋ-ହଙ୍ଗେରୀୟ ସେନାଦଳଗୁଡ଼ିକ ନିୟୋଜିତ ହୋଇଥିଲେ ।

ଏଇଥିଯୋଗୁ ଜର୍ମାନ୍ ଯୁଦ୍ଧାଧ୍ୟକ୍ଷଙ୍କ ୧୯୧୫ର ପରିକଳ୍ପନାରେ ମୌଳିକ ପରିବର୍ତ୍ତନ ଘଟିଥିଲା: ପୂର୍ବରେ ପ୍ରତିରକ୍ଷା ଏବଂ ପଶ୍ଚିମରେ ଆକ୍ରମଣ ପରିବର୍ତ୍ତେ ଏହା ସ୍ଥିର କଲା ପୂର୍ବରେ ସର୍ବାଧିକ ସୈନ୍ୟ ସମାବେଶ କରି ରୁଷିଆକୁ ଯୁଦ୍ଧରୁ ବିରତ ରଖିବାକୁ ବାଧ୍ୟ କରିବ ।

୧୯୧୫, ଏପ୍ରିଲ ମାସରେ ଜର୍ମାନ୍ ସେନାଦଳଗୁଡ଼ିକ ଏକ ସୁପ୍ରସ୍ତୁତ ଆକ୍ରମଣ ଆରମ୍ଭ କଲେ । ୧୯୧୫, ଶରତକାଳ ବେଳକୁ ଜର୍ମାନ୍ ସୈନ୍ୟମାନେ ଗାଲିସିଆ, ପୋଲଣ୍ଡର ଅଧିକାଂଶ ଅଞ୍ଚଳ, ବଲଟିକ୍ ଅଞ୍ଚଳସମୂହ ଏବଂ ବେଲୋରୁଷିଆର କେତେକାଂଶ ଦଖଲ କରି ନେଲେ ।

୧୯୧୫ ମସିହାରେ ରୁଷୀୟ ସେନାବାହିନୀର ପରାଜୟ ପଛରେ ମୁଖ୍ୟ କାରଣ ଥିଲା, ତୋପ, ଗୋଳା, ରାଇଫେଲ ଏବଂ ଗୁଳିର ଭୟଙ୍କର ଅଭାବ । ଜର୍ମାନ୍ ସେନାବାହିନୀ ପକ୍ଷରେ ବିଜୟ ହାସଲ ସମ୍ଭବ ହେଲା ରୁଷିଆକୁ ତା'ର ମିତ୍ରମାନଙ୍କର ସାହାଯ୍ୟର ଅଭାବ । ସେମାନେ ପଶ୍ଚିମ ରଣାଙ୍ଗନରୁ ପୂର୍ବ ରଣାଙ୍ଗନକୁ ଯେଉଁ ବିପୁଳ ସଂଖ୍ୟକ ସେନାଦଳ ସ୍ଥାନାନ୍ତରିତ କଲେ, ତାକୁ ରୋକିବା ପାଇଁ ସେମାନେ କିଛି କଲେ ନାହିଁ । ୧୯୧୫, ସେପ୍‌ଟେମ୍ବର ମାସରେ ରୁଷିଆ ବିରୁଦ୍ଧରେ ୧୪୦ଟି ଅଷ୍ଟ୍ରୋ-ହଙ୍ଗେରୀୟ ପଦାତିକ ତଥା ଅଶ୍ୱାରୋହୀ

ଡିଭିଜନ ଲଢ଼େଇ କରୁଥିଲା ବେଳେ ବ୍ରିଟିଶ୍-ଫ୍ରାନ୍ସ ରଣାଙ୍ଗନରେ ୯୧ ଡିଭିଜନ ଲଢ଼ୁଥିଲେ । ୧୯୧୫ ମସିହାରେ ରୁଷୀୟ ସୈନ୍ୟବାହିନୀ ଯୁଦ୍ଧର ସମସ୍ତ ଆଘାତ ସହ୍ୟ କରିଥିଲା । -

୧୯୧୬ ଗ୍ରୀଷ୍ମକାଳରେ ଶ୍ୟାଣ୍ଟିଲିରେ ଅନୁଷ୍ଠିତ ମିତ୍ର ଶକ୍ତିମାନଙ୍କ ସମ୍ମିଳନୀର ପ୍ରସ୍ତାବ ଅନୁଯାୟୀ ଜେନେରାଲ ଆଲେକ୍‌ସେଇ ବ୍ରୁସିଲୋଭ୍‌ଙ୍କ ଅଧ୍ୟକ୍ଷତାରେ ରୁଷୀୟ ଦକ୍ଷିଣ-ପୂର୍ବ ରଣାଙ୍ଗନର ସେନାଦଳଗୁଡ଼ିକ ଗ୍ୱରୋଟି କ୍ଷେତ୍ରରେ ଆକ୍ରମଣ ଆରମ୍ଭ କରିଥିଲେ । ଅଗଷ୍ଟର ମଧ୍ୟ ଭାଗ ବେଳକୁ ଅଷ୍ଟ୍ରୋ-ହଙ୍ଗେରୀୟ ସେନାଦଳଗୁଡ଼ିକ କାର୍ପେଥିଆନ ଗିରିପଥ ଆଡ଼କୁ ପଶ୍ଚାଦ୍‌ପସରଣ କରି ଯାଇଥିଲେ ବୁକୋଭିନା ଏବଂ ଦକ୍ଷିଣ ଗାଲିସିଆ ପରିତ୍ୟାଗ କରି । ବ୍ରୁସିଲୋଭ୍‌ଙ୍କ ଚଢ଼ାଉ ଫଳରେ ଜର୍ମାନ୍‌ମାନେ ପଶ୍ଚିମ ରଣାଙ୍ଗନରୁ ୧୧ ଡିଭିଜନ ସୈନ୍ୟ ହଟେଇ ଆଣିଲେ ଅଷ୍ଟ୍ରିଆନମାନଙ୍କୁ ଉଦ୍ଧାର କରିବା ପାଇଁ ଏବଂ ରୁଷୀୟମାନଙ୍କ ଅଗ୍ରଗତିକୁ ରୋକି, ଶେଷକୁ ଭେର୍ଦ୍ଦୁନ୍ ଅଞ୍ଚଳରେ ସେମାନଙ୍କ ଆକ୍ରମଣକୁ ସଂପୂର୍ଣ୍ଣ ରୂପେ ବନ୍ଦ କରିବା ପାଇଁ । ଇଟାଲୀୟ ରଣାଙ୍ଗନରେ ପରିସ୍ଥିତି ଚୂଡ଼ାନ୍ତ ଭାବେ ବଦଳି ଗଲା – ଅଷ୍ଟ୍ରୋ-ହଙ୍ଗେରୀୟ ସୈନ୍ୟଦଳଗୁଡ଼ିକର ଆକ୍ରମଣ ପ୍ରତିହତ ହୋଇଥିଲା ।

କକେସୀୟ ସାମ୍ନୁଖ୍ୟରେ ଅନେକଗୁଡ଼ିଏ ବିଜୟ ଅର୍ଜିତ ହୋଇଥିଲା : ରୁଷ୍ ସେନାବାହିନୀ ୨୫୦-୩୦୦ କିଲୋମିଟର ପର୍ଯ୍ୟନ୍ତ ତୁର୍କୀୟ ଅଭ୍ୟନ୍ତରକୁ ଆଗେଇ ଯାଇଥିଲେ । ଡିସେମ୍ବର ଶେଷ ବେଳକୁ ଜର୍ମାନ୍‌ମାନେ ରୁମାନିଆ ଅଧିକାର କରି ନେଲେ । ରୁମାନିଆ ଏନ୍ତାନ୍ତ ପକ୍ଷରେ ଲଢ଼ୁଥିଲା ; ରୁଷୀୟ ରଣାଙ୍ଗନର ଦୈର୍ଘ୍ୟ ପ୍ରାୟ ୫୦୦ କିଲୋମିଟର ହୋଇ ଯାଇଥିଲା ଏବଂ ଏଥିରେ ୫୦ଟି ଶତ୍ରୁ ଡିଭିଜନ ନିଯୁକ୍ତ ଥିଲେ ।

୧୯୧୫, ବସନ୍ତ ଏବଂ ଗ୍ରୀଷ୍ମକାଳରେ ଜାର୍‌ସାହୀ ସୈନ୍ୟବାହିନୀର ଦାରୁଣ ପରାଜୟ ଅସ୍ତ୍ରଶସ୍ତ୍ର କ୍ଷେତ୍ରରେ ଭୟଙ୍କର ସଂକଟକୁ ପ୍ରକାଶ କରି ଦେଇଥିଲା ଏବଂ ରୁଷିଆର ଶାସକ ଶ୍ରେଣୀମାନେ ଦେଶର ସମଗ୍ର ଅର୍ଥନୀତିକୁ ସାମରିକ ପଥରେ ପୁନର୍ଗଠନ କରିବାର ସମସ୍ୟାର ସମ୍ମୁଖୀନ ହେଲେ । ୧୯୧୫, ଶରତକାଳରେ ରୁଷିଆର ଅର୍ଥନୀତିର ରାଷ୍ଟ୍ରୀୟ-ଏକଚ୍ଛତିଆ ନିୟନ୍ତ୍ରଣ ବ୍ୟବସ୍ଥା ସାମରିକ ଉତ୍ପାଦନରେ ବ୍ୟକ୍ତିଗତ ଶିଳ୍ପସମୂହର ସଂପୂର୍ଣ୍ଣ ନିଯୁକ୍ତିର ଭିତ୍ତି ସୃଷ୍ଟି କଲା ।

ଜାର୍‌ସାହୀ ସରକାରର ନିୟନ୍ତ୍ରକ କ୍ଷମତା ପ୍ରାପ୍ତ ପ୍ରତିନିଧିମାନେ ସାମରିକ ଉତ୍ପାଦନ ବୃଦ୍ଧି, ବିଶେଷ କରି ରାଇଫେଲ, ଗୁଳି, ତୋପ ପାଇଁ ଗୋଳା ନିର୍ମାଣ କ୍ଷେତ୍ରରେ ବୃଦ୍ଧି ସାଧନ କରି ପାରିଥିଲେ । ୧୯୧୪-୧୯୧୫ ଅପେକ୍ଷା ୧୯୧୬ ମସିହାରେ ଯୁଦ୍ଧ କ୍ଷେତ୍ରରେ ଥିବା ସୈନ୍ୟମାନଙ୍କୁ ଅସ୍ତ୍ରଶସ୍ତ୍ର ଅଧିକ ମାତ୍ରାରେ ମିଳି ପାରିଥିଲା, ଯଦିଓ କାରିଗରୀ ଯନ୍ତ୍ରପାତି ଦିଗରୁ ଯୁଦ୍ଧରତ ଅନ୍ୟାନ୍ୟ ଜାତିମାନଙ୍କ ଠାରୁ ଏହା ପଛରେ ପଡ଼ିଥିଲା । ସାମରିକ ଉତ୍ପାଦନର ଅଭିବୃଦ୍ଧି ଫଳରେ ଅଣସାମରିକ ଉତ୍ପାଦନ କ୍ଷତିଗ୍ରସ୍ତ ହେଲା ଏବଂ ଯାହା ବ୍ୟତିରେକେ ଜାତୀୟ ଅର୍ଥନୀତିର ସ୍ୱାଭାବିକ କ୍ରିୟାକର୍ମ ଅସମ୍ଭବ ।

ଫଳରେ ରେଳର ଉତ୍ପାଦନ ବନ୍ଦ ହୋଇଗଲା ଏବଂ ବାଷ୍ପୀୟ ଇଂଜିନ, ରେଳ ଡବା, କୃଷି ଯନ୍ତ୍ରପାତିର ଉତ୍ପାଦନ ମଧ୍ୟ ହଠାତ୍ କମି ଆସିଲା । ଯୁଦ୍ଧ ଗ୍ରାସିବାକୁ ଲାଗିଲା ଶିଳ୍ପ ଏବଂ ଯାନବାହନ କ୍ଷେତ୍ରର ମୂଳ ପୁଞ୍ଜିର ନିର୍ମମ ଅପବ୍ୟୟ ଦ୍ୱାରା । ରୁଷ୍ ସୈନ୍ୟବାହିନୀକୁ ଅସ୍ତ୍ରଶସ୍ତ୍ର ଯୋଗାଇ ଦେବାରେ ଯେଉଁ ସଂକଟରାଜି ଦେଖାଦେଇଥିଲା, ତାକୁ ହୁଏତ ଅତିକ୍ରମ କରାଗଲା ସାମୟିକ ଭାବେ, କିନ୍ତୁ ସେଥି ପାଇଁ ନିଆଯାଇଥିବା ପଦକ୍ଷେପସମୂହ ଦେଶର ଅର୍ଥନୀତି କ୍ଷେତ୍ରରେ ସାଧାରଣ ଏକ ସଂକଟ ସୃଷ୍ଟି କଲା । ବୃହଦାକାର ଉତ୍ପାଦନ ଭାଗ ଭାଗ ହୋଇଯିବାର ପରିପ୍ରେକ୍ଷୀତରେ ଖାଦ୍ୟ ସଂକଟ ତୀବ୍ରତର ହେବାକୁ ଲାଗିଲା; ଏହା ଥିଲା ସମସ୍ତ ଅର୍ଥନୈତିକ ଜୀବନର ବିଶୃଙ୍ଖଳା ଏବଂ ଦୁର୍ବଳକରଣର ଜ୍ୱଳନ୍ତ ପରିପ୍ରକାଶ । ଯୁଦ୍ଧ କ୍ଷେତ୍ରର ପଶ୍ଚାଦ୍‌ଭାଗ ଅଞ୍ଚଳସମୂହ ଅର୍ଥନୈତିକ ଦ୍ୱନ୍ଦ୍ୱରେ ପଡ଼ିବାକୁ ଲାଗିଲେ ଏବଂ ସେସବୁ ଦ୍ୱନ୍ଦ୍ୱ ମଧ୍ୟରୁ କୌଣସି ଗୋଟିକୁ ଅଲଗା ଭାବେ ସମାହିତ କରି ହୁଏ ନାହିଁ । ଶ୍ରମଜୀବୀ ଜନସାଧାରଣଙ୍କ ମଧ୍ୟରୁ କ୍ରମଶଃ ଅଧିକରୁ ଅଧିକ ଯୁଦ୍ଧ ଏବଂ ସରକାର ଉପରେ ଅସନ୍ତୁଷ୍ଟ ହେବାକୁ ଲାଗିଲେ । ୧୯୧୬ ମସିହା ଗ୍ରୀଷ୍ମକାଳରେ ଏକ ଗଣ ଅଭ୍ୟୁତ୍‌ଥାନ ଦେଖାଦେଲା ମଧ୍ୟ ଏସିଆ ଏବଂ କାଜାଖସ୍ତାନରେ, ଜାର୍ ସରକାରର ଔପନିବେଶିକ ନୀତିରାଜି ବିରୁଦ୍ଧରେ । ଗ୍ରାମାଞ୍ଚଳରେ ମଧ୍ୟ ଗଣ ଅସନ୍ତୋଷ ଦେଖାଦେଲା: ୧୯୧୬ ମସିହାରେ ୨୯୪ଟି ଗଣ ବିକ୍ଷୋଭ ଦେଖାଦେଇଥିଲା ଏବଂ ସେଥି ପାଇଁ ୯୧ ଥର ସୈନ୍ୟଦଳଗୁଡ଼ିକୁ ଡାକିବାକୁ ପଡ଼ିଥିଲା । ସର୍ବହରାମାନେ ବିପ୍ଳବୀ ସଂଗ୍ରାମକୁ ନେତୃତ୍ୱ ଦେଇଥିଲେ । କେବଳ ପେତ୍ରୋଗ୍ରାଦରେ (ପ୍ରଥମ ବିଶ୍ୱ ଯୁଦ୍ଧ ଆରମ୍ଭ ପରେ ସେଣ୍ଟ ପିଟର୍ସବୁର୍ଗର ନାମ) ୧୯୧୬ ଅକ୍ଟୋବର ମାସରେ ୨୫୦,୦୦୦ ଶ୍ରମିକ ଧର୍ମଘଟ କରିଥିଲେ । ମସ୍କୋରେ ଯୁଦ୍ଧବିରୋଧୀ ଧର୍ମଘଟମାନ ଦେଖାଦେଲା ଏବଂ ଆଉ କେତେକ ପ୍ରଦେଶର ଶିଳ୍ପୋଦ୍ୟୋଗମାନଙ୍କରେ ଅର୍ଥନୈତିକ ଧର୍ମଘଟର ନିଆଁ ଜଳି ଉଠିଲା । ୧୯୧୬ ନଭେମ୍ବର-ଡିସେମ୍ବର ମାସରେ ଶ୍ରମିକ ଶ୍ରେଣୀ ଆନ୍ଦୋଳନରେ ଯେଉଁ ସାମାନ୍ୟ ଶାନ୍ତ ଅବସ୍ଥା ପ୍ରକାଶ ପାଇଥିଲା, ତାହା ଥିଲା ଝଡ଼ର ପୂର୍ବାବସ୍ଥା ଭଳି ।

ଯୁଦ୍ଧ କ୍ଷେତ୍ରରେ ବିପୁଳ କ୍ଷୟକ୍ଷତି, ଅସ୍ତ୍ରଶସ୍ତ୍ରର ଦାରୁଣ ଅଭାବ ଏବଂ ଦେଶ ମଧ୍ୟରେ ଅର୍ଥନୈତିକ ଅବ୍ୟବସ୍ଥା ଏବଂ ବିପ୍ଳବୀ ସଂକଟ ରୁଷୀୟ ସୈନ୍ୟବାହିନୀର ଯୁଦ୍ଧ କରିବାର କ୍ଷମତା ତଥା ନୈତିକ ବଳକୁ ଦାରୁଣ ଭାବେ ନ୍ୟୂନ କରି ଦେଇଥିଲା ୧୯୧୬ ମସିହାର ଶେଷ ବେଳକୁ । ବଲ୍‌ଶେଭିକ୍‌ମାନେ ସେନାବାହିନୀର ସ୍ୱତଃସ୍ଫୂର୍ତ୍ତ ଅଧଃପତନକୁ ଏହାର ବିପ୍ଳବୀକରଣ ପ୍ରକ୍ରିୟାକୁ ପରିବର୍ତ୍ତନ କରି ଦେଲେ । ଜାର୍ ସରକାର ମଧ୍ୟ ଏଠାରେ ତା'ର ଗଣନାରେ ଭୁଲ କରି ଦେଲା: ବିପ୍ଳବୀ ମନୋଭାବାପନ୍ନ ସର୍ବହରାମାନଙ୍କୁ ସେନାବାହିନୀରେ ନିଯୁକ୍ତି କରି ପଶ୍ଚାଦ୍‌ଭାଗରେ ବିପ୍ଳବ ବିରୁଦ୍ଧରେ ସଂଗ୍ରାମ କରିବାକୁ ଯାଇ ଏହା ରଣାଙ୍ଗନରେ ବୈପ୍ଳବିକ ଅଭ୍ୟୁତ୍‌ଥାନର ପଥ ଖୋଲି ଦେଲା, ଯେଉଁଠି

କୃଷକମାନଙ୍କୁ ଅଧିକ ସଂଖ୍ୟାରେ ସେନାଦଳ ତଥା ରେଜିମେଣ୍ଟ ମଧ୍ୟରେ ସଂଗଠିତ କରାଯାଇ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରାଯାଇଥିଲା । ବଲ୍‌ଶେଭିକ୍ ସାମରିକ ସଂଗଠନଗୁଡ଼ିକ ସେନାବାହିନୀ ମଧ୍ୟରେ ଏବଂ ସହରରେ ଥିବା ବଡ଼ ବଡ଼ ଦୁର୍ଗ ମଧ୍ୟରେ ୧୯୧୬ ମସିହାର ଶେଷ ବେଳକୁ ତତ୍ପର ଥିଲେ । ୧୯୧୬, ବସନ୍ତକାଳ ବେଳକୁ ରୁଷୀୟ ଏବଂ ଜର୍ମାନ୍ ସୈନ୍ୟମାନଙ୍କ ମଧ୍ୟରେ ଅଧିକରୁ ଅଧିକ ମିଶ୍ରଣ ଆରମ୍ଭ ହେବାକୁ ଲାଗିଲା । ବେଳେ ବେଳେ ସମଗ୍ର ରଣାଙ୍ଗନରେ ଏହି ମିଶ୍ରଣ ମଧ୍ୟ ଦେଖାଗଲା । ବଡ଼ ବଡ଼ ସେନାଦଳସବୁ ଆଗକୁ ଆଗେଇବାକୁ ଅସ୍ୱୀକାର କଲେ । ଯୁଦ୍ଧ ତଥା ସ୍ୱୈରତନ୍ତ୍ର ବିରୁଦ୍ଧରେ ଏକ ଗଣ ଆନ୍ଦୋଳନର ଜୁଆର ସୈନ୍ୟବାହିନୀ ମଧ୍ୟରେ ଖେଳି ଗଲା ।

ଯୁଦ୍ଧର ଅବସାନ ତେବେ କେମିତି ଘଟିବ ? ଭବିଷ୍ୟତରେ ଯୁଦ୍ଧକୁ କିପରି ରୋକାଯିବ ? ଏହିସବୁ ପ୍ରଶ୍ନ ଆବଶ୍ୟକ କରୁଥିଲା ଆଶୁ ଉତ୍ତର ଏବଂ ପଦକ୍ଷେପ । ଏସବୁର ଉତ୍ତର ଯୋଗାଇ ଦେଇ ପାରି ନଥିଲେ ଦ୍ୱିତୀୟ ଆନ୍ତର୍ଜାତିକର ମୁଖ୍ୟ ପାର୍ଟିଗୁଡ଼ିକ : ଯୁଦ୍ଧ ଚାଲିଥିବା ବର୍ଷଗୁଡ଼ିକରେ ଏହିସବୁ ପାର୍ଟି ସେମାନଙ୍କ ଦେଶର ବୁର୍ଜୁଆ ସହିତ ମିଶି "ଦେଶ ରକ୍ଷା" ଧ୍ୱନି ଦେଇ ବାହାରି ପଡ଼ିଥିଲେ ଏବଂ ଆନ୍ତର୍ଜାତିକତାବାଦୀ, ବୈପ୍ଳବିକ ଅବସ୍ଥାନ ତଥା ନୀତିରାଜିକୁ ବର୍ଜ୍ଜନ କରିଥିଲେ । ଯୁଦ୍ଧର ଅବସାନ କେବଳ ଶତ୍ରୁକୁ ପରାଜିତ କରିବା ଦ୍ୱାରା, "ଯୁଦ୍ଧର ଅବସାନ ବିଜୟ ଅର୍ଜନରେ" — ଏହିଭଳି ଥିଲା ସେମାନଙ୍କର ଉତ୍ତର । ରୁଷିଆର ପେଟି-ବୁର୍ଜୁଆ ପାର୍ଟି — ମେନ୍‌ଶେଭିକ୍ ଏବଂ ସୋସାଲିଷ୍ଟ-ବିପ୍ଳବୀ ପାର୍ଟିଗୁଡ଼ିକ ମଧ୍ୟ ଏହି ଅବସ୍ଥାନ ଗ୍ରହଣ କରିଥିଲେ ।

ଯୁଦ୍ଧ ବର୍ଷମାନଙ୍କ ମଧ୍ୟରେ ବଲ୍‌ଶେଭିକ୍‌ମାନେ ନିଜକୁ ସୁସଙ୍ଗତ ଆନ୍ତର୍ଜାତିକତାବାଦୀ-ବିପ୍ଳବୀ ବୋଲି ପ୍ରମାଣ କରି ଚାଲିଥିଲେ । ପୁଞ୍ଜିବାଦ ତା'ର ବିକାଶର ସର୍ବୋଚ୍ଚ ସ୍ତର, ସାମ୍ରାଜ୍ୟବାଦୀ ସ୍ତରରେ ବିଶ୍ୱ ଯୁଦ୍ଧ ଭିଆଇଲା । ତେଣୁ ଏଥିରୁ ଏହି ସିଦ୍ଧାନ୍ତରେ ପହଞ୍ଚାଯାଏ ଯେ, ସାମ୍ରାଜ୍ୟବାଦୀ ବୁର୍ଜୁଆକୁ ଏକ ବିପ୍ଳବୀ ପଦ୍ଧତିରେ ଉତ୍‌ଖାତ କରି ଏହି ଯୁଦ୍ଧର ଅବସାନ କରି ହେବ । ତେଣୁ ଧ୍ୱନି ଦିଆଗଲା : ସାମ୍ରାଜ୍ୟବାଦୀ ଯୁଦ୍ଧକୁ ଗଣ ଯୁଦ୍ଧରେ ପରିଣତ କର, ଯେଉଁ ଯୁଦ୍ଧ ହେବ, ନିର୍ଯ୍ୟାତକମାନଙ୍କ ବିରୁଦ୍ଧରେ ନିର୍ଯ୍ୟାତିତମାନଙ୍କର ଯୁଦ୍ଧ । ଏହି ଧ୍ୱନିଟିକୁ ବଲ୍‌ଶେଭିକ୍‌ମାନେ ବିଶ୍ୱ ଯୁଦ୍ଧର ପ୍ରଥମ ଦିନ ଉପସ୍ଥାପିତ କରିଥିଲେ । ତା'ପରେ ପୁଞ୍ଜିବାଦର ସର୍ବୋଚ୍ଚ ସ୍ତର ହିସାବରେ ସାମ୍ରାଜ୍ୟବାଦର ସ୍ୱତନ୍ତ୍ର ଅଧ୍ୟୟନରୁ ଗତି କରି ଲେନିନ୍ ସମାଜବାଦୀ ବିପ୍ଳବର ତତ୍ତ୍ୱକୁ ଆଉରି ବିକଶିତ କରିଥିଲେ । ପୁଞ୍ଜିବାଦର ଅସମ ଅର୍ଥନୈତିକ ତଥା ରାଜନୈତିକ ବିକାଶର ନିୟମକୁ ଭିତ୍ତି କରି ଏବଂ ସାମ୍ରାଜ୍ୟବାଦ ଅଧୀନରେ ଏହି ଅସମତାର ଆଉରି ତୀବ୍ର ଅଭିବୃଦ୍ଧିକୁ ହିସାବ କରି ସେ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ, ପ୍ରଥମେ ଗୋଟିଏ ଦେଶରେ

ସର୍ବହରା ବିପ୍ଳବର ବିଜୟ ସମ୍ଭବ । ଲେନିନ୍‌ଙ୍କ ସିଦ୍ଧାନ୍ତ ଦର୍ଶାଇ ଦେଲା ପ୍ରତ୍ୟେକଟି ପୁଞ୍ଜିବାଦୀ ଦେଶରେ ସର୍ବହରାର ମୂଳତଃ ଆନ୍ତର୍ଜାତିକ ବିପ୍ଳବୀ ଆନ୍ଦୋଳନର ଛାମୁବାହିନୀ ବିପ୍ଳବୀ ରୁଷ୍‌ର ସର୍ବହରା ଶ୍ରେଣୀର ଅଗ୍ରପଦକ୍ଷେପ ନେବାର ପଥ ।

ଗଣତନ୍ତ୍ର ପାଇଁ ସଂଗ୍ରାମ ସହିତ ସମାଜବାଦୀ ବିପ୍ଳବ ପାଇଁ ସଂଗ୍ରାମକୁ ଏକାଠି କରିବାର ପ୍ରପାଦ୍ୟଟିକୁ ମଧ୍ୟ ଆଉରି ବିକଶିତ କରାଯାଇଥିଲା । ପ୍ରଥମ ରୁଷ୍ ବିପ୍ଳବର ବର୍ଷମାନଙ୍କରେ ଏହି ଏକତ୍ରୀକରଣକୁ ବିଗ୍ରହ କରାଯାଉଥିଲା ବିଜୟମଣ୍ଡିତ ଗଣତାନ୍ତ୍ରିକ ବିପ୍ଳବରୁ ସମାଜବାଦୀ ବିପ୍ଳବକୁ ପ୍ରତ୍ୟକ୍ଷ ବିକାଶ ରୂପେ । କିନ୍ତୁ ସାମ୍ରାଜ୍ୟବାଦ ବୋଇଲେ କେବଳ ସର୍ବହରାର ଶୋଷଣକୁ ବୁଝାଏ ନାହିଁ । ନିର୍ଦ୍ଦିଷ୍ଟ ଏକ ଦେଶର ଆଭ୍ୟନ୍ତରୀଣ ତଥା ତା'ର ସୀମା ବାହାରର ବ୍ୟାପକ ଅଣସର୍ବହରା ଜନସାଧାରଣଙ୍କ ଶୋଷଣ ତଥା ଦାସତ୍ୱକୁ ଏହା ବୁଝାଇଥାଏ । ତା ଅର୍ଥ, ଅର୍ଥ ପୁଞ୍ଜି ଦ୍ୱାରା ସମସ୍ତ ପ୍ରକାରର ଶୋଷଣ, ଉଭୟ ପୁଞ୍ଜିବାଦୀ, ପୁଞ୍ଜିବାଦପୂର୍ବ ଶୋଷଣ ଏବଂ ଉଭୟର ଏକତ୍ରୀକରଣ । ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ କଲା ବେଳେ ଅଞ୍ଚଳଗତ ଭାବେ ଭିନ୍ନ ଭିନ୍ନ ବହୁ ସାମାଜିକ ଧାରା ପକ୍ଷରେ ଏକତ୍ର କାର୍ଯ୍ୟାନୁଷ୍ଠାନ କରିବା ସମ୍ଭବ ଏବଂ ତଦୁପରି ଆବଶ୍ୟକ । ଏହି ପ୍ରତିପାଦ୍ୟଟିକୁ ଲେନିନ୍ ପରେ ସଂକ୍ଷେପରେ ପ୍ରକାଶ କରିଥିଲେ : ଦୁନିଆର ଶ୍ରମିକ ଏବଂ ନିର୍ଯ୍ୟାତିତ ଜାତିମାନେ ଏକ ହୁଅ ! ୧୯୧୬ ମସିହାର ଶେଷରେ ଲେନିନ୍ ଲେଖିଥିଲେ : "ଗଣତନ୍ତ୍ର ପାଇଁ ସଂଗ୍ରାମକୁ ସମାଜବାଦୀ ବିପ୍ଳବ ପାଇଁ ସଂଗ୍ରାମ ସହିତ, ପ୍ରଥମଟିକୁ ଦ୍ୱିତୀୟଟିର ଅଧୀନ କରାଇ, କିପରି ସଂଗଠିତ କରିବାକୁ ହୁଏ ଜାଣିବା ଦରକାର । ଏହିଥିରେ ସମସ୍ତ ଅସୁବିଧାଟି ନିହିତ; ଏହିଥିରେ ସମସ୍ତ ନିର୍ଯ୍ୟାସ ନିହିତ ।" ତା'ପରେ ସମସ୍ୟାର କେତେକ ଭୁଲ ସମାଧାନର କଥା ଚିନ୍ତା କରି ଲେନିନ୍ ଲେଖିଥିଲେ : "... ମୁଖ୍ୟ ବିଷୟଟି ଉପରୁ ଦୃଷ୍ଟି ଏଡ଼ାଇ ନେଲେ ଚଳିବ ନାହିଁ (ସମାଜବାଦୀ ବିପ୍ଳବ); ଏହାକୁ ପ୍ରଥମରେ ରଖ ... ସମସ୍ତ ଗଣତାନ୍ତ୍ରିକ ଦାବିକୁ ଉପସ୍ଥାପିତ କରାଅ... କିନ୍ତୁ ସବୁକିଛିକୁ ଏହାର ଅଧୀନସ୍ଥ କରାଅ, ଏହା ସହିତ ସମନ୍ୱୟ କରାଅ ... ଏବଂ ମନେ ରଖିଥାଅ, ମୁଖ୍ୟ ବିଷୟଟି ପାଇଁ ସଂଗ୍ରାମର ନିଆଁ ହୁଏତ ଜଳି ଉଠିବ, ଯଦିଓ କୌଣସି କିଛି ଆଂଶିକ ପାଇଁ ସଂଗ୍ରାମ ଆରମ୍ଭ ହୋଇଥିଲେ ମଧ୍ୟ । ମୋ ମତରେ ବିଷୟଟିର ଏତାଦୃଶ ଅବଧାରଣା ହିଁ ସଠିକ ।"

ପ୍ରଥମ ବିପ୍ଳବ ପରେ ଅଭୂତପୂର୍ବ ଧର୍ମଘଟର ଜୁଆର ୧୯୧୭ ମସିହାରେ ଆରମ୍ଭ ହୋଇଗଲା । ପ୍ରାୟ ୭୦୦,୦୦୦ ଶ୍ରମିକ ଜାନୁଆରୀ ଏବଂ ଫେବୃଆରୀ ମାସରେ ଏହିସବୁ ଧର୍ମଘଟରେ ଯୋଗ ଦେଇଥିଲେ । ଫେବୃଆରୀ ମାସର ମଧ୍ୟ ଭାଗରେ ପେଟ୍ରୋଗ୍ରାଦ୍‌ର ବଲ୍‌ଶେଭିକ୍‌ମାନେ ଏକ ବିଶେଷ ପ୍ରଗ୍ରରପତ୍ରରେ ସ୍ୱୈରତନ୍ତ୍ରର ଉଚ୍‌ଛେଦକୁ ଆନ୍ଦୋଳନର ଏକ ଆଶୁ କର୍ତ୍ତବ୍ୟ ବୋଲି ଆହ୍ୱାନ ଦେବାକୁ ମନେ କରିଥିଲେ । ପାରମ୍ପରିକ "ଶ୍ରମଜୀବୀ ନାରି ଦିବସ, ମାର୍ଚ୍ଚ ୮ ତାରିଖଟି" (ରୁଷିଆରେ ସେତେବେଳେ ପ୍ରଚଳିତ ଜୁଲିଆନ

ଦିନ ପଞ୍ଜି ଅନୁଯାୟୀ ଫେବୃଆରୀ ୨୩) ଥିଲା ସେଇ ଆଠ ଦିନ ମଧ୍ୟରୁ ପ୍ରଥମ ଦିନ, ଯାହାକି ରାଜତନ୍ତ୍ରର ଭାଗ୍ୟ ନିର୍ଦ୍ଧାରଣ କରିଥିଲା । ଏହାର ଦିନକ ପୂର୍ବରୁ ପୁଟିଲୋଭ କାରଖାନାରେ ତାଲାବନ୍ଦ ଘୋଷଣା କରାଯାଇଥିଲା । ପ୍ରାୟ ୩୦,୦୦୦ ଶ୍ରମିକଙ୍କୁ ବରଖାସ୍ତ କରାଯାଇଥିଲା । ଏବେ ନାରୀ ଶ୍ରମିକମାନେ ପେଟ୍ରୋଗ୍ରାଦ୍ ଶ୍ରମିକ ଜିଲ୍ଲାର – ଭିବର୍ଗସ୍କାୟା ସ୍ତରନା – ସୂତା କଳଗୁଡ଼ିକରେ ଏକ ଧର୍ମଘଟ ଆରମ୍ଭ କରିଥିଲେ । ହଜାର ହଜାର ଶ୍ରମିକ ଏହି ନାରୀ ଶ୍ରମିକମାନଙ୍କୁ ସମର୍ଥନ ଜଣାଇଥିଲେ । ସେଦିନ ସଂଧ୍ୟାବେଳେ ବିକ୍ଷୋଭକାରୀମାନଙ୍କର ପ୍ରଥମ ଧାରା ଆସି ପହଞ୍ଚି ଯାଇଥିଲା ନେଭ୍‌ସ୍କି ପ୍ରସପେକ୍ଟରେ (ପେଟ୍ରୋଗ୍ରାଦ୍‌ର ପ୍ରଧାନ ରାସ୍ତା) । ସମଗ୍ର ରାଜଧାନୀରେ ଉତ୍ତେଜନା ଭରପୂର । ବହୁ ଛାତ୍ର ଏବଂ ଅଫିସ କିରାଣୀ ଶ୍ରମିକମାନଙ୍କ ସହିତ ଯୋଗ ଦେଲେ ।

ବିପ୍ଳବ ଆରମ୍ଭ ହୋଇଗଲା । ବିପ୍ଳବର ତୃତୀୟ ଦିନରେ, ମାର୍ଚ୍ଚ ୧୦ ତାରିଖ ଦିନ ରାଜଧାନୀ ଏକ ସାଧାରଣ ଧର୍ମଘଟ ଫଳରେ ଅଚଳ ହୋଇ ପଡ଼ିଲା । ବିକ୍ଷୋଭକାରୀମାନେ ନେଭ୍‌ସ୍କି ପ୍ରସପେକ୍ଟ ଦେଇ ଏକ ସୀମାହୀନ ସ୍ରୋତ ପରି ମାଡ଼ି ଗ୍ଲଲିଥାନ୍ତି । ପୁଲିସ୍ ସହିତ କ୍ରମଶଃ ଅଧିକରୁ ଅଧିକ ସଂଘର୍ଷ ଘଟୁଥାଏ । ସଂଧ୍ୟାବେଳକୁ ଜାର୍ ପେଟ୍ରୋଗ୍ରାଦ୍ ସାମରିକ ଜିଲ୍ଲାର ସେନାପତିଙ୍କୁ ସାଧାରଣ ମୁଖ୍ୟ କାର୍ଯ୍ୟାଳୟରୁ ବାର୍ତ୍ତା ଦେଇ କହିଲେ : "ଆସନ୍ତା କାଲି ରାଜଧାନୀର ଗଣ୍ଡଗୋଳ ବନ୍ଦ କରିବାକୁ ମୁଁ ନିର୍ଦ୍ଦେଶ ଦେଉଛି ।" ଏହି ନିର୍ଦ୍ଦେଶଟି ଥିଲା ସର୍ବଶେଷ ଜାର୍‌ଙ୍କର ସର୍ବଶେଷ ନିର୍ଦ୍ଦେଶ, ଯାହାକୁ ପେଟ୍ରୋଗ୍ରାଦ୍ କର୍ତ୍ତୃପକ୍ଷ କାର୍ଯ୍ୟକାରୀ କରିବାକୁ ଉଦ୍ୟମ କରିଥିଲେ : ଅସ୍ତ୍ର ବ୍ୟବହାର କରିବାକୁ ନିର୍ଦ୍ଦେଶ ଦେଇ । ତେବେ, ନେଭ୍‌ସ୍କି ପ୍ରସପେକ୍ଟ ଏବଂ ସନ୍ନିକଟ ରାସ୍ତାରେ ବିକ୍ଷୋଭକାରୀମାନଙ୍କ ଉପରେ ଗୁଳି ଚ୍ଚଳନା ମାର୍ଚ୍ଚ ୧୧ ତାରିଖର ସକାଳ ବିପ୍ଳବରେ ଏକ ଦିଗ ମୋଡ଼ ଆଣି ଦେଲା : ସୈନ୍ୟମାନେ ସମସ୍ତେ ବିଦ୍ରୋହୀ ଶ୍ରମିକମାନଙ୍କ ପକ୍ଷ ନେବାକୁ ଆରମ୍ଭ କରି ଦେଲେ । ଅଭ୍ୟୁତ୍‌ଥାନ ବ୍ୟାପକ ହେବାରେ ଲଗିଲା । ମାର୍ଚ୍ଚ ୧୨ ତାରିଖ ଦିନ ସଂଧ୍ୟାରେ (ଫେବୃଆରୀ ୨୭) ଶ୍ରମିକ ଏବଂ ସୈନ୍ୟମାନଙ୍କ ହାତକୁ ସମଗ୍ର ସହର ଆସିଗଲା । ସଶସ୍ତ୍ର ଅଭ୍ୟୁତ୍‌ଥାନ ବିଜୟ ମଣ୍ଡିତ ହେଲା । ଫେବୃଆରୀ ୨୭ ତାରିଖ ଦିନ (ପୁରୁଣା ଦିନ ପଞ୍ଜି ଅନୁଯାୟୀ) ବୁର୍ଜୁଆ ଗଣତାନ୍ତ୍ରିକ ବିପ୍ଳବ ବିଜୟ ମଣ୍ଡିତ ହୋଇଥିବାରୁ ଏହାକୁ ଫେବୃଆରୀ ବିପ୍ଳବ ବୋଲି କୁହାଯାଇଥାଏ । ଏହି ଦିନ ବଲ୍‌ଶେଭିକ୍‌ମାନେ ରୁଷ୍ ସୋସାଲିଷ୍ଟ-ଡେମୋକ୍ରାଟିକ ଶ୍ରମିକ ପାର୍ଟିର କେନ୍ଦ୍ରୀୟ କମିଟିର "ରୁଷିଆର ସମସ୍ତ ନାଗରିକମାନଙ୍କ ପ୍ରତି" ଇସ୍ତାହାରଟି ରଚନା କରି ତା ପରଦିନ ପ୍ରକାଶ କରିଥିଲେ । ଶ୍ରମିକ ଶ୍ରେଣୀ ଏବଂ ବିପ୍ଳବୀ ସୈନ୍ୟମାନଙ୍କର ଆଶୁ କର୍ତ୍ତବ୍ୟ ହିସାବରେ "ବିଦ୍ରୋହୀ ଜନସାଧାରଣ ଏବଂ ସେନାବାହିନୀ ଦ୍ୱାରା ପ୍ରହର ରତ" ଏକ ନିଖିଳ ରୁଷୀୟ ଅସ୍ଥାୟୀ ବିପ୍ଳବୀ ସରକାର ସ୍ଥାପନ ବିଷୟ ଏହି ଇସ୍ତାହାରରେ ପ୍ରସ୍ତାବ କରାଯାଇଥିଲା । ଏହି ସରକାର ପାଇଁ ଏକ

ଭିତ୍ତି ଜନସାଧାରଣ ନିଜେ ତିଆରି କରିଥିଲେ : ମାର୍ଚ୍ଚ ୧୨ ତାରିଖ ଦିନ ସମଗ୍ର ସହରରେ ଶ୍ରମିକ ଏବଂ ସୈନ୍ୟମାନଙ୍କର ଜନପ୍ରତିନିଧିସମୂହଙ୍କ ପେଟ୍ରୋଗ୍ରାଦ୍ ସୋଭିଏତ୍ ତରିଦା ପ୍ରାସାଦରେ କାର୍ଯ୍ୟାରମ୍ଭ କରିଥିଲା ।

ସଶସ୍ତ୍ର ଅଭ୍ୟୁତ୍‌ଥାନର ପ୍ରଥମ ଦିନରୁ ଜାର୍‌ତନ୍ତ୍ର ସଂପୂର୍ଣ୍ଣ ରୂପେ ଅବସ୍ଥା ସଂପର୍କରେ ଅନବହିତ ଥିବାର ଏବଂ ନିଜର କ୍ରିୟାକଳାପ ଦ୍ୱାରା ନିଜର ଧ୍ୱଂସ ସାଧନକୁ ତ୍ୱରାନ୍ୱିତ କରୁଥିବାର ଲକ୍ଷ୍ୟ କରି ବୁର୍ଜୁଆମାନେ ଏହି ଜନପ୍ରିୟ ବିଜୟର ସୁଯୋଗ ନେବାକୁ ସ୍ଥିର କଲେ ଏବଂ ଦେଶର କ୍ଷମତା ଦଖଲ କରି ନେଲେ । ମାର୍ଚ୍ଚ ୧୩ ତାରିଖ ରାତ୍ରିରେ (ଫେବୃଆରୀ ୨୮) ସରକାରୀ ଭାବେ ଘୋଷଣା କରାଗଲା ଯେ, ରାଷ୍ଟ୍ର ଦୁମାର ଏକ ଅସ୍ଥାୟୀ କମିଟି ଗଠିତ ହୋଇଛି ଏବଂ ଏଥିରେ କେବଳ ଅତୀବ ଦକ୍ଷିଣ ପନ୍ଥୀମାନଙ୍କୁ ଛାଡ଼ି ଦୁମାରେ ଥିବା ସମସ୍ତ ଗୋଷ୍ଠୀଙ୍କ (ସୋସାଲିଷ୍ଟ-ରିଭଲ୍ୟୁସନାରୀ ଓ ମେନ୍‌ଶେଭିକ୍‌ଙ୍କ ସମେତ) ପ୍ରତିନିଧିମାନଙ୍କୁ ଏଥିରେ ନିଆଯାଇଛି । ଏହି କମିଟି ପ୍ରତିଷ୍ଠିତ ହେଲା ପରେ, ଏକ ଦିଗରେ ଏହା ରାଷ୍ଟ୍ରଯନ୍ତ୍ର ଉପରେ ଅଧିକାର ପ୍ରତିଷ୍ଠା ପାଇଁ ପଦକ୍ଷେପମାନ ନେଇଥିଲା (ଦୁମା ସଦସ୍ୟମାନଙ୍କ ମଧ୍ୟରୁ କମିସାରମାନଙ୍କୁ ସମସ୍ତ ମନ୍ତ୍ରୀମଣ୍ଡଳକୁ ପଠାଗଲା ଏବଂ ଜାର୍ ଦ୍ୱାରା ନିଯୁକ୍ତ ମନ୍ତ୍ରୀମାନଙ୍କୁ ବରଖାସ୍ତ କରାଗଲା) ଏବଂ ଅନ୍ୟ ଦିଗରେ, ଜାର୍‌ତନ୍ତ୍ର ଉପରେ ବିଜୟକୁ ଆନୁଷ୍ଠାନିକ ରୂପ ଦିଆଗଲା । ମାର୍ଚ୍ଚ, ୧୬ ତାରିଖ ରାତ୍ରିରେ ଜାର୍ ଦ୍ୱିତୀୟ ନିକୋଲାଇ ନିଜର ହତାଶପୂର୍ଣ୍ଣ ଅବସ୍ଥା ସଂପର୍କରେ ହୃଦୟଙ୍ଗମ କରି ଉତ୍ତର ରଣାଙ୍ଗନର ମୁଖ୍ୟ କାର୍ଯ୍ୟାଳୟ ପସ୍କୋଭ୍‌ରେ ରାଷ୍ଟ୍ରୀୟ ଦୁମାର ଅସ୍ଥାୟୀ କମିଟିର ସଦସ୍ୟ ଗୁଚ୍‌କୋଭ୍ ଓ ଶୁଲଗିନ୍‌ଙ୍କୁ ଏକ ଇସ୍ତାହାର ପ୍ରଦାନ କରିଥିଲେ । ଏଥିରେ ସେ ନିଜ ପକ୍ଷରୁ ନିଜର ଭାଇ ମାଇକେଲଙ୍କ ସପକ୍ଷରେ କ୍ଷମତା ହସ୍ତାନ୍ତର କରିଥିଲେ ମାର୍ଚ୍ଚ ୧୫ ତାରିଖ ଦିନ । ପେଟ୍ରୋଗ୍ରାଦ୍‌ର ଶ୍ରମିକମାନଙ୍କ ମଧ୍ୟରେ ଏହି ଇସ୍ତାହାରଟିକୁ ଘୋଷଣା କରିବା ପାଇଁ ତାଙ୍କର ପ୍ରଥମ ଉଦ୍ୟମ ଏପରି ଘୃଣାର ଝଡ଼ ସୃଷ୍ଟି କଲା ଯେ, ମାଇକେଲ ସିଂହାସନ ପାଇଁ କୌଣସି ଦାବୀ କରିବାକୁ ଅସ୍ୱୀକାର କରିଥିଲେ ।

ପେଟ୍ରୋଗ୍ରାଦ୍‌ର ବିଜୟ ମଣ୍ଡିତ ଅଭ୍ୟୁତ୍‌ଥାନକୁ ସାରା ଦେଶ ବିପ୍ଳବୀ ସମର୍ଥନ ଜଣାଇଥିଲା ଏବଂ ରାଜତନ୍ତ୍ରର ଅବସାନ ଘଟିଲା ।

ବିପ୍ଳବର ପ୍ରଥମ ଦିନଗୁଡ଼ିକରେ ପ୍ରକୃତ କ୍ଷମତା ନିହିତ ଥିଲା ବିଜୟ ମଣ୍ଡିତ ଗଣ ଅଭ୍ୟୁତ୍‌ଥାନର ସଂସ୍ଥା, ଶ୍ରମିକ ଏବଂ ସୈନ୍ୟମାନଙ୍କ ଜନପ୍ରତିନିଧିମାନଙ୍କ ପେଟ୍ରୋଗ୍ରାଦ୍ ସୋଭିଏତ୍ ହାତରେ । ବଲ୍‌ଶେଭିକ୍‌ମାନଙ୍କ ପକ୍ଷରୁ ମାର୍ଚ୍ଚ ୧୨ ତାରିଖର (ଫେବୃଆରୀ ୨୭) ପ୍ରଶ୍ନରପତ୍ରରେ ପ୍ରସ୍ତାବିତ ସୋଭିଏତ୍‌ସମୂହର ସଦସ୍ୟମାନଙ୍କୁ ନେଇ ଏକ ଅସ୍ଥାୟୀ ବିପ୍ଳବୀ ସରକାର ଗଠନ କରିବାର ଚିନ୍ତାଟିକୁ ବାସ୍ତବାୟିତ କରାଗଲା ନାହିଁ ପେଟି-ବୁର୍ଜୁଆ ଆପୋଷକାରୀ ପାର୍ଟିମାନଙ୍କର ଅବସ୍ଥାନ ହେତୁ, ସେମାନେ ପେଟ୍ରୋଗ୍ରାଦ୍ ସୋଭିଏତ୍‌ରେ ସଂଖ୍ୟାଗରିଷ୍ଠ ଥିଲେ । ଏହିସବୁ ପାର୍ଟି ପୁରୁଣା ମେନ୍‌ଶେଭିକ୍ ଯୋଜନାର

ପ୍ରଭାବାଧୀନ ଥିଲେ : "ଜାର୍‌ତନ୍ତ୍ରକୁ ଯେଉଁ ଶକ୍ତି ସ୍ଥାନାନ୍ତରିତ କରିବ, ସେ ହେଲା ବୁର୍ଜୁଆଜି ।"

ରାଷ୍ଟ୍ରୀୟ ଡୁମାର ଅସ୍ଥାୟୀ କମିଟି, ଏହାର ବିପରୀତରେ, ସୋଭିଏତ୍‌ର ଅଜ୍ଞାତରେ କାର୍ଯ୍ୟ କରି ଥିଲେ ସୋଭିଏତ୍‌ର ଅନୁମତିକ୍ରମେ ପ୍ରକୃତ କ୍ଷମତା ଅଧିକାର କରି ପାରିଥାନ୍ତା । ଏହି ଅନୁମତି ମଧ୍ୟ ଆସିଯିବା ଭଳି ଅବସ୍ଥାରେ ଥିଲା । ମାର୍ଚ୍ଚ ୧୪ ତାରିଖ ସଂଧ୍ୟାବେଳେ ସୋଭିଏତ୍‌ର ମେନ୍‌ଶେଭିକ୍‌-ସୋସାଲିଷ୍ଟ-ରିଭଲ୍ୟୁସନାରୀ ନେତୃତ୍ୱ କେତେକ ସର୍ତ୍ତ ଉପସ୍ଥାପିତ କରିଥିଲେ, ଡୁମା ତରଫରୁ ଅସ୍ଥାୟୀ ସରକାର ଗଠନ ପାଇଁ । ସେଇସବୁ ସର୍ତ୍ତ ବୁର୍ଜୁଆଜିର ଗୁରୁତ୍ୱପୂର୍ଣ୍ଣ ସ୍ୱାର୍ଥକୁ ସୀମିତ କରୁ ନଥିଲା । ମାର୍ଚ୍ଚ ୧୫ ତାରିଖ ଦିନ ଆପୋଷକାରୀ ନେତୃତ୍ୱର ଅନୁଗାମୀ ସୋଭିଏତ୍‌ର ପୂର୍ଣ୍ଣାଙ୍ଗ ଅଧିବେଶନ ସୋଭିଏତ୍‌ର ସଦସ୍ୟମାନଙ୍କୁ ନେଇ ଅସ୍ଥାୟୀ ସରକାର ଗଠନର ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ଦେଲା । ଏପରି ଘଟିବା ପଛରେ କେତେକ ପରିମାଣରେ ସେଇସବୁ ଅବସ୍ଥା ଦାୟୀ ଥିଲା, ଯାହା ଦ୍ୱାରା ଜାର୍‌ତନ୍ତ୍ର ବିରୁଦ୍ଧରେ ବିଜୟ ଏତେ ଶୀଘ୍ର ଘଟି ପାରିଥିଲା : ପେଟି-ବୁର୍ଜୁଆ ଜନସାଧାରଣ ସର୍ବହରାମାନଙ୍କ ପକ୍ଷରୁ ଆସି ଯାଇଥିଲେ; କିନ୍ତୁ ଲେନିନ୍‌ଙ୍କ ଭାଷାରେ, ଏହିସବୁ ଜନସାଧାରଣ ସଚେତନ ସର୍ବହରାଙ୍କୁ "କେବଳ ସଂଖ୍ୟାଗତ ଶକ୍ତି ଦୃଷ୍ଟିରୁ ଦବେଇ ରଖି ନଥିଲେ, ଭାବାଦର୍ଶଗତ ଦିଗରୁ ମଧ୍ୟ ଦବେଇ ରଖିଥିଲେ", ଅର୍ଥାତ୍‌, "ପେଟି-ବୁର୍ଜୁଆ ରାଜନୈତିକ ଦୃଷ୍ଟିଭଙ୍ଗି ଦ୍ୱାରା ଶ୍ରମିକମାନଙ୍କର ଏକ ବ୍ୟାପକ ଅଂଶ" ଦୁର୍ନୀତି ଗ୍ରସ୍ତ ହୋଇ ପଡ଼ିଥିଲେ ।

ମାର୍ଚ୍ଚ ୧୫ ତାରିଖ ଦିନ ଅସ୍ଥାୟୀ ବୁର୍ଜୁଆ ସରକାର ଜେମଷ୍ଟଭୋ ଆନ୍ଦୋଳନର ଜନୈକ ବିଖ୍ୟାତ ନେତା ଗିଓର୍ଗି ଲ୍‌ଭୋଭ୍‌ଙ୍କ ନେତୃତ୍ୱରେ ଗଠିତ ହେଲା । ଏହି ସରକାରରେ ଥିଲେ କାଦେତ୍‌ ଏବଂ ଅକ୍ଟୋବରପନ୍ଥୀ ପାର୍ଟିମାନଙ୍କ ସଦସ୍ୟମାନେ । ଦେଶରେ ଦ୍ୱୈତ କ୍ଷମତାର ଅଭ୍ୟୁଦୟ ଘଟିଲା : ପେଟ୍ରୋଗ୍ରାଦ୍‌ ସୋଭିଏତ୍‌ ଶ୍ରମିକ ଏବଂ କୃଷକମାନଙ୍କର କ୍ଷମତାକୁ ପ୍ରତିନିଧିତ୍ୱ କରୁଥିଲା ବେଳେ ସରକାର ବୁର୍ଜୁଆ ଏବଂ ଜମିଦାରମାନଙ୍କର ପ୍ରତିନିଧିତ୍ୱ କଲା ।

୧୯୧୭, ଏପ୍ରିଲ ୯ ତାରିଖ ଦିନ ଲେନିନ୍‌ ସୁଇଜରଲାଣ୍ଡରୁ ଚାଲି ଆସିଲେ ରୁଷିଆର ବିପ୍ଳବୀ ସଂଗ୍ରାମର ଅଧିକ ବିକାଶକୁ ନେତୃତ୍ୱ ଦେବା ପାଇଁ ।

# ୧୫ଶ ପରିଚ୍ଛେଦ

# ଏକଛତ୍ରବାଦର ପତନରୁ ମହାନ୍ ଅକ୍ଟୋବର ସମାଜବାଦୀ ବିପ୍ଳବ

ରାଜତନ୍ତ୍ରର ଉତ୍‌ଖାତ ପରେ ଦ୍ୱୈତ କ୍ଷମତା ପ୍ରତିଷ୍ଠା ଦର୍ଶାଇ ଦେଲା ଯେ, ରୁଷିଆରେ ବିପ୍ଳବ ରାଜନୈତିକ ଦିଗରୁ ସାଧାରଣ ବୁର୍ଜୁଆ ବିପ୍ଳବଠାରୁ ଆଉରି ଅଧିକ ଆଗେଇ ଯାଇଛି : ସୋଭିଏତ୍ ଆକାରରେ ବିପ୍ଳବ ଦ୍ୱାରା ସୃଷ୍ଟ ସର୍ବହରା ଏବଂ କୃଷକମାନଙ୍କ ବିପ୍ଳବୀ-ଗଣତାନ୍ତ୍ରିକ ଏକନାୟକତ୍ୱର ସଂସ୍ଥାଗୁଡ଼ିକ, ଯିଏକି ସଶସ୍ତ୍ର ଜନସାଧାରଣଙ୍କ ଉପରେ ନିର୍ଭର କରୁଥିଲେ । ଏଥି ସାଥେ ସାଥେ ଫେବୃଆରୀ ବିପ୍ଳବ ଜମିଦାରମାନଙ୍କ ମାହାଲଗୁଡ଼ିକୁ ଅକ୍ଷୁଣ୍ଣ ଭାବେ ଛାଡ଼ି ଦେଲା ଏବଂ ସେସବୁ ଥିଲା ଭୂମିଦାସ ପ୍ରଥାର ଅବଶେଷାଂଶର ପ୍ରଧାନ ଅର୍ଥନୈତିକ ଭିତ୍ତି । ଶାନ୍ତି ସଂକ୍ରାନ୍ତ ପ୍ରଶ୍ନଟି ମଧ୍ୟ ସମାହିତ ହେଲା ନାହିଁ ।

ଅଟକି ଯିବାକୁ ହେବ ନା ଆଗେଇ ଯିବାକୁ ହେବ ? ଏହି ପ୍ରଶ୍ନଟିକୁ ସମ୍ମୁଖକୁ ଠେଲି ଦେଉଥିଲା ବିପ୍ଳବର ସଂପୂର୍ଣ୍ଣ ଧାରାଟି ଏବଂ ଏହା ୧୯୧୭ ବସନ୍ତକାଳରେ ରାଜନୈତିକ ଆଲୋଚନାସମୂହର ମୁଖ୍ୟ ବସ୍ତୁରେ ପରିଣତ ହୋଇଥିଲା ।

ସୋଭିଏତ୍‌ଗୁଡ଼ିକରେ ସୋସାଲିଷ୍ଟ-ରିଭଲ୍ୟୁସନାରୀ ଏବଂ ମେନ୍‌ଶେଭିକ୍‌ମାନଙ୍କ ପ୍ରତିନିଧିମାନେ ସଂଖ୍ୟାଗରିଷ୍ଠ ଥିଲେ ଏବଂ ସେମାନେ ବିଶ୍ୱାସ କରୁଥିଲେ ଯେ, ବୁର୍ଜୁଆ ବିପ୍ଳବ ସଂପୂର୍ଣ୍ଣ ହୋଇ ଯାଇଛି, କିନ୍ତୁ ରୁଷିଆ ଏପର୍ଯ୍ୟନ୍ତ ସମାଜବାଦୀ ବିପ୍ଳବ ପାଇଁ ପ୍ରସ୍ତୁତ ନୁହେଁ । ତେଣୁ ବୁର୍ଜୁଆଙ୍କି ସହିତ ସେମାନେ ଏକ ବୁଝାମଣା କରିବାକୁ ଏବଂ ବିପ୍ଳବ ସ୍ଥଗିତ ରଖି ସୋଭିଏତ୍‌ଗୁଡ଼ିକୁ ଲୋପ କରିବାକୁ ଚାହୁଁଥିଲେ । ବିପ୍ଳବର ଏକାନ୍ତ ପ୍ରଥମ ଦିବସରେ ବଲ୍‌ଶେଭିକ୍‌ମାନେ ଦର୍ଶାଇଥିଲେ ଯେ, ଅସ୍ଥାୟୀ ସରକାର ପ୍ରତିବିପ୍ଳବୀ ବୋଲି ଏବଂ ହୁସିଆର କରି ଦେଇଥିଲେ, ବୁର୍ଜୁଆ ଜନସାଧାରଣଙ୍କୁ ଶାନ୍ତି, ଜମି, ଅଥବା ଗଣତାନ୍ତ୍ରିକ ରାଷ୍ଟ୍ର ବ୍ୟବସ୍ଥା ଦେବ ନାହିଁ । ସେମାନେ ସର୍ବହରା ଏବଂ କୃଷକମାନଙ୍କୁ ଡାକରା ଦେଇଥିଲେ ବିପ୍ଳବକୁ ଆଉରି ଆଗେଇ ନେବାକୁ ।

ଏପ୍ରିଲ ୧୬ ତାରିଖ ଅଧିକ ରାତ୍ରିରେ ଲେନିନ୍ ପେଟ୍ରୋଗ୍ରାଦ୍‌କୁ ପ୍ରତ୍ୟାବର୍ତ୍ତନ କଲେ । ଫିନ୍‌ଲ୍ୟାଣ୍ଡସି ରେଲଷ୍ଟେସନ ସମ୍ମୁଖସ୍ଥ ଚଉକରେ ଏକ ବର୍ମଯୁକ୍ତ ଗାଡ଼ି ଉପରେ ଛିଡ଼ା ହୋଇ

ତାଙ୍କୁ ସ୍ୱାଗତ ଜଣାଉଥିବା ବିପ୍ଳବୀ ଶ୍ରମିକ, ନାବିକ ଏବଂ ସୈନିକମାନଙ୍କୁ ଏକ ଅଗ୍ନିବର୍ଷୀ ଭାଷଣ ଦେଇଥିଲେ । ସେ ତାଙ୍କର ଏହି ବକ୍ତୃତାରେ ଇତିହାସରେ ଏପ୍ରିଲ ଥିସିସ୍ ନାମରେ ଖ୍ୟାତ ତାଙ୍କର ବିଖ୍ୟାତ କାର୍ଯ୍ୟକ୍ରମର ମୌଳିକ ପ୍ରତିପାଦ୍ୟସମୂହକୁ ଉପସ୍ଥାପନ କରିଥିଲେ । "ଅସ୍ଥାୟୀ ସରକାର ପ୍ରତି ସମର୍ଥନ ଦିଆଯିବ ନାହିଁ, ସୋଭିଏତ୍‌ଗୁଡ଼ିକୁ ସମସ୍ତ କ୍ଷମତା ଦିଆଯାଉ!" – ଏହି ଧ୍ୱନିଟିରେ ପ୍ରତିଫଳିତ ହୋଇଥିଲା ସୋଭିଏତ୍‌ସମୂହ ସଂପର୍କରେ ତାଙ୍କର ସମୀକ୍ଷା, ଯେଉଁଗୁଡ଼ିକ ଜନସାଧାରଣଙ୍କ ଦ୍ୱାରା ସୃଷ୍ଟ ହୋଇଥିଲା କ୍ଷମତାର ବିପ୍ଳବୀ ସଂସ୍ଥା ରୂପେ । ଏଥି ସାଥେ ସାଥେ ସେଇ ସ୍ଲୋଗାନରେ ଆଉରି ପ୍ରତିଫଳିତ ହୋଇଥିଲା ପ୍ରତିବିପ୍ଳବୀ ବୁର୍ଜୁଆଙ୍କର ସରକାର ହିସାବରେ ଅସ୍ଥାୟୀ ସରକାରର ଚରିତ୍ର, ଯିଏକି ଲୋକଙ୍କୁ ଜମି କିମ୍ବା ଶାନ୍ତି ଦେବାକୁ ଅକ୍ଷମ ଥିଲା । ଏହି ସ୍ଲୋଗାନରେ ଆଉରି ସୂଚନା ମିଳୁଥିଲା ଯେ, ଶାନ୍ତିପୂର୍ଣ୍ଣ ଉପାୟରେ ସୋଭିଏତ୍‌ଗୁଡ଼ିକ ସପକ୍ଷରେ ଦ୍ୱୈତ କ୍ଷମତାର ଅବସାନ ଘଟାଇ ହେବ । ଲୋକେ ଯେତେବେଳେ ନିଜ ବିରୁଦ୍ଧରେ କୌଣସି ହିଂସାର ପ୍ରଶ୍ରୟ ଦେବାକୁ ଚାହାନ୍ତି ନାହିଁ ତତ୍ ସଙ୍ଗେ ସଙ୍ଗେ ଅସ୍ଥାୟୀ ସରକାର ଉପରେ ବିଶ୍ୱାସ ରଖିଛନ୍ତି, ସେତେବେଳେ ଏହା ହିଁ ଥିଲା ଏକମାତ୍ର ସମ୍ଭାବ୍ୟ ଉପାୟ । ଲେନିନ୍‌ଙ୍କର ଏହି ଥିସିସ୍‌ରେ ଦୀର୍ଘକାଳୀନ କାର୍ଯ୍ୟକ୍ରମ, ପ୍ରଚାରର ଏକ କାର୍ଯ୍ୟକ୍ରମ ସାଙ୍ଗକୁ ବ୍ୟାଖ୍ୟା ଓ ସମାଲୋଚନା ସମେତ, ସର୍ବୋପରି, ତଥାକଥିତ "ବିପ୍ଳବୀ ପ୍ରତିରକ୍ଷାବାଦର" ରୂପକୁ ପଦାରେ ପକାଇ ଦିଆଯାଇଥିଲା । ଶେଷୋକ୍ତ ଧାରଣାଟି ଥିଲା ପେଟି-ବୁର୍ଜୁଆ ଜନସାଧାରଣଙ୍କର ବୈଶିଷ୍ଟ୍ୟ ଏବଂ ଏହି ଧାରଣା ଅନୁଯାୟୀ ରୁଷିଆରେ ସ୍ୱୈରତନ୍ତ୍ରର ଉତ୍‌ଖାତ ପରେ ରୁଷିଆ ଆଉ ସାମ୍ରାଜ୍ୟବାଦୀ ଯୁଦ୍ଧ ଚଳାଉ ନାହିଁ, ବିପ୍ଳବୀ ସାଫଲ୍ୟରାଜିର ସୁରକ୍ଷା ପାଇଁ ଏ ଯୁଦ୍ଧ ହେଉଛି ଏକ ନ୍ୟାୟ ଯୁଦ୍ଧ ଏବଂ ଏହା କୌଣସି ଅନ୍ୟରାଜ୍ୟ ଦଖଲ ବିନା ଶାନ୍ତି ଉଦ୍ଦେଶ୍ୟରେ ପରିଚାଳିତ ।

ଏପ୍ରିଲ ଥିସିସ୍‌ଟି ବଲ୍‌ଶେଭିକ୍‌ମାନଙ୍କର ୭ମ ନିଖିଳ ରୁଷିଆ (ଏପ୍ରିଲ) ସମ୍ମିଳନୀରେ ଟିକିନିଖି ଭାବେ ଆଲୋଚିତ ହେବା ସଙ୍ଗେ ସଙ୍ଗେ ଏଥିରେ ଗୃହୀତ ପ୍ରସ୍ତାବରାଜିର ଭିତ୍ତି ସ୍ୱରୂପ ହୋଇଥିଲା । ସଦ୍ୟ ଗୋପନ ଅବସ୍ଥାରୁ ପ୍ରକାଶ୍ୟକୁ ଆସିଥିବା ଏହି ପାର୍ଟିର ସଦସ୍ୟ ସଂଖ୍ୟା ଏପ୍ରିଲ ମାସ ଶେଷରେ ୧୦୦,୦୦୦ରୁ ଅଧିକ ଥିଲେ (ଫେବୃଆରୀ ଶେଷରେ ମାତ୍ର ଥିଲେ ୨୪,୦୦୦) । କଳକାରଖାନା, ଗ୍ରାମାଞ୍ଚଳ ତଥା ସୈନ୍ୟବାହିନୀ ଏବଂ ନୌବାହିନୀରେ ପାର୍ଟି ତା'ର ବହୁବିଧ ରାଜନୈତିକ କ୍ରିୟାକଳାପ ଆରମ୍ଭ କରି ଦେଲା । ଲେନିନ୍ ଏବଂ ତାଙ୍କ ଅନୁଗାମୀମାନଙ୍କ ବିରୁଦ୍ଧରେ ଅବିଳମ୍ବେ ଆରମ୍ଭ ହୋଇଗଲା ଏକ ତୀବ୍ର ଅଭିଯାନ । ମେନ୍‌ଶେଭିକ୍ ଏବଂ ସୋସାଲିଷ୍ଟ-ରିଭଲ୍ୟୁସନାରୀମାନେ ଏହି ପ୍ରଚାରାଭିଯାନରେ ବୁର୍ଜୁଆମାନଙ୍କ ପକ୍ଷରେ ଥିଲେ । ତେବେ ମେ ପହିଲା ଦିନ (ଏପ୍ରିଲ ୧୮) ଶ୍ରମଜୀବୀ ଜନସାଧାରଣଙ୍କ ତରଫରୁ ବିଶାଳ ମେ ଦିବସ ଶୋଭାଯାତ୍ରାଟି ଦର୍ଶାଇ ଦେଲା ଯେ, ଏପ୍ରିଲ ଥିସିସ୍‌ର କାର୍ଯ୍ୟକ୍ରମ ଜନସାଧାରଣଙ୍କ ମଧ୍ୟରେ ଜନପ୍ରିୟତା ଲାଭ କରୁଛି ।

# ୧୫ଶ ପରିଚ୍ଛେଦ

# ଏକଛତ୍ରବାଦର ପତନରୁ ମହାନ୍ ଅକ୍ଟୋବର ସମାଜବାଦୀ ବିପ୍ଳବ

ରାଜତନ୍ତ୍ରର ଉତ୍‌ଖାତ ପରେ ଦ୍ୱୈତ କ୍ଷମତା ପ୍ରତିଷ୍ଠା ଦର୍ଶାଇ ଦେଲା ଯେ, ରୁଷିଆରେ ବିପ୍ଳବ ରାଜନୈତିକ ଦିଗରୁ ସାଧାରଣ ବୁର୍ଜୁଆ ବିପ୍ଳବଠାରୁ ଆଉରି ଅଧିକ ଆଗେଇ ଯାଇଛି : ସୋଭିଏତ୍ ଆକାରରେ ବିପ୍ଳବ ଦ୍ୱାରା ସୃଷ୍ଟ ସର୍ବହରା ଏବଂ କୃଷକମାନଙ୍କ ବିପ୍ଳବୀ-ଗଣତାନ୍ତ୍ରିକ ଏକନାୟକତ୍ୱର ସଂସ୍ଥାଗୁଡ଼ିକ, ଯିଏକି ସଶସ୍ତ୍ର ଜନସାଧାରଣଙ୍କ ଉପରେ ନିର୍ଭର କରୁଥିଲେ । ଏଥି ସାଥେ ସାଥେ ଫେବୃଆରୀ ବିପ୍ଳବ ଜମିଦାରମାନଙ୍କ ମାହାଲଗୁଡ଼ିକୁ ଅକ୍ଷୁଣ୍ଣ ଭାବେ ଛାଡ଼ି ଦେଲା ଏବଂ ସେସବୁ ଥିଲା ଭୂମିଦାସ ପ୍ରଥାର ଅବଶେଷାଂଶର ପ୍ରଧାନ ଅର୍ଥନୈତିକ ଭିତ୍ତି । ଶାନ୍ତି ସଂକ୍ରାନ୍ତ ପ୍ରଶ୍ନଟି ମଧ୍ୟ ସମାହିତ ହେଲା ନାହିଁ ।

ଅଟକି ଯିବାକୁ ହେବ ନା ଆଗେଇ ଯିବାକୁ ହେବ ? ଏହି ପ୍ରଶ୍ନଟିକୁ ସମ୍ମୁଖକୁ ଠେଲି ଦେଇଥିଲା ବିପ୍ଳବର ସଂପୂର୍ଣ୍ଣ ଧାରାଟି ଏବଂ ଏହା ୧୯୧୭ ବସନ୍ତକାଳରେ ରାଜନୈତିକ ଆଲୋଚନାସମୂହର ମୁଖ୍ୟ ବସ୍ତୁରେ ପରିଣତ ହୋଇଥିଲା ।

ସୋଭିଏତ୍‌ଗୁଡ଼ିକରେ ସୋସାଲିଷ୍ଟ-ରିଭଲ୍ୟୁସନାରୀ ଏବଂ ମେନ୍‌ଶେଭିକ୍‌ମାନଙ୍କ ପ୍ରତିନିଧିମାନେ ସଂଖ୍ୟାଗରିଷ୍ଠ ଥିଲେ ଏବଂ ସେମାନେ ବିଶ୍ୱାସ କରୁଥିଲେ ଯେ, ବୁର୍ଜୁଆ ବିପ୍ଳବ ସଂପୂର୍ଣ୍ଣ ହୋଇ ଯାଇଛି, କିନ୍ତୁ ରୁଷିଆ ଏପର୍ଯ୍ୟନ୍ତ ସମାଜବାଦୀ ବିପ୍ଳବ ପାଇଁ ପ୍ରସ୍ତୁତ ନୁହେଁ । ତେଣୁ ବୁର୍ଜୁଆଜି ସହିତ ସେମାନେ ଏକ ବୁଝାମଣା କରିବାକୁ ଏବଂ ବିପ୍ଳବ ସ୍ଥଗିତ ରଖି ସୋଭିଏତ୍‌ଗୁଡ଼ିକୁ ଲୋପ କରିବାକୁ ଚାହୁଁଥିଲେ । ବିପ୍ଳବର ଏକାନ୍ତ ପ୍ରଥମ ଦିବସରେ ବଲ୍‌ଶେଭିକ୍‌ମାନେ ଦର୍ଶାଇଥିଲେ ଯେ, ଅସ୍ଥାୟୀ ସରକାର ପ୍ରତିବିପ୍ଳବୀ ବୋଲି ଏବଂ ହୁସିଆର କରି ଦେଇଥିଲେ, ବୁର୍ଜୁଆ ଜନସାଧାରଣଙ୍କୁ ଶାନ୍ତି, ଜମି, ଅଥବା ଗଣତାନ୍ତ୍ରିକ ରାଷ୍ଟ୍ର ବ୍ୟବସ୍ଥା ଦେବ ନାହିଁ । ସେମାନେ ସର୍ବହରା ଏବଂ କୃଷକମାନଙ୍କୁ ଡାକରା ଦେଇଥିଲେ ବିପ୍ଳବକୁ ଆଉରି ଆଗେଇ ନେବାକୁ ।

ଏପ୍ରିଲ ୧୬ ତାରିଖ ଅଧିକ ରାତ୍ରିରେ ଲେନିନ୍ ପେଟ୍ରୋଗ୍ରାଦ୍‌କୁ ପ୍ରତ୍ୟାବର୍ତ୍ତନ କଲେ । ଫିନ୍‌ଲ୍ୟାଣ୍ଡସି ରେଳଷ୍ଟେସନ ସମ୍ମୁଖସ୍ଥ ଚଉକରେ ଏକ ବର୍ମଯୁକ୍ତ ଗାଡ଼ି ଉପରେ ଛିଡ଼ା ହୋଇ

ତାଙ୍କୁ ସ୍ୱାଗତ ଜଣାଉଥିବା ବିପ୍ଳବୀ ଶ୍ରମିକ, ନାବିକ ଏବଂ ସୈନିକମାନଙ୍କୁ ଏକ ଅଗ୍ନିବର୍ଷୀ ଭାଷଣ ଦେଇଥିଲେ । ସେ ତାଙ୍କର ଏହି ବକ୍ତୃତାରେ ଇତିହାସରେ ଏପ୍ରିଲ ଥିସିସ୍ ନାମରେ ଖ୍ୟାତ ତାଙ୍କର ବିଖ୍ୟାତ କାର୍ଯ୍ୟକ୍ରମର ମୌଳିକ ପ୍ରତିପାଦ୍ୟସମୂହକୁ ଉପସ୍ଥାପନ କରିଥିଲେ । "ଅସ୍ଥାୟୀ ସରକାର ପ୍ରତି ସମର୍ଥନ ଦିଆଯିବ ନାହିଁ, ସୋଭିଏତ୍‌ଗୁଡ଼ିକୁ ସମସ୍ତ କ୍ଷମତା ଦିଆଯାଉ !" – ଏହି ଧ୍ୱନିଟିରେ ପ୍ରତିଫଳିତ ହୋଇଥିଲା ସୋଭିଏତ୍‌ସମୂହ ସଂପର୍କରେ ତାଙ୍କର ସମୀକ୍ଷା, ଯେଉଁଗୁଡ଼ିକ ଜନସାଧାରଣଙ୍କ ଦ୍ୱାରା ସୃଷ୍ଟ ହୋଇଥିଲା କ୍ଷମତାର ବିପ୍ଳବୀ ସଂସ୍ଥା ରୂପେ । ଏଥି ସାଥେ ସାଥେ ସେଇ ସ୍ଲୋଗାନରେ ଆଉରି ପ୍ରତିଫଳିତ ହୋଇଥିଲା ପ୍ରତିବିପ୍ଳବୀ ବୁର୍ଜୁଆଜିର ସରକାର ହିସାବରେ ଅସ୍ଥାୟୀ ସରକାରର ଚରିତ୍ର, ଯିଏକି ଲୋକଙ୍କୁ ଜମି କିମ୍ବା ଶାନ୍ତି ଦେବାକୁ ଅକ୍ଷମ ଥିଲା । ଏହି ସ୍ଲୋଗାନରେ ଆଉରି ସୂଚନା ମିଳୁଥିଲା ଯେ, ଶାନ୍ତିପୂର୍ଣ୍ଣ ଉପାୟରେ ସୋଭିଏତ୍‌ଗୁଡ଼ିକ ସପକ୍ଷରେ ଦ୍ୱୈତ କ୍ଷମତାର ଅବସାନ ଘଟାଇ ହେବ । ଲୋକେ ଯେତେବେଳେ ନିଜ ବିରୁଦ୍ଧରେ କୌଣସି ହିଂସାର ପ୍ରଶ୍ରୟ ଦେବାକୁ ଗ୍ରହାନ୍ତି ନାହିଁ ତତ୍ ସଙ୍ଗେ ସଙ୍ଗେ ଅସ୍ଥାୟୀ ସରକାର ଉପରେ ବିଶ୍ୱାସ ରଖିଛନ୍ତି, ସେତେବେଳେ ଏହା ହିଁ ଥିଲା ଏକମାତ୍ର ସମ୍ଭାବ୍ୟ ଉପାୟ । ଲେନିନ୍‌ଙ୍କର ଏହି ଥିସିସ୍‌ରେ ଦୀର୍ଘକାଳୀନ କାର୍ଯ୍ୟକ୍ରମ, ପ୍ରଗ୍ରରର ଏକ କାର୍ଯ୍ୟକ୍ରମ ସାଙ୍ଗକୁ ବ୍ୟାଖ୍ୟା ଓ ସମାଲୋଚନା ସମେତ, ସର୍ବୋପରି, ତଥାକଥିତ "ବିପ୍ଳବୀ ପ୍ରତିରକ୍ଷାବାଦର" ରୂପକୁ ପଦାରେ ପକାଇ ଦିଆଯାଇଥିଲା । ଶେଷୋକ୍ତ ଧାରଣାଟି ଥିଲା ପେଟି-ବୁର୍ଜୁଆ ଜନସାଧାରଣଙ୍କର ବୈଶିଷ୍ଟ୍ୟ ଏବଂ ଏହି ଧାରଣା ଅନୁଯାୟୀ ରୁଷିଆରେ ସ୍ୱୈରତନ୍ତ୍ରର ଉତ୍‌ଖାତ ପରେ ରୁଷିଆ ଆଉ ସାମ୍ରାଜ୍ୟବାଦୀ ଯୁଦ୍ଧ ଚଳାଉ ନାହିଁ, ବିପ୍ଳବୀ ସାଫଲ୍ୟରାଜିର ସୁରକ୍ଷା ପାଇଁ ଏ ଯୁଦ୍ଧ ହେଉଛି ଏକ ନ୍ୟାୟ ଯୁଦ୍ଧ ଏବଂ ଏହା କୌଣସି ଅନ୍ୟରାଜ୍ୟ ଦଖଲ ବିନା ଶାନ୍ତି ଉଦ୍ଦେଶ୍ୟରେ ପରିଗ୍ରାଳିତ ।

ଏପ୍ରିଲ ଥିସିସ୍‌ଟି ବଲ୍‌ଶେଭିକ୍‌ମାନଙ୍କର ୭ମ ନିଖିଳ ରୁଷିଆ (ଏପ୍ରିଲ) ସମ୍ମିଳନୀରେ ଟିକିନିଖି ଭାବେ ଆଲୋଚିତ ହେବା ସଙ୍ଗେ ସଙ୍ଗେ ଏଥିରେ ଗୃହୀତ ପ୍ରସ୍ତାବରାଜିର ଭିତ୍ତି ସ୍ୱରୂପ ହୋଇଥିଲା । ସଦ୍ୟ ଗୋପନ ଅବସ୍ଥାରୁ ପ୍ରକାଶ୍ୟକୁ ଆସିଥିବା ଏହି ପାର୍ଟିର ସଦସ୍ୟ ସଂଖ୍ୟା ଏପ୍ରିଲ ମାସ ଶେଷରେ ୧୦୦,୦୦୦ରୁ ଅଧିକ ଥିଲେ (ଫେବୃଆରୀ ଶେଷରେ ମାତ୍ର ଥିଲେ ୨୪,୦୦୦) । କଳକାରଖାନା, ଗ୍ରାମାଞ୍ଚଳ ତଥା ସୈନ୍ୟବାହିନୀ ଏବଂ ନୌବାହିନୀରେ ପାର୍ଟି ତା'ର ବହୁବିଧ ରାଜନୈତିକ କ୍ରିୟାକଳାପ ଆରମ୍ଭ କରି ଦେଲା । ଲେନିନ୍ ଏବଂ ତାଙ୍କ ଅନୁଗାମୀମାନଙ୍କ ବିରୁଦ୍ଧରେ ଅବିଳମ୍ବେ ଆରମ୍ଭ ହୋଇଗଲା ଏକ ତୀବ୍ର ଅଭିଯାନ । ମେନ୍‌ଶେଭିକ୍ ଏବଂ ସୋସାଲିଷ୍ଟ-ରିଭଲ୍ୟୁସନାରୀମାନେ ଏହି ପ୍ରଗ୍ରରାଭିଯାନରେ ବୁର୍ଜୁଆମାନଙ୍କ ପକ୍ଷରେ ଥିଲେ । ତେବେ ମେ ପହିଲା ଦିନ (ଏପ୍ରିଲ ୧୮) ଶ୍ରମଜୀବୀ ଜନସାଧାରଣଙ୍କ ତରଫରୁ ବିଶାଳ ମେ ଦିବସ ଶୋଭାଯାତ୍ରାଟି ଦର୍ଶାଇ ଦେଲା ଯେ, ଏପ୍ରିଲ ଥିସିସ୍‌ର କାର୍ଯ୍ୟକ୍ରମ ଜନସାଧାରଣଙ୍କ ମଧ୍ୟରେ ଜନପ୍ରିୟତା ଲାଭ କରୁଛି ।

ମେ ଦିବସ ପାଳନର ସ୍ଲୋଗାନଗୁଡ଼ିକ ଦ୍ୱାରା ଏହା ପ୍ରକାଶ ପାଇଥିଲା । ପେଟ୍ରୋଗ୍ରାଦ୍‌ର ଶ୍ରମିକ ଏବଂ ସୈନିକମାନଙ୍କ ଶୋଭାଯାତ୍ରାର ସ୍ଲୋଗାନଗୁଡ଼ିକରେ ଥିଲା : "ବିନା ରାଜ୍ୟ ଦଖଲ ଆଉ ବିନା କ୍ଷତିପୂରଣରେ ଶାନ୍ତି !" ଏବଂ "ସମସ୍ତ କ୍ଷମତା ସୋଭିଏତ୍‌ଗୁଡ଼ିକ ହାତକୁ !" ମସ୍କୋରେ ଅନୁଷ୍ଠିତ ସମାବେଶଗୁଡ଼ିକରେ ଯୁଦ୍ଧର ଅବସାନ ପାଇଁ ଅବିଳମ୍ବେ ପଦକ୍ଷେପ ନେବାକୁ ଦାବି କରି ପ୍ରସ୍ତାବମାନ ଗୃହୀତ ହୋଇଥିଲା ।

"ବିପ୍ଳବୀ ପ୍ରତିରକ୍ଷାବାଦର" ଉଚ୍ଛ୍ୱାସ କ୍ରମଶଃ କମିବାକୁ ଲାଗିଲା । ଅସ୍ଥାୟୀ ସରକାର ଚେଷ୍ଟା କଲା "ବିପ୍ଳବୀ ପ୍ରତିରକ୍ଷାବାଦକୁ" ପ୍ରତିବିପ୍ଳବୀ ଉଗ୍ରଜାତୀୟତାବାଦରେ ପରିଣତ କରିବା ପାଇଁ ସେସବୁକୁ ପୁନର୍ଜୀବିତ କରିବା ନିମିତ୍ତ । ପ୍ରତିବିପ୍ଳବୀ ଉଗ୍ରଜାତୀୟତାବାଦ ଉପରେ ନିର୍ଭର କରି ବିପ୍ଳବକୁ ଧ୍ୱଂସ କରିବା ଥିଲା ଏହାର ଉଦ୍ଦେଶ୍ୟ । ଯେଉଁ ଦିନ ମେ ଦିବସ ପାଳିତ ହେଲା, ସେଦିନ ଅସ୍ଥାୟୀ ସରକାରର ବୈଦେଶିକ ମନ୍ତ୍ରୀ ପାଭେଲ୍ ମିଲ୍ୟୁକୋଭ୍ ମିତ୍ରଗୋଷ୍ଠୀର ଦେଶମାନଙ୍କରେ ଥିବା ରୁଷ୍ ରାଷ୍ଟ୍ରଦୂତମାନଙ୍କୁ ବାର୍ତ୍ତା ଦ୍ୱାରା ଏକ ନିର୍ଦ୍ଦେଶ ପଠାଇଥିଲେ । ଏହି ନିର୍ଦ୍ଦେଶ ଅନୁଯାୟୀ ସଂପୃକ୍ତ ଦେଶମାନଙ୍କର ସରକାରମାନଙ୍କୁ ଜଣାଇ ଦେବାକୁ କୁହାଯାଇଥିଲା : ଜାର୍ ସରକାର ଦ୍ୱାରା ଯେଉଁସବୁ ଦାୟିତ୍ୱ ନିଆଯାଇଥିଲା, ସେସବୁକୁ ରୁଷିଆ ପାଳନ କରିବ । ଏହାର ଦିନକ ପରେ ମିଲ୍ୟୁକୋଭ୍‌ଙ୍କର ଏହି ଟିପ୍‌ପଣୀଟି ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଲା । ଏହାକୁ ନିନ୍ଦା କରି ସୃଷ୍ଟି ହେଲା ଏକ ଘୃଣାର ଝଡ଼ । ସୈନିକମାନେ ସର୍ବପ୍ରଥମେ ଏହାର ପ୍ରତିବାଦରେ ପେଟ୍ରୋଗ୍ରାଦ୍‌ର ରାସ୍ତାରେ ବିକ୍ଷୋଭ୍ ଆରମ୍ଭ କଲେ ; ସେମାନଙ୍କ ପରେ ଛୁଟିଲା ଶ୍ରମିକମାନଙ୍କର ଧାଡ଼ିସବୁ । ବିକ୍ଷୋଭକାରୀମାନେ ମିଲ୍ୟୁକୋଭ୍‌ଙ୍କ ଇସ୍ତଫା, ଗୋପନ ଚୁକ୍ତିସମୂହର ପ୍ରକାଶ ଏବଂ ବିନା ରାଜ୍ୟ ଦଖଲ ତଥା କ୍ଷତିପୂରଣ ବିନା ଶାନ୍ତି ପାଇଁ ଆଳାପ ଆରମ୍ଭ କରିବାକୁ ଦାବୀ ଜଣାଇଲେ ।

ଲେନିନ୍ ଏହାକୁ ଦେଖି ବିଚାର କରିଥିଲେ : "ଦେଶ ଗୃହଯୁଦ୍ଧର ସମ୍ମୁଖରେ ଉପନୀତ", ଏବଂ ପ୍ରକୃତ କ୍ଷମତା ଏବେ ଶ୍ରମିକ ଏବଂ ସୈନିକମାନଙ୍କ ହାତରେ ନିହିତ । ଏମନ୍ତ ଅବସ୍ଥାରେ ସେ ଲେଖିଥିଲେ, "ଏହା ସମସ୍ତଙ୍କ ପକ୍ଷରେ ସ୍ୱାଭାବିକ ହୋଇ ଉଠିଛି ଯେ, ସରକାର କ୍ଷମତା ରଖି ପାରିବ ନାହିଁ । ସୋଭିଏତ୍‌ଗୁଡ଼ିକ କୌଣସି ପକ୍ଷରୁ ସର୍ବନିମ୍ନ ବାଧାର ସମ୍ମୁଖୀନ ନହୋଇ କ୍ଷମତା ଦଖଲ କରି ପାରିବେ (କରିବା ମଧ୍ୟ ଉଚିତ) ।"

କିନ୍ତୁ ପେଟ୍ରୋଗ୍ରାଦ୍ ସୋଭିଏତ୍‌ର ଆପୋଷପନ୍ଥୀ ନେତାମାନେ ବୁର୍ଜୁଆମାନଙ୍କ ସହିତ ସଂପର୍କ ଛିନ୍ନ କରିବାକୁ ଭୟ କରୁଥିଲେ । ସୋସାଲିଷ୍ଟ-ରିଭଲ୍ୟୁସନାରୀ ଏବଂ ମେନ୍‌ଶେଭିକ୍ ନେତାମାନଙ୍କ ସହିତ କାଦେତ୍‌ମାନଙ୍କର ଏକ ବୁଝାମଣା ଫଳରେ ମେ ମାସରେ ଏକ ମିଳିତ ସରକାର ପ୍ରତିଷ୍ଠିତ ହେଲା : ଏଥିରେ ମିଲ୍ୟୁକୋଭ୍ ଏବଂ ଗୁଚକୋଭ୍‌କୁ ରଖାଗଲା ନାହିଁ । ଏମାନେ ପ୍ରଥମ ଅସ୍ଥାୟୀ ସରକାରରେ ଥିଲେ । ସେମାନଙ୍କ

ସ୍ଥାନରେ ସୋଭିଏତ୍‌ର ଗ୍ଡରିଜଣ ସଦସ୍ୟ, ଦୁଇଜଣ ମେନ୍‌ଶେଭିକ୍ ଏବଂ ଦୁଇଜଣ ସୋସାଲିଷ୍ଟ-ରିଭଲ୍ୟୁସନାରୀଙ୍କୁ ନିଆଗଲା ।

ଶ୍ରମିକ ଏବଂ ସୈନିକମାନଙ୍କ ଜନପ୍ରତିନିଧିମାନଙ୍କ ସୋଭିଏତ୍‌ଗୁଡ଼ିକର ପ୍ରଥମ ନିଖିଳ ରୁଷୀୟ କଂଗ୍ରେସ ଅନୁଷ୍ଠିତ ହେଲା ୧୯୧୭, ଜୁନ୍ ୧୬ ତାରିଖରେ । ମେନ୍‌ଶେଭିକ୍ ଏବଂ ସୋସାଲିଷ୍ଟ-ରିଭଲ୍ୟୁସନାରୀମାନେ ଏହି କଂଗ୍ରେସରେ ସଂଖ୍ୟାଗରିଷ୍ଠ ଥିଲେ । ତେଣୁ ଏଥିରେ ମିଳିତ ସରକାର ସପକ୍ଷରେ ପ୍ରସ୍ତାବମାନ ଗୃହୀତ ହେଲା । ତେବେ, ଏହିସବୁ ପ୍ରସ୍ତାବରେ ଆଉ ପ୍ରତିଫଳିତ ହେଲା ନାହିଁ ଅଧିକାଂଶ ଶ୍ରମିକ ଏବଂ ସୈନିକମାନଙ୍କ ମତାମତ । ଏହାର ପରବର୍ତ୍ତୀ ଦିନମାନଙ୍କରେ ଘଟଣାବଳୀ ଏହି ସତ୍ୟକୁ ପ୍ରମାଣ କରିଦେଲା ।

ବଲ୍‌ଶେଭିକ୍ ପାର୍ଟିର କେନ୍ଦ୍ରୀୟ ତଥା ରାଜଧାନୀ କମିଟିର ସଦସ୍ୟମାନଙ୍କର ମିଳିତ ସମ୍ମିଳନୀ ସହିତ କାରଖାନା କମିଟି, ଟ୍ରେଡ୍‌ୟୁନିଅନ୍ ଏବଂ ସୈନ୍ୟମାନଙ୍କ ୟୁନିଟଗୁଡ଼ିକର ସୋଭିଏତ୍‌ସମୂହର ପ୍ରଥମ କଂଗ୍ରେସ ବସିଥିଲା ବେଳେ ବିକ୍ଷୋଭ ପ୍ରଦର୍ଶନର ପ୍ରସ୍ତାବକୁ ଅନୁମୋଦନ ଜଣାଇଲେ । ଏହି ବିକ୍ଷୋଭର ଧ୍ୱନି ଥିଲା: "ସମସ୍ତ କ୍ଷମତା ସୋଭିଏତ୍‌ଗୁଡ଼ିକ ହାତରେ!" "ଅବିଳମ୍ବେ ଶାନ୍ତି!" ଏବଂ "ଦଶଜଣ ପୁଞ୍ଜିପତି ମନ୍ତ୍ରୀ ଧ୍ୱଂସ ହୁଅନ୍ତୁ!" ବଲ୍‌ଶେଭିକ୍‌ମାନଙ୍କ "ପ୍ରାଭ୍‌ଦା" ପତ୍ରିକାରେ ମଧ୍ୟ ଅନୁରୂପ ଏକ ନିବେଦନ ପ୍ରକାଶ ପାଇଲା । ଏହା ପରେ ବଲ୍‌ଶେଭିକ୍‌ମାନଙ୍କ ବିରୁଦ୍ଧରେ ଆରମ୍ଭ ହୋଇଗଲା ଏକ କୁତ୍ସାର ଅଭିଯାନ । ସେମାନେ ବିପ୍ଳବ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଛନ୍ତି ବୋଲି ଅଭିଯୋଗ କରାଗଲା । ସରକାର ଏବଂ ସୋଭିଏତ୍‌ର ଆପୋଷକାରୀ ନେତାମାନଙ୍କ ପ୍ରରୋଚନାରେ କଂଗ୍ରେସ ତରଫରୁ ରାଜଧାନୀ ଏବଂ ତା'ର ଆଖପାଖରେ ବିକ୍ଷୋଭ ପ୍ରଦର୍ଶନକୁ ନିଷିଦ୍ଧ କରି ଦିଆଗଲା । ଲୋକମାନଙ୍କୁ ଶାନ୍ତ କରିବା ନିମିତ୍ତ, କଂଗ୍ରେସର ନେତାମାନେ ଏକ ନିଷ୍ପତ୍ତି ନେଲେ ଜୁଲାଇ ପହିଲା ଦିନ (ଜୁନ୍ ୧୮) ଏକ ରାଜନୈତିକ ବିକ୍ଷୋଭର ଆୟୋଜନ କରିବାକୁ । ସେମାନେ ଆଶା କରୁଥିଲେ ଏହି ବିକ୍ଷୋଭ ଆୟୋଜନ ସେମାନଙ୍କ ହାତରେ ରହିବ । ବଲ୍‌ଶେଭିକ୍‌ମାନେ ଏହି ଆହ୍ୱାନକୁ ଗ୍ରହଣ କଲେ । ଜୁଲାଇ ପହିଲା ପୂର୍ବରୁ ଯେଉଁ ବିକ୍ଷୋଭଟି ହେବାର ଥିଲା, ତାହାକୁ ସେମାନେ ପ୍ରତ୍ୟାହାର କରି ନେଇ ଜୁଲାଇ ପହିଲା ବିକ୍ଷୋଭ ପାଇଁ ବ୍ୟାପକ ପ୍ରସ୍ତୁତି କାର୍ଯ୍ୟ ଚଳାଇଲେ ।

ଏହି ଦିନ ପ୍ରାୟ ପାଞ୍ଚ ଲକ୍ଷ ଲୋକ ପେଟ୍ରୋଗ୍ରାଦ୍‌ର ରାସ୍ତାମାନଙ୍କ ଉପରକୁ ବାହାରି ପଡ଼ିଲେ । କୌଣସି କାରଖାନା କିମ୍ବା ସୈନିକ ଦଳ ଅସ୍ଥାୟୀ ସରକାରକୁ ସମର୍ଥନ କଲା ଭଳି ସ୍ଲୋଗାନ ଦେଇ ନଥିଲେ । ବଲ୍‌ଶେଭିକ୍‌ମାନଙ୍କ ଦ୍ୱାରା ପ୍ରଦତ୍ତ ଆବେଦନ, ମୁଖ୍ୟତଃ, "ସୋଭିଏତ୍‌ମାନଙ୍କ ହାତକୁ ସମସ୍ତ କ୍ଷମତା!" ସ୍ଲୋଗାନଟି ସର୍ବାଗ୍ରରେ ଶୋଭା ପାଉଥିଲା ।

ଏସବୁ ସତ୍ତ୍ୱେ ସୋଭିଏତ୍‌ସମୂହର କଂଗ୍ରେସ ଦ୍ୱାରା ସରକାରୀ ସମର୍ଥନ ଫଳରେ

ଅସ୍ଥାୟୀ ସରକାର ରଣାଙ୍ଗନରେ ଆକ୍ରମଣ ଆରମ୍ଭ ପାଇଁ ନିର୍ଦ୍ଦେଶ ଦେବାକୁ ସକ୍ଷମ ହେଲା । ଏହି ଆକ୍ରମଣ ଜୁଲାଇ ପହିଲାରେ ଆରମ୍ଭ ହୋଇ ଶୀଘ୍ର ବିଫଳତାରେ ପର୍ଯ୍ୟବସିତ ହେଲା । ରାଜନୈତିକ ସଂଗ୍ରାମ ତୀବ୍ର ହେବାକୁ ଲାଗିଲା । କଳକାରଖାନା ଏବଂ ସେନା ଛାଉଣୀଗୁଡ଼ିକରେ ପ୍ରଚଣ୍ଡ ସଭାମାନ ଚାଲିଲା । କାଦେତ୍‌ମାନଙ୍କ ନିର୍ଦ୍ଦେଶନା କ୍ରମେ ଅସ୍ଥାୟୀ ସରକାର ପ୍ରସ୍ତୁତ ହେଲା ବିପ୍ଳବ ବିରୁଦ୍ଧରେ ଏକ ଆଘାତ ହାଣିବାକୁ : ସ୍ୱତନ୍ତ୍ର ଭାବେ ତାଲିମ୍‌ପ୍ରାପ୍ତ ୟୁନିଟ୍‌ସବୁ ଗଠିତ ହେଲେ, କଳକାରଖାନାରେ ତାଲାବନ୍ଦ ହେଲା, ପିଟୁଣୀ ଅଭିଯାନ ପାଇଁ ଦଳସବୁ ପ୍ରେରିତ ହେଲେ । ବିପ୍ଳବ ବିରୁଦ୍ଧରେ ଆକ୍ରମଣ ଆରମ୍ଭ କରି ଦେବା ଉଦ୍ଦେଶ୍ୟରେ କାଦେତ୍-ମନ୍ତ୍ରୀମାନେ ଘୋଷଣା କରି ଦେଲେ ଜୁଲାଇ ୧୫ ତାରିଖରେ ପଦତ୍ୟାଗ କରିବାକୁ । ଫଳରେ ନୂଆ ଏକ ସରକାରୀ ସଂକଟ ଦେଖାଦେଲା । "ପୁଞ୍ଜିପତି-ମନ୍ତ୍ରୀମାନେ" ଆଶା କରୁଥିଲେ ସୋଭିଏତ୍‌ର ନେତୃତ୍ୱ ପୁଣିଥରେ ନତି ସ୍ୱୀକାର କରିବେ ଏବଂ ବୁର୍ଜୁଆ ପ୍ରତିନିଧିମାନଙ୍କ ହାତକୁ ସମସ୍ତ କ୍ଷମତା ଚାଲିଯିବ । ଜୁଲାଇ ୧୬ ତାରିଖ ଦିନ ଶ୍ରମିକ ଏବଂ ସୈନିକମାନେ ଘୃଣାର ସହିତ ଏହାର ଜବାବ ଦେଲେ ଏକ ପ୍ରତିବାଦ ବିକ୍ଷୋଭର ଆୟୋଜନ କରି । ସରକାରର ପ୍ରରୋଚନାମୂଳକ କ୍ରିୟାକଳାପ ଦୃଷ୍ଟିରୁ ବଲ୍‌ଶେଭିକ୍‌ମାନେ ସ୍ଥିର କଲେ, ଅଭୀଷ୍ଟ କାର୍ଯ୍ୟ ହାସଲର ସମୟ ଆସି ନି, ତେଣୁ ଶ୍ରମିକ ଏବଂ ସୈନିକମାନଙ୍କୁ ଧୈର୍ଯ୍ୟ ଧରିବାକୁ ପରାମର୍ଶ ଦେଲେ । ବଲ୍‌ଶେଭିକ୍‌ମାନେ ଏହା କରିବାକୁ ଅକ୍ଷମ ହେଲା ପରେ ସ୍ଥିର କଲେ ବିକ୍ଷୋଭର ଶାନ୍ତିପୂର୍ଣ୍ଣ ଚରିତ୍ରକୁ ସୁନିଶ୍ଚିତ କରିବା ନିମିତ୍ତ ଏହାକୁ ନେତୃତ୍ୱ ଦେବାକୁ । ବିକ୍ଷୋଭର ସ୍ଲୋଗାନ ହେଲା "ସୋଭିଏତ୍‌ସମୂହ ହାତକୁ ସମସ୍ତ କ୍ଷମତା !" ଜୁଲାଇ ୧୭ ତାରିଖ (୪) ଦିନ ଏହି ବିକ୍ଷୋଭ ଆୟୋଜିତ ହେବା ପାଇଁ ସ୍ଥିର ହେଲା । ପାଞ୍ଚ ଲକ୍ଷରୁ ଅଧିକ ଲୋକ ଏଥିରେ ଅଂଶଗ୍ରହଣ କରିଥିଲେ । ବିକ୍ଷୋଭକାରୀମାନେ ଆଗେଇ ଯାଉଥିଲେ ଟାଉରିଦା ପ୍ରାସାଦ ଆଡ଼କୁ । ଶ୍ରମିକ ଏବଂ ସୈନିକମାନଙ୍କ ପ୍ରତିନିଧିମାନେ ସୋଭିଏତ୍‌ର ନେତାମାନଙ୍କ ହାତରେ ଦେଇଥିବା ପ୍ରସ୍ତାବରେ ସୋଭିଏତ୍‌ଗୁଡ଼ିକ ହାତକୁ ସମସ୍ତ କ୍ଷମତା ପ୍ରଦାନ କରିବାକୁ ଦାବି କରାଯାଇଥିଲା । ସେମାନେ କହିଥିଲେ : "ପ୍ରାଚୀର ପତ୍ରମାନଙ୍କରେ କ'ଣ ଲେଖା ହୋଇଛି, ଆପଣମାନେ ଦେଖି ପାରୁଥିବେ । ଏହି ପ୍ରଶ୍ନଟି ସମସ୍ତ କଳକାରଖାନାରେ ଆଲୋଚିତ ହୋଇଛି । ଆମେ ସୋଭିଏତ୍‌କୁ ବିଶ୍ୱାସ କରୁ, କିନ୍ତୁ ଯେଉଁମାନଙ୍କୁ ସୋଭିଏତ୍ ବିଶ୍ୱାସ କରେ, ସେମାନଙ୍କୁ ବିଶ୍ୱାସ କରୁ ନା ।"

ତେବେ, ସୋଭିଏତ୍‌ର ମେନ୍‌ଶେଭିକ୍ ଏବଂ ସମାଜବାଦୀ-ବିପ୍ଳବୀ ନେତାମାନେ ଏବଂ ଅସ୍ଥାୟୀ ସରକାରର ସଦସ୍ୟଗଣ ଜନସାଧାରଣଙ୍କ ବିପ୍ଳବୀ ଅଭିପ୍ରାୟକୁ ଭୟ କରୁଥିଲେ । ରାଜଧାନୀରେ ସୈନ୍ୟ ସମାବେଶ କରାଗଲା ଏବଂ ସମସ୍ତ ପ୍ରତିବିପ୍ଳବୀ ଶକ୍ତିଙ୍କୁ କାର୍ଯ୍ୟରେ ଲଗାଗଲା । ପେଟ୍ରୋଗ୍ରାଡ୍ ସାମରିକ ଜିଲାର ସେନାଦଳଗୁଡ଼ିକର ସେନାପତି ଜେନେରାଲ ପୋଲୋଭହେଭ୍‌ଙ୍କ ଅସ୍ଥାୟୀ ସରକାର ତରଫରୁ ନିର୍ଦ୍ଦେଶ

ଦିଆଗଲା ବିକ୍ଷୋଭକାରୀମାନଙ୍କୁ ଘଉଡ଼ାଇ ଦେବାକୁ । ପ୍ରତିବାଦକାରୀ ଶ୍ରମିକ ଏବଂ ସୈନିକମାନଙ୍କୁ ଆକ୍ରମଣ କରାଗଲା ସହରର କେନ୍ଦ୍ର ସ୍ଥଳରେ । ଗୁଳି ଚାଳନା ଫଳରେ ଶହ ଶହ ଲୋକ ମୃତ୍ୟୁ ମୁଖରେ ପଡ଼ିଲେ ଏବଂ କ୍ଷତବିକ୍ଷତ ହେଲେ ।

ବୁର୍ଜୁଆଜି ସପକ୍ଷରେ ଦ୍ୱୈତ ଶାସନର ଅବସାନ ଘଟିଲା । ଅସ୍ଥାୟୀ ସରକାର ନିର୍ଦ୍ଦେଶ ଦେଲା ଲେନିନ୍‌ଙ୍କୁ ଗିରଫ କରିବା ପାଇଁ । ସେ ବାଧ୍ୟ ହୋଇ ଆତ୍ମଗୋପନ କଲେ, କିନ୍ତୁ ଏହା ଥିଲା ତାଙ୍କର ଶେଷ ଆତ୍ମଗୋପନ । ସରକାରର ନେତୃତ୍ୱରେ ଥିଲେ ସୋସାଲିଷ୍ଟ-ରିଭଲ୍ୟୁସନାରୀ ଆଲେକ୍‌ଜାଣ୍ଡାର କେରେନ୍‌ସ୍କି, ସେ ଦେଶରେ ଏକ ଗୃହଯୁଦ୍ଧ ଲଗାଇ ଦେବାକୁ ଚାହୁଁଥିଲେ ।

ଜୁଲାଇ ମାସରେ ବୁର୍ଜୁଆଜିର ଏହି ବିଜୟ ତା ପକ୍ଷରେ ଶାସକ ଶ୍ରେଣୀ ହିସାବରେ ଥିଲା ତା'ର ପରାଜୟ ଏବଂ ବିଲୁପ୍ତିର ପୂର୍ବଲକ୍ଷଣ ସ୍ୱରୂପ । ବଲ୍‌ଶେଭିକ୍ ପାର୍ଟିର କର୍ମନୀତି ଜୁଲାଇ-ଅଗଷ୍ଟ ମାସରେ ପୂରା ବଦଳି ଗଲା । "ସୋଭିଏତ୍‌ଗୁଡ଼ିକ ହାତକୁ ସମସ୍ତ କ୍ଷମତା !" – ବିପ୍ଳବର ଶାନ୍ତିପୂର୍ଣ୍ଣ ବିକାଶକୁ ପ୍ରତିଫଳିତ କରୁଥିବା ଏହି ସ୍ଲୋଗାନଟିକୁ ପରିତ୍ୟାଗ କରିବାକୁ ପଡ଼ିଲା । ପେଟ୍ରୋଗ୍ରାଦ୍‌ରେ ଅନୁଷ୍ଠିତ ୬ଷ୍ଠ ପାର୍ଟି କଂଗ୍ରେସ ଲେନିନ୍‌ଙ୍କ ପ୍ରସ୍ତାବ ଅନୁଯାୟୀ ଗ୍ରହଣ କଲା ସଶସ୍ତ୍ର ଅଭ୍ୟୁତ୍‌ଥାନ ପାଇଁ ଏକ କାର୍ଯ୍ୟକ୍ରମ । ଏହି କଂଗ୍ରେସ ଦର୍ଶାଇଲା, "ରୁଷ୍ ବିପ୍ଳବରେ ନୂତନ ଅବଶ୍ୟମ୍ଭାବୀ ଉତ୍‌ଥାନ ପାଶ୍ଚାତ୍ୟ ପୁଞ୍ଜିବାଦୀ ଦେଶମାନଙ୍କରେ ବିପ୍ଳବ ଘଟିବା ପୂର୍ବରୁ ଶ୍ରମିକ ଏବଂ ଗରିବ କୃଷକମାନଙ୍କୁ କ୍ଷମତାରେ ପ୍ରତିଷ୍ଠିତ କରିବ ।"

ଏହି ନୂତନ ଅଭ୍ୟୁତ୍‌ଥାନ ଆରମ୍ଭ ହେଲା ୧୯୧୭, ଶରତକାଳରେ ।

ବୁର୍ଜୁଆଜି ତା'ର କ୍ଷମତାକୁ ପୂର୍ଣ୍ଣ ରୂପେ ପ୍ରତିଷ୍ଠିତ କରିବା ଉଦ୍ଦେଶ୍ୟରେ ଦେଶରେ ଏକ ସାମରିକ ଏକନାୟକତ୍ୱ ପ୍ରତିଷ୍ଠା କରିବାକୁ ଚାହିଁଲା । ସରକାରର ପରିକଳ୍ପନା ଅନୁଯାୟୀ, ଯାହାକୁ ରଚନା କରିବାରେ କେରେନ୍‌ସ୍କି ମଧ୍ୟ ଅଂଶଗ୍ରହଣ କରିଥିଲେ । ସେନାବାହିନୀର ସର୍ବାଧିନାୟକ ଜେନେରାଲ ଲଭ୍ର କର୍ଣ୍ଣିଲୋଭ୍ ରଣାଙ୍ଗନରୁ ସେପ୍‌ଟେମ୍ବର ୭ ତାରିଖରେ (ଅଗଷ୍ଟ ୨୫) ଦଳଗୁଡ଼ିକୁ ପେଟ୍ରୋଗ୍ରାଦ୍ ବିରୁଦ୍ଧରେ ପରିଚାଳନା କରିଥିଲେ । ଶ୍ରମିକମାନେ ବିପ୍ଳବକୁ ରକ୍ଷା କରିବା ପାଇଁ ଦଣ୍ଡାୟମାନ ହେଲେ । କାରଖାନାମାନଙ୍କରେ ଗଢ଼ାଗଲା ଲାଲ ରକ୍ଷୀ ୟୁନିଟସବୁ ଏବଂ ସେମାନଙ୍କୁ ସମର୍ଥନ ଜଣାଇଲେ ରାଜଧାନୀସ୍ଥ ଦୁର୍ଗର ସୈନ୍ୟମାନେ । ବଲ୍‌ଶେଭିକ୍‌ମାନେ ବିପ୍ଳବୀ ଜନସାଧାରଣଙ୍କ ଅଗ୍ର ଭାଗରେ ରହିଲେ । କର୍ଣ୍ଣିଲୋଭ୍‌ଙ୍କ ପ୍ରତିବିପ୍ଳବୀ ଅଭ୍ୟୁତ୍‌ଥାନକୁ ଦମନ କରାଗଲା ସେମାନଙ୍କ ପ୍ରତ୍ୟକ୍ଷ ନେତୃତ୍ୱାଧୀନରେ । ଲେନିନ୍‌ଙ୍କ ପାର୍ଟିର ସମ୍ମାନ ଅକଳନ ଭାବେ ବଢ଼ିଗଲା । ସେପ୍‌ଟେମ୍ବର ୧୩ ତାରିଖରେ (ଅଗଷ୍ଟ ୩୧) ଶ୍ରମିକ ଏବଂ ସୈନିକମାନଙ୍କ ପ୍ରତିନିଧିସମୂହର ପେଟ୍ରୋଗ୍ରାଦ୍ ସୋଭିଏତ୍‌ରେ ପ୍ରଥମ ଥର ପାଇଁ ଏକ ବଲ୍‌ଶେଭିକ୍ ପ୍ରସ୍ତାବ ଗୃହିତ ହେଲା । ଏଥିରେ ଶାନ୍ତି, ଜମି ଏବଂ ଉତ୍ପାଦନ ଉପରେ ଶ୍ରମିକମାନଙ୍କ ନିୟନ୍ତ୍ରଣ

ପାଇଁ ମୌଳିକ ଦାବିଗୁଡ଼ିକ ରହିଥିଲା । ଏହାର କିଛି ଦିନ ପରେ ମସ୍କୋ ସୋଭିଏତ୍ ମଧ୍ୟ ଏକ ଅନୁରୂପ ପ୍ରସ୍ତାବ ଗ୍ରହଣ କଲା । ସୋଭିଏତ୍‌ଗୁଡ଼ିକର ବଲ୍‌ଶେଭିକୀକରଣ ଆରମ୍ଭ ହୋଇଗଲା । ଆପୋଷକାରୀ ପାର୍ଟିମାନଙ୍କ କବଳରେ ଥାଇ ସୋଭିଏତ୍‌ଗୁଡ଼ିକ ବୁର୍ଜୁଆଜି ସହିତ ଆପୋଷ କରିବାର ଅସ୍ତ୍ର ଭଳି ବ୍ୟବହୃତ ହେଉଥିଲେ, ଏବେ ସେସବୁ ବୁର୍ଜୁଆଜି ବିରୁଦ୍ଧରେ ସଂଗ୍ରାମ କରିବାର ସଂସ୍ଥାକୁ ପରିବର୍ତ୍ତିତ ହେବାକୁ ଲାଗିଲେ । ମେନ୍‌ଶେଭିକ୍ ଏବଂ ସୋସାଲିଷ୍ଟ-ରିଭଲ୍ୟୁସନାରୀ ନେତାମାନେ କାଦେତ୍‌ମାନଙ୍କ ସହିତ ନୂତନ ସରକାରରେ ଯୋଗ ଦେବାକୁ ପ୍ରତ୍ୟାଖ୍ୟାନ କଲେ । ଜନସାଧାରଣଙ୍କ ଶେଷ ବିଶ୍ୱାସଟିକୁ ସେମାନେ ହରେଇବାକୁ ଚାହିଁଲେ ନାହିଁ । ସୋଭିଏତ୍‌ଗୁଡ଼ିକ ହାତକୁ ଶାନ୍ତିପୂର୍ଣ୍ଣ ଭାବେ କ୍ଷମତା ହସ୍ତାନ୍ତରିତ ହେବାର ସମ୍ଭାବନା କିଛି ସମୟ ପାଇଁ ପୁଣି ଦେଖାଦେଲା । ସୋଭିଏତ୍‌ଗୁଡ଼ିକରେ ସେପର୍ଯ୍ୟନ୍ତ ସଂଖ୍ୟାଗରିଷ୍ଠ ଥିବା ମେନ୍‌ଶେଭିକ୍ ଏବଂ ସମାଜବାଦୀ-ବିପ୍ଳବୀମାନଙ୍କ ନେତାମାନଙ୍କୁ ଲେନିନ୍ ସଙ୍ଗେ ସଙ୍ଗେ ପ୍ରସ୍ତାବ ଦେଲେ, ସେମାନେ ବୁର୍ଜୁଆଜି ସହିତ ସଂପର୍କ ଛିନ୍ନ କରି ସୋଭିଏତ୍‌ଗୁଡ଼ିକ ପ୍ରତି ଦାୟୀ ଏକ ସରକାର ଗଠନ କରିବାକୁ । ମେନ୍‌ଶେଭିକ୍‌ମାନେ ଲେନିନ୍‌ଙ୍କ ପ୍ରସ୍ତାବର ଜବାବ ଦେଲେ ନାହିଁ । ଶାନ୍ତିପୂର୍ଣ୍ଣ ଭାବେ ସମାଜବାଦୀ ବିପ୍ଳବର ବିଜୟର ସୁବିଧାଟକ ପୁଣି ଲୋପ ପାଇଗଲା ।

ଏହି ସମୟରେ ଶ୍ରମିକ ଶ୍ରେଣୀ ଆନ୍ଦୋଳନ ତା'ର ଅଭୂତପୂର୍ବ ସଂଗଠନ ତଥା ଏକନିଷ୍ଠତା ପାଇଁ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ଲାଭ କରିଥିଲା । ଦଶ ଲକ୍ଷ ଶ୍ରମିକ କେବଳ ବ୍ୟାପକ ଗଣ ଧର୍ମଘଟରେ ଅଂଶଗ୍ରହଣ କରିଥିଲେ । ବିପ୍ଳବର କଣ୍ଠ ରୁଦ୍ଧ କରିବା ପାଇଁ କାରଖାନା ମାଲିକମାନଙ୍କ ଦ୍ୱାରା କାରଖାନା ବନ୍ଦର ଜବାବରେ ଉତ୍ପାଦନ ଉପରେ ଶ୍ରମିକମାନଙ୍କ ନିୟନ୍ତ୍ରଣ ପ୍ରବର୍ତ୍ତନ କରାଗଲା । ଶ୍ରମିକ ଶ୍ରେଣୀ ନିଜ ହାତକୁ କ୍ଷମତା ନେବାର ଆବଶ୍ୟକତା ହୃଦୟଙ୍ଗମ କଲା ଏବଂ ଉତ୍ପାଦନକୁ କିପରି ପରିଚାଳନା କରିବାକୁ ହୁଏ, ସେ ଅଭିଜ୍ଞତା ଲାଭ କଲା । ସେହିସବୁ ମାସମାନଙ୍କରେ ଜମି ପାଇଁ କୃଷକମାନଙ୍କର ସଂଗ୍ରାମ କୃଷକ ଯୁଦ୍ଧର ଆକାର, ଜମିଦାରମାନଙ୍କ ବିରୁଦ୍ଧରେ କୃଷକ ବିଦ୍ରୋହର ଆକାର ଧାରଣ କରିଥିଲା । ୧୯୧୭, ଅଗଷ୍ଟ-ଅକ୍ଟୋବର ମାସରେ ୨,୦୦୦ରୁ ଅଧିକ କୃଷକମାନଙ୍କର ବିପ୍ଳବୀ କ୍ରିୟାକଳାପ ରେକର୍ଡ଼ ବଦ୍ଧ ହୋଇଥିଲା । ସମାଜବାଦୀ ବିପ୍ଳବ ସହିତ ଗଣତନ୍ତ୍ର ପାଇଁ ସଂଗ୍ରାମର ଏକତ୍ରୀକରଣ ନିଜକୁ ପ୍ରକଟିତ କରିଥିଲା ବୁର୍ଜୁଆ ବିରୁଦ୍ଧରେ ସର୍ବହରା ବିପ୍ଳବ ଏବଂ କୃଷିଗତ-କୃଷକ ବିପ୍ଳବର ଏକତ୍ରୀକରଣ ହିସାବରେ ।

ଜନସାଧାରଣଙ୍କ ବିଶ୍ୱାସକୁ ସଂପୂର୍ଣ୍ଣ ରୂପେ ନହରେଇବା ପାଇଁ ଅସ୍ଥାୟୀ ସରକାର କେତେକ ପଦକ୍ଷେପ ନେଲା । ସେପ୍ଟେମ୍ବର ପହିଲା ତାରିଖ ଦିନ ରୁଷିଆକୁ ଏହା ଘୋଷଣା କଲା ପ୍ରଜାତନ୍ତ୍ର ବୋଲି । ତେବେ, ବୁର୍ଜୁଆ-ଗଣତାନ୍ତ୍ରିକ ଚରିତ୍ରର ଦୃଢ଼ ପରିବର୍ତ୍ତନ, ବିଶେଷ କରି କୃଷି ସଂକ୍ରାନ୍ତ ସଂପର୍କରାଜି କ୍ଷେତ୍ରରେ, ଆଣିବା ପାଇଁ ଏହା

ଅକ୍ଷମ ଥିଲ । ସମାଜବାଦୀ-ବିପ୍ଳବୀ ଏବଂ ମେନ୍‌ଶେଭିକ୍‌ମାନଙ୍କ ଭଳି ଆପୋଷକାରୀ ପାର୍ଟିମାନେ ମଧ୍ୟ ଚେଷ୍ଟା କଲେ ବୁର୍ଜୁଆଜିର କ୍ଷମତାକୁ ରକ୍ଷା କରିବା ପାଇଁ । ସୋଭିଏତ୍‌ସମୂହର ବଲ୍‌ଶେଭିକୀକରଣର ପରିପ୍ରେକ୍ଷୀତରେ ଆପୋଷକାରୀମାନେ ସୋଭିଏତ୍‌ସମୂହ ବିରୁଦ୍ଧରେ ପ୍ରଗ୍ରର ଆରମ୍ଭ କରି ଦେଲେ ଏବଂ "ସରକାରକୁ ସଂଗଠିତ" କରିବା ବାହାନାରେ ତଥାକଥିତ ନିଖିଳ ରୁଷୀୟ ଗଣତାନ୍ତ୍ରିକ ସମ୍ମିଳନୀ ଡକାଇଲେ । ପ୍ରତିବିପ୍ଳବୀ ଜେମ୍‌ସ୍ତଭୋ ଏବଂ ପୌରସ୍ୱାୟତ୍ତଶାସନ ସଂସ୍ଥା ଭଳି ବୁର୍ଜୁଆ-ଜମିଦାର ସଂଗଠନସମୂହର ସଦସ୍ୟମାନଙ୍କୁ ଏହି ସମ୍ମିଳନୀରେ ଅଂଶଗ୍ରହଣ କରିବା ନିମିତ୍ତ ଆମନ୍ତ୍ରଣ କଲ ବେଳେ ସ୍ଥାନୀୟ ସୋଭିଏତ୍ ସମେତ କାରଖାନା କମିଟି, ଟ୍ରେଡ୍‌ୟୁନିଅନ୍‌ମାନଙ୍କ ସଂଖ୍ୟାକୁ ବିଭିନ୍ନ ଆଳରେ କମେଇ ଦିଆଗଲ । ଏହି ସମ୍ମିଳନୀରେ ପ୍ରଜାତନ୍ତ୍ରର ଅସ୍ଥାୟୀ ପରିଷଦ ବା ପାର୍ଲିଆମେଣ୍ଟର ପୂର୍ବ ସଂସ୍ଥା ଗଠିତ ହେଲ ଏହାର ସଦସ୍ୟମାନଙ୍କୁ ନେଇ । ଏଥିରେ ବୁର୍ଜୁଆ ସଦସ୍ୟମାନଙ୍କୁ ମଧ୍ୟ ନିଆଗଲ । ଆପୋଷକାରୀମାନେ କାର୍ଯ୍ୟତଃ ପ୍ରତ୍ୟାଖ୍ୟାନ କରି ଦେଲେ ସୋଭିଏତ୍‌ମାନଙ୍କ ହାତକୁ ସମସ୍ତ କ୍ଷମତା ଦେଲ ଭଳି ଗଣ ଦାବିକୁ ସମର୍ଥନ କରିବା ପାଇଁ । ଏହା ଫଳରେ ଜନସାଧାରଣ ଅବିଳମ୍ବେ ବଲ୍‌ଶେଭିକ୍‌ମାନଙ୍କ ଆଡ଼କୁ ଢଳି ପଡ଼ିଲେ । ଦେଶରେ ଏକ ଜାତୀୟ ବିପ୍ଳବୀ ସଂକଟ ସୃଷ୍ଟି ହୋଇଗଲ । ଏହି ସିଦ୍ଧାନ୍ତରେ ଉପନୀତ ହୋଇ ଲେନିନ୍ ବଲ୍‌ଶେଭିକ୍ ପାର୍ଟିର କେନ୍ଦ୍ରୀୟ କମିଟିକୁ କେତେକ ଚିଠି ଲେଖିଥିଲେ । ଏସବୁଥିରେ ସେ କେନ୍ଦ୍ରୀୟ କମିଟିକୁ ନିବେଦନ କରିଥିଲେ ଦ୍ରୁତତାର ସହିତ ଅଭ୍ୟୁତ୍‌ଥାନ ପାଇଁ ପ୍ରସ୍ତୁତି କରିବାକୁ । ଏହି ପ୍ରସ୍ତୁତିକୁ କିପରି ସଂଗଠିତ କରିବାକୁ ହେବ, ସେ ବିଷୟରେ ସେ ପରାମର୍ଶ ଦେବା ସଙ୍ଗେ ସଙ୍ଗେ ଏହାକୁ ଏକ ଶିଳ୍ପକଳା ଭଳି ଦେଖିବାକୁ ମତ ଦେଇଥିଲେ ।

ଅକ୍ଟୋବର ମାସର ପ୍ରାରମ୍ଭରେ, ଲେନିନ୍ ବେଆଇନ୍ ଭାବେ ପେଟ୍ରୋଗ୍ରାଦ୍‌କୁ ଫେରି ଆସିଲେ ଏବଂ ରାଜଧାନୀରେ ସଶସ୍ତ୍ର ଅଭ୍ୟୁତ୍‌ଥାନ ସହିତ ସଂପୃକ୍ତ ପ୍ରତ୍ୟକ୍ଷ ପ୍ରସ୍ତୁତିର ସମସ୍ତ ବିଷୟ ନିଜ ହାତକୁ ନେଇଥିଲେ ।

ଅକ୍ଟୋବର ୧୦, ସଂଧ୍ୟାରେ ବଲ୍‌ଶେଭିକ୍ ପାର୍ଟିର କେନ୍ଦ୍ରୀୟ କମିଟିର ଏକ ଅଧିବେଶନରେ ସେ ତତ୍କାଳୀନ ଅବସ୍ଥା ସଂପର୍କରେ ଏକ ରିପୋର୍ଟ ପ୍ରଦାନ କରିବା ସାଥେ ସାଥେ ଏକ ପ୍ରସ୍ତାବ ପେଶ୍ କରିଥିଲେ । ଏହି ପ୍ରସ୍ତାବରେ ସଶସ୍ତ୍ର ଅଭ୍ୟୁତ୍‌ଥାନର ପରିପକ୍ୱତା ସଂପର୍କରେ କୁହାଯାଇଥିଲ । ତାଙ୍କର ଏହି ପ୍ରସ୍ତାବଟି ଗୃହୀତ ହୋଇଥିଲ । ଲେନିନ୍‌ଙ୍କ ନେତୃତ୍ୱରେ ଏକ ରାଜନୈତିକ କମିଟି ବା ପଲିଟିକାଲ ବ୍ୟୁରୋ ଗଠିତ ହେଲ ଏହି ଅଭ୍ୟୁତ୍‌ଥାନକୁ ପରିଚାଳନା କରିବା ପାଇଁ । ଅକ୍ଟୋବର ୧୬ ତାରିଖ ଦିନ କେନ୍ଦ୍ରୀୟ କମିଟିର ଏକ ବର୍ଦ୍ଧିତ ଅଧିବେଶନ ବସିଲ ପେଟ୍ରୋଗ୍ରାଦ୍‌ର ଏକ ଶ୍ରମିକ ଅଞ୍ଚଳ, ଭାଇବର୍ଗ ସାଇଡ୍‌ରେ । ଏଥିରେ ପାର୍ଟି ତଥା ଶ୍ରମିକ ସଂଗଠନସମୂହର ପ୍ରତିନିଧିମାନେ ଯୋଗ

ଦେଇଥିଲେ । ଲେନିନ୍‌ଙ୍କ ରିପୋର୍ଟ ଉପରେ ଏକ ପ୍ରସ୍ତାବ ଅକ୍ଟୋବର ୧୦ ତାରିଖର ପ୍ରସ୍ତାବକୁ ଅନୁମୋଦନ କରି ଗୃହୀତ ହୋଇଥିଲା । ଏକ ସାମରିକ-ବିପ୍ଳବୀ କେନ୍ଦ୍ର ନିର୍ବାଚିତ ହେଲା ଅଭ୍ୟୁତ୍‌ଥାନକୁ ନିର୍ଦ୍ଦେଶ ଦେବା ପାଇଁ । ଏଥିରେ କେନ୍ଦ୍ରୀୟ କମିଟିର ନିମ୍ନଲିଖିତ ସଦସ୍ୟମାନଙ୍କୁ ଅନ୍ତର୍ଭୁକ୍ତ କରାଯାଇଥିଲା : ଆନ୍ଦ୍ରେଇ ବୁବନୋଭ୍, ୟାକୋଭ୍ ସ୍ୱେର୍ଦ୍ଦଲେଭ୍, ମୋଇସେଇ ଉରିଟ୍‌ସ୍କି, ଜୋସେଫ୍ ଷ୍ଟାଲିନ୍ ଏବଂ ଫେଲିକ୍ସ ଝେରଝିନ୍‌ସ୍କି ।

"ଅଭ୍ୟୁତ୍‌ଥାନକୁ ସାଫଲ୍ୟ ମଣ୍ଡିତ ହେବାକୁ ହେଲେ, ଏହାକୁ ନିଶ୍ଚିତ ରୂପେ ଷଡ଼ଯନ୍ତ୍ର ବା ପାର୍ଟି ଉପରେ ନିର୍ଭର କରିବାକୁ ହେବ ନାହିଁ, ନିର୍ଭର କରିବାକୁ ହେବ ଅଗ୍ରଣୀ ଶ୍ରେଣୀ ଉପରେ । ଏହା ହିଁ ହେଉଛି ମୁଖ୍ୟ କଥା । ଅଭ୍ୟୁତ୍‌ଥାନକୁ ନିର୍ଭର କରିବାକୁ ହେବ, ଜନସାଧାରଣଙ୍କ ବୈପ୍ଳବିକ ଉତ୍‌ଥାନ ଉପରେ । ଏହା ହେଲା ଦ୍ୱିତୀୟ କଥା । କ୍ରମବର୍ଦ୍ଧମାନ ବିପ୍ଳବର ଇତିହାସରେ ସେଇ ଦିଗମୋଡ଼ଟି ଉପରେ ଅଭ୍ୟୁତ୍‌ଥାନକୁ ନିର୍ଭର କରିବାକୁ ହେବ, ଯେତେବେଳେ ଜନସାଧାରଣଙ୍କ ଅଗ୍ରଣୀ ପଂକ୍ତିଗୁଡ଼ିକର କ୍ରିୟାକଳାପ ସର୍ବୋଚ୍ଚ ଶିଖରରେ ପହଞ୍ଚିବ ଏବଂ ଶତ୍ରୁର ସାଧାରଣ ଏବଂ ବିପ୍ଳବର ଅଦ୍ଭୁତ, ଅଧାପନ୍ତରିଆ ତଥା ଦୁର୍ବଳ ସାଧାରଣ କର୍ମୀମାନଙ୍କ ମଧ୍ୟରେ ଦଦୁଲ୍ୟମାନତା ସବୁଠାରୁ ଶକ୍ତିଶାଳୀ ହୋଇ ଉଠିଥିବ । ଏହା ହେଲା ତୃତୀୟ କଥା ।"

ବଲ୍‌ଶେଭିକ୍ ପାର୍ଟିର କେନ୍ଦ୍ରୀୟ କମିଟିର ସଦସ୍ୟମାନଙ୍କୁ ଲେନିନ୍ ଏକଥା ସେତିକିବେଳେ ଲେଖିଥିଲେ, ଯେତେବେଳେ ଅଭ୍ୟୁତ୍‌ଥାନ ନିମିତ୍ତ ଆଶୁ ପ୍ରସ୍ତୁତି ଆରମ୍ଭ ହେଉଥିଲା । ପେଟ୍ରୋଗ୍ରାଦ୍‌ରେ ତାଙ୍କର ପ୍ରତ୍ୟକ୍ଷ ନେତୃତ୍ୱାଧୀନରେ ପରିଚାଳିତ ଅଭ୍ୟୁତ୍‌ଥାନ ଥିଲା ବୈପ୍ଳବିକ ବାସ୍ତବ କ୍ରିୟାରେ ଏହିସବୁ ପ୍ରପାଦ୍ୟଗୁଡ଼ିକର ପ୍ରୟୋଗର ଚିରାୟତ ମଡେଲ ସ୍ୱରୂପ ।

ପେଟ୍ରୋଗ୍ରାଦ୍‌ର କେନ୍ଦ୍ରସ୍ଥଳରେ ପ୍ରତିବିପ୍ଳବୀ ଶକ୍ତିସମୂହକୁ ସମାବେଶ କରାଯାଇଥିଲା ଶୀତ ପ୍ରାସାଦରେ ପ୍ରତିଷ୍ଠିତ ଅସ୍ଥାୟୀ ସରକାରକୁ ସୁରକ୍ଷିତ କରିବା ପାଇଁ (ଏହାର ଠିକ୍ ପରେ ଅବସ୍ଥିତ ଥିଲା ପେଟ୍ରୋଗ୍ରାଦ୍ ଜିଲ୍ଲାର ସାମରିକ ବୋର୍ଡ) ।

ସ୍ମୋଲନି ଇନଷ୍ଟିଚ୍ୟୁଟଟିରେ ଥିଲା ବିପ୍ଳବର ମୁଖ୍ୟ କାର୍ଯ୍ୟାଳୟ । ଏଠାରେ ଥିଲା ସାମରିକ-ବିପ୍ଳବୀ କମିଟି, ଶ୍ରମିକ ଏବଂ ସୈନିକ ଜନପ୍ରତିନିଧିମାନଙ୍କର ପେଟ୍ରୋଗ୍ରାଦ୍ ସୋଭିଏତ୍ ଏବଂ ଅଭ୍ୟୁତ୍‌ଥାନକୁ ନିର୍ଦ୍ଦେଶ ଦେଉଥିବା ପାର୍ଟି କେନ୍ଦ୍ର ।

ବିପ୍ଳବ ଅଧୀନରେ ତିନୋଟି ମୁଖ୍ୟ ସାମରିକ ଶକ୍ତି ଥିଲେ । ଲାଲ ରକ୍ଷୀ ବାହିନୀର ୟୁନିଟଗୁଡ଼ିକ (ସଶସ୍ତ୍ର ଶ୍ରମିକ) ଉତ୍ତର, ପୂର୍ବ, ଦକ୍ଷିଣ ପଟୁ କେନ୍ଦ୍ରକୁ ରକ୍ଷା କରୁଥିଲେ । ପେଟ୍ରୋଗ୍ରାଦ୍ ଦୁର୍ଗର ବିପ୍ଳବୀ ୟୁନିଟଗୁଡ଼ିକ ଦ୍ୱିତୀୟ, ଆଭ୍ୟନ୍ତରୀଣ ଅର୍ଦ୍ଧବୃତ୍ତ ଗଠନ କରିଥିଲେ । ନେଭା ନଦୀର ମୁହାଣ ଦେଇ ବଲ୍‌ଟିକ୍ ନୌବହରର ରଣତରୀଗୁଡ଼ିକ ସାମରିକ-ବିପ୍ଳବୀ କମିଟିର ପ୍ରଥମ ନିର୍ଦ୍ଦେଶ ଅନୁଯାୟୀ ଭିତରକୁ ପ୍ରବେଶ କରିବେ ଏବଂ ଫିନ୍‌ଲାଣ୍ଡ ଉତ୍ତର-ପଶ୍ଚିମ ବିପ୍ଳବୀ ସେନାଦଳଗୁଡ଼ିକ ଆଗେଇ ଆସିବେ ।

"ପେଟ୍ରୋଗ୍ରାଦ୍‌କୁ ଘେରିଯାଇ ବିଚ୍ଛିନ୍ନ କରି ଦେବା ; ନୌବାହିନୀ, ଶ୍ରମିକ ଏବଂ ସୈନ୍ୟଦଳମାନେ ମିଳିତ ଆକ୍ରମଣ ଚଳେଇ ଏହାକୁ ଘେରଉ କରି ନେବା କାର୍ଯ୍ୟଟି ଆବଶ୍ୟକ କରୁଛି କଳା ଏବଂ ତିନି ଗୁଣ ସାହସ ।"

ଏହି କାର୍ଯ୍ୟଟି ସଂପନ୍ନ କରାଯାଇଥିଲା ୧୯୧୭, ନଭେମ୍ବର ୬ ଏବଂ ୭ର (ପୁରୁଣା ପଞ୍ଜିକା ଅନୁଯାୟୀ ଅକ୍ଟୋବର ୨୪ ଓ ୨୫) ଗୌରବୋଜ୍ଜ୍ୱଳ ଦିନଗୁଡ଼ିକରେ ।

ଲେନିନ୍ ତାଙ୍କର ସେର୍ଦବୋଲଷାୟାସ୍ଥ ଶେଷ ଗୋପନ ବାସସ୍ଥାନଟିକୁ ନଭେମ୍ବର ୬ ତାରିଖ ଦିନ (ଅକ୍ଟୋବର ୨୪) ପରିତ୍ୟାଗ କରି କେନ୍ଦ୍ରୀୟ କମିଟିର ବାର୍ତ୍ତାବାହକ ଏଇନୋ ରାହିଆଙ୍କ ସହିତ ସ୍ମୋଲନି ଇନଷ୍ଟିଚ୍ୟୁଟରେ ପହଞ୍ଚିଥିଲେ । ସେଇ ମୁହୂର୍ତ୍ତଠାରୁ ଅଭ୍ୟୁତ୍‌ଥାନ ଦ୍ରୁତତାର ସହିତ ଗତିମାନ ହେବାକୁ ଲାଗିଲା ।

ନଭେମ୍ବର ୭ (ଅକ୍ଟୋବର ୨୫), ରାତ୍ରି ଗୋଟାଏ ପଚିଶ ମିନିଟ । ନାବିକ, ଲାଲ ରକ୍ଷୀ ଏବଂ ସୈନିକମାନଙ୍କର ଏକ ଦଳ କେନ୍ଦ୍ରୀୟ ପୋଷ୍ଟ ଅଫିସ୍ ଦଖଲ କରି ନେଲେ । ରାତ୍ରି ଦୁଇଟାରେ ନିକଲାଏଭ୍‌ସି ଏବଂ ବାଲତିସ୍କି ରେଳ ଷ୍ଟେସନ ଦଖଲ ହୋଇଗଲା । ରାତ୍ରି ୩.୩୦ରେ ଯୁଦ୍ଧ ଜାହାଜ ଅରୋରା ପ୍ରବେଶ କଲା ନେଭା ନଦୀର ମୁହାଣ ମଧ୍ୟକୁ ଏବଂ ନିକଲାଏଭ୍‌ସି ସେତୁ ନିକଟରେ ଲଙ୍ଗର ପକାଇଲା । ସକାଳ ଛଅଟାରେ ରାଷ୍ଟ୍ରୀୟ ବ୍ୟାଙ୍କ୍ ଏବଂ କେନ୍ଦ୍ରୀୟ ସଂବାଦପତ୍ରସମୂହର ସଂପାଦକୀୟ କାର୍ଯ୍ୟାଳୟଗୁଡ଼ିକ ଏବଂ ସକାଳ ୭ଟାରେ କେନ୍ଦ୍ରୀୟ ଟେଲିଫୋନ୍ ଏକ୍ସଚେଞ୍ଜ ଦଖଲ ହେଲା । ପ୍ରାୟ ସମଗ୍ର ସହରଟି ଆସି ଯାଇଥିଲା ଅଭ୍ୟୁତ୍‌ଥାନକାରୀମାନଙ୍କ ହାତକୁ । ସକାଳ ୧୦ଟାରେ ଲେନିନ୍ ସାମରିକ-ବିପ୍ଳବୀ କମିଟି ତରଫରୁ "ରୁଷିଆର ନାଗରିକମାନଙ୍କୁ" ତାଙ୍କ ଆବେଦନଟି ଲେଖିଲେ ।

ଏହି ଦଲିଲରେ ସେ ଲେଖିଲେ, "ଅସ୍ଥାୟୀ ସରକାରକୁ ରଦ୍ କରି ଦିଆଗଲା" । ଦଲିଲର ଶେଷରେ ଥିଲା, "ଶ୍ରମିକ, ସୈନିକ ଏବଂ କୃଷକମାନଙ୍କ ବିପ୍ଳବ ଦୀର୍ଘଜୀବୀ ହେଉ !"

ନଭେମ୍ବର ୭ (ଅକ୍ଟୋବର ୨୫) ସଂଧ୍ୟା ୬ଟାରେ ସମଗ୍ର ଶୀତ ପ୍ରାସାଦକୁ ଘେରଉ କରି ନିଆଗଲା । ଦୁଇ ଥର ଅସ୍ଥାୟୀ ସରକାର ନିକଟକୁ ପ୍ରତିନିଧି ପ୍ରେରଣ କରାଗଲା ଅଭ୍ୟୁତ୍‌ଥାନକାରୀଙ୍କ ପକ୍ଷରୁ ଆତ୍ମସମର୍ପଣ କରିବା ପାଇଁ । କିନ୍ତୁ ପ୍ରସ୍ତାବଗୁଡ଼ିକୁ ପ୍ରତ୍ୟାଖ୍ୟାନ କରାଯାଇଥିଲା ।

ରାତ୍ରି ୯.୪୦ ମିନିଟରେ ଶୁଣାଗଲା ଅରୋରା ଯୁଦ୍ଧ ଜାହାଜରୁ ତୋପ ଧ୍ୱନି । ସେଣ୍ଟ ପିଟର ଏବଂ ପଲ୍ ଦୁର୍ଗରୁ ୩୦ଟିରୁ ଅଧିକ ଥର କମାଣରୁ ଗୁଳି ଫାଏର କରାଯାଇଥିଲା ଶୀତ ପ୍ରାସାଦ ଅଞ୍ଚଳକୁ । ଏହିସବୁ ଶବ୍ଦ ଥିଲା ଶୀତ ପ୍ରାସାଦ ଦଖଲ କରିବା ପାଇଁ ସଙ୍କେତ । ରାତ୍ରି ୨.୧୦ ମିନିଟରେ ଅସ୍ଥାୟୀ ସରକାରକୁ ଗିରଫ୍ କରାଗଲା । ଏହାର ଦେଢ଼ ଘଣ୍ଟା ପରେ ସୋଭିଏତ୍‌ସମୂହର ଦ୍ୱିତୀୟ କଂଗ୍ରେସରେ

ଗୃହୀତ ହେଲା ଲେନିନ୍‌ଙ୍କ ଦ୍ୱାରା ଲିଖିତ "ଶ୍ରମିକ, ସୈନିକ ଓ କୃଷକମାନଙ୍କ ପ୍ରତି!" ନିବେଦନଟି । ଏଥିରେ ଲେଖାଯାଇଥିଲା : "ବିପୁଳ ସଂଖ୍ୟାଧିକ ଶ୍ରମିକ, ସୈନିକ ଏବଂ କୃଷକମାନଙ୍କ ଇଚ୍ଛା ଅନୁଯାୟୀ ... କଂଗ୍ରେସ ନିଜେ କ୍ଷମତା ଗ୍ରହଣ କରୁଛି ।"

ଏହି ଭାବେ, ସଫଳ ଭାବେ ସଶସ୍ତ୍ର ଅଭ୍ୟୁତ୍‌ଥାନ ଦ୍ୱାରା ମହାନ୍ ଅକ୍ଟୋବର ସମାଜବାଦୀ ବିପ୍ଳବର ବିଜୟ ସଂପନ୍ନ ହୋଇଥିଲା ।

ସୋଭିଏତ୍‌ସମୂହର ନିଖିଳ ରୁଷ୍ କଂଗ୍ରେସର ଦ୍ୱିତୀୟ ଅଧିବେଶନ ନଭେମ୍ବର ୮ (ଅକ୍ଟୋବର ୨୬) ସଂଧ୍ୟା ବେଳେ ସ୍ମୋଲ୍‌ନି ଇନଷ୍ଟିଚ୍ୟୁଟରେ ଆରମ୍ଭ ହେଲା । ଲେନିନ୍‌ଙ୍କ ଦ୍ୱାରା ପ୍ରଦତ୍ତ ରିପୋର୍ଟରେ "ଶାନ୍ତି ସଂପର୍କରେ" ଏକ ନିର୍ଦ୍ଦେଶନାମା ଗୃହୀତ ହେଲା । ଏହି ନିର୍ଦ୍ଦେଶନାମା ଘୋଷଣା କଲା : "ମାନବଜାତି ବିରୁଦ୍ଧରେ ସର୍ବୋଚ୍ଚ ଅପରାଧ ହେଲା ଯୁଦ୍ଧ" । ଏଥିରେ ଥିବା ଏକ ବିବୃତ୍ତିଟି ଉଦ୍ଦିଷ୍ଟ ଥିଲା ସମସ୍ତ ସରକାର ଏବଂ ଜାତିମାନଙ୍କ ପ୍ରତି ଏବଂ ଏଥିରେ କୁହାଯାଇଥିଲା, ସମସ୍ତ ଜାତିଙ୍କ ପ୍ରତି ନ୍ୟାୟପୂର୍ଣ୍ଣ ସର୍ତ୍ତ ଅନୁଯାୟୀ ଏକ ଶାନ୍ତି ଚୁକ୍ତି ଅବିଳମ୍ବେ ସ୍ୱାକ୍ଷର କରିବାକୁ ସୋଭିଏତ୍ ସରକାର ପ୍ରସ୍ତୁତ ଅଛନ୍ତି ଏବଂ ଏହି ଶାନ୍ତି ଚୁକ୍ତି କୌଣସି ରାଜ୍ୟ ଦଖଲ ବା କ୍ଷତିପୂରଣ ବିନା ହେବ । ଅଧିବେଶନରେ ଗୃହୀତ ଦ୍ୱିତୀୟ ନିର୍ଦ୍ଦେଶନାମାରେ ଲୋକଙ୍କୁ ବିନା କ୍ଷତିପୂରଣରେ ସମସ୍ତ ଜମି ହସ୍ତାନ୍ତର କରାଗଲା । ଏହି କଂଗ୍ରେସ ନିଖିଳ ରୁଷିଆ କେନ୍ଦ୍ରୀୟ କାର୍ଯ୍ୟକାରୀ କମିଟି, ଆସନ୍ତା କଂଗ୍ରେସ ପର୍ଯ୍ୟନ୍ତ ରୁଷିଆରେ କ୍ଷମତାର ସର୍ବୋଚ୍ଚ ସାମ୍ବିଧାନିକ, କାର୍ଯ୍ୟନିର୍ବାହୀ ଏବଂ ନିୟନ୍ତ୍ରକ ସଂସ୍ଥା ନିର୍ବାଚିତ କଲା ଏବଂ ପ୍ରଥମ ସୋଭିଏତ୍ ସରକାର ମନ୍ତ୍ରୀ ପରିଷଦ ଗଠନ କଲା । ଲେନିନ୍ ଏହି ସରକାରର ମୁଖ୍ୟ ଏବଂ ୟାକୋଭ୍ ସ୍ୱେର୍ଦଲୋଭ୍ ନିଖିଳ-ରୁଷ୍ କେନ୍ଦ୍ରୀୟ କାର୍ଯ୍ୟନିର୍ବାହୀ କମିଟିର ସଭାପତି ନିର୍ବାଚିତ ହେଲେ ।

ପେଟ୍ରୋଗ୍ରାଦ୍‌ରେ ଅଭ୍ୟୁତ୍‌ଥାନ ବିନା କ୍ଷୟକ୍ଷତିରେ ଶୀଘ୍ର ସଂପନ୍ନ ହେଲେ ମଧ୍ୟ ମସ୍କୋରେ ତୁମୂଳ ସଶସ୍ତ୍ର ଲଢ଼େଇ ଚାଲିଥିଲା ସାତ ଦିନ କାଳ । ଏଠାରେ ପ୍ରତିବିପ୍ଳବୀ ଶକ୍ତିମାନଙ୍କ ପକ୍ଷରେ ଯଥେଷ୍ଟ ସାମରିକ ଶକ୍ତି (ୟୁଙ୍କାର ସ୍କୁଲ ଆଦି) ରହିଥିଲା । ନଭେମ୍ବର ୧୬ (୩) ତାରିଖ ରାତ୍ରିରେ ସୋଭିଏତ୍ ଶାସନ ପ୍ରତିଷ୍ଠିତ ହେଲା ମସ୍କୋରେ ।

ଏହା ପରେ ଦେଶ ସାରା ଆରମ୍ଭ ହୋଇଗଲା ସମାଜବାଦୀ ବିପ୍ଳବର ବିଜୟ ଯାତ୍ରା ।

# ୧୬ଶ ପରିଚ୍ଛେଦ

## ସୋଭିଏତ୍ ରାଷ୍ଟ୍ର ଗଠନ ଏବଂ ଏହାର ସୃଜନାତ୍ମକ କ୍ରିୟାକଳାପ

ଶ୍ରମିକ ଶ୍ରେଣୀ ଏହାର ଐତିହାସିକ ଲକ୍ଷ୍ୟ – ମଣିଷ ଦ୍ୱାରା ମଣିଷର ଶୋଷଣରୁ ମୁକ୍ତ ସମାଜବାଦୀ ସମାଜର ନିର୍ମାଣ – ପାଇଁ ପୁରୁଣା ରାଷ୍ଟ୍ରଯନ୍ତ୍ରକୁ ବ୍ୟବହାର କରି ପାରି ନଥାନ୍ତା । କାରଣ ଏହି ରାଷ୍ଟ୍ରଯନ୍ତ୍ର ବୁର୍ଜୁଆ ଏବଂ ଜମିଦାରମାନଙ୍କ ସ୍ୱାର୍ଥକୁ ରକ୍ଷା କରି ଆସିଥିଲା । ତେଣୁ କରି ରାଷ୍ଟ୍ରର ପୁରୁଣା ଯନ୍ତ୍ରକୁ ଉତ୍‌ଖାତ କରାଗଲା ଏବଂ ଏହା ସ୍ଥାନରେ ପ୍ରତିଷ୍ଠିତ ହେଲା ଏକ ନୂତନ ବ୍ୟବସ୍ଥା ।

ସୋଭିଏତ୍‌ସମୂହର ନିଖିଳ ରୁଷିଆ କଂଗ୍ରେସ ପରିଣତ ହେଲା ସର୍ବୋଚ୍ଚ ସାଂବିଧାନିକ ସଂସ୍ଥାରେ । ସ୍ଥାନୀୟ ସୋଭିଏତ୍‌ଗୁଡ଼ିକ କଂଗ୍ରେସକୁ ପ୍ରତିନିଧି ନିର୍ବାଚିତ କଲେ । କଂଗ୍ରେସଗୁଡ଼ିକର ମଧ୍ୟବର୍ତ୍ତୀ କାଳରେ ଦେଶରେ ସର୍ବୋଚ୍ଚ ସାଂବିଧାନିକ ଶକ୍ତି ନିହିତ ହେଲା ନିଖିଳ ରୁଷିଆ କେନ୍ଦ୍ରୀୟ କାର୍ଯ୍ୟକାରୀ କମିଟି ହାତରେ । ଏହା ନିର୍ବାଚିତ ହେଲା ସୋଭିଏତ୍‌ସମୂହର କଂଗ୍ରେସ ଦ୍ୱାରା । ୟାକୋଭ୍ ସ୍ୱେର୍ଦଲୋଭ୍, କମ୍ୟୁନିଷ୍ଟ ପାର୍ଟିରେ ଜଣେ ପ୍ରଖ୍ୟାତ ବିପ୍ଳବୀ ଏବଂ ସୁପରିଚିତ ନେତା, ନିଖିଳ ରୁଷିଆ କେନ୍ଦ୍ରୀୟ କାର୍ଯ୍ୟକାରୀ କମିଟିର ସଭାପତି ହେଲେ । ୧୯୧୯ ମସିହାରେ ତାଙ୍କର ମୃତ୍ୟୁ ପରେ, କୃଷକ ପରିବାରରେ ଜାତ ପେଟ୍ରୋଗ୍ରାଦ୍‌ର ଶ୍ରମିକ ମିଖାଇଲ କାଲିନିନ୍ ଏହି ପଦକୁ ନିର୍ବାଚିତ ହେଲେ । ଏମାନେ ହେଲେ ସୋଭିଏତ୍ ରାଷ୍ଟ୍ରର ପ୍ରଥମ ରାଷ୍ଟ୍ରପତିବୃନ୍ଦ ।

ମନ୍ତ୍ରୀ ପରିଷଦ ବା ଗଣ କମିସାର ପରିଷଦ ଥିଲା ସୋଭିଏତ୍ ରାଷ୍ଟ୍ରର କେନ୍ଦ୍ରୀୟ କାର୍ଯ୍ୟନିର୍ବାହୀ ଏବଂ ପ୍ରଶାସନିକ ସଂସ୍ଥା । ଲେନିନ୍ ୧୯୨୪ ମସିହା, ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଏହି ସଂସ୍ଥାର ନେତୃତ୍ୱ ନେଇଥିଲେ । ସୌଭାଗ୍ୟ କ୍ରମେ ଲେନିନ୍ ଏକାଧାରରେ ଥିଲେ ପ୍ରତିଭାବାନ ପଣ୍ଡିତ, ବିରାଟ ବିପ୍ଳବୀ, ଅତୁଳନୀୟ ସଂଗଠକ ଏବଂ ବିଚକ୍ଷଣ ରାଷ୍ଟ୍ରନୀତିଜ୍ଞ । ଯେଉଁସବୁ ନିୟମ ଅନୁଯାୟୀ ବିପ୍ଳବ ବିକାଶ ଲାଭ କରେ, ସେ ବିଷୟରେ ତାଙ୍କର ଗଭୀର ଜ୍ଞାନ ଥିଲା ଏବଂ ସେ ଲୋକଙ୍କ ଆବଶ୍ୟକତା କ'ଣ ଜାଣିଥିଲେ ଏବଂ ନିବିଡ଼ ଭାବେ ଶ୍ରମିକ ଓ କୃଷକମାନଙ୍କ ସହିତ ସଂପୃକ୍ତ ଥିଲେ ।

ଲେନିନ୍‌ଙ୍କ ସେକ୍ରେଟେରୀ ଏନ୍.ଗୋର୍ବୁନୋଭ୍ ତାଙ୍କ ସ୍ମୃତି କଥାରେ ଲେଖିଛନ୍ତି : "ଜଣୈକ କୃଷକ ସହିତ ଲଗାଲଗି ହୋଇ ଲେନିନ୍‌ଙ୍କର ବସିବାର ଢଙ୍ଗଟି ଏବେ ବି ମୋ ମନରେ ପରିଷ୍କାର ଭାବେ ଆଙ୍କି ହୋଇ ରହିଛି । ସେ ଏତେ ପାଖପାଖି ହୋଇ ବସିଥିଲେ ଯେ, କୃଷକଟିର ଆଣ୍ଠୁ ସହିତ ତାଙ୍କ ଆଣ୍ଠୁ ଲଗୁଥିଲା । ସତେ ଯେମିତି ତାଙ୍କୁ ଭଲକ ଶୁଣିବା ପାଇଁ ସେ ତାଙ୍କ ଆଡ଼କୁ ଢଳିକି ବସିଥିଲେ, ବିଭିନ୍ନ ବିଷୟରେ ଜାଣିବାକୁ ଚାହୁଁଥିଲେ ଏବଂ ମନଧ୍ୟାନ ଦେଇ ତାଙ୍କୁ ପରାମର୍ଶ ଦେଉଥିଲେ । ଲେନିନ୍‌ଙ୍କ ମୁହଁରେ ପ୍ରସନ୍ନ ହସ ଆଉ ଅକୃତ୍ରିମ ଭାବ ଫୁଟି ଉଠୁଥିଲା । କୃଷକମାନେ ଲେନିନ୍‌ଙ୍କ ଅଫିସ୍‌ରୁ ପରମ ଉଲ୍ଲାସର ସହିତ ବାହାରି ଆସିଲା ବେଳେ କହୁଥିଲେ : "ଏବେ ଏକ ସରକାର ପ୍ରତିଷ୍ଠିତ ହୋଇଛି, ଏହା ହିଁ ପ୍ରକୃତ କୃଷକମାନଙ୍କର ସରକାର !"

ଗଣ ମନ୍ତ୍ରୀ ପରିଷଦଟି ୧୫ଜଣ ମନ୍ତ୍ରୀଙ୍କୁ ନେଇ ଗଠିତ ହୋଇଥିଲା । ଏମାନେ ବିଭିନ୍ନ ଗଣ ମନ୍ତ୍ରୀ ମଣ୍ଡଳୀର ମୁଖ୍ୟ ଥିଲେ । ଏହି ମନ୍ତ୍ରଣାଳୟଗୁଡ଼ିକ ଉଚ୍ଛେଦ କରାଯାଇଥିବା ମନ୍ତ୍ରୀମଣ୍ଡଳୀର (ଆଭ୍ୟନ୍ତରୀଣ, ବୈଦେଶିକ, ଶ୍ରମ, ଶିକ୍ଷା, ଅର୍ଥ, ନୌବିଭାଗ ଆଦି) ସ୍ଥାନରେ ପ୍ରତିଷ୍ଠିତ ହୋଇଥିଲା । ଗଣ ମନ୍ତ୍ରୀ ପରିଷଦ ମଧ୍ୟରେ ସୋଭିଏତ୍ ସରକାର ଜାତିମାନଙ୍କ ପାଇଁ ଏକ ଗଣ ମନ୍ତ୍ରଣାଳୟ ଅନ୍ତର୍ଭୁକ୍ତ କରିଥିଲେ । ଏହା ସୋଭିଏତ୍ ଶାସନ ଦ୍ୱାରା ଘୋଷିତ ଜାତିମାନଙ୍କ ମଧ୍ୟରେ ସମାନତା ଓ ବନ୍ଧୁତ୍ୱର ନୀତିକୁ କାର୍ଯ୍ୟକାରୀ କରୁଥିଲା । ଏହି ମନ୍ତ୍ରଣାଳୟର ମୁଖ୍ୟ ଥିଲେ ଜୋସେଫ୍ ଷ୍ଟାଲିନ୍ । ଜାତୀୟ ଅର୍ଥନୀତିର ସର୍ବୋଚ୍ଚ ପରିଷଦଟି ଗଠିତ ହୋଇଥିଲା ଜାତୀୟ ଅର୍ଥନୀତିର ବିକାଶ ସାଧନ ତଥା ଜାତୀୟକରଣ କରାଯାଇଥିବା ଉଦ୍ୟୋଗସମୂହର ପରିଚାଳନା ପାଇଁ । ପ୍ରତିବିପ୍ଳବ ସହିତ ସଂଗ୍ରାମ କରିବା ନିମିତ୍ତ ଏକ ବିଶେଷ ସଂଗଠନ ଗଠିତ ହୋଇଥିଲା । ଏହାର ନାମ ହେଲା ନିଖିଳ ରୁଷିଆ ଅସାଧାରଣ କମିସନ (ଚେକା) ଏବଂ ଏହାର ନେତୃତ୍ୱରେ ଥିଲେ ଫେଲିକ୍‌ସ ଝେର୍‌ଝିନ୍‌ସ୍କି । ଫେଲିକ୍‌ସ ଝେର୍‌ଝିନ୍‌ସ୍କି କହିଥିଲେ, ଚେକା ମଧ୍ୟକୁ ପାର୍ଟି ସେହିସବୁ ଶ୍ରମିକ, ସୈନିକ ଏବଂ ନାବିକମାନଙ୍କୁ ପଠାଉଥିଲା, ଯେଉଁମାନେ ଲେକଙ୍କ ପ୍ରତି ଅନୁଗତ, ଦୁର୍ନୀତିହୀନ ଏବଂ ଅବିଚଳ ବିପ୍ଳବୀ ଥିଲେ, "ଯେଉଁମାନଙ୍କର ଥିଲା ଆଗ୍ରହଭରା ହୃଦୟ, ଶାନ୍ତ ମନ ଏବଂ ହାତ ନିର୍ମଳ ।"

ପୁରୁଣା ବିଚାର ପ୍ରତିଷ୍ଠାନଗୁଡ଼ିକ ପରିବର୍ତ୍ତେ ଏକ ନୂତନ ବିଚାର ବ୍ୟବସ୍ଥା, ସୋଭିଏତ୍ ଗଣ ବିଚାରାଳୟ ବ୍ୟବସ୍ଥା ପ୍ରତିଷ୍ଠିତ ହେଲା : ଏଥିରେ ଅନ୍ତର୍ଭୁକ୍ତ ହୋଇଥିଲା ସୋଭିଏତ୍ ଦ୍ୱାରା ନିର୍ବାଚିତ ସ୍ଥାନୀୟ ବିଚାରାଳୟସମୂହ ଏବଂ ବିପ୍ଳବୀ ଟ୍ରିବ୍ୟୁନାଲସମୂହ (ଗୁବେର୍ଣ୍ଣିଆ ବା ସହର) । ସୋଭିଏତ୍ ବିଚାରାଳୟଗୁଡ଼ିକୁ ବିପ୍ଳବୀ ଆଇନ୍ ଓ ଶ୍ରମଜୀବୀ ଜନସାଧାରଣଙ୍କ ସ୍ୱାର୍ଥସମୂହକୁ ରକ୍ଷା କରିବାକୁ ପଡ଼ିଥିଲା । ସର୍ବସାଧାରଣ ଶୃଙ୍ଖଳା ପ୍ରତିଷ୍ଠା କରିବା ପାଇଁ ସୋଭିଏତ୍ ଶ୍ରମିକ ତଥା କୃଷକ ପୁଲିସ୍ ବିଭାଗ ପ୍ରତିଷ୍ଠା କରିବାକୁ ପଡ଼ିଥିଲା । ଶ୍ରମିକ ଓ କୃଷକମାନଙ୍କର ଲାଲ ଫୌଜ ଗଠିତ ହୋଇଥିଲା

ବିପ୍ଳବକୁ ବିଦେଶୀ ଆକ୍ରମଣ କବଳରୁ ରକ୍ଷା କରିବା ସଙ୍ଗେ ସଙ୍ଗେ ଆଭ୍ୟନ୍ତରୀଣ ପ୍ରତିବିପ୍ଳବର ସାମରିକ ପ୍ରତିରୋଧକୁ ଦମନ କରିବା ନିମିତ୍ତ । ପ୍ରଥମେ ସ୍ୱେଚ୍ଛାକୃତ ଯୋଗଦାନକୁ ଭିତ୍ତି କରି ସେନାବାହିନୀ ଗଠିତ ହେଲା ଏବଂ ଏଥିରେ ଯୋଗ ଦେଇଥିଲେ ଶ୍ରମିକ ଶ୍ରେଣୀର ରାଜନୈତିକ ଭାବେ ଅତୀବ ସଚେତନ ଲୋକେ । ଅଣଶ୍ରମିକମାନଙ୍କୁ ଏଥିରେ ଯୋଗ ଦେବାକୁ ଦିଆଯାଉ ନଥିଲା : ସେମାନଙ୍କ ହାତରେ ଅସ୍ତ୍ର ଦିଆଯାଉ ନଥିଲା । ସେମାନେ କେବଳ ରଣ କ୍ଷେତ୍ରର ପଶ୍ଚାଦ୍‌ଭାଗରେ କାର୍ଯ୍ୟ କରୁଥିଲେ ।

ଉତ୍‌ଖାତ ଶୋଷିତ ଶ୍ରେଣୀମାନଙ୍କ ବିରୁଦ୍ଧରେ ତୀବ୍ର ସଂଗ୍ରାମର ପରିପ୍ରେକ୍ଷିତରେ ନୂଆ ଏକ ରାଷ୍ଟ୍ର ପ୍ରତିଷ୍ଠିତ ହୋଇଥିଲା । ପୂର୍ବତନ ମନ୍ତ୍ରଣାଳୟର ବୁର୍ଜୁଆ ଅଫିସରମାନଙ୍କ ମଧ୍ୟରୁ ଅଧିକାଂଶ ସୋଭିଏତ୍ ଶାସନ ସହିତ ସହଯୋଗ କରିବାକୁ ପ୍ରତ୍ୟାଖ୍ୟାନ କରିଥିଲେ ଏବଂ ପ୍ରତିବିପ୍ଳବୀ ଧ୍ୱଂସାତ୍ମକ କ୍ରିୟାକଳାପର ପଥ ଗ୍ରହଣ କରିଥିଲେ । ସେମାନେ ଉଦ୍ୟମ କରିଥିଲେ ଦେଶର ସରକାରୀ ବ୍ୟବସ୍ଥାକୁ ଧ୍ୱଂସ କରି ଦେବା ପାଇଁ । ବୁର୍ଜୁଆମାନେ ଭାବୁଥିଲେ, ସର୍ବହରାମାନେ କେବେହେଲେ ରାଷ୍ଟ୍ର ପରିଚାଳନା କରି ପାରିବେ ନାହିଁ, କାରଣ ସେମାନଙ୍କର ପ୍ରଶାସନ ବିଷୟରେ ତାଲିମ ନାହିଁ ।

ସେ ସମାଜବାଦୀ ବିପ୍ଳବର ବିଜୟର ସ୍ୱଳ୍ପ କାଳ ଆଗରୁ ବୁର୍ଜୁଆ ସମ୍ବାଦପତ୍ର "ନୋଭୟେ ଭ୍ରେମ୍ୟା" ଥଟା କରି ଲେଖିଥିଲା : "ମିନିଟକ ପାଇଁ ଆମେ ଭାବି ନେବା ଯେ, ବଲ୍‌ଶେଭିକ୍‌ମାନେ ଜୟ ଲାଭ କରିଛନ୍ତି । ତା'ପରେ ଆମମାନଙ୍କୁ କିଏ ଶାସନ କରିବ ? ସମ୍ଭବତଃ ରାନ୍ଧୁଣିଆମାନେ – ଯେଉଁମାନେ କଟଲେଟ୍ ଆଉ ବିଫ୍‌ଷ୍ଟିକ୍ ତିଆରି କରିବାରେ ଓସ୍ତାଦ ? ଅଥବା ସେ ଦମକଳର ଲୋକେ, ସହିସଗଣ ବା ଗୋଦାମ ମାଲିକମାନେ ? ଅଥବା ଧାଇମାନେ ସମ୍ଭବତଃ ରାଷ୍ଟ୍ରୀୟ ପରିଷଦର ବୈଠକକୁ ଦୌଡ଼ିବେ ପିଲାଙ୍କ ଲୁଗାପଟା ଧୋଇଲା ପରେ ? ଏହିସବୁ ରାଷ୍ଟ୍ରନୀତିଜ୍ଞ ତେବେ କିଏ ? ସମ୍ଭବତଃ ଫିଟର ମିସ୍ତ୍ରୀମାନେ ଥିଏଟରସବୁର ଦାୟିତ୍ୱ ନେବେ ଏବଂ ପାଣିପାଇପ୍ ମିସ୍ତ୍ରୀମାନେ କୂଟନୀତି, ସୂତ୍ରଧରମାନେ ପୋଷ୍ଟ ଆଉ ଟେଲିଗ୍ରାଫ୍ କାର୍ଯ୍ୟ ତଦାରଖ କରିବେ ? ଏପରି କ'ଣ ସବୁ ଦିନେ ଚାଲିଥିବ ? ଇତିହାସ ନିଶ୍ଚୟ ବଲ୍‌ଶେଭିକ୍‌ମାନଙ୍କୁ ଏହି ପାଗଳ ପ୍ରଶ୍ନର ଏକ ଶକ୍ତ ଜବାବ ଦେବ ।"

ଏହି ବୁର୍ଜୁଆ ସମ୍ବାଦପତ୍ରର ଏହି କଥାଗୁଡ଼ିକ ପ୍ରତିଧ୍ୱନିତ ହୋଇଥିଲା ମେନ୍‌ଶେଭିକ୍ ପାର୍ଟିର କେନ୍ଦ୍ରୀୟ କମିଟିର ଏକ "ସମ୍ମାନସ୍ୱଦ" ମୁଖପାତ୍ରରେ । ଅକ୍ଟୋବର ବିପ୍ଳବର ପରଦିନ ଏହି ପତ୍ରିକାଟି ବୁର୍ଜୁଆ ଅଫିସରମାନଙ୍କ ଧ୍ୱଂସାତ୍ମକ କ୍ରିୟାକଳାପ ସଂପର୍କରେ ଲେଖିଥିଲା : "ବଲ୍‌ଶେଭିକ୍‌ମାନଙ୍କ ବିଜୟର ମାତ୍ର ଗୋଟିଏ ଦିନ ବିତିଛି ଏବଂ ଐତିହାସିକ ଅଦୃଷ୍ଟ ଇତିମଧ୍ୟରେ ସେମାନଙ୍କ ଉପରେ ପ୍ରତିଶୋଧ ନେବାକୁ ଆରମ୍ଭ କରି ଦେଲାଣି ... ସେମାନେ ନିଜ ହାତକୁ ରାଷ୍ଟ୍ର କ୍ଷମତା ନେବାକୁ ସଂପୂର୍ଣ୍ଣ ଅପାରଗ । ସେମାନଙ୍କ ହାତରୁ ସେ କ୍ଷମତା ଖସି ଚାଲିଯାଉଛି, କାରଣ ସେମାନେ ନିଜ ଦ୍ୱାରା

ସୃଷ୍ଟ ଶୂନ୍ୟତା ଦ୍ୱାରା ପରିବେଷ୍ଟିତ, ସେମାନେ ସମସ୍ତଙ୍କ ଠାରୁ ବିଛିନ୍ନ, ଏବଂ ସମଗ୍ର ପ୍ରଶାସନିକ ଏବଂ କାରିଗରି ବ୍ୟବସ୍ଥାର ଲୋକେ ସେମାନଙ୍କ ଅଧୀନରେ କାର୍ଯ୍ୟ କରିବାକୁ ପ୍ରତ୍ୟାଖ୍ୟାନ କରିଛନ୍ତି ।"

ତେବେ ଅଭିଜ୍ଞତା ଏହିସବୁ "ଭବିଷ୍ୟତ୍‌ବାଣୀର" ଅସତ୍ୟତାକୁ ପ୍ରମାଣ କରି ଦେଇଛି । ବିପ୍ଳବର ପ୍ରାକ୍କାଳରେ ଲେନିନ୍ ଲେଖିଥିଲେ, "ରାଷ୍ଟ୍ରୀୟ ଯନ୍ତ୍ରକୁ ଏକାଥରକେ ଦଶଗୁଣ ବୃଦ୍ଧି କରି ଦେଲା ଭଳି ଆମର ଏକ ଯାଦୁକରୀ ଉପାୟ ଆମକୁ ଜଣା ଅଛି, ଯେଉଁ ଉପାୟକୁ କୌଣସି ପୁଞ୍ଜିବାଦୀ ରାଷ୍ଟ୍ର ଜାଣି ନାହାନ୍ତି ଏବଂ ଜାଣିବେ ନାହିଁ । ଏହି ଯାଦୁକରୀ ଉପାୟଟି ରାଷ୍ଟ୍ରୀୟ ପ୍ରଶାସନ ମଧ୍ୟକୁ ଶ୍ରମଜୀବୀ ଜନସାଧାରଣ, ଗରିବ ଲୋକଙ୍କୁ ଟାଣି ଆଣିବ ।"

କମ୍ୟୁନିଷ୍ଟ ପାର୍ଟି ଏବଂ ସୋଭିଏତ୍ ସରକାର ସେ "ଯାଦୁକରୀ ଉପାୟଟିକୁ" କାର୍ଯ୍ୟରେ ଲଗାଇଥିଲା ଏବଂ ରାଷ୍ଟ୍ରଯନ୍ତ୍ରର ପରିଚାଳନା ପାଇଁ ଶ୍ରମିକ, ସୈନିକ ଏବଂ ନାବିକମାନଙ୍କୁ ଆକର୍ଷଣ କରିଥିଲା । ଦୃଷ୍ଟାନ୍ତ ସ୍ୱରୂପ, ଘରୋଇ ବିଭାଗ ମନ୍ତ୍ରଣାଳୟଟି ଗଠିତ ହୋଇଥିଲା ଦେଶର ସର୍ବବୃହତ୍ କାରଖାନା, ପେଟ୍ରୋଗ୍ରାଦ୍‌ର ପୁତିଲୋଭ୍ କାରଖାନାର ଶ୍ରମିକମାନଙ୍କୁ ନେଇ । ଅନ୍ୟ କେତେକ କାରଖାନାର ଶ୍ରମିକ, ବଲ୍‌ଟିକ୍ ନୌବହରର ନାବିକମାନେ ବୈଦେଶିକ ବିଭାଗ ମନ୍ତ୍ରଣାଳୟର ଗଠନରେ ଅଂଶଗ୍ରହଣ କରିଥିଲେ; ବଲ୍‌ଟିକ୍ ନୌବହରର ନାବିକ ଏନ୍.ମାର୍କିନ୍ ଏହାର ମୁଖ୍ୟ ପ୍ରଶାସକ ରୂପେ ନିର୍ବାଚିତ ହୋଇଥିଲେ । ରେଳ ଶ୍ରମିକମାନେ ସେମାନଙ୍କ ସେରା ଲୋକମାନଙ୍କୁ ରେଳବାଇ ମନ୍ତ୍ରଣାଳୟର ପ୍ରଶାସନ ମଧ୍ୟକୁ ପଠାଇଥିଲେ । ନୂଆ ରାଷ୍ଟ୍ରୀୟ ଯନ୍ତ୍ର ଏହି ଭାବେ ନିର୍ମିତ ହୋଇଥିଲା ଦେଶର କେନ୍ଦ୍ରରେ ।

ସ୍ଥାନୀୟ ଶାସନର ସଂସ୍ଥାସମୂହ ମଧ୍ୟ ଗଠିତ ହୋଇଥିଲା ଏହି ଭାବେ । ୧୯୧୭, ନଭେମ୍ବର ୧୮ (୫) ତାରିଖରେ ଲେନିନ୍ ରୁଷିଆର ଶ୍ରମଜୀବୀ ଜନସାଧାରଣଙ୍କୁ ନିବେଦନ କରିଥିଲେ: "ସାଥୀଗଣ, ଶ୍ରମଜୀବୀ ଜନସାଧାରଣ! ଆପଣମାନଙ୍କୁ ମନେ ରଖିବାକୁ ହେବ ଯେ, ଆପଣମାନେ ଏବେ ରାଷ୍ଟ୍ରର କର୍ଣ୍ଣଧାର । ଆପଣମାନେ ନିଜେ ଯଦି ଏକାଠି ନହୁଅନ୍ତି ଏବଂ ରାଷ୍ଟ୍ରର ସମସ୍ତ ବ୍ୟାପାରକୁ ନିଜ ହାତକୁ ନନିଅନ୍ତି, ତେବେ କେହି ଆପଣମାନଙ୍କୁ ସାହାଯ୍ୟ କରିବେ ନାହିଁ । ଆପଣମାନଙ୍କର ସୋଭିଏତ୍‌ଗୁଡ଼ିକ ଏବେଠୁଁ ସମସ୍ତ କ୍ଷମତାସଂପନ୍ନ ରାଷ୍ଟ୍ରୀୟ କର୍ତ୍ତୃପକ୍ଷଙ୍କ ସଂସ୍ଥାସମୂହ ଏବଂ ଆଇନ୍ ପ୍ରଣୟନକାରୀ ସଂସ୍ଥା ।

"ଆପଣମାନଙ୍କ ସୋଭିଏତ୍‌ଗୁଡ଼ିକ ଚତୁର୍ପାର୍ଶ୍ୱରେ ଏକଜୁଟ ହୁଅନ୍ତୁ, ସେସବୁକୁ ସୁଦୃଢ଼ କରନ୍ତୁ; ନିଜେ କାର୍ଯ୍ୟ ସଂପନ୍ନ କରି ଯାଆନ୍ତୁ; ଏକେବାରେ ଛୋଟ କାମଠାରୁ ଆରମ୍ଭ କରି, କାହାରି ପାଇଁ ଅପେକ୍ଷା କରନ୍ତୁ ନାହିଁ ।"

ଲେନିନ୍‌ଙ୍କର ଏହି ନିବେଦନ ପ୍ରତି ଜନସାଧାରଣ ବ୍ୟାପକ ସୁପ୍ରତିକ୍ରିୟା ଜଣାଇଥିଲେ ।

ଶ୍ରମଜୀବୀ ଜନସାଧାରଣ ସୋଭିଏତ୍‌ଗୁଡ଼ିକୁ ପୁନଃ ରଚନା କରିଥିଲେ ଏବଂ ଯେଉଁସବୁ ଜନପ୍ରତିନିଧି ଭୋଟଦାତାମାନଙ୍କର ବିଶ୍ୱାସର ପାତ୍ର ହେଉ ନଥିଲେ, ସେମାନଙ୍କୁ ଫେରେଇ ଆଣି ସେମାନଙ୍କ ସ୍ଥାନରେ ନୂତନ ଜନପ୍ରତିନିଧି ନିର୍ବାଚନ କରୁଥିଲେ ।

ନୂତନ ରାଷ୍ଟ୍ର ଗଠନରେ ଏକ ସକ୍ରିୟ ଭୂମିକା ପାଳନ କରିଥିଲେ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକ । ଏଗୁଡ଼ିକ ଥିଲେ ବିପ୍ଳବର ପ୍ରାରମ୍ଭରେ ଶ୍ରମିକମାନଙ୍କର ସର୍ବବୃହତ୍ ସଂଗଠନ । ଏସବୁର ସଂଖ୍ୟା ଥିଲା ପ୍ରାୟ ତିରିଶ ଲକ୍ଷ । ୧୯୧୮, ଜାନୁଆରୀରେ ଅନୁଷ୍ଠିତ ପ୍ରଥମ ନିଖିଳ ରୁଷୀୟ କଂଗ୍ରେସରେ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକ ସୋଭିଏତ୍ ଶାସନକୁ ସର୍ତ୍ତହୀନ ସମର୍ଥନ ପ୍ରଦାନ କରିଥିଲେ । ସେମାନେ ସେମାନଙ୍କର ବଛାବଛା ସଦସ୍ୟମାନଙ୍କୁ ପଠାଇଥିଲେ ରାଷ୍ଟ୍ରର କେନ୍ଦ୍ରୀୟ ଓ ସ୍ଥାନୀୟ ଶାସନର ସଂସ୍ଥାଗୁଡ଼ିକୁ ପରିଚାଳନା କରିବା ନିମିତ୍ତ । ସେମାନେ ଶ୍ରମିକ କର୍ମୀମାନଙ୍କୁ ରାଷ୍ଟ୍ର ପାଇଁ ବାଛିଥିଲେ ଜାତୀୟକରଣ କରାଯାଇଥିବା ଉଦ୍ୟୋଗସମୂହର ପରିଚାଳନା କ୍ଷେତ୍ରରେ ନିଯୁକ୍ତ କରିବା ନିମିତ୍ତ । ଉତ୍ପାଦନ ଏବଂ ବଣ୍ଟନ ବ୍ୟବସ୍ଥା ଉପରେ ଶ୍ରମିକମାନଙ୍କ ନିୟନ୍ତ୍ରଣ ଜାରି କରିବା ନିମିତ୍ତ, ଯାହାକି ୧୯୧୭, ନଭେମ୍ବର ମାସରେ ସୋଭିଏତ୍ ରାଷ୍ଟ୍ର ଦ୍ୱାରା ପ୍ରତିଷ୍ଠା କରାଯାଇଥିଲା । ସେସବୁ ପରିଣତ ହୋଇଥିଲେ ସଂଗଠନ ଏବଂ ରାଷ୍ଟ୍ର ତଥା ଉତ୍ପାଦନ ପରିଚାଳନା ଦିଗରେ ଜନସାଧାରଣଙ୍କ ତାଲିମ ସ୍କୁଲରେ ।

ରୁଷ୍ ଯୁବ କମ୍ୟୁନିଷ୍ଟ ଲୀଗ୍ (କମସୋମଲ) ପ୍ରତିଷ୍ଠିତ ହୋଇଥିଲା ୧୯୧୮ ମସିହାରେ । ଏହା ଯୁବ ସଂପ୍ରଦାୟର ସଂଗଠକ, ନେତା ଏବଂ ଶିକ୍ଷାଦାତାରେ ପରିଣତ ହୋଇଥିଲା । ନିୟୁତ ନିୟୁତ ଶ୍ରମଜୀବୀ ଜନସାଧାରଣ ରାଷ୍ଟ୍ରୀୟ ବ୍ୟାପାର ଏବଂ ଉତ୍ପାଦନ ପରିଚାଳନାରେ ସଂପୃକ୍ତ ହୋଇଥିଲେ ସୋଭିଏତ୍, ଟ୍ରେଡ୍‌ୟୁନିଅନ୍ ଏବଂ କମସୋମଲଗୁଡ଼ିକ ମାଧ୍ୟମରେ ।

ସୋଭିଏତ୍ ରାଷ୍ଟ୍ରର ତା'ର ଅସ୍ତିତ୍ୱର ପ୍ରଥମ ଦିନରୁ କମ୍ୟୁନିଷ୍ଟ ପାର୍ଟି ଏଥିରେ ମୁଖ୍ୟ ଏବଂ ନିର୍ଦ୍ଦେଶକ ଭୂମିକା ପାଳନ କରିଥିଲା । କମ୍ୟୁନିଷ୍ଟ ପାର୍ଟି ସଦସ୍ୟମାନଙ୍କୁ ନେଇ ସୋଭିଏତ୍ ସରକାର ଗଠିତ ହୋଇଥିଲା । ଶ୍ରମିକ ଏବଂ କୃଷକମାନଙ୍କ ରାଷ୍ଟ୍ରରେ ସମାଜ କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ପରିଚାଳିତ ହେବ ବୋଲି ପାର୍ଟି ବିଶ୍ୱାସ କଲେ ମଧ୍ୟ ଅନ୍ୟାନ୍ୟ ପାର୍ଟିର ସଦସ୍ୟମାନେ ସରକାରରେ ଅଂଶଗ୍ରହଣ କରିବାର ସମ୍ଭାବନାକୁ ଗ୍ରହଣ କରୁଥିଲା, ଯଦି ସେମାନେ ସୋଭିଏତ୍ ଶାସନ ଏବଂ କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱଦାୟୀ ଭୂମିକାକୁ ଗ୍ରହଣ କରୁଥାନ୍ତି । ଏହି ସର୍ତ୍ତରେ କମ୍ୟୁନିଷ୍ଟ ପାର୍ଟି ଏବଂ ବାମପନ୍ଥୀ ସମାଜବାଦୀ-ବିପ୍ଳବୀ ପାର୍ଟି ମଧ୍ୟରେ ୧୯୧୭ ନଭେମ୍ବର ମାସରେ ଏକ ଚୁକ୍ତି ମଧ୍ୟ ସଂପାଦିତ ହୋଇଥିଲା, ଯେଉଁମାନଙ୍କ ସଦସ୍ୟମାନେ ସୋଭିଏତ୍ ସରକାରରେ ଅଂଶଗ୍ରହଣ କରିଥିଲେ । ଏମାନେ ନିଜ ପକ୍ଷରୁ ୧୯୧୮ ମାର୍ଚ୍ଚ ମାସରେ ସୋଭିଏତ୍ ସରକାର ପରିତ୍ୟାଗ କରିଥିଲେ ଜର୍ମାନୀ ସହିତ ବ୍ରେଷ୍ଟ ଶାନ୍ତି ଚୁକ୍ତି ସଂପାଦନର ବିରୋଧିତା କରି ।

ସେହି ସମୟରୁ ସୋଭିଏତ୍ ସରକାର କେବଳ କମ୍ୟୁନିଷ୍ଟ ପାର୍ଟିର ସଦସ୍ୟମାନଙ୍କ ନେଇ ଗଠିତ ହୋଇ ଆସିଥିଲା ।

ସୋଭିଏତ୍‌ସମୂହରେ ମଧ୍ୟ ନେତୃତ୍ୱଦାୟୀ ଭୂମିକା ପାଳନ କରିଥିଲା କମ୍ୟୁନିଷ୍ଟ ପାର୍ଟି । କମ୍ୟୁନିଷ୍ଟମାନଙ୍କ ବ୍ୟତୀତ ସୋଭିଏତ୍‌ସମୂହରେ ପେଟି-ବୁର୍ଜୁଆ ପାର୍ଟିର ସଦସ୍ୟମାନଙ୍କ ମଧ୍ୟ ନିଆଯାଉଥିଲା, ସେମାନେ ଯଦି ସୋଭିଏତ୍ ଶାସନକୁ ମାନି ନେଉଥିଲେ ଏବଂ ସୋଭିଏତ୍ ରାଷ୍ଟ୍ର ବିରୁଦ୍ଧରେ ସକ୍ରିୟ ପ୍ରତିବିପ୍ଳବୀ ପଥ ଗ୍ରହଣ କରୁ ନଥିଲେ । ପେଟି-ବୁର୍ଜୁଆ ମେନ୍‌ଶେଭିକ୍ ଏବଂ ସମାଜବାଦୀ-ବିପ୍ଳବୀ ପାର୍ଟିମାନେ ସୋଭିଏତ୍ ଶାସନର ସମସ୍ତ ସଂସ୍ଥା ପାଇଁ ଅନୁଷ୍ଠିତ ନିର୍ବାଚନରେ ଅଂଶଗ୍ରହଣ କରିଥିଲେ ଏବଂ ସେମାନଙ୍କ ସଦସ୍ୟମାନେ ମଧ୍ୟ ସେଥିରେ ଥିଲେ । ତେବେ ପେଟି-ବୁର୍ଜୁଆ ପାର୍ଟିଗୁଡ଼ିକର ନେତୃତ୍ୱ ଅବିଳମ୍ବେ ସୋଭିଏତ୍ ଶାସନ ଦ୍ୱାରା ନିଆଯାଉଥିବା ବିଭିନ୍ନ ପଦକ୍ଷେପର ବିରୋଧିତା କରିବାକୁ ଆରମ୍ଭ କରି ଦେଲେ ଏବଂ ବୈଦେଶିକ ସାମରିକ ହସ୍ତକ୍ଷେପ ଏବଂ ୧୯୧୮ ଗ୍ରୀଷ୍ମକାଳରେ ଗୃହଯୁଦ୍ଧର ପ୍ରାରମ୍ଭରେ ସୋଭିଏତ୍ ରାଷ୍ଟ୍ର ବିରୁଦ୍ଧରେ ପ୍ରକାଶ୍ୟ ସଶସ୍ତ୍ର ସଂଗ୍ରାମର ପଥ ବାଛି ନେଲେ । ଏହି ଦୃଷ୍ଟିରୁ ମେନ୍‌ଶେଭିକ୍ ଏବଂ ସମାଜବାଦୀ-ବିପ୍ଳବୀମାନେ ସାଧାରଣ ଲୋକଙ୍କର ସମର୍ଥନ ହରେଇବାକୁ ଲାଗିଲେ ଏବଂ ପ୍ରତ୍ୟେକଟି ନିର୍ବାଚନରେ ସୋଭିଏତ୍‌ଗୁଡ଼ିକରେ ସେମାନଙ୍କ ପ୍ରତିନିଧିତ୍ୱ କ୍ରମଶଃ କମିବାକୁ ଲାଗିଲା । ଶେଷକୁ ଶ୍ରମିକ ଏବଂ କୃଷକମାନେ ସେମାନଙ୍କ ଉପରୁ ସମସ୍ତ ବିଶ୍ୱାସ ହରେଇ ବସିଲେ । ରାଜନୈତିକ ଭାବେ ଏହିସବୁ ପାର୍ଟି ଗୃହଯୁଦ୍ଧର ବର୍ଷମାନଙ୍କରେ (୧୯୧୮-୧୯୨୦) ଖତମ୍ ହୋଇଗଲେ ଏବଂ ୧୯୨୦ ଦଶକର ପ୍ରାରମ୍ଭରେ ସେମାନେ ନିଜକୁ ଭାଙ୍ଗି ଦେଇଥିଲେ । ଅନ୍ୟ ଦିଗରେ ଜନସାଧାରଣଙ୍କ ମଧ୍ୟରେ କମ୍ୟୁନିଷ୍ଟ ପାର୍ଟିର ପ୍ରଭାବ ଏବଂ ସମ୍ମାନ ପ୍ରତ୍ୟେକ ବର୍ଷ ବୃଦ୍ଧି ପାଇବାକୁ ଲାଗିଲା । ବୁର୍ଜୁଆ ଏବଂ ପେଟି-ବୁର୍ଜୁଆ ପାର୍ଟିଗୁଡ଼ିକ ଭାଙ୍ଗି ପଡ଼ିବା ଫଳରେ ଦେଶରେ କମ୍ୟୁନିଷ୍ଟ ପାର୍ଟି ହିଁ ଏକ ମାତ୍ର ପାର୍ଟିରେ ପରିଣତ ହେଲା ଏବଂ ସମସ୍ତ ଶ୍ରମଜୀବୀ ଜନସାଧାରଣଙ୍କୁ ନିଜର ଚତୁଃପାର୍ଶ୍ୱରେ ଏକଜୁଟ କଲା ।

ସୋଭିଏତ୍ ରାଷ୍ଟ୍ରରେ କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱଦାୟୀ ଭୂମିକା ପ୍ରତିଫଳିତ ହେବା ପଛରେ କାରଣ ହେଲା, ଏହା ଥିଲା ଶ୍ରମିକ ଶ୍ରେଣୀ ତଥା ସମସ୍ତ ଶ୍ରମଜୀବୀ ଜନସାଧାରଣଙ୍କର ସର୍ବାଧିକ ଅଗ୍ରଣୀ, ରାଜନୈତିକ ଭାବେ ସଚେତନ ଏବଂ ସକ୍ରିୟ ଅଂଶ ଏବଂ ଏହା ସୋଭିଏତ୍ ରାଷ୍ଟ୍ରର ନୀତି ପ୍ରଣୟନ କରୁଥିଲା । ରାଷ୍ଟ୍ରର ଆଭ୍ୟନ୍ତରୀଣ ଏବଂ ବୈଦେଶିକ ନୀତିର ଅତୀବ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଗୁଡ଼ିକ ପାର୍ଟି କଂଗ୍ରେସ ଏବଂ ପାର୍ଟି ସମ୍ମିଳନୀ ତଥା କେନ୍ଦ୍ରୀୟ କମିଟିର ପୂର୍ଣ୍ଣାଙ୍ଗ ଅଧିବେଶନରେ ଆଲୋଚିତ ହେଉଥିଲା । ସମାଜବାଦୀ ଏବଂ କମ୍ୟୁନିଷ୍ଟ ସମାଜ ନିର୍ମାଣ ସହିତ ସଂପୃକ୍ତ ସମସ୍ତ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ସଂପର୍କରେ ପାର୍ଟି ଜନସାଧାରଣଙ୍କର ପରାମର୍ଶ ନେଉଥିଲା । ଶ୍ରମଜୀବୀ ଜନସାଧାରଣ ଆଗରେ ପାର୍ଟି

ବ୍ୟାପକ ଭାବେ ସେସବୁକୁ ବ୍ୟାଖ୍ୟା କରୁଥିଲା ଏବଂ ସେଇସବୁ ନୀତିକୁ କାର୍ଯ୍ୟକାରୀ କରିବା ପାଇଁ ସେମାନଙ୍କୁ କାର୍ଯ୍ୟରେ ଲଗାଉଥିଲା । ଜନସାଧାରଣଙ୍କ ମଧ୍ୟରେ ପାର୍ଟି ସଂଗଠନ ଏବଂ ଶୃଙ୍ଖଳାର ମନୋଭାବ ସୃଷ୍ଟି କରୁଥିଲା ଏବଂ କମ୍ୟୁନିଷ୍ଟ ସଚେତନତାକୁ ବିକଶିତ କରୁଥିଲା । ଶ୍ରମ ଶୃଙ୍ଖଳା ଏବଂ ସମାଜବାଦୀ ସଂପତ୍ତି ପ୍ରତି ଏହା ସେମାନଙ୍କ ମନରେ ସମ୍ମାନ ଜାଗ୍ରତ କରୁଥିଲା । ପାର୍ଟିର ଲକ୍ଷ୍ୟ ହେଲା, କମ୍ୟୁନିଷ୍ଟମାନେ କାର୍ଯ୍ୟ କ୍ଷେତ୍ରରେ, ସାଧାରଣ ତଥା ଦୈନନ୍ଦିନ ଜୀବନରେ ସମସ୍ତ ଜନସାଧାରଣଙ୍କ ପାଇଁ ଆଦର୍ଶସ୍ଥାନୀୟ ହେବେ ।

ପାର୍ଟି ସମସ୍ତ ଶ୍ରମଜୀବୀ ଜନସାଧାରଣଙ୍କ ଗଣ ସଂଗଠନଗୁଡ଼ିକୁ ନିଜସ୍ୱ ପ୍ରତିନିଧିମାନଙ୍କ ଦ୍ୱାରା ନିର୍ଦ୍ଦେଶନା ପ୍ରଦାନ କରୁଥିଲା : ଟ୍ରେଡ୍‌ୟୁନିଅନ୍, କମସୋମଲ, ସମବାୟ ସଂସ୍ଥା, କ୍ରୀଡ଼ା ପ୍ରତିଷ୍ଠାନ ତଥା ଅନ୍ୟାନ୍ୟ ସଂଗଠନସମୂହକୁ ।

କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ପରିଚାଳିତ ସୋଭିଏତ୍ ରାଷ୍ଟ୍ର ନୂତନ ଜୀବନ ନିର୍ମାଣ କ୍ଷେତ୍ରରେ ଶ୍ରମଜୀବୀ ଜନସାଧାରଣଙ୍କର ମୁଖ୍ୟ ହତିଆର ଥିଲା ।

ଏହାର ଜନ୍ମ ଦିନରୁ ଏହା ବିପୁଳ ସୃଜନମୂଳକ କାର୍ଯ୍ୟ ଆରମ୍ଭ କରି ଦେଇଥିଲା, ଯେଉଁସବୁର ଲକ୍ଷ୍ୟ ହେଲା ବ୍ୟାପକ ଜନସାଧାରଣଙ୍କର ଆବଶ୍ୟକତାକୁ ପୂରଣ କରିବା, ସାମରିକ ପରାଜୟରୁ ଏବଂ ଆସନ୍ନ ଅର୍ଥନୈତିକ ବିପର୍ଯ୍ୟୟରୁ ଦେଶକୁ ରକ୍ଷା କରିବା ତଥା ସାମାଜିକ-ଅର୍ଥନୈତିକ କ୍ଷେତ୍ରରେ ପ୍ରଥମ ସମାଜବାଦୀ ଉତ୍ତରଣକୁ କାର୍ଯ୍ୟକାରୀ କରିବା ।

ଶାନ୍ତି ସଂକ୍ରାନ୍ତ ପ୍ରଶ୍ନଟି ଥିଲା ଏକ ମୌଳିକ ପ୍ରଶ୍ନ । ଏହାରି ଉପରେ ବିପ୍ଳବ ତଥା ଦେଶର ଭାଗ୍ୟ ନିର୍ଭର କରୁଥିଲା । ସାମ୍ରାଜ୍ୟବାଦୀ ଯୁଦ୍ଧ ଦେଶର ଅର୍ଥନୀତିକୁ ନିଃଶେଷ କରି ଦେବା ସଙ୍ଗେ ସଙ୍ଗେ ରୁଷିଆର ସ୍ୱାଧୀନତାକୁ ବିପଦାପନ୍ନ କରିଥିଲା । ସମସ୍ତ ଶ୍ରମଜୀବୀ ଜନସାଧାରଣ ଯୁଦ୍ଧର ଅବସାନ ଦାବି କରୁଥିଲେ ।

ସୋଭିଏତ୍‌ସମୂହର ଦ୍ୱିତୀୟ ନିଖିଳ ରୁଷ୍ କଂଗ୍ରେସରେ ଗୃହୀତ "ଶାନ୍ତି ସଂକ୍ରାନ୍ତ" ଐତିହାସିକ ନିର୍ଦ୍ଦେଶନାମାକୁ କାର୍ଯ୍ୟକାରୀ କରିବାକୁ ଯାଇ ସୋଭିଏତ୍ ସରକାର ଏକ ସାର୍ବଜନୀନ ତଥା ଗଣତାନ୍ତ୍ରିକ ଶାନ୍ତି ଚୁକ୍ତି ସଂପନ୍ନ ଲକ୍ଷ୍ୟରେ ନିରବଚ୍ଛିନ୍ନ ସଂଗ୍ରାମ ଆରମ୍ଭ କରି ଦେଇଥିଲା । ଏହି ସଂଗ୍ରାମ ଥିଲା ଖୁବ୍ କଠିନ । ବିପ୍ଳବପୂର୍ବ ରୁଷିଆର ଯୁଦ୍ଧ–ମିତ୍ରମାନେ–ବ୍ରିଟେନ୍, ଫ୍ରାନ୍ସ ଏବଂ ଆମେରିକା ଯୁକ୍ତ ରାଷ୍ଟ୍ର ସୋଭିଏତ୍ ଶାନ୍ତି ପ୍ରସ୍ତାବ ପ୍ରତି କୌଣସି ପ୍ରତିକ୍ରିୟା ଦେଖାଇ ନଥିଲେ । ସେମାନେ ଚାହୁଁଥିଲେ ସେମାନଙ୍କ ସାମ୍ରାଜ୍ୟବାଦୀ ଲକ୍ଷ୍ୟ ପୂରଣ ଦିଗରେ ଯୁଦ୍ଧର ବିଜୟୀ ଫଳାଫଳକୁ ଲଗାଇବା ପାଇଁ । ସେମାନେ ନିଶ୍ଚିତ ଥିଲେ, ଜର୍ମାନୀ ବିରୁଦ୍ଧରେ ରୁଷିଆର ଯୁଦ୍ଧ ଚାଲିଲେ, ସୋଭିଏତ୍ ଶାସନ ଧ୍ୱଂସ ପାଇଯିବ ।

ଆଞ୍ଚଳିକ ମିଶ୍ରଣ, କ୍ଷତିପୂରଣ ବିନା ଜର୍ମାନୀ ଶାନ୍ତି ସଂପର୍କରେ ଆଲୋଚନା

କରିବାକୁ ଅସ୍ୱୀକାର କଲ ଏବଂ ଲୁଣ୍ଠନମୂଳକ ସର୍ତ୍ତମାନ ପ୍ରସ୍ତାବ ଦେଲ ।

ଜର୍ମାନୀ ସହିତ ଶାନ୍ତି ଚୁକ୍ତି ସ୍ୱାକ୍ଷର ନେଇ କମ୍ୟୁନିଷ୍ଟ ପାର୍ଟି ମଧ୍ୟରେ ଆରମ୍ଭ ହୋଇଗଲ ତୀବ୍ର ସଂଗ୍ରାମ । ଏଲ୍.ଟ୍ରଟ୍‌ସ୍କି, ବୈଦେଶିକ ବିଭାଗର ମନ୍ତ୍ରୀ (୧୯୧୮, ମାର୍ଚ୍ଚ ୧୩ ପର୍ଯ୍ୟନ୍ତ) ଏକ ବିପଦପୂର୍ଣ୍ଣ ସ୍ଲୋଗାନ ପ୍ରଦାନ କରିଥିଲେ : "ଶାନ୍ତି ନୁହେଁ କି ଯୁଦ୍ଧ ନୁହେଁ, ସେନାବାହିନୀକୁ ପରିତ୍ୟାଗ କରିବାକୁ ହେବ ।" ସେ ଭାବୁଥିଲେ, ପୂର୍ବ ରଣାଙ୍ଗନରେ ଜର୍ମାନୀ କୌଣସି ବଡ଼ ଧରଣର ଆକ୍ରମଣ କରିବାକୁ ଅକ୍ଷମ ଏବଂ ଏହା ଆଗକୁ ମଧ୍ୟ ଆଗେଇ ପାରିବ ନାହିଁ । ଏନ୍.ବୁଖାରିନ୍‌ଙ୍କ ନେତୃତ୍ୱରେ ପାର୍ଟିର ନେତାମାନଙ୍କର ଏକ ବଡ଼ ଗୋଷ୍ଠୀ ଜର୍ମାନୀ ସହିତ ଶାନ୍ତି ଚୁକ୍ତି କରିବାର ବିରୋଧିତା କରୁଥିଲେ ଏବଂ ଏହା ବିରୁଦ୍ଧରେ ବିପ୍ଳବୀ ଯୁଦ୍ଧ ଚଳେଇଯିବାକୁ ଡାକ ଦେଲେ । ଏମାନେ ନିଜକୁ "ବାମପନ୍ଥୀ କମ୍ୟୁନିଷ୍ଟ" ବୋଲି କହୁଥିଲେ । ବାମପନ୍ଥୀ ସମାଜବାଦୀ-ବିପ୍ଳବୀମାନେ ମଧ୍ୟ ଅନୁରୂପ ଅବସ୍ଥାନ ଗ୍ରହଣ କରିଥିଲେ ।

ଚାରି ବର୍ଷ ବ୍ୟାପୀ ସାମ୍ରାଜ୍ୟବାଦୀ ଯୁଦ୍ଧ ଫଳରେ ଅବସନ୍ନ ହୋଇ ପଡ଼ିଥିବା ରୁଷିଆର ଶ୍ରମିକ ଏବଂ କୃଷକମାନେ ଯୁଦ୍ଧ ଚଳେଇଯିବାକୁ ଅକ୍ଷମ ଏବଂ ଅନିଚ୍ଛୁକ ଥିଲେ । ପୁରୁଣା ସେନାବାହିନୀ ଭାଙ୍ଗି ପଡ଼ୁଥିଲ ଏବଂ ନୂତନ ସେନାବାହିନୀ ରୂପ ପରିଗ୍ରହ କରୁଥିଲ । ଏଭଳି ଅବସ୍ଥାରେ ଯୁଦ୍ଧ ଚଳେଇଯିବାଟା ନିଶ୍ଚିତ ରୂପେ ଜର୍ମାନ୍ ସାମ୍ରାଜ୍ୟବାଦର ଆଘାତରେ ସୋଭିଏତ୍ ଶାସନର ଅବସାନ ଘଟାଇଥାନ୍ତା । ପ୍ରଥମ ଶ୍ରମିକ ଏବଂ କୃଷକ ରାଷ୍ଟ୍ର ଧ୍ୱଂସ ପାଇଥିଲେ, ଆନ୍ତର୍ଜାତିକ ଶ୍ରମିକ ଶ୍ରେଣୀ ଆନ୍ଦୋଳନ, ଦୁନିଆର ସମସ୍ତ ନିପୀଡ଼ିତ ଜନସାଧାରଣଙ୍କର ମୁକ୍ତି ସଂଗ୍ରାମ ଦାରୁଣ ଆଘାତ ପାଇଥାନ୍ତା ।

ଟ୍ରଟ୍‌ସ୍କି, "ବାମପନ୍ଥୀ କମ୍ୟୁନିଷ୍ଟ" ଏବଂ ବାମପନ୍ଥୀ ସମାଜବାଦୀ-ବିପ୍ଳବୀମାନଙ୍କର ଭୟଙ୍କର ଭ୍ରାନ୍ତ ଅବସ୍ଥାନକୁ ଲେନିନ୍ ପ୍ରଚଣ୍ଡ ଭାବେ ସମାଲୋଚନା କରିଥିଲେ ।

ସୋଭିଏତ୍ ସରକାର ଟ୍ରଟ୍‌ସ୍କିପନ୍ଥୀ, "ବାମପନ୍ଥୀ କମ୍ୟୁନିଷ୍ଟ" ଏବଂ ଜର୍ମାନୀ ସହିତ ଶାନ୍ତି ସ୍ଥାପନର ଅନ୍ୟାନ୍ୟ ବିରୋଧୀମାନଙ୍କ ବାଧାକୁ ଅତିକ୍ରମ କରି ଶାନ୍ତି ଚୁକ୍ତି ସ୍ୱାକ୍ଷର କରିବାକୁ ବଦ୍ଧପରିକର ହୋଇଥିଲ । ଶାନ୍ତି ଆଲୋଚନାରେ ରୁଷିଆର ମିତ୍ରମାନେ ଅଂଶଗ୍ରହଣ କରିବାକୁ ଦୃଢ଼ ଭାବେ ପ୍ରତ୍ୟାଖ୍ୟାନ କରି ଦେବା ଫଳରେ ସୋଭିଏତ୍ ରାଷ୍ଟ୍ରକୁ ଜର୍ମାନୀ ଏବଂ ତା'ର ମିତ୍ରମାନଙ୍କ ସହିତ ଶାନ୍ତି ଚୁକ୍ତି ସ୍ୱାକ୍ଷର କରିବାକୁ ପଡ଼ିଥିଲ ସ୍ୱାଧୀନ ଭାବେ । ଏହି ଚୁକ୍ତି ସ୍ୱାକ୍ଷରିତ ହୋଇଥିଲ ୧୯୧୮, ମାର୍ଚ୍ଚ ମାସ ୩ ତାରିଖରେ ବ୍ରେଷ୍ଟ-ଲିଟୋଭ୍‌ସ୍କ (ବର୍ତ୍ତମାନ ବ୍ରେଷ୍ଟ) ଠାରେ । ଏହି ଶାନ୍ତି ଚୁକ୍ତିଟି ଥିଲ ଅତ୍ୟନ୍ତ ଅସହନୀୟ । ଜର୍ମାନ୍ ସାମ୍ରାଜ୍ୟବାଦୀମାନଙ୍କ ଦ୍ୱାରା ପ୍ରଦତ୍ତ ସର୍ତ୍ତସମୂହ ଥିଲ ଅସାଧାରଣ ଭାବେ ଦୁର୍ବହ । ସୋଭିଏତ୍ ରୁଷିଆକୁ ବହୁ ଅଞ୍ଚଳ ହରେଇବାକୁ ପଡ଼ିଥିଲ ;

ତା'ର ନୌସେନା ତଥା ସ୍ଥଳସେନାକୁ ଫେରେଇ ଆଣିବାକୁ ପଡ଼ିଥିଲା ଏବଂ ବିପୁଳ ପରିମାଣର କ୍ଷତିପୂରଣ ଦେବାକୁ ପଡ଼ିଥିଲା, ଆଦି ।

ଶାନ୍ତି ଚୁକ୍ତିର ଏହି ଲୁଣ୍ଠନମୂଳକ ସର୍ତ୍ତ ସତ୍ତ୍ୱେ ଏଥିରେ ସ୍ୱାକ୍ଷର କରିବା ଥିଲା ସୋଭିଏତ୍ ସରକାର ପକ୍ଷରେ ଏକ ବୁଦ୍ଧିମାନ ଦୂରଦର୍ଶୀ ପଦକ୍ଷେପ । ଲେନିନ୍ କହିଥିଲେ : "ସେତେବେଳେ ଆମେ କୌଣସି ମୌଳିକ ସ୍ୱାର୍ଥକୁ ହରେଇ ନଥିଲୁ ; କେତେକ ଗୌଣ ସ୍ୱାର୍ଥକୁ ତ୍ୟାଗ କରି ମୌଳିକଟିକୁ ରକ୍ଷା କରିଥିଲୁ ।" ଏହା ଦ୍ୱାରା ସୋଭିଏତ୍ ଶାସନକୁ ଦୃଢ଼ କରିବା, ଲାଲ ଫୌଜ ତିଆରି କରିବା ଏବଂ ସମାଜବାଦୀ ନିର୍ମାଣ ଆରମ୍ଭ କରିବାକୁ ଦେଶ ଟିକେ ଫୁରୁସତ ପାଇଥିଲା । ରୁଷିଆ ରକ୍ଷା ପାଇ ଯାଇଥିଲା ଘନାୟମାନ ହୋଇ ଆସୁଥିବା ଜାତୀୟ ବିପର୍ଯ୍ୟୟ ଏବଂ ଅର୍ଥନୈତିକ ସର୍ବନାଶ ମଧ୍ୟରୁ । ଜର୍ମାନୀରେ ବିପ୍ଳବ ପରେ ୧୯୧୮, ନଭେମ୍ବର ମାସରେ ସୋଭିଏତ୍ ସରକାର ବ୍ରେସ୍ତ ଶାନ୍ତି ଚୁକ୍ତିକୁ ରଦ୍ କରି ଦେଲା ।

ରୁଷିଆର ଶ୍ରମିକ ଶ୍ରେଣୀର ପ୍ରଥମ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା, ବିଶ୍ୱଯୁଦ୍ଧକୁ ପରିତ୍ୟାଗ କରିବା, ଏହି ଭାବେ ପରିପୂରିତ ହୋଇଥିଲା ।

ରୁଷିଆର କୃଷକକୁଳ ଶହ ଶହ ବର୍ଷ ଧରି ଜମିର ସ୍ୱପ୍ନ ଦେଖି ଆସିଥିଲେ ଏବଂ ଉପରିଲିଖିତ ବର୍ଣ୍ଣନା ମୁତାବକ ବାରମ୍ବାର ଜମିଦାରମାନଙ୍କ ବିରୁଦ୍ଧରେ ଅଭ୍ୟୁତ୍‌ଥାନ ଓ ବିଦ୍ରୋହ କରି ଆସିଥିଲେ । ଜାର୍‌ତନ୍ତ୍ର ସେସବୁ ବିଦ୍ରୋହ ଆଉ ଅଭ୍ୟୁତ୍‌ଥାନକୁ ନିର୍ମମ ଭାବେ ଦମନ କରି ଆସିଥିଲା । ସମାଜବାଦୀ ବିପ୍ଳବ ଦ୍ୱାରା ପ୍ରତିଷ୍ଠିତ ସୋଭିଏତ୍ ଶାସନ କେବଳ ସେମାନଙ୍କୁ ଦେଇଥିଲା ଜମି, ଯେଉଁ ବିପ୍ଳବକୁ ଶ୍ରମିକ ଶ୍ରେଣୀ ଗରିବ କୃଷକମାନଙ୍କ ସହଯୋଗିତାରେ ଘଟାଇଥିଲା ।

ସୋଭିଏତ୍‌ସମୂହର ଦ୍ୱିତୀୟ ନିଖିଳ ରୁଷ୍ କଂଗ୍ରେସରେ ଗୃହୀତ "ଭୂମି ସଂକ୍ରାନ୍ତ" ବିଖ୍ୟାତ "ନିର୍ଦ୍ଦେଶନାମାଟି" ଜମିଦାର ତଥା ମଠମାନଙ୍କର ଜମିର ବାଜ୍ୟାପ୍ତୀକରଣକୁ ଏବଂ ସାଧାରଣ ଭାବେ ଜମିର ବ୍ୟକ୍ତିଗତ ମାଲିକାନାର ଉଚ୍ଛେଦ, ଅର୍ଥାତ୍ ଜାତୀୟକରଣକୁ ଆଇନସମ୍ମତ କରାଗଲା । ଜମିକୁ ସମଗ୍ର ଜନସାଧାରଣଙ୍କର, ରାଷ୍ଟ୍ରର ସଂପତ୍ତିରେ ପରିଣତ କରିଥିଲା । ୧୯୧୭ର ଶେଷ ଏବଂ ୧୯୧୮ର ପ୍ରାରମ୍ଭରେ, କୃଷକମାନଙ୍କର ସକ୍ରିୟ ଅଂଶଗ୍ରହଣ ଦ୍ୱାରା ସୋଭିଏତ୍ ଶାସନ ଦେଶ ସାରା, କେବଳ ଉପାନ୍ତ ଅଞ୍ଚଳକୁ ଛାଡ଼ି (ମଧ୍ୟ ଏସିଆ, କାଜାଖସ୍ତାନ ଏବଂ ଅନ୍ୟ କେତେକ ଅଞ୍ଚଳ) ଜମିଦାରମାନଙ୍କ ମାହାଲ ସମେତ ସେମାନଙ୍କ କୃଷି ଉପକରଣ ଏବଂ ଘୋଡ଼ା ଆଉ ବଳଦକୁ ବାଜ୍ୟାପ୍ତ କରି ଦେଲା । କେତେକ ଜମିଦାରଙ୍କ ମାହାଲକୁ ରାଷ୍ଟ୍ର ଖମାରରେ ପରିଣତ କରି ଦିଆଗଲା । ଯେଉଁସବୁ ମାହାଲରେ ରୁଷୀୟ ସଂସ୍କୃତିର ବିଖ୍ୟାତ ଲୋକେ ବାସ କରୁଥିଲେ ଏବଂ କାର୍ଯ୍ୟ କରୁଥିଲେ, ସେସବୁକୁ ମିଉଜିଅମ କରି ଦିଆଗଲା ।

ବିପ୍ଳବ ପୂର୍ବରୁ ଜମିଦାର, ବୁର୍ଜୁଆ, ମଠ ଏବଂ ଜାର୍ ପରିବାରଙ୍କ ମାଲିକାନାଧୀନରେ ଥିବା ୧୫ କୋଟି ହେକ୍ଟର ଜମିକୁ କୃଷକମାନେ ବିନା ମୂଲ୍ୟରେ ବ୍ୟବହାର କଲେ । ଭୂବ୍ୟାଙ୍କରୁ କୃଷକମାନେ ନେଇଥିବା ସମସ୍ତ ଋଣକୁ (୩୦୦ କୋଟି ରୁବଲ) ସୋଭିଏତ୍ ସରକାର ଛାଡ଼ କରି ଦେଲା । ଜମିଦାରମାନଙ୍କ କୃଷି ଉପକରଣସମୂହକୁ ଚାଷୀମାନେ ବିନା ମୂଲ୍ୟରେ ମଧ୍ୟ ଲାଭ କଲେ ।

କୃଷକମାନଙ୍କ ଦ୍ୱାରା ପ୍ରକଟିତ ଅଭିପ୍ରାୟ ଅନୁଯାୟୀ ପରିବାରର ଲୋକ ସଂଖ୍ୟା ବା କାର୍ଯ୍ୟକ୍ଷମ ଲୋକଙ୍କ ଅନୁସାରେ ଜମିକୁ ଭାଗ ଭାଗ କରି ଦିଆଗଲା । କୃଷକମାନଙ୍କ ଦାବି ଅନୁଯାୟୀ ଜମିକୁ ଲିଜ୍‌ରେ ଦେବା ବା ଭଡ଼ାଟିଆ କୃଷି ଶ୍ରମିକ ନିଯୁକ୍ତ କରିବା ନିଷିଦ୍ଧ କରାଗଲା ।

ଜମିଦାରମାନଙ୍କ ଜମିକୁ ଭାଗ ଭାଗ କରି ଦେଲା ବେଳେ କୁଲାକ୍ (ଧନୀ କୃଷକ) ଏବଂ ଗ୍ରାମର ଗରିବମାନଙ୍କ ମଧ୍ୟରେ ତୀବ୍ର ଲଢ଼େଇ ସୂତ୍ରପାତ ହୋଇଥିଲା । ଗରିବ କୃଷକମାନେ ଦାବି କରିଥିଲେ ବିପ୍ଳବ ପୂର୍ବ କୃଷକମାନଙ୍କ ଅଧୀନରେ ଥିବା ଜମି ସମେତ ସମସ୍ତ ଜମିକୁ ପରିବାରର ସକ୍ଷମ ଲୋକ ସଂଖ୍ୟା ଅନୁଯାୟୀ ବଣ୍ଟନ କରାଯାଉ । କୁଲାକ୍‌ମାନେ ସମସ୍ତ ଜମିକୁ ବିଭାଗ କରି ଦେବାର ଦୃଢ଼ ବିରୋଧିତା କରିଥିଲେ । କାରଣ ଗରିବ ଲୋକଙ୍କ ଜମି ଅପେକ୍ଷା ସେମାନଙ୍କ ଜମିର ପରିମାଣ ଅଧିକ ଏବଂ ତାହା ପୁନର୍ବିଭକ୍ତ ହୋଇଯିବ । ସେମାନେ ପ୍ରସ୍ତାବ ଦେଲେ କେବଳ ଜମିଦାରମାନଙ୍କ ଜମି ଭାଗ ଭାଗ ହେଉ ଏବଂ ପରିବାର ପିଛା ଘୋଡ଼ା ବଳଦର ସଂଖ୍ୟା ଅନୁଯାୟୀ ବଣ୍ଟନ କରାଯାଉ । ଗରିବ କୃଷକମାନଙ୍କ ଅପେକ୍ଷା ଧନୀ କୃଷକମାନଙ୍କର ପଶୁଙ୍କ ସଂଖ୍ୟା ଅଧିକ ଥିଲା ।

ଅଧିକାଂଶ ପ୍ରଦେଶରେ ସୋଭିଏତ୍ ଶାସନ ଗରିବ କୃଷକମାନଙ୍କ ସ୍ୱାର୍ଥରେ ଜମିକୁ ଭାଗ ଭାଗ କରି ଦେଇଥିଲା । କିନ୍ତୁ ଯେଉଁସବୁ ସ୍ଥାନରେ ଭୂମି ଏଜେନ୍‌ସିଗୁଡ଼ିକ ପେଟି-ବୁର୍ଜୁଆ ପାର୍ଟିମାନଙ୍କ ଦ୍ୱାରା (ସମାଜବାଦୀ-ବିପ୍ଳବୀମାନେ) ପରିଚାଳିତ ହେଉଥିଲା, ସେଠାରେ ଜମିଦାରମାନଙ୍କ ଠାରୁ କାଢ଼ି ଆଣିଥିବା ଜମିର ଅଧିକାଂଶ ଭାଗକୁ କୁଲାକ୍‌ମାନେ ଦଖଲ କରି ନେଇଥିଲେ । ଗରିବ ଚାଷୀମାନେ ସାହାଯ୍ୟ ପାଇଁ ଶ୍ରମିକମାନଙ୍କୁ ନିବେଦନ କଲେ । ସେମାନଙ୍କ ଦ୍ୱାରା ଲିଖିତ ଏକ ଚିଠିରେ କୁହାଯାଇଥିଲା : "ସାଥୀ ବଲ୍‌ଶେଭିକ୍‌ମାନେ, ଆପଣଙ୍କ କାର୍ଯ୍ୟସୂଚୀ ସଂପର୍କରେ ଜାଣିଥିବା ଶକ୍ତ ଲୋକଙ୍କୁ ପଠାନ୍ତୁ, ଯେଉଁମାନେ କି କୁଲାକ୍‌ମାନଙ୍କ ସହିତ ଲଢ଼େଇ କରିବାକୁ ସକ୍ଷମ ହେବେ । ଅବିଳମ୍ବେ ସେମାନଙ୍କୁ ପଠାଇ ଦିଅନ୍ତୁ, କାରଣ ଆମମାନଙ୍କୁ ନୂଆ ଜୀବନ ଆରମ୍ଭ କରିବାକୁ ହେବ, ଏପର୍ଯ୍ୟନ୍ତ ଆମର ପ୍ରାୟ ସମସ୍ତ ସଂଗଠନ ମଧ୍ୟରେ କୁଲାକ୍‌ମାନେ ରହି ଯାଇଛନ୍ତି ।"

ସହରର ଶ୍ରମିକମାନେ ସେମାନଙ୍କ ଅନୁରୋଧ ରକ୍ଷା କରିଥିଲେ । ଅନେକଗୁଡ଼ିଏ

ଶ୍ରମିକ ଦଳକୁ ଗ୍ରାମାଞ୍ଚଳକୁ ପଠାଯାଇଥିଲା ଗରିବ କୃଷକମାନଙ୍କୁ ସାହାଯ୍ୟ କରିବା ପାଇଁ, ନ୍ୟାୟପୂର୍ଣ୍ଣ ଭାବେ ଜମି ବଣ୍ଟନ କରିବା ପାଇଁ । ଗ୍ରାମର ଗରିବମାନଙ୍କୁ ସଂଗଠିତ ଏବଂ ଐକ୍ୟବଦ୍ଧ କରିବା ପାଇଁ ସୋଭିଏତ୍ ସରକାର ପକ୍ଷରୁ ପଦକ୍ଷେପମାନ ନିଆଯାଇଥିଲା : ନିଖିଳ ରୁଷ୍ କେନ୍ଦ୍ର କାର୍ଯ୍ୟକାରୀ କମିଟିର ଏକ ନିର୍ଦ୍ଦେଶନାମା ଅନୁସାରେ ଗରିବ ଏବଂ ମଧ୍ୟବିତ୍ତ କୃଷକମାନଙ୍କୁ ଅଧିକାର ପ୍ରଦାନ କରାଯାଇଥିଲା "ଗରିବ କୃଷକ କମିଟିମାନ" ଗଠନ କରିବା ପାଇଁ । "ଗରିବ କୃଷକ କମିଟି" ଏବଂ ଶ୍ରମିକଦଳଗୁଡ଼ିକର ମିଳିତ ଉଦ୍ୟମ ଫଳରେ କୁଲକ୍‌ମାନଙ୍କୁ ସଂଯତ କରାଯାଇଥିଲା ଏବଂ ଜମିଦାରମାନଙ୍କ ଠାରୁ ସେମାନେ ଯେଉଁସବୁ ଜମି ଆଉ କୃଷି ଉପକରଣ ଜବତ କରି ନେଇଥିଲେ, ସେମାନଙ୍କୁ କାଢ଼ି ନିଆଯାଇଥିଲା । ଜମିର ନ୍ୟାୟପୂର୍ଣ୍ଣ ବଣ୍ଟନ ଫଳରେ ବିପ୍ଲବପୂର୍ବରୁ କୁଲକ୍‌ମାନଙ୍କ ଅଧିକାରରେ ଥିବା ଜମିର ଅର୍ଦ୍ଧେକରୁ ଅଧିକ ଜମି (୩ କୋଟି ହେକ୍ଟରରୁ ଅଧିକ) ଏବଂ କୃଷି ଉପକରଣର ଏକାଂଶକୁ କାଢ଼ି ନିଆଯାଇଥିଲା । ସେସବୁକୁ ବଣ୍ଟନ କରାଯାଇଥିଲା ଗ୍ରାମର ଗରିବମାନଙ୍କୁ । ଏହା ଫଳରେ ଲକ୍ଷ ଲକ୍ଷ ଗରିବ କୃଷକ ଜମି, କୃଷି ଉପକରଣ ଏବଂ ଘୋଡ଼ା ପାଇଥିଲେ ଏବଂ ସେମାନଙ୍କ ଜୀବନାବସ୍ଥାର ଉନ୍ନତି ଘଟିଥିଲା । ସେମାନଙ୍କ ଆବଶ୍ୟକତା ପୂରଣ ପାଇଁ ସେମାନେ କେବଳ ସୁଯୋଗ ଲାଭ କରି ନଥିଲେ, ବଜାର ପାଇଁ ଉତ୍ପାଦନ କରିବାକୁ ସକ୍ଷମ ହୋଇଥିଲେ । ସେମାନେ ସେରେଦ୍‌ନ୍ୟାକ୍‌ରେ (ମଧ୍ୟବିତ୍ତ କୃଷକ) ପରିଣତ ହୋଇଥିଲେ ।

ସୋଭିଏତ୍ ସରକାର ଅବିଳମ୍ବେ ଶ୍ରମିକମାନଙ୍କର ସେହିସବୁ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଦାବିଗୁଡ଼ିକୁ ପୂରଣ କରିଥିଲା, ଯେଉଁଥି ପାଇଁ ସେମାନେ ବର୍ଷ ବର୍ଷ ଧରି ସଂଗ୍ରାମ କରି ଆସିଥିଲେ । ସୋଭିଏତ୍ ରାଷ୍ଟ୍ର ତା'ର ଜୀବନର ଚତୁର୍ଥ ଦିନ ୮ ଘଣ୍ଟିଆ କର୍ମଦିବସ ଏବଂ ୧୮ ବର୍ଷରୁ କମ୍ ବୟସର ଲୋକଙ୍କ ପାଇଁ ଛଅ ଘଣ୍ଟିଆ କର୍ମଦିବସ ଘୋଷଣା କରିଥିଲା । ୧୪ ବର୍ଷରୁ କମ୍ ବୟସର ପିଲାଙ୍କୁ ଶ୍ରମିକ ରୂପେ ନିୟୋଗକୁ ନିଷିଦ୍ଧ କରି ଦେଲା । ନାରୀ ପାଇଁ ଏବଂ ୧୬ ବର୍ଷରୁ କମ୍ ବୟସର ପିଲାମାନଙ୍କ ପାଇଁ ରାତିରେ କାର୍ଯ୍ୟ କରିବାକୁ ମଧ୍ୟ ନିଷିଦ୍ଧ କରି ଦିଆଗଲା ।

ବେକାରି ଏବଂ ରୋଗ ବିରୁଦ୍ଧରେ ସାମାଜିକ ବିମା ପାଇଁ ରାଷ୍ଟ୍ର ଏବଂ ଶିଳ୍ପପତିମାନେ ଅର୍ଥ ପ୍ରଦାନ କରିବା ନିମିତ୍ତ ୧୯୧୭, ଡିସେମ୍ବର ମାସରେ ନିର୍ଦ୍ଦେଶନାମାମାନ ଘୋଷିତ ହୋଇଥିଲା । ବେକାରି, ଅସୁସ୍ଥତା ଏବଂ ପିଲା ଜନ୍ମ କ୍ଷେତ୍ରରେ ଭତ୍ତାଦାନ ସମେତ ବିନା ଖର୍ଚ୍ଚରେ ସମସ୍ତ ପ୍ରକାରର ଡାକ୍ତରି ସାହାଯ୍ୟ ପ୍ରଦାନ କରିବା ନିମିତ୍ତ ନିର୍ଦ୍ଦେଶନାମାମାନ ଜାରି କରାଯାଇଥିଲା ।

ବେକାରମାନଙ୍କ ନାମ ରେଜିଷ୍ଟର କରିବା ନିମିତ୍ତ ଏବଂ ସେମାନଙ୍କୁ କର୍ମକ୍ଷେତ୍ରକୁ ପଠାଇବା ତଥା ସାହାଯ୍ୟ ପ୍ରଦାନ କରିବା ନିମିତ୍ତ ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକ ଅଧୀନରେ

କର୍ମସଂସ୍ଥାନ କମିଟିମାନ ପ୍ରତିଷ୍ଠା କରାଗଲା । ବେକାରମାନଙ୍କୁ ଯେଉଁସବୁ ସର୍ବସାଧାରଣ ନିର୍ମାଣ କ୍ଷେତ୍ରକୁ ପଠାଯାଉଥିଲା, ସେସବୁକୁ ସଂଗଠିତ କରିବା ନିମିତ୍ତ ସୋଭିଏତ୍ ସରକାର ପାଣ୍ଠି ଯୋଗାଇ ଦେଉଥିଲା । ସୋଭିଏତ୍ ଶାସନ ପ୍ରତିଷ୍ଠାର ତୃତୀୟ ଦିନ ଏକ "ଗୃହ ସଂକ୍ରାନ୍ତ ଋଣ ପରିଶୋଧର ସାମୟିକ ବିରତି" ଘୋଷଣା କରାଯାଇଥିଲା : ସ୍ୱଳ୍ପ ବେତନ ଭୋଗୀ ଶ୍ରମିକ ତଥା ସୈନିକମାନେ ଯୁଦ୍ଧ କାଳ ପାଇଁ ଘରଭଡ଼ା ଦେବାରୁ ବଞ୍ଚିତ ହୋଇଥିଲେ । ବ୍ୟକ୍ତିଗତ ଗୃହ ମାଲିକମାନଙ୍କ ପକ୍ଷରୁ ଭଡ଼ା ବୃଦ୍ଧି କରିବା ନିଷିଦ୍ଧ କରି ଦିଆଯାଇଥିଲା । ବୁର୍ଜୁଆମାନଙ୍କ ଅଧୀନରେ ଥିବା ବଡ଼ ବଡ଼ କୋଠା ଏବଂ ଅଟ୍ଟାଳିକାଗୁଡ଼ିକୁ ସୋଭିଏତ୍ ସରକାର ଜାତୀୟକରଣ କରି ନେଇ ବସ୍ତିମାନଙ୍କରେ ରହୁଥିବା ଶ୍ରମିକ ପରିବାରଗୁଡ଼ିକୁ ସେସବୁଥିରେ ରହିବାକୁ ପ୍ରଦାନ କଲା । ସୋଭିଏତ୍ ସରକାର ଲାଭଖୋର ବ୍ୟବସାୟୀମାନଙ୍କ ବିରୁଦ୍ଧରେ ନିର୍ମମ ଭାବେ ଲଢ଼େଇ କରିଥିଲା, ଯେଉଁମାନେ ବଜାରରେ ଅଭାବ ଥିବା ଖାଦ୍ୟ ଦ୍ରବ୍ୟ ଓ ଉତ୍ପନ୍ନ ଜିନିଷପତ୍ରକୁ କିଣି ନେଉଥିଲେ, ଅଧିକ ଦାମ୍‌ରେ ବିକ୍ରି କରୁଥିଲେ ।

୧୯୧୭, ନଭେମ୍ବର ୧୫ (୨)ରେ ପ୍ରକାଶିତ "ରୁଷିଆର ଜାତିମାନଙ୍କର ଅଧିକାର ସଂକ୍ରାନ୍ତ ଘୋଷଣାନାମାଟି" ଫଳରେ ଜାତିଜାତି ମଧ୍ୟରେ ବୈଷମ୍ୟମୂଳକ ଅପମାନଜନକ ବ୍ୟବସ୍ଥାର ଅବସାନ ଘଟି "ରୁଷିଆର ବିଭିନ୍ନ ଜାତିମାନଙ୍କର ସ୍ୱେଚ୍ଛାକୃତ ତଥା ସମ୍ମାନଜନକ ସଂଘ" ଗଠିତ ହୋଇଥିଲା । ଏହି ଘୋଷଣାନାମାଟିରେ ପ୍ରକାଶ ପାଇଥିଲା ସୋଭିଏତ୍ ଶାସନର ଜାତି ସଂକ୍ରାନ୍ତ ନୀତିର ମୌଳିକ ନୀତିସମୂହ ; ବିଚ୍ଛିନ୍ନ ହୋଇଯିବାର ଅଧିକାର ଓ ସ୍ୱାଧୀନ ରାଷ୍ଟ୍ର ଗଠନ ସମେତ ଅବାଧ ଆତ୍ମନିୟନ୍ତ୍ରଣର ଅଧିକାର ; ସମସ୍ତ ପ୍ରକାର ଜାତିଗତ ତଥା ଜାତିଗତ ଧର୍ମୀୟ ବିଶେଷ ଅଧିକାର ଏବଂ ସୀମାବଦ୍ଧତାର ଉଚ୍ଛେଦ ; ଏବଂ ଜାତୀୟ ସଂଖ୍ୟାଲଘୁ ଏବଂ ନରଗୋଷ୍ଠୀଗୁଡ଼ିକର ଅବାଧ ବିକାଶ ।

ଏହି ଘୋଷଣାନାମା ଅନୁଯାୟୀ, ସୋଭିଏତ୍ ସରକାର ୟୁକ୍ରାଇନା, ଫିନ୍‌ଲଣ୍ଡର ସ୍ୱାଧୀନତା ଏବଂ ତୁର୍କୀୟ ଆର୍ମେନିଆ ପାଇଁ ମୁକ୍ତ ଆତ୍ମନିୟନ୍ତ୍ରଣ ଅଧିକାରକୁ ସ୍ୱୀକାର କରି ନେଇଥିଲା । ତୁର୍କୀ, ଇରାନ୍, ଚୀନ୍ ଏବଂ ଅନ୍ୟାନ୍ୟ ଦେଶ ସହିତ ଜାର୍ ସରକାର ଦ୍ୱାରା ସଂପାଦିତ ଚୁକ୍ତିସମୂହକୁ ଏହା ବାତିଲ କରିଦେଲା ।

୧୯୧୭, ଡିସେମ୍ବର ୩ ତାରିଖ (ନଭେମ୍ବର ୨୦ ତାରିଖ) ଦିନ ସୋଭିଏତ୍ ସରକାର ଦ୍ୱାରା ଗୃହୀତ "ରୁଷିଆ ତଥା ପ୍ରାଚ୍ୟର ସମସ୍ତ ମୁସଲମାନଙ୍କ ପ୍ରତି" ବାଣୀରେ କୁହାଯାଇଥିଲା, "ଏହା ପରେ ଆପଣମାନଙ୍କର ଧର୍ମ ବିଶ୍ୱାସ ଏବଂ ଆସ୍ଥାର ଆଚରଣ, ଆପଣମାନଙ୍କର ଜାତୀୟ ଏବଂ ସାଂସ୍କୃତିକ ପ୍ରତିଷ୍ଠାନସମୂହକୁ ସ୍ୱାଧୀନ ଏବଂ ଅଲଙ୍ଘନୀୟ ବୋଲି ଘୋଷଣା କରାଗଲା... । ରୁଷିଆର ଅନ୍ୟାନ୍ୟ ଜାତିମାନଙ୍କ ପରି ଆପଣମାନଙ୍କର ଅଧିକାରସମୂହକୁ ବିପ୍ଳବର ଏବଂ ତା'ର ସଂସ୍ଥାସମୂହ, ଶ୍ରମିକ, ସୈନିକ ଏବଂ

କୃଷକମାନଙ୍କ ପ୍ରତିନିଧିମାନଙ୍କ ସୋଭିଏତ୍‌ଗୁଡ଼ିକର ସମସ୍ତ ଶକ୍ତି ଦେଇ ସୁରକ୍ଷିତ କରାଯିବ । ତେଣୁ ଏହି ବିପ୍ଳବ ଏବଂ ତା'ର ଅଖଣ୍ଡ କ୍ଷମତାପ୍ରାପ୍ତ ସରକାରକୁ ସମର୍ଥନ କରନ୍ତୁ ।" ଏହି ଆହ୍ୱାନ ଫଳରେ ବିପ୍ଳବର ପକ୍ଷକୁ ନିୟୁତ ନିୟୁତ ଶ୍ରମଜୀବୀ ମୁସଲମାନମାନଙ୍କୁ ଟାଣି ଆଣି ହୋଇଥିଲା ।

ସ୍ୱଳ୍ପ କାଳ ମଧ୍ୟରେ ବିପ୍ଳବ ପୂର୍ବରୁ ରୁଷିଆରେ ନାଗରିକମାନଙ୍କ ମଧ୍ୟରେ ଥିବା ବିଭିନ୍ନ ମାହାଲଗତ ବିଭାଗକୁ (ସମ୍ଭ୍ରାନ୍ତ, ବଣିକ, ସହରବାସୀ, କୃଷକ ଏବଂ ଅନ୍ୟାନ୍ୟ), ମାହାଲଗତ ବିଶେଷ ସୁଯୋଗ ସୁବିଧା ଏବଂ ସୀମାବଦ୍ଧତାକୁ, ମାହାଲଗତ ସଂଗଠନ ଓ ପ୍ରତିଷ୍ଠାନସମୂହ ଏବଂ ସମସ୍ତ ପଦବି (ଯଥା, ରାଜା ଏବଂ ସାମନ୍ତ ଆଦି) ଏବଂ ବେସାମରିକ କର୍ମଚାରୀ ଗୋଷ୍ଠୀଗୁଡ଼ିକୁ (ଯଥା, ରାଷ୍ଟ୍ରୀୟ ଗୋପନତା, ଆଦି ପରାମର୍ଶଦାତାସମୂହ) ଉଚ୍ଛେଦ କରି ଦିଆଗଲା । ରୁଷିଆର ସମସ୍ତ ଅଧିବାସୀମାନଙ୍କୁ ଗୋଟିଏ ନାମରେ ନାମିତ କରାଗଲା ଏବଂ ସେ ହେଲା, ରୁଷ୍ ପ୍ରଜାତନ୍ତ୍ରର ନାଗରିକବୃନ୍ଦ । ଏ ସଂପର୍କରେ ଲେନିନ୍ ଲେଖିଥିଲେ : "ସେଇ ପୁରୁଣା ଅଟ୍ଟାଳିକାର, ସେ ସାମାଜିକ ମାହାଲ ବ୍ୟବସ୍ଥାର ଖଣ୍ଡେ ପଥର କିମ୍ବା ଗୋଟିଏ ହେଲେ ଇଟାକୁ ଆମେ ରଖି ନୁ (ଏପରିକି ବ୍ରିଟେନ୍, ଫ୍ରାନ୍ସ ଏବଂ ଜର୍ମାନୀ ଭଳି ଅତି ଅଗ୍ରଗାମୀ ଦେଶମାନଙ୍କରେ ଏପର୍ଯ୍ୟନ୍ତ ସେ ବ୍ୟବସ୍ଥାର ଅବଶେଷାଂଶ ସଂପୂର୍ଣ୍ଣ ରୂପେ ଲୋପ ପାଇ ଯାଇନି !) । କାରଣ ମାହାଲ ବ୍ୟବସ୍ଥା ହେଉଛି ଶାସକ ଶ୍ରେଣୀମାନଙ୍କର ବିଶେଷ ସୁବିଧାସମୂହର ପରିପ୍ରକାଶ ଏବଂ ବାସ୍ତବରେ ନିପୀଡ଼ିତ ଲୋକମାନଙ୍କର ଏଥିରେ କୌଣସି ଅଧିକାର ନଥାଏ ।

ବିପ୍ଳବ ପୂର୍ବ ରୁଷିଆରେ ଶୋଷିତ ଶ୍ରେଣୀମାନଙ୍କୁ ବଶୀଭୂତ କରି ରଖିବାର ଏକ ଶକ୍ତିଶାଳୀ ହତିଆର ଥିଲା ଧର୍ମୀୟ ସଂଗଠନ, ବିଶେଷ କରି, ରକ୍ଷଣଶୀଳ ଗିର୍ଜା ।

ରକ୍ଷଣଶୀଳ ଗିର୍ଜା ଥିଲା ରାଷ୍ଟ୍ରୀୟ ଅମଲାତାନ୍ତ୍ରିକ ବ୍ୟବସ୍ଥାର ଏକ ଅଂଶ । ଧର୍ମ ବିଶ୍ୱାସୀମାନଙ୍କୁ ଗିର୍ଜା କହୁଥିଲା, ଜାର୍‌ତନ୍ତ୍ରର ସ୍ରଷ୍ଟା ହେଉଛନ୍ତି ଈଶ୍ୱର ଏବଂ ତା'ର ଅଧୀନତା ସ୍ୱୀକାର ନକରିବା ଅର୍ଥ ଭଗବାନଙ୍କ ବିରୁଦ୍ଧରେ ଅପରାଧ କରିବା । ଗିର୍ଜା ତରଫରୁ ପ୍ରଚାର କରାଯାଉଥିଲା, ବ୍ୟକ୍ତିଗତ ସଂପତ୍ତି ହେଉଛି ପବିତ୍ର, ଦରିଦ୍ରତା ଭଗବାନଙ୍କ ସୃଷ୍ଟି ଏବଂ "ଶାନ୍ତିମୟ ସ୍ୱର୍ଗ ଲାଭ ପାଇଁ ଏ ପାର୍ଥିବ ନର୍କ" ଭୋଗ କରିବାକୁ ସେମାନେ ପରାମର୍ଶ ଦେଉଥିଲେ ।

ଏହାର ପରିବର୍ତ୍ତେ ଜାର୍‌ସାହୀ ସରକାର ରକ୍ଷଣଶୀଳ ଗିର୍ଜାକୁ ସବୁମତେ ସାହାଯ୍ୟ କରୁଥିଲା ଏବଂ ସରକାରୀ ଭାବେ ଏହାକୁ ପ୍ରଧାନ ଗିର୍ଜା ରୂପେ ସ୍ୱୀକୃତି ଦେଉଥିଲା । ରକ୍ଷଣଶୀଳ ଚର୍ଚ୍ଚ ବିରୁଦ୍ଧରେ ଯେକୌଣସି କାର୍ଯ୍ୟକୁ ଜଘନ୍ୟ ଅପରାଧ ବୋଲି ବିଚାର

କରାଯାଉଥିଲା । ରକ୍ଷଣଶୀଳ ଗିର୍ଜାର ଧର୍ମମତକୁ ଯେଉଁମାନେ ଅସ୍ୱୀକାର କରୁଥିଲେ, କର୍ତ୍ତୃପକ୍ଷଙ୍କ ତରଫରୁ ଅପରାଧମୂଳକ କାର୍ଯ୍ୟ ବୋଲି ବିଗ୍ରର କରି ଦଣ୍ଡବିଧାନ କରାଯିବା ସଙ୍ଗେ ସଙ୍ଗେ ଏହି ଗିର୍ଜାର ଧର୍ମୀୟ ଆଚରଣକୁ ପାଳନ କରିବା ପାଇଁ ଦାବି କରାଯାଉଥିଲା । ରାଷ୍ଟ୍ର ତରଫରୁ ବିପୁଳ ପରିମାଣର ପାଣ୍ଠି ପ୍ରଦାନ କରାଯାଉଥିଲା ରକ୍ଷଣଶୀଳ ଗିର୍ଜାକୁ ଏବଂ ଏହି ଗିର୍ଜାର ଅଧୀନରେ ବିଶାଳ ଭୂଖଣ୍ଡ ତଥା ଶିଳ୍ପକାରଖାନାମାନ ରହିଥିଲା ଏବଂ ସେସବୁଥିରୁ ପ୍ରଚୁର ଲାଭ ମଧ୍ୟ ମିଳୁଥିଲା ।

ଦେଶର ଜନସାଧାରଣଙ୍କ ମତାଦର୍ଶଗତ ଶିକ୍ଷାକୁ ନିୟନ୍ତ୍ରଣ କରୁଥିଲେ ଗିର୍ଜା ଏବଂ ଯାଜକ ସଂପ୍ରଦାୟ । ସମସ୍ତ ସ୍କୁଲରେ ଧର୍ମ ଶିକ୍ଷା ଥିଲା ବାଧ୍ୟତାମୂଳକ । ଏହି ଧର୍ମ ଶିକ୍ଷାର ପାଠ୍ୟକ୍ରମରେ ଥିଲା ଅଣବୈଜ୍ଞାନିକ, ପ୍ରତିକ୍ରିୟାଶୀଳ ଗିର୍ଜାର ପ୍ରମାଣଶୂନ୍ୟ ବ୍ୟାଖ୍ୟାବଳୀ ଏବଂ ଏହା ଶୋଷଣଯୁକ୍ତ ବ୍ୟବସ୍ଥା ପ୍ରତି ଆନୁଗତ୍ୟ ଏବଂ ଅପ୍ରତିବାଦ ସୃଷ୍ଟି କରୁଥିଲା ଏବଂ ଅନ୍ୟ ଧର୍ମାବଲମ୍ବୀ ଲୋକଙ୍କ ପ୍ରତି ଉତ୍କଟ ଉଗ୍ରଜାତୀୟତାବାଦୀ ମନୋଭାବ ତଥା ଘୃଣା ଜାତ କରାଉଥିଲେ ।

ରୁଷିଆର ପ୍ରଗତିଶୀଳ ଲୋକେ ବିପ୍ଳବର ବହୁ ପୂର୍ବରୁ ରାଷ୍ଟ୍ରଠାରୁ ଗିର୍ଜାକୁ ଏବଂ ଗିର୍ଜାଠାରୁ ସ୍କୁଲକୁ ଅଲଗା କରିବା ପାଇଁ ଦାବି କରି ଆସିଥିଲେ । ସୋଭିଏତ୍ ସରକାର ସେମାନଙ୍କ ଦାବିକୁ ପୂରଣ କରିଥିଲା । ଜନସାଧାରଣଙ୍କ ସ୍ୱାର୍ଥ ଦୃଷ୍ଟିରୁ ୧୯୧୮, ଜାନୁଆରୀ ୨୦ ତାରିଖରେ ସୋଭିଏତ୍ ସରକାର ତରଫରୁ ଏକ ନିର୍ଦ୍ଦେଶନାମା ଜାରି କରି ରାଷ୍ଟ୍ର ଠାରୁ ଗିର୍ଜାକୁ ଅଲଗା କରି ଦିଆଗଲା । ବିବେକର ସ୍ୱାଧୀନତା ଘୋଷଣା କରାଗଲା : ପ୍ରତ୍ୟେକ ନାଗରିକ ଅବାଧରେ ଯେକୌଣସି ଧର୍ମ ଗ୍ରହଣ କରି ପାରେ ବା କୌଣସି ଧର୍ମ ଗ୍ରହଣ ବି କରି ନପାରେ । ସମସ୍ତ ପ୍ରକାରର ଧର୍ମୀୟ ବିଶେଷ ସୁବିଧା ସୁଯୋଗ ବା ସୀମାବଦ୍ଧତାକୁ ଲୋପ କରି ଦିଆଗଲା । କୌଣସି ସରକାରୀ ଦଲିଲରେ କୌଣସି ନାଗରିକର ଧର୍ମ କଥା ଉଲ୍ଲେଖ କରାଗଲା ନାହିଁ । ଧର୍ମୀୟ ଶପଥ ଗ୍ରହଣକୁ ମଧ୍ୟ ଉଠାଇ ଦିଆଗଲା । ରାଷ୍ଟ୍ର ତଥା ସର୍ବସାଧାରଣ ପ୍ରତିଷ୍ଠାନମାନଙ୍କର କ୍ରିୟାକଳାପ ସହିତ ଆଉ କୌଣସି ଧର୍ମୀୟ ପୂଜାପାଠ ବା ଉତ୍ସବ ଅନୁଷ୍ଠିତ କରାଗଲା ନାହିଁ । କୌଣସି ଧର୍ମୀୟ ଅନୁଷ୍ଠାନ ସାଧାରଣ ନିୟମ ଶୃଙ୍ଖଳାରେ କ୍ଷତି ନଘଟାଇଲେ ଏବଂ ଅନ୍ୟାନ୍ୟ ନାଗରିକମାନଙ୍କ ଅଧିକାରସମୂହରେ ହସ୍ତକ୍ଷେପ ନକରୁଥିଲେ ଏବଂ ସୋଭିଏତ୍ ପ୍ରଜାତନ୍ତ୍ର ପ୍ରତି ବିପଦ ସୃଷ୍ଟି କରୁ ନଥିଲେ, ରାଷ୍ଟ୍ର ତରଫରୁ ସେସବୁର ଆଚରଣ ପାଇଁ ଗ୍ୟାରେଣ୍ଟି ପ୍ରଦାନ କରାଯାଉଥିଲା । ଜନ୍ମ, ବିବାହ, ବିବାହବିଚ୍ଛେଦ ଏବଂ ମୃତ୍ୟୁ ଆଦିକୁ ଏବେ କେବଳ ବେସାମରିକ କ୍ଷମତା, ସୋଭିଏତ୍‌ମାନଙ୍କ ଦ୍ୱାରା ଲିପିବଦ୍ଧ କରାଗଲା ।

ଗିର୍ଜାଠାରୁ ସ୍କୁଲକୁ ଏହି ନିର୍ଦ୍ଦେଶନାମା ବିଚ୍ଛିନ୍ନ ବୋଲି ଘୋଷଣା କରି ଦେଲା । ସମସ୍ତ ରାଷ୍ଟ୍ରୀୟ, ସର୍ବସାଧାରଣ ଏବଂ ବ୍ୟକ୍ତିଗତ ଶିକ୍ଷାନୁଷ୍ଠାନମାନଙ୍କରେ ଧର୍ମଶିକ୍ଷା ନିଷିଦ୍ଧ

କରାଗଲା । ତେବେ, ପିତାମାତାମାନେ ସେମାନଙ୍କ ପିଲାମାନଙ୍କୁ ଘରେ ବ୍ୟକ୍ତିଗତ ଭାବେ ଧର୍ମଶିକ୍ଷା ଦେବାକୁ ଏହି ନିର୍ଦ୍ଦେଶନାମା ଅନୁଯାୟୀ ଅନୁମତି ଦିଆଯାଇଥିଲା ।

ସମସ୍ତ ଗିର୍ଜା ଏବଂ ଧର୍ମୀୟ ସମିତି ଏବେ ବ୍ୟକ୍ତିଗତ ସମିତି ଏବଂ ୟୁନିଅନ୍‌ସମୂହର ସାଧାରଣ ନିୟମାବଳୀର ଅଧୀନକୁ ଆସିଲେ । ରାଷ୍ଟ୍ର ତଥା ସ୍ଥାନୀୟ ସରକାରୀ ସଂସ୍ଥାସମୂହର ବିଶେଷ ସୁବିଧା ଏବଂ ସାହାଯ୍ୟରୁ ସେଗୁଡ଼ିକ ବଞ୍ଚିତ ହେଲେ । ଗିର୍ଜାର ବିଗ୍ରହଦାନ କରିବାର ଅଧିକାରଟି କାଢ଼ି ନିଆଗଲା ଏବଂ ତା'ର ଅନୁକୂଳରେ କୌଣସି ବାଧ୍ୟତାମୂଳକ ଚାନ୍ଦା ଆଦାୟ, ଦଣ୍ଡବିଧାନ ବା ବଳ ପ୍ରୟୋଗ କରିବାର ଅଧିକାର ରହିଲା ନାହିଁ । ଧର୍ମୀୟ 'ତଥା ଗିର୍ଜା ସମିତିମାନଙ୍କର ସମସ୍ତ ସଂପତ୍ତିକୁ ଜନସାଧାରଣଙ୍କ ସଂପତ୍ତି ବୋଲି ଘୋଷଣା କରାଗଲା । ଏଥି ସାଥେ ସାଥେ ଧର୍ମାଚରଣ ପାଇଁ ବିଶେଷ ଭାବେ ଉଦ୍ଦିଷ୍ଟ ଅଟ୍ଟାଳିକା ଏବଂ ଅନ୍ୟାନ୍ୟ ଜିନିଷକୁ ସଂପୃକ୍ତ ଧର୍ମୀୟ ସମିତିଗୁଡ଼ିକ ହାତରେ ପ୍ରଦାନ କରି ଦିଆଗଲା ବିନା ବ୍ୟୟରେ ବ୍ୟବହାର କରିବା ନିମିତ୍ତ ।

ପୁରାତନ ରୁଷିଆର ଜୀବନରେ ସବୁଠାରୁ ଘୃଣାଜନକ ପ୍ରପଞ୍ଚ ଥିଲା ନାରୀମାନଙ୍କର ଅପମାନଜନକ ଅବସ୍ଥା ଏବଂ ସେମାନଙ୍କର ରାଜନୈତିକ ଅଧିକାରହୀନତା । ପୁରୁଷ ଶ୍ରମିକମାନଙ୍କ ଅପେକ୍ଷା ନାରୀ ଶ୍ରମିକମାନେ ଅନେକ କମ୍ ବେତନ ପାଉଥିଲେ । ନାରୀମାନଙ୍କର ଉଚ୍ଚ ଶିକ୍ଷା ଲାଭର ଅଧିକାର ନଥିଲା ।

ସୋଭିଏତ୍ ରାଷ୍ଟ୍ର ନାରୀ ସମାଜକୁ ମୁକ୍ତ କରି ଦେଇ ରାଷ୍ଟ୍ରୀୟ ସର୍ବସାଧାରଣ, ଅର୍ଥନୈତିକ ଏବଂ ସାଂସ୍କୃତିକ ଜୀବନର ସମସ୍ତ କ୍ଷେତ୍ରରେ ସମାନ ଅଧିକାର ପ୍ରଦାନ କରିଥିଲା । ସମସ୍ତ ପ୍ରକାରର କ୍ରିୟାକଳାପ ଏବଂ ଶିକ୍ଷାର ସମସ୍ତ ସ୍ତରକୁ ପ୍ରବେଶ କରିବାର ଅଧିକାର ନାରୀମାନେ ଲାଭ କଲେ । ନାରୀ ପୁରୁଷ ନିର୍ବିଶେଷରେ "ସମାନ କାର୍ଯ୍ୟ ପାଇଁ ସମସ୍ତଙ୍କୁ ସମାନ ବେତନ" ପ୍ରଦାନର ନୀତି ଅନୁସରଣ କରାଗଲା । ସର୍ବସାଧାରଣ ତଥା ରାଜନୈତିକ ଜୀବନରେ ଶ୍ରମିକ ତଥା କୃଷକ ମହିଳାମାନଙ୍କୁ ସଂପୃକ୍ତ କରିବା ଉପରେ ଅଧିକ ଗୁରୁତ୍ୱ ଦେଲା ସୋଭିଏତ୍ ଶାସନ । ସୋଭିଏତ୍‌ସମୂହକୁ ଅନ୍ୟକୁ ନିର୍ବାଚନ କରିବା ଏବଂ ନିଜେ ନିର୍ବାଚିତ ହେବାର ଅଧିକାର ସମେତ, ପୁରୁଷ ସହିତ ସମାନ ଅଧିକାର ଲାଭ କଲେ ନାରୀମାନେ ।

ନାରୀ ଏବଂ ଶିଶୁମାନଙ୍କ ସ୍ୱାର୍ଥ ଦୃଷ୍ଟିରୁ ସମସ୍ତ ବୈଧ ତଥା ଅବୈଧ ସନ୍ତାନମାନଙ୍କୁ ସୋଭିଏତ୍ ରାଷ୍ଟ୍ର ସମାନ ଅଧିକାର ପ୍ରଦାନ କରିଥିଲା । ଶ୍ରମରତ ନାରୀମାନଙ୍କ ଅବସ୍ଥାକୁ ସହଜତର କରିବା ନିମିତ୍ତ ସୋଭିଏତ୍ ରାଷ୍ଟ୍ର ତରଫରୁ ଶିଶୁ ଲାଳନାଗାର ଏବଂ କିଣ୍ଡରଗାର୍ଟେନ ଆଦି ନିର୍ମିତ ହେବାକୁ ଲାଗିଲା । ଲେନିନ୍ କହିଥିଲେ, "...ସୋଭିଏତ୍ ଶାସନ ତା'ର ଅସ୍ତିତ୍ୱର ପ୍ରଥମ ମାସଗୁଡ଼ିକରେ ନାରୀମାନଙ୍କ ପାଇଁ ଯାହା କରି ପାରିଛି, ତା'ର ଅର୍ଦ୍ଧେକ ଅନ୍ୟ କୌଣସି ରାଷ୍ଟ୍ର ବା ଅନ୍ୟ କୌଣସି ଗଣତାନ୍ତ୍ରିକ ଆଇନ୍ କରି ପାରି ନାହିଁ ।"

ସୋଭିଏତ୍ ରାଷ୍ଟ୍ରର ମୁଖ୍ୟ କର୍ତ୍ତବ୍ୟ ହେଲା ଏକ ସର୍ବସାଧାରଣ, ସମାଜବାଦୀ ଅର୍ଥନୀତି ରଚନା କରିବା : ଉତ୍ପାଦନର ଉପାୟ ଉପକରଣ ଉପରେ ବୁର୍ଜୁଆ ମାଲିକାନା ଜାଗାରେ ସର୍ବସାଧାରଣ, ରାଷ୍ଟ୍ରୀୟ ମାଲିକାନା ପ୍ରତିଷ୍ଠା କରିବା । ଏହି ସମସ୍ୟାର ସମାଧାନ ସଙ୍ଗେ ସଙ୍ଗେ ମଣିଷ ଦ୍ୱାରା ମଣିଷର ଶୋଷଣ ଲୋପ ପାଇଲା ।

ସୋଭିଏତ୍ ଶାସନ ରାଷ୍ଟ୍ରୀୟ ବ୍ୟାଙ୍କ୍‌କୁ ନିଜ ହାତକୁ ନେଇ ନେଲା । ଅବିଳମ୍ବେ ଅନ୍ୟାନ୍ୟ ବ୍ୟକ୍ତିଗତ ବ୍ୟାଙ୍କ୍‌ସବୁକୁ ଜାତୀୟକରଣ କରି ରାଷ୍ଟ୍ର ବ୍ୟାଙ୍କ୍ ସହିତ ମିଶାଇ ଦେଇ ଏକ ଏକକ ଗଣ ବ୍ୟାଙ୍କ୍ ପ୍ରତିଷ୍ଠା କରାଗଲା । ବ୍ୟାଙ୍କ୍ କାରବାରକୁ ରାଷ୍ଟ୍ରର ଏକଚାଟିଆ ଅଧିକାର ବୋଲି ଘୋଷଣା କରାଗଲା ।

ଜାର୍‌ଶାହୀ ଏବଂ ବୁର୍ଜୁଆ ସରକାରମାନଙ୍କ ଦ୍ୱାରା ନିଆଯାଇଥିବା ସମସ୍ତ ବିଦେଶୀ ଏବଂ ଘରୋଇ ଋଣ—ପ୍ରାୟ ୪୧,୦୦ କୋଟି ରୁବଲକୁ ସୋଭିଏତ୍ ସରକାର ବାତିଲ କରି ଦେଲା । ଏହା ଥିଲା ରୁଷୀୟ ତଥା ଆନ୍ତର୍ଜାତିକ ପୁଞ୍ଜି ପକ୍ଷରେ ଏକ ପ୍ରଚଣ୍ଡ ଆଘାତ । ଏହିସବୁ ଋଣର କଠୋର ସର୍ତ୍ତରାଜି ଫଳରେ ରୁଷିଆକୁ ପ୍ରତିବର୍ଷ ୪୦ କୋଟି ରୁବଲ କେବଳ ସୁଧ ଆକାରରେ ଦେବାକୁ ପଡ଼ୁଥିଲା । ଏବେ ସୋଭିଏତ୍ ରୁଷିଆ ସେ ଗୁରୁ ଭାରରୁ ମୁକ୍ତ ହେଲା । କିନ୍ତୁ ଏ ଦିଗରେ ସୋଭିଏତ୍ ସରକାର ଯେଉଁସବୁ ପଦକ୍ଷେପ ନେଲା, ତାହା ସେହିସବୁ ସ୍ୱଳ୍ପ ବେତନ ଭୋଗୀ ନାଗରିକମାନଙ୍କ ସ୍ୱାର୍ଥ ପ୍ରତି କ୍ଷତିକାରକ ହେଲା ନାହିଁ, ଯେଉଁମାନେ ରାଷ୍ଟ୍ର ଋଣ ବଣ୍ଡ୍ କିଣିଥିଲେ ।

ଶିଳ୍ପର ଜାତୀୟକରଣ ଦିଗରେ ପ୍ରଥମ ପଦକ୍ଷେପ ହେଲା ୧୯୧୭, ନଭେମ୍ବର ମାସରେ ଭଡ଼ାଟିଆ ଶ୍ରମିକ ଖଟାଉଥିବା ସମସ୍ତ କାରଖାନାରେ ଶ୍ରମିକମାନଙ୍କ ନିୟନ୍ତ୍ରଣ ପ୍ରତିଷ୍ଠା । ଏହି ନିୟନ୍ତ୍ରଣକୁ କାର୍ଯ୍ୟ କରିଥିଲେ ନିର୍ବାଚିତ ସଂସ୍ଥାସମୂହ—କାରଖାନା କମିଟିସମୂହ । ଏହିସବୁ କମିଟି ଲୋକ ଶକ୍ତିର ସଠିକ ଉପଯୋଗ, ସରକାରୀ ନିୟମର ସଠିକତା ଏବଂ ବାଞ୍ଛନୀୟତା, ଶିଳ୍ପୋଦ୍ୟୋଗର ଆର୍ଥିକ କ୍ରିୟାକଳାପ ଆଦିକୁ ତଦାରଖ କରୁଥିଲେ । ନାଶକତାମୂଳକ କ୍ରିୟାକଳାପକୁ ଦମନ କରିବା, ଶିଳ୍ପପତିମାନଙ୍କ ଦ୍ୱାରା ଅନୁପସ୍ଥିତ କାର୍ଯ୍ୟକୁ ପଣ୍ଡ କରିବା ସାଥେ ସାଥେ ଏହି ଶ୍ରମିକମାନଙ୍କ ନିୟନ୍ତ୍ରଣର ଲକ୍ଷ୍ୟ ଥିଲା ଉତ୍ପାଦନକୁ ପୁନଃସ୍ଥାପନ କରିବା, କାର୍ଯ୍ୟ କ୍ଷେତ୍ରରେ ଦୃଢ଼ ଶୃଙ୍ଖଳା ଏବଂ ଉଚ୍ଚତର ଉତ୍ପାଦନଶୀଳତା ଆଣିବା ।

ଅନେକ କାରଖାନା ମାଲିକ ଶ୍ରମିକମାନଙ୍କ ନିୟନ୍ତ୍ରଣକୁ ବିରୋଧ କରି ନାଶକତାମୂଳକ କ୍ରିୟାକଳାପ ଚଳାଇଥିଲେ । ତେଣୁ ଏହିସବୁ ନାଶକତାମୂଳକ କ୍ରିୟାକଳାପରେ ଲିପ୍ତ ଥିବା ଏହିସବୁ ଲୋକଙ୍କ ମାଲିକାନାଧୀନ ଥିବା ଶିଳ୍ପୋଦ୍ୟୋଗକୁ ସୋଭିଏତ୍ ରାଷ୍ଟ୍ର ଜାତୀୟକରଣ କରି ନେଇଥିଲା । ୧୯୧୭ର ଶେଷ ଭାଗ ଏବଂ ୧୯୧୮ର ପ୍ରାରମ୍ଭରେ ସେମାନଙ୍କର ଶହ ଶହ କଳକାରଖାନାକୁ ଜାତୀୟକରଣ

କରାଗଲା । ଲେନିନ୍‌ଙ୍କ ଭାଷାରେ ଏହା ହେଲା, "ପୁଞ୍ଜି ଉପରେ ଲାଲ ରକ୍ଷୀ ଆକ୍ରମଣ" ।

ବିପ୍ଳବ ପୂର୍ବରୁ ଦେଶର ରେଳପଥର ତିନି ଚତୁର୍ଥାଂଶ ଥିଲା ରାଷ୍ଟ୍ର ଅଧୀନରେ । ସୋଭିଏତ୍ ଶାସନ ପ୍ରତିଷ୍ଠା ପରେ ଏହିସବୁ ରେଳପଥ ସୋଭିଏତ୍ ରାଷ୍ଟ୍ରର ସଂପତ୍ତିରେ ପରିଣତ ହେଲା । ୧୯୧୮, ଜାନୁଆରୀ ମାସରେ ସୋଭିଏତ୍ ସରକାର ସମୁଦ୍ର ଏବଂ ନଦୀ ବାଣିଜ୍ୟ ଜାହାଜଗୁଡ଼ିକୁ ଜାତୀୟକରଣ କରି ନେଲେ । ୧୯୧୮, ଏପ୍ରିଲ ମାସରେ ବୈଦେଶିକ ବାଣିଜ୍ୟ ଉପରେ ରାଷ୍ଟ୍ରୀୟ ଏକଚ୍ଛଟିଆ ପ୍ରତିଷ୍ଠିତ ହେଲା : ଅନ୍ୟ ଦେଶ ସହିତ କୌଣସି ବ୍ୟକ୍ତିବିଶେଷଙ୍କୁ ବାଣିଜ୍ୟ କରିବାକୁ ଆଉ ଅନୁମତି ଦିଆଗଲା ନାହିଁ ।

ଏହିସବୁ ପଦକ୍ଷେପ ଫଳରେ ପୁଞ୍ଜିବାଦୀ ଅର୍ଥନୈତିକ ବ୍ୟବସ୍ଥା ବିଶେଷ ଭାବେ ଦୁର୍ବଳ ହୋଇ ପଡ଼ିଲା ଏବଂ ଅର୍ଥନୀତି କ୍ଷେତ୍ରରେ ଏକ ସମାଜବାଦୀ କ୍ଷେତ୍ର ମୁଣ୍ଡ ଟେକି ଉଠିଲା । ତେବେ ଦେଶରେ ଏହି ସମାଜବାଦୀ କ୍ଷେତ୍ର ଯେ କେବଳ ଏକମାତ୍ର କ୍ଷେତ୍ର ଥିଲା, ତା ନୁହେଁ, ଏବଂ ଏହାର ଆଧିପତ୍ୟ ମଧ୍ୟ ସେପରି ନଥିଲା । ଦେଶ ମଧ୍ୟରେ ବିଭିନ୍ନ ଧରଣର ଅର୍ଥନୀତି ରହିଥିଲା : ସମାଜବାଦୀ, ପୁଞ୍ଜିବାଦୀ ଏବଂ କୃଷକ ଓ କାରିଗରମାନଙ୍କ ଦ୍ୱାରା ପରିଚାଳିତ କ୍ଷୁଦ୍ର ଉତ୍ପାଦନ । ଶେଷୋକ୍ତ ଉତ୍ପାଦନ କ୍ଷେତ୍ରଟି ଥିଲା ବ୍ୟାପକ ଶକ୍ତିଶାଳୀ ।

ସୋଭିଏତ୍ ରାଷ୍ଟ୍ର ତା'ର ଅସ୍ତିତ୍ୱର ପ୍ରଥମ କେଇ ମାସ ମଧ୍ୟରେ ବ୍ୟକ୍ତିଗତ ପୁଞ୍ଜିବାଦୀ ଶିଳ୍ପୋଦ୍ୟୋଗମାନଙ୍କ ଉପରେ ବିଭିନ୍ନ ପ୍ରକାରର ରାଷ୍ଟ୍ରୀୟ ନିୟନ୍ତ୍ରଣ ଜାରି କରିଥିଲା । ଜିନିଷପତ୍ର ଉତ୍ପାଦନ ପାଇଁ ସେମାନଙ୍କୁ ବରାଦ ଦେଉଥିଲା ଏବଂ ଅଧିକାଂଶ ସମୟରେ ସେମାନଙ୍କୁ ଅଗ୍ରିମ ଦେଉଥିଲା ପୁଞ୍ଜିବାଦୀ ଉଦ୍ୟୋଗଗୁଡ଼ିକର କ୍ରିୟାକଳାପକୁ କିଛି ପରିମାଣରେ ନିୟନ୍ତ୍ରଣ କରିବା ନିମିତ୍ତ । ସେମାନେ ଜିନିଷପତ୍ର ହଟେଇ ଦେବା ପୂର୍ବରୁ ରାଷ୍ଟ୍ର ସେସବୁକୁ କିଣି ନେଉଥିଲା, ଯାଫଳରେ କେତେକ ନିୟନ୍ତ୍ରଣ ବ୍ୟବସ୍ଥାକୁ ଲାଗୁ କରାଯାଉଥିଲା । ରାଷ୍ଟ୍ର ପକ୍ଷରୁ ବ୍ୟକ୍ତିଗତ ଶିଳ୍ପୋଦ୍ୟୋଗଗୁଡ଼ିକୁ ଯୋଗାଇ ଦିଆଯାଉଥିଲା କଞ୍ଚାମାଲ, ଉପକରଣ, ଜାଳେଣି ଏବଂ ସେସବୁର ବଦଳରେ ସେମାନେ ରାଷ୍ଟ୍ରକୁ ଉତ୍ପାଦିତ ଜିନିଷପତ୍ର ଯୋଗାଉଥିଲେ । ଗଣ ବ୍ୟାଙ୍କ୍ ଶିଳ୍ପୋଦ୍ୟୋଗୀମାନଙ୍କୁ ରାଷ୍ଟ୍ରୀୟ ଋଣ ପ୍ରଦାନ କରିବା ସଙ୍ଗେ ସଙ୍ଗେ ସେସବୁର ଉପଯୋଗ ହେଉଛି କି ନାହିଁ, ତଦାରଖ କରୁଥିଲା, ଆଦି ।

ଦେଶର ଅର୍ଥନୀତିରେ ରାଷ୍ଟ୍ରାୟତ୍ତ ସମାଜବାଦୀ କ୍ଷେତ୍ରର ଉଦ୍‌ଭବ ଫଳରେ ଏହାକୁ ଯୋଜନାଯୁକ୍ତ କରିବାର ଆବଶ୍ୟକତା ଦେଖାଦେଲା । ପୁଞ୍ଜିବାଦୀ ବ୍ୟବସ୍ଥା ତୁଳନାରେ ସମାଜବାଦୀ ବ୍ୟବସ୍ଥାର ଅନ୍ୟତମ ମୌଳିକ ସୁବିଧା ହିସାବରେ ଏକକ ପରିକଳ୍ପନା ଅନୁଯାୟୀ ଅର୍ଥନୀତିକୁ ପରିଚାଳନା କରିବାର ସମ୍ଭାବନା କଥା ଲେନିନ୍ ବିଚାର କରିଥିଲେ ।

୧୯୧୮, ବସନ୍ତ କାଳରେ, ସୋଭିଏତ୍ ସରକାରଙ୍କ ନିର୍ଦ୍ଦେଶକ୍ରମେ ଦେଶର ଅର୍ଥନୈତିକ ବିକାଶ ନିମିତ୍ତ ଦୀର୍ଘକାଳୀନ ଯୋଜନା – କୃଷିଆର ବିଦ୍ୟୁତୀକରଣ ଆରମ୍ଭ ହୋଇଥିଲା । ଜାତୀୟ ଅର୍ଥନୀତିର ସର୍ବୋଚ୍ଚ ପରିଷଦ* ଏବଂ ଜାତୀୟ ଅର୍ଥନୀତିର ସ୍ଥାନୀୟ ପରିଷଦମାନେ ଶିଳ୍ପ ପାଇଁ ଶିଳ୍ପଶାଖା ଆଉ ଜିଲ୍ଲା ସ୍ତରୀୟ ଉତ୍ପାଦନର ଉତ୍କର୍ଷତା ସାଧନ କରିବାକୁ ଆରମ୍ଭ କରି ଦେଇଥିଲେ । ବର୍ଷକ ପାଇଁ ଏକ ସାଧାରଣ ଅର୍ଥନୈତିକ ଯୋଜନା ପ୍ରସ୍ତୁତ ହୋଇଥିଲା ।

ବ୍ରେଷ୍ଟ ଶାନ୍ତି ଚୁକ୍ତି ସଂପାଦନ ପରେ ଶିଳ୍ପ କ୍ଷେତ୍ରରେ ସାମରିକ ଉତ୍ପାଦନ ପରିବର୍ତ୍ତେ ଯୋଜନାବଦ୍ଧ ଭାବେ ଅସାମରିକ ଜିନିଷପତ୍ର ଉତ୍ପାଦନ କରିବାକୁ ଆରମ୍ଭ ହେଲା । ଦେଶରେ ଅନେକଗୁଡ଼ିକ ବୈଦ୍ୟୁତିକ ଉତ୍ପାଦନ କେନ୍ଦ୍ର ନିର୍ମାଣ କାର୍ଯ୍ୟ ଚାଲିଲା ଏବଂ ଯୁଦ୍ଧ ବର୍ଷମାନଙ୍କରେ ଯେଉଁସବୁ କାରଖାନାର ନିର୍ମାଣ କାର୍ଯ୍ୟ ବନ୍ଦ ଥିଲା, ସେସବୁକୁ ସଂପୂର୍ଣ୍ଣ କରାଗଲା ।

ଉତ୍ପାଦନର ଅଭିବୃଦ୍ଧି, ଉତ୍ପାଦନଶୀଳତାର ଉନ୍ନତି ତଥା କାର୍ଯ୍ୟ କ୍ଷେତ୍ରରେ ଶୃଙ୍ଖଳାର ଦୃଢ଼ୀକରଣ ପାଇଁ କମ୍ୟୁନିଷ୍ଟ ପାର୍ଟି ନିରବଚ୍ଛିନ୍ନ ସଂଗ୍ରାମ ଚଳେଇଥିଲା ।

ସମାଜବାଦୀ ଅର୍ଥନୀତି ନିର୍ମାଣ ପାଇଁ ସଂଗ୍ରାମରେ ଲେନିନ୍ ସାମାଜିକ ଶ୍ରମର ଉତ୍ପାଦନଶୀଳତାର ଅଭିବୃଦ୍ଧି ଉପରେ ନିଷ୍ପତ୍ତିମୂଳକ ଗୁରୁତ୍ୱ ପ୍ରଦାନ କରିଥିଲେ । ଶ୍ରମର ଉଚ୍ଚତର ଉତ୍ପାଦନଶୀଳତା ସୃଷ୍ଟି କରି ପୁଞ୍ଜିବାଦ ଯେପରି ସାମନ୍ତବାଦ ଉପରେ ବିଜୟ ହାସଲ କରିଥିଲା, ସେଇପରି ସମାଜବାଦ ପୁଞ୍ଜିବାଦ ଉପରେ ସଂପୂର୍ଣ୍ଣ ବିଜୟ ହାସଲ କରିବ । ଲେନିନ୍ କହୁଥିଲେ, ସମାଜବାଦ ସେ ବିଜୟ ହାସଲ କରିବ ସେତିକିବେଳେ, ଯେତେବେଳେ ଏହା ସାମାଜିକ ଶ୍ରମର ଉଚ୍ଚତର ଉତ୍ପାଦନଶୀଳତାକୁ ସୃଷ୍ଟି କରିବ ଏବଂ ତଦ୍ୱାରା ଶ୍ରମଜୀବୀ ଜନସାଧାରଣଙ୍କ ଜୀବନଧାରଣମାନର ଉଚ୍ଚତର ସ୍ତର ଉନ୍ନୀତ କରି ପାରିବ ।

ଲେନିନ୍ ମନେ କରୁଥିଲେ, ନିମ୍ନଲିଖିତ ଉପାୟରେ ଶ୍ରମର ଉଚ୍ଚତର ଉତ୍ପାଦନଶୀଳତା ହାସଲ ହୋଇ ପାରିବ :

ପ୍ରଥମତଃ, ଭାରୀ ଶିଳ୍ପର ବିକାଶ ଉପରେ ଅଗ୍ରାଧିକାର ଦାନ, ଉତ୍ପାଦନ କ୍ଷେତ୍ରରେ ବିଦ୍ୟୁତ୍‌ର ବ୍ୟାପକ ବ୍ୟବହାର ଏବଂ ନିରବଚ୍ଛିନ୍ନ କାରିଗରି ବିକାଶ କରିଥାରେ;

---

* ୧୯୧୭, ଡିସେମ୍ବର ମାସରେ ଜାତୀୟ ଅର୍ଥନୀତିରେ ସର୍ବୋଚ୍ଚ ପରିଷଦଟି ଗଠିତ ହୋଇଥିଲା ଜାତୀୟ ଅର୍ଥନୀତି ତଥା ରାଷ୍ଟ୍ରୀୟ ଅର୍ଥ ବ୍ୟବସ୍ଥାକୁ ସଂଗଠିତ କରିବା ପାଇଁ । ଜାତୀୟ ଅର୍ଥନୀତିର ଆଞ୍ଚଳିକ ତଥା ସ୍ଥାନୀୟ ପରିଷଦଗୁଡ଼ିକ ୧୯୧୭ ମସିହାର ଶେଷ ଏବଂ ୧୯୧୮ର ପ୍ରାରମ୍ଭରେ ଗଢ଼ାଯାଇଥିଲା ।

ଦ୍ୱିତୀୟତଃ, ଶ୍ରମିକମାନଙ୍କର ସାଧାରଣ ଶିକ୍ଷାଗତ, ସାଂସ୍କୃତିକ ଏବଂ କାରିଗରୀଗତ ମାନର ନିୟମିତ୍ ବିକାଶ ଜରିଆରେ;

ତୃତୀୟତଃ, ଶିଳ୍ପୋଦ୍ୟୋଗମାନଙ୍କରେ ଦୃଢ଼ ରାଷ୍ଟ୍ରୀୟ ଏବଂ କର୍ମକ୍ଷେତ୍ରୀୟ ଶୃଙ୍ଖଳାର ପ୍ରୟୋଗ୍ — ଉଭୟ ଶିକ୍ଷାଗତ ପଦକ୍ଷେପ ତଥା ପ୍ରବର୍ତ୍ତନା ଜରିଆରେ ଏବଂ ଏହିସବୁ ଶୃଙ୍ଖଳାର ଭଙ୍ଗକାରୀଙ୍କ ବିରୁଦ୍ଧରେ ଦଣ୍ଡବିଧାନକାରୀ ପଦକ୍ଷେପ ଦ୍ୱାରା;

ଚତୁର୍ଥତଃ, ମଜୁରି ବ୍ୟବସ୍ଥାର ସଠିକ ସଂଗଠନ ଜରିଆରେ ଶ୍ରମର ଉତ୍ପାଦନଶୀଳତାର ନିୟମିତ ବୃଦ୍ଧି ଦିଗରେ ଶ୍ରମିକମାନଙ୍କର ବ୍ୟକ୍ତିଗତ ବୈଷୟିକ ପ୍ରୋତ୍ସାହନ ବୃଦ୍ଧି ଦ୍ୱାରା: ଶ୍ରମିକର କାର୍ଯ୍ୟର ଗୁଣ ଓ ପରିମାଣ ଏବଂ ଉତ୍ପାଦନର ଗୁଣ ଅନୁଯାୟୀ ବେତନ ।

ପଞ୍ଚମତଃ, କାର୍ଯ୍ୟ ପାଇଁ ନୈତିକ ପ୍ରୋତ୍ସାହନର ଉପଯୋଗ, ବିଶେଷ କରି ଶ୍ରମଜୀବୀମାନଙ୍କ ମଧ୍ୟରେ ସମାଜବାଦୀ ପ୍ରତିଯୋଗିତାର ଉପଯୋଗ ।

ଲେନିନ୍ ଲେଖିଥିଲେ, ସମାଜବାଦ ହେଉଛି ପ୍ରଥମ ସାମାଜିକ ବ୍ୟବସ୍ଥା, ଯିଏକି ନିୟୁତ ନିୟୁତ ଶ୍ରମଜୀବୀ ଜନସାଧାରଣଙ୍କ ଆଗରେ ସେମାନଙ୍କ ଦକ୍ଷତା ତଥା ପ୍ରତିଭା ପାଇଁ ସୁଯୋଗର ପଥ ଖୋଲି ଦିଏ ଏବଂ ଜନସାଧାରଣଙ୍କ ମଧ୍ୟରେ ସେସବୁର ଅଫୁରନ୍ତ ଉତ୍ସ ରହିଛି । ସେସବୁକୁ ପୁଞ୍ଜିବାଦ ଶ୍ୱାସରୁଦ୍ଧ କରି ପାଦରେ ଦଳି ଦେଇଥାଏ । ପୁଞ୍ଜିବାଦୀ ପ୍ରତିଯୋଗିତାରେ ପ୍ରତ୍ୟେକ ପୁଞ୍ଜିପତି ଚାହେଁ ଅନ୍ୟର ତଣ୍ଟି ଚିପି ମାରି ଦେବାକୁ । ଏହି ପ୍ରତିଯୋଗିତା ବଦଳରେ ସମାଜବାଦୀ ପ୍ରତିଯୋଗିତା ପ୍ରତିଷ୍ଠିତ ହେବା ଦରକାର, ଯେଉଁ ପ୍ରତିଯୋଗିତାରେ ଉତ୍ପାଦନରେ ସମସ୍ତ ଅଂଶଗ୍ରହଣକାରୀଙ୍କ ସ୍ୱାର୍ଥ ସମାନ ଏବଂ କୌଣସି ସହକର୍ମୀ ପଛରେ ପଡ଼ିଗଲେ, ତାକୁ ସମସ୍ତେ ସାହାଯ୍ୟ କରିବାକୁ ଆଗେଇ ଆସନ୍ତି ।

ସୋଭିଏତ୍ ଅର୍ଥନୈତିକ ସଂସ୍ଥାସମୂହ ଶକ୍ତିଶାଳୀ ହେବା ସଙ୍ଗେ ସଙ୍ଗେ ଶ୍ରମିକମାନଙ୍କ ମଧ୍ୟରେ ପରିଚାଳକମାନଙ୍କ ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବାକୁ ଲାଗିଲା । ଫଳରେ ସୋଭିଏତ୍ ରାଷ୍ଟ୍ର ନୂଆ ନୂଆ ଶିଳ୍ପକୁ ଜାତୀୟକରଣ କରିବାକୁ ଲାଗିଲେ: ଗୋଟିଏ ଗୋଟିଏ ଶିଳ୍ପ କାରଖାନାର ଜାତୀୟକରଣରୁ ସମସ୍ତ ଶିଳ୍ପକୁ ଜାତୀୟକରଣ କରିବାକୁ ଲାଗିଲେ । ୧୯୧୮, ମେ ମାସରେ ଚିନି ଶିଳ୍ପକୁ ଏବଂ ଜୁନ୍ ମାସରେ ତୈଳ ଶିଳ୍ପ ସମେତ ସମସ୍ତ ଶିଳ୍ପର ସର୍ବବୃହତ୍ ଉଦ୍ୟୋଗସମୂହ ଓ ରେଳବାଇକୁ ଜାତୀୟକରଣ କରାଗଲା । ଦେଶର ଅର୍ଥନୀତିରେ ସମାଜବାଦୀ ଶିଳ୍ପକ୍ଷେତ୍ର ପ୍ରସାରିତ ହେବାକୁ ଲାଗିଲା । ସୋଭିଏତ୍ ଶାସନ ପାଇଁ ସୁଦୃଢ଼ ଅର୍ଥନୀତିର ଭିତ୍ତି ପ୍ରତିଷ୍ଠିତ ହେଲା ।

୧୯୧୮, ଜୁଲାଇ ମାସରେ ସୋଭିଏତ୍‌ସମୂହର ପଞ୍ଚମ ନିଖିଳ ରୁଷ୍ କଂଗ୍ରେସ ଲେନିନ୍‌ଙ୍କ ପ୍ରତ୍ୟକ୍ଷ ନିର୍ଦ୍ଦେଶନାରେ ରଚିତ ପ୍ରଥମ ସୋଭିଏତ୍ ସମ୍ବିଧାନକୁ ଅନୁମୋଦନ

କଲା । ଏହି ସମ୍ବିଧାନଟି ସମାଜବାଦୀ ବିପ୍ଳବର ଆଠ ମାସ ମଧ୍ୟରେ ଅର୍ଜିତ ବିପୁଳ ସାଫଲ୍ୟରାଜିକୁ ଆନୁଷ୍ଠାନିକ ରୂପ ପ୍ରଦାନ କଲା : ସୋଭିଏତ୍‌ଗୁଡ଼ିକ ହାତକୁ ସମସ୍ତ କ୍ଷମତା ପ୍ରଦାନ, ପ୍ରଜାତନ୍ତ୍ର ସଂଘୀୟ ରୂପ ପ୍ରଦାନ, ଗଣତାନ୍ତ୍ରିକ ସ୍ୱାଧୀନତାସମୂହ – ବିବେକର ସ୍ୱାଧୀନତା, କହିବାର ସ୍ୱାଧୀନତା, ସମାବେଶର ସ୍ୱାଧୀନତା, ସଂଘ ସମିତି ଗଠନର ସ୍ୱାଧୀନତା ଏବଂ ସେସବୁର ପ୍ରକୃତ କାର୍ଯ୍ୟାୟନ ପାଇଁ ଉପଯୁକ୍ତ ଅବସ୍ଥା ସୃଷ୍ଟି । କାର୍ଯ୍ୟ କରିବାକୁ ସମ୍ବିଧାନରେ ପ୍ରଜାତନ୍ତ୍ରର ସମସ୍ତ ନାଗରିକମାନଙ୍କ ପକ୍ଷରେ ଏକ କର୍ତ୍ତବ୍ୟ ବୋଲି ଲିପିବଦ୍ଧ କରାଗଲା : "ଯିଏ କାର୍ଯ୍ୟ କରିବ ନାହିଁ, ତା'ର ଖାଇବାର ଅଧିକାର ନାହିଁ" । ପ୍ରଜାତନ୍ତ୍ରର ପ୍ରତିରକ୍ଷା ପାଇଁ ସୈନ୍ୟ ବିଭାଗରେ ଅନ୍ତର୍ଭୁକ୍ତି ବାଧ୍ୟତାମୂଳକ କରାଗଲା । ତେବେ, ପୂର୍ବ ଭଳି କେବଳ ଶ୍ରମିକମାନଙ୍କ ହାତରେ ଦିଆଗଲା ଅସ୍ତ୍ରଶସ୍ତ୍ର ।

ସୋଭିଏତ୍‌ସମୂହକୁ ଅନ୍ୟକୁ ନିର୍ବାଚନ କରିବା ଏବଂ ନିଜେ ନିର୍ବାଚିତ ହେବାର ଅଧିକାର ସମସ୍ତ ଶ୍ରମଜୀବୀ ବୟଃପ୍ରାପ୍ତ ବ୍ୟକ୍ତିଙ୍କୁ ଜାତି, ବର୍ଣ୍ଣ, ଶିକ୍ଷା, ଧର୍ମ ଏବଂ ନାରୀ ପୁରୁଷ ନିର୍ବିଶେଷରେ ପ୍ରଦାନ କରାଗଲା । ଭୋଟଦାତାମାନଙ୍କର ଯେକୌଣସି ସମୟରେ ସେମାନଙ୍କ ପ୍ରତିନିଧିମାନଙ୍କୁ ଫେରେଇ ଆଣିବା ଏବଂ ତାଙ୍କ ସ୍ଥାନରେ ନୂଆ ଜଣଙ୍କୁ ନିର୍ବାଚିତ କରିବାର ଅଧିକାର ରହିଲା, ଯଦି ସେ ପ୍ରତିନିଧି ସେମାନଙ୍କ ଆଶାନୁରୂପ କାର୍ଯ୍ୟ ନକରନ୍ତି ।

ସୋଭିଏତ୍ ସମ୍ବିଧାନ ଶୋଷଣକାରୀ ଏବଂ ସୋଭିଏତ୍ ଶାସନ ପ୍ରତି ବୈରୀତାସଂପନ୍ନ ଲୋକମାନଙ୍କୁ ଭୋଟ ଦାନର ଅଧିକାରରୁ ବଞ୍ଚିତ କରି ଦେଲା । ଏହି କାର୍ଯ୍ୟଟି କରିବାକୁ ସୋଭିଏତ୍ ରାଷ୍ଟ୍ର ବାଧ୍ୟ ହୋଇଥିଲା, କାରଣ ପୂର୍ବତନ ଶୋଷକ ଶ୍ରେଣୀଗୁଡ଼ିକ ସୋଭିଏତ୍ ଶାସନକୁ ସ୍ୱୀକାର କରୁ ନଥିଲେ ଏବଂ ଏହା ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମରେ ଲିପ୍ତ ଥିଲେ । ସଂବିଧାନରେ କୁହାଯାଇଥିଲା ଯେ, ସମାଜରେ ବ୍ୟାପକ ସଂଖ୍ୟାଗରିଷ୍ଠ ଲୋକ ନିରକ୍ଷର କୃଷକ ହୋଇଥିବାରୁ ଏବଂ ସେମାନଙ୍କ ଅବସ୍ଥା ଇତସ୍ତତଃ ହୋଇଥିବାରୁ ଶ୍ରମିକ ଶ୍ରେଣୀର ନେତୃତ୍ୱଦାୟୀ ଅବସ୍ଥାନ ଲାଭ ନିମିତ୍ତ ସୋଭିଏତ୍‌ସମୂହରେ ଗ୍ରାମାଞ୍ଚଳ ଅପେକ୍ଷା ସହରସମୂହ ଏବଂ ଶ୍ରମିକ ଗ୍ରାମଗୁଡ଼ିକୁ ଅଧିକ ପ୍ରତିନିଧିତ୍ୱ ପ୍ରଦାନ କରିଥିଲା । ଏସବୁ ସତ୍ତ୍ୱେ ପ୍ରଥମ ସୋଭିଏତ୍ ସମ୍ବିଧାନଟି ଥିଲା ସମସ୍ତ ବୁର୍ଜୁଆ ସମ୍ବିଧାନ ତୁଳନାରେ ଖୁବ୍ ଗଣତାନ୍ତ୍ରିକ । ଲେନିନ୍ କହିଥିଲେ, "ଏ ପର୍ଯ୍ୟନ୍ତ ତିଷ୍ଠି ରହିଥିବା ସମସ୍ତ ସମ୍ବିଧାନ ଶାସକ ଶ୍ରେଣୀମାନଙ୍କର ସ୍ୱାର୍ଥକୁ ରକ୍ଷା କରି ଆସିଛନ୍ତି । ସୋଭିଏତ୍ ସମ୍ବିଧାନ ହେଉଛି ଏକମାତ୍ର ସମ୍ବିଧାନ, ଯିଏକି ଶ୍ରମଜୀବୀ ଜନସାଧାରଣଙ୍କର ସେବା କରିଛି ଏବଂ ଅବିରାମ କରି ଚାଲିଛି । ସମାଜବାଦ ପାଇଁ ଏହା ହେଲା ଏକ ଶକ୍ତିଶାଳୀ ହତିଆର ।"

# ୧୭ଶ ପରିଚ୍ଛେଦ

## ସାମ୍ରାଜ୍ୟବାଦୀ ହସ୍ତକ୍ଷେପ ଏବଂ ଗୃହଯୁଦ୍ଧ — ଯୁଦ୍ଧୋତ୍ତର ଅର୍ଥନୈତିକ ଧ୍ୱଂସର ଅବସାନ

ପ୍ରଥମ ବିଶ୍ୱ ଯୁଦ୍ଧର ଭୟଙ୍କର କୁଫଳରାଜିକୁ ଦୂର କରିବା ପାଇଁ ସୋଭିଏତ୍ ରୁଷିଆ କାର୍ଯ୍ୟାରମ୍ଭ କରୁ କରୁ ଆଉ ଏକ ଭଭୟଙ୍କର ରକ୍ତକ୍ଷୟୀ ଧ୍ୱଂସପୂର୍ଣ୍ଣ ଯୁଦ୍ଧ ଆରମ୍ଭ ହୋଇଗଲା । ଏହି ଯୁଦ୍ଧ ଚାଲିଥିଲା ତିନି ବର୍ଷ କାଳ — ଏହା ବିଦେଶୀ ହସ୍ତକ୍ଷେପ ଏବଂ ଗୃହଯୁଦ୍ଧ ନାମରେ ପରିଚିତ । ବିଦେଶୀ ସାମ୍ରାଜ୍ୟବାଦୀମାନେ ଆଭ୍ୟନ୍ତରୀଣ ପ୍ରତିବିପ୍ଳବୀ ଶକ୍ତିମାନଙ୍କ ସହିତ (ସେମାନଙ୍କ ସୈନ୍ୟଦଳଗୁଡ଼ିକର ନାମ ଥିଲା ଶ୍ୱେତ ରକ୍ଷୀ ଦଳ) ଏକଜୁଟ ହୋଇ ସେମାନଙ୍କୁ ଅସ୍ତ୍ରଶସ୍ତ୍ର ଯୋଗାଇଥିଲେ ଏବଂ ସୋଭିଏତ୍ ଶାସନ ବିରୁଦ୍ଧରେ ସଂଗ୍ରାମ କରିବାକୁ ମତେଇ ଥିଲେ । ପ୍ରତିବିପ୍ଳବୀମାନେ ଜନସାଧାରଣଙ୍କ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ ଚଳାଇ ପାରିଥିଲେ କେବଳ ବିଦେଶୀ ସାମରିକ ସାହାଯ୍ୟ ଏବଂ ବିଦେଶୀ ହସ୍ତକ୍ଷେପ ହେତୁ । ରୁଷିଆରେ ଗୃହଯୁଦ୍ଧ ଏତେ ଦୀର୍ଘକାଳ ଧରି ଚାଲିବାର କାରଣ ହେଲା ହସ୍ତକ୍ଷେପକାରୀ ଶକ୍ତିମାନେ ଆଭ୍ୟନ୍ତରୀଣ ପ୍ରତିବିପ୍ଳବୀ ଶକ୍ତିମାନଙ୍କ ସହିତ ଏକଜୁଟ ହୋଇଥିଲେ : ୧୯୨୦ ମସିହାର ଶେଷରେ ଏବଂ ଦେଶର ଉପାନ୍ତ ଅଞ୍ଚଳରେ ୧୯୨୨ ମସିହାର ଶେଷରେ ଏହି ଯୁଦ୍ଧର ନିଆଁ ନିର୍ବାପିତ ହୋଇଥିଲା ।

ସାମ୍ରାଜ୍ୟବାଦୀମାନେ ସୋଭିଏତ୍ ଦେଶ ଉପରେ ଆକ୍ରମଣ ଆରମ୍ଭ କରି ଦେଲେ, କାରଣ ସେମାନେ ଚାହିଁଥିଲେ ସୋଭିଏତ୍ ଶାସନକୁ ଉତ୍‌ଖାତ କରି ପୁଣି ବୁର୍ଜୁଆ ଏବଂ ଜମିଦାରମାନଙ୍କ ଏକଛତ୍ର ଶାସନ ପ୍ରତିଷ୍ଠା କରିବାକୁ । ସୋଭିଏତ୍ ଶାସନ ଦ୍ୱାରା ଜାତୀୟକରଣ କରାଯାଇଥିବା ସେମାନଙ୍କ କଳକାରଖାନାସମୂହକୁ ଏବଂ ଜାର୍‌ଶାହୀ ତଥା ଅସ୍ଥାୟୀ ବୁର୍ଜୁଆ ସରକାର ସେମାନଙ୍କ ଠାରୁ ନେଇଥିବା ଋଣ ଫେରସ୍ତ ପାଇବାକୁ ଏବଂ ରୁଷିଆର ଜାତିମାନଙ୍କୁ ଲୁଣ୍ଠନ କରିବାର ସୁବିଧା ପୁଣି ଲାଭ କରିବାକୁ ସେମାନେ ଚାହୁଁଥିଲେ ।

ସର୍ବୋପରି, ସାମ୍ରାଜ୍ୟବାଦୀମାନେ ଚାହୁଁଥିଲେ ଏକ ବୃହତ୍ ସ୍ୱାଧୀନ ରାଷ୍ଟ୍ର ହିସାବରେ ରୁଷିଆର ଅସ୍ତିତ୍ୱକୁ ଲୋପ କରି ଦେବାକୁ । ୧୯୧୮ ମସିହାର ପ୍ରାରମ୍ଭରେ

ଆମେରିକା ଯୁକ୍ତ ରାଷ୍ଟ୍ରର ରାଷ୍ଟ୍ରପତି ଉଇଲ୍‌ସନ୍ ସୋଭିଏତ୍ ରୁଷିଆକୁ ପାଞ୍ଚଟି ଭାଗରେ, ପାଞ୍ଚଟି ଛୋଟ ଛୋଟ "ସ୍ୱାଧୀନ" ରାଷ୍ଟ୍ରରେ ବିଭକ୍ତ କରି ଦେବାକୁ ଏକ ପ୍ରସ୍ତାବ ଦେଇଥିଲେ । ଏହିସବୁ ଛୋଟ ଛୋଟ ରାଷ୍ଟ୍ର ଆମେରିକା ଯୁକ୍ତ ରାଷ୍ଟ୍ର ତଥା ଅନ୍ୟାନ୍ୟ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ଉପନିବେଶ ବା ଅର୍ଦ୍ଧ ଉପନିବେଶରେ ପରିଣତ ହୋଇଥାନ୍ତା । ୧୯୧୯ ମସିହାରେ ଆମେରିକା ଯୁକ୍ତ ରାଷ୍ଟ୍ରର ବୈଦେଶିକ ମନ୍ତ୍ରଣାଳୟ ତରଫରୁ ତିଆରି ହୋଇଥିବା ରୁଷିଆର ଏକ ମାନଚିତ୍ରରେ ଏହାର ଭୂଖଣ୍ଡସମୂହ କେବଳ ଏହାର କେନ୍ଦ୍ରୀୟ ଅଞ୍ଚଳ ମଧ୍ୟରେ ସୀମିତ ଥିଲା ଏବଂ ଏହାର ଅନ୍ୟାନ୍ୟ ଅଞ୍ଚଳଗୁଡ଼ିକୁ ନେଇ "ସ୍ୱାଧୀନ" ରାଷ୍ଟ୍ରମାନ ଗଠିତ ହେବାର ଥିଲା । ଏହି ମାନଚିତ୍ରର ଏକ ପରିପୂରକ ମାନଚିତ୍ରରେ ଦର୍ଶାଯାଇଥିଲା, ସମଗ୍ର ରୁଷିଆକୁ ବଡ଼ ବଡ଼ ପ୍ରାକୃତିକ ଅଞ୍ଚଳସମୂହରେ ଭାଗ ଭାଗ କରି ଦେବାକୁ ପଡ଼ିବ ଏବଂ ପ୍ରତ୍ୟେକଟି ଅଞ୍ଚଳର ରହିବ ନିଜସ୍ୱ ବିଶେଷ ଅର୍ଥନୈତିକ ଜୀବନ । ଏହିସବୁ ଅଞ୍ଚଳ ମଧ୍ୟରୁ କୌଣସିଟି ଏକ ଶକ୍ତିଶାଳୀ ରାଷ୍ଟ୍ର ଗଠନ କଲା ଭଳି ଯଥେଷ୍ଟ ସ୍ୱାଧୀନ ହୋଇ ପାରି ନଥାନ୍ତେ ।

୧୯୧୭ ମସିହାର ଶେଷ ଭାଗରେ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନେ ସୋଭିଏତ୍ ରୁଷିଆରେ ସାମରିକ ହସ୍ତକ୍ଷେପର ଏକ ପରିକଳ୍ପନା ଉପରେ ଏକମତ ହୋଇ ଏହି ଉଦ୍ଦେଶ୍ୟରେ ଏହାକୁ ବିଭିନ୍ନ ଅଞ୍ଚଳରେ ଭାଗ ଭାଗ କରି ଦେଇଥିଲେ । ୧୯୧୭, ଡିସେମ୍ବର ମାସରେ ବୁର୍ଜୁଆ-ଜମିଦାର ରୁମାନିଆ, ଫ୍ରାନ୍‌ସର ସହାୟତାରେ ବେସାରାବିଆ ଆକ୍ରମଣ କଲା । ୧୯୧୮, ମାର୍ଚ୍ଚ ମାସରେ ବ୍ରିଟିଶ୍, ଫରାସୀ ଏବଂ ଆମେରିକାନ୍ ସୈନ୍ୟଦଳଗୁଡ଼ିକ ମୁରମାନ୍‌ସ୍କ ଆକ୍ରମଣ କରି ଦେଲେ । ଅଗଷ୍ଟ ମାସରେ ବ୍ରିଟିଶ୍ ଏବଂ ଆମେରିକାନ୍ ସୈନ୍ୟମାନେ ଆର୍କାଙ୍ଗେଲ୍‌ସରେ ଅବତରଣ କଲେ ଏବଂ ଏହି ସମୟରେ ସ୍ଥାନୀୟ ପ୍ରତିବିପ୍ଳବୀମାନେ ସହରରେ ଏକ ସୋଭିଏତ୍‌ବିରୋଧୀ ଅଭ୍ୟୁତ୍‌ଥାନ ଘଟାଇଥିଲେ । ହସ୍ତକ୍ଷେପକାରୀ ସେନା ଏବଂ ଅଭ୍ୟୁତ୍‌ଥାନକାରୀମାନଙ୍କର ମିଳିତ ଉଦ୍ୟମରେ ଏହି ସହରରୁ ସୋଭିଏତ୍ ଶାସନର ଉତ୍‌ଖାତ ଘଟିଲା । ହସ୍ତକ୍ଷେପକାରୀମାନେ ଏକ ପାଶବିକ ଅଧିକୃତ ଶାସନ ପ୍ରତିଷ୍ଠା କରି ୫୦,୦୦୦ରୁ ଅଧିକ ଲୋକଙ୍କୁ ବନ୍ଦୀ କରିଥିଲେ ଏବଂ ୪,୦୦୦ରୁ ଅଧିକଙ୍କୁ ବଧ କରିଥିଲେ । ରୁଷିଆର ଉତ୍ତରାଞ୍ଚଳର ସଂପଦକୁ ଲୁଟ କରିବାରେ ସେମାନେ ଲାଗିଗଲେ ।

ସୋଭିଏତ୍ ଦୂର ପ୍ରାଚ୍ୟରେ ମଧ୍ୟ ଏକକାଳୀନ ହସ୍ତକ୍ଷେପ ଆରମ୍ଭ ହୋଇ ଯାଇଥିଲା । ୧୯୧୮, ଏପ୍ରିଲ ୪ ତାରିଖ ରାତ୍ରିରେ ଜାପାନୀ ଗୁପ୍ତଚରମାନେ ସେମାନଙ୍କର ଦୁଇଜଣ ଜାପାନୀ ନାଗରିକଙ୍କୁ ଭ୍ଲାଦିଭୋଷ୍ଟୋକ ଠାରେ ହତ୍ୟା କଲେ । ଏହାର ପରଦିନ ସକାଳେ ଜାପାନୀ ସୈନ୍ୟମାନେ ଭ୍ଲାଦିଭୋଷ୍ଟୋକରେ ଅବତରଣ କରି "ବିଦେଶୀ ନାଗରିକମାନଙ୍କର ଧନ ଜୀବନ ରକ୍ଷା କରିବା" ଆଳରେ ସହରଟିକୁ ଦଖଲ କରି ନେଲେ । ସେଇ ଦିନ ବ୍ରିଟିଶ୍ ସୈନ୍ୟମାନେ ଏବଂ ସେମାନଙ୍କ ପରେ ଆମେରିକାନ୍‌ମାନେ

ଭ୍ଲାଦିଭୋଷ୍ଟୋକରେ ଅବତରଣ କରିଥିଲେ । ୧୯୧୮ ଶରତକାଳ ବେଳକୁ ହସ୍ତକ୍ଷେପକାରୀ ଏବଂ ପ୍ରତିବିପ୍ଳବୀ ଶକ୍ତିମାନେ ସେମାନଙ୍କ ସହିତ ଯୋଗ ଦେଇ ସମସ୍ତ ସୋଭିଏତ୍ ଦୂର ପ୍ରାଚ୍ୟରୁ ସୋଭିଏତ୍ ଶାସନକୁ ଲୋପ କରି ଦେଲେ ।

ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନେ ମଧ୍ୟ ଏସିଆକୁ ସେମାନଙ୍କ ସୈନ୍ୟ ପଠାଇ ଦେଲେ । ସେମାନଙ୍କ ସହାୟତାରେ ସ୍ଥାନୀୟ ବୁର୍ଜୁଆ ଜାତୀୟତାବାଦୀମାନେ ସେଠାରୁ ସୋଭିଏତ୍ ଶାସନକୁ ମଧ୍ୟ ଲୋପ କରି ଦେଇ ଏକ ପ୍ରତିବିପ୍ଳବୀ ସରକାର ପ୍ରତିଷ୍ଠା କଲେ । ଅଗଷ୍ଟ ମାସରେ ବ୍ରିଟିଶ୍ ସୈନ୍ୟଦଳଗୁଡ଼ିକ ବାକୁରେ ପହଞ୍ଚି ଗଣ ଶାସନର ସଂସ୍ଥା ରୂପେ ପ୍ରତିଷ୍ଠିତ ବାକୁ କମ୍ୟୁନ୍‌କୁ ଧୂଳିସାତ୍ କରି ଦେଲେ । ଏହି କମ୍ୟୁନ୍‌ର ୨୬ଜଣ ନେତା, ବାକୁର କମିସାରିଏତ୍‌ମାନେ ବ୍ରିଟିଶ୍‌ମାନଙ୍କ ହାତରେ ନିହତ ହେଲେ ।

ସାମ୍ରାଜ୍ୟବାଦୀମାନେ ଚେକସ୍ଲୋଭାକିଆର ୪୦,୦୦୦ ସୈନ୍ୟଙ୍କୁ ବ୍ୟବହାର କରିଥିଲେ ସୋଭିଏତ୍ ଶାସନ ବିରୁଦ୍ଧରେ ସଂଗ୍ରାମ କରିବା ଦିଗରେ । ଏହିସବୁ ସୈନ୍ୟ ହେଲେ ଅଷ୍ଟ୍ରୋ-ହଙ୍ଗେରୀୟ ସୈନ୍ୟବାହିନୀର ଏବଂ ପ୍ରଥମ ବିଶ୍ୱଯୁଦ୍ଧ ବେଳେ ରୁଷିଆ ଦ୍ୱାରା ଏମାନେ ବନ୍ଦୀ ହୋଇଥିଲେ । ରୁଷିଆ ଯୁଦ୍ଧରୁ ଓହରିଯିବା ପରେ, ସୋଭିଏତ୍ ସରକାର ଚେକ୍ ଏବଂ ସ୍ଲୋଭାକ୍‌ମାନଙ୍କୁ ଅନୁମତି ଦେଇଥିଲେ ଭ୍ଲାଦିଭୋଷ୍ଟୋକ୍ ବାଟେ ୟୁରୋପକୁ ଚାଲିଯିବା ପାଇଁ । ୧୯୧୮, ମେ ମାସରେ ରୁଷିଆସ୍ଥ ଫରାସୀ ରାଷ୍ଟ୍ରଦୂତ ଜୋସେଫ୍ ନାଉଲେନ୍‌ସ, ଚେକସ୍ଲୋଭାକ୍ ସୈନ୍ୟମାନଙ୍କ ସହିତ ଫରାସୀ ଦୂତାଳୟର ଏକ ଅଫିସରଙ୍କୁ ନିର୍ଦ୍ଦେଶ ଦେଲେ ସେନାଦଳର ସେନାପତିଙ୍କୁ ଜଣାଇ ଦେବାକୁ ଯେ, ମିତ୍ର ଶକ୍ତିମାନେ ସ୍ଥିର କରିଛନ୍ତି ହସ୍ତକ୍ଷେପ ଆରମ୍ଭ କରିବାକୁ ଏବଂ ଫରାସୀ ଦୂତାଳୟ ସମେତ ଚେକସ୍ଲୋଭାକ ସେନାଦଳଙ୍କୁ ମିତ୍ର ଶକ୍ତିର ସୈନ୍ୟଦଳଗୁଡ଼ିକର ଅଗ୍ରବାହିନୀ ବୋଲି ବିଚାର କରେ । ସାମ୍ରାଜ୍ୟବାଦୀ ଚରମାନେ ସୈନ୍ୟଦଳଗୁଡ଼ିକର ସେନାପତିମାନଙ୍କୁ ଉତ୍କୋଚ ଦେଇ କରଗତ କରିଥିଲେ ଏବଂ ସେମାନଙ୍କ ସାହାଯ୍ୟରେ ସାମ୍ରାଜ୍ୟବାଦୀମାନେ ସୋଭିଏତ୍‌ବିରୋଧୀ ଅଭ୍ୟୁତ୍‌ଥାନ ସୈନ୍ୟମାନଙ୍କୁ ପ୍ରତାରିତ କରି ଘଟାଇଥିଲେ । ୧୯୧୮, ମେ ମାସ ୨୫ ତାରିଖରେ ଏହି ଅଭ୍ୟୁତ୍‌ଥାନ ଘଟିଥିଲା ଏବଂ ପେଞ୍ଜାଠାରୁ ଭ୍ଲାଦିଭୋଷ୍ଟୋକ ପର୍ଯ୍ୟନ୍ତ ଏକ ବ୍ୟାପକ ଅଞ୍ଚଳକୁ ବ୍ୟାପି ଯାଇଥିଲା । ରେଳବାଇ ସାହାଯ୍ୟରେ ସୈନ୍ୟଦଳଗୁଡ଼ିକ ବ୍ୟାପି ଯାଇଥିଲେ । ବିଦ୍ରୋହୀମାନେ ଆମେରିକା ଯୁକ୍ତ ରାଷ୍ଟ୍ରଠାରୁ ଅସ୍ତ୍ରଶସ୍ତ୍ର ପାଇଥିଲେ ।

ଚେକସ୍ଲୋଭାକ ସୈନ୍ୟଦଳଗୁଡ଼ିକର ବିଦ୍ରୋହ ଭୋଲ୍‌ଗା ଅଞ୍ଚଳର, ୟୁରାଲ ତଥା ସାଇବେରିଆରେ କୁଲକ୍ ଅଭ୍ୟୁତ୍‌ଥାନ ପାଇଁ ସୂଚନା ସ୍ୱରୂପ ଥିଲା । ଫଳରେ ଭୋଲ୍‌ଗା ଠାରୁ ଭ୍ଲାଦିଭୋଷ୍ଟୋକ ପର୍ଯ୍ୟନ୍ତ ସମସ୍ତ ଅଞ୍ଚଳରୁ ସୋଭିଏତ୍ ଶାସନର ଅବସାନ ଘଟିଥିଲା ।

ଜର୍ମାନ୍ ସାମ୍ରାଜ୍ୟବାଦୀମାନେ ମଧ୍ୟ ସ୍ଥିର କଲେ ରୁଷିଆର କେତେକ ଅଞ୍ଚଳକୁ ଦଖଲ କରି ନେବା ପାଇଁ । ୧୯୧୮, ବସନ୍ତକାଳରେ ଜର୍ମାନ୍ ସୈନ୍ୟଦଳଗୁଡ଼ିକ ସମଗ୍ର

ସୋଭିଏତ୍ ବଲ୍‌ଟିକ୍ ଅଞ୍ଚଳ, ବେଲୋରୁଷିଆର ଅଧିକାଂଶ ଭୂଖଣ୍ଡ, ୟୁକ୍ରେନ୍, ଦନ୍ ଅଞ୍ଚଳ ଏବଂ କ୍ରିମିଆକୁ ଦଖଲ କରି ନେଲେ । ବୁର୍ଜୁଆ ଏବଂ ଜମିଦାରମାନେ ହସ୍ତକ୍ଷେପକାରୀ ସୈନ୍ୟମାନଙ୍କ ସହାୟତାରେ ଏହି ସମସ୍ତ ଅଞ୍ଚଳରେ କ୍ଷମତା ପୁନର୍ଦଖଲ କରି ନେଲେ । ହସ୍ତକ୍ଷେପକାରୀମାନେ ସେସବୁଥିରେ ପ୍ରତିଷ୍ଠା କଲେ ସାମରିକ ଅଧିକାରର ଏକ ନିର୍ମମ ଶାସନ । ସେମାନେ କମ୍ୟୁନିଷ୍ଟମାନଙ୍କୁ ହତ୍ୟା କଲେ, ଜନବସତିଗୁଡ଼ିକୁ ଲୁଣ୍ଠନ କଲେ ଏବଂ ଅଧିକୃତ ଅଞ୍ଚଳଗୁଡ଼ିକର ଧନସଂପଦକୁ ଲୁଟ କରି ନେଲେ ।

ବିଶ୍ୱଯୁଦ୍ଧ ଶେଷରେ, ୧୯୧୮ ନଭେମ୍ବର ମାସରେ ସାମ୍ରାଜ୍ୟବାଦୀ ଆକ୍ରମଣ ଆଉରି ବ୍ୟାପକ ଏବଂ ତୀବ୍ର ହୋଇ ଉଠିଲା । ଏହି ସମୟରେ ମିତ୍ରପକ୍ଷ ସେମାନଙ୍କର ବିରାଟ ସୈନ୍ୟବାହିନୀଗୁଡ଼ିକ ଯୁଦ୍ଧରୁ ନିବୃତ୍ତ ହୋଇଥିଲେ । ଫରାସୀ ହସ୍ତକ୍ଷେପକାରୀ ସୈନ୍ୟମାନେ ରୁଷିଆର ଦକ୍ଷିଣରେ, କ୍ରିମିଆରେ ଅବତୀର୍ଣ୍ଣ ହୋଇଥିଲେ । ଦେଶର ଉତ୍ତରରେ, ସୋଭିଏତ୍ ଦୂର ପ୍ରାଚ୍ୟରେ ନୂଆ ବିଦେଶୀ ସୈନ୍ୟଦଳମାନଙ୍କୁ ଦେଖିବାକୁ ମିଳିଲା । ତିନି ଲକ୍ଷରୁ ଊର୍ଦ୍ଧ୍ୱ ବିଦେଶୀ ସୈନ୍ୟ ଏବଂ ଅଫିସରମାନେ ସୋଭିଏତ୍ ଜନସାଧାରଣଙ୍କ ବିରୁଦ୍ଧରେ ଏହି ଅପରାଧମୂଳକ ଯୁଦ୍ଧରେ ଲିପ୍ତ ହୋଇଥିଲେ । ମୋଟ ୧୪ଟି ବିଦେଶୀ ରାଷ୍ଟ୍ର ବିପ୍ଳବୀ ରୁଷିଆ ବିରୁଦ୍ଧରେ ୧୯୧୯ ମସିହାରେ ସୋଭିଏତ୍‌ବିରୋଧୀ ପ୍ରସ୍ତୁରରେ ଅଂଶ ନେଇଥିଲେ ।

ଦେଶର ଖାଦ୍ୟ, କଞ୍ଚାମାଲ ଏବଂ ଜାଳେଣିର ମୁଖ୍ୟ ଅଞ୍ଚଳଗୁଡ଼ିକ ଠାରୁ ବିଚ୍ଛିନ୍ନ ହୋଇ ସୋଭିଏତ୍ ପ୍ରଜାତନ୍ତ୍ର ଚତୁର୍ପାର୍ଶ୍ୱର ରଣାଙ୍ଗନଗୁଡ଼ିକ ଦ୍ୱାରା ଅବରୁଦ୍ଧ ହୋଇ ପଡ଼ିଥିଲା । ସର୍ବହରା ବିପ୍ଳବର ମସ୍ତକ ଉପରେ ଝୁଲି ପଡ଼ିଲା ଭୟଙ୍କର ବିପଦପୂର୍ଣ୍ଣ ତରବାରି ।

ସାମରିକ ହସ୍ତକ୍ଷେପ ସାଙ୍ଗକୁ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନେ ଆରମ୍ଭ କରି ଦେଲେ ସଂପୂର୍ଣ୍ଣ ଅର୍ଥନୈତିକ ଅବରୋଧ ।

କମ୍ୟୁନିଷ୍ଟ ପାର୍ଟି ଏବଂ ସୋଭିଏତ୍ ସରକାରଙ୍କ ଆବେଦନ କ୍ରମେ ରୁଷିଆର ଶ୍ରମିକ ଏବଂ କୃଷକମାନେ ଏକ ବୈପ୍ଳବିକ ମୁକ୍ତି ଯୁଦ୍ଧ ଆରମ୍ଭ କରି ଦେଲେ । ବିପୁଳ ବୈପ୍ଳବିକ ଉଦ୍ଦୀପନା ଦ୍ୱାରା ଉଦ୍‌ବୁଦ୍ଧ ହୋଇ ଶ୍ରମଜୀବୀ ଜନସାଧାରଣ ହସ୍ତକ୍ଷେପକାରୀ ଏବଂ ରୁଷିଆ ପ୍ରତି ବିଶ୍ୱାସଘାତକତା କରିଥିବା ଆଭ୍ୟନ୍ତରୀଣ ପ୍ରତିବିପ୍ଳବୀମାନଙ୍କ ବିରୁଦ୍ଧରେ ଘୃଣାରେ ଜର୍ଜରିତ ହୋଇ ପଡ଼ିଥିଲେ ।

ସୋଭିଏତ୍ ସରକାର ଘୋଷଣା କଲା, ସମାଜବାଦୀ ଦେଶ ବିପଦାପନ୍ନ ବୋଲି । ଅବିଳମ୍ବେ, ସମଗ୍ର ଦେଶ ସୁଦୃଢ଼ ସାମରିକ ଛାଉଣୀରେ ପରିଣତ ହୋଇଗଲା । ଶ୍ରମିକ ଏବଂ କୃଷକମାନଙ୍କର ପ୍ରତିରକ୍ଷା ପରିଷଦ ଲେନିନ୍‌ଙ୍କ ସଭାପତିତ୍ୱରେ ଗଠିତ ହୋଇଗଲା । ପ୍ରଜାତନ୍ତ୍ରର ପ୍ରତିରକ୍ଷା ଦିଗରେ ସମସ୍ତ ବ୍ୟାପାର ଏହି ପରିଷଦ ଦ୍ୱାରା ସଂଗଠିତ ହେଲା ।

ସ୍ୱଳ୍ପକାଳ ମଧ୍ୟରେ ଲାଲ ସେନା ମଧ୍ୟରେ ନିଯୁକ୍ତ କରାଗଲା ଶ୍ରମିକ ଏବଂ କୃଷକମାନଙ୍କୁ । ହଜାର ହଜାର ଲୋକ ସ୍ୱେଚ୍ଛାରେ ଆଗେଇ ଆସିଲେ ଲାଲ ସେନାରେ ଯୋଗ ଦେବା ପାଇଁ । ଯୁଦ୍ଧରେ ଭୟଙ୍କର କ୍ଷୟକ୍ଷତି ସତ୍ୱେ ଲାଲ ସେନାର ସଂଖ୍ୟା ନିରବଚ୍ଛିନ୍ନ ଭାବେ ବୃଦ୍ଧି ପାଇବାକୁ ଲାଗିଲା ଏବଂ ୧୯୨୦ ମସିହାରେ ଏହାର ସଂଖ୍ୟା ୫ ନିୟୁତକୁ ଟପିଗଲା । ଏହି ସେନାବାହିନୀର ପ୍ରାଣକୋଷଗୁଡ଼ିକ ହେଲେ ଶ୍ରମିକ ଏବଂ କମ୍ୟୁନିଷ୍ଟମାନେ । ଏମାନେ ଏକୀଭୂତ ହୋଇ, ସେମାନଙ୍କ ଦୃଷ୍ଟାନ୍ତ ଜରିଆରେ ଦୁଃସାହସିକ ବୀରତ୍ୱପୂର୍ଣ୍ଣ କାର୍ଯ୍ୟ ସଂପାଦନ କରିବା ଏବଂ ଦୁଃଖକଷ୍ଟ ବରଣ କରିବା ପାଇଁ ସମସ୍ତ ଜନସାଧାରଣଙ୍କୁ ଅନୁପ୍ରାଣିତ କରିଥିଲେ । ଲାଲ ସେନାର ମୁଖ୍ୟ ଅଂଶଟି ଥିଲେ କୃଷକବୃନ୍ଦ । ଶ୍ରମିକମାନଙ୍କ ସହିତ ଏକଯୁଟ ହୋଇ ରୁଷିଆର ଶ୍ରମଜୀବୀ କୃଷକମାନେ ସୋଭିଏତ୍ ଶାସନର ସୁରକ୍ଷା ପାଇଁ ସଶସ୍ତ୍ର ସଂଗ୍ରାମ ଆରମ୍ଭ କରି ଦେଲେ । ଏହି ସୋଭିଏତ୍ ଶାସନ ସେମାନଙ୍କୁ ଜମିଦାରମାନଙ୍କ ଅତ୍ୟାଚାରରୁ ରକ୍ଷା କରିଥିଲା ଏବଂ ରାଜନୈତିକ ମୁକ୍ତି ଏବଂ ଭୂମି ଦାନ କରିଥିଲା ।

ଶ୍ରମିକ ଏବଂ କୃଷକମାନଙ୍କ ମଧ୍ୟରୁ ଲାଲ ସେନାବାହିନୀ ପାଇଁ ସେନାପତିମାନଙ୍କୁ ତାଲିମ ଦେବା ପାଇଁ ବିଭିନ୍ନ ପାଠ୍ୟକ୍ରମର ବ୍ୟାପକ ବ୍ୟବସ୍ଥା କରାଗଲା । ସେନାଦଳ, ରେଜିମେଣ୍ଟ ଏବଂ ଡିଭିଜନର ହଜାର ହଜାର ପ୍ରତିଭାବାନ ସେନାପତି ଜନସାଧାରଣଙ୍କ ମଧ୍ୟରୁ ଆସିଥିଲେ । ସେମାନଙ୍କ ମଧ୍ୟରେ ଥିଲେ, କମ୍ୟୁନିଷ୍ଟ-ଶ୍ରମିକ ଭାସିଲି ବ୍ଲୁଖେର୍, ଗରିବ କୃଷକ ପରିବାରରେ ଜନ୍ମ ନେଇଥିବା ଭାସିଲି ଚାପାଏଭ୍, ଇଂଜିନ୍ ଡ୍ରାଇଭରଙ୍କ ପୁତ୍ର ନିକଲାଇ ଚର୍ଗ୍ଗେର୍ସ୍ ଏବଂ କସାକ ପରିବାରରେ ଜାତ ସିମିଓନ ବୁଦିଓନି । ଏମାନଙ୍କ ସମେତ ଆଉରି ଅନେକ ବିଖ୍ୟାତ ସେନାପତି ଏବଂ ଗୃହଯୁଦ୍ଧ କାଳରେ ଜନପ୍ରିୟ ବୀରରେ ପରିଣତ ହୋଇଥିଲେ । ୧୯୧୮ ମସିହାରେ ଏକ ଶ୍ରମିକ ଦଳର ନେତା ରୂପେ କାର୍ଯ୍ୟାରମ୍ଭ କରିଥିବା କମ୍ୟୁନିଷ୍ଟ ମିଖାଇଲ ଫ୍ରୁଞ୍ଜେ ୧୯୧୯ ମସିହାରେ ଏକ ସେନାଦଳର ସେନାପତି ରୂପେ ନେତୃତ୍ୱ ନେଇଥିଲେ ।

ପୁରାତନ ସେନାବାହିନୀର ହଜାର ହଜାର ଅଫିସର ମଧ୍ୟ ଲାଲ ସେନାରେ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରୁ ଅନେକ ବିପ୍ଳବର ନ୍ୟାୟପୂର୍ଣ୍ଣ ଆଦର୍ଶକୁ ହୃଦୟଙ୍ଗମ କରି ସୋଭିଏତ୍ ଶାସନକୁ ସାଧୁତାର ସହିତ ସେବା କରିଥିଲେ । କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ସେମାନଙ୍କୁ ଲାଲ ସେନାର ଉଚ୍ଚ ପଦବୀରେ ନିଯୁକ୍ତ କରାଯାଇଥିଲା ଏବଂ ସେମାନେ ହସ୍ତକ୍ଷେପକାରୀ ଶକ୍ତିସମୂହର ଏବଂ ଶ୍ୱେତ ରକ୍ଷୀ ଦଳମାନଙ୍କୁ ପରାଜିତ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲେ । ସେମାନଙ୍କ ମଧ୍ୟରୁ ପୂର୍ବତନ ଜାର୍‌ଶାହୀ ସେନାବାହିନୀର କଲୋନେଲ ସେର୍ଗେଇ କାମେନେଭ୍ ୧୯୧୮ ମସିହାରେ ପୂର୍ବାଞ୍ଚଳ ରଣାଙ୍ଗନର ସେନାପତି ଏବଂ ୧୯୧୯ରେ ସମସ୍ତ ସୋଭିଏତ୍ ପ୍ରଜାତନ୍ତ୍ରର ସେନାବାହିନୀର ସର୍ବାଧିନାୟକ ହୋଇଥିଲେ । ପୂର୍ବତନ ଜାର୍‌ଶାହୀ ସେନାବାହିନୀର ଆଉ ଜଣେ

ଅଫିସର ମିଖାଇଲ୍ ତୁଖାଚେଭ୍‌ସି ୧୯୧୮ ମସିହାରେ ଏକ ସେନାଦଳର ଏବଂ ୧୯୨୦ ମସିହାରେ ପଶ୍ଚିମ ରଣାଙ୍ଗନର ନେତୃତ୍ୱ ଗ୍ରହଣ କରିଥିଲେ ।

ତେବେ, ପୁରାତନ ସେନାବାହିନୀର ଅନେକ ଅଫିସର ସୋଭିଏତ୍ ଶାସନ ପ୍ରତି ବୈରୀଭାବାପନ୍ନ ଥିଲେ । ସେନାପତିମାନଙ୍କ କ୍ରିୟାକଳାପ ଉପରେ ରାଜନୈତିକ ନିୟନ୍ତ୍ରଣ ଜାରି କରୁଥିଲେ କମିସାରଗଣ, ଶ୍ରମିକ ଶ୍ରେଣୀର ବଛାବଛା ସଦସ୍ୟ, ଦୃଢ଼ମନା କମ୍ୟୁନିଷ୍ଟ ଏବଂ ଆପୋଷହୀନ ବିପ୍ଳବୀମାନେ । ଏହିସବୁ କମିସାରମାନେ ଥିଲେ ଲାଲ ସେନାର ପ୍ରାଣ କେନ୍ଦ୍ର ଭଳି । ଜନପ୍ରିୟ ବୀର ଭାସିଲି ଚାପାଏଭ୍‌ଙ୍କ ନେତୃତ୍ୱରେ ପରିଚାଳିତ ବିଖ୍ୟାତ ୨୫ତମ ସେନା ଡିଭିଜନର କମିସାର ଥିଲେ କମ୍ୟୁନିଷ୍ଟ ଲେଖକ ଦ୍‌ମିତ୍ରି ଫୁର୍ମାନୋଭ୍ । ସେ ନିମ୍ନମତେ ଲାଲ ସେନାର କମିସାରଙ୍କୁ ବର୍ଣ୍ଣନା କରିଛନ୍ତି : "ତାଙ୍କର ପୋଷାକପତ୍ର ଥିଲା ସରଳ ସାଧାରଣ, ଲାଲ ସେନାର ସାଧାରଣ ସୈନିକ ପରି । ସେମାନଙ୍କ ସହିତ ଏକାଠି ବସି ଖିଆପିଆ କରୁଥିଲେ, ସୈନ୍ୟମାନଙ୍କ ସହିତ ଦୁଃଖକଷ୍ଟ ସହି ଆଗଉଥିଲେ ଏବଂ ଯୁଦ୍ଧ କ୍ଷେତ୍ରରେ ପ୍ରଥମେ ମୃତ୍ୟୁର ସାମନା କରୁଥିଲେ ।" ସମସ୍ତ ସେନା ୟୁନିଟଗୁଡ଼ିକରେ ପ୍ରତିଷ୍ଠିତ କମ୍ୟୁନିଷ୍ଟ ସେଲ୍‌ଗୁଡ଼ିକ କମିସାରମାନଙ୍କର ମୁଖ୍ୟ ଭିତ୍ତି ସ୍ୱରୂପ ଥିଲେ ।

ରଣାଙ୍ଗନ ଏବଂ ପଶ୍ଚାଦ୍‌ଭୂମି ମିଶି ଗଠନ କରିଥିଲା ଏକ ଅଭିନ୍ନ ଅଙ୍ଗ । ପଶ୍ଚାଦ୍‌ଭୂମିର ସମସ୍ତ କ୍ରିୟାକଳାପ ପରିଚାଳିତ ହେଉଥିଲା ସେଇ କମ୍ୟୁନିଷ୍ଟ ପାର୍ଟିର ଧ୍ୱନିଟିର ସହିତ– "ସବୁକିଛି ରଣାଙ୍ଗନ ପାଇଁ, ସବୁକିଛି ବିଜୟ ପାଇଁ ।" ଶିଳ୍ପସମୂହ ପରିଚାଳିତ ହେଉଥିଲା ସେନାବାହିନୀର ଅସ୍ତ୍ରଶସ୍ତ୍ର ଏବଂ ପୋଷାକପତ୍ର ପ୍ରସ୍ତୁତ କରିବା ଦିଗରେ । କଞ୍ଚାମାଲ, ଜାଳେଣି ଏବଂ ଖାଦ୍ୟ ସାମଗ୍ରୀର ଅଭାବ ସତ୍ତ୍ୱେ ସୈନ୍ୟବାହିନୀର ସମସ୍ତ କିଛି ଆବଶ୍ୟକତାକୁ ପୂରଣ କରିଥିଲା ଶିଳ୍ପ । ଏହା ସମ୍ଭବ ହୋଇ ପାରିଥିଲା ଶ୍ରମିକ ଶ୍ରେଣୀର ଶ୍ରମ କ୍ଷେତ୍ରରେ ବ୍ୟାପକ ବୀରତ୍ୱ ପାଇଁ । ସେସବୁ ମଧ୍ୟରେ ସର୍ବାଧିକ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା କମ୍ୟୁନିଷ୍ଟ ସୁବୋଟ୍‌ନିକ୍‌ଗୁଡ଼ିକ (ରୁଷ୍ ଶବ୍ଦ ସୁବୋଟ୍‌ନିକ୍‌ର ଅର୍ଥ ଶନିବାରରୁ ସୃଷ୍ଟ) । ୧୯୧୯, ବସନ୍ତକାଳରେ ଏହି ସୁବୋଟ୍‌ନିକ୍ ଆନ୍ଦୋଳନ ଆରମ୍ଭ ହୋଇଥିଲା ମସ୍କୋ ରେଳବାଇ ଷ୍ଟେସନର ଶ୍ରମିକମାନଙ୍କ ଦ୍ୱାରା । ସେମାନେ ଶନିବାରଗୁଡ଼ିକରେ କର୍ମଦିନ ପରେ ଅଧିକ କାର୍ଯ୍ୟ କରି ରେଳ ଇଂଜିନ୍‌ଗୁଡ଼ିକୁ ଶୀଘ୍ର ଶୀଘ୍ର ମରାମତ କରି ଦେଉଥିଲେ । ଏହା ଫଳରେ ରଣାଙ୍ଗନକୁ ଅଧିକ ଅସ୍ତ୍ରଶସ୍ତ୍ର ପ୍ରେରଣ କରାଯାଇ ପାରିଥିଲା । ଏହି ରେଳବାଇ ଶ୍ରମିକମାନଙ୍କର ଦୃଷ୍ଟାନ୍ତକୁ ସାରା ଦେଶର ଶ୍ରମିକମାନେ ଅନୁକରଣ କରିଥିଲେ । ଗୃହଯୁଦ୍ଧ କାଳରେ ରବିବାର ସମେତ ଶନିବାରମାନଙ୍କରେ ସ୍ୱେଚ୍ଛାକୃତ ଭାବେ ବିନା ବେତନରେ ଅଧିକ ସମୟ କାର୍ଯ୍ୟ କରିବାଟା ଏକ ଅଲିଖିତ ନିୟମରେ ପରିଣତ ହୋଇ ଯାଇଥିଲା । ନଖାଇ, ନଶୋଇ, ଏଣୁତେଣୁ ପୋଷାକ ଏବଂ ଜୋତା ପିନ୍ଧି, ବିନା ବିଶ୍ରାମରେ ଶ୍ରମିକମାନେ ୧୦ରୁ ୧୨ ଘଣ୍ଟା କାରଖାନାରେ କାର୍ଯ୍ୟ କରି ରଣକ୍ଷେତ୍ରର

ବରାଦ ପୂରଣ କରୁଥିଲେ । ପଶ୍ଚାଦ୍‌ଭୂମିର ଶ୍ରମିକମାନଙ୍କର ବୀରତ୍ୱ ରଣାଙ୍ଗନରେ ଲଢ଼ୁଥିବା ଲାଲ ସେନାର ବୀରତ୍ୱ ସହିତ ସମାନ ଥିଲା ।

ଯୁଦ୍ଧ ଚାଲିବା ଫଳରେ ସୋଭିଏତ୍ ରାଷ୍ଟ୍ର ବାଧ୍ୟ ହୋଇ ତା'ର ଅର୍ଥନୈତିକ ନୀତିର ପରିବର୍ତ୍ତନ କରିଥିଲା । ଏ ସଂପର୍କରେ ଲେନିନ୍ ଲେଖିଥିଲେ : "ଆମେ, ଯେଉଁମାନେ ପୁଞ୍ଜିପତିମାନଙ୍କୁ କହିଥିଲେ, 'ରାଷ୍ଟ୍ରୀୟ ନିୟନ୍ତ୍ରଣକୁ ମାନିନିଅ, ରାଷ୍ଟ୍ର କ୍ଷମତା ନିକଟରେ ନତି ସ୍ୱୀକାର କର, ଏବଂ ଜନସାଧାରଣଙ୍କର ପୁରୁଣା ସ୍ୱାର୍ଥ, ଅଭ୍ୟାସ ଏବଂ ମତାମତ ସହିତ ସଙ୍ଗତିଶୀଳ ଅବସ୍ଥାରାଜିର ସଂପୂର୍ଣ୍ଣ ଉଚ୍ଛେଦ ପରିବର୍ତ୍ତେ ରାଷ୍ଟ୍ରୀୟ ନିୟନ୍ତ୍ରଣ ଦ୍ୱାରା କ୍ରମାଗତ ଭାବେ ପରିବର୍ତ୍ତିତ ହେବ'—ଏବେ ଦେଖିଲୁ ଆମର ଅସ୍ତିତ୍ୱ ବିପଦାପନ୍ନ । ପୁଞ୍ଜିପତି ଶ୍ରେଣୀ ଆମମାନଙ୍କୁ ଏକ ହତାଶପୂର୍ଣ୍ଣ ନିର୍ମମ ଯୁଦ୍ଧ ମଧ୍ୟକୁ ଜୋରଜବରଦସ୍ତ ଠେଲି ଦେବା ଭଳି କୌଶଳ ଗ୍ରହଣ କଲେ । ଏହା ଦ୍ୱାରା ଆମେ ବାଧ୍ୟ ହେଲେ ପୁରୁଣା ସାମାଜିକ-ଅର୍ଥନୈତିକ ସଂପର୍କରାଜିକୁ ଆଉରି ଅଧିକ ନଷ୍ଟ କରି ଦେବା ପାଇଁ, ପ୍ରଥମେ ଯେତିକି କରିବାକୁ ଇଚ୍ଛା କରିଥିଲେ ।" ଉତ୍ପାଦନର ଉପାୟ ଉପକରଣ ଉପରେ ବୁର୍ଜୁଆ ମାଲିକାନା ସ୍ଥାନରେ କ୍ରମାଗତ ସର୍ବସାଧାରଣ, ସମାଜବାଦୀ ମାଲିକାନା ପ୍ରତିଷ୍ଠାକୁ ପରିତ୍ୟାଗ କରିବାକୁ ପଡ଼ିଥିଲା ।

ବୁର୍ଜୁଆ ଶ୍ରେଣୀର ଅର୍ଥନୈତିକ କ୍ଷମତାକୁ ଖର୍ବ କରିବା ପାଇଁ ଏବଂ ବିଜୟ ଦିଗରେ ଦେଶର ସମସ୍ତ ଶକ୍ତିକୁ ସଞ୍ଚାଳିତ କରିବା ପାଇଁ ସୋଭିଏତ୍ ରାଷ୍ଟ୍ର ପୁଞ୍ଜିବାଦୀ ଶକ୍ତିସମୂହକୁ ସଂପୂର୍ଣ୍ଣ ରୂପେ ଉତ୍‌ଖାତ ଏବଂ ଦମନ କରିବା ଉଦ୍ଦେଶ୍ୟରେ ସେମାନଙ୍କ ବିରୁଦ୍ଧରେ ଚରମ ଏକ ଆଘାତ ହାଣିଲା । ଏହି ଦ୍ରୁତତାର ସହିତ ଶିଳ୍ପର ଜାତୀୟକରଣ ଆରମ୍ଭ କରି ଦେଲା । ଏହା କେବଳ ବୃହଦାକାର ଶିଳ୍ପକୁ ଜାତୀୟକରଣ କଲା ନାହିଁ, ମଧ୍ୟମ ଶିଳ୍ପ, ଏପରିକି କ୍ଷୁଦ୍ର ଶିଳ୍ପକୁ ବି ଜାତୀୟକରଣ କରି ନେଲା । ବୁର୍ଜୁଆମାନଙ୍କ ଠାରୁ ୧୦୦୦ କୋଟି ରୁବଲର ଏକ ଅସାଧାରଣ ଟିକସ ଆଦାୟ କରାଗଲା । ସେମାନଙ୍କୁ ବାଧ୍ୟତାମୂଳକ ଭାବେ ନିୟୋଜିତ କରାଗଲା କାର୍ଯ୍ୟରେ ।

ଶିଳ୍ପର ପରିଚାଳନାକୁ ଦୃଢ଼ ଭାବେ କେନ୍ଦ୍ରୀୟର କରାଗଲା । ଜାତୀୟ ଅର୍ଥନୀତିର ସର୍ବୋଚ୍ଚ ପରିଷଦର ସଂପୃକ୍ତ ସଂସ୍ଥାମାନଙ୍କ ହାତରେ ଶିଳ୍ପୋଦ୍ୟୋଗସମୂହର ସମସ୍ତ ଉତ୍ପନ୍ନକୁ ସମର୍ପଣ କରି ଦେବାକୁ ପଡ଼ିଲା । ସାର୍ବିକ ବାଧ୍ୟତାମୂଳକ କାର୍ଯ୍ୟ ସମେତ "ଶ୍ରମ ସଞ୍ଚାଳନ" ନୀତି ପ୍ରୟୋଗ କରାଗଲା ଶିଳ୍ପୋଦ୍ୟୋଗସମୂହକୁ ଶ୍ରମ ଶକ୍ତି ଯୋଗାଇ ଦେବା ନିମିତ୍ତ ।

ଗୃହଯୁଦ୍ଧ କାଳରେ ସୋଭିଏତ୍ ରାଷ୍ଟ୍ର କୃଷକମାନଙ୍କ ଠାରୁ ଅର୍ଥ କିମ୍ବା ଶିଳ୍ପଜାତ ଦ୍ରବ୍ୟର ବିନିମୟରେ ଆବଶ୍ୟକୀୟ ପରିମାଣର ଶସ୍ୟ କିଣିବାକୁ ସକ୍ଷମ ନଥିଲା । ତା'ର କାରଣ ହେଲା, କାଗଜ ଟଙ୍କାର ମୂଲ୍ୟ କମି ଯାଇଥିଲା ଏବଂ ଶିଳ୍ପଜାତ ଜିନିଷରେ ମଧ୍ୟ

ଦାରୁଣ ଅଭାବ ଘଟିଥିଲା । ସୋଭିଏତ୍ ରାଷ୍ଟ୍ର ବାଧ୍ୟ ହୋଇଥିଲା ସୈନ୍ୟବାହିନୀ ଆଉ ସହରର ବାସିନ୍ଦାମାନଙ୍କୁ ଖାଦ୍ୟ ଯୋଗାଇ ଦେବା ନିମିତ୍ତ କଠୋର ପଦକ୍ଷେପସମୂହ ଗ୍ରହଣ କରିବାକୁ : ୧୯୧୯, ଜାନୁଆରୀ ମାସରେ ଏହା ବାଧ୍ୟ ହେଲା ଖାଦ୍ୟ ସଂଗ୍ରହ କରିବାକୁ । ଖାଦ୍ୟଶସ୍ୟ ସମେତ ଆଉ କେତେକ କୃଷିଜାତ ପଦାର୍ଥ ଯୋଗାଇବା ନିମିତ୍ତ ପ୍ରଦେଶଗୁଡ଼ିକ ଉପରେ ଦାୟିତ୍ୱ ବାଣ୍ଟି ଦିଆଗଲା – ପ୍ରତ୍ୟେକ ପ୍ରଦେଶ ନିର୍ଦ୍ଦିଷ୍ଟ ପରିମାଣର କୋଟା ଦେବାକୁ ବାଧ୍ୟ ହେଲେ । ପ୍ରଦେଶମାନେ ସେମାନଙ୍କ ମଧ୍ୟରେ ଥିବା ଉଏଜଦ୍, ଉଏଜଦ୍‌ମାନେ – ପ୍ରତ୍ୟେକ ଭୋଲସ୍ତ୍ (ଛୋଟ ଗ୍ରାମାଞ୍ଚଳ ଜିଲ୍ଲା), ଭୋଲସ୍ତ୍‌ମାନେ – ଗ୍ରାମ ଏବଂ ଗ୍ରାମମାନେ – ପ୍ରତ୍ୟେକ ଘର ଉପରେ କୋଟା ନିର୍ଦ୍ଧାରଣ କରି ଦେଲେ । ଆବଶ୍ୟକୀୟ ଖାଦ୍ୟଶସ୍ୟର ଅଧିକାଂଶ ଭାଗକୁ ବହନ କଲେ ଗ୍ରାମାଞ୍ଚଳର ଧନୀ କୁଲକ୍‌ମାନେ । କୃଷିଜାତ ଦ୍ରବ୍ୟର ବଦଳରେ ରାଷ୍ଟ୍ର କୃଷକମାନଙ୍କୁ ଶିଳ୍ପଜାତ ଦ୍ରବ୍ୟମାନ ପ୍ରଦାନ କଲା । ତେବେ ଏହିସବୁ ଦ୍ରବ୍ୟର ମୂଲ୍ୟ କୃଷିଜାତ ଦ୍ରବ୍ୟର ମୂଲ୍ୟକୁ ମାତ୍ର ଆଂଶିକ ଭାବେ ପୂରଣ କରୁଥିଲା । ଏହି ବିନିମୟ ପ୍ରତ୍ୟକ୍ଷ ହେଲେ ମଧ୍ୟ ସହର ଓ ଗ୍ରାମାଞ୍ଚଳ ମଧ୍ୟରେ ଥିଲା ଅସମ ବିନିମୟ ।

ଖାଦ୍ୟଶସ୍ୟ ସଂଗ୍ରହ ଥିଲା ପ୍ରକୃତରେ ଏକ କଠିଣ ପଦକ୍ଷେପ । କିନ୍ତୁ ଏହାର ଗୁରୁତ୍ୱ ଥିଲା ଅତୀବ ବେଶି । ଖାଦ୍ୟଶସ୍ୟ ସଂଗ୍ରହ ବିନା ସୈନ୍ୟ ଆଉ ଶ୍ରମିକ ଶ୍ରେଣୀକୁ ଖାଦ୍ୟ ଯୋଗାଇବା ଅସମ୍ଭବ ହୋଇ ପଡ଼ିଥାନ୍ତା । ଶ୍ରମଜୀବୀ କୃଷକମାନେ ଏହି ପଦକ୍ଷେପକୁ ସମର୍ଥନ ଜଣାଇଥିଲେ, କାରଣ ସେମାନେ ହୃଦୟଙ୍ଗମ କରୁଥିଲେ, ଖାଦ୍ୟ ବ୍ୟତିରେକେ ସୈନ୍ୟମାନେ ଲଢ଼େଇ କରି ପାରିବେ ନାହିଁ । ତେଣୁ, କୃଷକମାନଙ୍କୁ ଜମି ଦେଇଥିବା ସୋଭିଏତ୍ ଶାସନକୁ ରକ୍ଷା କରି ହେବ ନାହିଁ ।

ସୋଭିଏତ୍ ସରକାର ନିଜ ହାତକୁ ଶିଳ୍ପଜାତ ଦ୍ରବ୍ୟ ଏବଂ ଖାଦ୍ୟ ଜିନିଷର ବଣ୍ଟନ ଦାୟିତ୍ୱ ମଧ୍ୟ ନେଇଥିଲା । ଏହା ଆବଶ୍ୟକ ହୋଇ ପଡ଼ିଥିଲା, ବଣ୍ଟନ କ୍ଷେତ୍ରରେ ବୁର୍ଜୁଆର ଅର୍ଥନୈତିକ ଅବସ୍ଥାନକୁ ଖର୍ବ କରିବା ଏବଂ ସେତେବେଳେ ଦେଶର ସୀମିତ ସମ୍ବଳକୁ ଅତି ସୁଦକ୍ଷ ଉପଯୋଗ କରିବା ଦୃଷ୍ଟିରୁ । ପ୍ରଧାନ ଖାଦ୍ୟ ପଦାର୍ଥ ଏବଂ ଶିଳ୍ପଜାତ ସାମଗ୍ରୀର ବ୍ୟବସାୟ ବାଣିଜ୍ୟକୁ ନିଷିଦ୍ଧ କରି ଦିଆଗଲା । ଶ୍ରେଣୀ ନୀତି ଅନୁସାରେ ରାଷ୍ଟ୍ର ସେସବୁକୁ ଜନବସତି ମଧ୍ୟରେ ବଣ୍ଟନ କରିଥିଲା : ଶ୍ରମିକମାନେ ଅଧିକ ପାଉଥିଲେ ଏବଂ ଅଣଶ୍ରମିକମାନେ ବାଧ୍ୟତାମୂଳକ ଶ୍ରମ କଲେ କେବଳ ପାଉଥିଲେ । ଏହା ଦ୍ୱାରା, "ଯିଏ କାର୍ଯ୍ୟ କରିବ, ସିଏ ହିଁ କେବଳ ଖାଇବ" ନୀତିକୁ କାର୍ଯ୍ୟକାରୀ କରାଯାଇଥିଲା ।

ମୁଦ୍ରାସ୍ଫୀତି ଫଳରେ ମୁଦ୍ରାର ମୂଲ୍ୟ ହ୍ରାସ ପାଇଯିବା ହେତୁ ଶିଳ୍ପ ଶ୍ରମିକ ଏବଂ ଅଫିସ୍ କର୍ମଚାରୀମାନଙ୍କୁ ରାଷ୍ଟ୍ର ଜିନିଷପତ୍ର ଆକାରରେ ପ୍ରଦାନ କରିଥିଲା : ସେମାନେ ବିନା ମୂଲ୍ୟରେ ଖାଦ୍ୟ ରେସନ ଏବଂ ଶିଳ୍ପଜାତ ଦ୍ରବ୍ୟ ପାଇଲେ, ଘର ଭଡ଼ା,

ମ୍ୟୁନିସପାଲଟି ଟିକସ, ଯାନବାହନର ଭଡ଼ା ଏବଂ ଖବରକାଗଜର ଦାମ୍ ଛାଡ଼ କରି ଦିଆଗଲା । ଜିନିଷପତ୍ର ଆକାରରେ ମଜୁରି ଦାନ କରାଯାଉଥିଲା ସମବଣ୍ଟନର ନୀତି ଅନୁଯାୟୀ । ସମସ୍ତ ଶ୍ରମଜୀବୀ ଲୋକେ ଜୀବନଧାରଣ ପାଇଁ ସର୍ବନିମ୍ନ ପରିମାଣର ଜିନିଷପତ୍ର ପାଉଥିଲେ ।

ଏହି ଭାବେ, ଗୃହଯୁଦ୍ଧ କାଳରେ ସୋଭିଏତ୍ ରାଷ୍ଟ୍ର ଏକ ବିଶେଷ, ଅସାଧାରଣ ଅର୍ଥନୈତିକ ନୀତି ଅନୁସରଣ କରିଥିଲା ଏବଂ ଏହାର ମୌଳିକ ବୈଶିଷ୍ଟ୍ୟ ହେଲା: ଅର୍ଥନୀତି କ୍ଷେତ୍ରରୁ ପୁଞ୍ଜିବାଦୀ ଉପାଦାନସମୂହର ଉଚ୍ଛେଦ, ସେସବୁର ସଂପୂର୍ଣ୍ଣ ବହିଷ୍କରଣ, ବାଧ୍ୟତାମୂଳକ ଭାବେ ଖାଦ୍ୟଶସ୍ୟ ସଂଗ୍ରହ ଏବଂ ସହର ଓ ଗ୍ରାମାଞ୍ଚଳ ମଧ୍ୟରେ ଜିନିଷପତ୍ରର ପ୍ରତ୍ୟକ୍ଷ ବିନିମୟ; ବ୍ୟବସାୟ ବାଣିଜ୍ୟର ନିଷିଦ୍ଧକରଣ ଏବଂ ଏହାର ପରିବର୍ତ୍ତେ ଶ୍ରେଣୀ ନୀତି ଅନୁସାରେ ରାଷ୍ଟ୍ର ଦ୍ୱାରା ବଣ୍ଟନ; ବାଧ୍ୟତାମୂଳକ ଶ୍ରମ; ଜିନିଷପତ୍ର ଆକାରରେ ମଜୁରି ଦାନ; କାର୍ଯ୍ୟ ପାଇଁ ସମାନ ବେତନ ଦାନ ।

ଗୃହଯୁଦ୍ଧର ପରିପ୍ରେକ୍ଷିତରେ ଏହା ହିଁ ଥିଲା ଏକମାତ୍ର ସମ୍ଭାବ୍ୟ ଏବଂ ଏକମାତ୍ର ସଠିକ ନୀତି; ଏହାକୁ କୁହାଯାଉଥିଲା "ଯୁଦ୍ଧକାଳୀନ କମ୍ୟୁନିଜମ୍" । "ଯୁଦ୍ଧକାଳୀନ କମ୍ୟୁନିଜମ୍" ନୀତିର ତାତ୍ପର୍ଯ୍ୟ ହେଲା, ବିଦେଶୀ ସାମରିକ ହସ୍ତକ୍ଷେପ ଏବଂ ଆଭ୍ୟନ୍ତରୀଣ ପ୍ରତିବିପ୍ଳବକୁ ପରାସ୍ତ କରିବା ପାଇଁ ଦେଶର ସମସ୍ତ ସମ୍ବଳର ଉପଯୋଗକୁ ସମ୍ଭବ କରିବା । ଦେଶରେ ସର୍ବହରାର ଏକନାୟକତ୍ୱର ଭବିଷ୍ୟତ ଏବଂ ସମାଜବାଦର ଭବିଷ୍ୟତ ପକ୍ଷରେ ଏହା ଥିଲା ନିଷ୍ପତ୍ତିମୂଳକ । ତେଣୁ କରି ଲେନିନ୍ ବାରମ୍ବାର ଏକ ଅସାଧାରଣ ପରିସ୍ଥିତିରେ ଏହି ନୀତିର ଅପରିହାର୍ଯ୍ୟତା ଏବଂ ଦକ୍ଷତାର କଥା ଦର୍ଶାଇଥିଲେ । ଏଥି ସହେ ସାଥେ ଲେନିନ୍ ଏହି ନୀତିର ବାଧ୍ୟତାମୂଳକ ଚରିତ୍ର ଏବଂ ଭୁଲ ଭ୍ରାନ୍ତି ଉପରେ ଜୋର ଦେଇଥିଲେ ।

ବାଧ୍ୟତାମୂଳକ ଭାବେ ଖାଦ୍ୟଶସ୍ୟ ସଂଗ୍ରହ ଫଳରେ କୃଷକମାନେ ବଳକା ଖାଦ୍ୟଶସ୍ୟ ରଖିବାରୁ ବଞ୍ଚିତ ହେଲେ ଏବଂ ଉତ୍ପାଦନର ଅଭିବୃଦ୍ଧି ଦିଗରେ ଏହା ସେମାନଙ୍କୁ କୌଣସି ପ୍ରୋତ୍ସାହନ ଦେଲା ନାହିଁ । କୃଷି କ୍ଷେତର ସଂଖ୍ୟା କମିଗଲା ଏବଂ କୃଷି ଉତ୍ପାଦନ ହ୍ରାସ ପାଇଲା । ଅବାଧ ପଣ୍ୟ ଆଦାନପ୍ରଦାନ ବିନା କୃଷି ଖମାରର ସାଧାରଣତଃ ବିକାଶ ହୁଏ ନାହିଁ । ଗୃହଯୁଦ୍ଧ କାଳରେ ସୋଭିଏତ୍ ରାଷ୍ଟ୍ର ବାଧ୍ୟ ହୋଇ ବାଣିଜ୍ୟ କାରବାର ନିଷିଦ୍ଧ କରି ଦେଇଥିଲେ, ରେସନ ବ୍ୟବସ୍ଥା ଚାଲୁ କରିଥିଲେ ଏବଂ ଦୁର୍ଲଭ ଖାଦ୍ୟ ସାମଗ୍ରୀ ତଥା ଶିଳ୍ପଜାତ ଦ୍ରବ୍ୟାଦିର ସମାନ ବଣ୍ଟନ ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ । "ଯୁଦ୍ଧକାଳୀନ କମ୍ୟୁନିଜମ୍ର" ଅର୍ଥନୈତିକ ନୀତି ସହର ଏବଂ ଗ୍ରାମାଞ୍ଚଳ, ଶିଳ୍ପ ଏବଂ କୃଷି ମଧ୍ୟରେ ବ୍ୟାପକ ଅର୍ଥନୈତିକ ଐକ୍ୟ ଆଣି ପାରିଲା ନାହିଁ ଏବଂ ଏହା ଦ୍ୱାରା ଉଭୟର ବିକାଶ ବାଧାପ୍ରାପ୍ତ ହେଲା ।

"ଯୁଦ୍ଧକାଳୀନ କମ୍ୟୁନିଜମ୍କୁ" ସୋଭିଏତ୍ ରାଷ୍ଟ୍ରର ସ୍ୱାଭାବିକ ଅର୍ଥନୈତିକ ନୀତି

ବୋଲି କୁହାଯାଇ ପାରିବ ନାହିଁ । ଏହା ଥିଲା ବାଧ୍ୟତାମୂଳକ ଏବଂ ଅସ୍ଥାୟୀ । ଗୃହଯୁଦ୍ଧ ପରେ ସୋଭିଏତ୍ ରାଷ୍ଟ୍ର ଏହାକୁ ପରିତ୍ୟାଗ କରିଥିଲା ।

ତିନି ବର୍ଷ କାଳ ଧରି ବିଭିନ୍ନ ସାମ୍ମୁଖ୍ୟରେ ଚାଲିଥିଲା ତୀବ୍ର ସଂଗ୍ରାମ । ଏହା ଥିଲା ବିପୁଳ ରକ୍ତକ୍ଷୟୀ ଏବଂ ଭୟଙ୍କର ଯୁଦ୍ଧ । ସୋଭିଏତ୍ ପ୍ରଜାତନ୍ତ୍ର ପାଇଁ ଅନେକ ସମୟରେ ବିଦେଶୀ ହସ୍ତକ୍ଷେପ ଏବଂ ପ୍ରତିବିପ୍ଳବୀ ଶକ୍ତିମାନେ ଅତୀବ ବିପଦପୂର୍ଣ୍ଣ, ଗୁରୁତର ପରିସ୍ଥିତି ସୃଷ୍ଟି କରିଥିଲେ । ଉଦାହରଣ ସ୍ୱରୂପ, ୧୯୧୯ ବସନ୍ତ କାଳରେ ସାମ୍ରାଜ୍ୟବାଦୀମାନେ ଏକକାଳୀନ ଛଅଟି ଦିଗରୁ ଏକ ବଡ଼ ଧରଣର ମିଳିତ ଆକ୍ରମଣ ଆରମ୍ଭ କରିଥିଲେ । ସେମାନଙ୍କ ସହିତ ପୂର୍ବ ଦିଗରୁ କଲଚାକ୍‌ଙ୍କ ସୈନ୍ୟମାନେ ଆଗେଇ ଆସୁଥିଲେ ମୁଖ୍ୟ ଭୂମିକା ଗ୍ରହଣ କରି । ୧୯୧୯, ଶରତକାଳରେ ଆଉ ଏକ ମିଳିତ ଆକ୍ରମଣ ଆରମ୍ଭ ହୋଇଗଲା ଏବଂ ଏଥର ମୁଖ୍ୟ ଶକ୍ତି ହେଲା ଜେନେରାଲ ଦେନିକିନ୍‌ଙ୍କ ପ୍ରତିବିପ୍ଳବୀ ସେନାବାହିନୀ । ଏହା ଦେଶର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ କେନ୍ଦ୍ର ମଧ୍ୟକୁ ପଶି ଆସି ମସ୍କୋର ମାତ୍ର ୨୦୦ କିଲୋମିଟର ଦୂରରେ ପହଞ୍ଚି ଯାଇଥିଲା । ଶେଷକୁ ୧୯୨୦, ବସନ୍ତ ଏବଂ ଗ୍ରୀଷ୍ମକାଳରେ ସାମ୍ରାଜ୍ୟବାଦୀମାନେ ବୁର୍ଜୁଆ ଜମିଦାର ପୋଲାଣ୍ଡ ସୈନ୍ୟବାହିନୀକୁ ସୋଭିଏତ୍ ରୁଷିଆ ବିରୁଦ୍ଧରେ ଲଗେଇ ଦେଲେ । ଏହି ସମୟରେ ଭରାଙ୍ଗେଲଙ୍କ ସୈନ୍ୟମାନେ କ୍ରିମିଆ ଆଡ଼ୁ ଆକ୍ରମଣ ଆରମ୍ଭ କରି ଦେଲେ ।

ସୋଭିଏତ୍ ସୈନ୍ୟମାନେ ଅଭୂତପୂର୍ବ ବୀରତ୍ୱର ପରିଚୟ ଦେଇଥିଲେ । ଏଠାରେ ଦୃଷ୍ଟାନ୍ତ ସ୍ୱରୂପ, ଦକ୍ଷିଣବର୍ତ୍ତୀ ରଣାଙ୍ଗନର ସେନାନାୟକ ମିଖାଇଲ ଫ୍ରୁଞ୍ଜେ ଭରାଙ୍ଗେଲ ବିରୁଦ୍ଧରେ ପରିଚାଳିତ ଯୁଦ୍ଧ ସଂପର୍କରେ ଲେନିନ୍‌ଙ୍କୁ ଏକ ଟେଲିଗ୍ରାମରେ ଜଣାଇଥିଲେ : "ସିଭାସ ଏବଂ ପେରେକୋପ୍ ଆକ୍ରମଣ କରି ବୀର ପଦାତିକ ବାହିନୀ ଅଦ୍‌ଭୁତ ଦୁଃସାହସର ପରିଚୟ ଦେଇଛି । ସେନାଦଳଗୁଡ଼ିକ ଶତ୍ରୁର ଲୁହା ତାର ବାଡ଼ ଆଡ଼କୁ ଭୟଙ୍କର ଗୁଳାବାରୁଦକୁ ବେଖାତିର କରି ସଂକୀର୍ଣ୍ଣ ଗଳିକନ୍ଧି ମଧ୍ୟ ଦେଇ ଆଗେଇ ଯାଇଥିଲେ । କେତେକ ଡିଭିଜନ ସେମାନଙ୍କର ମୋଟ ତିନି ଚତୁର୍ଥାଂଶ ଶକ୍ତି ହରେଇଛନ୍ତି । ସଂଯୋଜକଗୁଡ଼ିକୁ ଆକ୍ରମଣ କଲା ବେଳେ ମୃତ୍ୟୁବରଣ କରିଥିବା ଏବଂ ଆଘାତ ପ୍ରାପ୍ତ ହୋଇଥିବା ସୈନ୍ୟଙ୍କ ସଂଖ୍ୟା ୧୦,୦୦୦ରୁ କମ୍ ହେବେ ନାହିଁ । ରଣାଙ୍ଗନର ସୈନ୍ୟମାନେ ପ୍ରଜାତନ୍ତ୍ର ପ୍ରତି ସେମାନଙ୍କର କର୍ତ୍ତବ୍ୟ ପାଳନ କରିଛନ୍ତି । ରୁଷ୍ ପ୍ରତିବିପ୍ଳବର ଶେଷ ନାଡ଼ଟିକୁ ଧ୍ୱଂସ କରି ଦିଆଯାଇଛି ଏବଂ କ୍ରିମିଆ ପୁଣି ସୋଭିଏତ୍‌ରେ ପରିଣତ ହୋଇଛି ।"

ଲାଲ ସେନା ଦ୍ୱାରା ପରିବେଷ୍ଟିତ ଏବଂ ହସ୍ତକ୍ଷେପକାରୀ ସୈନ୍ୟମାନଙ୍କ ମଧ୍ୟରେ କମ୍ୟୁନିଷ୍ଟମାନଙ୍କ ଦ୍ୱାରା ପ୍ରଚାରିତ ବଲ୍‌ଶେଭିକ୍ ସତ୍ୟ ଦ୍ୱାରା ପ୍ରଭାବିତ ହୋଇ ବିଦେଶୀ ସୈନ୍ୟମାନେ ଦ୍ୱିଧାବୋଧ କରିଥିଲେ : ଅନେକ ସମୟରେ ସେମାନେ ସୋଭିଏତ୍

ରୁଷିଆର ଶ୍ରମିକ ଏବଂ କୃଷକମାନଙ୍କ ବିରୁଦ୍ଧରେ ଲଢ଼େଇ କରିବାକୁ ଅସ୍ୱୀକାର କରୁଥିଲେ । ରୁଷିଆର ଦକ୍ଷିଣରେ ହସ୍ତକ୍ଷେପକାରୀ "ଜାଁ ବାର୍ଟ" ଓ "ଫ୍ରାନ୍ସ" ନାମକ ଫରାସୀ ନୌତରୀଗୁଡ଼ିକର ନୌସେନାମାନେ ବିଦ୍ରୋହ ଘୋଷଣା କରି ରୁଷ୍ ବିପ୍ଲବ ସହିତ ସଂହତି ପ୍ରଦର୍ଶନ କରି ଲାଲ ପତାକାମାନ ଉଡ଼ାଇଥିଲେ । ୧୯୧୯, ବସନ୍ତକାଳରେ ହସ୍ତକ୍ଷେପକାରୀ ଶକ୍ତିମାନେ ରୁଷିଆର ଦକ୍ଷିଣରୁ ବହିଷ୍କୃତ ହୋଇଥିଲେ । ୧୯୧୯, ଗ୍ରୀଷ୍ମକାଳରେ ସେମାନଙ୍କୁ ତଡ଼ି ଦିଆଯାଇଥିଲା ମଧ୍ୟ ଏସିଆ ଏବଂ ଟ୍ରାନ୍ସକକେସିଆରୁ । ୧୯୨୦ର ପ୍ରାରମ୍ଭରେ ଆମେରିକା ଯୁକ୍ତ ରାଷ୍ଟ୍ର ବାଧ୍ୟ ହୋଇ ସୋଭିଏତ୍ ଦୂର ପ୍ରାଚ୍ୟ ଏବଂ ସୋଭିଏତ୍ ଉତ୍ତରାଞ୍ଚଳରୁ ସୈନ୍ୟ ହଟେଇ ନେଇଥିଲା । ଲେନିନ୍ କହିଥିଲେ, "ବ୍ରିଟିଶ୍ ଏବଂ ଫରାସୀ ସେନାଦଳଗୁଡ଼ିକୁ ହଟିଯିବା ପାଇଁ ବାଧ୍ୟ କରିବା ଦ୍ୱାରା ମିତ୍ର ଶକ୍ତି ଅନ୍ତର୍ଭୁକ୍ତ ଦେଶମାନଙ୍କ ବିରୁଦ୍ଧରେ ସର୍ବବୃହତ୍ ବିଜୟ ହାସଲ କରିଛେ । ଆମେ ସେମାନଙ୍କୁ ସେମାନଙ୍କ ସୈନ୍ୟମାନଙ୍କରୁ ବଞ୍ଚିତ କରିଛେ । ମିତ୍ର ଶକ୍ତି ଅନ୍ତର୍ଗତ ଦେଶମାନଙ୍କର ଅକଳନ ସାମରିକ ଏବଂ କାରିଗରିଗତ ପ୍ରାଧାନ୍ୟ ପ୍ରତି ଆମର ପ୍ରତିକ୍ରିୟା ସ୍ୱରୂପ ଆମେ ସେମାନଙ୍କୁ ସେମାନଙ୍କ ସୈନ୍ୟମାନଙ୍କରୁ ବଞ୍ଚିତ କରିବୁ ସାମ୍ରାଜ୍ୟବାଦୀ ସରକାରମାନଙ୍କ ବିରୁଦ୍ଧରେ ଶ୍ରମଜୀବୀ ଜନସାଧାରଣଙ୍କର ସଂହତି ଜରିଆରେ ।"

୧୯୨୦ ମସିହାର ଶେଷ ବେଳକୁ ଗୃହଯୁଦ୍ଧର ମୋଟାମୋଟି ଭାବେ ଅବସାନ ଘଟିଥିଲା । ଏହି ଯୁଦ୍ଧରେ ସୋଭିଏତ୍ ରାଷ୍ଟ୍ର ବିଜୟ ଲାଭ କଲା ଏବଂ ହସ୍ତକ୍ଷେପକାରୀ ଏବଂ ଆଭ୍ୟନ୍ତରୀଣ ପ୍ରତିବିପ୍ଳବୀ ଶକ୍ତିମାନେ ପରାଜିତ ହେଲେ । ୧୯୨୨ ମସିହାରେ ସୋଭିଏତ୍ ଦୂର ପ୍ରାଚ୍ୟରୁ ଜାପାନୀ ସୈନ୍ୟଦଳଗୁଡ଼ିକ ବିତାଡ଼ିତ ହୋଇଥିଲେ ।

ହସ୍ତକ୍ଷେପକାରୀ ଏବଂ ଆଭ୍ୟନ୍ତରୀଣ ପ୍ରତିବିପ୍ଳବୀ ସେନାବାହିନୀ ବିରୁଦ୍ଧରେ ତିନି ବର୍ଷ ବ୍ୟାପୀ ଯୁଦ୍ଧରେ ସୋଭିଏତ୍ ଜନସାଧାରଣଙ୍କର ବିଜୟ ଦର୍ଶାଇ ଦେଲା ଯେ, ମୁକ୍ତ ଜନସାଧାରଣ ସେମାନଙ୍କ ଭାଗ୍ୟକୁ ନିଜ ହାତକୁ କିପରି ନେଇ ପାରନ୍ତି । ଏହି ବିଜୟ ହାସଲ ହେବା ପଛରେ କାରଣ ହେଲା, ରୁଷିଆର ଶ୍ରମିକ ଶ୍ରେଣୀ ଏବଂ ଶ୍ରମଜୀବୀ କୃଷକମାନେ ସମାଜବାଦୀ ବିପ୍ଳବ ଏବଂ ସୋଭିଏତ୍ କ୍ଷମତାକୁ ରକ୍ଷା କରିବା ପାଇଁ ଏବଂ ସେମାନଙ୍କର ସ୍ୱାଧୀନ, ମୁକ୍ତ ଅସ୍ତିତ୍ୱକୁ ବଜାଏ ରଖିବା ପାଇଁ ଲଢ଼େଇ କରି ପାରିଥିଲେ । ସେମାନେ ବିଜୟ ମଣ୍ଡିତ ହୋଇ ପାରିଲେ, କାରଣ ଲେନିନ୍‌ଙ୍କ ନେତୃତ୍ୱରେ କମ୍ୟୁନିଷ୍ଟ ପାର୍ଟିର ପତାକା ତଳେ ସେମାନେ ଦୃଢ଼ତାର ସହିତ ଐକ୍ୟବଦ୍ଧ ଭାବେ ଦଣ୍ଡାୟମାନ ହୋଇ ପାରିଥିଲେ ।

ଦେଶର ରାଜନୈତିକ ଏବଂ ସାମାଜିକ-ଅର୍ଥନୈତିକ ବିକାଶ ଦୃଷ୍ଟିରୁ ଗୃହଯୁଦ୍ଧର ବର୍ଷଗୁଡ଼ିକ ଥିଲା ଅକ୍ଟୋବର ସମାଜବାଦୀ ବିପ୍ଳବର କ୍ରମାନୁବୃତ୍ତି । ଜୀବନର ସମସ୍ତ କ୍ଷେତ୍ରରେ ୧୯୧୭, ଅକ୍ଟୋବର ସମାଜବାଦୀ ବିପ୍ଳବ ଦ୍ୱାରା ଆରମ୍ଭ ହୋଇଥିବା

ଐତିହାସିକ ରୂପାନ୍ତରଣ ଏହି ସମୟରେ ଆଉରି ଅଧିକ ଶକ୍ତିମତାର ସହିତ କାର୍ଯ୍ୟକାରୀ ହୋଇଥିଲା । ତେବେ, ଏହାର ମୁଖ୍ୟ ରାଜନୈତିକ, ସାମାଜିକ, ଅର୍ଥନୈତିକ ଫଳାଫଳ କ'ଣ ହେଲା ?

ସର୍ବପ୍ରଥମ ଏବଂ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଫଳଟି ହେଲା, ହସ୍ତକ୍ଷେପକାରୀ ଏବଂ ଆଭ୍ୟନ୍ତରୀଣ ପ୍ରତିବିପ୍ଳବୀ ଶକ୍ତିମାନଙ୍କୁ ପରାଜିତ କରି ସୋଭିଏତ୍ ଜନସାଧାରଣ ସୋଭିଏତ୍ ଶାସନକୁ ସୁରକ୍ଷା କରିବା ସାଥେ ସାଥେ ଏହାକୁ ସୁଦୃଢ଼ କରିଥିଲେ । ଦେଶର ଅର୍ଥନୈତିକ ପୁନର୍ଜୀବନ ତଥା ନବାୟନ ପକ୍ଷରେ ଏହା ଥିଲା ଏକ ନିର୍ଣ୍ଣୟମୂଳକ ସର୍ତ୍ତ । ଯୁଦ୍ଧର ଅଗ୍ନିପରୀକ୍ଷା ମଧ୍ୟରେ ସୋଭିଏତ୍ ବ୍ୟବସ୍ଥା ଉତ୍ତୀର୍ଣ୍ଣ ହୋଇ ପାରିଥିଲା । ରୁଷିଆର ବିଭିନ୍ନ ଜାତି ଅଞ୍ଚଳରେ ସୋଭିଏତ୍ ଶାସନକୁ କ୍ଷମତାସୀନ କରାଇଥିଲେ ।

ଦ୍ୱିତୀୟ କଥାଟି ହେଲା, ରୁଷିଆର ସାମାଜିକ ଶ୍ରେଣୀସମୂହ ଏବଂ ରାଜନୈତିକ ପାର୍ଟିମାନଙ୍କ ଐତିହାସିକ ଅଦୃଷ୍ଟ କ୍ଷେତ୍ରରେ ଅକ୍ଟୋବର ବିପ୍ଳବ ଏବଂ ଗୃହଯୁଦ୍ଧ କାଳଟି ଥିଲା ଏକ ଦିଗମୋଡ଼ ଭଳି । ଶହ ଶହ ବର୍ଷ ଧରି କୃଷକମାନଙ୍କୁ ନିର୍ଯ୍ୟାତିତ କରିଥିବା ପରାଙ୍ଗପୁଷ୍ଟ ଜମିଦାର ଶ୍ରେଣୀ ଚିରତର ପାଇଁ ଲୋପ ପାଇ ଯାଇଥିଲେ । ଜନସାଧାରଣଙ୍କ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମର ପଥ ଗ୍ରହଣ କରିଥିବା ବୃହତ୍ ବୁର୍ଜୁଆମାନେ ମଧ୍ୟ ଧ୍ୱଂସ ହୋଇଗଲେ । ଗୃହଯୁଦ୍ଧର ଶେଷ ବେଳକୁ ପ୍ରାୟ ସମସ୍ତ ଶିଳ୍ପ ଓ ଯାନବାହନ ବ୍ୟବସ୍ଥା ରାଷ୍ଟ୍ର ହାତକୁ ଆସି ଯାଇଥିଲା । ପ୍ରତିବିପ୍ଳବୀମାନଙ୍କର ପକ୍ଷ ନେଇଥିବା ଗ୍ରାମାଞ୍ଚଳର ବୁର୍ଜୁଆମାନେ (କୁଲକ୍) ଆଂଶିକ ଭାବେ ଉତ୍ଖାତ ହେଲେ । ଗ୍ରାମାଞ୍ଚଳରେ କୁଲକ୍‌ମାନଙ୍କର ଅଂଶ ତିନିଗୁଣ କମି ଯାଇଥିଲା ।

ସର୍ବହରାମାନଙ୍କ ଅବସ୍ଥାନରେ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଘଟିଥିଲା । ରାଜନୈତିକ ଅଧିକାରହୀନ, ଅର୍ଥନୈତିକ ଭାବେ ନିପୀଡ଼ିତ ଓ ପାଶବିକ ଭାବେ ଶୋଷିତ ଏକ ଶ୍ରେଣୀରୁ ଏହା ରାଜନୈତିକ ଭାବେ ମୁକ୍ତ ଏକ ଶ୍ରେଣୀକୁ ପରିବର୍ତ୍ତିତ ହୋଇଥିଲା ଏବଂ ସମାଜର ରାଷ୍ଟ୍ରୀୟ ନେତୃତ୍ୱ ଗ୍ରହଣ କଲା । ଏହି ଶ୍ରେଣୀର ଅଧିକାଂଶ ଭାଗ ପୁଞ୍ଜିବାଦୀ ଶୋଷଣରୁ ମୁକ୍ତ ହୋଇଥିଲେ । ଶ୍ରମିକ ଶ୍ରେଣୀର ସୃଜନଶୀଳ ଶକ୍ତି ଏବଂ ପ୍ରଭାକୁ ମୁକ୍ତ କରି ଦେଲା ବିପ୍ଳବ । ଏହି ଶ୍ରେଣୀ ନିସ୍ୱାର୍ଥ ଭାବେ କଳକାରଖାନା ଏବଂ ଖଣିଖାଦାନରେ କାମ କରିବାକୁ ଲାଗିଲା । ଗୃହଯୁଦ୍ଧର ବିଭିନ୍ନ ରଣାଙ୍ଗନରେ ଏହା ଲଢ଼େଇ କରିଥିଲା ଅବିଶ୍ୱାସ୍ୟ ସାହସର ସହିତ । ଲାଲ ସେନାର ସର୍ବୋତ୍କୃଷ୍ଟ ଏବଂ ସର୍ବାପେକ୍ଷା ଦୃଢ଼ ୟୁନିଟଗୁଡ଼ିକୁ ସୃଷ୍ଟି କରିଥିଲେ ଏହି ସର୍ବହରାମାନେ ଏବଂ ସେଇ ଲାଲ ସେନା ପ୍ରଜାତନ୍ତ୍ରର ସମସ୍ତ ସଶସ୍ତ୍ର ଶକ୍ତିସମୂହକୁ ଦୃଢ଼ ଭାବେ ଐକ୍ୟବଦ୍ଧ କରିଥିଲା । ଜନସାଧାରଣଙ୍କ ପାଇଁ ସର୍ବାଧିକ ଦୁଃଖକଷ୍ଟ ଭୋଗ କରିଥିଲା ଶ୍ରମିକ ଶ୍ରେଣୀ । ହସ୍ତକ୍ଷେପକାରୀ ଏବଂ ପ୍ରତିବିପ୍ଳବୀମାନଙ୍କ ସଂଗ୍ରାମର ଜ୍ୱାଳା ବହନ କରିଥିଲେ ଏହିମାନେ । ଯୁଦ୍ଧ ମଧ୍ୟ ଦେଇ ଶ୍ରମିକ ଶ୍ରେଣୀ ରୁଷିଆର ଶ୍ରମଜୀବୀ କୃଷକ ଓ ବହୁବିଧ ଅଧିଜାତିମାନଙ୍କୁ

ନିଜ ପକ୍ଷରେ ଏକତ୍ରିତ କରି ପାରିଥିଲା, ଯିଏକି ଶ୍ରମିକ ଶ୍ରେଣୀକୁ ନିଜର ନେତା ବୋଲି ମାନି ନେଇଥିଲା ।

କୃଷକମାନଙ୍କ ଭାଗ୍ୟରେ ପରିବର୍ତ୍ତନ ଘଟିଥିଲା । ଏହା ନିଜକୁ ଜମିଦାରମାନଙ୍କ ଉତ୍ପୀଡ଼ନରୁ ମୁକ୍ତ କରିଥିଲା ଏବଂ ସୋଭିଏତ୍ ରାଷ୍ଟ୍ରଠାରୁ ଭୂମି ଓ କୃଷି ଉପକରଣ ଲାଭ କରିଥିଲା । ଲକ୍ଷ ଲକ୍ଷ ଗରିବ କୃଷକ ମଧ୍ୟବିତ୍ତ ଚାଷୀରେ ପରିଣତ ହେଲେ । ଗୃହଯୁଦ୍ଧର ବର୍ଷମାନଙ୍କରେ କୃଷକମାନେ ସଂପୂର୍ଣ୍ଣ ରୂପେ ସୋଭିଏତ୍ ଶାସନର ସପକ୍ଷରେ ଛିଡ଼ା ହୋଇଥିଲେ । ପ୍ରଥମେ କେତେକ ଜିଲ୍ଲାରେ (ସାଇବେରିଆ, ଭୋଲ୍‌ଗା ଅଞ୍ଚଳ ଏବଂ ୟୁକ୍ରେନ୍) ସେମାନେ ଦୋଦୁଲ୍ୟମାନ ଥିଲେ । କିନ୍ତୁ ହସ୍ତକ୍ଷେପକାରୀ ଏବଂ ପ୍ରତିବିପ୍ଳବୀ କର୍ତ୍ତୃପକ୍ଷଙ୍କ ଦ୍ୱାରା ପ୍ରତିଷ୍ଠିତ ଶାସନର ଅଭିଜ୍ଞତା ଲାଭ କଲା ପରେ ସେମାନେ ଦୃଢ଼ତାର ସହିତ ସୋଭିଏତ୍ ଶାସନକୁ ସମର୍ଥନ ଜଣାଇଥିଲେ । ହସ୍ତକ୍ଷେପକାରୀ ଏବଂ ପ୍ରତିବିପ୍ଳବୀ ଶାସନ ଜମିଦାରମାନଙ୍କ ପ୍ରାଧାନ୍ୟକୁ ପୁନର୍ବାର ପ୍ରତିଷ୍ଠା କରି ଚାଷୀମାନଙ୍କ ଠାରୁ ଜମି କାଢ଼ି ନେଇଥିଲା ।

ସମାଜର ଶ୍ରେଣୀଗତ ଗଢ଼ଣରେ ଗଭୀର ପରିବର୍ତ୍ତନ ରାଜନୈତିକ ପାର୍ଟିମାନଙ୍କର ଭାଗ୍ୟକୁ ନିର୍ଦ୍ଧାରିତ କରି ଦେଇଥିଲା । ବୁର୍ଜୁଆ-ଜମିଦାର ପାର୍ଟିମାନେ—କାଡେଟ୍, ଅକ୍ଟୋବ୍ରିଷ୍ଟ ଏବଂ ଅନ୍ୟମାନେ—ଅକ୍ଟୋବର ବିପ୍ଳବ ମଧ୍ୟ ଦେଇ ନିଶ୍ଚିହ୍ନ ହୋଇ ଯାଇଥିଲେ । ଏହିସବୁ ପାର୍ଟିମାନଙ୍କର ଅସ୍ତିତ୍ୱ ପାଇଁ ଆବଶ୍ୟକ ସାମାଜିକ ଭିତ୍ତି ଲୋପ ପାଇଥିଲା ଜମିଦାର ଓ ପୁଞ୍ଜିପତିମାନଙ୍କର ବିଲୋପ ସଙ୍ଗେ ସଙ୍ଗେ । ଗୃହଯୁଦ୍ଧ କାଳରେ ମେନ୍‌ଶେଭିକ୍, ସମାଜବାଦୀ-ବିପ୍ଳବୀ, ନୈରାଜ୍ୟବାଦୀ, ଜାତୀୟତାବାଦୀମାନଙ୍କ ସମେତ ଅନ୍ୟମାନଙ୍କର ପେଟି-ବୁର୍ଜୁଆ ପାର୍ଟିମାନେ ହସ୍ତକ୍ଷେପକାରୀ ଓ ପ୍ରତିବିପ୍ଳବୀ ଶିବିରରେ ଯୋଗ ଦେଇଥିଲେ । ଏହିସବୁ ପାର୍ଟି ସୋଭିଏତ୍‌ବିରୋଧୀ ବିଦ୍ରୋହ ଘଟେଇଥିଲେ ଏବଂ ସୋଭିଏତ୍ ରାଷ୍ଟ୍ରନୀତିଜ୍ଞମାନଙ୍କ ବିରୁଦ୍ଧରେ ନାଶକତାମୂଳକ କ୍ରିୟାକଳାପ ସୃଷ୍ଟି କରିଥିଲେ (ଦୃଷ୍ଟାନ୍ତ ସ୍ୱରୂପ, ୧୯୧୮, ଅଗଷ୍ଟ ୩୦ ତାରିଖରେ ସମାଜବାଦୀ-ବିପ୍ଳବୀ କାପ୍‌ଲାନ ଲେନିନ୍‌ଙ୍କୁ ବିଷାକ୍ତ ବୁଲେଟ ଦ୍ୱାରା କ୍ଷତବିକ୍ଷତ କରିଥିଲା) । ସେମାନେ ଲୋକଙ୍କ ମଧ୍ୟରେ ଆତଙ୍କ ସୃଷ୍ଟି କରୁଥିଲେ ଏବଂ ଶ୍ରମିକମାନଙ୍କୁ ଧର୍ମଘଟ କରିବା ପାଇଁ ଏବଂ କୃଷକମାନଙ୍କୁ ସୋଭିଏତ୍ ଶାସନ ବିରୁଦ୍ଧରେ ବିଦ୍ରୋହ କରିବା ନିମିତ୍ତ ମତାଉଥିଲେ । ଶ୍ରମଜୀବୀ ଜନସାଧାରଣଙ୍କ ଦୃଷ୍ଟିରେ ସେମାନେ ନିଜକୁ ପୁଞ୍ଜିପତି, ଜମିଦାର ଏବଂ ବିଦେଶୀ ହସ୍ତକ୍ଷେପକାରୀମାନଙ୍କର ଦଲାଲ ରୂପେ ସଂପୂର୍ଣ୍ଣ ଭାବେ ଉଦ୍‌ଘାଟନ କରି ଦେଇଥିଲେ । ଏହା ଫଳରେ ଜନସାଧାରଣଙ୍କ ଠାରୁ ପେଟି-ବୁର୍ଜୁଆ ପାର୍ଟିମାନେ ସଂପୂର୍ଣ୍ଣ ବିଚ୍ଛିନ୍ନ ହୋଇ ପଡ଼ିଥିଲେ ଏବଂ ସେମାନେ ରାଜନୈତିକ ଭାବେ ଦେବାଳିଆ ହୋଇ ପଡ଼ିଥିଲେ ।

ଅନ୍ୟ ଦିଗରେ, ଗୃହଯୁଦ୍ଧ କାଳରେ କମ୍ୟୁନିଷ୍ଟ ପାର୍ଟି ନିଜକୁ ସର୍ବାପେକ୍ଷା ସକ୍ରିୟ ଏବଂ ସଂଗଠିତ ରାଜନୈତିକ ଶକ୍ତି ବୋଲି ପ୍ରମାଣିତ କରିଥିଲା ଏବଂ ଜନସାଧାରଣଙ୍କ

ସ୍ୱାର୍ଥ ତଥା ଦେଶର ସ୍ୱାଧୀନତାକୁ ରକ୍ଷା କରିବା ଦିଗରେ କୌଣସି ଉପାୟ ଏବଂ ପ୍ରଚେଷ୍ଟାକୁ ବାଦ୍ ଦେଇ ନଥିଲ । କମ୍ୟୁନିଷ୍ଟ ପାର୍ଟିର ଅର୍ଦ୍ଧାଧିକ ସଦସ୍ୟ (୩୦୦,୦୦୦) ଲାଲ ସେନାର ସୈନିକ ରୂପେ ଯୁଦ୍ଧ କରିଥିଲେ । ରଣାଙ୍ଗନରେ ସେମାନେ ଥିଲେ ପ୍ରଥମ ଧାଡ଼ିମାନଙ୍କରେ ଏବଂ ଅତୀବ ବିପଦପୂର୍ଣ୍ଣ ସ୍ଥାନମାନଙ୍କରେ । ସେମାନେ ନିଜକୁ ଦୁଃସାହସ, ନିର୍ଭୟ ଏବଂ ଆତ୍ମବଳିଦାନର ପ୍ରତୀକ ରୂପେ ପ୍ରତିଷ୍ଠା କରିଥିଲେ । ୫୦,୦୦୦ରୁ ଅଧିକ କମ୍ୟୁନିଷ୍ଟ ଜନସାଧାରଣଙ୍କର ସ୍ୱାର୍ଥ ପାଇଁ ଯୁଦ୍ଧରେ ପ୍ରାଣ ଦେଇଥିଲେ । ଶ୍ୱେତରକ୍ଷୀ ସୈନ୍ୟବାହିନୀର ପଶ୍ଚାଦ୍‌ଭୂମିରେ କମ୍ୟୁନିଷ୍ଟମାନେ ଗୋପନ କ୍ରିୟାକଳାପ ଚଳାଇ ଗେରିଲା ଆନ୍ଦୋଳନକୁ ପରିଚାଳନା କରୁଥିଲେ ଏବଂ ହସ୍ତକ୍ଷେପକାରୀ ତଥା ଶ୍ୱେତରକ୍ଷୀମାନଙ୍କ ବିରୁଦ୍ଧରେ ଶ୍ରମିକ କୃଷକମାନଙ୍କୁ ଜାଗ୍ରତ କରିଥିଲେ ।

ଗୃହଯୁଦ୍ଧକାଳୀନ ବର୍ଷମାନଙ୍କରେ ଜନସାଧାରଣଙ୍କ ମଧ୍ୟରେ କମ୍ୟୁନିଷ୍ଟ ପାର୍ଟିର ସମ୍ମାନ ଅନେକ ବେଶି ବୃଦ୍ଧି ପାଇଥିଲ । ୧୯୨୦ ମସିହାର ଶେଷ ବେଳକୁ ପାର୍ଟି ସଦସ୍ୟ ସଂଖ୍ୟା ୬୦୦,୦୦୦କୁ ଟପି ଯାଇଥିଲ । ନୂତନ ଜୀବନ ନିର୍ମାଣ ଏବଂ ସେସବୁର ସୁରକ୍ଷା କରିବା ପାଇଁ ଶ୍ରମିକ ତଥା କୃଷକମାନଙ୍କୁ ନେତୃତ୍ୱ ଦେବା ଦିଗରେ ପାର୍ଟି ବିପୁଳ ଅଭିଜ୍ଞତା ଅର୍ଜନ କରିଥିଲ । ରୁଷିଆର ଅନ୍ୟତମ ସୁବିଖ୍ୟାତ ବିଜ୍ଞାନୀ କ୍ଲିମେଣ୍ଟ ତିମିରିଆଜେଭ୍ ୧୯୨୦ ମସିହାରେ ଲେଖିଥିଲେ, "ରୁଷିଆର ହଜାର ବର୍ଷ ବ୍ୟାପୀ ଅସ୍ତିତ୍ୱ ମଧ୍ୟରେ ଏପରି ସାଧୁତା, ବୁଦ୍ଧିମତା, ପ୍ରଜ୍ଞା, ପ୍ରତିଭା ଏବଂ ଲୋକଙ୍କ ପ୍ରତି ଏପରି ଆନୁଗତ୍ୟ କୌଣସି ସରକାର ମଧ୍ୟରେ ଦେଖିବା ଅସମ୍ଭବ, ଯେପରି କି ବଲ୍‌ଶେଭିକ୍‌ମାନଙ୍କ ମଧ୍ୟରେ ଦେଖିବାକୁ ମିଳିଛି ବୋଲି ଯେକୌଣସି ନିରପେକ୍ଷ ରୁଷ୍ ଲୋକ ସ୍ୱୀକାର କରିବ ।"

ଅକ୍ଟୋବର ବିପ୍ଳବ ଏବଂ ଗୃହଯୁଦ୍ଧ ଫଳରେ ଦେଶର ପୁନର୍ଜାଗରଣ ଏବଂ ନୂତନ, ସମାଜବାଦୀ ପଥରେ ନବାୟନ ପାଇଁ ଅବସ୍ଥାରାଜି ସୃଷ୍ଟି ହୋଇଥିଲ । ଉତ୍ପାଦନର ଉପାୟ ଉପକରଣ ଉପରେ ବୁର୍ଜୁଆ ମାଲିକାନା ସ୍ଥାନରେ ସର୍ବସାଧାରଣ ମାଲିକାନା ପ୍ରତିଷ୍ଠା ଉତ୍ପାଦନକୁ ବ୍ୟକ୍ତି ପୁଞ୍ଜିପତିମାନଙ୍କର ଲାଭ ପରିବର୍ତ୍ତେ ଲୋକଙ୍କ ଆବଶ୍ୟକତାକୁ ପୂରଣ କରିବା ଦିଗରେ ପରିଚାଳିତ କରାଗଲ । ଯୋଜନା ଅନୁଯାୟୀ ଉତ୍ପାଦନ ପରିଚାଳନା କରିବା ମଧ୍ୟ ସମ୍ଭବ ହେଲ । ଶୋଷଣର ବିଲୋପ ଦ୍ୱାରା ଶ୍ରମଜୀବୀ ଜନସାଧାରଣଙ୍କ ମଧ୍ୟରେ ସୃଷ୍ଟି ହେଲ ବିପୁଳ ସୃଜନମୂଳକ ଶକ୍ତି । ସେମାନେ ଏବେ ଆଗ୍ରହୀ ହୋଇ ଉଠିଲେ ଉତ୍ପାଦନଶୀଳତାର ଅଭିବୃଦ୍ଧି ଏବଂ ଜାତୀୟ ଅର୍ଥନୀତିର ଦ୍ରୁତ ବିକାଶ ପାଇଁ । ଜମିଦାରମାନଙ୍କ ଅତ୍ୟାଚାର ଲୋପ ଫଳରେ କୃଷକମାନଙ୍କ ଖମାରର ଦ୍ରୁତ ବିକାଶ ଏବଂ କୃଷକମାନଙ୍କର ବୈଷୟିକ ଅବସ୍ଥାର ବିକାଶ ନିମିତ୍ତ ଅବସ୍ଥାରାଜି ସୃଷ୍ଟି ହେଲ ।

ନିକଟ ଭବିଷ୍ୟତରେ ଦେଶର ସମୃଦ୍ଧି ପାଇଁ ଏସବୁ ପ୍ରଦାନ କରିଥିଲ ସମ୍ଭାବନାମାନ । କିନ୍ତୁ ଏହିସବୁ ସୁବିଧା ସୁଯୋଗରାଜିକୁ ସଙ୍ଗେ ସଙ୍ଗେ ଉପଯୋଗ

କରିବା ସମ୍ଭବ ନଥିଲା । କାରଣ, ପ୍ରଥମ ବିଶ୍ୱ ଯୁଦ୍ଧ, ହସ୍ତକ୍ଷେପ ଏବଂ ଗୃହଯୁଦ୍ଧ ଦ୍ୱାରା ସୃଷ୍ଟ କ୍ଷତରାଜି ଏବଂ ଧ୍ୱଂସପ୍ରାପ୍ତ ଜାତୀୟ ଅର୍ଥନୀତିର ପୁନଃସ୍ଥାପନ ପାଇଁ ଦରକାର ପଡ଼ିଥିଲା କିଛି ବର୍ଷ । କିନ୍ତୁ ସେ ସମସ୍ୟାର ସମାଧାନ କରିବା ଦିଗରେ ନୂଆ ସାମାଜିକ ବ୍ୟବସ୍ଥାର ସୁବିଧାସୁଯୋଗ ପରିଷ୍କାର ହୋଇ ଉଠିଥିଲା ।

ବିଖ୍ୟାତ ଇଂରେଜ ଔପନ୍ୟାସିକ ଏଚ୍.ଜି.ଓ୍ୱେଲସ୍ ତାଙ୍କ ଦ୍ୱାରା ଲିଖିତ "ଛାୟାଛନ୍ନ ରୁଷିଆ" ନାମକ ଏକ ପୁସ୍ତକରେ ୧୯୨୦, ଶରତ କାଳରେ ତାଙ୍କ ରୁଷ୍ ଗସ୍ତ ବର୍ଣ୍ଣନା କରିଛନ୍ତି । ସେ ଲେଖିଥିଲେ, "ରୁଷ୍ ବିଷୟରେ ଆମର ମୁଖ୍ୟ ଧାରଣାଟି ହେଲା, ବିଶାଳ ପରିମାଣର ଅପୂରଣୀୟ ଧ୍ୱଂସ" । ଏହା ଏକ ତିକ୍ତ ସତ୍ୟ । ପ୍ରଥମ ବିଶ୍ୱ ଯୁଦ୍ଧ ଏବଂ ଗୃହଯୁଦ୍ଧ କାଳରେ ଜନସଂଖ୍ୟା ୨ କୋଟିରୁ ଅଧିକ ହ୍ରାସ ପାଇଥିଲା । ୧୯୧୩ ମସିହା ତୁଳନାରେ ୧୯୨୦ ମସିହାରେ ବୃହଦାକାର ଶିଳ୍ପ କ୍ଷେତ୍ରରେ ଉତ୍ପାଦନ କମିଯାଇଥିଲା ସାତ ଗୁଣ, ସୂତା ଉତ୍ପାଦନ ୧୯ଶ ଶତାବ୍ଦୀର ମଧ୍ୟ ଭାଗର ସ୍ତରକୁ, ଲୌହ ପିଣ୍ଡ ଉତ୍ପାଦନ ୨୦୦ ବର୍ଷର ପଛକୁ କମି ଯାଇଥିଲା । ଯାନବାହନ ବ୍ୟବସ୍ଥା ଅଚଳ ହୋଇ ପଡ଼ିଥିଲା । କୃଷି ଉତ୍ପାଦନ କମି ଯାଇଥିଲା ଦୁଇ ଗୁଣ । ଜନସାଧାରଣ ଅତ୍ୟାବଶ୍ୟକ ଜିନିଷପତ୍ରର ତୀବ୍ର ଅଭାବ ଅନୁଭବ କରିଥିଲେ ।

ସୋଭିଏତ୍ ରୁଷିଆର ଏହି ଭୟଙ୍କର ଧ୍ୱଂସ ପାଇଁ ଦାୟୀ ହେଲେ ଆନ୍ତର୍ଜାତିକ ସାମ୍ରାଜ୍ୟବାଦ ଓ ଆଭ୍ୟନ୍ତରୀଣ ପ୍ରତିବିପ୍ଳବ । ଏଚ୍.ଜି.ଓ୍ୱେଲସ୍ ନିଶ୍ଚୟ କମ୍ୟୁନିଷ୍ଟ ମତବାଦର ଲୋକ ନଥିଲେ, କିନ୍ତୁ ସେ ଥିଲେ ସତ୍ ପ୍ରକୃତିର ମଣିଷ । ତେଣୁ ସେ ସତ୍ୟ କଥା କହିବାକୁ ଅନୁଭବ କରିଥିଲେ । ସେ ତାଙ୍କର ପାଠକମାନଙ୍କୁ ଉଦ୍ଦିଷ୍ଟ କରି ଲେଖିଥିଲେ, "ଏହି ଦୁଃଖ ଦୁର୍ଦ୍ଦଶା ଏବଂ ହ୍ରାସପ୍ରାପ୍ତ ଶକ୍ତିର ଦୃଶ୍ୟ ପାଇଁ, ଆପଣମାନେ କହିବେ, ବଲ୍‌ଶେଭିକ୍ ରାଜତ୍ୱ ଦାୟୀ । ମୁଁ କିନ୍ତୁ ତାହା ବିଶ୍ୱାସ କରୁ ନି..."

"କମ୍ୟୁନିଜମ୍ ନିଶ୍ଚୟ ଏହି ବିଶାଳ, କ୍ଷୟମାଣ, ଦେବାଳିଆ ସାମ୍ରାଜ୍ୟକୁ ଛଅ ବର୍ଷ ବ୍ୟାପୀ ସର୍ବନାଶୀ ଯୁଦ୍ଧ ମଧ୍ୟକୁ ଠେଲି ଦେଇ ନଥିଲା । କମ୍ୟୁନିଜମ୍ କେବେ ଏହି ଯନ୍ତ୍ରଣା ଗ୍ରସ୍ତ ଏବଂ ସମ୍ଭବତଃ ମୁମୂର୍ଷୁ ରୁଷିଆ ଉପରେ ଗୋଟାକ ପରେ ଗୋଟାଏ ସାହାଯ୍ୟ ପ୍ରାପ୍ତ ଚକ୍ରାନ୍ତ, ଆକ୍ରମଣ, ଅଭ୍ୟୁତ୍‌ଥାନର ଅକଥ୍ୟ ଦୁଃଖକୁ ଲଦି ଦେଇ ନଥିଲା କି ଭୟଙ୍କର ଘେରଉ ମଧ୍ୟରେ ପକେଇ ନଥିଲା । ପ୍ରତିହିଂସାପରାୟଣ ଫରାସୀ ଋଣଦାତା, ସାମ୍ବାଦିକ ବ୍ରିଟିଶ୍ ନିର୍ବୋଧ ବ୍ୟକ୍ତିବୃନ୍ଦ ଏହିସବୁ ମୃତ୍ୟୁସମ ଦୁଃସ୍ଥତା ପାଇଁ କମ୍ୟୁନିଷ୍ଟମାନଙ୍କ ଅପେକ୍ଷା ଅଧିକ ଦାୟୀ ।"

ରାଜନୈତିକ ଜଟିଳ ପରିସ୍ଥିତି ଦ୍ୱାରା ଅର୍ଥନୈତିକ ଅସୁବିଧାରାଜି ଆଉରି ଜଟିଳ ହୋଇ ଉଠିଥିଲା । ଗୃହଯୁଦ୍ଧର ଅବସାନ ପରେ ଏବଂ ଜମିଦାରମାନେ ପୁଣି ଫେରିଯିବାର ବିପଦ ଦୂର ହେଲା ପରେ କୃଷକମାନେ ପ୍ରକାଶ୍ୟରେ ବାଧ୍ୟତାମୂଳକ ଖାଦ୍ୟ ଶସ୍ୟ ଯୋଗାଣ ନୀତି ପ୍ରତି ଅସନ୍ତୋଷ ପ୍ରକାଶ କରିଥିଲେ । ଏହି ନୀତି ଫଳରେ ସେମାନଙ୍କର

ଆଉ କୌଣସି ବଳକା ଶସ୍ୟ ରହୁ ନଥିଲା । ସେମାନେ ଏହାର ଅବସାନ ପାଇଁ ଦାବୀ କରିଥିଲେ । ସେମାନେ ଚାହିଁଥିଲେ, ସେମାନଙ୍କର ବଳକା ଜିନିଷକୁ ଅବାଧରେ ବିକ୍ରି କରି ସେଥିରୁ ମିଳୁଥିବା ଅର୍ଥରେ ଶିଳ୍ପଜାତ ଜିନିଷ କିଣିବାକୁ । ସମାଜବାଦୀ-ବିପ୍ଳବୀମାନେ ବାଧ୍ୟତାମୂଳକ ଖାଦ୍ୟ ନୀତି ବିରୁଦ୍ଧରେ କୃଷକମାନଙ୍କର ଅସନ୍ତୋଷକୁ ଉପଯୋଗ କରିଥିଲେ ଏବଂ କୁଲକ୍‌ମାନଙ୍କ ବିଦ୍ରୋହ ସଂଗଠିତ କରିଥିଲେ । କେତେକ ଅଞ୍ଚଳରେ ଏହି ବିଦ୍ରୋହକୁ ବେଶ୍ କେତେକ ମଧ୍ୟବିତ୍ତ କୃଷକ ମଧ୍ୟ ସମର୍ଥନ କରିଥିଲେ ।

ଯୁଦ୍ଧ ଫଳରେ ଯେଉଁ ଦୁଃଖକଷ୍ଟ ସୃଷ୍ଟି ହେଲା, ତା' ଫଳରେ କେତେକ ଶ୍ରମିକଙ୍କ ମଧ୍ୟରେ ଅସନ୍ତୋଷ ଦେଖାଦେଇଥିଲା । ଏହି ଅସନ୍ତୋଷର ସୁବିଧା ନେଇ ମେନ୍‌ଶେଭିକ ଏବଂ ସମାଜବାଦୀ-ବିପ୍ଳବୀମାନେ ଶ୍ରମିକମାନଙ୍କୁ ଡାକ ଦେଇଥିଲେ ଧର୍ମଘଟ କରିବାକୁ । ଏହା ଫଳରେ ଶ୍ରମିକ ଶ୍ରେଣୀ ମଧ୍ୟରେ ଏକ ବିପଦପୂର୍ଣ୍ଣ ଅନୈକ୍ୟ ଦେଖାଦେବାକୁ ବସିଲା : ଅଧିକାଂଶ କଳକାରଖାନା ଅଚଳ ଥିବାରୁ ବହୁ ଶ୍ରମିକ ଗ୍ରାମାଞ୍ଚଳକୁ ଚାଲି ଯାଇଥିଲେ ନିଜକୁ ଜୀବନ ବଞ୍ଚାଇବା ପାଇଁ କିଛି କାର୍ଯ୍ୟ କରିବାକୁ ବା ହସ୍ତଶିଳ୍ପରେ ନିଜକୁ ନିୟୋଜିତ କରିବା ପାଇଁ ।

ଏହିପରି ଏକ ଅସାଧାରଣ ଅସୁବିଧା ଏବଂ ଜଟିଳ ଅବସ୍ଥାରାଜି ମଧ୍ୟରେ ସୋଭିଏତ୍ ଜନସାଧାରଣ ଦେଶକୁ ପୁନର୍ଜାଗ୍ରତ ଏବଂ ପୁନର୍ନିର୍ମିତ କରିବାକୁ ବାହାରି ଥିଲେ ।

ଗୃହଯୁଦ୍ଧର ଶେଷ ବେଳକୁ ସୋଭିଏତ୍ ରାଷ୍ଟ୍ର ବିଦ୍ୟୁତୀକରଣ ଉପରେ ଭିତ୍ତି କରି ଦେଶର ଅର୍ଥନୈତିକ ପୁନରାଭ୍ୟୁଦୟ ପାଇଁ ଏକ ଯୋଜନା ପ୍ରଣୟନ କରିଥିଲା । ୧୯୨୦ ମସିହାରେ ଲେନିନ୍‌ଙ୍କ ନିର୍ଦ୍ଦେଶ କ୍ରମେ ଏକ ବିଶେଷ କମିସନ ଏହି ଯୋଜନାଟି ରଚନା କରିଥିଲେ । ଏହି କମିସନରେ ଥିଲେ ସୁପରିଚିତ ବିଦ୍ୟୁତ୍ ଇଂଜିନିୟର, ଅର୍ଥନୀତିବିଦ୍ ଏବଂ ଅନ୍ୟାନ୍ୟ ବିଶେଷଜ୍ଞମାନେ । କମିସନର ନେତୃତ୍ୱ ନେଇଥିଲେ ଲେନିନ୍‌ଙ୍କର ଦୀର୍ଘ ଦିନର ସାଥୀ, ବଲ୍‌ଶେଭିକ୍ ଏବଂ ଅଭିଜ୍ଞ ଇଂଜିନିୟର ଗ୍ଲେବ୍ ଖ୍ରଝିଝାନୋଭ୍‌ସି ।

୧୯୨୦ ମସିହା ଡିସେମ୍ବର ମାସରେ ସୋଭିଏତ୍‌ସମୂହର ପଞ୍ଚମ ନିଖିଳ ରୁଷ୍ କଂଗ୍ରେସ ଦ୍ୱାରା ଏହି ବିଦ୍ୟୁତୀକରଣ ଯୋଜନାଟି ଅନୁମୋଦିତ ହୋଇଥିଲା । ଏହି ଯୋଜନା ଅନୁସାରେ ୧୦-୧୫ ବର୍ଷ ମଧ୍ୟରେ ୧.୫ ନିୟୁତ କିଲୋଓ୍ୱାଟ ଶକ୍ତି ବିଶିଷ୍ଟ ୩୦ଟି ବୃହତ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କେନ୍ଦ୍ର ନିର୍ମିତ ହେବାର ଥିଲା । ଏହି ଯୋଜନାର ଉଦ୍ଦେଶ୍ୟ ହେଲା ବିଧ୍ୱସ୍ତ ଶିଳ୍ପକୁ ପୁନଃପ୍ରତିଷ୍ଠିତ କରିବା, ଶିଳ୍ପର ବିକାଶ ପାଇଁ ପୁରାତନ କାରଖାନାଗୁଡ଼ିକର କାରିଗରୀ ପୁନର୍ନିର୍ମାଣ କରିବା ଏବଂ ବିଶେଷ କରି ଉତ୍ପାଦନର ଉପାୟ ଉପକରଣ ନିର୍ମାଣକାରୀ କାରଖାନାସମୂହକୁ ନିର୍ମାଣ କରିବା – ଧାତୁଶିଳ୍ପ,

ଇଂଜିନିୟରିଂ, ଆଦି, ଏବଂ ଏସବୁର ଉତ୍ପାଦନ କ୍ଷମତାକୁ ଶତକଡ଼ା ୧୦୦ ଭାଗ ବୃଦ୍ଧି କରିବା ।

ବିଶ୍ୱର ଜନସାଧାରଣ ଏହି ଯୋଜନାର ତତ୍କାଳୀନ ବିପୁଳ ସମ୍ଭାବନାର ଖବର ଶୁଣି ଆଚମ୍ବିତ ହୋଇ ପଡ଼ିଥିଲେ । ଏଚ୍.ଜି. ଓ୍ୱେଲସ୍ ଲେଖିଥିଲେ, "ବିଶାଳ ଜଙ୍ଗଲଭରା ଭୂଖଣ୍ଡ ଏବଂ ନିରକ୍ଷର କୃଷକମାନଙ୍କୁ ନେଇ ଏହା ଠାରୁ ଆଉରି ଦୁଃସାହସିକ ଯୋଜନା କଥା କେହି କ'ଣ, ଚିନ୍ତା କରି ପାରିବ ? ସେ ଦେଶରେ ପାଣି ନାହିଁ, କାରିଗରୀ ଦକ୍ଷତା ନାହିଁ ଏବଂ ବାଣିଜ୍ୟ ଆଉ ଶିଳ୍ପ ଶେଷ ନିଶ୍ୱାସ ପକାଇବାରେ ଲାଗିଛି ?" ଓ୍ୱେଲସ୍ ଲେନିନ୍‌ଙ୍କୁ କ୍ରେମଲିନ୍‌ର ସ୍ୱପ୍ନଚାରୀ ବୋଲି ଅଭିହିତ କରିଥିଲେ ଏବଂ କହିଥିଲେ, ଲେନିନ୍ "କଳ୍ପନାବିଳାସିତାର ଆଶ୍ରୟ ନେଇଛନ୍ତି, ସେ କଳ୍ପନାବିଳାସ ହେଉଛି ବିଦ୍ୟୁତ୍ କାରିଗରମାନଙ୍କ କଳ୍ପନାବିଳାସ ।" କିନ୍ତୁ ଓ୍ୱେଲସ୍ ଭୁଲ କରିଥିଲେ, ଲେନିନ୍‌ଙ୍କ ବିଦ୍ୟୁତୀକରଣ ଯୋଜନା ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ସଂପାଦିତ ହୋଇଥିଲା ।

ଶାନ୍ତିପୂର୍ଣ୍ଣ ବିକାଶ କାଳରେ ସୋଭିଏତ୍ ରାଷ୍ଟ୍ରର ମୁଖ୍ୟ ନୀତିଟି ଥିଲା, ସମାଜବାଦ ପାଇଁ ଅର୍ଥନୈତିକ ମୂଳଭିତ୍ତି ସ୍ଥାପନ କରିବା । ଏହି ହାସଲ ପାଇଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସର୍ତ୍ତଟି ହେଲା ସହର ଆଉ ଗ୍ରାମ ମଧ୍ୟରେ ସଠିକ ଅର୍ଥନୈତିକ ସଂପର୍କ ପ୍ରତିଷ୍ଠା କରିବା । ସେ ସମସ୍ୟାକୁ ସମାଧାନ କଲା ଭଳି ଏକ ନୂତନ ଅର୍ଥନୈତିକ ନୀତିର ଆବଶ୍ୟକତା ଥିଲା । ସେ ଭଳି ଏକ ନୀତିର ମୂଳଦୁଆ ରଚନା କରିଥିଲେ ଲେନିନ୍. ଏବଂ ଏହା କମ୍ୟୁନିଷ୍ଟ ପାର୍ଟିର ଦଶମ କଂଗ୍ରେସରେ ଗୃହୀତ ହୋଇ ନିଖିଳ ରୁଷ୍ କେନ୍ଦ୍ର କାର୍ଯ୍ୟକାରୀ କମିଟି ଦ୍ୱାରା ଅନୁମୋଦନ ଲାଭ କରିଥିଲା । ୧୯୨୧ ମସିହା ବସନ୍ତକାଳରେ ଏହାର ରୂପାୟନ ଆରମ୍ଭ ହୋଇଥିଲା ।

ନୂତନ ଅର୍ଥନୈତିକ ନୀତିର ପ୍ରଥମ ପଦକ୍ଷେପ ହେଲା ବାଧ୍ୟତାମୂଳକ ଖାଦ୍ୟ ଶସ୍ୟ ଯୋଗାଣ ପରିବର୍ତ୍ତେ ଜିନିଷପତ୍ର ଆକାରରେ ଦୃଢ଼ ଟିକସ ବ୍ୟବସ୍ଥା ପ୍ରଚଳନ । ଏହି ଟିକସର ପରିମାଣ ଧାର୍ଯ୍ୟ କରାଗଲା ସଂପତ୍ତିର ପରିମାଣ ଅନୁଯାୟୀ : ଗରିବ କୃଷକମାନଙ୍କ କିଛି ଦେବାକୁ ପଡ଼ିଲା ନାହିଁ, ମଧ୍ୟବିତ୍ତ ଚାଷୀମାନେ ସାମାନ୍ୟ ଟିକସ ଦେଲେ ଏବଂ କୁଲାକ୍‌ମାନଙ୍କୁ ଅଧିକ ଦେବାକୁ ପଡ଼ିଲା । ଇତିପୂର୍ବରୁ ବାଧ୍ୟତାମୂଳକ ଖାଦ୍ୟ ଶସ୍ୟ ଯୋଗାଣ ଦ୍ୱାରା ଯାହା ଦେବାକୁ ପଡ଼ୁଥିଲା, ଏବେ ଏହି ଟିକସ ବ୍ୟବସ୍ଥା ଫଳରେ ଅର୍ଦ୍ଧେକ ହେଲା । କୃଷକମାନେ ଏବେ ଟିକସ ଦେବା ପରେ ଅବଶିଷ୍ଟ ବଳକା ଖାଦ୍ୟ ଶସ୍ୟକୁ ଅବାଧରେ ବଜାରରେ ବିକ୍ରି କରି ଶିଳ୍ପଜାତ ଦ୍ରବ୍ୟ କିଣି ପାରିଲେ । ସହର ଏବଂ ଗ୍ରାମ ମଧ୍ୟରେ ମୁଖ୍ୟ ଅର୍ଥନୈତିକ ସଂପର୍କର ରୂପ ହେଲା ବାଣିଜ୍ୟ । ବ୍ୟକ୍ତିଗତ ବାଣିଜ୍ୟ କରିବାକୁ ମଧ୍ୟ ଅନୁମତି ଦିଆଗଲା । ରାଷ୍ଟ୍ରୀୟ ଏବଂ ସମବାୟ ବାଣିଜ୍ୟ ମଧ୍ୟ ବିକାଶ ଲାଭ କରିବାକୁ ଲାଗିଲା ।

ଅଧିକ କୃଷିଜାତ ଜିନିଷ ଉତ୍ପାଦନ କରିବା ପାଇଁ ଏସବୁ କୃଷକମାନଙ୍କୁ ଯୋଗାଇ ଦେଲା ବୈଷୟିକ ପ୍ରୋତ୍ସାହନ । ଏହା କୃଷକମାନଙ୍କ ପାଇଁ ତଥା ସମଗ୍ର ସମାଜ ପାଇଁ ଥିଲା ଉପକାରୀ ।

ନୂତନ ଅର୍ଥନୈତିକ ନୀତିକୁ ଉତ୍ତରଣ ସାଥେ ସାଥେ କମ୍ୟୁନିଷ୍ଟ ପାର୍ଟି ଗ୍ରାମାଞ୍ଚଳରେ ସମସ୍ତ ପ୍ରକାରର ସମବାୟର ବିକାଶକୁ ଉତ୍ସାହ ଯୋଗାଇଥିଲା । ଏହି ସମବାୟର ବିକାଶ ମଧ୍ୟରେ ଲେନିନ୍ କେବଳ ଗ୍ରାମାଞ୍ଚଳ ସହିତ ସହରକୁ ଅର୍ଥନୈତିକ ଭାବେ ଯୋଗ କରିବାର ବା କୃଷକମାନଙ୍କର ଉତ୍ପାଦିକା ଶକ୍ତିସମୂହର ଦକ୍ଷତା ବୃଦ୍ଧି କରିବାର ଏକ ଉପାୟ ରୂପେ ଦେଖି ନଥିଲେ, ଛୋଟ ଛୋଟ କୃଷକ ଜମିଜମାକୁ ବୃହତ୍ ମିଳିତ ଖମାରରେ ଏକତ୍ରିତ କରିବାର ଉପାୟ ବୋଲି ବିଚାର କରିଥିଲେ । ଲେନିନ୍ ଲେଖିଥିଲେ, "ସମବାୟ ନୀତି ସାଫଲ୍ୟମଣ୍ଡିତ ହେଲେ, ଏହା ଛୋଟ ଅର୍ଥନୀତିକୁ ଉନ୍ନତ କରିବ ଏବଂ ଅନିର୍ଦ୍ଦିଷ୍ଟ ସମୟ କାଳ ମଧ୍ୟରେ ଏହାକୁ ରୂପାନ୍ତରିତ କରିବ ସ୍ୱେଚ୍ଛାକୃତ ସମିତିର ଭିତ୍ତିରେ ବୃହଦାକାର ଉତ୍ପାଦନରେ" ।

ବୃହଦାକାର ଶିଳ୍ପର ପୁନଃସ୍ଥାପନ ପାଇଁ ରାଷ୍ଟ୍ର ସମସ୍ତ ସମ୍ବଳ ଏବଂ ଉଦ୍ୟମକୁ ଠୁଳ କରିଥିଲା । ଏହା ଫଳରେ ଶିଳ୍ପକୁ ପୁନର୍ଜୀବିତ କରି ଜନବସତିକୁ ଯଥା ଶୀଘ୍ର ସମ୍ଭବ, ଜିନିଷପତ୍ରର ଉତ୍ପାଦନ ବୃଦ୍ଧି କରି ଯୋଗାଇ ଦିଆଯାଇ ପାରିବ । ରାଷ୍ଟ୍ର ତରଫରୁ ବହୁ କ୍ଷୁଦ୍ର ଶିଳ୍ପୋଦ୍ୟୋଗକୁ ସମବାୟ ସମିତି ବା ବ୍ୟକ୍ତିବିଶେଷଙ୍କୁ ଭଡ଼ା ଲଗାଇ ଦିଆଯାଇଥିଲା । ଆଉ କେତେକ ବୃହତ୍ ଏବଂ ମଧ୍ୟମ ଆକାରର ଶିଳ୍ପୋଦ୍ୟୋଗକୁ ସୁବିଧାଜନକ ସର୍ତ୍ତରେ ବିଦେଶୀ ପୁଞ୍ଜିପତିମାନଙ୍କୁ ହସ୍ତାନ୍ତରିତ କରାଯାଇଥିଲା । ବ୍ୟକ୍ତିବିଶେଷଙ୍କୁ ମଧ୍ୟ ଅନୁମତି ଦିଆଗଲା କ୍ଷୁଦ୍ର କ୍ଷୁଦ୍ର ଶିଳ୍ପୋଦ୍ୟୋଗ ନିର୍ମାଣ କରିବାକୁ ।

ରାଷ୍ଟ୍ରାୟତ୍ତ ଶିଳ୍ପସମୂହର ପରିଚାଳନାକୁ ପୁନର୍ଗଠିତ କରାଗଲା । ପରିଚାଳନାର ଅତ୍ୟଧିକ କେନ୍ଦ୍ରୀୟକରଣକୁ ଲୋପ କରି ଦିଆଗଲା ଏବଂ ସ୍ଥାନୀୟ ଅର୍ଥନୈତିକ ପରିଚାଳନା ସଂସ୍ଥାସମୂହର ଅଧିକାରକୁ ବଢ଼ାଇ ଦିଆଗଲା । ଶିଳ୍ପୋଦ୍ୟୋଗମାନେ ସେମାନଙ୍କ କଞ୍ଚାମାଲ, ଜାଳେଣି ଯୋଗାଡ଼ ଏବଂ ସେମାନଙ୍କ ଉତ୍ପନ୍ନ ବିକ୍ରି କରିବାରେ କିଛି ପରିମାଣରେ ସ୍ୱାଧୀନତା ଲାଭ କଲେ । ରାଷ୍ଟ୍ରୀୟ ଅର୍ଥରେ ଗଢ଼ି ଉଠିଥିବା କଳକାରଖାନାସବୁରେ ଅର୍ଥନୈତିକ ହିସାବକିତାବ ଦେବାକୁ ବାଧ୍ୟ ହେଲେ । ଏହିସବୁ କଳକାରଖାନାଗୁଡ଼ିକୁ ଅର୍ଥନୈତିକ ଯୋଜନାର ଭିତ୍ତିରେ କାର୍ଯ୍ୟ କରିବାକୁ ପଡ଼ିଲା ଏବଂ ସେମାନେ କେବଳ ସେମାନଙ୍କ ବ୍ୟୟ ଅନୁଯାୟୀ ଆୟ କଲେ ନାହିଁ, ଲାଭ ଦେଖାଇବାକୁ ପଡ଼ିଲା । ଏହି ଲାଭର ଏକ ଅଂଶ ଗଲା ରାଷ୍ଟ୍ରର ସମାଜବାଦୀ ଅର୍ଥନୀତିର ବିକାଶକୁ । ଶିଳ୍ପୋଦ୍ୟୋଗଗୁଡ଼ିକ ଲୋକ ଯୋଗାଣର ପଦ୍ଧତିରେ ମଧ୍ୟ ପରିବର୍ତ୍ତନ ଘଟିଲା : ଗୃହଯୁଦ୍ଧ କାଳରେ ବାଧ୍ୟତାମୂଳକ ସାର୍ବିକ ଶ୍ରମ ଏବଂ ଶ୍ରମ ସଞ୍ଚାଳନକୁ ଉଠାଇ ଦିଆଗଲା । ଶିଳ୍ପୋଦ୍ୟୋଗମାନେ କର୍ମସଂସ୍ଥାମାନଙ୍କ ଜରିଆରେ ଶ୍ରମିକମାନଙ୍କୁ ନିମନ୍ତ୍ରଣ

ଜଣାଇଲେ । ଏହିସବୁ କର୍ମଯୋଗାଣ ସଂସ୍ଥା ବେକାରମାନଙ୍କ ହିସାବ ରଖୁଥିଲେ ଏବଂ ଶିଳ୍ପୋଦ୍ୟୋଗ ବା ସଂଗଠନମାନଙ୍କର ଆବେଦନ କ୍ରମେ ସେମାନଙ୍କୁ କାମକୁ ପଠାଇ ଦେଉଥିଲେ ।

ସମାଜବାଦୀ ନୀତି ଅନୁଯାୟୀ ମଜୁରି ବ୍ୟବସ୍ଥା ମଧ୍ୟ ରଚିତ ହେଲା : ଶ୍ରମର ପରିମାଣ ଏବଂ ଗୁଣ ଅନୁଯାୟୀ ବେତନ ଦିଆଗଲା । ଗୃହଯୁଦ୍ଧ କାଳରେ ମଜୁରି ବ୍ୟବସ୍ଥା ଥିଲା ସମପରିମାଣର–ଦକ୍ଷ ଏବଂ ଅଦକ୍ଷ ଶ୍ରମିକଙ୍କ ମଜୁରି ପ୍ରାୟ ସମାନ ଥିଲା । ଲେନିନ୍ ଲେଖିଥିଲେ, "ସେଇସବୁ ବର୍ଷମାନଙ୍କରେ ପ୍ରତ୍ୟେକକୁ ସମ୍ଭବ ମୁତାବକ ସମାନ ପରିମାଣରେ ଯୋଗାଇବା, ଖୁଆଇବା ଏବଂ ସାହାଯ୍ୟ କରିବାକୁ ଚାହିଁବାଟା ସଂପୂର୍ଣ୍ଣ ରୂପେ ଯୁକ୍ତିଯୁକ୍ତ ଥିଲା । ସେତେବେଳ ପର୍ଯ୍ୟନ୍ତ ଉତ୍ପାଦନକୁ ପୁନଃପ୍ରତିଷ୍ଠିତ କରିବା ସମ୍ଭବ ହୋଇ ନଥିଲା ।" କିନ୍ତୁ ଶାନ୍ତିପୂର୍ଣ୍ଣ ବିକାଶକୁ ଉତ୍ତରଣ ସାଥେ ସାଥେ ଶ୍ରମର ମଜୁରି କ୍ଷେତ୍ରରେ ସମପରିମାଣର ନୀତି ଉତ୍ପାଦନର ବିକାଶ ଦିଗରେ ବାଧା ହୋଇ ଛିଡ଼ା ହେଲା । ନୂତନ ମଜୁରି ବ୍ୟବସ୍ଥା ଦ୍ୱାରା ଶ୍ରମିକମାନେ ବୈଷୟିକ ପ୍ରୋତ୍ସାହନ ଲାଭ କଲେ, ସେମାନଙ୍କ ଦକ୍ଷତା ଏବଂ ଉତ୍ପାଦନଶୀଳତା ବୃଦ୍ଧି କରିବା ନିମିତ୍ତ । ଶିଳ୍ପୋଦ୍ୟୋଗମାନଙ୍କରେ ଦୃଢ଼ ଶୃଙ୍ଖଳାବୋଧ ପ୍ରତିଷ୍ଠା ଦିଗରେ ଏହି ବ୍ୟବସ୍ଥା ସହାୟକ ହେଲା ।

ଅବାଧ ବ୍ୟକ୍ତିଗତ ବାଣିଜ୍ୟ, ସୁବିଧା ଦାନ ଏବଂ ବ୍ୟକ୍ତିବିଶେଷଙ୍କ ହାତରେ ରାଷ୍ଟ୍ରାୟତ୍ତ ଶିଳ୍ପୋଦ୍ୟୋଗଗୁଡ଼ିକୁ ପ୍ରଦାନ – ଏହିସବୁ ପଦକ୍ଷେପ ଫଳରେ ଦେଶର ଅର୍ଥନୀତି କ୍ଷେତ୍ରରେ ପୁଞ୍ଜିବାଦୀ ଉପାଦାନସମୂହର କିଛି ବିକାଶ ଘଟିଥିଲା । ଅର୍ଥନୈତିକ ପ୍ରାଧାନ୍ୟ ନିମିତ୍ତ ପୁଞ୍ଜିବାଦୀ ଏବଂ ସମାଜବାଦୀ ଉପାଦାନ ଦ୍ୱୟ ମଧ୍ୟରେ ଲଢ଼େଇ ଲାଗିଗଲା । କିନ୍ତୁ ଅର୍ଥନୀତିରେ ନିଷ୍ପତ୍ତିମୂଳକ ଅବସ୍ଥାନଗୁଡ଼ିକ (ବୃହତ୍ ଏବଂ ମଧ୍ୟମ ଧରଣର ଶିଳ୍ପ, ଯାନବାହନ, ଭୂମି, ବିଦେଶୀ ବାଣିଜ୍ୟ ଉପରେ ଏକଚ୍ଛଟିଆ) ସେପର୍ଯ୍ୟନ୍ତ ଥିଲା ସୋଭିଏତ୍ ରାଷ୍ଟ୍ର ହାତରେ । ସମାଜବାଦୀ କ୍ଷେତ୍ରକୁ ରାଷ୍ଟ୍ର ଦୃଢ଼ କରିବା ସାଥେ ସାଥେ ବିକଶିତ କରି ଚାଲିଥାଏ ସମସ୍ତ ଉପାୟରେ । ଅନ୍ୟ ଦିଗରେ ପୁଞ୍ଜିବାଦୀ ଉପାଦାନକୁ ସୀମିତ କରିବା ଏବଂ କ୍ରମଶଃ ଉଚ୍ଛେଦ କରିବାର ନୀତି ଅବଲମ୍ବନ କରି ଚାଲିଥାଏ । ଏହି ଭାବେ ସମାଜବାଦୀ କ୍ଷେତ୍ରର ବିଜୟ ସେ ସଂଗ୍ରାମରେ ଅର୍ଜ୍ଜିତ ହୋଇଥିଲା ।

ନୂତନ ଅର୍ଥନୈତିକ ନୀତି ଶ୍ରମିକ ଶ୍ରେଣୀ ଏବଂ କୃଷକମାନଙ୍କ ମଧ୍ୟରେ ଏକ ଦୃଢ଼ ଅର୍ଥନୈତିକ ମୈତ୍ରୀ ସ୍ଥାପନ କଲା, ସୋଭିଏତ୍ ରାଷ୍ଟ୍ରକୁ ଶକ୍ତିଶାଳୀ କଲା ଏବଂ ସମାଜବାଦୀ ପଥରେ, ଅର୍ଥାତ୍, ସମାଜବାଦର ବିଜୟ ଦିଗରେ ଦେଶର ଉତ୍ପାଦିକା ଶକ୍ତିସମୂହର ବିକାଶକୁ ସହାୟକ ହେଲା ।

କୃଷକମାନେ ନୂତନ ଅର୍ଥନୈତିକ ନୀତିକୁ ସନ୍ତୋଷର ସହିତ ଗ୍ରହଣ କରି ନେଲେ ।

୧୯୨୧ ମସିହା ବସନ୍ତ କାଳରେ ସେମାନେ ଅଧିକ ଜମିରେ ଫସଲ ଫଳେଇଲେ । କିନ୍ତୁ ସେ ବର୍ଷ ପ୍ରଧାନ ଶସ୍ୟଉତ୍ପାଦନକାରୀ ଅଞ୍ଚଳରେ : ଭୋଲ୍‌ଗା ଅଞ୍ଚଳ, ୟୁକ୍ରାଇନ୍ ଏବଂ ଉତ୍ତର କକେସସ୍‌ରେ ଏକ ଭୟଙ୍କର ମରୁଡ଼ି ଦେଖାଦେଲା ।

ଦୁର୍ଭିକ୍ଷଗ୍ରସ୍ତ ଜନସାଧାରଣଙ୍କୁ ରକ୍ଷା କରିବା ପାଇଁ ସୋଭିଏତ୍ ସରକାର ବ୍ୟାପକ ପଦକ୍ଷେପମାନ ଗ୍ରହଣ କଲା ଅବିଳମ୍ବେ । ମରୁଡ଼ିଗ୍ରସ୍ତ ଅଞ୍ଚଳକୁ ପ୍ରେରଣ କରାଗଲା ଲକ୍ଷ ଲକ୍ଷ ଟନ୍ ଖାଦ୍ୟଶସ୍ୟ, ସର୍ବସାଧାରଣ କାର୍ଯ୍ୟ ଜରିଆରେ ଲୋକଙ୍କୁ ଖାଦ୍ୟ ରେସନ ଯୋଗାଇଲା ଏବଂ ସର୍ବସାଧାରଣ ଭୋଜନାଳୟ, ବିଶେଷ କରି ପିଲାମାନଙ୍କ ପାଇଁ ସ୍ଥାପନ କରାଗଲା । ମହାମାରୀକୁ ରୋକିବା ପାଇଁ ବ୍ୟାପକ ବ୍ୟବସ୍ଥାମାନ କରାଗଲା । ଦେଶ ସାରା ଖାଦ୍ୟଶସ୍ୟର ସଦ୍‌ବ୍ୟବହାର ପାଇଁ ଏକ ଆନ୍ଦୋଳନ ଚାଲିଲା, ଏହି ଆନ୍ଦୋଳନରେ ଡାକ ଥିଲା : "ଭଲ ଖାଉଥିବା ଦଶଜଣ ଲୋକ ଜଣେ ଭୋକିଲା ଲୋକକୁ ଖୁଆନ୍ତୁ !"

ବିଦେଶର "ଆନ୍ତର୍ଜାତିକ ଶ୍ରମିକ ରିଲିଫ୍‌ର କମିଟି" ଆୟୋଜନ ହେଲା କ୍ଲାରା ଜେଟ୍‌କିନ୍‌ଙ୍କ ନେତୃତ୍ୱରେ । ସେ ଥିଲେ ଜଣେ ଜର୍ମାନ୍ କମ୍ୟୁନିଷ୍ଟ ନାରୀ ଏବଂ ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରଖ୍ୟାତ ନେତ୍ରୀ । ପୁଞ୍ଜିବାଦୀ ଦେଶମାନଙ୍କରେ ଶ୍ରମିକମାନଙ୍କ ଦ୍ୱାରା ସଂଗୃହୀତ ଅର୍ଥରେ ରୁଷିଆର ଭୋକିଲା ଜନସାଧାରଣଙ୍କ ନିମିତ୍ତ କିଣାଗଲା ଖାଦ୍ୟ ଆଉ ଔଷଧ । ଦୁର୍ଭିକ୍ଷପ୍ରପୀଡ଼ିତ ପ୍ରଦେଶମାନଙ୍କରେ କେତେକ ଶିଶୁ ସଦନ ନିର୍ମିତ ହୋଇଥିଲା "ଆନ୍ତର୍ଜାତିକ ଶ୍ରମିକ ରିଲିଫ୍ କମିଟିର" ପାଣ୍ଠି ସାହାଯ୍ୟରେ । ପାଶ୍ଚାତ୍ୟର ପ୍ରଗତିଶୀଳ ବୁଦ୍ଧିଜୀବୀମାନଙ୍କ ତରଫରୁ ଭୋକିଲା ଲୋକଙ୍କ ପାଇଁ ସହାୟତାର ବ୍ୟବସ୍ଥା କରାଯାଇଥିଲା । ସେହିସବୁ ପ୍ରଗତିମନା ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଥିଲେ ନରଓ୍ୱେବାସୀ ପ୍ରଖ୍ୟାତ ମେରୁ ଆବିଷ୍କାରକ ଫ୍ରିଦ୍‌ତୋଫ୍ ନାନ୍‌ସେନ୍, ପ୍ରଖ୍ୟାତ ଫରାସୀ ଲେଖକ ହେନ୍‌ରି ବାର୍‌ବୁସେ, ଆନାତୋଲି ଫ୍ରାନ୍‌ସ ଏବଂ ଅନ୍ୟମାନେ । ଆଉ କିଛି ସାହାଯ୍ୟ ଆସିଥିଲା ଆମେରିକା ଯୁକ୍ତ ରାଷ୍ଟ୍ରର ଜନସାଧାରଣଙ୍କ ପକ୍ଷରୁ ।

ଏହିସବୁ ସାହାଯ୍ୟ ଫଳରେ ଲକ୍ଷ ଲକ୍ଷ ଲୋକଙ୍କର ଜୀବନ ରକ୍ଷା ପାଇ ଯାଇଥିଲା । ଖାଦ୍ୟଶସ୍ୟ ଆକାରରେ ରାଷ୍ଟ୍ର ପକ୍ଷରୁ କୃଷକମାନଙ୍କୁ ସାହାଯ୍ୟ, ଆନ୍ତର୍ଜାତିକ ଶ୍ରମଜୀବୀମାନଙ୍କ ପକ୍ଷରୁ ସଂହତି ଏବଂ ୧୯୨୨ ଓ ୧୯୨୩ ମସିହାର ସୁଫସଲ ୧୯୨୧ ମସିହାର ମରୁଡ଼ିର କୁଫଳକୁ ଅତିକ୍ରମ କରିବାରେ ସହାୟକ ହୋଇଥିଲା, ଦେଶକୁ ଖାଦ୍ୟ ଯୋଗାଇ ଜନସାଧାରଣଙ୍କ ଅବସ୍ଥାକୁ ଉନ୍ନତ କରିବାରେ ସକ୍ଷମ କରିଥିଲା ।

ରାଷ୍ଟ୍ର ପକ୍ଷରୁ ଅନୁମତି ଦିଆଗଲା ଜମିକୁ ଖଜଣାରେ ଦେବା ଏବଂ ଭଡ଼ାଟିଆ ଶ୍ରମିକକୁ କାମରେ ଲଗାଇବା ପାଇଁ । ଏପରି କରିବାର ଲକ୍ଷ୍ୟ ଥିଲା ଦ୍ରୁତ କୃଷିଜାତ ଜିନିଷର ଉତ୍ପାଦନ ବୃଦ୍ଧି । ଜମିକୁ ଖଜଣାରେ ଲଗାଇବା ଏବଂ ଭଡ଼ାଟିଆ ଶ୍ରମିକ ବ୍ୟବହାର କରିବାକୁ ବିପ୍ଳବର ଠିକ୍ ପରେ ପରେ ସୋଭିଏତ୍ ଶାସନ ଦ୍ୱାରା ନିଷିଦ୍ଧ

କରି ଦିଆଯାଇଥିଲା । ଏହା ଥିଲା କୃଷକମାନଙ୍କର ଦାବୀ । ତେବେ, ତା ସତ୍ତ୍ୱେ ଗ୍ରାମାଞ୍ଚଳରେ ଏହି ଉଭୟ କାର୍ଯ୍ୟ ଚାଲିଥିଲା । ସୋଭିଏତ୍ ସରକାର ଠାରୁ ପ୍ରାୟ ବଡ଼ ବଡ଼ ଜୋତକୁ ଚାଷ କରିବା ପାଇଁ ଗରିବ କୃଷକ ଏବଂ ଗରିବ ମଧ୍ୟବିତ୍ତ ଚାଷୀମାନଙ୍କ ପାଖରେ ଯଥେଷ୍ଟ କୃଷି ଉପକରଣ ଏବଂ ବେଳେ ବେଳେ ଘୋଡ଼ା ଆଦି ନଥିଲା । ତେଣୁ କରି ଏହିସବୁ ଚାଷୀ ସ୍ୱଚ୍ଛଳ କୃଷକମାନଙ୍କୁ ସେମାନଙ୍କ ଜମିକୁ ଖଜଣାରେ ଭଡ଼ା ଲଗାଇ ଦେବାକୁ ଲାଗିଲେ । ସ୍ୱଚ୍ଛଳ କୃଷକମାନେ କଠୋର ସର୍ତ୍ତରେ ଏହି କାର୍ଯ୍ୟ କରୁଥିଲେ ଗୋପନତାର ସହିତ । ଅନ୍ୟ ଦିଗରେ ଗରିବ କୃଷକମାନେ ସେମାନଙ୍କର କ୍ଷୁଦ୍ର ଜମିଜମାରୁ ନିଜର ଗୁଜରାଣ ନମେଣ୍ଟେଇ ପାରି କୁଲାକ୍‌ମାନଙ୍କ ଅଧୀନରେ ସମସ୍ତ ନିଷିଦ୍ଧକରଣ ସତ୍ତ୍ୱେ ଯାଇ କାର୍ଯ୍ୟ କରୁଥିଲେ । ଏହି କାର୍ଯ୍ୟ ଆଇନ୍‌ବିରୋଧୀ ହୋଇଥିବାରୁ କୁଲାକ୍‌ମାନେ ସେମାନଙ୍କୁ ପ୍ରତିକୂଳ ସର୍ତ୍ତରେ କାର୍ଯ୍ୟ କରାଉଥିଲେ ।

ଜମିକୁ ଖଜଣାରେ ଲଗାଇବା ଏବଂ ଭଡ଼ାରେ ଶ୍ରମିକମାନଙ୍କୁ ଲଗେଇବାର ପ୍ରଚଳିତ ପ୍ରଥା କଥା ବିଚାର କରି ସୋଭିଏତ୍ ରାଷ୍ଟ୍ର ସ୍ଥିର କଲା ଏହି ପ୍ରଥାକୁ ଆଇନସମ୍ମତ କରି ଦେବାକୁ । ଏହା ଦ୍ୱାରା ଗରିବ କୃଷକ ଏବଂ କୃଷି ଶ୍ରମିକମାନଙ୍କର ସ୍ୱାର୍ଥକୁ ରକ୍ଷା କରାଗଲା ଏବଂ କୃଷକମାନଙ୍କର ଶୋଷଣକାମୀ କ୍ଷୁଧାକୁ ସୀମିତ କରି ଦିଆଗଲା । ଗ୍ରାମାଞ୍ଚଳରେ ଜମିକୁ ଖଜଣାରେ ଦେବା ଏବଂ ଭଡ଼ାଟିଆ ଶ୍ରମିକଙ୍କୁ କାମରେ ଲଗାଇବାକୁ ଆଇନସମ୍ମତ କରିବା ଥିଲା ରାଷ୍ଟ୍ରର ସ୍ୱାର୍ଥ ସପକ୍ଷରେ । କାରଣ ଏହା ଦ୍ୱାରା ଅଧିକ ଜମିଚାଷ ହେଲା ଏବଂ କୃଷିଜାତ ସାମଗ୍ରୀର ଉତ୍ପାଦନ ବୃଦ୍ଧି ପାଇଲା ।

ପ୍ରଥମ ବିଶ୍ୱ ଯୁଦ୍ଧ ଏବଂ ଗୃହଯୁଦ୍ଧ କାଳରେ କୃଷକମାନଙ୍କର କୃଷିଯନ୍ତ୍ରପାତି ଏବଂ କୃଷି ମେସିନ୍‌ର ପରିମାଣ ତୀବ୍ର ଭାବେ ହ୍ରାସ ପାଇଥିଲା । ଯେଉଁସବୁ ଯନ୍ତ୍ରପାତି ଥିଲା ସେସବୁ ମଧ୍ୟରୁ ଅଧିକାଂଶ ଥିଲା ମାନଧାତା ଅମଳର, ଭଙ୍ଗାଟୁଟା । ତେଣୁ ଯେତେ ଯେତେ ଶୀଘ୍ର ସମ୍ଭବ, ନୂତନ କୃଷିଯନ୍ତ୍ରପାତି ଗ୍ରାମାଞ୍ଚଳକୁ ଯୋଗାଇ ଦେବା ଜରୁରୀ ହୋଇ ପଡ଼ିଥିଲା । ସୋଭିଏତ୍ ସରକାର ତରଫରୁ କୃଷି ପାଇଁ ଯନ୍ତ୍ରପାତି ତିଆରି କରୁଥିବା ଶିଳ୍ପର ଦ୍ରୁତ ପୁନର୍ଗଠନ ଦିଗରେ ସୋଭିଏତ୍ ସରକାର ପଦକ୍ଷେପ ନେଇଥିଲେ । ୧୯୨୪ ମସିହାରେ ଲେନିନ୍‌ଗ୍ରାଦ୍ ଏବଂ ଖାର୍‌କୋଭ୍‌ରେ ଟ୍ରାକ୍ଟର ଉତ୍ପାଦନ ଆରମ୍ଭ ହେଲା । ସୋଭିଏତ୍ ସରକାର ମଧ୍ୟ ବାହାରୁ ଆମଦାନି କଲା ବହୁ ଟ୍ରାକ୍ଟର ଏବଂ ଅନ୍ୟାନ୍ୟ କୃଷିଯନ୍ତ୍ରପାତି ଏବଂ ଅନୁକୂଳ ସର୍ତ୍ତରେ ସେସବୁକୁ କୃଷକମାନଙ୍କୁ ବିକ୍ରି କରି ଦେଲା ।

୧୯୨୪ ମସିହାରେ ପ୍ରତିଷ୍ଠିତ କେନ୍ଦ୍ରୀୟ କୃଷି ବ୍ୟାଙ୍କ୍ କୃଷକମାନଙ୍କୁ ସ୍ୱଳ୍ପ ସୁଧରେ ଋଣ ଦେଲା ଏବଂ ଏହାର ବହୁ ସ୍ଥାନୀୟ ଶାଖା ମଧ୍ୟ ଦେଶ ସାରା ପ୍ରତିଷ୍ଠା କରାଗଲା ।

୧୯୨୩ ମସିହାରେ କୃଷକମାନେ ସେମାନଙ୍କ କୃଷିଜାତ ଜିନିଷ ବିକ୍ରି କରିବାକୁ ଅସୁବିଧାର ସମ୍ମୁଖୀନ ହେଲେ । କାରଣ ବିକ୍ରି ପାଇଁ ଉଦ୍ଦିଷ୍ଟ ଖାଦ୍ୟଶସ୍ୟ ପାଇଁ ଆଭ୍ୟନ୍ତରୀଣ ବଜାର ଯଥେଷ୍ଟ ନଥିଲା ଏବଂ ବାହାରକୁ ରପ୍ତାନି କରିବାର ବ୍ୟବସ୍ଥା

ସେପର୍ଯ୍ୟନ୍ତ କରାଯାଇ ପାରି ନଥିଲା । ଫଳରେ ଖାଦ୍ୟଶସ୍ୟର ମୂଲ୍ୟ କମି ଗଲା ଏବଂ ଶିଳ୍ପଜାତ ଜିନିଷର ମୂଲ୍ୟ ବଢ଼ି ଗଲା । ସେପର୍ଯ୍ୟନ୍ତ ଶିଳ୍ପଜାତ ଜିନିଷର ଉତ୍ପାଦନ ଥିଲା ସ୍ୱଳ୍ପ । ଏହା ଫଳରେ କୃଷକମାନଙ୍କ ମଧ୍ୟରେ ଅସନ୍ତୋଷ ଦେଖାଦେଲା ।

ସୋଭିଏତ୍ ରାଷ୍ଟ୍ର ଅବିଳମ୍ବେ ପଦକ୍ଷେପ ନେଇଥିଲା ଏହିସବୁ ମୂଲ୍ୟ ମଧ୍ୟରେ ପାର୍ଥକ୍ୟକୁ ଦୂର କରିବା ପାଇଁ । ଶିଳ୍ପଜାତ ଜିନିଷର ମୂଲ୍ୟକୁ କମେଇ ଦିଆଯାଇ ଶସ୍ୟ ଏବଂ ଅନ୍ୟାନ୍ୟ କୃଷିଜାତ ଜିନିଷର ମୂଲ୍ୟକୁ ବଢ଼େଇ ଦିଆଗଲା । ୧୯୨୪ ମସିହାରେ ଅନୁଷ୍ଠିତ ମୁଦ୍ରା ସଂସ୍କାର ଏହି ମୂଲ୍ୟ ଧାର୍ଯ୍ୟ କରିବା ଦିଗରେ ସାହାଯ୍ୟ କଲା ଏବଂ ଏହା ଫଳରେ ସ୍ଥିର ମୁଦ୍ରା ପ୍ରତିଷ୍ଠିତ ହେଲା ।

ବିଦେଶକୁ ଖାଦ୍ୟଶସ୍ୟ ରପ୍ତାନି ମଧ୍ୟ ଆରମ୍ଭ ହୋଇଗଲା । ଏହିସବୁ ପଦକ୍ଷେପ ଫଳରେ କୃଷିର ପୁନଃସ୍ଥାପନ ସମ୍ଭବ ହୋଇଥିଲା ଏବଂ ୧୯୨୫ ମସିହାରେ ଏହି ପ୍ରକ୍ରିୟା ମୋଟାମୋଟି ଭାବେ ପରିପୂର୍ଣ୍ଣ ହୋଇଥିଲା ।

ଧ୍ୱଂସ ସ୍ତୂପ ମଧ୍ୟରୁ କଳକାରଖାନା, ଖଣିଖାଦାନ ଏବଂ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରସମୂହ, ପ୍ରଥମେ ଧୀର ଭାବେ ଏବଂ ପରେ ଆଉରି ଦ୍ରୁତତାର ସହିତ ମୁଣ୍ଡଟେକି ଉଠିବାକୁ ଲାଗିଲା । ୧୯୨୩ ମସିହାରେ ୧୯୨୦ ତୁଳନାରେ ରାଷ୍ଟ୍ରୀୟ ଉଦ୍ୟୋଗସମୂହ ତିନିଗୁଣ ଉତ୍ପାଦନ ବୃଦ୍ଧି କରିଥିଲେ ।

ରାଷ୍ଟ୍ରାୟତ୍ତ ଶିଳ୍ପର ପୁନଃସ୍ଥାପନ କାର୍ଯ୍ୟ ପରିଚାଳିତ ହୋଇଥିଲା ଯୋଜନା ଅନୁଯାୟୀ । ସବୁଠାରୁ ବଡ଼ ବଡ଼ ଏବଂ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଶିଳ୍ପୋଦ୍ୟୋଗଗୁଡ଼ିକୁ ପ୍ରଥମେ ପୁନଃସ୍ଥାପନ କରାଗଲା । ଏହିସବୁ ଶିଳ୍ପୋଦ୍ୟୋଗରେ ଉତ୍ପାଦନ ଆରମ୍ଭ ହୋଇଯିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଶିଳ୍ପୋଦ୍ୟୋଗ ଅଧିକ ସଂଖ୍ୟାରେ କାର୍ଯ୍ୟାରମ୍ଭ କଲା ।

ରାଷ୍ଟ୍ରାୟତ୍ତ ଶିଳ୍ପ କାରଖାନାମାନଙ୍କରେ ମଜୁରି ପ୍ରଦାନରେ ଠିକା ବ୍ୟବସ୍ଥା ଚାଲୁ କରାଗଲା : ଅଧିକ ଦକ୍ଷ ଏବଂ ଅଧିକ ଉତ୍ପାଦନକ୍ଷମ କାର୍ଯ୍ୟ ପାଇଁ କମ୍ ଦକ୍ଷ ତଥା ଅଳ୍ପ ଉତ୍ପାଦନକ୍ଷମ କାର୍ଯ୍ୟ ଅପେକ୍ଷା ଅଧିକ ମଜୁରି ପ୍ରଦାନ କରାଗଲା । ଦୃଷ୍ଟାନ୍ତମୂଳକ କାର୍ଯ୍ୟ ପାଇଁ ଶ୍ରମିକମାନଙ୍କୁ ନଗଦ ବୋନସ ପ୍ରଦାନ କରାଗଲା, ସର୍ବୋତ୍କୃଷ୍ଟ ଶ୍ରମିକମାନେ ଶ୍ରମ-ବୀର ବା ଶ୍ରମର ଲାଲ ପତାକା ଅର୍ଡର ଲାଭ କଲେ ।

ସମସ୍ତଙ୍କର କଲ୍ୟାଣ ପ୍ରତ୍ୟେକର ବ୍ୟକ୍ତିଗତ ଉଦ୍ୟମ ଉପରେ ନିର୍ଭର କରେ—ଏହି କଥା ହୃଦୟଙ୍ଗମ କରି ବଛାବଛା ଶ୍ରମିକମାନେ ଉତ୍ପାଦନ ବୃଦ୍ଧି କରିବା ଦିଗରେ ଉପାୟମାନ ବାହାର କଲେ । ୧୯୨୩ ମସିହାରେ ଆୟୋଜିତ ଉତ୍ପାଦନ-ସମ୍ମିଳନୀଗୁଡ଼ିକ ଶ୍ରମିକମାନଙ୍କ କର୍ମୋଦ୍ୟମକୁ ସଞ୍ଚାଳିତ କରିବାରେ ସହାୟକ ହୋଇଥିଲା । ଏହିସବୁ ସମ୍ମିଳନୀଗୁଡ଼ିକରେ ଇଂଜିନିୟରମାନଙ୍କ ସହିତ ଯୁଗ୍ମ ଭାବେ ବଛାବଛା ଶ୍ରମିକମାନେ ଉତ୍ପାଦନ ଅଭିବୃଦ୍ଧିର ଉତ୍ପାଦନର ସଂଗଠନକୁ ତ୍ରୁଟିହୀନ ଏବଂ ଉନ୍ନତ କରିବା ସଂକ୍ରାନ୍ତ

ପ୍ରଶ୍ନଗୁଡ଼ିକୁ ଆଲୋଚନା କଲେ, ଉତ୍ପାଦନଶୀଳତାର ବୃଦ୍ଧି, ଉତ୍ପନ୍ନର ଗୁଣାତ୍ମକ ଉନ୍ନତି ନିମିତ୍ତ ଯୁକ୍ତିସଙ୍ଗତ ପ୍ରସ୍ତାବମାନ ଦେଲେ ।

ଶ୍ରମିକ ଶ୍ରେଣୀର ବୀରତ୍ୱପୂର୍ଣ୍ଣ ଉଦ୍ୟମ ତଥା ରାଷ୍ଟ୍ରର ଦକ୍ଷ ପରିଚାଳନା ଫଳରେ ଦେଶର ଶିଳ୍ପ ସ୍ୱଳ୍ପ କାଳ ମଧ୍ୟରେ, ମାତ୍ର ପାଞ୍ଚ ବର୍ଷ ମଧ୍ୟରେ ପୁନଃସ୍ଥାପିତ ହୋଇ ପାରିଥିଲା । ଏହା ସମ୍ଭବ ହୋଇ ପାରିଛି ବୋଲି ପାଶ୍ଚାତ୍ୟର ଖୁବ୍ କମ୍ ଲୋକ ବିଶ୍ୱାସ କରିଥିଲେ । ବୁର୍ଜୁଆ ନିରାଶାବାଦୀମାନଙ୍କର ଏତାଦୃଶ ଅବିଶ୍ୱାସ ସତ୍ତ୍ୱେ ସୋଭିଏତ୍ ଦେଶ ତା'ର ଭୟଙ୍କର ଅର୍ଥନୈତିକ ଧ୍ୱଂସର ଫଳାଫଳକୁ ବିଶ୍ୱଯୁଦ୍ଧରେ ଅଂଶଗ୍ରହଣକାରୀ ଦେଶମାନଙ୍କ ଅପେକ୍ଷା ଅନେକ କମ୍ ସମୟ ମଧ୍ୟରେ ଦୂର କରି ପାରିଥିଲା, ଯେଉଁମାନେ କି ତା ତୁଳନାରେ ଅନେକ କମ୍ କ୍ଷୟକ୍ଷତିର ସମ୍ମୁଖୀନ ହୋଇଥିଲେ । ଦୃଷ୍ଟାନ୍ତ ସ୍ୱରୂପ, ଫ୍ରାନ୍ସକୁ ନେଇଥିଲା ୬ ବର୍ଷ ସମୟ ତା'ର ଯୁଦ୍ଧପୂର୍ବ ଉତ୍ପାଦନ ସ୍ତରରେ ପହଞ୍ଚିବାକୁ ଏହାର ୧୯୨୦ର ଶିଳ୍ପ ଉତ୍ପାଦନର ସ୍ତର ଥିଲା ୧୯୧୩ ତୁଳନାରେ ଶତକଡ଼ା ୬୨ ଭାଗ (ରୁଷିଆ କ୍ଷେତ୍ରରେ ଏହି ପରିମାଣ ଥିଲା ମାତ୍ର ୧୪ ଭାଗ) । ଜର୍ମାନୀ ପକ୍ଷରେ ଲାଗିଥିଲା ୯ ବର୍ଷ ।

# ୧୮ଶ ପରିଚ୍ଛେଦ

## ବହୁଜାତିକ ରାଷ୍ଟ୍ର – ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ର ସଂଘ ଗଠନ

ମାନବ ଜାତିର ଇତିହାସରେ ବହୁ ରାଷ୍ଟ୍ରର ଅଭ୍ୟୁଦୟ ଘଟିଛି, ଯେଉଁଗୁଡ଼ିକ ବହୁବିଧ ଜାତିକୁ ନେଇ ଗଠିତ ହୋଇଛନ୍ତି । ସେସବୁ ମଧ୍ୟରେ ନେପୋଲିଅନ୍‌ଙ୍କ ଫରାସୀ ସାମ୍ରାଜ୍ୟ, ଅଷ୍ଟ୍ରୋ-ହଙ୍ଗେରୀୟ ରାଜତନ୍ତ୍ର, ବ୍ରିଟିଶ୍ ସାମ୍ରାଜ୍ୟ, ରୁଷ୍ ସାମ୍ରାଜ୍ୟ, ଆଦି, ହେଲେ ଅନ୍ୟତମ । ନିୟମଗତ ଭାବେ ଏହିସବୁ ରାଷ୍ଟ୍ର ଜନ୍ମ ନେଇଥିଲେ ଦିଗ୍‌ବିଜୟ ଏବଂ ଅନ୍ୟାନ୍ୟ ଜାତିମାନଙ୍କୁ ଗୋଟିଏ ଗୋଟିଏ ଜାତିର ଶାସକ ସମ୍ଭ୍ରାନ୍ତମାନଙ୍କର ଦାସରେ ପରିଣତ କରିବା ଦ୍ୱାରା । ଦୃଷ୍ଟାନ୍ତ ସ୍ୱରୂପ, ବ୍ରିଟିଶ୍ ସାମ୍ରାଜ୍ୟରେ ଥିବା ଭୂଖଣ୍ଡଗୁଡ଼ିକ ମଧ୍ୟରେ ପ୍ରଥମ ବିଶ୍ୱଯୁଦ୍ଧର ପ୍ରାକ୍‌କାଳରେ ମାନବଜାତିର ଏକଚତୁର୍ଥାଂଶ ଲୋକ ବାସ କରୁଥିଲେ । ବ୍ରିଟିଶ୍ ବୁର୍ଜୁଆ ଏହିସବୁ ଜାତିମାନଙ୍କ ଉପରେ ସଂପୂର୍ଣ୍ଣ ଆଧିପତ୍ୟ ବିସ୍ତାର କରିଥିଲେ ଏବଂ ସେସବୁ ଉପନିବେଶରୁ ବିପୁଳ ପରିମାଣର ଧନସଂପଦ ନିଜ ଦେଶକୁ ବହି ଆଣିଥିଲେ ।

ଏହିସବୁ ବହୁଜାତିକ ସାମ୍ରାଜ୍ୟ ଶକ୍ତି ବଳରେ "ଐକ୍ୟବଦ୍ଧ ହୋଇ ରହିଥିବାରୁ" ସେଗୁଡ଼ିକ ଦାସତ୍ୱ ଶୃଙ୍ଖଳାବଦ୍ଧ ଜାତିମାନଙ୍କ ପକ୍ଷରେ ଥିଲା ବନ୍ଦୀଶାଳା ଭଳି । ସେମାନଙ୍କ ଶାସନ ଚଳାଇଯିବା ପାଇଁ ଔପନିବେଶିକ ଶକ୍ତିମାନଙ୍କର ଶାସକ ସମ୍ଭ୍ରାନ୍ତମାନେ, ଯେଉଁମାନେ କି ସଂଖ୍ୟାଗତ ଦୃଷ୍ଟିରୁ ସାମ୍ରାଜ୍ୟସ୍ଥ ଜନସଂଖ୍ୟାର ଏକ ସାମାନ୍ୟ ଅଂଶ ଥିଲେ, ପ୍ରାଚୀନ ରୋମ୍‌ର ଦିଗ୍‌ବିଜୟୀମାନଙ୍କର ନୀତିକୁ ଅନୁସରଣ କରୁଥିଲେ : "ବିଭେଦ କରି ଶାସନ କର" । ଏହା ଗୋଟିଏ ନିଷ୍ପେଷିତ ଜାତିକୁ ଅନ୍ୟ ଏକ ନିଷ୍ପେଷିତ ଜାତି ବିରୁଦ୍ଧରେ ଲଗାଇ ଦେଉଥିଲା, ସେମାନଙ୍କୁ ବିଭେଦଗ୍ରସ୍ତ କରୁଥିଲା ଏବଂ ଅତ୍ୟାଚାରୀମାନଙ୍କ ବିରୁଦ୍ଧରେ ଏକାଠି ଲଢ଼ାଇ କରିବାରେ ବାଧା ସୃଷ୍ଟି କରୁଥିଲା । ବୁର୍ଜୁଆ-ଜମିଦାର ଶାସିତ ରୁଷିଆରେ ସେଇ ଭଳି ଅବସ୍ଥା ବିରାଜମାନ କରୁଥିଲା ବିପ୍ଳବ ପୂର୍ବରୁ । ଜାର୍‌ତନ୍ତ୍ର ଅଣରୁଷୀୟମାନଙ୍କ ବିରୁଦ୍ଧରେ ରୁଷ୍ ଲୋକଙ୍କୁ, ତୁର୍କମାନଙ୍କ ବିରୁଦ୍ଧରେ ଆର୍ମେନୀୟମାନଙ୍କୁ, ଇହୁଦୀମାନଙ୍କ ବିରୁଦ୍ଧରେ ରୁଷ୍ ଲୋକଙ୍କୁ ଲଗାଇ

ଦେଉଥିଲା । ଏହା ଫଳରେ ଜାର୍‌ତନ୍ତ୍ର ସକ୍ଷମ ହେଉଥିଲା ରୁଷ୍ ଶ୍ରମିକ କୃଷକମାନଙ୍କ ସମେତ ଅନ୍ୟାନ୍ୟ ଅଣରୁଷୀୟ ଜାତିମାନଙ୍କ ଉପରେ ଏହାର କ୍ଷମତା ବିସ୍ତାର କରିବାକୁ ।

ସୋଭିଏତ୍ ଶାସନ, ଶ୍ରମିକ ଓ କୃଷକମାନଙ୍କର ଶାସନ ହେଲା ଏକାନ୍ତ ଭାବେ ଆନ୍ତର୍ଜାତିକତାବାଦୀ ଚରିତ୍ରସଂପନ୍ନ । ଏହା ଜାତି ବର୍ଣ୍ଣ ନିର୍ବିଶେଷରେ ସମସ୍ତ ଜାତିଙ୍କୁ ଐକ୍ୟବଦ୍ଧ କରିବା ଦିଗରେ ଖୁବ୍ ଆଗ୍ରହୀ । ସୋଭିଏତ୍ ଶାସନର ନୀତିରାଜି ଉପରେ ଏକ ଐକ୍ୟବଦ୍ଧ, ଅବିଭାଜ୍ୟ ବହୁଜାତିକ ରାଷ୍ଟ୍ର ଗଠିତ ହେଲା – ତା'ର ନାମ ହେଲା ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ର ସଂଘ । ଏହା ଗଠିତ ହୋଇଥିଲା ସମାନ, ସାର୍ବଭୌମ ସୋଭିଏତ୍ ପ୍ରଜାତନ୍ତ୍ରଗୁଡ଼ିକର ସ୍ୱେଚ୍ଛାକୃତ ମିଳନ ମାଧ୍ୟମରେ । ଏହିସବୁ ପ୍ରଜାତନ୍ତ୍ର ମଧ୍ୟରୁ ପ୍ରତ୍ୟେକ ସୋଭିଏତ୍ ୟୁନିଅନ୍‌ରୁ ଅବାଧରେ ବିଛିନ୍ନ ହୋଇଯିବାର ଅଧିକାର ସମେତ ସ୍ୱାଧୀନ ରାଷ୍ଟ୍ର ରୂପେ ଅଧିକାର ଲାଭ କରିଥିଲେ । ଏବଂ ପ୍ରକୃତ ଘଟଣାଟି ହେଲା, ଏପର୍ଯ୍ୟନ୍ତ କୌଣସି ପ୍ରଜାତନ୍ତ୍ର ଏହି ଅଧିକାରକୁ କାର୍ଯ୍ୟରେ ଲଗାଇ ନାହାନ୍ତି, ଏଥିରୁ ଜଣାଯାଏ, ଏହି ସଂଘର ସଦସ୍ୟ ହେବାଟା ଥିଲା ପ୍ରତିଟି ପ୍ରଜାତନ୍ତ୍ରର ସର୍ବୋଚ୍ଚ ସ୍ୱାର୍ଥ ସହିତ ସଙ୍ଗତିଶୀଳ ।

୧୯୨୨ ମସିହାର ଶେଷରେ ସୋଭିଏତ୍ ୟୁନିଅନ୍ ଗଠିତ ହୋଇଥିଲା, କିଛି କାଳ ପର୍ଯ୍ୟନ୍ତ ସ୍ୱାଧୀନ ସୋଭିଏତ୍ ପ୍ରଜାତନ୍ତ୍ରଗୁଡ଼ିକ ଅଲଗା ଅଲଗା ଭାବେ ତିଷ୍ଠି ରହିଲା ପରେ । ସୋଭିଏତ୍ ପ୍ରଜାତନ୍ତ୍ରଗୁଡ଼ିକର ଗୁରୁତ୍ୱପୂର୍ଣ୍ଣ ସ୍ୱାର୍ଥ ସେମାନଙ୍କୁ ପ୍ରୋତ୍ସାହିତ କରିଥିଲା ଏକ ସଂଘୀୟ ରାଷ୍ଟ୍ର ଗଠନ କରିବା ନିମିତ୍ତ । ନିମ୍ନ ରୂପେ ଏହା ଘଟିଥିଲା ।

"ରୁଷିଆର ଜାତିମାନଙ୍କର ଅଧିକାର ସଂକ୍ରାନ୍ତ ଐତିହାସିକ ଘୋଷଣାନାମାଟି" ଘୋଷିତ ହୋଇଥିଲା ସୋଭିଏତ୍ ସରକାରଙ୍କ ଦ୍ୱାରା ୧୯୧୭ ନଭେମ୍ବର ୧୫ ତାରିଖ (୨) ଦିନ । ଏହି ଘୋଷଣାନାମାରେ ବିଛିନ୍ନ ହୋଇଯିବାର ଅଧିକାର ସମେତ ଜାତିମାନଙ୍କର ଆତ୍ମନିୟନ୍ତ୍ରଣ ଅଧିକାର ଘୋଷଣା କରାଯାଇଥିଲା । ଜାର୍‌ତନ୍ତ୍ର ଦ୍ୱାରା ପୂର୍ବେ ନିର୍ଯାତିତ ଜାତିମାନଙ୍କର ଜାତୀୟ ସ୍ୱାଧୀନତା ଏବଂ ମୁକ୍ତି ପାଇଁ ସ୍ୱାଭାବିକ ଅଭିପ୍ରାୟକୁ ଏହା ଦ୍ୱାରା ସ୍ୱୀକାର କରାଯାଉଥିଲା । ଅକ୍ଟୋବର ବିପ୍ଳବ ପରେ ଜାତୀୟ ସୋଭିଏତ୍ ପ୍ରଜାତନ୍ତ୍ରଗୁଡ଼ିକ ଗଠିତ ହୋଇଥିଲା : ୟୁକ୍ରେଇନ, ବେଲରୁଷିଆ, ଏସ୍ତୋନିଆ, ଲାଟ୍‌ଭିଆ, ଲିଥୁଆନିୟା, ଆଜର୍‌ବୈଜାନ, ଆର୍ମେନିଆ ଏବଂ ଜର୍ଜିଆ ପ୍ରଜାତନ୍ତ୍ରସମୂହ । ରୁଷୀୟ ପ୍ରଜାତନ୍ତ୍ରସମୂହର ସରକାର ସେମାନଙ୍କ ସାର୍ବଭୌମତ୍ୱକୁ ସ୍ୱୀକୃତି ଦାନ କରିଥିଲେ । ରୁଷୀୟ ପ୍ରଜାତନ୍ତ୍ର ନିଜକୁ ଏକ ସଂଘ ବୋଲି ୧୯୧୮, ଜାନୁଆରୀ ମାସରେ ଘୋଷଣା କଲା : ରୁଷୀୟ ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ର ସଂଘ । ଏହି ପ୍ରଜାତନ୍ତ୍ର ସଂଘର ଭୂଖଣ୍ଡ ମଧ୍ୟରେ ଅନେକଗୁଡ଼ିଏ ସ୍ୱାୟତ୍ତଶାସିତ ପ୍ରଜାତନ୍ତ୍ର ଏବଂ ଅଞ୍ଚଳ ପ୍ରତିଷ୍ଠିତ ହେଲା ୧୯୧୮-୧୯୨୨ ମଧ୍ୟରେ : ତୁର୍କିସ୍ତାନ, ତାତାର, ବାସକିର୍,

କାରେଲୀୟ ଏବଂ ଅନ୍ୟାନ୍ୟ ପ୍ରଜାତନ୍ତ୍ରସମୂହ । ଏହିସବୁ ସ୍ୱାୟତଶାସିତ ପ୍ରଜାତନ୍ତ୍ରଗୁଡ଼ିକ ଥିଲା ନିଜସ୍ୱ ସାମ୍ବିଧାନିକ ଏବଂ କାର୍ଯ୍ୟକାରୀ ସଂସ୍ଥାସମୂହ ।

ଜାତୀୟ ସୋଭିଏତ୍ ପ୍ରଜାତନ୍ତ୍ରଗୁଡ଼ିକର ସ୍ୱାଧୀନତା ଏବଂ ଅସ୍ତିତ୍ୱ ବିଦେଶୀ ହସ୍ତକ୍ଷେପ ଏବଂ ଗୃହଯୁଦ୍ଧ କାଳରେ ବିପଦାପନ୍ନ ହୋଇ ପଡ଼ିଥିଲା । ସେମାନଙ୍କୁ ରକ୍ଷା କରିବାର ଏକମାତ୍ର ଉପାୟ ଥିଲା ନିବିଡ଼ ସାମରିକ ମେଣ୍ଟ ଜରିଆରେ । ୧୯୧୯ ମସିହାରେ ସେଭଳି ଏକ ମେଣ୍ଟ ଗଠିତ ହୋଇଥିଲା । ଏସ୍ତୋନିଆ, ଲାଟ୍‌ଭିଆ ଏବଂ ଲିଥୁଆନିଆ ପ୍ରଜାତନ୍ତ୍ର ଛଡ଼ା ଅନ୍ୟାନ୍ୟ ଅଧିକାଂଶ ପ୍ରଜାତନ୍ତ୍ରର ଜାତୀୟ ସ୍ୱାଧୀନତାକୁ ରକ୍ଷା କରିବାରେ ଏହା ଏକ ନିଷ୍ପତ୍ତିମୂଳକ ଭୂମିକା ପାଳନ କରିଥିଲା । ପ୍ରଥମୋକ୍ତ ତିନୋଟି ପ୍ରଜାତନ୍ତ୍ରରେ ସ୍ଥାନୀୟ ପ୍ରତିକ୍ରିୟାଶୀଳ ଶକ୍ତିମାନେ ହସ୍ତକ୍ଷେପକାରୀମାନଙ୍କ ସହାୟତାରେ ୧୯୧୯ ମସିହା ପ୍ରଥମ ଭାଗରେ ସୋଭିଏତ୍ ଶାସନକୁ ଉତ୍‌ଖାତ୍ କରି ଦେଇଥିଲେ । ଗୃହଯୁଦ୍ଧ କାଳର ଅଭିଜ୍ଞତା ସୋଭିଏତ୍ ପ୍ରଜାତନ୍ତ୍ରଗୁଡ଼ିକୁ ଦର୍ଶାଇ ଦେଲା ଯେ, ସେମାନଙ୍କ ସାମରିକ ମେଣ୍ଟ ହେଉଛି ଶୋଷକମାନଙ୍କ କ୍ଷମତାର ପୁନଃପ୍ରତିଷ୍ଠା କରିବା ବିରୁଦ୍ଧରେ ଏକ କାର୍ଯ୍ୟକର ପ୍ରତିରକ୍ଷା ସ୍ୱରୂପ ।

ଶାନ୍ତିପୂର୍ଣ୍ଣ ବିକାଶକୁ ଉତ୍ତରଣ ସାଥେ ସାଥେ ପ୍ରଜାତନ୍ତ୍ରଗୁଡ଼ିକ ମଧ୍ୟରେ ଅର୍ଥନୈତିକ ସଂପର୍କରାଜି ଏବଂ ଅର୍ଥନୈତିକ ପାରସ୍ପରିକ ସହାୟତା କ୍ରମାଗତ ଭାବେ ବିକାଶ ଲାଭ କଲା । ଏହି ସହାୟତା ସେଇସବୁ ପ୍ରଜାତନ୍ତ୍ରଗୁଡ଼ିକ ପକ୍ଷରେ ବିଶେଷ ଭାବେ ଆବଶ୍ୟକ ଥିଲା ଯେଉଁଗୁଡ଼ିକ ଅର୍ଥନୈତିକ ଭାବେ ପଶ୍ଚାଦ୍‌ପଦ ଥିଲେ କିମ୍ବା ହସ୍ତକ୍ଷେପ ଏବଂ ଗୃହଯୁଦ୍ଧ ବେଳେ ସର୍ବାଧିକ ଭାବେ କ୍ଷତିଗ୍ରସ୍ତ ହୋଇଥିଲେ । ଏହିସବୁ ପ୍ରଜାତନ୍ତ୍ରଗୁଡ଼ିକୁ ମୁଖ୍ୟତଃ ସାହାଯ୍ୟ କରିଥିଲା ରୁଷୀୟ ସମାଜବାଦୀ ପ୍ରଜାତନ୍ତ୍ର ସଂଘ, ଯିଏକି ଆକାର ଦୃଷ୍ଟିରୁ ସର୍ବବୃହତ୍ ଏବଂ ଅର୍ଥନୈତିକ ଭାବେ ସର୍ବାଧିକ ଅଗ୍ରସର ଥିଲା । ୧୯୨୦-୧୯୨୧ରେ ଏହି ପ୍ରଜାତନ୍ତ୍ର ସଂଘ ସହିତ ଅନ୍ୟ ସମସ୍ତ ସୋଭିଏତ୍ ପ୍ରଜାତନ୍ତ୍ର ସାମରିକ ଏବଂ ଅର୍ଥନୈତିକ ଚୁକ୍ତି ସଂପାଦନ କରିଥିଲେ ।

ସୋଭିଏତ୍ ପ୍ରଜାତନ୍ତ୍ରଗୁଡ଼ିକ ସେମାନଙ୍କର ପ୍ରଥମ ଯୁଗ୍ମ କୂଟନୈତିକ ପଦକ୍ଷେପ ବୈଦେଶିକ ନୀତି କ୍ଷେତ୍ରରେ ନେଇଥିଲେ ଗୃହଯୁଦ୍ଧ ସମୟରେ । ଏହି କ୍ଷେତ୍ରରେ ଆଉରି ଘନିଷ୍ଠ ସହଯୋଗିତାର ଆବଶ୍ୟକତା ପଡ଼ିଥିଲା ଗୃହଯୁଦ୍ଧ ପରେ, ଯେତେବେଳେ ସାମ୍ରାଜ୍ୟବାଦୀ ଦେଶସମୂହର ସରକାରମାନେ ସୋଭିଏତ୍ ଶାସନ ବିରୁଦ୍ଧରେ ସଂଗ୍ରାମରେ ସେମାନଙ୍କ ଆକ୍ରମଣକୁ କୂଟନୈତିକ ତଥା ଅର୍ଥନୈତିକ କ୍ଷେତ୍ରକୁ ସ୍ଥାନାନ୍ତରିତ କଲେ ।

୧୯୨୨ ମସିହାରେ ଜେନୋଆ (ଇଟାଲୀ) ଠାରେ ଅନୁଷ୍ଠିତ ୟୁରୋପୀୟ ଅର୍ଥନୈତିକ ତଥା ଆର୍ଥିକ ସନ୍ମିଳନୀକୁ ସୋଭିଏତ୍ ରୁଷିଆ ମଧ୍ୟ ଆମନ୍ତ୍ରିତ ହୋଇଥିଲା । ସୋଭିଏତ୍ ସରକାରର ରାଷ୍ଟ୍ରପତି ମିଖାଇଲ କାଲିନିନ୍ ନିମ୍ନଲିଖିତ ଟେଲିଗ୍ରାମଟି ସମସ୍ତ ସୋଭିଏତ୍ ପ୍ରଜାତନ୍ତ୍ରକୁ ପ୍ରେରଣ କରିଥିଲେ : "ବର୍ତ୍ତମାନ ମୁହୂର୍ତ୍ତରେ ପୁଞ୍ଜିବାଦୀ ସରକାରମାନଙ୍କ

ବିରୁଦ୍ଧରେ ୟୁରୋପୀୟ ସମ୍ମିଳନୀରେ କୂଟନୈତିକ ସଂଗ୍ରାମ ପରିଚାଳନା ନିମିତ୍ତ ଏକ ମିଳିତ ସାମ୍ମୁଖ୍ୟର ଆବଶ୍ୟକ ।" ମସ୍କୋରେ ଅନୁଷ୍ଠିତ ଏକ ବୈଠକରେ ସମସ୍ତ ସୋଭିଏତ୍ ପ୍ରଜାତନ୍ତ୍ରର ପ୍ରତିନିଧିବୃନ୍ଦ ଏକ ପ୍ରୋଟୋକଲରେ ସ୍ୱାକ୍ଷର କରିଥିଲେ । ଏହି ପ୍ରୋଟୋକଲରେ ରୁଷ୍ ସୋଭିଏତ୍ ପ୍ରଜାତନ୍ତ୍ର ସଂଘକୁ ଅଧିକାର ପ୍ରଦାନ କରାଯାଇଥିଲା ସମସ୍ତ ପ୍ରଜାତନ୍ତ୍ରର ସ୍ୱାର୍ଥ ରକ୍ଷା କରିବା ନିମିତ୍ତ । ସେମାନଙ୍କ ପକ୍ଷରୁ ଜେନୋଆ ସମ୍ମିଳନୀରେ ସମସ୍ତ ଚୁକ୍ତି ତଥା ସନ୍ଧିରେ ସ୍ୱାକ୍ଷର କରିବାକୁ ସେମାନେ ରୁଷ୍ ସମାଜବାଦୀ ପ୍ରଜାତନ୍ତ୍ର ସଂଘକୁ ଅଧିକାର ପ୍ରଦାନ କରିଥିଲେ ।

ଏହି କୂଟନୈତିକ ମେଣ୍ଟଟି ମଧ୍ୟ ବଳବତ୍ତର ଥିଲା ଲଉସାନା ସମ୍ମିଳନୀରେ (୧୯୨୨-୧୯୨୩) । ଏଠାରେ ରୁଷ୍ ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ର ସଂଘର ପ୍ରତିନିଧି ସମସ୍ତ ସୋଭିଏତ୍ ପ୍ରଜାତନ୍ତ୍ରର ପ୍ରତିନିଧିତ୍ୱ କରିଥିଲେ ।

ଏହି ଭାବେ, ବିଭିନ୍ନ ଚୁକ୍ତି ଉପରେ ପ୍ରତିଷ୍ଠିତ ସାମରିକ, ଅର୍ଥନୈତିକ ଏବଂ କୂଟନୈତିକ ମେଣ୍ଟ ସୋଭିଏତ୍ ପ୍ରଜାତନ୍ତ୍ରଗୁଡ଼ିକ ମଧ୍ୟରେ ପ୍ରତିଷ୍ଠିତ ହୋଇଥିଲା । ତେବେ ସେହିସବୁ ଚୁକ୍ତି ଯଥେଷ୍ଟ ନଥିଲା ପ୍ରଜାତନ୍ତ୍ରଗୁଡ଼ିକ ମଧ୍ୟରେ ସଂପର୍କରାଜିର ସମସ୍ତ ଦିଗକୁ ନିର୍ଦ୍ଧାରଣ କରିବା ପାଇଁ । ଜାତୀୟ ପ୍ରଜାତନ୍ତ୍ରଗୁଡ଼ିକର ରାଷ୍ଟ୍ର କ୍ଷମତାର ସର୍ବୋଚ୍ଚ ସଂସ୍ଥାସମୂହ ମଧ୍ୟରେ ସଂପର୍କରାଜି କଥା ସେଥିରେ ନିର୍ଦ୍ଦିଷ୍ଟ ଭାବେ ବ୍ୟାଖ୍ୟା କରାଯାଇ ନଥିଲା । ଆର୍ଥିକ ସଂପର୍କରାଜି ମଧ୍ୟ ପରିଷ୍କାର ଭାବେ ନିର୍ଦ୍ଧାରିତ ହୋଇ ନଥିଲା । ଯୋଜନା ସଂସ୍ଥାଗୁଡ଼ିକର କାର୍ଯ୍ୟରେ ମଧ୍ୟ ସମନ୍ୱୟ ନଥିବାରୁ ପ୍ରଜାତନ୍ତ୍ରଗୁଡ଼ିକର ଅର୍ଥନୈତିକ ବିକାଶ କ୍ଷେତ୍ରରେ କିଛି ପରିମାଣରେ ବାଧା ସୃଷ୍ଟି ହେଉଥିଲା । ଆଉରି ଘନିଷ୍ଠ ଏବଂ ଆଉରି ପରିଷ୍କାର ଭାବେ ବ୍ୟାଖ୍ୟାକୃତ ସଂପର୍କର ଆବଶ୍ୟକତା ବିଷୟରେ ସମସ୍ତ ପ୍ରଜାତନ୍ତ୍ର ଅନୁଭବ କରୁଥିଲେ ।

ସମସ୍ତ ସ୍ୱାଧୀନ ପ୍ରଜାତନ୍ତ୍ରର ସ୍ୱାର୍ଥକୁ ସଂପୂର୍ଣ୍ଣ ରୂପେ ପୂରଣ କଲା ଭଳି କୌଣସି ସଂଘୀୟ ରୂପ ତତ୍କ୍ଷଣାତ୍ ଚିନ୍ତା କରାଯାଇ ପାରି ନଥିଲା । ଲେନିନ୍ କେବଳ ଗୋଟିଏ ମାତ୍ର ସମାଧାନ ପ୍ରଦାନ କରିଥିଲେ, ସେ ହେଲା, ନୂଆ ଏକ ସଂଘୀୟ ରାଷ୍ଟ୍ର— ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ର ସଂଘ ଗଠନର ପ୍ରସ୍ତାବ ସଂପୂର୍ଣ୍ଣ ସ୍ୱେଚ୍ଛାକୃତ ଏବଂ ସମାନତାର ନୀତି ଉପରେ ପ୍ରତିଷ୍ଠିତ । ପ୍ରତ୍ୟେକ ପ୍ରଜାତନ୍ତ୍ରର ବ୍ୟାପାର ପରିଚାଳନା ପାଇଁ ସୃଷ୍ଟି କରାଯିବ କ୍ଷମତାର ନିଖିଳ-ୟୁନିଅନ୍ ସାମ୍ବିଧାନିକ ଏବଂ କାର୍ଯ୍ୟନିର୍ବାହୀ ସଂସ୍ଥାସମୂହ । ପ୍ରତ୍ୟେକ ଅଙ୍ଗ ପ୍ରଜାତନ୍ତ୍ରର ଅବାଧରେ ଏହି ସଂଘରୁ ବିଛିନ୍ନ ହୋଇଯିବାର ଅଧିକାର ଲଭ କରିବାର ଥିଲା ।

ଲେନିନ୍‌ଙ୍କର ଏହି ପ୍ରସ୍ତାବକୁ ସମସ୍ତ ସୋଭିଏତ୍ ପ୍ରଜାତନ୍ତ୍ର ଏବଂ ସମସ୍ତ ଜାତିର ଶ୍ରମଜୀବୀ ଜନସାଧାରଣ ସମର୍ଥନ କରିଥିଲେ । ତେବେ ପ୍ରଜାତନ୍ତ୍ରଗୁଡ଼ିକ ଏକତ୍ର ହୋଇ

ଯେଉଁ ସଂଘ ଗଠନ କରିବେ, ତା'ର ରୂପ କିପରି ହେବ, ସେ ସଂପର୍କରେ ସୋଭିଏତ୍‌ସମୂହର କଂଗ୍ରେସ, ପାର୍ଟି କଂଗ୍ରେସ ଏବଂ ଶ୍ରମଜୀବୀ ଜନସାଧାରଣଙ୍କ ବୈଠକରେ ଅନେକ ମାସ ଧରି ଆଲୋଚନା ଚାଲିଥିଲା । ସମସ୍ତ ପ୍ରଜାତନ୍ତ୍ରର ପ୍ରତିନିଧିମାନଙ୍କୁ ନେଇ ଗଠିତ ଏକ ସ୍ୱତନ୍ତ୍ର କମିସନ ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ର ସଂଘରେ ସୋଭିଏତ୍ ପ୍ରଜାତନ୍ତ୍ରଗୁଡ଼ିକର ଏକତ୍ରୀକରଣ ସଂକ୍ରାନ୍ତରେ ଏକ ଘୋଷଣା ଏବଂ ଚୁକ୍ତି ରଚନା କରିଥିଲେ ।

୧୯୨୨, ଡିସେମ୍ବର ୩୦ ତାରିଖରେ ଚାରୋଟି ପ୍ରଜାତନ୍ତ୍ରର ସୋଭିଏତ୍‌ସମୂହର ପ୍ରତିନିଧିମାନଙ୍କୁ ନେଇ ଏକ କଂଗ୍ରେସ ମସ୍କୋରେ ବସିଥିଲା, ଯେଉଁ ଚାରୋଟି ପ୍ରଜାତନ୍ତ୍ର ସଂଘବଦ୍ଧ ହେବାର ଥିଲା । ସେ ଚାରୋଟି ହେଲେ, ରୁଷ୍ ଫେଡେରେସନ, ୟୁକ୍ରାଇନା ଏବଂ ବେଲୋରୁଷୀୟ ପ୍ରଜାତନ୍ତ୍ର ଏବଂ ଟ୍ରାନ୍ସକକେସୀୟ ଫେଡେରେସନ ।*

ଏହି କଂଗ୍ରେସରେ ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ର ସଂଘ ଗଠନ ସଂକ୍ରାନ୍ତ ଘୋଷଣା ଏବଂ ଚୁକ୍ତିଟି ଅନୁମୋଦନ ଲାଭ କରିଥିଲା । ଏହି ଦଲିଲଗୁଡ଼ିକୁ ଭିତ୍ତି କରି ଗଠିତ ହେଲା ଏକ ବିଶେଷ କମିସନ ଦ୍ୱାରା ରଚିତ ସୋଭିଏତ୍ ୟୁନିଅନ୍‌ର ସମ୍ବିଧାନ । ପ୍ରଜାତନ୍ତ୍ରସମୂହରେ ଆଲୋଚିତ ହେଲା ପରେ ୧୯୨୪ ମସିହା ଜାନୁଆରୀ ମାସରେ ସୋଭିଏତ୍ ୟୁନିଅନ୍‌ର ସୋଭିଏତ୍‌ସମୂହର ଦ୍ୱିତୀୟ କଂଗ୍ରେସରେ ଏହି ସମ୍ବିଧାନଟି ଚୂଡ଼ାନ୍ତ ଭାବେ ଗୃହୀତ ହେଲା ।

ସମ୍ବିଧାନ ଅନୁଯାୟୀ ସୋଭିଏତ୍ ୟୁନିଅନ୍‌ର କେନ୍ଦ୍ରୀୟ କାର୍ଯ୍ୟନିର୍ବାହୀ କମିଟି, ସୋଭିଏତ୍ ୟୁନିଅନ୍‌ର ସର୍ବୋଚ୍ଚ ଆଇନ୍ ପ୍ରଣୟନକାରୀ ସଂସ୍ଥାରେ ଏକ ବିଶେଷ ସଦନ ରହିଲା ମିଳିତ ପ୍ରଜାତନ୍ତ୍ରସମୂହର ବିଶେଷ ସ୍ୱାର୍ଥକୁ ସଂରକ୍ଷିତ କରିବା ପାଇଁ । ପ୍ରତ୍ୟେକ ପ୍ରଜାତନ୍ତ୍ର ଅବାଧରେ ସୋଭିଏତ୍ ୟୁନିଅନ୍ ଠାରୁ ବିଚ୍ଛିନ୍ନ ହୋଇଯିବାର ଅଧିକାରକୁ ସମ୍ବିଧାନରେ ଅନ୍ତର୍ଭୁକ୍ତ କରାଗଲା ଏବଂ ଉଭୟ ବିଦ୍ୟମାନ ସମସ୍ତ ସୋଭିଏତ୍ ପ୍ରଜାତନ୍ତ୍ର ଏବଂ ଭବିଷ୍ୟତର ପ୍ରଜାତନ୍ତ୍ରଗୁଡ଼ିକ ଅବାଧରେ ସୋଭିଏତ୍ ୟୁନିଅନ୍‌ରେ ଯୋଗ ଦେଇ ପାରିବାର ଅଧିକାର କଥା ସମ୍ବିଧାନ ଘୋଷଣା କଲା ।

୧୯୨୪, ଶରତକାଳରେ ମଧ୍ୟ ଏସିଆରେ ନୂତନ ଜାତୀୟ ରାଷ୍ଟ୍ରସମୂହ ଗଠିତ ହେଲେ: ସେଗୁଡ଼ିକ ହେଲେ, ତାଜିକ ସ୍ୱାୟତ୍ତଶାସିତ ପ୍ରଜାତନ୍ତ୍ର ଅନ୍ତର୍ଭୁକ୍ତ ଉଜ୍‌ବେକ୍ ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ର ଓ ତୁର୍କମେନ ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ର । ଉଜ୍‌ବେକ୍ ପ୍ରଜାତନ୍ତ୍ର ଏବଂ ତୁର୍କମେନ୍ ପ୍ରଜାତନ୍ତ୍ରର ସୋଭିଏତ୍‌ସମୂହର କଂଗ୍ରେସସମୂହ

---

* ଟ୍ରାନ୍ସକକେସସ୍ ଫେଡେରେସନର ଅନ୍ତର୍ଗତ ହୋଇଥିଲେ ଆଜର୍‌ବୈଜାନ, ଆର୍ମେନିଆନ ଏବଂ ଜର୍ଜିଆନ ପ୍ରଜାତନ୍ତ୍ରଗୁଡ଼ିକ । ୧୯୨୨, ମାର୍ଚ୍ଚ ମାସରେ ଏଗୁଡ଼ିକ ଐକ୍ୟବଦ୍ଧ ହୋଇଥିଲେ ।

ସ୍ଥିର କଲେ ୧୯୨୫, ଫେବୃଆରୀ ମାସରେ ସୋଭିଏତ୍ ୟୁନିଅନ୍ ସହିତ ଯୋଗଦାନ କରିବାକୁ । ସୋଭିଏତ୍‌ସମୂହର ତୃତୀୟ ନିଖିଳ-ୟୁନିଅନ୍ କଂଗ୍ରେସ ସେଗୁଡ଼ିକୁ ୧୯୨୫, ମେ ମାସରେ ସୋଭିଏତ୍ ୟୁନିଅନ୍‌ରେ ଗ୍ରହଣ କରିଥିଲେ ।

୧୯୨୯ ମସିହା ବେଳକୁ ତାଜିକ୍ ସ୍ୱାୟତ୍ତଶାସିତ ପ୍ରଜାତନ୍ତ୍ର ଅର୍ଥନୈତିକ ଏବଂ ସାଂସ୍କୃତିକ ବିକାଶ କ୍ଷେତ୍ରରେ ବଡ଼ ଧରଣର ସାଫଲ୍ୟ ଅର୍ଜନ କରି ପାରିଥିଲା ଏବଂ ଏହି ବର୍ଷ ଏହା ଉଜ୍‌ବେକ୍ ସମାଜବାଦୀ ପ୍ରଜାତନ୍ତ୍ର ପରିତ୍ୟାଗ କରି ନିଜକୁ ଏକ ସ୍ୱାଧୀନ ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ର ବୋଲି ଘୋଷଣା କରି ସ୍ୱେଚ୍ଛାରେ ସୋଭିଏତ୍ ୟୁନିଅନ୍ ସହିତ ଯୋଗ ଦେଲା ।

୧୯୩୬ ମସିହାରେ କାଜାଖ୍ ଏବଂ କିର୍‌ଘିଜ୍ ପ୍ରଜାତନ୍ତ୍ର ଦ୍ୱୟ ସୋଭିଏତ୍ ୟୁନିଅନ୍ ସହିତ ଯୁକ୍ତ ହେଲେ । ଇତିପୂର୍ବରୁ ସେଗୁଡ଼ିକ ରୁଷ୍ ଫେଡେରେସନ ମଧ୍ୟରେ ସ୍ୱାୟତ୍ତଶାସିତ ପ୍ରଜାତନ୍ତ୍ର ରୂପେ ରହିଥିଲେ । ଏହି ବର୍ଷ ଆଜର୍‌ବୈଜାନ, ଆର୍ମେନିଆ ଏବଂ ଜର୍ଜିଆ ଯୋଗ ଦେଲେ ସୋଭିଏତ୍ ୟୁନିଅନ୍ ସହିତ । ଇତିପୂର୍ବରୁ ଏଗୁଡ଼ିକ ଟ୍ରାନ୍‌ସକକେସୀୟ ଫେଡେରେସନ ଗଠନ କରିଥିଲେ ।

୧୯୪୦ ମସିହାରେ ମୋଲଦାଭିଆ, ଲାଟ୍‌ଭିଆ, ଲିଥୁଆନିଆ ଓ ଏସ୍ତୋନିଆ ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ରସମୂହ ସୋଭିଏତ୍ ୟୁନିଅନ୍ ସହିତ ଯୁକ୍ତ ହୋଇଥିଲେ ।

ଆଜି ୧୫ଟି ସମାନ ଅଧିକାରସଂପନ୍ନ ଅଙ୍ଗ ପ୍ରଜାତନ୍ତ୍ରକୁ ନେଇ ପ୍ରତିଷ୍ଠିତ ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ରସମୂହର ସ୍ୱେଚ୍ଛାକୃତ ସଂଘଟି ଏହି ଭାବେ ମୁଣ୍ଡ ଟେକି ଉଠିଥିଲା ।

# ୧୯ଶ ପରିଚ୍ଛେଦ

# ସୋଭିଏତ୍ ୟୁନିଅନ୍‌ରେ ଲେନିନ୍‌ଙ୍କ ସମାଜବାଦ ନିର୍ମାଣର ପରିକଳ୍ପନା

ମୃତ୍ୟୁର ସ୍ୱଳ୍ପ କାଳ ପୂର୍ବରୁ ଲେନିନ୍ ୧୯୨୨ ମସିହାର ଶେଷ ଏବଂ ୧୯୨୩ ମସିହାର ପ୍ରାରମ୍ଭରେ କେତୋଟି ରଚନାର ଶ୍ରୁତ ଲେଖନ ଦେଇଥିଲେ । ଏସବୁଥିରେ ସେ ସୋଭିଏତ୍ ୟୁନିଅନ୍‌ରେ ସମାଜବାଦୀ ଗଠନର ଅଭିଜ୍ଞତାସମୂହକୁ ସାଧାରଣୀକୃତ କରିବା ସାଥେ ସାଥେ ସମାଜବାଦ ନିର୍ମାଣ ପାଇଁ ଆଉ କେତେକ ପଥର ସୂଚନା ଦେଇଥିଲେ ।

ଲେନିନ୍ ଲୋକଙ୍କର କଲ୍ୟାଣ ଓ ସଂସ୍କୃତିର ଅବିରାମ ବିକାଶ ଏବଂ ଦେଶର ଅର୍ଥନୈତିକ ସ୍ୱାଧୀନତା ଏବଂ ପ୍ରତିରକ୍ଷା କ୍ଷମତା ହାସଲ ପାଇଁ ଦେଶକୁ ଏକ ଶକ୍ତିଶାଳୀ ଶିଳ୍ପ ଶକ୍ତିରେ ପରିଣତ ହେବାକୁ ସମାଜବାଦ ନିର୍ମାଣ ପାଇଁ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଅର୍ଥନୈତିକ ସର୍ତ୍ତ ବୋଲି ବିଗ୍ୱର କରୁଥିଲେ । ଉତ୍ପାଦନର ଉପାୟ ଉପକରଣ ଉତ୍ପାଦନ କଲଭଳି ଗୁରୁ ଶିଳ୍ପର ବିକାଶ ତଥା ଦେଶର ବିଦ୍ୟୁତୀକରଣର ଆବଶ୍ୟକତା ଉପରେ ସେ ବିଶେଷ ଜୋର ଦେଇଥିଲେ ।

ଦେଶର ଆଭ୍ୟନ୍ତରୀଣ ସଞ୍ଚୟନ ଉପରେ ନିର୍ଭର କରି ଗୁରୁ ଶିଳ୍ପର ବିକାଶ କରିବାକୁ ଲେନିନ୍ ଦର୍ଶାଇଥିଲେ । ଦେଶକୁ ପ୍ରତ୍ୟେକ ବିଷୟରେ ବ୍ୟୟ ସଂକୋଚ କରିବାକୁ ପଡ଼ିବ, କିନ୍ତୁ ଗୁରୁ ଶିଳ୍ପର ବିକାଶ ପାଇଁ ରାଷ୍ଟ୍ରୀୟ ବଜେଟରୁ ପାଣ୍ଠି ଖୋଜି ବାହାର କରିବାକୁ ପଡ଼ିବ । ସେ କହିଥିଲେ, "ଆମେ ଯଦି ପାଣ୍ଠି ଯୋଗାଇ ନଦେବା, ତେବେ ଏକ ସଭ୍ୟ ରାଷ୍ଟ୍ର ହିସାବରେ ଆମେ ଟିକି ପାରିବା ନାହିଁ, ସମାଜବାଦୀ ରାଷ୍ଟ୍ର ଭାବେ ଟିକିବା ତ ଦୂରର କଥା ।"

ସମାଜବାଦୀ ଶିଳ୍ପାୟନ ପାଇଁ ସମ୍ବଳରାଜିର ସୂଚନା ମଧ୍ୟ ଲେନିନ୍ ଦର୍ଶାଇଥିଲେ : ଜାତୀୟକରଣକୃତ ଶିଳ୍ପରୁ ଆୟ, ବିଦେଶୀ ଏବଂ ଆଭ୍ୟନ୍ତରୀଣ ରାଷ୍ଟ୍ରୀୟ ବାଣିଜ୍ୟ ଓ ବ୍ୟାଙ୍କିଙ୍ଗ୍ ବ୍ୟବସ୍ଥାରୁ ଆୟ ସମେତ କୃଷକମାନଙ୍କ ସଞ୍ଚୟର ଆଂଶିକ ଭାବେ ଉପଯୋଗ । ଏହିସବୁ ସମ୍ବଳ ସମାଜବାଦୀ ରାଷ୍ଟ୍ର ହାତରେ ଥିବାରୁ ଇତିହାସର ଅତ୍ୟନ୍ତ ସ୍ୱଳ୍ପ କାଳ

ମଧ୍ୟରେ ଦେଶର ଶିଳ୍ପାୟନ ଆଗରେ ଥିବା ସମସ୍ୟାରାଜିର ସମାଧାନ ପାଇଁ ଏସବୁ ନିର୍ଭରଯୋଗ୍ୟ ଗ୍ୟାରେଣ୍ଟି ହୋଇ ପାରିଥିଲା ।

ଲେନିନ୍ କୃଷକମାନଙ୍କର ବୃହଦାକାର କୋଠଖମାରକୁ ଉତ୍ତରଣକୁ ସମାଜବାଦ ନିର୍ମାଣ ପାଇଁ ଦ୍ୱିତୀୟ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ସର୍ତ୍ତ ବୋଲି ବିଚାର କରୁଥିଲେ । ସେ ମନେ କରୁଥିଲେ, କ୍ଷୁଦ୍ରାକାର କୃଷକ ଖମାର ସ୍ୱତଃସ୍ଫୂର୍ତ୍ତ ଭାବେ ଏକ ବୁର୍ଜୁଆ ଶ୍ରେଣୀକୁ ଜନ୍ମ ଦେଇଥାଏ ଏବଂ ଦେଶର ଆବଶ୍ୟକ ଖାଦ୍ୟଶସ୍ୟ ଓ କଞ୍ଚାମାଲର ଆବଶ୍ୟକତାକୁ ମେଣ୍ଟେଇ ପାରେ ନାହିଁ କି ଶ୍ରମଜୀବୀ କୃଷକମାନଙ୍କର ଜୀବନଧାରଣ ମାନକୁ ଉନ୍ନତ କରି ପାରେ ନାହିଁ । ବୃହଦାକାର କୃଷିକୁ ଉତ୍ତରଣକୁ, ଲେନିନ୍ ଦର୍ଶାଇଥିଲେ, ଏପରିଭାବେ କାର୍ଯ୍ୟକାରୀ କରିବାକୁ ହେବ ଏପରି ଏକ ସମବାୟ ମାଧ୍ୟମରେ, ଯାହାକୁ ସୁସ୍ପଷ୍ଟ ରୂପେ କୃଷକମାନେ ବୁଝି ପାରୁଥିବେ, ସେଥିରେ ଯୋଗ ଦେଇ ପାରୁଥିବେ ଏବଂ ସେମାନଙ୍କ ପକ୍ଷରେ ସର୍ବାଧିକ ଅନୁକୂଳ ହୋଇଥିବ । ଗ୍ରାମମାନଙ୍କରେ ସମବାୟର ସର୍ବାଧିକ ସରଳ ରୂପକୁ ବିକାଶ କରିବା ମାଧ୍ୟମରେ ଏହାକୁ ଆରମ୍ଭ କରିବାକୁ ହେବ । ସେ ହେଲା : ଖାଉଟି ସମବାୟ, ଯିଏକି ବ୍ୟକ୍ତିଗତ ବଣିକମାନଙ୍କ ଠାରୁ ଶିଳ୍ପଜାତ ଦ୍ରବ୍ୟକୁ କମ୍ ମୂଲ୍ୟରେ କିଣି ପାରୁଥିବ; ଯୋଗାଣ ସମବାୟ, ଯେଉଁଥିରେ କୃଷକମାନେ ଟ୍ରାକ୍ଟର ଏବଂ ଅନ୍ୟାନ୍ୟ କୃଷି ଯନ୍ତ୍ରପାତି ଏକତ୍ର କିଣିବା ପାଇଁ ଏକତ୍ରିତ ହେବେ; ବିକ୍ରୟ ସମବାୟ, ଯିଏକି କୃଷକମାନଙ୍କର ବ୍ୟକ୍ତିଗତ ଉତ୍ପାଦନକୁ ଏକାଠି ବିକ୍ରି କରିବ; ଋଣଦାନ ସମବାୟ, ଯାହାକି କୃଷକମାନଙ୍କୁ ଋଣ ଆଦି ଯୋଗାଇ ଦେବା ପାଇଁ କୃଷକମାନଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥାଏ; ଭୂଉନ୍ନୟନ, ବିହନଗୃଷ, ଅଶ୍ୱପାଳନ, ଆଦି ପାଇଁ ଉତ୍ପାଦକମାନଙ୍କ ସମିତି, ଆଦି । ସମବାୟର ଏହିସବୁ ରୂପସମୂହ କୃଷକମାନଙ୍କୁ ବୈଷୟିକ ସୁଯୋଗ ଆଦି ଯୋଗାଇ ଦେଇ ମିଳିତ ଭାବେ କାର୍ଯ୍ୟ କରିବାର ସୁବିଧାରାଜିକୁ ପରିଷ୍କାର ଭାବେ ଦର୍ଶାଇ ଦେବ । ସମବାୟ କୃଷକମାନଙ୍କୁ ଶିକ୍ଷା ଦେବ ମିଳିତ ଭାବେ କାର୍ଯ୍ୟ କରିବାକୁ ଏବଂ ତଦ୍ୱାରା ସେମାନଙ୍କୁ ଆଧୁନିକ କାରିଗରି ଉପରେ ପ୍ରତିଷ୍ଠିତ ବୃହଦାକାର ଉତ୍ପାଦକ ସମବାୟରେ ସ୍ୱେଚ୍ଛାକୃତ ଭାବେ ସମ୍ମିଳିତ ହେବାକୁ ଆଗେଇ ନେବ (କୋଠଖମାର) ।

ଲେନିନ୍ ବିଶେଷ ଭାବେ ଦର୍ଶାଇଥିଲେ, ସର୍ବହରା ରାଷ୍ଟ୍ର କ୍ଷମତାକୁ ଅତ୍ୟଧିକ ସାବଧାନ ସହକାରେ ଏବଂ ଧୀରେ ଧୀରେ, ସୁଉଦାହରଣସମୂହର ଉପଯୋଗ କରି ଏବଂ ଶ୍ରମଜୀବୀ କୃଷକମାନଙ୍କର ବିରୁଦ୍ଧରେ କୌଣସି ବଳପ୍ରୟୋଗ ବିନା କୋଠଗୃଷକୁ ଉତ୍ତରଣ ସାଧନ କରିବାକୁ ହେବ । ସେ ଆଉରି କହିଥିଲେ, ସେହିସବୁ ସମିତିଗୁଡ଼ିକ କେବଳ ସହାୟକ ହେବ, ଯେଉଁଗୁଡ଼ିକୁ କୃଷକମାନେ ନିଜେ ନିଜର ସ୍ୱେଚ୍ଛାରେ ଗଠନ କରିବେ ଏବଂ ସେସବୁର ସୁବିଧା ସୁଯୋଗ ବାସ୍ତବ କାର୍ଯ୍ୟରେ ପରୀକ୍ଷିତ ହେବ ।

ସମବାୟଗୁଡ଼ିକରେ ଏକତ୍ରିତ ହେବା ପାଇଁ କୃଷକମାନଙ୍କୁ ସମସ୍ତ ପ୍ରକାରର ସମର୍ଥନ ଯୋଗାଇ ଦେବାକୁ ଲେନିନ୍ ପାର୍ଟିକୁ ଅନୁରୋଧ କରିଥିଲେ ।

ସୋଭିଏତ୍ ୟୁନିଅନ୍‌ରେ ସମାଜବାଦର ବିଜୟ ପାଇଁ ସାଂସ୍କୃତିକ ବିପ୍ଳବକୁ ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ସର୍ତ୍ତ ବୋଲି ଲେନିନ୍ ବିଗ୍ଭର କରୁଥିଲେ । ସାଂସ୍କୃତିକ ବିପ୍ଳବ ବୋଇଲେ ସୋଭିଏତ୍ ୟୁନିଅନ୍‌କୁ ଏକ ସଂପୂର୍ଣ୍ଣ ସାକ୍ଷର ଦେଶ, ସୋଭିଏତ୍ ୟୁନିଅନ୍‌ର ସମସ୍ତ ଜାତି ଅଧିଜାତିମାନଙ୍କ ଭାଷାରେ ସାର୍ବଜନୀନ ଶିକ୍ଷା ବ୍ୟବସ୍ଥା ପ୍ରବର୍ତ୍ତନ, ଜନପ୍ରିୟ ବୁଦ୍ଧିଜୀବୀମାନଙ୍କ ଗଠନ, ସମାଜବାଦୀ ମନୋଭାବ ଦ୍ୱାରା ଜନସାଧାରଣଙ୍କୁ ଶିକ୍ଷିତ କରିବା ଏବଂ ବିଜ୍ଞାନ, ସାହିତ୍ୟ ତଥା କଳାର ପ୍ରସ୍ଫୁଟନକୁ ବୁଝାଏ । ନୂତନ, ସମାଜବାଦୀ ଜୀବନର ଉଦ୍ଦେଶ୍ୟପୂର୍ଣ୍ଣ ନିର୍ମାଣ କାର୍ଯ୍ୟରେ ବ୍ୟାପକ ଜନସାଧାରଣଙ୍କୁ ଅନ୍ତର୍ଗତ କରିବା ସାଂସ୍କୃତିକ ବିପ୍ଳବର ମୁଖ୍ୟ ଉପାୟ ବୋଲି ଲେନିନ୍ ବିଗ୍ଭର କରୁଥିଲେ ।

ସମାଜବାଦ ଏବଂ କମ୍ୟୁନିଜମ୍ ନିର୍ମାଣ ପାଇଁ ନିଷ୍ପତ୍ତିମୂଳକ ରାଜନୈତିକ ସର୍ତ୍ତ ରୂପେ ଲେନିନ୍ ଶ୍ରମିକ ଏବଂ କୃଷକମାନଙ୍କ ଦୃଢ଼ ମେଣ୍ଟ ଉପରେ ପ୍ରତିଷ୍ଠିତ ସୋଭିଏତ୍ ରାଷ୍ଟ୍ର ଉପରେ ଜୋର ଦେଉଥିଲେ । ଏହି ମେଣ୍ଟକୁ ଲଗାତର ଭାବେ ସର୍ବାଧିକ ଯତ୍ନର ସହିତ ସୁଦୃଢ଼ ଏବଂ ସୁରକ୍ଷିତ କରିବାକୁ ଲେନିନ୍ ଅନୁରୋଧ କରିଥିଲେ । ରୁଷିଆରେ ସମାଜବାଦର ସଂପୂର୍ଣ୍ଣ ବିଜୟର ଗ୍ୟାରେଣ୍ଟି ସ୍ୱରୂପ ଏହି ମେଣ୍ଟକୁ ଲେନିନ୍ ଲକ୍ଷ୍ୟ କରୁଥିଲେ ।

ସୋଭିଏତ୍ ରାଷ୍ଟ୍ରର ଶକ୍ତି ଏବଂ ଦୃଢ଼ତା ବିଭିନ୍ନ ଜାତିର ମଧ୍ୟରେ ବନ୍ଧୁତା ଏବଂ ସେମାନଙ୍କ ଐକ୍ୟ ଉପରେ ନିର୍ଭର କରୁଥିଲା । ଏହି ବନ୍ଧୁତାକୁ ସୁରକ୍ଷିତ ଏବଂ ସୁଦୃଢ଼ କରିବାକୁ ଲେନିନ୍ ସମାଜବାଦର ସଫଳ ନିର୍ମାଣର ଅନ୍ୟତମ ମୁଖ୍ୟ ସର୍ତ୍ତ ବୋଲି ବିଗ୍ଭର କରୁଥିଲେ । ସମାନ ଅଧିକାର ସଂପନ୍ନ ଜାତିମାନଙ୍କର ସ୍ୱେଚ୍ଛାକୃତ ସଂଘ – ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ର ସଂଘକୁ ସମସ୍ତ ଉପାୟ ସୁରକ୍ଷିତ ଏବଂ ସୁଦୃଢ଼ କରିବାକୁ ସେ ଆହ୍ୱାନ ଦେଇଥିଲେ ।

ରାଷ୍ଟ୍ର ଯନ୍ତ୍ରର ପରିଗ୍ଭଳନାକୁ ଉନ୍ନତ କରିବା ଏବଂ ଏହାର ପରିଗ୍ଭଳନା ଖର୍ଚ୍ଚକୁ କମାଇବା, ଲୋକଙ୍କ ସହିତ ଏହାର ଯୋଗସୂତ୍ରକୁ ଶକ୍ତିଶାଳୀ କରିବା ଏବଂ ରାଷ୍ଟ୍ରୀୟ ବ୍ୟାପାରର ପରିଗ୍ଭଳନାରେ ବ୍ୟାପକ ଶ୍ରମଜୀବୀ ଜନସାଧାରଣଙ୍କୁ ସଂପୃକ୍ତ କରିବା ଉପରେ ଲେନିନ୍ ଅଧିକ ଗୁରୁତ୍ୱ ଆରୋପ କରୁଥିଲେ । ସମାଜବାଦ ନିର୍ମାଣ କରିବା ସଂଗ୍ରାମରେ ମୁଖ୍ୟ ହତିଆର ହିସାବରେ ସୋଭିଏତ୍ ରାଷ୍ଟ୍ର ତା'ର ପ୍ରଧାନ ଲକ୍ଷ୍ୟକୁ ପୂରଣ କରି ପାରିବ, ଯଦି ଏହାର ନେତୃତ୍ୱ ଶ୍ରମିକ ଶ୍ରେଣୀର ଛାମୁବାହିନୀ, କମ୍ୟୁନିଷ୍ଟ ପାର୍ଟି ହାତରେ ରହେ । ସୋଭିଏତ୍ ରାଷ୍ଟ୍ରରେ ନେତୃତ୍ୱଦାୟୀ ଏବଂ ଗ୍ଭଳିକା ଶକ୍ତିର ଭୂମିକା

ପାଳନ କରିବାକୁ ହେଲେ, କମ୍ୟୁନିଷ୍ଟ ପାର୍ଟିକୁ ତା'ର ସାଧାରଣ ସଦସ୍ୟମାନଙ୍କ ମଧ୍ୟରେ ଦୃଢ଼ ଐକ୍ୟ ବଜାଏ ରଖିବାକୁ ହେବ, ଜନସାଧାରଣଙ୍କ ସହିତ ତା'ର ଯୋଗସୂତ୍ରକୁ ସର୍ବଦା ଦୃଢ଼ କରିବାକୁ ପଡ଼ିବ ଏବଂ ଲୋକଙ୍କୁ ଶିକ୍ଷା ଦେବା ସାଥେ ସାଥେ ସେମାନଙ୍କ ଠାରୁ ଶିଖିବାକୁ ହେବ ।

ସୋଭିଏତ୍ ୟୁନିଅନ୍‌ରେ ସମାଜବାଦ ନିର୍ମାଣ ସଂପର୍କରେ ଏହିସବୁ ଥିଲ ଲେନିନ୍‌ଙ୍କର ମୁଖ୍ୟ ଧାରଣାସମୂହ । ଲେନିନ୍ ବିଶ୍ୱାସ କରୁଥିଲେ, ସୋଭିଏତ୍ ୟୁନିଅନ୍‌ର ସବୁକିଛି ଆବଶ୍ୟକୀୟ ଜିନିଷ ରହିଛି ସଂପୂର୍ଣ୍ଣ ଏକ ସମାଜବାଦୀ ସମାଜ ନିର୍ମାଣ କରିବା ପାଇଁ ଏବଂ କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱରେ ସୋଭିଏତ୍ ୟୁନିଅନ୍‌ର ଶ୍ରମିକ ଶ୍ରେଣୀ ଏବଂ ଅନ୍ୟାନ୍ୟ ସମସ୍ତ ଶ୍ରମଜୀବୀ ଜନସାଧାରଣ ସେ ଐତିହାସିକ ଲକ୍ଷ୍ୟକୁ ସଫଳତାର ସହିତ କାର୍ଯ୍ୟକାରୀ କରିବେ ।

# ୨୦ଶ ପରିଚ୍ଛେଦ

# ସୋଭିଏତ୍ ୟୁନିଅନ୍ ଶିଳ୍ପ ଶକ୍ତିରେ ପରିଣତ ହେଲା

୧୯୨୦ ଦଶକର ଦ୍ୱିତୀୟାର୍ଦ୍ଧରେ ସୋଭିଏତ୍ ଜନସାଧାରଣ ସୋଭିଏତ୍ ୟୁନିଅନ୍‌ରେ ସମାଜବାଦ ନିର୍ମାଣ ପାଇଁ ଲେନିନ୍‌ଙ୍କ ପରିକଳ୍ପନାର ମୁଖ୍ୟ କର୍ତ୍ତବ୍ୟରାଜି ସଂପନ୍ନ କରିବା ଦିଗରେ ଯାତ୍ରାରମ୍ଭ କରିଥିଲେ । ଜାତୀୟ ଅର୍ଥନୀତିର ପୁନଃସ୍ଥାପନର ସମସ୍ୟାରାଜିକୁ ସମାଧାନ କଲା ପରେ ୧୯୨୫, ଡିସେମ୍ବର ମାସରେ ଅନୁଷ୍ଠିତ କମ୍ୟୁନିଷ୍ଟ ପାର୍ଟିର ୧୪ଶ କଂଗ୍ରେସ ଘୋଷଣା କଲା – ପାର୍ଟିର ସାଧାରଣ କର୍ମନୀତି ଏବଂ ଜନସାଧାରଣଙ୍କ ମୁଖ୍ୟ କର୍ତ୍ତବ୍ୟ ହେବ ଦେଶର ଶିଳ୍ପାୟନ ।

ଦେଶର ଶିଳ୍ପାୟନ ଥିଲା ଅତୀବ ଗୁରୁତ୍ୱପୂର୍ଣ୍ଣ । ଯୁଦ୍ଧପୂର୍ବ ଶିଳ୍ପ ବିକାଶର ସ୍ତରରେ ଦେଶ ପହଞ୍ଚିଥିଲେ ମଧ୍ୟ ଏହା ରହି ଯାଇଥିଲା ଏକ କୃଷିପ୍ରଧାନ ଦେଶ ରୂପେ । ଜାତୀୟ ଅର୍ଥନୀତିର ଦୁଇତୃତୀୟାଂଶ ଉତ୍ପନ୍ନ ଥିଲା କୃଷିଜାତ ଜିନିଷ । ବ୍ୟବହାର୍ଯ୍ୟ ଦ୍ରବ୍ୟର ଉତ୍ପାଦନ ନିର୍ଭର କରୁଥିଲା ଶିଳ୍ପ ଉପରେ । ଉତ୍ପାଦନର ଉପାୟ ଉପକରଣର ଉତ୍ପାଦନ ଅତି ଦୁର୍ବଳ ଭାବେ ବିକାଶ ଲାଭ କରୁଥିଲା । ଦେଶରେ ଅଭାବ ରହିଥିଲା ଅତୀବ ଗୁରୁତ୍ୱପୂର୍ଣ୍ଣ ଶିଳ୍ପସମୂହ : ମଟରଗାଡ଼ି, ଟ୍ରାକ୍ଟର, ରସାୟନ, ମେସିନ୍, ଗୁରୁ ଇଂଜିନିୟରିଂ ଏବଂ ଅନ୍ୟାନ୍ୟ ଶିଳ୍ପସମୂହ । ଅଧିକାଂଶ କାରଖାନାର ଯନ୍ତ୍ରପାତି ଥିଲା ପୁରୁଣାକାଳିଆ ଏବଂ ଦଦରା ।

ରାଜନୈତିକ ଅବସ୍ଥା ଦୃଷ୍ଟିରୁ ପୃଥିବୀରେ ସୋଭିଏତ୍ ୟୁନିଅନ୍ ଥିଲା ସର୍ବାପେକ୍ଷା ଅଗ୍ରଗାମୀ ଦେଶ, ପ୍ରକୃତ ଗଣତାନ୍ତ୍ରିକ ଦେଶ । କିନ୍ତୁ ଅର୍ଥନୈତିକ ବିକାଶର ସ୍ତର ଦୃଷ୍ଟିରୁ ଏହା ଉନ୍ନତ ବିକଶିତ ପୁଞ୍ଜିବାଦୀ ରାଷ୍ଟ୍ରମାନଙ୍କର ଅତ୍ୟନ୍ତ ପଛରେ ପଡ଼ିଥିଲା । ଏହି ପଶ୍ଚାଦ୍‌ପଦତା ଥିଲା ସୋଭିଏତ୍ ବ୍ୟବସ୍ଥା ଏବଂ ଦେଶର ସ୍ୱାଧୀନତା ପକ୍ଷରେ ବିପଦ ସ୍ୱରୂପ । ବିଦ୍ୟୁତୀକରଣ ଉପରେ ଅତୀବ ବିକଶିତ ଶିଳ୍ପ ବିଶେଷ କରି ଗୁରୁ ଶିଳ୍ପ ପ୍ରତିଷ୍ଠିତ ବ୍ୟତିରେକେ ରୁଷିଆ, ଲେନିନ୍ କହିଥିଲେ, କେବଳ ସମାଜବାଦ ନିର୍ମାଣ କରିବାକୁ ଅକ୍ଷମ ହେବ ନାହିଁ, ନିଶ୍ଚିତ ରୂପେ ଏହା ତା'ର ସ୍ୱାଧୀନତାକୁ ହରେଇ

ବସିବ । ଲେନିନ୍‌ଙ୍କ ନିର୍ଦ୍ଦେଶକୁ ଅନୁସରଣ କରି ପାର୍ଟି ସୋଭିଏତ୍ ୟୁନିଅନ୍‌କୁ ମେସିନ୍ ଏବଂ ଯନ୍ତ୍ରପାତି ଆମଦାନିକାରୀ ଏକ କୃଷିପ୍ରଧାନ ଦେଶରୁ ମେସିନ୍ ଏବଂ ଯନ୍ତ୍ରପାତି ନିର୍ମାଣକାରୀ ଶିଳ୍ପ ଶକ୍ତିରେ ପରିଣତ କରିବାକୁ ସାଧାରଣ କର୍ତ୍ତବ୍ୟ ରୂପେ ଗ୍ରହଣ କଲା ।

ଏହି କର୍ତ୍ତବ୍ୟଟି ମୋଟେ ସହଜ ସାଧ୍ୟ ନଥିଲା । ଇତିହାସ ଦର୍ଶାଇ ଦେଇଛି, ପୁଞ୍ଜିବାଦୀ ଦେଶମାନଙ୍କର ଶିଳ୍ପାୟନର ଉତ୍ସରାଶି ହେଲା ମୁଖ୍ୟତଃ ସେସବୁ ଦେଶର ଶ୍ରମିକ ଓ କୃଷକମାନଙ୍କୁ ଶୋଷଣ କରିବା, ଉପନିବେଶ ଏବଂ ଅର୍ଦ୍ଧଉପନିବେଶ ତଥା ଯୁଦ୍ଧରେ ପରାଜିତ ଦେଶଗୁଡ଼ିକୁ ଲୁଣ୍ଠନ କରିବା ଏବଂ ବିଦେଶୀ ଋଣ । ସୋଭିଏତ୍ ରାଷ୍ଟ୍ର ପକ୍ଷରେ ସେସବୁ ଉତ୍ସରାଜି ନଥିଲା, କାରଣ ନୀତିଗତ ଦୃଷ୍ଟିରୁ ସେସବୁ ଏକ ସମାଜବାଦୀ ରାଷ୍ଟ୍ର ପକ୍ଷରେ ଅଗ୍ରହଣୀୟ । ଏହା ଅବଶ୍ୟ ସତ ଯେ, ପୁଞ୍ଜିବାଦୀ ଦେଶମାନଙ୍କ ଠାରୁ ଯୁକ୍ତିସମ୍ମତ ସର୍ତ୍ତରେ ଋଣ ପାଇଥିଲେ ପ୍ରତ୍ୟାଖ୍ୟାନ କରି ନଥାନ୍ତା । କିନ୍ତୁ ବିଦେଶୀ ପୁଞ୍ଜିପତିମାନେ ରୁଷିଆକୁ ଋଣ ଦେଇ ନଥିଲେ, କାରଣ ସେମାନେ ସୋଭିଏତ୍ ଶାସନର ଅର୍ଥନୈତିକ ଅବସ୍ଥାକୁ ଶକ୍ତିଶାଳୀ କରିବାରେ ସାହାଯ୍ୟ କରିବାକୁ ଚାହିଁ ନଥିଲେ ।

ଅସୁବିଧାରାଜି ଆଉରି ଜଟିଳ ହେବାର କାରଣ ହେଲା ଏଇଥି ପାଇଁ ଯେ, ଶିଳ୍ପାୟନର ସମସ୍ୟାକୁ ଅତୀବ ସ୍ୱଳ୍ପ ଏକ ଐତିହାସିକ ସମୟ କାଳ ମଧ୍ୟରେ ସମାଧାନ କରିବାକୁ ପଡ଼ିଥିଲା । କାରଣ ଶାନ୍ତିପୂର୍ଣ୍ଣ ଭାବେ ନିଶ୍ୱାସ ନେବାର ସମୟ ଟକକୁ ଯେକୌଣସି ମୁହୂର୍ତ୍ତରେ ସାମ୍ରାଜ୍ୟବାଦୀମାନେ ନଷ୍ଟ କରି ଦେଇଥାନ୍ତେ । ତେଣୁ କରି ଯେକୌଣସି ଉପାୟରେ ଶିଳ୍ପ ବିକାଶକୁ ଦ୍ରୁତତର କରିବା ଆବଶ୍ୟକୀୟ ହୋଇ ପଡ଼ିଥିଲା । ଅନ୍ୟାନ୍ୟ ଅଗ୍ରଗାମୀ ଦେଶମାନଙ୍କ ଠାରୁ ସୋଭିଏତ୍ ୟୁନିଅନ୍ ୫୦ରୁ ୧୦୦ ବର୍ଷ ପଛରେ ପଡ଼ିଥିଲା, ଏବଂ ଏହି ପଶ୍ଚାତ୍‌ପଦତାକୁ ୧୦ରୁ ୧୫ ବର୍ଷ ମଧ୍ୟରେ ଅତିକ୍ରମ କରିବାକୁ ପଡ଼ିଥିଲା ।

ଶିଳ୍ପାୟନ ପ୍ରକ୍ରିୟାଟା ଆଉରି ଅସୁବିଧାଜନକ ହୋଇ ପଡ଼ିଥିଲା ଦକ୍ଷ ଶ୍ରମିକ, ଇଂଜିନିୟର ଏବଂ କାରିଗରମାନଙ୍କ ଅଭାବ ଯୋଗୁ । ପୁରୁଣା ବିଶେଷଜ୍ଞମାନଙ୍କ ମଧ୍ୟରୁ ଏକାଂଶ ଥିଲେ ସୋଭିଏତ୍‌ବିରୋଧୀ । ସେମାନେ କେବଳ ଶିଳ୍ପାୟନକୁ ସାହାଯ୍ୟ ଯେ କରୁ ନଥିଲେ, ତା ନୁହେଁ, ଓଲଟା ଏହାକୁ ମନ୍ଥର କରି ଦେବାକୁ, ଏପରିକି ନାଶ କରି ଦେବାକୁ ଚାହୁଁଥିଲେ । ୧୯୨୦ ଦଶକର ଶେଷରେ ଏକ ନାଶକତାମୂଳକ ଗୁପ୍ତ ସଂଗଠନ – "ଶିଳ୍ପ ପାର୍ଟି" ଦେଶରେ ଦେଖାଦେଇଥିଲା । ପୁରୁଣା ବୁର୍ଜୁଆ ବିଶେଷଜ୍ଞମାନେ ଏଥିରେ ଥିଲେ ଏବଂ ସେମାନେ ଘନିଷ୍ଠ ଭାବେ ଯୁକ୍ତ ଥିଲେ ପୂର୍ବତନ ଶିଳ୍ପପତିମାନଙ୍କ ସହିତ, ଯେଉଁମାନେ କି ବିପ୍ଳବ ପରେ ବିଦେଶକୁ ପଳାଇ ଯାଇଥିଲେ, ଏବଂ ସେମାନେ ମଧ୍ୟ ବିଦେଶୀ ଗୁଇନ୍ଦା ବିଭାଗ ସହିତ ସଂପୃକ୍ତ ଥିଲେ । ଏହି ନାଶକତାକାରୀମାନେ ଅନେକ କାରଖାନା ଏବଂ ଯାନବାହନକୁ ଭାଙ୍ଗି ଅଚଳ କରି ଦେଉଥିଲେ ।

ଶେଷତଃ, ଶିଳ୍ପାୟନର ସମସ୍ୟା ସମାଧାନ ଦିଗରେ କମ୍ୟୁନିଷ୍ଟ ପାର୍ଟିର ସମସ୍ତ ଶକ୍ତିକୁ ପ୍ରୟୋଗ କରିବାର ପ୍ରକ୍ରିୟାଟି ବାଧାପ୍ରାପ୍ତ ହୋଇଥିଲା ପାର୍ଟିବିରୋଧୀ ଟ୍ରଟ୍‌ସ୍କିପନ୍ଥୀ ଗୋଷ୍ଠୀ ଏବଂ ବୁଖାରିନ୍‌ଙ୍କ ଅନୁଗାମୀମାନଙ୍କ ଦ୍ୱାରା । ଏମାନେ ପୁଣି ପାର୍ଟିର ସାଧାରଣ କର୍ମନୀତି ବିରୁଦ୍ଧରେ କହିବାକୁ ଲାଗିଲେ ।

୧୯୨୦ ଦଶକର ମଧ୍ୟ ଭାଗରେ ଟ୍ରଟ୍‌ସ୍କି ଏବଂ ତାଙ୍କ ଅନୁଗାମୀବୃନ୍ଦ ପାର୍ଟିର ଉଭୟ ଘରୋଇ ଏବଂ ବୈଦେଶିକ ନୀତି ବିରୁଦ୍ଧରେ ତୀବ୍ର ସଂଗ୍ରାମ ଆରମ୍ଭ କରି ଦେଇଥିଲେ । ଗୋଟିଏ ଦେଶରେ ସମାଜବାଦ ନିର୍ମାଣର ସମ୍ଭାବନାକୁ ପ୍ରତ୍ୟାଖ୍ୟାନ କରି ସେମାନେ ପାର୍ଟିର ସୋଭିଏତ୍ ୟୁନିଅନ୍‌ରେ ସମାଜବାଦ ନିର୍ମାଣର ଲକ୍ଷ୍ୟକୁ ସଂକୀର୍ଣ୍ଣ ଜାତୀୟତାବାଦ ଏବଂ ବିଶ୍ୱ ବିପ୍ଳବର ସ୍ୱାର୍ଥ ପ୍ରତି ବିଶ୍ୱାସଘାତକତା ବୋଲି ଆଖ୍ୟାୟିତ କରିଥିଲେ । ସେମାନେ ଆହ୍ୱାନ ଦେଇଥିଲେ, ପୁଞ୍ଜିବାଦୀ ଦେଶମାନଙ୍କ ବିରୁଦ୍ଧରେ "ବିପ୍ଳବୀ ଯୁଦ୍ଧ" ଚଳାଇ ଏବଂ ସଶସ୍ତ୍ର ଅଭ୍ୟୁତ୍‌ଥାନମାନ ସଂଗଠିତ କରି ବିଶ୍ୱ ବିପ୍ଳବକୁ ଉଷ୍ଣୁକେଇବା ପାଇଁ । ଅନ୍ୟ ଦେଶକୁ ବିପ୍ଳବ ରପ୍ତାନି କରିବାର ହଠକାରୀ ନୀତିକୁ ପାର୍ଟି ଉପରେ ଚପେଇ ଦେବା ପାଇଁ ସେମାନେ ଉଦ୍ୟମ କରିଥିଲେ ।

ପ୍ରକୃତ ସମ୍ଭାବନାକୁ ଅବଜ୍ଞା କରି ଟ୍ରଟ୍‌ସ୍କି ଏବଂ ତାଙ୍କ ଅନୁଗାମୀମାନେ ଶିଳ୍ପାୟନ କାର୍ଯ୍ୟ ଅତୀବ ତୀବ୍ର ଗତିରେ ଚଳେଇଯିବା ପାଇଁ ଦାବି କରିଥିଲେ । ଶିଳ୍ପଜାତ ଜିନିଷର ଦାମ୍‌କୁ ଅତି ମାତ୍ରାରେ ବୃଦ୍ଧି କରି ଏବଂ ଟିକସର ପରିମାଣ ବଢ଼େଇ ଦେଇ ଚାଷୀମାନଙ୍କ ଠାରୁ ଶିଳ୍ପାୟନ ପାଇଁ ସମ୍ବଳ ସଂଗ୍ରହ କରିବାରେ ସେମାନେ ବିଶ୍ୱାସ କରୁଥିଲେ ।

ଟ୍ରଟ୍‌ସ୍କିପନ୍ଥୀମାନଙ୍କର ଏହି ହଠକାରୀ ନୀତି ପ୍ରତି ପାର୍ଟି ମଧ୍ୟରେ ସମର୍ଥନ ମିଳି ନଥିଲା । ୧୯୨୭ ମସିହାର ଦ୍ୱିତୀୟାର୍ଦ୍ଧରେ ପାର୍ଟି ମଧ୍ୟରେ ଆଲୋଚନା ଦ୍ୱାରା ଦେଖାଗଲା ଟ୍ରଟ୍‌ସ୍କିପନ୍ଥୀମାନଙ୍କୁ ଶତକଡ଼ା ଏକ ଭାଗରୁ କମ୍ କମ୍ୟୁନିଷ୍ଟ ସମର୍ଥନ କରିଥିଲେ । ୧୯୨୭, ଡିସେମ୍ବର ମାସରେ ଅନୁଷ୍ଠିତ କମ୍ୟୁନିଷ୍ଟ ପାର୍ଟିର ୧୫ଶ କଂଗ୍ରେସ ବିରୋଧୀ କରୁଥିବା ଟ୍ରଟ୍‌ସ୍କିପନ୍ଥୀମାନଙ୍କୁ ଧିକାର ଜଣାଇବା ସାଥେ ସାଥେ ସେମାନଙ୍କ ମତ ପାର୍ଟିର ସଦସ୍ୟ ପଦର ବିରୋଧୀ ବୋଲି ସ୍ୱୀକାର କରି ସେମାନଙ୍କ ନେତୃତ୍ୱକୁ ପାର୍ଟି ମଧ୍ୟରୁ ବହିଷ୍କାର କରି ଦେଲେ । ତା'ପରେ ଟ୍ରଟ୍‌ସ୍କି ସରକାରବିରୋଧୀ କ୍ରିୟାକଳାପ ଚଳାଇଯିବାରୁ ୧୯୨୯ ମସିହାରେ ତାଙ୍କୁ ସୋଭିଏତ୍ ୟୁନିଅନ୍‌ରୁ ତଡ଼ି ଦିଆଗଲା ।

୧୯୨୦ ଦଶକର ଶେଷରେ ଦେଶର ଶିଳ୍ପାୟନ ଲକ୍ଷ୍ୟରେ ଲେନିନ୍‌ଙ୍କ ପଥ ପାଇଁ ସଂଗ୍ରାମରେ କମ୍ୟୁନିଷ୍ଟ ପାର୍ଟିକୁ ଆଉ ଏକ ବିରୋଧୀ ଗୋଷ୍ଠୀର ବିରୋଧକୁ ଅତିକ୍ରମ କରିବାକୁ ପଡ଼ିଥିଲା । ଏହି ଗୋଷ୍ଠୀର ନେତା ଥିଲେ ଏନ୍. ବୁଖାରିନ୍ । ଏହି ଗୋଷ୍ଠୀଟି ଦେଶର ଶିଳ୍ପାୟନର ଅଗ୍ରଗତିରେ ଉଚ୍ଚ ହାର ଏବଂ ଗୁରୁ ଶିଳ୍ପ ଉପରେ ଅଗ୍ରାଧିକାର ପ୍ରଦାନକୁ ବିରୋଧ କରିବା ସଙ୍ଗେ ସଙ୍ଗେ ଲଘୁ ଶିଳ୍ପ ଉପରେ ଅଗ୍ରାଧିକାର ଦେବାକୁ ଦାବି କରୁଥିଲେ । ପାର୍ଟି ସେମାନଙ୍କର ଏହି ପଥ ଅନୁସରଣ କରିଥିଲେ,

ସୋଭିଏତ୍ ୟୁନିଅନ୍ ପୁଞ୍ଜିବାଦୀ ରାଷ୍ଟ୍ରମାନଙ୍କ ଠାରୁ କାରିଗରିଗତ ଏବଂ ଅର୍ଥନୈତିକ ସ୍ୱାଧୀନତା ସମେତ ପ୍ରତିରକ୍ଷା କ୍ଷମତା ଅର୍ଜନ କରି ପାରି ନଥାନ୍ତା । ଉତ୍ପାଦନର ଉପାୟ ଉପକରଣ ଉତ୍ପାଦନକାରୀ ଏକ ଶିଳ୍ପ, ଗୁରୁ ଶିଳ୍ପ ଏବଂ ଦ୍ରୁତ ହାର ଉପରେ ଅଗ୍ରାଧିକାର ନଦେଇଥିଲେ, ସମଗ୍ର ଜାତୀୟ ଅର୍ଥନୀତିକୁ କାରୁକୌଶଳ ଦିଗରୁ ପୁନଃଗଠିତ କରିବା ଏବଂ ଜାତୀୟ ଅର୍ଥନୀତିର ସମସ୍ତ କ୍ଷେତ୍ରରେ ସାମାଜିକ ଶ୍ରମର ଉତ୍ପାଦନଶୀଳତାରେ ଦ୍ରୁତ ଅଭିବୃଦ୍ଧି ଅର୍ଜନ କରିବା ଅସମ୍ଭବ ହୋଇ ପଡ଼ିଥାନ୍ତା । ଗୁରୁ ଶିଳ୍ପ ଉପରେ ଅଗ୍ରାଧିକାର ଦାନ ହେଲା ବ୍ୟବହାର୍ଯ୍ୟ ଦ୍ରବ୍ୟ ଉତ୍ପାଦନ କ୍ଷେତ୍ରରେ ଲଗାତର ଅଗ୍ରଗତି ପକ୍ଷରେ ଏକ ନିଶ୍ଚିତିମୂଳକ ଗ୍ୟାରେଣ୍ଟି ସ୍ୱରୂପ ।

ତେଣୁ କରି କମ୍ୟୁନିଷ୍ଟ ପାର୍ଟି ଦୃଢ଼ତାର ସହିତ ବୁଖାରିନ୍ ଗୋଷ୍ଠୀର ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲା ଏବଂ ସେମାନଙ୍କ ମତ ପାର୍ଟିର ସାଧାରଣ କର୍ମନୀତି ଓ ସୋଭିଏତ୍ ୟୁନିଅନ୍‌ରେ ଶିଳ୍ପାୟନର ଲେନିନ୍‌ଙ୍କ ନୀତିର ବିରୋଧୀ ବୋଲି ବିଚାର କରିଥିଲା । ଟ୍ରଟ୍‌ସ୍କିପନ୍ଥୀ ଏବଂ ବୁଖାରିନ୍‌ଙ୍କ ଅନୁଗାମୀମାନଙ୍କ ବିରୁଦ୍ଧରେ ପାର୍ଟିର ସଂଗ୍ରାମକୁ ନେତୃତ୍ୱ ଦେଇଥିଲେ ଜୋସେଫ୍ ଷ୍ଟାଲିନ୍, ଯିଏକି ୧୯୨୨ ମସିହାରେ କମ୍ୟୁନିଷ୍ଟ ପାର୍ଟି କେନ୍ଦ୍ରୀୟ କମିଟିର ସାଧାରଣ ସଂପାଦକ ରୂପେ ନିର୍ବାଚିତ ହୋଇଥିଲେ । ପାର୍ଟିର ଲେନିନ୍‌ବାଦୀ ପଥକୁ ରକ୍ଷା କରି ଷ୍ଟାଲିନ୍ ଦେଶରେ ବିପୁଳ ସମ୍ମାନ ଅର୍ଜନ କରିଥିଲେ ।

ସୋଭିଏତ୍ ୟୁନିଅନ୍‌ର ଶିଳ୍ପାୟନ କାର୍ଯ୍ୟ ଜାତୀୟ ଅର୍ଥନୀତିର ବିକାଶ ପାଇଁ ଯତ୍ନପୂର୍ବକ ବ୍ୟାଖ୍ୟାୟିତ ଦୀର୍ଘକାଳୀନ ଏବଂ ବାର୍ଷିକ ଯୋଜନାଗୁଡ଼ିକ ଉପରେ ଭିତ୍ତି କରି ପରିଚାଳିତ ହୋଇଥିଲା । ୧୯୨୯ ମସିହାରେ ସୋଭିଏତ୍‌ସମୂହର ପଞ୍ଚମ ନିଖିଳ-ୟୁନିଅନ୍ କଂଗ୍ରେସ ଜାତୀୟ ଅର୍ଥନୀତିର ବିକାଶ ପାଇଁ ପ୍ରଥମ ପଞ୍ଚବାର୍ଷିକ ଯୋଜନାକୁ ଅନୁମୋଦନ ଜଣାଇଥିଲା । ଏହି ଯୋଜନା ଅନୁଯାୟୀ ପୂର୍ବବର୍ତ୍ତୀ ପାଞ୍ଚ ବର୍ଷ ଅପେକ୍ଷା ୧୯୨୯-୧୯୩୩ ମଧ୍ୟରେ ଜାତୀୟ ଅର୍ଥନୀତିରେ ପୁଞ୍ଜି ବିନିଯୋଗ ୨.୫ ଗୁଣ ଏବଂ ଶିଳ୍ପରେ ୪ ଗୁଣ ବୃଦ୍ଧିର ହାର ଧାର୍ଯ୍ୟ କରାଯାଇଥିଲା । ପ୍ରଥମ ପଞ୍ଚବାର୍ଷିକ ଯୋଜନାରେ ୫୦,୫୦ କୋଟି ରୁବଲ ପୁଞ୍ଜି ବିନିଯୋଗ କରାଯାଇଥିଲା ବେଳେ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାରେ (୧୯୩୩-୧୯୩୭) ୧୩୩,୪୦ କୋଟି ରୁବଲ ଲଗ୍ନି କରିବାକୁ ଧାର୍ଯ୍ୟ କରାଗଲା । ତୃତୀୟ ପଞ୍ଚବାର୍ଷିକ ଯୋଜନାରେ (୧୯୩୮-୧୯୪୨) ଲଗ୍ନିକୃତ ପୁଞ୍ଜିର ପରିମାଣ ପ୍ରଥମ ଦୁଇ ପଞ୍ଚବାର୍ଷିକ ଯୋଜନାର ମୋଟ ଲଗ୍ନି ଠାରୁ ଅଧିକ ଥିଲା ।

ଯୋଜନାବଦ୍ଧ ଅର୍ଥନୀତିର ସୁଯୋଗ ଫଳରେ ଶିଳ୍ପାୟନ ପାଇଁ ସୋଭିଏତ୍ ରାଷ୍ଟ୍ର ସକ୍ଷମ ହୋଇଥିଲା ଆବଶ୍ୟକୀୟ ପାଣ୍ଠି ଖୋଜି ବାହାର କରିବାକୁ । ରାଷ୍ଟ୍ରୀୟ ଅର୍ଥନୀତି ଥିଲା ପୁଞ୍ଜିର ପ୍ରଧାନ ଉତ୍ସ : ଜାତୀୟକରଣକୃତ ଶିଳ୍ପରୁ ଆୟ, ଯାନବାହନ ବ୍ୟବସ୍ଥା ଏବଂ ବାଣିଜ୍ୟରୁ ଆୟ । ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳରେ ରାଷ୍ଟ୍ରର ମୋଟ ଆୟ

(୧୨୦,୦୦ କୋଟି ରୁବଲ) ମଧ୍ୟରୁ ରାଷ୍ଟ୍ରୀୟର କ୍ଷେତ୍ରର ଆୟ ଥିଲା ୯୦,୦୦ କୋଟି ରୁବଲ । ଏହି ଆୟ ମଧ୍ୟରୁ ୪୩,୪୦ କୋଟି ରୁବଲ ଆସିଥିଲା ଶିଳ୍ପ କ୍ଷେତ୍ରରୁ ।

ସୋଭିଏତ୍ କୃଷକ ସଂପ୍ରଦାୟ ଶିଳ୍ପର ବିକାଶ ପାଇଁ ଆବଶ୍ୟକୀୟ ସଞ୍ଚୟନ ପ୍ରତି ଗୁରୁତ୍ୱପୂର୍ଣ୍ଣ ଅବଦାନ ରଖିଥିଲେ । ଜମି କିଣିବା ବା ଖଜଣା ଦେବାର ବାଧ୍ୟବାଧକତାରୁ ମୁକ୍ତ ହୋଇ ସେମାନେ ସେମାନଙ୍କ ସଞ୍ଚୟରୁ ଗୋଟିଏ ଅଂଶ ରାଷ୍ଟ୍ର ହାତକୁ ଦେଇ ପାରିଥିଲେ ଶିଳ୍ପାୟନ ପାଇଁ । ସେମାନେ ଏହି କାର୍ଯ୍ୟଟି କରିଥିଲେ କୃଷିଜାତ ଜିନିଷପତ୍ର ତୁଳନାରେ ଶିଳ୍ପଜାତ ଦ୍ରବ୍ୟରାଜିକୁ କିଞ୍ଚିତ୍ ଅଧିକ ମୂଲ୍ୟରେ କ୍ରୟ କରି ଏବଂ ଟିକସ ପ୍ରଦାନ କରି ।

ପାଣ୍ଠି ସଂଗ୍ରହ କରିବାର ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଉତ୍ସ ହେଲା ସେଭିଂସ୍ ବ୍ୟାଙ୍କ୍, ରାଷ୍ଟ୍ରୀୟ ବଣ୍ଡ୍, ରାଷ୍ଟ୍ରୀୟ ବିମା ଆଦିରେ ଜନସାଧାରଣଙ୍କ ସଞ୍ଚୟ । ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳରେ ରାଷ୍ଟ୍ର ତରଫରୁ ଦେଶ ମଧ୍ୟରେ ୫୦୦ କୋଟି ରୁବଲ ଋଣ ଗ୍ରହଣ କରାଯାଇଥିଲା । ସୋଭିଏତ୍ ଲୋକେ ସ୍ୱଚ୍ଛମନରେ ସେମାନଙ୍କ ସଞ୍ଚୟର ଏକ ଅଂଶକୁ ରାଷ୍ଟ୍ରକୁ ଋଣ ଆକାରରେ ଦେଇଥିଲେ । ଜନସାଧାରଣଙ୍କ ଠାରୁ ମିଳିଥିବା ଋଣ ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳରେ ରାଷ୍ଟ୍ରୀୟ ବଜେଟର ଶତକଡ଼ା ୧୮ ଭାଗ ରାଜସ୍ୱକୁ ପୂରଣ କରି ଦେଇଥିଲା ।

ଶିଳ୍ପାୟନ କାର୍ଯ୍ୟରେ ବିଦେଶୀ ବାଣିଜ୍ୟ କ୍ଷେତ୍ରରେ ରାଷ୍ଟ୍ରୀୟ ଏକଚାଟିଆ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କଲା । ବିଦେଶୀ ବାଣିଜ୍ୟରୁ ମିଳୁଥିବା ଆୟ ରାଷ୍ଟ୍ରୀୟ ସଞ୍ଚୟ ପାଣ୍ଠିର ଥିଲା ଏକ ଉଲ୍ଲେଖନୀୟ ଅଂଶ । ସମସ୍ତ ଆମଦାନି ଏବଂ ରପ୍ତାନି ପରିଚାଳିତ ହୋଇଥିଲା ଶିଳ୍ପାୟନ ଉଦ୍ଦେଶ୍ୟରେ । ରାଷ୍ଟ୍ର ବିଦେଶରୁ ଆମଦାନି କରିଥିଲା ବିପୁଳ ପରିମାଣର ମେସିନ୍ ଏବଂ ଯନ୍ତ୍ରପାତି । ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳରେ ୭୦୦ କୋଟି ରୁବଲ ମୂଲ୍ୟର ଯନ୍ତ୍ରପାତି ଆମଦାନି କରାଯାଇଥିଲା ବିଦେଶରୁ ।

ସୋଭିଏତ୍ ୟୁନିଅନ୍ ନିଜସ୍ୱ ଜିନିଷପତ୍ର, ଯଥା, କାଷ୍ଠ, ମାଙ୍ଗନିଜ, ତୈଳ, କୃଷିଜାତ ଦ୍ରବ୍ୟାଦି ଅଧିକ ରପ୍ତାନି କଲା ବିଦେଶରୁ ଆମଦାନି କରୁଥିବା ଯନ୍ତ୍ରପାତି ଆଦିର ମୂଲ୍ୟ ସୋଧ କରିବା ପାଇଁ । ସୋଭିଏତ୍ ୟୁନିଅନ୍ ବାଧ୍ୟ ହୋଇ ଦେଶ ମଧ୍ୟରେ କିଛି ଜିନିଷପତ୍ରର ବ୍ୟବହାରକୁ କିଛି ପରିମାଣରେ ସୀମିତ କରିଥିଲା । ଏହା କରାଯାଇଥିଲା ଦ୍ରୁତ ଶିଳ୍ପାୟନର ସ୍ୱାର୍ଥ ଦୃଷ୍ଟିରୁ ଏବଂ ବାହାରକୁ ଖାଦ୍ୟ ଦ୍ରବ୍ୟ ରପ୍ତାନି କରିବା ପଡ଼ିଥିଲା । ସେସବୁ ଖାଦ୍ୟ ଦ୍ରବ୍ୟ ମଧ୍ୟରେ ଥିଲା – ରୁଟି, ଲହୁଣୀ, ଚିନି, ଟିଣରେ ଥିବା ଖାଦ୍ୟ ଆଦି । ଦେଶରେ ଖାଦ୍ୟାଭାବ ଥିବାରୁ ରେସନ ବ୍ୟବସ୍ଥା ପ୍ରବର୍ତ୍ତନ କରାଯାଇଥିଲା । ଏହାର ପରିବର୍ତ୍ତେ ଅନ୍ୟ ଉପାୟ ନାହିଁ ବୋଲି ସୋଭିଏତ୍ ଲୋକେ ହୃଦୟଙ୍ଗମ କରିଥିଲେ । ସେମାନେ ସଂପୂର୍ଣ୍ଣ ରୂପେ ସଚେତନ ଥିଲେ ପରିଭୋଗକୁ ସୀମିତ କରିବାର ଆବଶ୍ୟକତା ସଂପର୍କରେ । ଏହା ଦ୍ୱାରା ବିଦେଶରୁ ଅଧିକ ଯନ୍ତ୍ରପାତି

କିଣାଯାଇ ପାରିବ ଏବଂ ଶିଳ୍ପାୟନର ହାର ଦ୍ରୁତ ବୃଦ୍ଧି ପାଇବ ବୋଲି ସେମାନେ ଜାଣିଥିଲେ ।

ସେହିସବୁ ବର୍ଷମାନଙ୍କରେ ସୋଭିଏତ୍ ଜନସାଧାରଣଙ୍କ ଚିନ୍ତା ଏବଂ ମନଭାବକୁ ଜଣେ ଶ୍ରମିକ କିପରି ପ୍ରକାଶ କରିଥିଲେ, ଦେଖନ୍ତୁ : "ଆମେ କେମିତି ଚଳୁଛୁ ? ଜୀବନ ଖୁବ୍ କଠିନ ହୋଇ ପଡ଼ିଛି ... ଯେକୌଣସି ସ୍ତ୍ରୀଲୋକଙ୍କୁ ପଚ୍ଚାରନ୍ତୁ, ତାଙ୍କ ପକ୍ଷରେ ପିଲା ଜନ୍ମ କରିବା କ'ଣ, ସହଜ ? ଗୋଟିଏ ଶିଶୁକୁ ଜୀବନ ଦେବା ପାଇଁ ଜଣେ ନାରୀଙ୍କୁ କେତେ କଷ୍ଟ ସହ୍ୟ କରିବାକୁ ନପଡ଼େ ! ଶିଶୁଟି ବଢ଼ି କୁଢ଼ି ମଣିଷ ହେଲା ପର୍ଯ୍ୟନ୍ତ କେତେ କଷ୍ଟ ଆଉ ଚିନ୍ତାଜନକ ! କେତେ ବର୍ଷର ଶ୍ରମ ତା'ପଛରେ ଲଗାଇବାକୁ ପଡ଼େ ! ଆମେ ରୁଷ୍ ସର୍ବହରାମାନେ ସ୍ଥିର କରିଛୁ ଏ ସାରା ଦୁନିଆକୁ ଜନ୍ମ ଦେବା ପାଇଁ ଏବଂ କେବଳ ଆମରି ପାଇଁ ନୁହେଁ, ଆପଣଙ୍କ ପରି, ମୋ ପରି ସମସ୍ତ ଲୋକଙ୍କ ପାଇଁ । ଆପଣ କ'ଣ ଭାବୁଛନ୍ତି, ସେ ନୂଆ ଦୁନିଆ ଏମିତି ଗଢ଼ି ଉଠିବ, ସେଥି ପାଇଁ କୌଣସି ଦୁଃଖ ଯନ୍ତ୍ରଣା ସହିବାକୁ ପଡ଼ିବ ନାହିଁ ?"

୧୯୨୦ ଦଶକର ମଧ୍ୟ ଭାଗରେ ଦେଶର ଶିଳ୍ପାୟନ କାର୍ଯ୍ୟ ଆରମ୍ଭ ହୋଇଥିଲା । ନୂଆ ନୂଆ ଶିଳ୍ପୋଦ୍ୟୋଗ ନିର୍ମିତ ହେଲା ଏବଂ ପୁରୁଣାଗୁଡ଼ିକୁ କାରୁକୌଶଳଗତ ଭାବେ ନବାୟିତ କରାଗଲା । ୧୯୩୦ ଦଶକରେ ଶିଳ୍ପାୟନ କାର୍ଯ୍ୟରେ ଦେଖାଦେଲା ସର୍ବାଧିକ ବେଗ ।

ପ୍ରଥମ ପଞ୍ଚବାର୍ଷିକ ଯୋଜନାର ପ୍ରଥମ ବର୍ଷରେ (୧୯୨୯) ବ୍ୟାପକ ଶିଳ୍ପ ନିର୍ମାଣ ଆରମ୍ଭ ହୋଇଗଲା । ଷ୍ଟାଲିନ୍‌ଗ୍ରାଦ (ଏବେ ଭୋଲ୍‌ଗଗ୍ରାଦ), ଖାର୍‌କୋଭ୍ ଏବଂ ଚେଲ୍ୟାବିନ୍‌ସ୍କରେ ଟ୍ରାକ୍ଟର ନିର୍ମାଣ କାରଖାନା, ସାରାତୋଭ୍ ଏବଂ ଜାପୋରୋଝେରେ କମ୍ବାଇନ ହାର୍ଭେଷ୍ଟର କାରଖାନା, ରୋସ୍ତୋଭ୍-ଅନ-ଦନ୍‌ରେ ପୃଥିବୀରେ ସର୍ବବୃହତ୍ କୃଷିଯନ୍ତ୍ର କାରଖାନା, ମସ୍କୋ ଏବଂ ନିଝନି-ନୋଭ୍‌ଗୋରଦରେ (ଗର୍କି) ମୋଟର ନିର୍ମାଣ କାରଖାନା, ମାଉଣ୍ଟ୍ ମାଗ୍‌ନିତ୍‌ନାୟା (ୟୁରାଲସ୍‌ରେ) ଏବଂ କୁଜ୍‌ନେତ୍‌ସ୍କରେ (ସାଇବେରିଆରେ) ବିଶାଳ ଲୌହ ଏବଂ ଇସ୍‌ପାତ କାରଖାନା, ଗୋରଲୋଭ୍‌କା, କ୍ରାମାତୋର୍‌ସ୍କ ଏବଂ ସ୍ୱେରଦଲୋଭ୍‌ସ୍କରେ ଭାରୀ ଇଂଜିନିୟରିଂ କାରଖାନା, ବେରେଜ୍‌ନିକି, ସୋଲିକାମ୍‌ସ୍କ ଏବଂ ମସ୍କୋ ନିକଟରେ ରାସାୟନିକ କାରଖାନା, ଦ୍‌ନିପର ନଦୀରେ ୟୁରୋପର ସର୍ବବୃହତ୍ ଜଳବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର ଏବଂ ୧୫୦୦ କିଲୋମିଟର ଲମ୍ବ ତୁର୍କିସ୍ତାନ-ସାଇବେରିଆ ରେଳପଥ ଆଦିର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା ।

ମାନବଜାତିର ଇତିହାସରେ କୌଣସି ଏକ ଦେଶରେ ପୁଞ୍ଜି ନିର୍ମାଣର ଏପରି ବିଶାଳ ପରିସର କେବେ ଦେଖିବାକୁ ମିଳି ନଥିଲା । ସମଗ୍ର ସୋଭିଏତ୍ ୟୁନିଅନ୍

ପରିଣତ ହୋଇଥିଲା ବିରାଟ ଏକ ନିର୍ମାଣ ସ୍ଥଳୀରେ । ଦିନ ରାତି, ଶୀତ ଗ୍ରୀଷ୍ମ— ସବୁବେଳେ ଆଧୁନିକ ଶିଳ୍ପୋଦ୍ୟୋଗମାନ ନିର୍ମିତ ହେଉଥିଲା । ସେହିସବୁ ବର୍ଷମାନଙ୍କରେ ସୋଭିଏତ୍ ୟୁନିଅନ୍‌ରେ ନିର୍ମାଣ କାରିଗରି ଥିଲା କମ୍ : କୋଦାଳ ଏବଂ ଚକଲଗା ଠେଲାଗାଡ଼ି ହେଲା ନିର୍ମାଣ କର୍ମୀମାନଙ୍କର ପ୍ରଧାନ ଯନ୍ତ୍ର । ତେବେ ଏହିସବୁ ମାନ୍ଧାତା ଅମଳର ଯନ୍ତ୍ର ନେଇ ସେମାନେ ଅସମ୍ଭବ ସମ୍ଭବ କରିଥିଲେ ।

ଷ୍ଟାଲିନ୍‌ଗ୍ରାଦ ଟ୍ରାକ୍ଟର କାରଖାନା ନିର୍ମାଣକାରୀ ଶ୍ରମିକମାନେ ନିର୍ଦ୍ଧାରିତ ସମୟର ବର୍ଷକ ପୂର୍ବରୁ କାରଖାନା କାର୍ଯ୍ୟ ଶେଷ କରି ଦେବେ ବୋଲି ଘୋଷଣା କରିଥିଲେ । ୧୯୩୦, ଜୁନ୍ ମାସରେ ଏଥିରେ ଉତ୍ପାଦନ ଆରମ୍ଭ ହୋଇଥିଲା । ତୁର୍କେସ୍ତାନ୍-ସାଇବେରିଆ ରେଳପଥ ଏବଂ ଦ୍ନିପର ନଦୀରେ ଭି.ଆଇ.ଲେନିନ୍ ଜଳବିଦ୍ୟୁତ୍ କେନ୍ଦ୍ର ମଧ୍ୟ ସେହିପରି ବର୍ଷକ ଆଗରୁ ନିର୍ମିତ ହୋଇଥିଲା ।

ମାଗ୍‌ନିତୋଗୋର୍‌ସ୍କ ଏବଂ କୁଜନେତ୍‌ସ୍କ ଲୌହ ଇସ୍‌ପାତ କାରଖାନାର ନିର୍ମାତାମାନେ ବୀରତ୍ୱର ସହିତ କାର୍ଯ୍ୟ କରି ଚାଲିଥିଲେ । ସେମାନେ ଦେଶର ପ୍ରାଚ୍ୟ ଭାଗରେ ଏକ ନୂତନ କୋଇଲା ଏବଂ ଧାତବ ଭିତ୍ତି ନିର୍ମାଣ କରି ଚାଲିଥିଲେ ଗ୍ରୀଷ୍ମ ଏବଂ ହାଡ଼ ଥରା ଶୀତ ମଧ୍ୟରେ । କୁଜ୍‌ନେତ୍‌ସ୍କ ଲୌହ ଏବଂ ଇସ୍‌ପାତ କାରଖାନା ନିର୍ମାଣ ପ୍ରୋଜେକ୍ଟର ମୁଖ୍ୟ ଇଂଜିନିୟର ଆଇ.ପି.ବାର୍ଦିନ୍ ପରେ ସ୍ମୃତି ଚାରଣ କରି କହିଥିଲେ : "ଦେଶର ସମସ୍ତ ଅଂଶରୁ ଲୋକେ ଆମ ପାଖକୁ ଆସୁଥିଲେ । କାଜାଖ୍ ଏବଂ ଅନ୍ୟାନ୍ୟ ଜାତିର ଲୋକେ ରୁଷ୍ ଏବଂ ୟୁକ୍ରେନ୍‌ର ଲୋକଙ୍କ ସହିତ ଏକତ୍ର କାର୍ଯ୍ୟ କରୁଥିଲେ । ପୂର୍ବେ ନିରକ୍ଷର ଥିବା ଏବଂ ଜୀବନରେ କାରଖାନା କେମିତି ଦେଖି ନଥିବା ଏହି ଲୋକେ କେତେ ଯେ ଶ୍ରମ ସାଫଲ୍ୟ ଅର୍ଜନ କରିଥିଲେ... କଂକ୍ରିଟ୍ ନିର୍ମାଣକାରୀମାନେ ୧୫୦ ବ୍ୟାଚ୍ କଂକ୍ରିଟ ଦେବା ପରିବର୍ତ୍ତେ ୪୦୮ ବ୍ୟାଚ୍ ଦେଇଥିଲେ । କଣ୍ଡା ନିର୍ମାଣକାରୀମାନେ ଗୋଟିଏ ସିଫ୍‌ଟରେ ୧୦୫ଟି କଣ୍ଡା ଦେବା ପରିବର୍ତ୍ତେ ୨୬୬ଟି କଣ୍ଡା ଦେଇଥିଲେ । ମାଟି ଖନନକାରୀ ଶ୍ରମିକମାନେ ପ୍ରତି ସିଫ୍‌ଟରେ ୧୦ଟି ଦୈନିକ କୋଟା ବେଳେ ବେଳେ କରି ପାରୁଥିଲେ । ଯୁବ ସଂଘର ସଦସ୍ୟମାନେ ତାପାର ୫୦ ଡିଗ୍ରି ସେଣ୍ଟିଗ୍ରେଡ୍ ନିମ୍ନରେ ପ୍ରବଳ ଶୀତରେ ଅନେକ ଉଚ୍ଚ ଜାଗାରେ କଣ୍ଡା ନିର୍ମାଣ କାର୍ଯ୍ୟ କରୁଥିଲେ । ଇଟା ନିର୍ମାଣକାରୀ ଶ୍ରମିକମାନେ ଜଣପିଛା ପ୍ରତି ସିଫ୍‌ଟରେ ୧୫ ଟନ୍ ଓଜନର ପୋଡ଼ା ଇଟା ପକାଉଥିଲେ । ଶ୍ରମିକମାନଙ୍କୁ ସେମାନଙ୍କ ଉତ୍ସାହରେ କୌଣସି କିଛି—ବରଫ ଝଡ଼, କିମ୍ବା ବର୍ଷା ବାଧା ଦେଇ ପାରୁ ନଥିଲା । ନିର୍ମାଣସ୍ଥଳୀମାନଙ୍କର ମୁଖ୍ୟ ସ୍ଲୋଗାନ ଥିଲା : 'ଦେଶ ପାଇଁ ଲୌହପିଣ୍ଡ !' ଲୌହ ତରଳାଇବାର ଚୁଲୀଗୁଡ଼ିକର ନିର୍ମାଣ କାର୍ଯ୍ୟ ସଂପନ୍ନ କରିବାରେ ନେତୃତ୍ୱ ନେଇଥିଲେ କମ୍ୟୁନିଷ୍ଟ ଏବଂ ଯୁବ ସଂଘର ସଦସ୍ୟବୃନ୍ଦ ଏବଂ ସେସବୁ ସାଫଲ୍ୟ ମଣ୍ଡିତ ହୋଇଥିଲା ।" ମାଗ୍‌ନିତୋଗୋର୍‌ସ୍କ କାରଖାନାର ପ୍ରଥମ ଲୌହ ତରଳାଚୁଲ୍ଲୀଟି ପ୍ରଥମ

ଲୌହପିଣ୍ଡ ଉତ୍ପାଦନ କରିଥିଲା ୧୯୩୨, ଫେବୃଆରୀ ମାସରେ ଏବଂ କୁଜ୍‌ନେତ୍‌ସ କାରଖାନାଟି ଏପ୍ରିଲ ମାସରେ ।

ମୋଟ ୧୫୦୦ଟି ନୂତନ ବୃହତ୍ ଶିଳ୍ପୋଦ୍ୟୋଗ ଉତ୍ପାଦନ ଆରମ୍ଭ କରିଥିଲା ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳରେ । ଏହି ସମୟରେ ଅନେକ ପୁରୁଣା ଶିଳ୍ପୋଦ୍ୟୋଗର ନବାୟନ କାର୍ଯ୍ୟ ସଂପନ୍ନ ହୋଇଥିଲା ।

ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା କାଳରେ ମଧ୍ୟ ଅନୁରୂପ ଶିଳ୍ପ ନିର୍ମାଣର ଆକାର ଏବଂ ଦ୍ରୁତତା ଅବ୍ୟାହତ ରହିଥିଲା : ୧୯୩୩-୧୯୩୭ ମଧ୍ୟରେ ନିର୍ମିତ ହୋଇଥିଲା ୪୫୦୦ଟି ଶିଳ୍ପୋଦ୍ୟୋଗ, ପ୍ରଥମ ପଞ୍ଚବାର୍ଷିକ ଯୋଜନା ତୁଳନାରେ ପ୍ରାୟ ୩ଗୁଣ ଅଧିକ । ଆଉରି ୩୦୦୦ଟି ଶିଳ୍ପୋଦ୍ୟୋଗ ନିର୍ମିତ ହୋଇଥିଲା ତୃତୀୟ ପଞ୍ଚବାର୍ଷିକ ଯୋଜନାର (୧୯୩୮-୧୯୪୧) ଶାନ୍ତିପୂର୍ଣ୍ଣ ସାଢ଼େ ତିନି ବର୍ଷ ମଧ୍ୟରେ ।

ଏହି ଭାବେ ବିଶ୍ୱ ଯୁଦ୍ଧପୂର୍ବ ୧୩ ବର୍ଷ (୧୯୨୮-୧୯୪୦) ମଧ୍ୟରେ ପ୍ରାୟ ୯୦୦୦ଟି ବୃହତ୍ ଆଧୁନିକ ଶିଳ୍ପୋଦ୍ୟୋଗରେ ଉତ୍ପାଦନ ଆରମ୍ଭ ହୋଇଥିଲା । ନୂତନ ନୂତନ ଶିଳ୍ପ ଓ ଉତ୍ପାଦନ ଦେଖାଦେଲା, ଯଥା, ମୋଟରଗାଡ଼ି, ଟ୍ରାକ୍ଟର, ରସାୟନ ଦ୍ରବ୍ୟ, ଭାରୀ ଇଂଜିନିୟରିଂ, ମେସିନ୍, ବିୟରିଂ, କମ୍ବାଇନ ହାର୍ଭେଷ୍ଟର ଏବଂ ଆଉରି ଅନେକ ।

ସ୍ୱଳ୍ପ କାଳ ମଧ୍ୟରେ ଏତେଗୁଡ଼ିଏ ଶିଳ୍ପୋଦ୍ୟୋଗ ନିର୍ମାଣ କରିବା ପ୍ରକୃତରେ ଏକ ଦୁଃସାଧ୍ୟ କାର୍ଯ୍ୟ ଥିଲା ।

ତେବେ, ସେସବୁକୁ ନିର୍ମାଣ କରିବା ଯେପରି ଆବଶ୍ୟକ ଥିଲା, ସେଇପରି ସେସବୁକୁ ଚଳେଇବା, ସେସବୁରେ ପୂର୍ଣ୍ଣତର ଉପଯୋଗ କରିବା ଏବଂ ନୂଆ କାରିଗରିକୁ ଆୟତ୍ତ କରିବା ମଧ୍ୟ ଜରୁରି ହୋଇ ପଡ଼ିଥିଲା । ଦକ୍ଷ ଶ୍ରମିକ, ଇଂଜିନିୟର ଏବଂ କାରିଗରମାନଙ୍କର ଏକାନ୍ତ ଅଭାବ ହେତୁ ଏହି କଠିନ ସମସ୍ୟାକୁ ତତ୍‌କ୍ଷଣାତ୍ ସମାଧାନ କରିବା ସମ୍ଭବ ହୋଇ ନଥିଲା । ତେବେ, ଯଥେଷ୍ଟ ସଂଖ୍ୟକ ସୁଦକ୍ଷ ଶ୍ରମିକ ଓ ଇଂଜିନିୟରମାନଙ୍କୁ ତାଲିମ ଦେଲା ପର୍ଯ୍ୟନ୍ତ ଦେଶ ନୂଆ ନୂଆ କାରଖାନା ନିର୍ମାଣକୁ ସ୍ଥଗିତ ରଖି ପାରି ନଥାନ୍ତା । ତେଣୁ କରି କାରଖାନାର ପୂର୍ବତନ ନିର୍ମାତାମାନେ ମେସିନ୍ ଯନ୍ତ୍ରପାତିକୁ ଚଳାଇଲେ ଏବଂ କାର୍ଯ୍ୟ ମଧ୍ୟ ଦେଇ ନୂଆ ଯାନ୍ତ୍ରିକ କୌଶଳକୁ ଆୟତ୍ତ କଲେ ।

ସୋଭିଏତ୍ ରାଷ୍ଟ୍ର ପଦକ୍ଷେପମାନ ଗ୍ରହଣ କରିଥିଲା ସୁଦକ୍ଷ ଶ୍ରମିକମାନଙ୍କୁ ଶୀଘ୍ର ଶୀଘ୍ର ତାଲିମ ଦେବା ପାଇଁ । ଅଳ୍ପ ବୟସର ଲୋକଙ୍କୁ ତାଲିମ୍ ଦେବା ପାଇଁ ଅନେକଗୁଡ଼ିଏ ବେଉଷାଗତ ସ୍କୁଲ ଖୋଲାଗଲା, ଶ୍ରମିକମାନଙ୍କୁ ନୂଆ କାରିଗରିଗତ ତାଲିମ୍ ଦିଆଗଲା । ଶିଳ୍ପକାରଖାନାଗୁଡ଼ିକରେ ମଧ୍ୟ ଶ୍ରମିକମାନଙ୍କୁ ଶିକ୍ଷା ଦେବା ପାଇଁ ପାଠ୍ୟକ୍ରମର ବ୍ୟବସ୍ଥା ହେଲା । ସେଠାରେ ସେମାନେ ବିଭିନ୍ନ ବେଉଷା ସମେତ ମଧ୍ୟମ

ଧରଣ ତଥା ଉଚ୍ଚ ଧରଣର ଦକ୍ଷତା ଆୟତ୍ତ କଲେ । ଶ୍ରମିକମାନଙ୍କର କାରିଗରି ଜ୍ଞାନ ତଥା ଦକ୍ଷତାର ଅଭିବୃଦ୍ଧି ନିମିତ୍ତ ବହୁବିଧ ଗ୍ରୁପ୍ ଓ ପାଠ୍ୟକ୍ରମ ସୃଷ୍ଟି କରାଗଲା । ଜଟିଳ ଯନ୍ତ୍ରପାତି ଏବଂ ଯନ୍ତ୍ରକୌଶଳ ସହିତ ସଂପୃକ୍ତ ଶ୍ରମିକମାନଙ୍କ ପାଇଁ ସରକାର ତରଫରୁ ବାଧ୍ୟତାମୂଳକ ପରୀକ୍ଷାର ବ୍ୟବସ୍ଥା ହେଲା । ଏହି ଭାବେ ଶିଳ୍ପକୁ ଦକ୍ଷ ଶ୍ରମିକ ଯୋଗାଇ ଦେବାର ସମସ୍ୟାକୁ ସମାଧାନ କରାଯାଇଥିଲା ।

ଇଂଜିନିୟର ଏବଂ କାରିଗରମାନଙ୍କୁ ତାଲିମ୍ ଦେବାର ସମସ୍ୟାଟିକୁ ମଧ୍ୟ ସଫଳତାର ସହିତ ସମାଧାନ କରାଯାଇ ପାରିଥିଲା । ଶିଳ୍ପାୟନ ପର୍ବରେ ଦେଶ ମଧ୍ୟରେ ବହୁ ଉଚ୍ଚତର ଏବଂ ମାଧ୍ୟମିକ ସ୍କୁଲ ପ୍ରତିଷ୍ଠା କରାଯାଇଥିଲା । ଶ୍ରମିକମାନଙ୍କ ପାଇଁ ଦିନବେଳିଆ ଏବଂ ସଂଧ୍ୟାବେଳିଆ ଶିକ୍ଷା ପ୍ରତିଷ୍ଠାନମାନ ଗ୍ରରିଆଡ଼େ ବିଛୁଡ଼ି ଦିଆଗଲା । ଏହିସବୁ ଶିକ୍ଷା ପ୍ରତିଷ୍ଠାନ ଶ୍ରମିକମାନଙ୍କୁ ତାଲିମ୍ ଦେଲା ଉଚ୍ଚତର ଶିକ୍ଷା ପ୍ରତିଷ୍ଠାନରେ ପ୍ରବେଶ କରିବା ପାଇଁ ।

ଶିଳ୍ପାୟନର ପ୍ରଥମ ବର୍ଷମାନଙ୍କରେ ଦେଶରେ ଦେଖାଦେଇଥିବା ଇଂଜିନିୟର, କାରିଗର ଏବଂ ଦକ୍ଷ ଶ୍ରମିକମାନଙ୍କର ଅତ୍ୟଧିକ ଅଭାବ ହେତୁ ସୋଭିଏତ୍ ରାଷ୍ଟ୍ର ବାଧ୍ୟ ହୋଇଥିଲା ଦେଶରେ କାମ କରିବା ନିମିତ୍ତ ବିଦେଶୀ ବିଶେଷଜ୍ଞମାନଙ୍କୁ ନିମନ୍ତ୍ରଣ କରିବାକୁ । ୧୯୩୦ ଦଶକର ପ୍ରାରମ୍ଭରେ ପ୍ରାୟ ୬୦୦୦ ବିଦେଶୀ ବିଶେଷଜ୍ଞ ବିଭିନ୍ନ ଶିଳ୍ପୋଦ୍ୟୋଗ ଏବଂ ନିର୍ମାଣ ସ୍ଥଳୀରେ କର୍ମରତ ଥିଲେ । ଏହିସବୁ ବିଶେଷଜ୍ଞମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ସାଧୁତାର ସହିତ ସେମାନଙ୍କ ଚୁକ୍ତି ପୂରଣ କରିଥିଲେ, ଶିଳ୍ପୋଦ୍ୟୋଗଗୁଡ଼ିକର ଡିଜାଇନ୍ ଏବଂ ନିର୍ମାଣରେ ବ୍ୟାପକ ଭାବେ ସାହାଯ୍ୟ କରିଥିଲେ ଏବଂ ସେସବୁରେ ଉତ୍ପାଦନ କରାଇଥିଲେ । ସେମାନଙ୍କ ମଧ୍ୟରୁ ଅନେକଙ୍କୁ ସେମାନଙ୍କ ସତ୍‌କାର୍ଯ୍ୟ ପାଇଁ ବିଭିନ୍ନ ପୁରସ୍କାର ଓ ପଦକରେ ମଣ୍ଡିତ କରାଯାଇଥିଲା । ଦୃଷ୍ଟାନ୍ତ ସ୍ୱରୂପ, ଦ୍‌ନିପର ଜଳ ବିଦ୍ୟୁତ୍ କେନ୍ଦ୍ରର ନିର୍ମାଣ କାର୍ଯ୍ୟରେ ଆମେରିକାନ ଇଂଜିନିୟ କୁପରଙ୍କୁ ଅର୍ଡର ଅଫ୍ ଲେନିନ୍ ପ୍ରଦାନ କରାଯାଇଥିଲା । କିନ୍ତୁ ବିଦେଶୀ ବିଶେଷଜ୍ଞମାନଙ୍କ ମଧ୍ୟରୁ କେତେକ ଧ୍ୱଂସମୂଳକ କାର୍ଯ୍ୟରେ ଲିପ୍ତ ହୋଇଥିଲେ । ଦୃଷ୍ଟାନ୍ତ ସ୍ୱରୂପ, ବ୍ରିଟିଶ୍ "ମେଟ୍ରୋପୋଲିଟାନ ଭିକ୍‌କରସ୍" କଂପାନିର ମସ୍କୋ ଅଫିସର କେତେକ କର୍ମୀ ସୋଭିଏତ୍ ୟୁନିଅନ୍‌ର ସର୍ବବୃହତ୍ ବିଦ୍ୟୁତ୍ ଉତ୍ପାଦନକାରୀ କେନ୍ଦ୍ରରେ ଧ୍ୱଂସକାରୀ ସଂଗଠନଗୁଡ଼ିକର ସ୍ରଷ୍ଟା ରୂପେ ଧରାପଡ଼ି ଯାଇଥିଲେ ।

ଜାତୀୟ କର୍ମୀ ବାହିନୀର ବ୍ୟାପକ ତାଲିମ୍ ଫଳରେ ଦେଶ ଅବିଳମ୍ବେ ନିଜକୁ ବିଦେଶୀ ବିଶେଷଜ୍ଞମାନଙ୍କୁ ନିମନ୍ତ୍ରଣ କରିବାରୁ ମୁକ୍ତ ହୋଇଥିଲା ।

ସୋଭିଏତ୍ ୟୁନିଅନ୍‌ର ଶିଳ୍ପାୟନ କାର୍ଯ୍ୟକ୍ରମକୁ ସାଫଲ୍ୟ ମଣ୍ଡିତ କରିବାର ଐତିହାସିକ ଗୌରବର ଅଧିକାରୀ ହେଉଛନ୍ତି ଏ ଦେଶର ଶ୍ରମିକ ଶ୍ରେଣୀ । ଶ୍ରମିକ

ଶ୍ରେଣୀ ଶିଳ୍ପାୟନକୁ ଦେଖିଥିଲା ଦେଶର ଅର୍ଥନୈତିକ ପଶ୍ଚାଦ୍‌ପଦତାକୁ ଅତିକ୍ରମ କରିବାର, ତା'ର ପ୍ରତିରକ୍ଷାକୁ ଶକ୍ତିଶାଳୀ କରିବାର, ବେକାରି ଦୂର କରିବାର, ଲୋକଙ୍କ ଜୀବନଧାରଣମାନଙ୍କୁ ଶୀଘ୍ର ଉନ୍ନତ କରିବାର ଏବଂ ସୋଭିଏତ୍ ୟୁନିଅନ୍‌ରେ ସମାଜବାଦୀ ସମାଜ ନିର୍ମାଣ କରିବାର ଭିତ୍ତି ସ୍ୱରୂପ ।

ମହାନ୍ ଚିନ୍ତାଧାରା ଜନ୍ମ ଦେଇଥାଏ କାର୍ଯ୍ୟ କ୍ଷେତ୍ରରେ ମହାନ୍ ଶକ୍ତିକୁ । ଶିଳ୍ପାୟନର ଚିନ୍ତାଧାରାଟି ଜନସାଧାରଣଙ୍କ ମଧ୍ୟରେ, ପ୍ରଥମତଃ ଶ୍ରମିକ ଶ୍ରେଣୀ ମଧ୍ୟରେ ବିପୁଳ ଶ୍ରମ ଉଦ୍ଦୀପନା ସୃଷ୍ଟି କରିଥିଲା । ଏହା ପ୍ରତିଫଳିତ ହୋଇଥିଲା ପ୍ରଥମ ପଞ୍ଚବାର୍ଷିକ ଯୋଜନାର ପ୍ରଥମ ବର୍ଷ, ୧୯୨୯ରେ ଅନୁଷ୍ଠିତ ଉତ୍ପାଦନ ଯୋଜନା ପୂରଣ ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ସମାଜବାଦୀ ପ୍ରତିଯୋଗିତା ଆନ୍ଦୋଳନରେ । ୧୯୨୯, ଜାନୁଆରୀ ୨୦ ତାରିଖରେ ୧୯୧୭ ଡିସେମ୍ବର ମାସରେ ଲିଖିତ ଲେନିନ୍‌ଙ୍କ ଏକ ପ୍ରବନ୍ଧ ପ୍ରକାଶ ପାଇଥିଲା । ଲେନିନ୍ ଏଥିରେ ସମାଜବାଦୀ ପ୍ରତିଯୋଗିତା ସଂଗଠନ ପାଇଁ ଆହ୍ୱାନ ଦେଇଥିଲେ । ସେ ଲେଖିଥିଲେ, ସମାଜବାଦ ପ୍ରଥମ ଥର ପାଇଁ ଏପରି ସୁଯୋଗରାଜି ସୃଷ୍ଟି କରୁଛି, "ଯଦ୍ୱାରା ଶ୍ରମଜୀବୀ ଜନସାଧାରଣଙ୍କ ମଧ୍ୟରୁ ଅଧିକାଂଶ ଆକର୍ଷିତ ହୋଇ ଆସିବେ ଶ୍ରମ କ୍ଷେତ୍ରକୁ, ଯେଉଁଥିରେ ସେମାନେ ସେମାନଙ୍କ କ୍ଷମତା ପ୍ରଦର୍ଶନ କରି ପାରିବେ, ନିଜର ସାମର୍ଥ୍ୟକୁ ବିକାଶ କରି ପାରିବେ ଏବଂ ସେହିସବୁ ପ୍ରତିଭାକୁ ଉନ୍ମୋଚନ କରି ପାରିବେ, ଯାହାକି ଜନସାଧାରଣଙ୍କ ମଧ୍ୟରେ ବିପୁଳ ପରିମାଣରେ ରହିଛି ଏବଂ ଯାହାକୁ ପୁଞ୍ଜିବାଦ ହଜାର ହଜାର, ଲକ୍ଷ ଲକ୍ଷ ସଂଖ୍ୟାରେ ଧ୍ୱଂସ କରି ଦେଇଛି, ଦମନ କରିଛି ଏବଂ ଚଣ୍ଡି ଚିପି ଦେଇଛି ।" ସେ ଆଉରି କହିଥିଲେ, "ଏବେ ଏକ ସମାଜବାଦୀ ସରକାର କ୍ଷମତାରେ ରହିଛି, ଆମର କର୍ତ୍ତବ୍ୟ ହେଉଛି ପ୍ରତିଯୋଗିତା ଆୟୋଜିତ ହେବା ।"

ଲେନିନ୍‌ଙ୍କର ଏହି ଆହ୍ୱାନକୁ ବ୍ୟାପକ ଶ୍ରମଜୀବୀ ଜନସାଧାରଣ ସମର୍ଥନ ଜଣାଇଥିଲେ । ସମାଜବାଦୀ ପ୍ରତିଯୋଗିତା ନିମିତ୍ତ ବ୍ୟକ୍ତିବିଶେଷ ଶ୍ରମିକମାନଙ୍କ ମଧ୍ୟରେ, ଟିମ୍, ଶ୍ରମଶାଳା ଏବଂ ଶିଳ୍ପୋଦ୍ୟୋଗଗୁଡ଼ିକ ମଧ୍ୟରେ ଚୁକ୍ତି ସଂପାଦିତ ହେଲା । ସମାଜବାଦୀ ପ୍ରତିଯୋଗିତା ଏବଂ ପୁଞ୍ଜିବାଦୀ ପ୍ରତିଯୋଗିତା ମଧ୍ୟରେ ବିରାଟ ପାର୍ଥକ୍ୟ ଦେଖିବାକୁ ମିଳେ । ପୁଞ୍ଜିବାଦୀ ପ୍ରତିଯୋଗୀମାନେ ଚାହାନ୍ତି ପରସ୍ପରକୁ ଚଣ୍ଡି ଚିପି ମାରି ଦେବାକୁ । ସମାଜବାଦୀ ପ୍ରତିଯୋଗିତାରେ ଅଂଶଗ୍ରହଣକାରୀମାନେ ଶପଥ ନିଅନ୍ତି ଉତ୍ପାଦନ ଯୋଜନାର ଉପରକୁ ଉଠିବାକୁ, ଉତ୍ପାଦନଶୀଳତାକୁ ବୃଦ୍ଧି କରିବାକୁ ଏବଂ ଯୋଜନାରେ ଅନୁମିତ ଉତ୍ପାଦନ ଖର୍ଚ୍ଚକୁ ଅଧିକତର ଭାବେ କମେଇ ନେବାକୁ । ପ୍ରତ୍ୟେକ ଶ୍ରମିକ ତା'ର ନିଜସ୍ୱ ବାଟରେ, ସାଧାରଣ ଲକ୍ଷ୍ୟ ରୂପେ ଉତ୍ପାଦନ ବୃଦ୍ଧି କରିବାକୁ ଚାହାନ୍ତି । ପ୍ରତିଯୋଗୀ ଶ୍ରମିକମାନେ ପରସ୍ପରକୁ ସାହାଯ୍ୟ କରନ୍ତି । ପ୍ରତିଯୋଗିତାରେ ଯେଉଁସବୁ ଶ୍ରମିକ ଉଲ୍ଲେଖନୀୟ ସାଫଲ୍ୟ ଦେଖାନ୍ତି, ସେମାନେ ଉତ୍କୃଷ୍ଟ ଶ୍ରମିକର ଏକ ସମ୍ମାନଜନକ "ଉଦାରନିକ" (Shock Worker) ଉପାଧି ଲାଭ କରନ୍ତି । ସେମାନଙ୍କୁ ଅର୍ଥ

ଆକାରରେ ପୁରସ୍କାର ଏବଂ ମୂଲ୍ୟବାନ ଉପହାର ମିଳେ ଏବଂ ସେମାନଙ୍କ ଛବି ପ୍ରଦର୍ଶିତ ହୁଏ ସମ୍ମାନସୂଚକ ବୋର୍ଡ ଉପରେ ।

ବ୍ୟାପକ ଆକାରରେ ସମାଜବାଦୀ ପ୍ରତିଯୋଗିତା ଆନ୍ଦୋଳନ ଶ୍ରମର ଉତ୍ପାଦନ-ଶୀଳତା ଉପରେ ଅନୁକୂଳ ପ୍ରଭାବ ପାତ କରିଥିଲା : ୧୯୨୯ ମସିହାରେ ଶିଳ୍ପ କ୍ଷେତ୍ରରେ ଉତ୍ପାଦନଶୀଳତା ବୃଦ୍ଧି ପାଇଥିଲା ପ୍ରାୟ ଶତକଡ଼ା ୨୦ ଭାଗ । ୧୯୨୯, ଡିସେମ୍ବର ମାସରେ ଉତ୍କୃଷ୍ଟ ଶ୍ରମିକ ଦଳଗୁଡ଼ିକର ନିଖିଳ-ୟୁନିଅନ୍ କଂଗ୍ରେସରେ ନିମ୍ନ ସ୍ଲୋଗାନଟି ଦିଆଯାଇଥିଲା : "ପଞ୍ଚବାର୍ଷିକ ଯୋଜନାଟିକୁ ଚାରି ବର୍ଷ ମଧ୍ୟରେ ସଂପୂର୍ଣ୍ଣ କର" । ଏହା ଦେଶର ଶିଳ୍ପାୟନ ପାଇଁ ଆହ୍ୱାନରେ ପରିଣତ ହୋଇଥିଲା ।

ଶ୍ରମିକମାନଙ୍କ କର୍ମୋଦ୍ୟମ ସୀମାହୀନ ଭାବେ ପ୍ରକାଶ ପାଇଲା । ସମାଜବାଦୀ ପ୍ରତିଯୋଗିତାର ନୂଆ ନୂଆ ରୂପ ଦେଖାଦେଲା । ଦନ୍‌ବାସରେ ଦେଖାଦେଲା "ସାମାଜିକ ନୌକାଟଣା ମଜୁରି" ଆନ୍ଦୋଳନ । ପଛରେ ପଡ଼ି ଯାଇଥିବା ଶ୍ରମିକମାନଙ୍କୁ ଶ୍ରେଷ୍ଠ ଶ୍ରମଦଳଗୁଡ଼ିକ ସାହାଯ୍ୟ କଲେ, ସେମାନଙ୍କ ଅଭିଜ୍ଞତା ସହିତ ଅନ୍ୟମାନଙ୍କୁ ସହଭାଗୀ କରାଇ ସେମାନଙ୍କ ଅସୁବିଧାରାଜିକୁ ଅତିକ୍ରମ କରାଇବାରେ ସାହାଯ୍ୟ କଲେ । ଲେନିନ୍‌ଗ୍ରାଡ୍ କାରଖାନାଗୁଡ଼ିକ ରାଷ୍ଟ୍ରୀୟ ଯୋଜନା ଠାରୁ ବଡ଼ କରି ପ୍ରତିଯୋଜନା ପାଇଁ ଆନ୍ଦୋଳନ ସୃଷ୍ଟି କଲେ । ଏହି ପ୍ରତିଯୋଜନାକୁ ରଚନା କରୁଥିଲେ କାରଖାନାର କର୍ମୀବୃନ୍ଦ । ଏହା ସଫଳ ହେଉଥିଲା ଯନ୍ତ୍ରପାତିର ସୁଷ୍ଠୁ ଉପଯୋଗ, ଉପାଦାନର ସଦ୍‌ବ୍ୟବହାର, ଉଚ୍ଚ ଉତ୍ପାଦନଶୀଳତା ଆଦି ଦ୍ୱାରା ।

ସମାଜବାଦୀ ପ୍ରତିଯୋଗିତା ଆନ୍ଦୋଳନ ଯୋଜନାର ସଫଳ ପରିପୂରଣ ଏବଂ ଶିଳ୍ପ ବିକାଶର ଉପରକୁ ଉଠିବା ପ୍ରତି ଅବଦାନ ରଖିଲା । ୧୯୩୧ ମସିହା ବେଳକୁ କେତେକ ଶିଳ୍ପ, ଯଥା, ତୈଳ, ବିଦ୍ୟୁତ୍, ଇଂଜିନିୟରିଂ, ମେସିନ୍ ଇଂଜିନିୟରିଂ, କନଫେକସନାରୀ ଏବଂ ଟିଣରେ ମାଛ ଭରିବା ଶିଳ୍ପ ୨.୫-୩ ବର୍ଷ ମଧ୍ୟରେ ପଞ୍ଚବାର୍ଷିକ ଯୋଜନାକୁ ପୂରଣ କରି ଦେଇଥିଲେ । ମୋଟାମୋଟି ଭାବେ ଦେଖିଲେ ପ୍ରଥମ ପଞ୍ଚବାର୍ଷିକ ଯୋଜନା ୪ ବର୍ଷ ୩ ମାସ ମଧ୍ୟରେ ପୂରଣ ହୋଇ ଯାଇଥିଲା ।

ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା କାଳରେ ସମାଜବାଦୀ ପ୍ରତିଯୋଗିତା ଉଚ୍ଚତର ସ୍ତରକୁ ଉନ୍ନୀତ ହୋଇଥିଲା । ନୂତନ କାରୁକୌଶଳର ଆବିର୍ଭାବ ଓ ଶ୍ରମିକମାନଙ୍କ ଦ୍ୱାରା ସେସବୁର ସଫଳ ଉପଯୋଗ ଫଳରେ ଉତ୍ପାଦନଶୀଳତା ବହୁ ଗୁଣରେ ବୃଦ୍ଧି ପାଇଥିଲା । ଦନ୍‌ବାସର ଖଣି ଶ୍ରମିକମାନେ ଥିଲେ ଏହି ଆନ୍ଦୋଳନର ଉଦ୍ୟୋକ୍ତା । ଏହା ଇତିହାସରେ ଦନ୍‌ବାସ ଜନୈକ ଖଣି ଶ୍ରମିକ ସ୍ତାଖାନୋଭ୍‌ଙ୍କ ନାମାନୁଯାୟୀ "ସ୍ତାଖାନୋଭ୍‌ପନ୍ଥୀ" ଆନ୍ଦୋଳନ ରୂପେ ପରିଚିତ । ସ୍ତାଖାନୋଭ୍‌ପନ୍ଥୀମାନେ ସେମାନଙ୍କର ଅଧିକ ଦୈହିକ ଶ୍ରମ ବଳରେ ଉଚ୍ଚତର ଉତ୍ପାଦନଶୀଳତା ହାସଲ କରି ନଥିଲେ, କରିଥିଲେ ନୂତନ କାରୁକୌଶଳର ସୁଦକ୍ଷ ଉପଯୋଗ ଓ କାର୍ଯ୍ୟର ସଠିକ ସଂଗଠନ ବଳରେ ।

୧୯୩୫, ଅଗଷ୍ଟ ୩୧ ଚାରିଖ ଦିନ ଆଲେକ୍‌ସେଇ ଷ୍ଟାଖାନୋଭ୍ ତାଙ୍କ ଖନନ ଯନ୍ତ୍ର ସାହାଯ୍ୟରେ ୬ ଘଣ୍ଟାରେ ୧୦୨ ଟନ୍ କୋଇଲା ବାହାର କରିଥିଲେ, ସେ ତାଙ୍କ କୋଟାକୁ ୧୪.୫ ଗୁଣ ଅଧିକ କରିଥିଲେ । କେମିତି ସେ ଏ କାର୍ଯ୍ୟ କରି ପାରିଥିଲେ ? ସାଧାରଣତଃ, କୋଇଲା କଟା ମେସିନ୍ କେବଳ କୋଇଲା କାଟେ ନାହିଁ, ମୁହଁକୁ ମଧ୍ୟ ଟେକିକି ରଖେ । ତାଙ୍କର ଅର୍ଦ୍ଧେକ ସମୟ ଏହି ଅଦକ୍ଷ କାମରେ ବ୍ୟୟ କଲା ପରେ ଏବଂ ସେଇ ସମୟରେ ଖନନ ଯନ୍ତ୍ରଟି ପଡ଼ି ରହିଥିଲା କୌଣସି କାମ ନକରି । ଷ୍ଟାଖାନୋଭ୍ ଏହି କାର୍ଯ୍ୟକୁ ଭାଗଭାଗ କରି ଦେଲେ, ତାଙ୍କର ଦୁଇଜଣ ସାହାଯ୍ୟକାରୀ ଶ୍ରମିକ ମୁହଁଟିକୁ ଟେକି ଧରିଥିଲା ବେଳେ ସେ କେବଳ କୋଇଲା କାଟିଥିଲେ । ତେଣୁ କରି ଏହି ଡ୍ରିଲ ମେସିନ୍ ବା ଖନନକାରୀ ଯନ୍ତ୍ରଟି ସମଗ୍ର ସିଫ୍‌ଟରେ ଉତ୍ପାଦନ କାର୍ଯ୍ୟରେ ବ୍ୟବହୃତ ହୋଇଥିଲା ।

ଷ୍ଟାଖାନୋଭ୍‌ଙ୍କର ଏହି ଦୃଷ୍ଟାନ୍ତକୁ ଅନ୍ୟାନ୍ୟ ଶିଳ୍ପର ଶ୍ରମିକମାନେ ଅନୁକରଣ କରିଥିଲେ । ଗର୍କି ମୋଟର କାରଖାନାର ଯାନ୍ତ୍ରିକ ଛାପାକଳର ଅପରେଟର ଆଲେକ୍‌ଜାଣ୍ଡାର ବୁସିଗିନ୍ ଗୋଟିଏ ସିଫ୍‌ଟରେ କୋଟା ମୁତାବକ ୬୭୫ କ୍ରାଙ୍କ୍‌ସାଫଟ ତିଆରି କରିବା ପରିବର୍ତ୍ତେ ୧୦୫୦ କ୍ରାଙ୍କ୍‌ସାଫଟ ତିଆରି କରିଥିଲେ । ତନ୍ତଚାଳକ ଯେଭ୍‌ଦୋକିଆ ଏବଂ ମାରିଆ ଭିନୋଗ୍ରାଦୋଭା କୋଟା ଅନୁଯାୟୀ ୧୬-୨୪ଟି ତନ୍ତ ଚଳାଇବା ପରିବର୍ତ୍ତେ ୭୦-୧୦୦ଟି ଏବଂ ପରେ ୧୪୪ଟି ତନ୍ତ ଚଳାଇଥିଲେ । ଦନ୍‌ବାସର ବାଷ୍ପୀୟ ଇଂଜିନ୍ ଚାଳକ ପି.କ୍ରିରୋନସ୍ ସାଧାରଣ ଗତିବେଗ ଅପେକ୍ଷା ଦୁଇ ଗୁଣ ବେଗରେ ରେଳଗାଡ଼ି ଚଳାଇ ନେଇଥିଲେ ।

କମ୍ୟୁନିଷ୍ଟ ପାର୍ଟି ସକ୍ରିୟ ଭାବେ ଷ୍ଟାଖାନୋଭ୍‌ପନ୍ଥୀ ଆନ୍ଦୋଳନକୁ ସମର୍ଥନ ଦେଇଥିଲା । ୧୯୩୫ ମସିହା ନଭେମ୍ବର ମାସରେ ମସ୍କୋଠାରେ ଅନୁଷ୍ଠିତ ହୋଇଥିଲା ଷ୍ଟାଖାନୋଭ୍‌ପନ୍ଥୀମାନଙ୍କର ନିଖିଳ ୟୁନିଅନ୍ କଂଗ୍ରେସ । ୩,୦୦୦ରୁ ଅଧିକ ଶ୍ରେଷ୍ଠ ଶ୍ରମିକମାନେ ଅଭିଜ୍ଞତା ବିନିମୟ କରିଥିଲେ ଏବଂ ସମସ୍ତ ଶ୍ରମିକଙ୍କର ଉତ୍ପାଦନଶୀଳତାର ସ୍ତରକୁ ଶ୍ରେଷ୍ଠ ଶ୍ରମିକମାନଙ୍କ ସ୍ତରକୁ କିପରି ଉନ୍ନୀତ କରାଯାଇ ପାରିବ, ସେ ସଂପର୍କରେ ଆଲୋଚନା କରିଥିଲେ । କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟିର ଏକ ବିଶେଷ ପୂର୍ଣ୍ଣାଙ୍ଗ ଅଧିବେଶନ ୧୯୩୫, ଡିସେମ୍ବର ମାସରେ ବସି ଷ୍ଟାଖାନୋଭ୍‌ପନ୍ଥୀ ଆନ୍ଦୋଳନ ସଂପର୍କରେ ଆଲୋଚନା କରିଥିଲା । ପ୍ରାୟ ୩,୦୦୦ ଶ୍ରେଷ୍ଠ ଶ୍ରମିକ, ଇଂଜିନିୟର, ଅର୍ଥନୈତିକ ପରିଚାଳକ ଏଥିରେ ଅଂଶଗ୍ରହଣ କରିଥିଲେ । ଷ୍ଟାଖାନୋଭ୍‌ପନ୍ଥୀ ଆନ୍ଦୋଳନକୁ ଆଉରି ଉନ୍ନତ କରିବାକୁ ହେଲେ ନୂଆ କାରୁକୌଶଳର ଉପଯୋଗ ଜାଣିବା ଦରକାର ଏବଂ ଏଥି ପାଇଁ ଶ୍ରମିକମାନଙ୍କର ସାଂସ୍କୃତିକ ଏବଂ କାରିଗରୀ ଜ୍ଞାନର ସ୍ତରକୁ ଲଗାତର ଉନ୍ନତ କରିବାକୁ ପୂର୍ଣ୍ଣାଙ୍ଗ ଅଧିବେଶନ ଆହ୍ୱାନ ଦେଇଥିଲା । ସମସ୍ତ ଶ୍ରମିକମାନଙ୍କ ପାଇଁ ସର୍ବନିମ୍ନ କାରିଗରି ତାଲିମ୍‌କୁ ସାର୍ବଜନୀନ ଏବଂ ବାଧ୍ୟତାମୂଳକ କରିବାକୁ ଏହି ଅଧିବେଶନରେ

ନିଷ୍ପତ୍ତି ନିଆଯାଇଥିଲା । ପାର୍ଟିର, ଟ୍ରେଡ୍‌ୟୁନିଅନ୍‌ର ଓ ଯୁବ ସଂଘର ସମର୍ଥନ ହେତୁ ଷ୍ଟାଖାନୋଭ୍‌ପନ୍ଥୀ ଆନ୍ଦୋଳନ ବିପୁଳ ଭାବେ ବ୍ୟାପକତା ଲାଭ କରିଥିଲା ।

ଷ୍ଟାଖାନୋଭ୍‌ପନ୍ଥୀ ଆନ୍ଦୋଳନରୁ କି ଫଳ ମିଳିଥିଲା ? ସେସବୁ ଫଳକୁ ପରିଷ୍କାର ଭାବେ ଲକ୍ଷ୍ୟ କରାଯାଇଥିଲା, ଷ୍ଟାଖାନୋଭ୍ ନିଜେ ଯେଉଁ ଖଣିରେ କାର୍ଯ୍ୟ କରୁଥିଲେ । ୧୯୩୫ ମସିହାର ପ୍ରଥମ ୯ ମାସ ଯୋଜନାକୃତ ପରିମାଣ ଠାରୁ ୨,୦୦୦ରୁ ଅଧିକ ଟନ୍ କୋଇଲା ଏହି ଖଣିରୁ ଉତ୍ପାଦନ ହେଉ ନଥିଲା ବେଳେ ଶେଷ ୩ ମାସରେ ଶ୍ରମିକମାନେ କେବଳ ପଛରେ ପଡ଼ିଯାଇଥିବା ପରିମାଣକୁ ପୂରଣ କରି ନଥିଲେ, ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ବାର୍ଷିକ ଯୋଜନାକୁ ପୂରଣ କରି ଦେଇଥିଲେ । ୧୯୩୫ ମସିହାର ଅଗଷ୍ଟ ଠାରୁ ଡିସେମ୍ବର ମାସ ମଧ୍ୟରେ ଦନ୍‌ବାସର କୋଇଲା ଉତ୍ପାଦନ ମୋଟାମୋଟି ଭାବେ ଶତକଡ଼ା ୩୦ ଭାଗ ବୃଦ୍ଧି ପାଇଥିଲା ।

ଷ୍ଟାଖାନୋଭ୍‌ପନ୍ଥୀ ଆନ୍ଦୋଳନ ମଧ୍ୟ ତୈଳଶିଳ୍ପ ଏବଂ ରେଳପଥ ନିର୍ମାଣରେ ପଛରେ ପଡ଼ିଯାଇଥିବାକୁ ଅତିକ୍ରମ କରିବାରେ ସହାୟକ ହୋଇଥିଲା ।

ବ୍ୟାପକ ସମାଜବାଦୀ ପ୍ରତିଯୋଗିତା ଆନ୍ଦୋଳନ ଏବଂ ଷ୍ଟାଖାନୋଭ୍‌ପନ୍ଥୀ ଆନ୍ଦୋଳନ ଫଳରେ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା କାଳରେ ଶିଳ୍ପ କ୍ଷେତ୍ରରେ ଉତ୍ପାଦନଶୀଳତା ଯୋଜନାରେ ନିର୍ଦ୍ଧାରିତ ଶତକଡ଼ା ୬୩ ଭାଗ ଅଭିବୃଦ୍ଧି ପରିବର୍ତ୍ତେ ଶତକଡ଼ା ୮୨ ଭାଗ ଅଭିବୃଦ୍ଧି ଘଟିଥିଲା । ଏହା ଦ୍ୱାରା ଶିଳ୍ପ କ୍ଷେତ୍ରରେ ନଅ ମାସ ଆଗରୁ ଯୋଜନା ପୂରଣ ହୋଇ ପାରିଥିଲା । ସୋଭିଏତ୍ ଶ୍ରମିକ ଶ୍ରେଣୀ ପକ୍ଷରେ ଏହା ଥିଲା ଆଉ ଏକ ଉଲ୍ଲେଖନୀୟ ସାଫଲ୍ୟ ।

ଷ୍ଟାଖାନୋଭ୍‌ପନ୍ଥୀ ଆନ୍ଦୋଳନ ପୁଞ୍ଜିବାଦୀ ଦେଶମାନଙ୍କରେ ହେବା ଅସମ୍ଭବ ହୋଇଥାନ୍ତା, କାରଣ ଏହା ଶ୍ରମିକମାନଙ୍କ ବିରୁଦ୍ଧରେ ଯାଇଥାନ୍ତା । ଏହି ଚିନ୍ତାଧାରାଟି ସ୍ପଷ୍ଟ ରୂପେ ପ୍ରକାଶ ପାଇଥିଲା ଷ୍ଟାଖାନୋଭ୍‌ଙ୍କୁ ଲିଖିତ ବେଲ୍‌ଜିଅମ ଶ୍ରମିକମାନଙ୍କ ଚିଠିରେ । ଷ୍ଟାଖାନୋଭ୍‌ଙ୍କ ତାଙ୍କ ପଦ୍ଧତି ସଂପର୍କରେ ଲେଖିବାକୁ ଅନୁରୋଧ କରି ସେମାନେ ଉକ୍ତ ଚିଠିରେ ଲେଖିଥିଲେ : "ସେସବୁ ପଦ୍ଧତିକୁ ଏଠାରେ ପ୍ରୟୋଗ କରିବା ପାଇଁ ଆମର କୌଣସି ଉଦ୍ଦେଶ୍ୟ ନାହିଁ । ରୟାଲ ଖଣିରେ କେତେକ ଲୋକ ଏବେ ବି ବେକାର ଅଛନ୍ତି । ଆମ ମଧ୍ୟରୁ ପ୍ରତ୍ୟେକ ଯଦି ବର୍ତ୍ତମାନ ଅପେକ୍ଷା ଦୁଇ ଗୁଣ କରି କୋଇଲା ଖୋଳିବେ, ତେବେ ସେ ତା'ର ସହକର୍ମୀର କ୍ଷତି ଘଟାଇବ ।"

ସ୍ୱଳ୍ପ କାଳ ମଧ୍ୟରେ ସୋଭିଏତ୍ ୟୁନିଅନ୍ ପଶ୍ଚାଦ୍‌ପଦତାରୁ ଅର୍ଥନୈତିକ ଅଗ୍ରଗତି ମଧ୍ୟକୁ ଲମ୍ଫ ଦାନ କରି ପାରିଥିଲା । ୧୯୪୦ ମସିହାରେ ଜାତୀୟ ଅର୍ଥନୀତିର ମୋଟ ଉତ୍ପାଦନର ତିନି ଚତୁର୍ଥାଂଶରୁ ଅଧିକ ଉତ୍ପାଦନ କରିଥିଲା ଶିଳ୍ପ । ଶିଳ୍ପ ଉତ୍ପାଦନର ଦୁଇ ତୃତୀୟାଂଶରୁ ଅଧିକ ଥିଲା ଉତ୍ପାଦନର ଉପାୟ ଉପକରଣ । ବୃହଦାକାର ଶିଳ୍ପରେ ମୋଟ ଉତ୍ପାଦନ ୧୯୧୩ ତୁଳନାରେ ୧୨ ଗୁଣ ଅଧିକ ଥିଲା ଏବଂ ଜାତୀୟ ଅର୍ଥନୀତିରେ

ଅଗ୍ରଣୀ ସ୍ଥାନ ଲାଭ କରିଥିଲା । ଦେଶ ମଧ୍ୟରେ ମୁଣ୍ଡଟେକି ଉଠିଥିଲା ଏକ ଶକ୍ତିଶାଳୀ ଶକ୍ତିର ଭିତ୍ତି । ୧୯୪୦ ମସିହାରେ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ୪୮,୩୦୦ ନିୟୁତ କିଲୋଓ୍ୱାଟ ଘଣ୍ଟାକୁ ଟପି ଯାଇଥିଲା (୧୯୧୩ ମସିହାରେ ଏହି ପରିମାଣ ଥିଲା ୨,୦୦୦ ନିୟୁତ କିଲୋଓ୍ୱାଟ ଘଣ୍ଟା ଠାରୁ କମ୍) ।

ବିଶେଷ କରି ଇଂଜିନିୟରିଂ କ୍ଷେତ୍ରରେ ବିରାଟ ସାଫଲ୍ୟ ଅର୍ଜିତ ହୋଇଥିଲା । ୧୯୪୦ ମସିହାରେ ଏହାର ଉତ୍ପାଦନ ପରିମାଣ ୧୯୧୩ ତୁଳନାରେ ୩୫ ଗୁଣ ଅଧିକ ହୋଇ ପାରିଥିଲା । ଇଂଜିନିୟରିଂ ଶିଳ୍ପର ବିପୁଳ ଅଭିବୃଦ୍ଧି ଫଳରେ ଜାତୀୟ ଅର୍ଥନୀତିର ସମସ୍ତ ଶାଖା – କୃଷି, ଯାନବାହନ ଏବଂ ଯୋଗାଯୋଗ ବ୍ୟବସ୍ଥାକୁ ପୁନଃସଜ୍ଜିତ କରାଯାଇ ପାରିଥିଲା ।

ଭାରୀ ଶିଳ୍ପର ବିକାଶ ଉପରେ ଅଗ୍ରାଧିକାର ଦାନ କରିବା ସାଥେ ସାଥେ ଦେଶ ଖାଉଟି ଜିନିଷପତ୍ର ଉତ୍ପାଦନ କରୁଥିବା ଶିଳ୍ପମାନଙ୍କୁ ମଧ୍ୟ ବିକଶିତ କରିଥିଲା । ୧୯୪୦ ମସିହାରେ ସେସବୁ ଶିଳ୍ପ ୧୯୧୩ ତୁଳନାରେ ୫ ଗୁଣ ଅଧିକ ଉତ୍ପାଦନ କରୁଥିଲେ ।

ଶିଳ୍ପସମୂହର ଭୌଗୋଳିକ ଅବସ୍ଥାନରେ ମଧ୍ୟ ପରିବର୍ତ୍ତନ ଘଟିଥିଲା । ବିପ୍ଳବପୂର୍ବ ରୁଷିଆର ମାତ୍ର ଥିଲା ୪-୫ଟି ଶିଳ୍ପାଞ୍ଚଳ ଏବଂ ସେସବୁ ଅବସ୍ଥିତ ଥିଲା ଦେଶର ୟୁରୋପୀୟ ଅଞ୍ଚଳରେ । ବିଶ୍ୱ ଯୁଦ୍ଧ ପୂର୍ବ ପଞ୍ଚବାର୍ଷିକ ଯୋଜନା କାଳରେ ସୋଭିଏତ୍ ୟୁନିଅନ୍‌ର ଚାରିଆଡ଼େ କଳକାରଖାନା, ଖଣି ଏବଂ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରମାନ ମୁଣ୍ଡଟେକି ଉଠିଥିଲା ଏବଂ ସମସ୍ତ ସୋଭିଏତ୍ ପ୍ରଜାତନ୍ତ୍ରରେ ଭାରୀ ଶିଳ୍ପ ବିକାଶ ଲାଭ କରିଥିଲା ।

ପୁରୁଣା ରୁଷିଆରେ ମାତ୍ର ଗୋଟିଏ ଧାତୁ ଶିଳ୍ପ ଅଞ୍ଚଳ ଥିଲା ଏବଂ ତାହା ଅବସ୍ଥିତ ଥିଲା ୟୁକ୍ରେନ୍‌ରେ । ଦ୍ୱିତୀୟ ଧାତୁ ଶିଳ୍ପ ଅଞ୍ଚଳଟି ଗଢ଼ାଗଲା ସୋଭିଏତ୍ ୟୁନିଅନ୍‌ର ପୂର୍ବ ଭାଗରେ ପ୍ରଥମ କେତେକ ପଞ୍ଚବାର୍ଷିକ ଯୋଜନା କାଳରେ (ମାଗ୍‌ନିଟୋଗୋର୍ସ୍କ ଏବଂ କୁଜ୍‌ନେଟ୍‌ସ୍କ ପ୍ରକଳ୍ପ) । ପୁରାତନ ରୁଷିଆର ଗୋଟିଏ କୋଇଲା ଖଣି ଅଞ୍ଚଳ (ଦନ୍‌ବାସ) ଥିଲା ବେଳେ ୧୯୩୦ ଦଶକରେ ୮ଟି କୋଇଲା ଅଞ୍ଚଳ ଦେଶକୁ କୋଇଲା ଯୋଗାଉଥିଲେ । ଭୋଲ୍‌ଗା ଏବଂ ୟୁରାଲସ୍ ମଧ୍ୟରେ ନୂଆ ଏକ ତୈଳ ଶିଳ୍ପ କେନ୍ଦ୍ର "ଦ୍ୱିତୀୟ ବାକୁ" ଗଢ଼ି ଉଠିଥିଲା ।

ସୋଭିଏତ୍ ୟୁନିଅନ୍ ତା'ର ଶକ୍ତିଶାଳୀ ଶିଳ୍ପ ନିର୍ମାଣ କରି ସଂପୂର୍ଣ୍ଣ ଅର୍ଥନୈତିକ ସ୍ୱାଧୀନତା ଅର୍ଜନ କରି ପାରିଥିଲା । ବିପ୍ଳବ ପୂର୍ବରୁ ରୁଷିଆ ବିଦେଶରୁ ତା'ର ଆବଶ୍ୟକୀୟ ମେସିନ୍ ଏବଂ ଯନ୍ତ୍ରପାତିର ଅର୍ଦ୍ଧେକ ଆମଦାନି କରୁଥିଲା । ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳରେ ସୋଭିଏତ୍ ୟୁନିଅନ୍‌କୁ ବିପୁଳ ପରିମାଣର ମେସିନ୍, ଯନ୍ତ୍ରାଂଶ ଏବଂ ଅନ୍ୟାନ୍ୟ ଯନ୍ତ୍ରପାତି ଆମଦାନି କରିବାକୁ ପଡ଼ିଥିଲା । କାରଣ ସେପର୍ଯ୍ୟନ୍ତ ତା'ର ନଥିଲା ବୃହଦାକାର ଇଂଜିନିୟରିଂ ଶିଳ୍ପ । ଏହି ଶିଳ୍ପ ନିର୍ମାଣ ହେଲା ପରେ

ବିଦେଶରୁ ଯନ୍ତ୍ରପାତି ଆମଦାନି କରିବା କମି ଆସିଲା । ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳର ଶେଷ ଆଡ଼କୁ ସୋଭିଏତ୍ ୟୁନିଅନ୍ ବାଷ୍ପୀୟ ଇଂଜିନ୍, ମୋଟରଗାଡ଼ି, ଟ୍ରାକ୍ଟର, କୃଷି ମେସିନ୍, ଲୌହ ତରଳେଇବା ଚୁଲୀର ଯନ୍ତ୍ରପାତି, ବିଦ୍ୟୁତ୍ ଟର୍ବାଇନ୍, ବିଦ୍ୟୁତ୍ ଚୁଲୀ, ମାପଚୁପ୍ କରିବା ଯନ୍ତ୍ର ଆଦି ଆମଦାନି କରିବା ବନ୍ଦ କରି ଦେଲା । ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳରେ ଏହିସବୁ ମେସିନ୍‌ର ତିନି ଚତୁର୍ଥାଂଶ ବିଦେଶରୁ ଆମଦାନି କରାଯାଉଥିଲା ବେଳେ, ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା କାଳରେ ଆବଶ୍ୟକୀୟ ମେସିନ୍‌ର ଶତକଡ଼ା ୯୦ ଭାଗ ଦେଶ ମଧ୍ୟରେ ଉତ୍ପାଦିତ ହୋଇ ପାରିଥିଲା । ୧୯୩୩ ମସିହାରେ ବ୍ୟବହୃତ ଟର୍ବାଇନ୍‌ର ୩ ଭାଗରୁ ଦୁଇ ଭାଗ ଥିଲା ଆମଦାନି କରା, କିନ୍ତୁ ୧୯୩୬ରେ ସୋଭିଏତ୍ ୟୁନିଅନ୍‌ର ସମସ୍ତ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରରେ କାର୍ଯ୍ୟରତ ସମସ୍ତ ଟର୍ବାଇନ୍ ଦେଶ ମଧ୍ୟରେ ନିର୍ମିତ ହୋଇଥିଲା ।

ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା କାଳରେ ସୋଭିଏତ୍ ୟୁନିଅନ୍ କେବଳ ଆମଦାନି ବନ୍ଦ କରି ଦେଲା ନାହିଁ, ଉପରନ୍ତୁ, ଟ୍ରାକ୍ଟର ଏବଂ ଅନ୍ୟାନ୍ୟ କୃଷି ଯନ୍ତ୍ରପାତି, ମୋଟରଗାଡ଼ି, ସିଲେଇ ମେସିନ୍ ଏବଂ ଅନ୍ୟାନ୍ୟ ଶିଳ୍ପଜାତ ଦ୍ରବ୍ୟ ବିଦେଶକୁ ରପ୍ତାନି କରିବାକୁ ଆରମ୍ଭ କରି ଦେଲା । ୧୯୩୭ ମସିହାରେ ସୋଭିଏତ୍ ୟୁନିଅନ୍ ତା'ର ଆବଶ୍ୟକୀୟ ମେସିନ୍‌ର ମାତ୍ର ଶତକଡ଼ା ୧ ଭାଗରୁ କମ୍ ଆମଦାନି କରୁଥିଲା, ବାକି ସବୁ ଏହା ଉତ୍ପାଦନ କରୁଥିଲା ନିଜ ଦେଶରେ ।

ମେସିନ୍ ଆମଦାନିକାରୀ ଏକ ଦେଶରୁ ମେସିନ୍ ନିର୍ମାଣକାରୀ ଦେଶରେ ପରିଣତ ହେଲା ସୋଭିଏତ୍ ୟୁନିଅନ୍ ।

ବିଶ୍ୱ ଅର୍ଥନୀତି କ୍ଷେତ୍ରରେ ସୋଭିଏତ୍ ୟୁନିଅନ୍‌ର ଅବସ୍ଥାନ ମଧ୍ୟ ବଦଳି ଗଲା । ୧୯୧୩ ମସିହାରେ ବିଶ୍ୱର ଶିଳ୍ପ ଉତ୍ପାଦନ କ୍ଷେତ୍ରରେ ରୁଷିଆର ସ୍ଥାନ ଥିଲା ୫ମରେ, ଆମେରିକା ଯୁକ୍ତ ରାଷ୍ଟ୍ର, ଜର୍ମାନୀ, ବ୍ରିଟେନ୍ ଏବଂ ଫ୍ରାନ୍ସ ପରେ । ବିଶ୍ୱ ଶିଳ୍ପ ଉତ୍ପାଦନ କ୍ଷେତ୍ରରେ ରୁଷିଆର ଅଂଶ ଥିଲା ଶତକଡ଼ା ୪ଭାଗରୁ କିଞ୍ଚିତ୍ ଅଧିକ । ୧୯୩୭ ମସିହାରେ ସୋଭିଏତ୍ ୟୁନିଅନ୍ ୟୁରୋପରେ ପ୍ରଥମ ସ୍ଥାନ ଏବଂ ବିଶ୍ୱରେ ଦ୍ୱିତୀୟ ସ୍ଥାନ ଶିଳ୍ପ ଉତ୍ପାଦନ କ୍ଷେତ୍ରରେ ଲାଭ କରିଥିଲା । ବିଶ୍ୱର ଶିଳ୍ପ ଉତ୍ପାଦନରେ ସୋଭିଏତ୍ ୟୁନିଅନ୍‌ର ଅଂଶ ଶତକଡ଼ା ପ୍ରାୟ ୧୪ ଭାଗ ହୋଇ ଗଲା ଏବଂ ବାଷ୍ପୀୟ ଇଂଜିନ୍, କୃଷି ଯନ୍ତ୍ରପାତି ଏବଂ କୃତ୍ରିମ ରବର ଉତ୍ପାଦନ କ୍ଷେତ୍ରରେ ଅନ୍ୟମାନଙ୍କ ଠାରୁ ଅଗ୍ରଭାଗରେ ଥିଲା ।

ସମାଜବାଦୀ ଅର୍ଥନୈତିକ ବ୍ୟବସ୍ଥାର ସୁଯୋଗ ଦୃଷ୍ଟିରୁ (ଉତ୍ପାଦନ ଉପାୟ ଉପକରଣ ଉପରେ ସର୍ବସାଧାରଣ ମାଲିକାନା, ଅର୍ଥନୀତିର ଯୋଜନାବଦ୍ଧ ପରିଚାଳନା, ଶ୍ରମିକମାନଙ୍କର ବୀରତ୍ୱପୂର୍ଣ୍ଣ କାର୍ଯ୍ୟ, ଆଦି) ସମାଜବାଦୀ ଶିଳ୍ପ ବିକାଶର ହାର ପୁଞ୍ଜିବାଦୀ ଦେଶମାନଙ୍କ ଠାରୁ ଅନେକ ବେଶି ହୋଇ ପାରିଥିଲା । ୧୯୩୦-୧୯୪୦

ମଧ୍ୟରେ ଭାରୀ ଶିଳ୍ପ କ୍ଷେତ୍ରରେ ବାର୍ଷିକ ଉତ୍ପାଦନର ଅଭିବୃଦ୍ଧି ହାର ସୋଭିଏତ୍ ୟୁନିଅନ୍‌ରେ ଶତକଡ଼ା ୧୮ ଭାଗ, ଆମେରିକା ଯୁକ୍ତ ରାଷ୍ଟ୍ରରେ ୧.୨ ଭାଗ, ଗ୍ରେଟ୍ ବ୍ରିଟେନ୍‌ରେ ୨.୧ ଭାଗ ହୋଇଥିଲା । ପୁଞ୍ଜିବାଦୀ ଦେଶମାନଙ୍କ ତୁଳନାରେ ସୋଭିଏତ୍ ୟୁନିଅନ୍‌ରେ ଶ୍ରମ ଉତ୍ପାଦନଶୀଳତାର ଅଭିବୃଦ୍ଧି ହାର ଥିଲା ୩-୪ ଗୁଣ ଅଧିକ ।

ଶିଳ୍ପ ବିକାଶ କ୍ଷେତ୍ରରେ ସୋଭିଏତ୍ ୟୁନିଅନ୍ ଦ୍ରୁତ ଗତିରେ ଆଗେଇ ଚାଲିଲା ଆଗକୁ ।

## ୨୧ଶ ପରିଚ୍ଛେଦ

# ସୋଭିଏତ୍ ଗ୍ରାମାଞ୍ଚଳରେ ସମାଜବାଦୀ ପରିବର୍ତ୍ତନ

ଯେଉଁ କାର୍ଯ୍ୟଟି ଥିଲା ସବୁଠାରୁ କଷ୍ଟସାଧ୍ୟ ଏବଂ ସମାଜବାଦର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କୃତି, ସେ ହେଲା, ସୋଭିଏତ୍ କୃଷକ ସଂପ୍ରଦାୟର ବ୍ୟକ୍ତିଗତ କ୍ଷୁଦ୍ର କ୍ଷୁଦ୍ର ଖମାରରୁ ବୃହଦାକାର ସମାଜବାଦୀ କୋଠଖମାରକୁ ସ୍ୱେଚ୍ଛାକୃତ ଉତ୍ତରଣ । ଏହା ସଂଘଟିତ ହୋଇଥିଲା ପ୍ରଥମ ଦୁଇଟି ପଞ୍ଚବାର୍ଷିକ ଯୋଜନା କାଳରେ ।

କୃଷିର ସମାଜବାଦୀ ରୂପକୁ ଉତ୍ତରଣ କାର୍ଯ୍ୟଟିକୁ ପ୍ରସ୍ତୁତ କରିଥିଲା ଗ୍ରାମାଞ୍ଚଳରେ ସୋଭିଏତ୍ ଶାସନର କୃଷି ସଂକ୍ରାନ୍ତ ପଦକ୍ଷେପର ସମସ୍ତ ବ୍ୟବସ୍ଥା । ଇତି ପୂର୍ବରୁ କୁହାଯାଇଛି ଯେ, ସୋଭିଏତ୍ ଶାସନ ତା'ର ଅସ୍ତିତ୍ୱର ପ୍ରଥମ ଦିନରେ କୃଷକମାନଙ୍କର ଜମି ପାଇଁ ଯୁଗ ଯୁଗର ଅଭିଳାଷକୁ ପୂରଣ କରିଥିଲା । ଜମିଦାର, ମଠ ଏବଂ ପୁଞ୍ଜିପତିମାନଙ୍କ ଠାରୁ ଭୂମିକୁ ବାଜ୍ୟାପ୍ତ କରି ଦେଇ ସୋଭିଏତ୍ ଶାସନ ସେସବୁକୁ କୃଷକମାନଙ୍କ ହାତରେ ଅର୍ପଣ କରିଥିଲା ବ୍ୟବହାର ପାଇଁ । ସମାନ ଭାବେ ବଣ୍ଟନ ନୀତି ଅନୁଯାୟୀ କୃଷକମାନଙ୍କ ମଧ୍ୟରେ ଜମିକୁ ଭାଗଭାଗ କରି ଦିଆଯାଇଥିଲା । ଫଳରେ ହଠାତ୍ ଛୋଟ ଛୋଟ କୃଷକ ଜୋତର ସଂଖ୍ୟା ଗ୍ରାମାଞ୍ଚଳରେ ବଢ଼ିଗଲା । ୧୯୨୦ ଦଶକର ଦ୍ୱିତୀୟ ଭାଗରେ ଏହି ସଂଖ୍ୟା ପହଞ୍ଚିଥିଲା ୨୪ରୁ ୨୫ ନିୟୁତରେ ।

ବହୁ ଗରିବ କୃଷକ ଏବଂ କୃଷି ମଜୁରିଆ ଜମି, କୃଷି ଉପକରଣ ଏବଂ ପଶୁ ପାଇଲା ପରେ ମଧ୍ୟବିତ୍ତ ଚାଷୀରେ ପରିଣତ ହେଲେ । କୃଷକମାନଙ୍କର ଜୀବନଧାରଣର ମାନରେ ମଧ୍ୟ ଅଭିବୃଦ୍ଧି ଘଟିଲା, ଯଦିଓ ସାର୍ବିକ ଭାବେ ବେଶି ନହେଲେ ମଧ୍ୟ ।

କୃଷିର ଏହି ତୁଳନାମୂଳକ ଭାବେ ନିମ୍ନ ବିକାଶ ପଛରେ କାରଣ ହେଲା କ୍ଷୁଦ୍ର କ୍ଷୁଦ୍ର ଅନଗ୍ରସର କୃଷକ ଖମାରର ନିମ୍ନ ଉତ୍ପାଦନଶୀଳତା । ଯାହାର ଭିତ୍ତି ହେଲା ମୁଖ୍ୟତଃ ଦୈହିକ ଶ୍ରମ, ଆଦିମ ଯନ୍ତ୍ରପାତି ଏବଂ ଘୋଡ଼ାର ବ୍ୟବହାର । ଛୋଟ ଛୋଟ କୃଷକ ପରିବାରଗୁଡ଼ିକଙ୍କ ପକ୍ଷରେ ଆଧୁନିକ କୃଷି ଯନ୍ତ୍ରପାତି ଲାଭ କରିବା ସମ୍ଭବ ନଥିଲା । ନିୟୁତ ନିୟୁତ ଛୋଟ ଚାଷୀ ଟ୍ରାକ୍ଟର ବା ହଳ ଲଙ୍ଗଳ କିଣିବା ତ ଦୂରର କଥା,

ସେସବୁକୁ ସେମାନଙ୍କ ଛୋଟ ଛୋଟ ଜୋତରେ ବ୍ୟବହାର କରିବା ମଧ୍ୟ ଅସମ୍ଭବ ଥିଲା । ୧୯୨୭ ମସିହାରେ ଗ୍ରାମାଞ୍ଚଳରେ ୫ ନିୟୁତରୁ ଅଧିକ କାଠ ଲଙ୍ଗଳ ଥିବାଟା ଆକସ୍ମିକ କଥା ନୁହେଁ, ଏପରିକି କୃଷକ ପରିବାରଗୁଡ଼ିକ ମଧ୍ୟରୁ ଏକତୃତୀୟାଂଶଙ୍କର ମୋଟେ ଲଙ୍ଗଳ ବି ନଥିଲା । ୧୯୨୮ ମସିହାରେ ବସନ୍ତକାଳୀନ ଜମିଚାଷର ପ୍ରାୟ ଶତକଡ଼ା ୧୦ ଭାଗ ଜମି ଚାଷ ହେଉଥିଲା କାଠ ଲଙ୍ଗଳରେ । ତିନିଚତୁର୍ଥାଂଶ କୃଷି ଜମିରେ ବିହନ ବୁଣା ହେଉଥିଲା ହାତରେ, ଖାଦ୍ୟଯୋଗ୍ୟ ଫସଲର ଅର୍ଦ୍ଧେକ କଟା ହେଉଥିଲା ଦାଆରେ ଏବଂ ଝଡ଼ା ହେଉଥିଲା କାଠ ତିଆରି ଶସ୍ୟ ବାଡ଼େଇବା ଯନ୍ତ୍ର ଏବଂ ଅନ୍ୟାନ୍ୟ ଆଦିମ ପଦ୍ଧତିରେ, ଯାହାକୁ ହଜାର ହଜାର ବର୍ଷ ପୂର୍ବେ କୃଷକମାନେ ବ୍ୟବହାର କରୁଥିଲେ ।

କୃଷକମାନଙ୍କ ଜୋତରେ ଶ୍ରମର ନିମ୍ନ ଉତ୍ପାଦନଶୀଳତା, ନିମ୍ନ ମାତ୍ରାର ଫଳନ, ବଜାର ପାଇଁ ସୀମିତ ଉତ୍ପାଦନ ଫଳରେ ଅଧିକାଂଶ କୃଷକଙ୍କର ଜୀବନଧାରଣର ମାନ ନିମ୍ନ ଥିଲା । କୃଷି ଉପରେ ଅତ୍ୟଧିକ ଲୋକ ନିର୍ଭର କରୁଥିଲେ, ପ୍ରତିବର୍ଷ ନିୟୁତ ନିୟୁତ ଚାଷୀ ସହରକୁ ଚାଲି ଯାଉଥିଲେ କାର୍ଯ୍ୟର ଅନ୍ୱେଷଣରେ ଏବଂ ତାହା ହିଁ ଥିଲା ବେକାରିସଂଖ୍ୟାର ମୁଖ୍ୟ ଉତ୍ସ ।

ସୋଭିଏତ୍ ଶାସନ କୃଷକମାନଙ୍କୁ ଜମିଦାରମାନଙ୍କ ଅତ୍ୟାଚାରରୁ ରକ୍ଷା କଲା ସିନା, କିନ୍ତୁ କୁଲାକ୍‌ମାନଙ୍କ ଶୋଷଣ ରହି ଯାଇଥିଲା । ଗରିବ କୃଷକ ଏବଂ ଗରିବ ମଧ୍ୟବିତ୍ତ କୃଷକ ସେମାନଙ୍କ ଦ୍ୱାରା ନିପୀଡ଼ିତ ହେଉଥିଲେ । ସେମାନେ ବାଧ୍ୟ ହେଉଥିଲେ ସେମାନଙ୍କ ଠାରୁ ଘୋଡ଼ା ଏବଂ କୃଷିଯନ୍ତ୍ରପାତି ଭଡ଼ାରେ ନେବାକୁ ଏବଂ ନିଜର କୃଷି ଯନ୍ତ୍ରପାତି ଏବଂ ଚାଷୋପଯୋଗୀ ପଶୁର ଅଭାବ ହେତୁ ସେମାନଙ୍କ ଜୋତର କିଛି ଅଂଶ ମଧ୍ୟ ଖଜଣାରେ କୁଲାକ୍‌ମାନଙ୍କୁ ଲଗାଉଥିଲେ । ଗରିବ କୃଷକର ଜମିରୁ ଆୟ ତା'ର କୁଟୁମ୍ବର ଭରଣ ପୋଷଣ ପାଇଁ ଯଥେଷ୍ଟ ହେଉ ନଥିବାରୁ ସେ ଯାଇ କୁଲାକ୍ ପାଖରେ ମୂଲ ଲାଗୁଥିଲା ।

୧୯୧୭ ମସିହାରେ ଲେନିନ୍ ଯେଉଁ କଥା କହିଥିଲେ, ସେସବୁର ସଠିକତାକୁ ଅଭିଜ୍ଞତା ପ୍ରମାଣ କରିଥିଲା । ଲେନିନ୍ କହିଥିଲେ, "ପୂର୍ବ ପରି ଆମେ ଯଦି ଆମର ଏହି ବିଚ୍ଛିନ୍ନ ଜୋତଗୁଡ଼ିକୁ ନେଇ ମୁକ୍ତ ମାଟିରେ ମୁକ୍ତ ନାଗରିକ ଭଳି ଆଗାନ୍ତି, ତେବେ ଅବିଳମ୍ବେ ଧ୍ୱଂସର ସମ୍ମୁଖୀନ ହେବା... ।"

ତା'ହେଲେ ଉପାୟ କ'ଣ ? କୃଷିକୁ ଆଉରି ବୃହଦାକାର କରିବାକୁ ହେବ । ବଡ଼ ବଡ଼ ଖମାର ଟ୍ରାକ୍ଟର ଏବଂ ଅନ୍ୟାନ୍ୟ ଜଟିଳ କୃଷି ଯନ୍ତ୍ରପାତି, ରାସାୟନିକ ସାର କିଣି ପାରିବେ ଏବଂ ବ୍ୟବହାର କରି ପାରିବେ, ଜମିରେ ବିଭିନ୍ନ ରକମର ଫସଲ ଫଳେଇ ପାରିବେ ଏବଂ ବିଜ୍ଞାନର ସାଫଲ୍ୟରାଜିକୁ ବ୍ୟବହାର କରି ପାରିବେ । ଏହିଭଳି ଖମାରସବୁ କୃଷି ଶ୍ରମର ଉତ୍ପାଦନଶୀଳତାକୁ ତୁରନ୍ତ ବୃଦ୍ଧି କରି ପାରିବେ, ବଜାର ପାଇଁ

ଅଧିକ ଫସଲ ଉତ୍ପାଦନ କରିବେ ଏବଂ କୃଷକମାନଙ୍କ ଜୀବନଧାରଣ ମାନକୁ ଉଲ୍ଲେଖନୀୟ ଭାବେ ଉନ୍ନତ କରି ପାରିବେ ।

କୃଷକମାନେ ସେହିସବୁ ପଦକ୍ଷେପ ପାଇଁ ଗଭୀର ଭାବେ ଆଗ୍ରହୀ ଥିଲେ ଏବଂ ସେସବୁ ପଦକ୍ଷେପ ନେବା କେବଳ ରାଷ୍ଟ୍ର ଏବଂ ସମାଜ ଦ୍ୱାରା ସମ୍ଭବ । କ୍ଷୁଦ୍ର କ୍ଷୁଦ୍ର କୃଷକ ଖମାରଗୁଡ଼ିକ ଦେଶର କ୍ରମବର୍ଦ୍ଧମାନ ଶସ୍ୟ ଏବଂ ଅନ୍ୟାନ୍ୟ କୃଷିଜାତ ଜିନିଷ ଏବଂ ଶିଳ୍ପ ପାଇଁ ଅଧିକ ଆବଶ୍ୟକ କଞ୍ଚାମାଲର ଗୁହିଦାକୁ ମେଣ୍ଟାଇ ପାରେ ନାହିଁ । ବିପ୍ଳବୋତ୍ତର ୧୦ ବର୍ଷ ମଧ୍ୟରେ ବଜାରଯୋଗ୍ୟ କୃଷି ଉତ୍ପନ୍ନର ଅଂଶ କମି ଯାଇଥିଲା କ୍ଷୁଦ୍ର କ୍ଷୁଦ୍ର କୃଷକ ଖମାର ଏବଂ କୃଷକମାନଙ୍କର ଅଧିକ ବ୍ୟବହାର ହେତୁ । ୧୯୨୮ ମସିହାରେ ସୋଭିଏତ୍ ସରକାର ବାଧ୍ୟ ହେଲା କୃଷିଜାତ ଜିନିଷର ଅଭାବ ହେତୁ ଖାଦ୍ୟ ରେସନ ଚାଲୁ କରିବାକୁ ।

ତେଣୁ କରି, କୃଷିକୁ ବୃହଦାକାର କରିବା ଏକ ଜରୁରୀ ଏବଂ ଏକାନ୍ତ ଆବଶ୍ୟକୀୟ ପଦକ୍ଷେପ ବୋଲି ବିଚାର କରାଗଲା । ଏହା ଫଳରେ ହିଁ କେବଳ ଉତ୍ପାଦନଶୀଳତା ଏବଂ ବଜାର ଉତ୍ପନ୍ନର ଅଂଶକୁ ବୃଦ୍ଧି କରାଯାଇ ଥିଲା । କୃଷି କ୍ଷେତ୍ରରେ ଅନଗ୍ରସରତା ଦେଶର ଶିଳ୍ପାୟନ ପକ୍ଷରେ ଏବଂ ଜନସାଧାରଣଙ୍କ ଜୀବନଧାରଣର ମାନ ଉନ୍ନତ କରିବା ପକ୍ଷରେ ବାଧା ହୋଇ ଛିଡ଼ା ହୋଇଥିଲା ।

କେଉଁ ଉପାୟରେ କୃଷକମାନଙ୍କ ଖମାରଗୁଡ଼ିକୁ ବଡ଼ କରାଯିବ ?

ସୋଭିଏତ୍ ରାଷ୍ଟ୍ର ପକ୍ଷରୁ କୌଣସି ମତେ ଗ୍ରାମାଞ୍ଚଳରେ ଭଡ଼ାଟିଆ ଶ୍ରମିକମାନଙ୍କୁ ଶୋଷଣ କରୁଥିବା ବୃହଦାକାର କୁଲାକ୍ ଖମାରଗୁଡ଼ିକୁ ସମର୍ଥନ କରିବା ଏବଂ ବିକାଶ କରିବା ସମ୍ଭବ ନୁହେଁ । ଏହା କଲେ, ଶ୍ରମଜୀବୀ କୃଷକମାନଙ୍କର ବ୍ୟାପକ ଅଂଶ ଧ୍ୱଂସ ପାଇଯିବେ, ଯେଉଁମାନଙ୍କୁ ଶୋଷଣ କରି କୁଲାକ୍‌ମାନେ ଆଉରି ଧନିକ ପାଲଟିବେ କେବଳ । ଅଧିକାଂଶ କୃଷକ ସେ ପଥଟିକୁ ଗ୍ରହଣ କରିବେ ନାହିଁ । ଶ୍ରମିକ ଶ୍ରେଣୀ ପକ୍ଷରେ ମଧ୍ୟ ତାହା ଗ୍ରହଣଯୋଗ୍ୟ ନୁହେଁ, କାରଣ ଏହା ଦ୍ୱାରା ଗ୍ରାମାଞ୍ଚଳରେ ପୁଞ୍ଜିବାଦର ଅବସ୍ଥାନ ଦୃଢ଼ତର ହେବ ଏବଂ ସମାଜବାଦର ବିକାଶକୁ ଏହା ବିପଦାପନ୍ନ କରିବ ।

ଲେନିନ୍‌ଙ୍କ ସମବାୟ ପରିକଳ୍ପନା ଗ୍ରାମାଞ୍ଚଳରେ ବୃହଦାକାର ଖମାର ପ୍ରତିଷ୍ଠା କରିବା ଦିଗରେ ଆଉ ଗୋଟିଏ ପଥର ସୂଚନା ଦେଇଥିଲା । ସେ ହେଲା, ଉତ୍ପାଦକମାନଙ୍କର କୋଠ ସମବାୟ । ଏହା ହିଁ କୃଷକମାନଙ୍କ ପକ୍ଷରେ ଏକମାତ୍ର ଉପକାରୀ ଏବଂ ଗ୍ରହଣଯୋଗ୍ୟ ଉପାୟ, କାରଣ ଏହା ଦ୍ୱାରା କୃଷକ ସଂପ୍ରଦାୟର ମୁଖ୍ୟ ବ୍ୟାପକ ଅଂଶଟି ଧ୍ୱଂସର ସମ୍ମୁଖୀନ ହେବେ ନାହିଁ, ବରଂ, ଏହାର ବିପରୀତରେ, ସେମାନଙ୍କ ପାଇଁ ଏକ ସୁନିଶ୍ଚିତ ଜୀବନର ପଥ ଏହା ଉନ୍ମୁକ୍ତ କରି ଦିଏ ।

୧୯୨୭ ମସିହା ଡିସେମ୍ବର ମାସରେ ଅନୁଷ୍ଠିତ କମ୍ୟୁନିଷ୍ଟ ପାର୍ଟିର ୧୫ଶ କଂଗ୍ରେସ

ଦେଶବାସୀଙ୍କ ଆଗରେ କୃଷକ ଖମାରଗୁଡ଼ିକର କୋଠକରଣ ଏବଂ ଗ୍ରାମାଞ୍ଚଳରେ ଅଗ୍ରାଧିକାର ଭିତ୍ତିରେ କୃଷିକୁ କାରିଗରୀଗତ ଭାବେ ପୁନଃସଜ୍ଜିତ କରିବାର କର୍ତ୍ତବ୍ୟ ଉପସ୍ଥାପିତ କଲା ।

କମ୍ୟୁନିଷ୍ଟ ପାର୍ଟି ଏବଂ ସୋଭିଏତ୍ ରାଷ୍ଟ୍ର ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରିଥିଲା କୃଷକ ଖମାରଗୁଡ଼ିକର ବ୍ୟାପକ କୋଠକରଣ କରିବା ପାଇଁ ଅବସ୍ଥାରାଜି ଯୋଗାଇ ଦେବାକୁ । ରାଷ୍ଟ୍ର ପକ୍ଷରୁ ଗ୍ରାମଗୁଡ଼ିକୁ ଯୋଗାଇ ଦିଆଗଲା ଅଧିକରୁ ଅଧିକ ଟ୍ରାକ୍ଟର ଏବଂ ଅନ୍ୟାନ୍ୟ କୃଷି ଯନ୍ତ୍ରପାତି । ସେସବୁର ଉପଯୋଗ ଚେରେସ୍କୋଲୋସିସ୍ଥା (୧୦ମ ପରିଚ୍ଛେଦ ଦ୍ରଷ୍ଟବ୍ୟ) ପକ୍ଷରେ ସମ୍ଭବ ନଥିଲା, ସେସବୁ ଆବଶ୍ୟକ କରୁଥିଲା ବଡ଼ ବଡ଼ ଜୋତ ଏବଂ ଏହା ପ୍ରୋତ୍ସାହିତ କରିଥିଲା କୃଷକମାନଙ୍କୁ ସେମାନଙ୍କ ଖମାରଗୁଡ଼ିକୁ ଐକ୍ୟବଦ୍ଧ କରିବା ପାଇଁ । ରାଷ୍ଟ୍ର ମଧ୍ୟ ବଡ଼ ବଡ଼ ଶସ୍ୟ ଉତ୍ପାଦନକାରୀ ରାଷ୍ଟ୍ର ଖମାର ୧୯୨୮ରେ ପ୍ରତିଷ୍ଠା କରିବାକୁ ଆରମ୍ଭ କରି ଦେଲା । ଏହିସବୁ ଖମାର କେବଳ ଶସ୍ୟ ଉତ୍ପାଦନକାରୀ ଏକକସମୂହ ନଥିଲେ, ବୃହଦାକାର ଯନ୍ତ୍ରସଜ୍ଜିତ ଉତ୍ପାଦନ ସଂଗଠନ ପକ୍ଷରେ ସ୍କୁଲ ଭଳି ଥିଲେ । ଏସବୁ କୃଷକମାନଙ୍କୁ ବୃହଦାକାର ଖମାରର ସୁବିଧା ସୁଯୋଗରାଜି ସଂପର୍କରେ ହୃଦ୍‌ବୋଧ କରାଇଥିଲା । ହଜାର ହଜାର କୃଷକ ରାଷ୍ଟ୍ର ଖମାରକୁ ଆସୁଥିଲେ ବୃହଦାକାର ଖମାର ସଂପର୍କରେ ଶିଖିବା ପାଇଁ ।

ରାଷ୍ଟ୍ର ଖମାରଗୁଡ଼ିକ ଯନ୍ତ୍ରସଜ୍ଜିତ ହୋଇ କୃଷକମାନଙ୍କୁ ବିପୁଳ ଭାବେ ସାହାଯ୍ୟ କରିଥିଲା କୋଠ ଖମାରରେ ଏକତ୍ରିତ ହେବା ପାଇଁ । ଏଠାରେ ଗୋଟିଏ ଦୃଷ୍ଟାନ୍ତ ଦେଖନ୍ତୁ : ଓଡେଶା ଅଞ୍ଚଳର ବେରିଓଜୋଭ୍‌କା ଜିଲ୍ଲାର ଗରିବ କୃଷକମାନଙ୍କର ଘୋଡ଼ା ଏବଂ କୃଷି ଉପକରଣ ନଥିବାରୁ ସେମାନେ ନିଜେ ଜମିଚାଷ କରି ପାରୁ ନଥିଲେ । ତେଣୁ ସେମାନେ ସେମାନଙ୍କ ଜମିକୁ ଖଜଣାରେ କୁଲାକ୍‌ମାନଙ୍କୁ ଦେଉଥିଲେ । ୟୁକ୍ରାଇନ୍ ରାଷ୍ଟ୍ର ଖମାରସମୂହର ସମିତିର ଜଣେ ପ୍ରତିନିଧି ୧୯୨୭ ମସିହାରେ ସେଠାରେ ଆସି ପହଞ୍ଚିଲେ ଏବଂ ପ୍ରସ୍ତାବ ଦେଇଥିଲେ ସେମାନଙ୍କ ଜମିକୁ ରାଷ୍ଟ୍ର ଖମାରର ଟ୍ରାକ୍ଟରସବୁ ଆସି ହଳ କରି ଦେବେ । ପ୍ରଥମେ କୃଷକମାନେ ପ୍ରତିନିଧିଙ୍କ ପ୍ରସ୍ତାବକୁ ବିଶ୍ୱାସ କଲେ ନାହିଁ । କୁଲାକ୍‌ମାନେ ବ୍ୟସ୍ତ ହୋଇ ପଡ଼ିଲେ ଏବଂ ଗରିବ କୃଷକମାନଙ୍କୁ ଭୟ ଦେଖାଇ କହିଲେ : "ବୋକାଗୁଡ଼ାକ, ତା'ପରେ ତୁମମାନଙ୍କୁ ତଡ଼ି ଦେବେ ଜମିରୁ ସେମାନେ । ସେମାନେ ପୁଣି ସେଇ ଭୂମିଦାସ ପ୍ରଥାକୁ ଫେରାଇବାକୁ ଚାହୁଁଛନ୍ତି । ତମ ଜମିର ଯଦି ହିଡ଼ବାଡ଼ ନରହେ, ତେବେ ତମର କିଛି ଜମି ବାଡ଼ି ରହିବ ନାହିଁ ।"

ଏସବୁ ସତ୍ତ୍ୱେ କୁଲାକ୍‌ମାନଙ୍କର ଏତାଦୃଶ ପ୍ରଚାରର କୌଣସି ଫଳ ଦେଲା ନାହିଁ । ଗରିବ କୃଷକମାନେ ରାଷ୍ଟ୍ର ଖମାର ସହିତ ଏକ ଚୁକ୍ତିରେ ସ୍ୱାକ୍ଷର କରିଥିଲେ । ହଳ କରିବା ଏବଂ ବିହନ ବୁଣିବା ପାଇଁ ସେମାନେ କୁଲାକ୍‌ମାନଙ୍କୁ ସେମାନଙ୍କ ଘୋଡ଼ା ଆଉ

କୃଷି ଉପକରଣ ପାଇଁ ଯେତିକି ଦେଉଥିଲେ, ତା'ର ମାତ୍ର ଶତକଡ଼ା ୩୦-୪୦ ଭାଗ ଖର୍ଚ୍ଚ କରିବାକୁ ପଡ଼ିଲା । ଫସଲ ଅମଳ ବେଳେ ସେମାନେ ଦେଖିଲେ, ସେମାନେ ଯାହା ଉତ୍ପାଦନ କରନ୍ତି, ତା'ଠାରୁ ଶତକଡ଼ା ୫୦ ଭାଗ ଅଧିକ ପାଇଛନ୍ତି । ସେମାନଙ୍କ ଖମାରଗୁଡ଼ିକୁ ଏକତ୍ର କରିବା ଏବଂ ମେସିନ୍ ବ୍ୟବହାର କରିବାର ସୁବିଧା କେତେ, ତାହା ଗରିବ କୃଷକମାନେ ହୃଦୟଙ୍ଗମ କଲେ । ସେମାନେ "ଇଜ୍‌ଭେଷ୍ଟିଆ" ସମ୍ବାଦପତ୍ରକୁ ଏକ ପତ୍ରରେ ଲେଖିଥିଲେ: "ଟ୍ରାକ୍ଟରସବୁ କେମିତି କାମ କରି ପାରନ୍ତି ଦେଖିଲା ପରେ ଆମେ ଆଉ ଆମର ଗରିବ କୃଷକ ଜୋତରେ କାମ କରିବାକୁ ଚାହୁଁ ନୁ । ଏବେ ଆମେ ଠିକ୍ କରିଛୁ ସାମାଜିକ ଟ୍ରାକ୍ଟର ଖମାର ସଂଗଠିତ କରିବାକୁ, ଏଥିରେ ବ୍ୟକ୍ତିଗତ ଖଣ୍ଡି ଖଣ୍ଡିକିଆ କୃଷକ ଜୋତ ରହିବ ନାହିଁ । ତାରାସ୍ ଶେଭ୍‌ଚେଙ୍କୋ ରାଷ୍ଟ୍ର ଖମାରଟି ସହିତ ଆମର ଚୁକ୍ତି ଫଳରେ ତାହା ଏହି ଟ୍ରାକ୍ଟର ଖମାର ସଂଗଠିତ କରିବାର ଦାୟିତ୍ୱ ଗ୍ରହଣ କରିଛି ।"

ଏହି ଅଭିଜ୍ଞତାକୁ ମନରେ ରଖି ରାଷ୍ଟ୍ର ଗଢ଼ିବାକୁ ଆରମ୍ଭ କରି ଦେଲା ମେସିନ୍ ଏବଂ ଟ୍ରାକ୍ଟର ଷ୍ଟେସନସବୁ । ଏସବୁ ସମଗ୍ର ଗାଁ ପାଇଁ କାର୍ଯ୍ୟ କଲେ । ପ୍ରଥମ ଟ୍ରାକ୍ଟର ଏବଂ ମେସିନ୍ କେନ୍ଦ୍ରଟି ପ୍ରତିଷ୍ଠିତ ହୋଇଥିଲା ୟୁକ୍ରେନ୍‌ର ତାରାସ୍ ଶେଭ୍‌ଚେଙ୍କୋ ରାଷ୍ଟ୍ର ଖମାରରେ ୧୯୨୮, ନଭେମ୍ବର ମାସରେ । ଏହାର ପରବର୍ତ୍ତୀ ବର୍ଷ, ୧୫୯ଟି ମେସିନ୍ ଏବଂ ଟ୍ରାକ୍ଟର କେନ୍ଦ୍ର ନିର୍ମିତ ହୋଇଥିଲା । ଏହିସବୁ କେନ୍ଦ୍ର କୃଷକମାନଙ୍କ ଖମାରଗୁଡ଼ିକୁ କୋଠକରଣ କରିବା ଦିଗରେ ଉତ୍ତମ ଭିତ୍ତି ଯୋଗାଇ ଦେଇଥିଲା ।

ନୂଆ ନୂଆ କୋଠଖମାରଗୁଡ଼ିକୁ ସୋଭିଏତ୍ ରାଷ୍ଟ୍ର ଋଣ ଯୋଗାଇ ଦେଇ, ସୁବିଧାଜନକ ସର୍ତ୍ତରେ ସେମାନଙ୍କୁ ମେସିନ୍ ଏବଂ ରାସାୟନିକ ସାର ବିକ୍ରି କରି, କୃଷି ଟିକସରେ ରିହାତି ଦେଇ, କୋଠଖମାର ସଂଗଠନ ଏବଂ ପରିଚାଳକମାନଙ୍କୁ ତାଲିମ୍ ଦେବାର ବ୍ୟାପକ ପାଠ୍ୟକ୍ରମ ଆୟୋଜନ କରି ସମର୍ଥନ ଯୋଗାଇଲା । ହଜାର ହଜାର ଶ୍ରମିକ ଟିମ୍‌କୁ ଗ୍ରାମାଞ୍ଚଳକୁ ପଠାଗଲା କୃଷକମାନଙ୍କୁ କୋଠଖମାର ପ୍ରତିଷ୍ଠାରେ ସାହାଯ୍ୟ କରିବା ନିମିତ୍ତ । ଶିଳ୍ପ କେନ୍ଦ୍ରଗୁଡ଼ିକ କୃଷି ଜିଲ୍ଲାଗୁଡ଼ିକର ଦାୟିତ୍ୱ ଗ୍ରହଣ କଲେ ଏବଂ ଶ୍ରମିକ ସଂଗଠକମାନଙ୍କୁ ଗ୍ରାମାଞ୍ଚଳକୁ ପଠାଇଲେ । ୧୯୨୯ ମସିହା ଶେଷରେ ପାର୍ଟି କେନ୍ଦ୍ରୀୟ କମିଟି ସ୍ଥିର କରିଥିଲା ୨୫,୦୦୦ରୁ ଅଧିକ ବଛାବଛା ଶ୍ରମିକଙ୍କୁ ଗ୍ରାମାଞ୍ଚଳକୁ ପଠାଇ କୃଷକମାନଙ୍କୁ ନୂତନ ଜୀବନ ନିର୍ମାଣରେ ସାହାଯ୍ୟ କରିବାକୁ । ଲୋକଙ୍କ ମଧ୍ୟରେ ସେମାନେ ପରିଚିତ ହୋଇଥିଲେ "ପଚିଶ ହଜାରିଆ" ବୋଲି ଏବଂ ଏମାନେ କୋଠଖମାର ଗଠନ ପ୍ରତି ବିପୁଳ ଅବଦାନ ରଖିଥିଲେ ।

କୋଠଖମାର ପ୍ରତିଷ୍ଠା କାର୍ଯ୍ୟକ୍ରମ ମଧ୍ୟରେ ଥିଲା କୁଲାକ୍‌ମାନଙ୍କୁ ନିୟନ୍ତ୍ରଣ କରିବାର ପଦକ୍ଷେପସମୂହ । କୁଲାକ୍‌ମାନଙ୍କ ଦ୍ୱାରା କ୍ଷେତ ମଜୁରିଆ ଓ ଗ୍ରାମର ଗରିବମାନଙ୍କୁ ଶୋଷଣ କରିବାକୁ ସୋଭିଏତ୍ ଶାସନ ସୀମିତ କରି ଦେଇଥିଲା । ସେମାନଙ୍କ ଉପରେ

ଅଧିକ ପରିମାଣରେ ଟିକସ ବସାଗଲା । ଗ୍ରାମୀଣ ସମବାୟ ସଂଗଠନସମୂହରେ ଭୋଟ ଦେବାର ଅଧିକାରରୁ ସେମାନେ ବଞ୍ଚିତ ହେଲେ । ସେମାନେ ଆଉ ଟ୍ରାକ୍ଟର ଏବଂ କୃଷିଯନ୍ତ୍ରପାତି ବିକ୍ରି କରି ପାରିଲେ ନାହିଁ, ରାଷ୍ଟ୍ର ସେସବୁକୁ ସେମାନଙ୍କ ଠାରୁ ବାଧ୍ୟତାମୂଳକ ଭିତ୍ତିରେ କ୍ରୟ କରି ନେଲା ।

କୁଲାକ୍‌ମାନେ ସୋଭିଏତ୍ ଶାସନ ବିରୁଦ୍ଧରେ ଦୃଢ଼ ଯୁଦ୍ଧ ଘୋଷଣା କରି ସେମାନଙ୍କ ପ୍ରତିକ୍ରିୟା ଜଣାଇଥିଲେ । ଗ୍ରାମାଞ୍ଚଳରେ ଶ୍ରେଣୀ ସଂଗ୍ରାମ ତେଜି ଉଠିଲା । କୁଲାକ୍‌ମାନେ ଉଦ୍ୟମ କଲେ ରାଷ୍ଟ୍ର ଦ୍ୱାରା ଶସ୍ୟ କ୍ରୟକୁ ଭଣ୍ଡୁର କରି ଦେବା ପାଇଁ । ସେମାନେ ଦେଶରେ ଦୁର୍ଭିକ୍ଷ ଦେଖାଦେବ ବୋଲି ଆଶା କରୁଥିଲେ ଏବଂ ଖାଦ୍ୟଶସ୍ୟ କ୍ରୟକୁ ଭଣ୍ଡୁର କରି ସୋଭିଏତ୍ ଶାସନର ଅର୍ଥନୈତିକ କର୍ମନୀତିକୁ ବିଫଳ କରି ଦେବାକୁ ଚାହୁଁଥିଲେ । କୋଠଖମାର ଗଠନର ଆନ୍ଦୋଳନକୁ ବଦନାମ କରି ଓ ନଷ୍ଟ କରି ଦେବା ଉଦ୍ଦେଶ୍ୟରେ ସେମାନେ କୋଠଖମାରର ସଦସ୍ୟମାନଙ୍କର ଏବଂ କୋଠଖମାରର ଘରେ ନିଆଁ ଲଗାଇ ଦେଲେ ଏବଂ କୋଠଖମାରର ପଶୁପକ୍ଷୀଙ୍କୁ ପୋଡ଼ି ଦେଲେ । ସେମାନେ କୋଠଖମାରର ସଂଗଠକମାନଙ୍କୁ, ଗ୍ରାମ୍ୟ କର୍ମୀ, ସୋଭିଏତ୍ ଶାସନର ପ୍ରତିନିଧି ଏବଂ କମ୍ୟୁନିଷ୍ଟମାନଙ୍କୁ ହତ୍ୟା କଲେ ।

ସୋଭିଏତ୍ ରାଷ୍ଟ୍ର ବାଧ୍ୟ ହୋଇ କୁଲାକ୍‌ମାନଙ୍କର ଏହି ଦସ୍ୟୁସୁଲଭ କ୍ରିୟାକଳାପକୁ ସ୍ତବ୍ଧ କରିବା ନିମିତ୍ତ ଦୃଢ଼ ପଦକ୍ଷେପ ନେବାକୁ ପଡ଼ିଲା । ଯେଉଁମାନେ ଖାଦ୍ୟଶସ୍ୟ ଲୁଚାଇ ରଖିଲେ, ସେମାନଙ୍କୁ ଲାଭଖୋର ରୂପେ ଦଣ୍ଡବିଧାନ କରାଗଲା । ସଂତ୍ରାସବାଦୀ ଏବଂ ଧ୍ୱଂସକାରୀମାନଙ୍କୁ ନିର୍ମମ ଭାବେ ଦମନ କରାଗଲା । କୁଲାକ୍‌ମାନଙ୍କର ଏହି ଧ୍ୱଂସମୂଳକ କାର୍ଯ୍ୟ ବିରୁଦ୍ଧରେ ରାଷ୍ଟ୍ରର ପଦକ୍ଷେପକୁ ଗରିବ ଓ ମଧ୍ୟବିତ୍ତ ଚାଷୀମାନେ ସମର୍ଥନ ଜଣାଇଲେ ।

କୃଷକମାନଙ୍କୁ କୋଠଖମାରରେ ସମ୍ମିଳିତ କରିବା ପାଇଁ ଉପଯୁକ୍ତ ଅବସ୍ଥା ସୃଷ୍ଟି କରିବା ଦିଗରେ କମ୍ୟୁନିଷ୍ଟ ପାର୍ଟି ଏବଂ ସୋଭିଏତ୍ ରାଷ୍ଟ୍ର ଯେଉଁ ବ୍ୟାପକ କାର୍ଯ୍ୟ ସଂପନ୍ନ କରିଥିଲେ, ତାହା ସୁଫଳ ପ୍ରଦାନ କରିଥିଲା : ୧୫ଶ ପାର୍ଟି କଂଗ୍ରେସ ପରେ କୋଠଖମାରଗୁଡ଼ିକର ସଂଖ୍ୟା ଦ୍ରୁତ ବୃଦ୍ଧି ପାଇବାକୁ ଲାଗିଲା : ଦୁଇ ବର୍ଷ ମଧ୍ୟରେ ଏହି ସଂଖ୍ୟା ଚାରି ଗୁଣ ବୃଦ୍ଧି ପାଇଲା ଏବଂ ଏସବୁଥିରେ ଯୋଗ ଦେଇଥିବା କୃଷକ ଜୋତର ସଂଖ୍ୟା ୫ ଗୁଣରୁ ଅଧିକ ହୋଇଗଲା ।

ତେବେ ଗ୍ରାମାଞ୍ଚଳରେ ପ୍ରକୃତ ଦିଗ ମୋଡ଼ଟି ଦେଖାଦେଲା ୧୯୨୯ ମସିହାର ଦ୍ୱିତୀୟ ଭାଗରେ । ଏହି ସମୟରେ ଗ୍ରାମାଞ୍ଚଳରେ କେନ୍ଦ୍ର ଏବଂ ପ୍ରଭାବଶାଳୀ ଅଂଶ — ମଧ୍ୟବିତ୍ତ କୃଷକମାନେ କୋଠଖମାରମାନଙ୍କରେ ଯୋଗ ଦେବାକୁ ଆରମ୍ଭ କଲେ । ପ୍ରଥମେ ଅଧିକାଂଶ ଖେତ ମଜୁରିଆ ଏବଂ ଗରିବ କୃଷକମାନେ କୋଠଖମାରରେ ଯୋଗ

ଦେଇଥିଲେ ଏବଂ ୧୯୨୯ ଗ୍ରୀଷ୍ମରେ ବ୍ୟାପକ ହାରରେ ମଧ୍ୟବିତ୍ତ ଚାଷୀମାନେ କୋଠଖମାରରେ ଯୋଗ ଦେବାକୁ ଆରମ୍ଭ କରିଥିଲେ । ମଧ୍ୟବିତ୍ତ ଚାଷୀମାନେ ଜଣେ ଜଣେ କରି ଯୋଗ ନଦେଇ ସମଗ୍ର ଗ୍ରାମ ଆକାରରେ ଯୋଗ ଦେଲେ ।

ମଧ୍ୟବିତ୍ତ ଚାଷୀମାନେ କୋଠଖମାରରେ ଯୋଗ ଦେବାର କାରଣ ହେଲା, ସେମାନେ କ୍ରମଶଃ କୋଠଖମାରର ସୁବିଧାରାଜିକୁ ଅଧିକ ଦେଖିବାକୁ ପାଇଲେ । ସେମାନେ ବହୁ କୋଠଖମାରର ଦୃଷ୍ଟାନ୍ତରୁ ଦେଖିଲେ, ସେସବୁ ଅଧିକ ଉତ୍ପାଦନ କରୁଛନ୍ତି ଏବଂ ସେମାନଙ୍କ ସଦସ୍ୟମାନେ ଅଧିକ ଆୟ କରୁଛନ୍ତି । ଅନ୍ୟ ଦିଗରେ କୁଲାକ୍‌ମାନଙ୍କୁ ସୀମିତ କରିବା ଏବଂ ଉଚ୍ଛେଦ କରିବା ଦିଗରେ ରାଷ୍ଟ୍ର ତରଫରୁ ଅଧିକରୁ ଅଧିକ ପଦକ୍ଷେପ ସେମାନଙ୍କୁ ଚେତେଇ ଦେଲା ଯେ, ସେମାନଙ୍କର କ୍ରମଶଃ କୁଲାକ୍ ହେବାର ସ୍ୱପ୍ନ ଭିତ୍ତିହୀନ ଏବଂ ତା'ର କୌଣସି ବାସ୍ତବ ସମ୍ଭାବନା ନାହିଁ ।

କୋଠଖମାରକରଣର ପରିସର ୧୯୨୯ ମସିହାର ଦ୍ୱିତୀୟାର୍ଦ୍ଧରେ ନିମ୍ନ ଲିଖିତ ସଂଖ୍ୟାଗୁଡ଼ିକ ପ୍ରତିଫଳିତ ହୋଇଥିଲା : ୧୯୨୯ ଜୁଲାଇ ମାସରେ କୋଠଖମାରଗୁଡ଼ିକରେ ଏକ ନିୟୁତ କୃଷକ ପରିବାର ଅନ୍ତର୍ଭୁକ୍ତ ଥିଲା ବେଳେ ୧୯୨୯, ଅକ୍ଟୋବର ପହିଲାରେ ଏହି ସଂଖ୍ୟା ୨ ନିୟୁତ ହୋଇଯାଇଥିଲା । ତା ଅର୍ଥ ଗତ ୧୨ ବର୍ଷ ମଧ୍ୟରେ ଯେତେ କୃଷକ କୋଠଖମାରରେ ଯୋଗ ଦେଇଥିଲେ, ଏହି ୨-୩ ମାସରେ ସେତେ ଯୋଗ ଦେଇଥିଲେ । ୧୯୨୯ ମସିହାର ଶେଷ ତିନି ମାସରେ ଆଉରି ୨.୪ ନିୟୁତ କୃଷକ ପରିବାର ଯୋଗ ଦେଇଥିଲେ କୋଠଖମାରରେ ।

ସୋଭିଏତ୍ ୟୁନିଅନ୍‌ର ଗ୍ରାମାଞ୍ଚଳରେ ଏହା ଥିଲା ଏକ ବିରାଟ ଦିଗମୋଡ଼ ସ୍ୱରୂପ । ନିୟୁତ ନିୟୁତ କୃଷକ ନୂତନ, ସମାଜବାଦୀ ପଥ ଗ୍ରହଣ କରିଥିଲେ । ଲେନିନ୍‌ଙ୍କ ସେଇ ଭବିଷ୍ୟତ୍‌ବାଣୀର ସମୟ ଆସି ଯାଇଥିଲା ; କୃଷକ ସଂପ୍ରଦାୟର ଅଧିକାଂଶ କୋଠଖମାର ମାଧ୍ୟମରେ ଆଗେଇବାର ପଥ ବାଛି ନେଇଥିଲେ । ବ୍ୟାପକ ସଂଖ୍ୟାରେ କୃଷକମାନେ କୋଠଖମାରରେ ଯୋଗ ଦେବା ଫଳରେ କୁଲାକ୍ ପୁଞ୍ଜିବାଦୀ ଶସ୍ୟ ଉତ୍ପାଦନ ପରିବର୍ତ୍ତେ କୋଠଖମାର ଓ ରାଷ୍ଟ୍ର ଖମାର ଦ୍ୱାରା ସମାଜବାଦୀ ଉତ୍ପାଦନ ପ୍ରତିଷ୍ଠା କରିବା ସମ୍ଭବ ହୋଇଥିଲା । ଅନ୍ୟ ଭାବେ କହିବାକୁ ଗଲେ, କୃଷକ ଖମାରଗୁଡ଼ିକର ସଂପୂର୍ଣ୍ଣ କୋଠକରଣ ଏବଂ ତାକୁ ଭିତ୍ତି କରି କୁଲାକ୍ ଉତ୍ପାଦନର ବିଲୋପ ସାଧନର ସମୟ, ଅର୍ଥାତ୍, କୁଲାକ୍ ଶ୍ରେଣୀର ଉଚ୍ଛେଦ ସାଧନର ସମୟ ଆସି ଯାଇଥିଲା ।

୧୯୩୦, ଜାନୁଆରୀ ୫ ତାରିଖରେ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟି "କୋଠଖମାରସମୂହର ସଂଗଠନରେ କୋଠଖମାରର ମାତ୍ରା ଏବଂ ରାଷ୍ଟ୍ରୀୟ ସହାୟତା ଉପରେ" ଏକ ପ୍ରସ୍ତାବ ଗ୍ରହଣ କରିଥିଲା । ପ୍ରଥମ ପଞ୍ଚବାର୍ଷିକ ଯୋଜନାର ଶେଷରେ (୧୯୩୩) ସାମଗ୍ରିକ ଭାବେ ସଂପୂର୍ଣ୍ଣ କୋଠଖମାରକରଣ ହାସଲ କରିବା ପାଇଁ ସ୍ଥିର

କରାଯାଇଥିଲା । ଦେଶର ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଶସ୍ୟ ଉତ୍ପାଦନ ଅଞ୍ଚଳଗୁଡ଼ିକରେ (ଉତ୍ତର କକେସସ୍ ଏବଂ ମଧ୍ୟ ଏବଂ ନିମ୍ନ ଭୋଲ୍‌ଗା ଅଞ୍ଚଳ), ଯେଉଁଠି ଅଧିକାଂଶ କୋଠଖମାର ଏବଂ ରାଷ୍ଟ୍ର ଖମାର ପ୍ରତିଷ୍ଠିତ ହୋଇ ସାରିଥିଲା, ମେସିନ୍ ଓ ଟ୍ରାକ୍ଟର ଷ୍ଟେସନସବୁ ଥିଲା, ସେଠାରେ ୧୯୩୧ ମସିହାର ବସନ୍ତ କାଳ ସୁଦ୍ଧା ଏବଂ ଅନ୍ୟାନ୍ୟ ଶସ୍ୟ ଉତ୍ପାଦନ ଅଞ୍ଚଳଗୁଡ଼ିକରେ ୧୯୩୨ ବସନ୍ତକାଳରେ କୋଠଖମାରକରଣ ସଂପୂର୍ଣ୍ଣ କରିବାକୁ ମନସ୍ଥ କରାଯାଇଥିଲା । ପାର୍ଟି କେନ୍ଦ୍ରୀୟ କମିଟି ସାବଧାନ କରି ଦେଇଥିଲା, କୋଠଖମାରମାନଙ୍କରେ କୃଷକମାନଙ୍କର ସ୍ୱେଚ୍ଛାକୃତ ଯୋଗଦାନର ନୀତିକୁ ଯେପରି ଲଙ୍ଘନ କରା ନଯାଏ ।

ପାର୍ଟି କୃଷକମାନଙ୍କୁ ଉପଦେଶ ଦେଇଥିଲା କୃଷି ସମବାୟ ପ୍ରତିଷ୍ଠା କରିବାକୁ, ଅର୍ଥାତ୍, ସେମାନଙ୍କ ଜମି, କୃଷିଯୋଗ୍ୟ ପଶୁମାନଙ୍କୁ ଏବଂ ପ୍ରଧାନ କୃଷି ଯନ୍ତ୍ରପାତିଗୁଡ଼ିକୁ କୋଠଖମାର ପାଇଁ ଏକାଠି କରିବାକୁ । ସମବାୟଗୁଡ଼ିକୁ କୋଠଖମାରର ସଦସ୍ୟମାନଙ୍କ ଦ୍ୱାରା ନିର୍ବାଚିତ ପରିଚାଳକ ମଣ୍ଡଳୀ ଦ୍ୱାରା ପରିଚାଳିତ ହେଉଥିଲା । କୋଠଖମାରଗୁଡ଼ିକ ସେସବୁର ସଦସ୍ୟମାନଙ୍କ ଜୀବନଧାରଣର ମୁଖ୍ୟ ଉତ୍ସରେ ପରିଣତ ହୋଇଥିଲା ଏବଂ ଏହା ଛଡ଼ା କୋଠଖମାରର ପ୍ରତ୍ୟେକ ସଦସ୍ୟଙ୍କ ଅଧୀନରେ ବ୍ୟକ୍ତିଗତ ଜମି ଖଣ୍ଡ ଖଣ୍ଡ ଥିଲା ପନିପରିବା ବା ଫଳ ଚାଷ କରିବା ପାଇଁ । ସେମାନେ ସେମାନଙ୍କର ଛୋଟ ଜମି ଖଣ୍ଡଗୁଡ଼ିକୁ ଚାଷ କରିବା ପାଇଁ ଛୋଟ ଛୋଟ କୃଷିଯନ୍ତ୍ର, ପଶୁ ଏବଂ ପକ୍ଷୀ ରଖି ପାରୁଥିଲେ ।

ଯେଉଁସବୁ ଅଞ୍ଚଳରେ କୋଠଖମାର ପ୍ରତିଷ୍ଠା ସଂପୂର୍ଣ୍ଣ ହୋଇ ଯାଇଥିଲା, ସେସବୁ ଅଞ୍ଚଳରେ କୁଲକ୍‌ମାନଙ୍କ ଠାରୁ ଜମି, କୃଷି ଯନ୍ତ୍ରପାତି ଏବଂ ପଶୁପକ୍ଷୀମାନଙ୍କୁ କାଢ଼ି ନେଇ ଅନ୍ୟାନ୍ୟ ଅଞ୍ଚଳରେ ପୁନର୍ବାସିତ କରାଇବାର ଅଧିକାର ସୋଭିଏତ୍ ସରକାର ସୋଭିଏତ୍‌ଗୁଡ଼ିକ ହାତରେ ପ୍ରଦାନ କରିଥିଲେ । ସେସବୁ ଅଞ୍ଚଳରେ ସେମାନଙ୍କୁ ସାଧୁତାର ସହିତ କାର୍ଯ୍ୟକର୍ମ କରିବାର ଅନୁମତି ଦିଆଯାଇଥିଲା । ଏହାର ଅର୍ଥ ହେଲା କୁଲକ୍ ସଂପ୍ରଦାୟର, ଅର୍ଥାତ୍, କୁଲକ୍ ଉତ୍ପାଦନର ଉଚ୍ଛେଦ ।

କୋଠଖମାରମାନଙ୍କୁ ଯଥେଷ୍ଟ ପରିମାଣର ନୂତନ ଯନ୍ତ୍ରପାତି ଯୋଗାଇ ଦେଇ ସେମାନଙ୍କ କାର୍ଯ୍ୟକୁ ସହଜତର କରିବା ଉଦ୍ଦେଶ୍ୟରେ ଟ୍ରାକ୍ଟର, କମ୍ବାଇନ୍ ହାର୍ଭେଷ୍ଟର ସମେତ ଅନ୍ୟାନ୍ୟ କୃଷିଯନ୍ତ୍ରପାତି ନିର୍ମାଣ ନିମିତ୍ତ ନୂଆ ନୂଆ କାରଖାନା ପ୍ରତିଷ୍ଠା ପାଇଁ ପାର୍ଟି ଏବଂ ସରକାର ପଦକ୍ଷେପମାନ ଗ୍ରହଣ କରିଥିଲେ । ସୋଭିଏତ୍ ସରକାର ପକ୍ଷରୁ ୧୯୩୦ ମସିହାରେ ୫୦ କୋଟି ରୁବଲ ବରାଦ କରାଯାଇଥିଲା କୋଠଖମାରଗୁଡ଼ିକୁ ସଂଗଠିତ କରିବା ଉଦ୍ଦେଶ୍ୟରେ ।

ଦେଶ ସାରା କୃଷକମାନେ ଏକତ୍ର ହେଉଥିଲେ ସଭାମାନଙ୍କରେ ସେମାନଙ୍କ ଜୀବନର ମୌଳିକ ପ୍ରଶ୍ନଗୁଡ଼ିକୁ ଆଲୋଚନା କରିବା ପାଇଁ । କୋଠଖମାରରେ ସେମାନେ

ସମ୍ମିଳିତ ହେବେ କି ପୂର୍ବତନ ବାଟରେ ଜୀବନ ଯାପନ କରିବେ — ଏସବୁ ଉପରେ ତୀବ୍ର ଯୁକ୍ତିତର୍କ ଚାଲୁଥିଲା । କୋଠଖମାରର ଯେଉଁସବୁ କୃଷକ ସଂଗଠିତ ହୋଇଥିଲେ, ସେମାନେ କୋଠଖମାରରେ ସେମାନଙ୍କ ଅଭିଜ୍ଞତାକୁ ଭିତ୍ତି କରି ଏହାର ସୁବିଧାରାଜି ସଂପର୍କରେ କହୁଥିଲେ । କୁଲାକ୍‌ମାନେ ଅନ୍ୟ ଦିଗରେ ବ୍ୟକ୍ତିଗତ ଖମାରକୁ ରକ୍ଷା କରିବା ପାଇଁ ପ୍ରଚାର ଚଳେଇ ଯାଇଥିଲେ । କେତେକ କୃଷକ ଦୋଦୁଲ୍ୟମାନତା ଦେଖାଉଥିଲେ ।

୧୯୩୦ ମସିହାର ପ୍ରାରମ୍ଭରେ ଶ୍ରମିକ ଶ୍ରେଣୀ ଦ୍ୱାରା ପ୍ରେରିତ "ପଚିଶ ହଜାର" କର୍ମୀ ଗ୍ରାମମାନଙ୍କରେ ପହଞ୍ଚି ଯାଇଥିଲେ । ସେମାନେ କୃଷକମାନଙ୍କୁ ପ୍ରବର୍ତ୍ତାଇଥିଲେ କୋଠଖମାର ଗଠନ କରିବାକୁ ଏବଂ ପ୍ରତିଶ୍ରୁତି ଦେଇଥିଲେ ସେମାନଙ୍କୁ ସାହାଯ୍ୟ କରିବାକୁ । କୃଷକମାନଙ୍କ ମନେ ପଡ଼ି ଯାଉଥିଲା, ବିପ୍ଳବ, ଗୃହଯୁଦ୍ଧ ଏବଂ ବିଦେଶୀ ହସ୍ତକ୍ଷେପ କାଳରେ ଶ୍ରମିକ ଏବଂ କୃଷକମାନଙ୍କର ଘନିଷ୍ଠ ମେଣ୍ଟ ଫଳରେ କେବଳ ବିଜୟ ହାସଲ ହୋଇ ପାରିଥିଲା । ସେମାନେ ବିଶ୍ୱାସ କରୁଥିଲେ, ସମାଜବାଦୀ ପଥରେ ଗ୍ରାମମାନଙ୍କର ସଫଳ ପରିବର୍ତ୍ତନ ପକ୍ଷରେ ଗ୍ୟାରେଣ୍ଟି ସ୍ୱରୂପ ହେଉଛି ସେଇ ମେଣ୍ଟ । ଶ୍ରମିକମାନଙ୍କ ଦ୍ୱାରା ପରିଚାଳିତ ଆନ୍ଦୋଳନାତ୍ମକ କ୍ରିୟାକଳାପ ଫଳରେ ସୁଫଳ ମିଳିଥିଲା : ପ୍ରତ୍ୟେକ ଦିନ ନୂଆ ନୂଆ କୋଠଖମାରମାନ ମୁଣ୍ଡ ଟେକି ଉଠିଥିଲା ।

ତେବେ କୋଠଖମାରଗୁଡ଼ିକ ସଂଗଠନ କରିବା କାର୍ଯ୍ୟଟି ସହଜ ଏବଂ ଅବିଚଳ ସର୍ବତ୍ର ହୋଇ ପାରି ନଥିଲା । କେତେକ ସ୍ଥାନରେ କୋଠଖମାରରେ ସ୍ୱେଚ୍ଛାରେ ଯୋଗ ଦେବାର ଲେନିନ୍‌ଙ୍କ ନୀତି ଲଙ୍ଘିତ ହୋଇଥିଲା । ମଧ୍ୟ ଏସିଆ, ଟ୍ରାନ୍‌ସକକେସିଆ ପ୍ରଜାତନ୍ତ୍ରସମୂହରେ ଏବଂ ରୁଷ୍ ଫେଡେରେସନର କେନ୍ଦ୍ରୀୟ ଶିଳ୍ପାଞ୍ଚଳସମୂହ ସମେତ ଆଉ କେତେକ ସ୍ଥାନରେ କେନ୍ଦ୍ରୀୟ କମିଟିର କୋଠଖମାରକରଣର ଗତି ହାର ଏବଂ ନିର୍ଦ୍ଦିଷ୍ଟ ସମୟ ସୀମାକୁ ଅନୁସରଣ କରିବାରେ ବିଚ୍ୟୁତି ଘଟିଥିଲା । ଏହିସବୁ ଅଞ୍ଚଳର ବିଶେଷ ଜାତିଗତ ବୈଶିଷ୍ଟ୍ୟ ଏବଂ କୃଷକମାନଙ୍କ ମଧ୍ୟରେ ଦୃଢ଼ ବ୍ୟକ୍ତିଗତ ମନୋଭାବ ହେତୁ କୋଠଖମାରକରଣ ପ୍ରକ୍ରିୟାଟି ୧୯୩୩ ମସିହାରେ ସଂପୂର୍ଣ୍ଣ କରିବାକୁ ପରାମର୍ଶ ଦିଆଯାଇଥିଲା । କିନ୍ତୁ କେତେକ କ୍ଷେତ୍ରରେ ଅଫିସରମାନେ ଅବସ୍ଥା ପୋଖତ ହେବା ପୂର୍ବରୁ ୧୯୩୦ ମସିହାର ବସନ୍ତକାଳରେ କୋଠଖମାରକରଣକୁ ସଂପୂର୍ଣ୍ଣ କରିବାକୁ ସ୍ଥିର କରିଥିଲେ । ବୁଝାଇ ସୁଝାଇ ଏବଂ ସ୍ୱେଚ୍ଛା ପ୍ରଣୋଦିତ ନୀତି ଅନୁସରଣ ନକରି କୃଷକମାନଙ୍କୁ ସେମାନଙ୍କ ଜମି ଏବଂ ଭୋଟ ଦେବାର ଅଧିକାର ହରେଇବାର ଭୟ ପ୍ରଦର୍ଶନ କରି ଅନେକ ସମୟରେ ବାଧ୍ୟ କରାଯାଇଥିଲା କୋଠଖମାରରେ ଯୋଗ ଦେବାକୁ । ଆଉ କେତେକ ଅଞ୍ଚଳରେ କେବଳ ଉତ୍ପାଦନର ଉପାୟ ଉପକରଣ — ଜମି, ଘୋଡ଼ା ଏବଂ କୃଷି ଉପକରଣକୁ ନେଇ କମ୍ୟୁନ୍‌ମାନ ପ୍ରତିଷ୍ଠିତ ହେଲା ନାହିଁ, ଘର, ଅନ୍ୟାନ୍ୟ ପଶୁପକ୍ଷୀମାନଙ୍କୁ ସେସବୁଥିରେ ଅନ୍ତର୍ଭୁକ୍ତ କରି ନିଆଗଲା । କୋଠଖମାର ସଂଗଠନର ଲେନିନ୍‌ଙ୍କ ନୀତିକୁ ଲଙ୍ଘନ କରାଗଲା । ଏହା ଫଳରେ କୃଷକମାନଙ୍କ

ମଧ୍ୟରେ ଦେଖାଦେଇଥିଲା ଗୁରୁତର ଅସନ୍ତୋଷ । କୁଲକ୍‌ମାନେ ଏହି ଅସନ୍ତୋଷର ସୁଯୋଗ ନେଇ କୋଠଖମାରବିରୋଧୀ ଏବଂ ସୋଭିଏତ୍‌ବିରୋଧୀ ଆନ୍ଦୋଳନାତ୍ମକ କ୍ରିୟାକଳାପ ଆରମ୍ଭ କରି ଦେଲେ । ଆଉ କେତେକ ଅଞ୍ଚଳରେ କୁଲକ୍‌ମାନେ କୃଷକମାନଙ୍କୁ ମତେଇଲେ ସୋଭିଏତ୍ କ୍ଷମତା ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାକୁ ।

ପାର୍ଟି ଏବଂ ସୋଭିଏତ୍ ସରକାରଙ୍କ ପକ୍ଷରୁ ଅବିଳମ୍ବେ ପଦକ୍ଷେପ ନିଆଯାଇଥିଲା କୋଠଖମାର ସଂଗଠନର ଲେନିନ୍‌ଙ୍କ ନୀତିର ଲଙ୍ଘନକୁ ଦୂର କରିବା ପାଇଁ । କୃଷକମାନଙ୍କ ଇଚ୍ଛା ବିରୁଦ୍ଧରେ ଉପରୁ ଚପେଇ ଦିଆଯାଇଥିବା ସମସ୍ତ କୋଠଖମାରକୁ ବନ୍ଦ କରି ଦିଆଗଲା । କୋଠଖମାରରେ ସ୍ୱେଚ୍ଛାରେ ଯୋଗଦାନ ନୀତିକୁ ଏବଂ ଯୌଥ ଉଦ୍ୟୋଗର ରୂପ କ'ଣ ହେବ, ସେ ବିଷୟରେ ସ୍ୱାଧୀନ (କୋଠଖମାର କିମ୍ବା କମ୍ୟୁନ୍) ନିର୍ବାଚନ କରିବାର ନୀତିକୁ ଲଙ୍ଘନ କରିବାକୁ ଦିଆଯିବ ନାହିଁ ବୋଲି ପୁଣିଥରେ ପାର୍ଟି ତରଫରୁ ଜୋର ଦିଆଗଲା । କେତେକ ଆଞ୍ଚଳିକ ଏବଂ ପ୍ରାଦେଶିକ ପାର୍ଟି ଏବଂ ସୋଭିଏତ୍ ସଂଗଠନର କର୍ମକର୍ତ୍ତାବୃନ୍ଦ, ଯେଉଁମାନେ କୋଠଖମାର ସଂଗଠନ କରିବାକୁ ଯାଇ ସାଙ୍ଘାତିକ ଭୁଲ କରିଥିଲେ, ସେମାନଙ୍କୁ ସେମାନଙ୍କ ପଦବିରୁ ହଟେଇ ଦିଆଗଲା ।

କୋଠଖମାରଗୁଡ଼ିକୁ ସେମାନଙ୍କ ବିକାଶର ପ୍ରାଥମିକ ପର୍ଯ୍ୟାୟରେ ସମର୍ଥନ ଯୋଗାଇବା ପାଇଁ ରାଷ୍ଟ୍ର ତରଫରୁ ଯୋଗାଇ ଦିଆଗଲା କେତେକ ସୁବିଧା ସୁଯୋଗ : ଦୁଇ ବର୍ଷ ପାଇଁ ସେମାନଙ୍କୁ ପଶୁ ଟିକସ ଦେବାରୁ ଛାଡ଼ କରି ଦିଆଗଲା; ଯେଉଁସବୁ କୋଠଖମାର ବିହନ ଆବଶ୍ୟକ କରୁଥିଲେ, ସେମାନଙ୍କୁ ବିହନ ଯୋଗାଇ ଦିଆଗଲା, ଆର୍ଥିକ ସାହାଯ୍ୟ ବୃଦ୍ଧି କରାଗଲା ଏବଂ ମେସିନ୍ ଓ ଟ୍ରାକ୍ଟର ମରାମତି କେନ୍ଦ୍ରଗୁଡ଼ିକର ସଂଖ୍ୟା ଏବଂ ନିର୍ମାଣକୁ ତ୍ୱରାନ୍ୱିତ କରାଗଲା ।

ଏହିସବୁ ପଦକ୍ଷେପ ଫଳରେ କୃଷକମାନଙ୍କ ମଧ୍ୟରେ ଗଭୀର ସନ୍ତୋଷ ପ୍ରକାଶ ପାଇଥିଲା ଏବଂ ଉତ୍ତେଜନା ଶାନ୍ତ ହୋଇଥିଲା । କୋଠକରଣ ଆନ୍ଦୋଳନ ବିକାଶ ଲାଭ କରିବାକୁ ଲାଗିଲା । ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳରେ ପ୍ରାୟ ୧୫ ନିୟୁତ କୃଷକ ଖମାର (ମୋଟ ସଂଖ୍ୟାର ଶତକଡ଼ା ୬୧.୫ ଭାଗ) ୨୧୦,୦୦୦ କୋଠଖମାରରେ ଏକତ୍ରିତ ହୋଇଥିଲେ । ଏହା ଦ୍ୱାରା ମୁଖ୍ୟ କୃଷି ଅଞ୍ଚଳଗୁଡ଼ିକରେ କୃଷକ ଖମାରଗୁଡ଼ିକର ସଂପୂର୍ଣ୍ଣ କୋଠକରଣ ପୂରଣ ହୋଇଥିଲା ।

କୋଠଖମାର ଆନ୍ଦୋଳନର ଅବିଚଳ ଅଭିବୃଦ୍ଧି ହାରାହାରି ଗତିରେ ଚାଲିଥିଲା ବେଳେ ପ୍ରତିଦିନ ପ୍ରାୟ ୨୦୦ କୋଠଖମାର ପ୍ରତିଷ୍ଠିତ ହେଉଥିଲା । ଏହା ଫଳରେ କେତେକ ଅସୁବିଧା ଦେଖାଦେଲା : ନୂଆ କୋଠଖମାନରଗୁଡ଼ିକର ସାଂଗଠନିକ ଓ ଅର୍ଥନୈତିକ ଦୃଢ଼ୀକରଣ ପଛେଇ ଯାଇଥିଲା । ଶ୍ରମ ସଂଗଠନ, ଯନ୍ତ୍ରପାତିର ବ୍ୟବହାର ଏବଂ ଆୟର ବଣ୍ଟନ କ୍ଷେତ୍ରରେ ମଧ୍ୟ ନାନା ଭୁଲଭ୍ରାନ୍ତି ଦେଖାଦେଇଥିଲା । ଅନେକ କୋଠଖମାରରେ

ଶ୍ରମ ଶୃଙ୍ଖଳା ଶିଥିଳ ଥିଲା । କୋଠଖମାରଗୁଡ଼ିକର ସଂଗଠକମାନେ ସେପର୍ଯ୍ୟନ୍ତ ବୃହଦାକାର ଉଦ୍ୟୋଗଗୁଡ଼ିକୁ କିପରି ପରିଗ୍ଳନା କରିବାକୁ ହୁଏ, ସେ ସଂପର୍କରେ ଅଭିଜ୍ଞତା ଅର୍ଜନ କରି ନଥିଲେ । କେତେକ ସ୍ଥାନରେ, ବିଶେଷ କରି ଉତ୍ତର କକେସସ୍ ଓ ୟୁକ୍ରାଇନାରେ ପୂର୍ବତନ କୁଲକ୍‌ମାନଙ୍କ ମଧ୍ୟରୁ କେତେକ ଶତ୍ରୁଭାବାପନ୍ନ ଲୋକ କୋଠଖମାରଗୁଡ଼ିକ ମଧ୍ୟକୁ ପଶି ଆସିଥିଲେ । ସେମାନେ ଭିତରୁ କୋଠଖମାରଗୁଡ଼ିକର କ୍ଷତିସାଧନ କରିଥିଲେ : କୋଠଖମାରର ସଂପତ୍ତିକୁ ଚୋରି କରି ନେଉଥିଲେ, ପଶୁପକ୍ଷୀଙ୍କୁ ମାରି ପକାଉଥିଲେ, ଯନ୍ତ୍ରପାତି ନଷ୍ଟ କରୁଥିଲେ, ଶୃଙ୍ଖଳାକୁ କୋହଳ କରି ଦେଉଥିଲେ, ରାଷ୍ଟ୍ରକୁ ଖାଦ୍ୟଶସ୍ୟ ପ୍ରଦାନ ବ୍ୟବସ୍ଥାକୁ ଭଣ୍ଡୁର କରୁଥିଲେ, ଆଦି ।

କୋଠଖମାରଗୁଡ଼ିକୁ ସାଂଗଠନିକ ତଥା ଅର୍ଥନୈତିକ ଦିଗରୁ ଶକ୍ତିଶାଳୀ କରିବା ଆବଶ୍ୟକ ହୋଇ ପଡ଼ିଥିଲା । ତା ଅର୍ଥ ସଠିକ ସାଂଗଠନିକ କାର୍ଯ୍ୟ, ଖମାରମାନଙ୍କରେ ଯନ୍ତ୍ରପାତିର ସଦ୍‌ବ୍ୟବହାର, କୋଠଖମାରର ଆୟ ବୃଦ୍ଧି କରିବାର କୃଷକମାନଙ୍କୁ ଆଗ୍ରହୀ କରିବା ପାଇଁ ଆୟର ସଠିକ ବଣ୍ଟନ ଏବଂ ଦକ୍ଷ କୋଠଖମାର ସଂଗଠନମାନଙ୍କୁ ତାଲିମ ଦେବା ଆଦି କାର୍ଯ୍ୟକୁ ବୁଝାଏ । ଏହିସବୁ ସମସ୍ୟା ସମାଧାନ ହେଲେ, ଯୌଥ ସମାଜବାଦୀ ଖମାରର ବିପୁଳ ସମ୍ଭାବନା ପ୍ରକାଶ ପାଇ ପାରିବ । କମ୍ୟୁନିଷ୍ଟ ପାର୍ଟି ଏବଂ ସୋଭିଏତ୍ ରାଷ୍ଟ୍ର ପକ୍ଷରୁ କୋଠଖମାରଗୁଡ଼ିକୁ ଏହିସବୁ ଜଟିଳ ସମସ୍ୟା ସମାଧାନ କରିବା ପାଇଁ ସହାୟତା କରାଯାଇଥିଲା । କୋଠଖମାରର ଶ୍ରମ ସଂଗଠନର ମୌଳିକ ରୂପଟି ହେଲା ସ୍ଥାୟୀ ସଦସ୍ୟମାନଙ୍କୁ ନେଇ ଗଠିତ ଉତ୍ପାଦନ ଟିମ୍ । ପ୍ରତ୍ୟେକଟି ଟିମ୍‌କୁ କିଛି ଜମି, ପଶୁପକ୍ଷୀ ଏବଂ ଯନ୍ତ୍ରପାତି ଦିଆଯାଉଥିଲା । ଏହା ଫଳରେ ସେମାନଙ୍କ କାର୍ଯ୍ୟ ଏବଂ ଉତ୍ପାଦନ ସଂପର୍କରେ ହିସାବ ରଖିବା ସହଜତର ହେଉଥିଲା । ଅଭିଜ୍ଞତା ଦ୍ୱାରା ଶ୍ରମର ସାଧାରଣ ପରିମାପକ ସ୍ଥିର କରି ଦିଆଗଲା ଏବଂ ଗୁଣାତ୍ମକ ଭାବେ ବିଭିନ୍ନ କାର୍ଯ୍ୟକୁ ବିଭିନ୍ନ ପରିମାଣକୁ – କର୍ମ ଦିବସକୁ କମେଇ ଦିଆଗଲା । ପ୍ରତ୍ୟେକ କୋଠଖମାରରେ ଚାଷୀ ଦ୍ୱାରା ସଂପନ୍ନ କର୍ମର ପରିମାଣ ଏବଂ ଚରିତ୍ର, ଯାହାକି ତା'ର କର୍ମ ଦିବସର ସଂଖ୍ୟା ମଧ୍ୟରେ ପ୍ରତିଫଳିତ ହୋଇଥାଏ – ତାହା କୋଠଖମାରର ଆୟରେ ତା'ର ଅଂଶକୁ ନିର୍ଦ୍ଧାରଣ କରିଥାଏ । ଏହି ଭାବେ ଶ୍ରମ ପାଇଁ ମଜୁରିର ସମାଜବାଦୀ ନୀତିକୁ କୋଠଖମାର କ୍ଷେତ୍ରରେ ପ୍ରୟୋଗ କରାଯାଇଥିଲା : ସମାନ କାର୍ଯ୍ୟ ପାଇଁ ସମାନ ମଜୁରି ।

କର୍ମ ଦିବସ ଅନୁଯାୟୀ ଆୟର ବଣ୍ଟନ ଦ୍ୱାରା କୋଠଖମାର ଚାଷୀକୁ ଅଧିକ ଦିନ କାର୍ଯ୍ୟ କରିବା ଏବଂ ଅଧିକ ଫସଲ ଅମଳ କରିବାରେ ଆଗ୍ରହୀ କରିଥିଲା । ଏହା ଫଳରେ ପ୍ରତ୍ୟେକ ଦିନ ଅଧିକ ଉତ୍ପାଦନ ହୋଇ ପାରିଲା । କୋଠଖମାରର ଉତ୍ପାଦନ, ଅଧିକ ଫସଲ ଅମଳ ଏବଂ ପଶୁପକ୍ଷୀ ଉତ୍ପାଦନ ଅଧିକ କରିବା ନିମିତ୍ତ ବୈଷୟିକ ପ୍ରୋତ୍ସାହନ ଯୋଗାଇ ଦେଲା ।

୧୯୩୨, ଅଗଷ୍ଟ ମାସରେ ସୋଭିଏତ୍ ରାଷ୍ଟ୍ର ସମାଜବାଦୀ ସଂପତ୍ତିର ପ୍ରତିରକ୍ଷା ପାଇଁ ଏକ ବିଶେଷ ଆଇନ୍ ପ୍ରଣୟନ କରିଥିଲା । ଏହାର ଉଦ୍ଦେଶ୍ୟ ଥିଲା ରାଷ୍ଟ୍ରୀୟ, କୋଠଖମାର ଏବଂ ସମବାୟ ସଂପତ୍ତିର ଚୋରି ବନ୍ଦ କରିବା । ଏହିସବୁ କାର୍ଯ୍ୟରେ ଲିପ୍ତ ଲୋକଙ୍କର ବିଚାର କରାଯାଇ କଠୋର ଦଣ୍ଡ ଦିଆଯାଉଥିଲା ।

୧୯୩୩ ମସିହା ଶୀତକାଳରେ କମ୍ୟୁନିଷ୍ଟ ପାର୍ଟି କୋଠଖମାର ଏବଂ ରାଷ୍ଟ୍ର ଖମାରଗୁଡ଼ିକୁ ସାଂଗଠନିକ ଦିଗରୁ ଶକ୍ତିଶାଳୀ କରିବା ଉଦ୍ଦେଶ୍ୟରେ ମେସିନ୍ ଏବଂ ଟ୍ରାକ୍ଟର ଷ୍ଟେସନ ଓ ରାଷ୍ଟ୍ର ଖମାରରେ ରାଜନୈତିକ ବିଭାଗମାନ ଖୋଲିଥିଲା । ଏହିସବୁ ରାଜନୈତିକ ବିଭାଗରେ କାର୍ଯ୍ୟ କରିବା ପାଇଁ ପାର୍ଟି ତରଫରୁ ପଠାଯାଇଥିଲା ୨୫,୦୦୦ ଅଭିଜ୍ଞ ପାର୍ଟି କର୍ମୀଙ୍କୁ । ମେସିନ୍ ଏବଂ ଟ୍ରାକ୍ଟର ଷ୍ଟେସନର ରାଜନୈତିକ ଭାଗଗୁଡ଼ିକ କୋଠଖମାରର ଚାଷୀମାନଙ୍କ ମଧ୍ୟରେ ଶିକ୍ଷାଗତ ତଥା ରାଜନୈତିକ କାର୍ଯ୍ୟ ପରିଚାଳନା କରିଥିଲେ ଏବଂ ସେମାନଙ୍କ ମଧ୍ୟରେ କାର୍ଯ୍ୟ ତଥା ସର୍ବସାଧାରଣ ସଂପତ୍ତି ପ୍ରତି ସମାଜବାଦୀ ଦୃଷ୍ଟିକୋଣ ବିକାଶ କରାଇଥିଲେ ଏବଂ ଗ୍ରାମାଞ୍ଚଳ ପାର୍ଟି ସଂଗଠନସମୂହର କାର୍ଯ୍ୟର ଅଭିବୃଦ୍ଧି ତଥା ଉନ୍ନତି ପ୍ରତି ଅବଦାନ ରଖିଥିଲେ ।

କୋଠଖମାରଗୁଡ଼ିକର ଦୃଢ଼ୀକରଣ, ଗ୍ରାମାଞ୍ଚଳଗୁଡ଼ିକୁ ଯନ୍ତ୍ରସଜ୍ଜିତ କରିବା, ସେସବୁ ମେସିନ୍ ପରିଚାଳନା ପାଇଁ କର୍ମୀବୃନ୍ଦଙ୍କୁ ତାଲିମ୍ ଦେବା ଏବଂ କୋଠଖମାରର ଚାଷୀମାନଙ୍କ ମଧ୍ୟରେ ଉଚ୍ଚତର ସମାଜବାଦୀ ଚେତନା ସୃଷ୍ଟି କରିବା ଫଳରେ, ସହରମାନଙ୍କର ଅନୁକରଣରେ ଟ୍ରାକ୍ଟର, କମ୍ବାଇନ ହାର୍ଭେଷ୍ଟର ସମେତ ଅନ୍ୟାନ୍ୟ ଯନ୍ତ୍ରପାତିର ସୁଉପଯୋଗ, ଖାଦ୍ୟଶସ୍ୟ, ଚିନି-ବିଟ୍ ଏବଂ କାର୍ପାସର ଉଚ୍ଚତର ଫଳନ ପାଇଁ ଏକ ଆନ୍ଦୋଳନ ସୃଷ୍ଟି କରିବା ସମ୍ଭବ ହୋଇଥିଲା ।

ଟ୍ରାକ୍ଟର ଚାଳକମାନଙ୍କ ମଧ୍ୟରେ ଏହି ଆନ୍ଦୋଳନରେ ଅଗ୍ରଣୀ ଥିଲେ ୟୁକ୍ରେନ୍‌ର ଜନୈକ ଟାକ୍ଟର ଚାଳିକା ପ୍ରାସକୋଭିୟା ଆଙ୍ଗେଲିନା । ୧୯୩୦ ମସିହାରେ ସିଏ ହିଁ ଥିଲେ ପ୍ରଥମ ଟ୍ରାକ୍ଟର ଚାଳିକା ଏବଂ ୧୯୩୩ ମସିହାରେ ସୋଭିଏତ୍ ୟୁନିଅନର ପ୍ରଥମ ନିଖିଳ ନାରୀ ଟ୍ରାକ୍ଟର ଟିମ୍‌ଟି ଗଠନ କରିଥିଲେ । ୧୯୩୫ ମସିହାରେ ଆଙ୍ଗେଲିନାଙ୍କ ଟିମ୍‌ଟି କୋଟା ଅନୁଯାୟୀ ୩୦୦ ହେକ୍ଟର ଜମି ଚାଷ କରିବା ପରିବର୍ତ୍ତେ ୧୨୩୦ ହେକ୍ଟର ଜମି ଚାଷ କରିଥିଲେ । ଆଙ୍ଗେଲିନାଙ୍କ ଟିମ୍‌ର ଏହି ଦୃଷ୍ଟାନ୍ତକୁ ଅନୁକରଣ କରିଥିଲେ ବହୁ ଟ୍ରାକ୍ଟର ତଥା କମ୍ବାଇନ୍ ହାର୍ଭେଷ୍ଟରର ଚାଳକଗଣ । କୋଠଖମାରର ଚାଷୀମାନେ ଉଚ୍ଚତର ଫଳନ ପାଇଁ ଆରମ୍ଭ କରିଥିଲେ ଏକ ପ୍ରଚାରାଭିଯାନ ।

ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାର ଶେଷ ବେଳକୁ ସୋଭିଏତ୍ ୟୁନିଅନ୍‌ରେ କୋଠଖମାର ବ୍ୟବସ୍ଥା ସଂପୂର୍ଣ୍ଣ ବିଜୟ ହାସଲ କରିଥିଲା । ୧୯୩୭ ମସିହାରେ କୋଠଖମାରଗୁଡ଼ିକର ଅନ୍ତର୍ଭୁକ୍ତ ହୋଇଥିଲେ ୧୮.୫ ନିୟୁତ କୃଷକ ଖମାର (ମୋଟ ସଂଖ୍ୟାର ଶତକଡ଼ା ୯୩ ଭାଗ) । ଦେଶର ସମସ୍ତ କୃଷକ ଯେତେ ଜମିରେ ଫସଲ

ଫଳରେ ଥିଲେ , ତା'ର ଶତକଡ଼ା ୯୯ ଭାଗ କୋଠଖମାରଗୁଡ଼ିକ ଅଧୀନକୁ ଆସି ଯାଇଥିଲା । ତା ଅର୍ଥ କୃଷକ ଖମାରଗୁଡ଼ିକର କୋଠକରଣ ସଂପୂର୍ଣ୍ଣ ହୋଇଥିଲା । କୃଷିକୁ କାରୁକୌଶଳ ଦିଗରୁ ପୁନଃସଜ୍ଜିତ କରିବା କାର୍ଯ୍ୟଟି ମୌଳିକ ଭାବେ କାର୍ଯ୍ୟକାରୀ ହୋଇଥିଲା ପ୍ରଥମ ଦୁଇଟି ପଞ୍ଚବାର୍ଷିକ ଯୋଜନା କାଳ ମଧ୍ୟରେ । ୧୯୩୭ ମସିହାରେ କୋଠଖମାରଗୁଡ଼ିକର ୬,୦୦୦ ମେସିନ୍ ଏବଂ ଟ୍ରାକ୍ଟର ଷ୍ଟେସନକୁ ଯୋଗାଇ ଦିଆଯାଇଥିଲା ଆଧୁନିକ ମେସିନ୍ ।

ସୋଭିଏତ୍ ୟୁନିଅନ୍ ଏସବୁ ଫଳରେ ପରିଣତ ହୋଇଥିଲା ବୃହଦାକାର ଯାନ୍ତ୍ରିକ ସମାଜବାଦୀ କୃଷିର ଦେଶରେ ।

# ୨୨ଶ ପରିଚ୍ଛେଦ

## ସୋଭିଏତ୍ ୟୁନିଅନ୍‌ରେ ସାଂସ୍କୃତିକ ବିପ୍ଳବ

ବିପ୍ଳବପୂର୍ବ ରୁଷିଆ ଦୁନିଆକୁ ଅନେକ ବୈଜ୍ଞାନିକ, ଔପନ୍ୟାସିକ, କବି, ସୁରକାର, ଶିଳ୍ପୀ ଏବଂ ଅଭିନେତାଙ୍କୁ ଦାନ କରିଥିଲା, ଯେଉଁମାନେ ବିଶ୍ୱସଂସ୍କୃତି କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ରଖି ଯାଇଛନ୍ତି ।

ତେବେ, ବିପ୍ଳବପୂର୍ବ ରୁଷିଆର ଜନସାଧାରଣ ସାଂସ୍କୃତିକ କ୍ଷେତ୍ରରେ ଏତେ ପଶ୍ଚାଦ୍‌ପଦ ଥିଲେ ଯେ, ବିଶ୍ୱାସ କରାଯାଇ ପାରିବ ନାହିଁ । ଜନସଂଖ୍ୟାର ଅଧିକାଂଶ ଭାଗ ଥିଲେ ନିରକ୍ଷର । ୧୮୯୭ ମସିହାର ଜନଗଣନା ଅନୁସାରେ ଜନସଂଖ୍ୟାର ୯ ବର୍ଷରୁ ଅଧିକ ଲୋକଙ୍କ ମଧ୍ୟରେ ଶତକଡ଼ା ୭୬ ଭାଗ, ମହିଳାମାନଙ୍କ ମଧ୍ୟରେ ୮୮ ଭାଗ ଥିଲେ ନିରକ୍ଷର ଏବଂ ଅଣରୁଷୀୟ ଜାତିମାନଙ୍କ ମଧ୍ୟରେ, ଦୃଷ୍ଟାନ୍ତ ସ୍ୱରୂପ, ମଧ୍ୟ ଏସିଆରେ ସାକ୍ଷରଙ୍କ ସଂଖ୍ୟା ଥିଲା ଅତ୍ୟନ୍ତ ଅଳ୍ପ । ରୁଷିଆରେ ବାସ କରୁଥିବା ଅଧିଜାତିମାନଙ୍କ ମଧ୍ୟରୁ ୪୦ଟି ଅଧିଜାତିଙ୍କର ଲିଖିତ ଭାଷା ମଧ୍ୟ ନଥିଲା । ଶ୍ରମଜୀବୀ ଜନସାଧାରଣଙ୍କ ମଧ୍ୟରୁ ପାଞ୍ଚ ଭାଗରୁ ପ୍ରାୟ ଚାରି ଭାଗ ପିଲାଙ୍କ ସ୍କୁଲକୁ ଯିବାର ସୁଯୋଗ ଭାଗ୍ୟରେ ଯୋଟୁ ନଥିଲା ଏବଂ ବହୁ କଷ୍ଟସାଧ୍ୟରେ ସାମାନ୍ୟ କେଇଜଣ ଉଚ୍ଚ ଶିକ୍ଷା ଲାଭ କରିଥିଲେ । ୧୯୧୩ ମସିହାରେ ଅତୀବ ତିକ୍ତତା ଏବଂ କ୍ରୋଧର ସହକାରେ ଲେନିନ୍ ଲେଖିଥିଲେ : "ଦୁନିଆରେ ଏପରି କୌଣସି ଅସଭ୍ୟ ଦେଶ ନାହିଁ, ୟୁରୋପରେ ତ ଏପରି ଦେଶ ନାହିଁ, ଯେଉଁଠି ବ୍ୟାପକ ଜନସାଧାରଣଙ୍କ ଠାରୁ ଶିକ୍ଷା, ଆଲୋକ, ଜ୍ଞାନକୁ ଏତେ ପରିମାଣରେ ଛଡ଼େଇ ନିଆପାଇଛି । ରୁଷିଆ ହେଉଛି ସେମାନଙ୍କ ମଧ୍ୟରେ ଏକ ବ୍ୟତିକ୍ରମ ।"

ରୁଷିଆର ସାଂସ୍କୃତିକ ପ୍ରସ୍ଫୁଟନ ଦିଗରେ ପଥ ଉନ୍ମୁକ୍ତ କରି ଦେଇଥିଲା ଅକ୍ଟୋବର ବିପ୍ଳବ । ଏହା ସେହି ଗଣବିରୋଧୀ ରାଜନୈତିକ ଶାସନକୁ ଧୂଳିସାତ୍ କରି ଦେଇଥିଲା, ଯାହାକି ଶ୍ରମଜୀବୀ ଲୋକମାନଙ୍କୁ କେବଳ ଅର୍ଥନୈତିକ ଓ ରାଜନୈତିକ ଭାବେ ଉତ୍ପୀଡ଼ିତ କରୁ ନଥିଲା, ସେମାନଙ୍କୁ ଶିକ୍ଷା, ଜ୍ଞାନ ତଥା ସଂସ୍କୃତିର ପଥକୁ ରୁଦ୍ଧ କରି

ଦେଇଥିଲା । ଅଣରୁଷୀୟ ସଂସ୍କୃତିସମୂହର ବିକାଶକୁ ବାଧା ଦେଇ ଆସିଥିବା ଜାତିଗତ ଉତ୍ପୀଡ଼ନକୁ ଅକ୍ଟୋବର ବିପ୍ଳବ ଉଚ୍ଛେଦ କରିଥିଲା, ସାମାଜିକ ମାହାଲସମୂହ, ନାରୀମାନଙ୍କର ଅସମତାକୁ ଏହା ଦୂର କରିଥିଲା ଏବଂ ରାଷ୍ଟ୍ର ଠାରୁ ଗିର୍ଜାକୁ ଏବଂ ଗିର୍ଜା ଠାରୁ ସ୍କୁଲକୁ ଏହା ଅଲଗା କରି ଦେଇଥିଲା । ଜନସାଧାରଣଙ୍କ ସଂସ୍କୃତି ଓ ଜ୍ଞାନର ବିକାଶ ପଥରେ ଦଣ୍ଡାୟମାନ ସମସ୍ତ ଅର୍ଥନୈତିକ, ରାଜନୈତିକ ଏବଂ ଜାତୀୟ ବାଧାସମୂହକୁ ସୋଭିଏତ୍ ଶାସନ ହଟେଇ ଦେଲା । ଇତିହାସରେ ପ୍ରଥମ ଥର ପାଇଁ ରାଷ୍ଟ୍ର ଶକ୍ତି ନିଜର ଲକ୍ଷ୍ୟ ରୂପ ଗ୍ରହଣ କଲା, ଶିକ୍ଷା, ବିଜ୍ଞାନ ଓ ସଂସ୍କୃତିର ଦ୍ୱାରକୁ ଜନସାଧାରଣଙ୍କ ଆଗରେ ଉନ୍ମୁକ୍ତ କରି ଦେବା ଏବଂ ସମସ୍ତ ଶ୍ରମଜୀବୀ ଜନସାଧାରଣଙ୍କୁ ଶିକ୍ଷିତ ତଥା ସଂସ୍କୃତିସଂପନ୍ନ କରିବାକୁ । ୧୯୧୮ ମସିହାରେ ଜାନୁଆରୀ ମାସରେ ଲେନିନ୍ କହିଥିଲେ: "ପ୍ରାଚୀନ କାଳରେ ମଣିଷର ପ୍ରତିଭା, ମଣିଷର ମସ୍ତିଷ୍କ କାରୁବିଜ୍ଞାନ ଓ ସଂସ୍କୃତିର ସୁଯୋଗ ମାତ୍ର କେତେକ ଲୋକଙ୍କ ପାଇଁ ସୃଷ୍ଟି କରୁଥିଲା ଏବଂ ଅନ୍ୟମାନଙ୍କୁ ଅତ୍ୟାବଶ୍ୟକୀୟ ଜିନିଷ, ଶିକ୍ଷା ଏବଂ ବିକାଶରୁ ବଞ୍ଚିତ କରୁଥିଲା । ଆଜିଠୁଁ ବିଜ୍ଞାନର ଆଶ୍ଚର୍ଯ୍ୟ ବସ୍ତୁରାଜି ଓ ସଂସ୍କୃତିର କୃତିରାଜି ସମସ୍ତ ଜାତିର ଅଧୀନକୁ ଆସି ଯାଇଛି ।"

ସ୍କୁଲ, କ୍ଲବ, ପାଠାଗାର, ଥିଏଟର, ମିଉଜିଅମ, ଚିତ୍ରାଗାର ଆଦି ସମେତ ସଂସ୍କୃତିର କେନ୍ଦ୍ରଗୁଡ଼ିକୁ ସୋଭିଏତ୍ ରାଷ୍ଟ୍ର ସମସ୍ତ ଜନସାଧାରଣଙ୍କ ସଂପତ୍ତିରେ ପରିଣତ କରି ଦେଲା । ସମସ୍ତ ସାଂସ୍କୃତିକ ମୂଲ୍ୟବୋଧକୁ ହିସାବକୁ ନିଆଯାଇ ଦୃଢ଼ ଭାବେ ସେସବୁର ସଂରକ୍ଷଣ କରାଗଲା । ପୂର୍ବତନ ବିଖ୍ୟାତ ସାଂସ୍କୃତିକ ବ୍ୟକ୍ତିମାନଙ୍କର ମାହାଲଗୁଡ଼ିକୁ ପରିଣତ କରି ଦିଆଗଲା ମିଉଜିଅମରେ ।

୧୯୧୭ ମସିହା ଡିସେମ୍ବର ମାସରେ ରାଷ୍ଟ୍ରୀୟ ପ୍ରକାଶନ ଭବନ ପ୍ରତିଷ୍ଠିତ ହେଲା । ଏହା ଜନସାଧାରଣଙ୍କ ପାଇଁ ବିପୁଳ ସଂଖ୍ୟାରେ ପ୍ରକାଶ କଲା ରୁଷୀୟ ତଥା ପୃଥିବୀର ସାହିତ୍ୟ ସମ୍ଭାରକୁ । ରୁଷୀୟ ଚିରାୟତ ଲେଖକମାନଙ୍କର ରଚନାବଳୀକୁ କେବଳ ଏହି ପ୍ରକାଶନ ଭବନ ପ୍ରକାଶ କରିବାକୁ ଅନୁମତି ପାଇଲା ।

ସାଂସ୍କୃତିକ ବିକାଶ ପଥରେ ସୋଭିଏତ୍ ଜନସାଧାରଣଙ୍କ ପକ୍ଷରୁ ଏକ ସାଂସ୍କୃତିକ ଶିକ୍ଷା ସଂଗଠନର ଚତୁର୍ପାର୍ଶ୍ୱରେ ଏକତ୍ରିତ ବୁଦ୍ଧିଜୀବୀମାନଙ୍କର ଏକାଂଶର ବାମପନ୍ଥୀ ପ୍ରବଣତାର ମୁକାବିଲା କରିବାକୁ ପଡ଼ିଥିଲା । ଏହି ସଂଗଠନଟିର ନାମ ହେଲା "ପ୍ରୋଲେଟ୍‌କୁଲଟ୍" (ସର୍ବହରା ସଂସ୍କୃତି) ଏବଂ ଏହା ୧୯୧୭ ସେପ୍ଟେମ୍ବର ମାସରେ ପ୍ରତିଷ୍ଠିତ ହୋଇଥିଲା । ଏହି ଆନ୍ଦୋଳନର ସଦସ୍ୟମାନେ ପୁରୁଣା ସଂସ୍କୃତିକୁ ପ୍ରତ୍ୟାଖ୍ୟାନ କରୁଥିଲେ ଏବଂ ଏଥିରେ ସେମାନେ କୌଣସି ପ୍ରଗତିଶୀଳ ଲକ୍ଷଣ ଦେଖିବାକୁ ପାଉ ନଥିଲେ ଏବଂ ପୁସ୍କିନ୍, ଟଲଷ୍ଟୟ, ମହାନ୍ ଚିତ୍ରକାର ରେପିନ୍, ସୁରିକୋଭ୍ ଏବଂ ଅନ୍ୟମାନଙ୍କର ରଚନାବଳୀକୁ ବର୍ଜନ କରିବାକୁ ଡାକରା ଦେଉଥିଲେ । ସେମାନେ

ଗ୍ରହିଁଥିଲେ ପୁରାତନ, ବୁର୍ଜୁଆ ସଂସ୍କୃତିରେ ଥିବା ସମସ୍ତ ମୂଲ୍ୟବାନ ଓ ପ୍ରଗତିଶୀଳ ଉପାଦାନସମୂହକୁ ଆତ୍ମସ୍ଥ ନକରି ଏକ "ପରିଷ୍କାର ଭୂମି ଉପରେ" ଏକ ବିଶେଷ ସର୍ବହରା ସଂସ୍କୃତି ଗଢ଼ିବାକୁ ।

କମ୍ୟୁନିଷ୍ଟ ପାର୍ଟି ଏବଂ ଲେନିନ୍ ଦୃଢ଼ତାର ସହିତ "ପ୍ରୋଲେଟ୍‌କୁଲଟ୍‌ର" ଏହିସବୁ ଭୁଲକୁ ଭର୍ତ୍ସନା କରିଥିଲେ । ଲେନିନ୍ କହିଥିଲେ, ମାନବ ସମାଜର ସମଗ୍ର ବିକାଶ କାଳ ମଧ୍ୟ ଦେଇ ସୃଷ୍ଟ ସଂସ୍କୃତିର ସଠିକ ଜ୍ଞାନ ଏବଂ ପରିବର୍ତ୍ତନ ସାଧନ ଦ୍ୱାରା ହିଁ କେବଳ ସର୍ବହରା ସଂସ୍କୃତି ସୃଷ୍ଟି କରିବା ସମ୍ଭବ । ସର୍ବହରା ସଂସ୍କୃତିକୁ ଆକାଶରୁ ତୋଳି ଆଣି ହୁଏ ନାହିଁ; ଯେଉଁମାନେ ନିଜକୁ ସର୍ବହରା ସଂସ୍କୃତିର ବିଶେଷଜ୍ଞ ବୋଲି କହନ୍ତି, ଏହା ସେମାନଙ୍କର ଉଦ୍‌ଭାବନ ନୁହେଁ । ଏହା ଏକେବାରେ ନିର୍ବୋଧତା । ସର୍ବହରା ସଂସ୍କୃତି ହେବ ମାନବଜାତି ବହୁ ଶତାବ୍ଦୀ ମଧ୍ୟରେ ଯେଉଁ ଜ୍ଞାନ ସଞ୍ଚୟ କରିଛି, ତା'ର ଯୁକ୍ତିସମ୍ମତ ବିକାଶ ।

ତେଣୁ କରି କମ୍ୟୁନିଷ୍ଟ ପାର୍ଟି ଏବଂ ସୋଭିଏତ୍ ସରକାର ଉତ୍ତରାଧିକାର ସୂତ୍ରରେ ବିପ୍ଳବପୂର୍ବ ରୁଷିଆର ସମଗ୍ର ସାଂସ୍କୃତିକ ସଂପଦକୁ ରକ୍ଷା କରିବା ପାଇଁ ଏବଂ ସମାଲୋଚନାତ୍ମକ ଭାବେ ତାକୁ ଗ୍ରହଣ କରିବାକୁ ଅସାଧାରଣ ମନୋଯୋଗ ପ୍ରଦର୍ଶନ କରିଥିଲେ ଏବଂ ଆବଶ୍ୟକୀୟ ପଦକ୍ଷେପମାନ ନେଇଥିଲେ ସମଗ୍ର ପ୍ରଗତିଶୀଳ ପରମ୍ପରାକୁ ବ୍ୟାପକ ଜନସାଧାରଣ ଗ୍ରହଣ କରି ନେବା ପାଇଁ । ଲେନିନ ଲୋକମାନଙ୍କୁ, ବିଶେଷ କରି ଯୁବକମାନଙ୍କୁ ଆହ୍ୱାନ ଦେଇଥିଲେ ମାନବସମାଜ ଦ୍ୱାରା ସଞ୍ଚିତ ସମସ୍ତ ଜ୍ଞାନକୁ ଆୟତ୍ତ କରିବା ପାଇଁ । ଅଦରକାରୀ ପୁରୁଣାକାଳିଆ ଶିକ୍ଷା ସଂପର୍କରେ ସତର୍କ କରି ଦେଇ ସେ ଅବଶ୍ୟ କହିଥିଲେ, "ଏହାର ଅର୍ଥ ଅବଶ୍ୟ ନୁହେଁ ଯେ, ଆମେ କେବଳ କମ୍ୟୁନିଷ୍ଟ ସିଦ୍ଧାନ୍ତସମୂହ ମଧ୍ୟରେ ନିଜକୁ ସୀମିତ ରଖିବା ଏବଂ କେବଳ କମ୍ୟୁନିଷ୍ଟ ସ୍ଲୋଗାନଗୁଡ଼ିକୁ ଶିଖିବା । ଏହି ଭାବେ ଆମେ କମ୍ୟୁନିଜମ୍ ସୃଷ୍ଟି କରି ପାରିବା ନାହିଁ । ତୁମେ ସେତିକିବେଳେ କେବଳ ଜଣେ କମ୍ୟୁନିଷ୍ଟ ହୋଇ ପାରିବ, ଯେତେବେଳେ ମାନବସମାଜ ଦ୍ୱାରା ସୃଷ୍ଟ ସମସ୍ତ ଜ୍ଞାନର ଭଣ୍ଡାର ଦ୍ୱାରା ନିଜର ମନକୁ ସମୃଦ୍ଧ କରି ପାରିବ ।"

ଜନସାଧାରଣଙ୍କର ବହୁମୁଖୀ ଦକ୍ଷତା ଓ ପ୍ରତିଭାର ବିକାଶ ପକ୍ଷରେ ବିପ୍ଳବ ଥିଲା ଏକ ପ୍ରୋତ୍ସାହନ ସ୍ୱରୂପ । ସୋଭିଏତ୍ ଶାସନର ପ୍ରତିଷ୍ଠାର ପ୍ରଥମ ମାସଗୁଡ଼ିକରୁ ଲକ୍ଷ ଲକ୍ଷ ଶ୍ରମଜୀବୀ ଜନତା ଜ୍ଞାନ ଏବଂ ସଂସ୍କୃତି ପାଇଁ ପ୍ରବଳ ଆଗ୍ରହ ପ୍ରଦର୍ଶନ କରିଥିଲେ । ସହର ଓ ଗ୍ରାମମାନଙ୍କରେ ସ୍ୱାଧୀନ ସାଂସ୍କୃତିକ କେନ୍ଦ୍ରମାନ ମୁଣ୍ଡ ଟେକି ଉଠିଥିଲା : ଜନ ଶିକ୍ଷା ପରିଷଦସମୂହ, ଗଣଭବନ, ସାଂସ୍କୃତିକ ସଦନସମୂହ, କ୍ଲବ, ପାଠାଗାର, ଅଧ୍ୟୟନାଗାର, ଆଦି । ଶିକ୍ଷିତ ଜନସାଧାରଣ ଅଗ୍ରପଦକ୍ଷେପ ନେଇଥିଲେ ନିରକ୍ଷରତା ଦୂରୀକରଣ କରିବା ପାଇଁ । ୧୯୧୮, ଏପ୍ରିଲ ମାସରେ ଲେନିନ୍ ସନ୍ତୋଷର ସହିତ

କହିଥିଲେ, ଜନସାଧାରଣଙ୍କ ମଧ୍ୟରେ ଶିକ୍ଷାଗତ ତଥା ସାଂସ୍କୃତିକ ଅଭ୍ୟୁତ୍‌ଥାନର ଗତି ଉଚ୍ଚ ହାରରେ ଗ୍ଲଇଛି । ସୋଭିଏତ୍ ସମିତି ସଂଗଠନଗୁଡ଼ିକର କଲ୍ୟାଣରୁ ଜ୍ଞାନ ଓ ଶିକ୍ଷା ଦିଗରେ ଅଭୂତପୂର୍ବ ଉତ୍ସାହ ଦେଖାଦେଇଛି । ସଂସ୍କୃତି ପାଇଁ ଜନସାଧାରଣଙ୍କ ଅଭିଳାଷକୁ ରୂପାୟିତ କରିବା ନିମିତ୍ତ ସୋଭିଏତ୍ ସରକାର ସବୁମତେ ଚେଷ୍ଟା କରିଥିଲେ । ଜନସାଧାରଣଙ୍କର ସାଂସ୍କୃତିକ ବିକାଶ ସାଧନ ଥିଲା ସୋଭିଏତ୍ ସରକାରଙ୍କ ମୁଖ୍ୟ କର୍ତ୍ତବ୍ୟଗୁଡ଼ିକ ମଧ୍ୟରୁ ଅନ୍ୟତମ ।

ଜନସାଧାରଣଙ୍କ ପାଇଁ ଜ୍ଞାନ ପଥଟି ବହୁ ବିରାଟ ଅସୁବିଧାରେ ଭରା ଥିଲା । ବିଶ୍ୱ ଯୁଦ୍ଧ, ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନଙ୍କ ପକ୍ଷରୁ ହସ୍ତକ୍ଷେପ, ଗୃହଯୁଦ୍ଧ ଏବଂ ଅର୍ଥନୈତିକ ବିଚ୍ଛିନ୍ନତା ଫଳରେ ଦେଖାଦେଇଥିଲା ଭୟଙ୍କର ଆର୍ଥିକ ଦୁଃଖକଷ୍ଟ । ପୁରୁଣା ବୁଦ୍ଧିଜୀବୀମାନଙ୍କ ମଧ୍ୟରୁ ଏକ ବଡ଼ ଅଂଶ ବୁର୍ଜୁଆ ସହିତ ଘନିଷ୍ଠ ଭାବେ ଯୁକ୍ତ ଥିଲେ ଏବଂ ସୋଭିଏତ୍ ଶାସନ ପ୍ରତି ହୁଏତ ଶତ୍ରୁତା ପୋଷଣ କରୁଥିଲେ ବା କାଳକ୍ଷେପଣ ନୀତି ଅନୁସରଣ କରୁଥିଲେ । ତା ସତ୍ତ୍ୱେ ପୁରୁଣା ବୁଦ୍ଧିଜୀବୀମାନଙ୍କର ସର୍ବୋତ୍କୃଷ୍ଟ ଅଂଶଟି, ଯଥା, ବିଖ୍ୟାତ ବୈଜ୍ଞାନିକ କ୍ଲିମେଣ୍ଟ ତିମିର୍‌ୟାଜେଭ୍, ଇଭାନ୍ ମିଚୁରିନ୍, ଇଭାନ୍ ପାଭ୍‌ଲୋଭ୍ ଏବଂ ନିକୋଲାଇ ଝୁକୋଭ୍‌ସ୍କିଙ୍କ ସମେତ ପ୍ରଥମରୁ ବିପ୍ଳବକୁ ସମର୍ଥନ ଜଣେଇ ଆସିଥିଲେ । ଲେଳକଙ୍କ ସହିତ ଯୋଗ ଦେଇଥିଲେ ସାଧାରଣ ବୁଦ୍ଧିଜୀବୀ ସଂପ୍ରଦାୟ – ଶିକ୍ଷକ, କୃଷି ବିଶେଷଜ୍ଞ ଏବଂ ଗ୍ରାମ୍ୟ ଡାକ୍ତରବୃନ୍ଦ ।

କମ୍ୟୁନିଷ୍ଟ ପାର୍ଟି ତା'ର ବଚ୍ଛାବଚ୍ଛା କର୍ମୀବୃନ୍ଦଙ୍କୁ ବାଛିଥିଲା ଜନଶିକ୍ଷା ପରିଚ୍ଳନା କରିବା ନିମିତ୍ତ । ପ୍ରଥମ ଶିକ୍ଷା ମନ୍ତ୍ରୀ ବା ଗଣ କମିସାର ଥିଲେ ଆନାତୋଲି ଲୁନାଗ୍ଳର୍‌ସ୍କି । ସେ ଥିଲେ କମ୍ୟୁନିଷ୍ଟ, ବିରାଟ ସଂସ୍କୃତିବାନ ଏବଂ ଶିକ୍ଷାବିତ୍, ପ୍ରତିଭାବାନ ସାମ୍ବାଦିକ ଓ ବକ୍ତା । ତାଙ୍କ ପରେ ଏହି ଦାୟିତ୍ୱ ଗ୍ରହଣ କରିଥିଲେ ପୁରୁଣା ବଲ୍‌ଶେଭିକ୍, ଇତିହାସବିତ୍ ଆନ୍ଦ୍ରେଇ ବୁବ୍‌ନୋଭ୍ । ଲେନିନ୍‌ଙ୍କ ସାଥୀ ଓ ସହଧର୍ମିଣୀ ନାଦେଝଦା କ୍ରୁପ୍‌ସ୍କାୟା ସୋଭିଏତ୍ ଶାସନ ପ୍ରତିଷ୍ଠାର ପ୍ରଥମ ଦିନରୁ ତାଙ୍କ ଜୀବନର ଶେଷ ଦିନ ପର୍ଯ୍ୟନ୍ତ (୧୯୩୯ ପର୍ଯ୍ୟନ୍ତ) ଜନଶିକ୍ଷା ପାଇଁ କାର୍ଯ୍ୟ କରିଥିଲେ । ସର୍ବହରାର ଲେଖକ ମ୍ୟାକ୍‌ସିମ୍ ଗୋର୍କି ପୁରୁଖା ବୈଜ୍ଞାନିକମାନଙ୍କୁ ସକ୍ରିୟ ଭାବେ ଆକର୍ଷିତ କରିଥିଲେ ସୋଭିଏତ୍ ଶାସନ ପକ୍ଷକୁ ।

ଜନ ଶିକ୍ଷା କ୍ଷେତ୍ରରେ ସର୍ବାପେକ୍ଷା ବଡ଼ ସମସ୍ୟା ଥିଲା ନିରକ୍ଷରତା ଦୂରୀକରଣ । ଲେନିନ୍ କହିଥିଲେ, ଏକ ନିରକ୍ଷର ଦେଶରେ କମ୍ୟୁନିଷ୍ଟ ସମାଜ ଗଢ଼ିବା ଅସମ୍ଭବ । ନିରକ୍ଷରତା ଦୂରୀକରଣକୁ ସୋଭିଏତ୍ ସରକାର ରାଷ୍ଟ୍ର ପକ୍ଷରେ ଏକ ଗୁରୁତ୍ୱପୂର୍ଣ୍ଣ ଲକ୍ଷ୍ୟ ବୋଲି ଧରିଥିଲେ । ଗୃହଯୁଦ୍ଧ କାଳରେ ନିରକ୍ଷରତା ଦୂରୀକରଣ ପାଇଁ ବହୁ ଛୋଟ ଛୋଟ ଦଳ ଗଠନ କରାଯାଇଥିଲା । ଯେଉଁମାନେ ଲେଖା ପଢ଼ା ଶିଖୁଥିଲେ ସେମାନଙ୍କ

ପାଇଁ ଦୁଇ ଘଣ୍ଟା କର୍ମ ସମୟ କମାଇ ଦିଆଯାଇଥିଲା, ଅଥଚ ସେମାନେ ପୂର୍ଣ୍ଣ ମଜୁରି ପାଉଥିଲେ । ଶାନ୍ତିପୂର୍ଣ୍ଣ ବିକାଶ କାଳରେ ନିରକ୍ଷରତା ଦୂରୀକରଣ କାର୍ଯ୍ୟ ଅଧିକ ସୁଯୋଗ ଲାଭ କରିଥିଲା । ୧୯୨୩ ମସିହାରେ "ନିରକ୍ଷରତା ଲୋପ ହେଉ" ନାମକ ଏକ ସ୍ୱେଚ୍ଛାସେବୀ ସଂଗଠନ ପ୍ରତିଷ୍ଠିତ ହେଲା । ୧୯୩୨ ମସିହାରେ ଏହି ସଂଗଠନର ସଦସ୍ୟ ସଂଖ୍ୟା ୫୦ ଲକ୍ଷକୁ ଟପି ଯାଇଥିଲା । ଏହି ସଦସ୍ୟମାନେ ନିରକ୍ଷରମାନଙ୍କୁ ଲେଖା ପଢ଼ା ଶିଖାଉଥିଲେ । ଯୁବ କମ୍ୟୁନିଷ୍ଟ ଲୀଗ୍ ପକ୍ଷରୁ ଗ୍ରାମାଞ୍ଚଳକୁ ତା'ର ସଦସ୍ୟମାନଙ୍କୁ ପ୍ରେରଣ କରାଯାଉଥିଲା ନିରକ୍ଷରମାନଙ୍କୁ ଶିକ୍ଷା ଦେବା ପାଇଁ । ଟ୍ରେଡ୍ ୟୁନିଅନ୍‌ମାନେ ମଧ୍ୟ ସେମାନଙ୍କର ଲକ୍ଷ ଲକ୍ଷ ସଦସ୍ୟମାନଙ୍କୁ ଏହି କାର୍ଯ୍ୟରେ ନିଯୁକ୍ତ କରିଥିଲେ । ସରକାର ଏବଂ ଜନସାଧାରଣଙ୍କ ମିଳିତ ଉଦ୍ୟମରେ ସୋଭିଏତ୍ ୟୁନିଅନ୍‌ରୁ ନିରକ୍ଷରତା ଲୋପ ପାଇଥିଲା । ୧୯୨୯-୧୯୩୯ ମଧ୍ୟରେ ୮ କୋଟି ୭୦ ଲକ୍ଷ ଲୋକ ଲେଖିବା ପଢ଼ିବା ଶିଖିଥିଲେ । ଜାତୀୟ ଭାଷାରେ ୧୯୩୦ ଦଶକର ପ୍ରାରମ୍ଭରେ ସାର୍ବଜନୀନ ମୌଳିକ ଶିକ୍ଷା ପ୍ରବର୍ତ୍ତନ ଫଳରେ ତରୁଣମାନେ ନିରକ୍ଷର ହେବାକୁ ବନ୍ଦ କରି ଦିଆଗଲା । ଏହିସବୁ କାର୍ଯ୍ୟ ଦ୍ୱାରା ୧୯୩୦ ଦଶକର ଶେଷ ଆଡ଼କୁ ସୋଭିଏତ୍ ୟୁନିଅନ୍ ପ୍ରାୟ ସଂପୂର୍ଣ୍ଣ ସାକ୍ଷର ଦେଶରେ ପରିଣତ ହୋଇଥିଲା ।

ଗୃହଯୁଦ୍ଧ ଭଳି ଦୁଃଖପୂର୍ଣ୍ଣ ବର୍ଷଗୁଡ଼ିକରେ ବି ସୋଭିଏତ୍ ସରକାର ସ୍କୁଲ ଶିକ୍ଷା ପ୍ରତି ଅବହେଳା ପ୍ରଦର୍ଶନ କରି ନଥିଲେ । ଏହି ସମୟରେ ସ୍କୁଲ ସଂଖ୍ୟା ଦେଢ଼ ଗୁଣ ଏବଂ ମାଧ୍ୟମିକ ସ୍କୁଲ ସଂଖ୍ୟା ତିନି ଗୁଣ ବଢ଼ି ଯାଇଥିଲା । ଦେଶର ଅର୍ଥନୈତିକ ଅବସ୍ଥାରେ ଉନ୍ନତି ଘଟିବା ସଙ୍ଗେ ସଙ୍ଗେ ରାଷ୍ଟ୍ର ପକ୍ଷରୁ ଦ୍ରୁତ ହାରରେ ନିର୍ମିତ ହେଲା ସ୍କୁଲସବୁ, ବିଶେଷ କରି ଅଣରୁଷୀୟ ପ୍ରଜାତନ୍ତ୍ରଗୁଡ଼ିକରେ । ଶିକ୍ଷକମାନଙ୍କୁ ମଧ୍ୟ ସେହି ଭାବେ ତାଲିମ୍ ଦିଆଗଲା ପ୍ରଶିକ୍ଷଣ ବିଦ୍ୟାଳୟରେ । ଏହା ଫଳରେ ସୋଭିଏତ୍ ସରକାର ସକ୍ଷମ ହୋଇଥିଲା ୧୯୩୦ ଦଶକର ପ୍ରାରମ୍ଭରେ ସୋଭିଏତ୍ ୟୁନିଅନ୍‌ରେ ବାସ କରୁଥିବା ଜାତିମାନଙ୍କ ଭାଷାରେ ବାଧ୍ୟତାମୂଳକ ସାର୍ବଜନୀନ ମୌଳିକ ଶିକ୍ଷା ଏବଂ ତା'ପରେ ସାର୍ବଜନୀନ ସାତବର୍ଷିଆ ବାଧ୍ୟତାମୂଳକ ଶିକ୍ଷା ପ୍ରବର୍ତ୍ତନ କରିବାକୁ । ୧୯୪୦-୧୯୪୧ ସ୍କୁଲ ବର୍ଷରେ ୧,୨୩୮,୦୦୦ ଶିକ୍ଷକ ସ୍କୁଲମାନଙ୍କରେ ଶିକ୍ଷା ଦେଉଥିଲେ, ୧୯୧୪ ମସିହାରେ ଏହି ସଂଖ୍ୟା ଥିଲା ୨୮୦,୦୦୦ ।

ସୋଭିଏତ୍ ୟୁନିଅନ୍‌ରେ ସାଂସ୍କୃତିକ ବିପ୍ଳବର ଅନ୍ୟତମ ମୁଖ୍ୟ ଫଳ ସ୍ୱରୂପ ସୃଷ୍ଟି ହୋଇଥିଲେ ଏକ ଗଣ ବୁଦ୍ଧିଜୀବୀ ସଂପ୍ରଦାୟ, ଜାତୀୟ ଅର୍ଥନୀତିରେ ପ୍ରତ୍ୟେକ ଶାଖା, ସଂସ୍କୃତି, ଜନସ୍ୱାସ୍ଥ୍ୟ ଏବଂ ସରକାର ପାଇଁ ଉଚ୍ଚ ଦକ୍ଷତାସଂପନ୍ନ ବିଶେଷଜ୍ଞବୃନ୍ଦ ।

ବିପ୍ଳବ ପୂର୍ବରୁ ରୁଷିଆରେ ମାତ୍ର ୯୧ଟି ଉଚ୍ଚ ଶିକ୍ଷା ପ୍ରତିଷ୍ଠାନ ଥିଲା । ଏସବୁଥିରେ ୧୧୨,୦୦୦ ଛାତ୍ର ଅଧ୍ୟୟନ କରୁଥିଲେ । ଏମାନେ ପ୍ରାୟ ସମସ୍ତେ ଥିଲେ ଧନୀ ଶ୍ରେଣୀର

ପିଲ । ସୋଭିଏତ୍ ସରକାର ଉଚ୍ଚ ଶିକ୍ଷା ବ୍ୟବସ୍ଥାକୁ ଗଣତାନ୍ତ୍ରିକ କରି ଦେଲା ୮ ଶ୍ରମଜୀବୀ ଜନସାଧାରଣଙ୍କ ପିଲାଙ୍କ ପାଇଁ ଏହା ଉଚ୍ଚ ଶିକ୍ଷା ପ୍ରତିଷ୍ଠାନଗୁଡ଼ିକର ଦ୍ୱାର ଉନ୍ମୁକ୍ତ କରି ଦେବା ସାଥେ ସାଥେ, ସ୍କୁଲ ଦରମା ଉଠାଇ ଦେଇ ବୃତ୍ତିଦାନ ବ୍ୟବସ୍ଥା ପ୍ରବର୍ତ୍ତନ କଲା । ୧୯୨୦-୧୯୨୧ ଶିକ୍ଷା ବର୍ଷରେ ସୋଭିଏତ୍ ୟୁନିଅନ୍‌ରେ ୨୪୪ଟି ଉଚ୍ଚ ଶିକ୍ଷା ପ୍ରତିଷ୍ଠାନ ଥିଲା ଏବଂ ୧୯୧୪ ତୁଳନାରେ ଛାତ୍ରଙ୍କ ସଂଖ୍ୟା ଶତକଡ଼ା ୧୦୦ ଭାଗ ବୃଦ୍ଧି ପାଇଥିଲା ।

ଦେଶର ଶିଳ୍ପାୟନ ଏବଂ କୃଷିର କୋଠକରଣ କାଳରେ ଦେଶରେ ବିଶେଷଜ୍ଞମାନଙ୍କର ଆବଶ୍ୟକତା ହଠାତ୍ ବୃଦ୍ଧି ପାଇଥିଲା ଏବଂ ଏହି ସମୟରେ ଉଚ୍ଚ ଶିକ୍ଷାର ଅଗ୍ରଗତି ବିଶେଷ ଭାବେ ବୃଦ୍ଧି ପାଇଲା । ୧୯୪୦-୧୯୪୧ ଶିକ୍ଷା ବର୍ଷରେ ସୋଭିଏତ୍ ୟୁନିଅନ୍‌ରେ ଥିଲା ୮୧୭ଟି ଉଚ୍ଚ ଶିକ୍ଷା ପ୍ରତିଷ୍ଠାନ ଏବଂ ଏସବୁଥିରେ ଅଧ୍ୟୟନ କରୁଥିଲେ ୮୧୨,୦୦୦ ଛାତ୍ରଛାତ୍ରୀ । ଏମାନଙ୍କ ମଧ୍ୟରୁ ଶତକଡ଼ା ୫୮ ଭାଗ ଥିଲେ ଛାତ୍ରୀ ଏବଂ ଏଥିରେ ପ୍ରକାଶ ପାଉଥିଲା ପୁରୁଷମାନଙ୍କ ସହିତ ନାରୀମାନେ କେତେ ସମାନତା ଅର୍ଜନ କରିଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରାକ୍‌କାଳରେ ସମସ୍ତ ୟୁରୋପୀୟ ଦେଶମାନଙ୍କର ଉଚ୍ଚତର ଶିକ୍ଷାନୁଷ୍ଠାନମାନଙ୍କରେ ପଢ଼ୁଥିବା ମୋଟ ଛାତ୍ରଛାତ୍ରୀଙ୍କ ଅପେକ୍ଷା ସୋଭିଏତ୍ ଉଚ୍ଚତର ଶିକ୍ଷାନୁଷ୍ଠାନମାନଙ୍କରେ ଅଧିକ ଛାତ୍ରଛାତ୍ରୀ ଅଧ୍ୟୟନ କରୁଥିଲେ । ପୃଥିବୀରେ ସର୍ବାଧିକ ତାଲିମ୍‌ପ୍ରାପ୍ତ ବିଶେଷଜ୍ଞ ଥିଲେ ସୋଭିଏତ୍ ୟୁନିଅନ୍‌ରେ ; ୧୯୪୦ରେ ସୋଭିଏତ୍ ୟୁନିଅନ୍‌ର ଅର୍ଥନୀତି କ୍ଷେତ୍ରରେ ୨୯୦,୦୦୦ ଡିପ୍ଲୋମାଧାରୀ ଇଂଜିନିୟର ନିଯୁକ୍ତ ଥିଲା ବେଳେ ଆମେରିକା ଯୁକ୍ତ ରାଷ୍ଟ୍ରରେ ୧୫୬.୦୦୦ ଜଣ ଥିଲେ ।

ବିଜ୍ଞାନର ବିକାଶ ପାଇଁ ସମାଜବାଦୀ ବିପ୍ଳବ ବ୍ୟାପକ ସୁଯୋଗର ଦ୍ୱାର ଉନ୍ମୁକ୍ତ କରି ଦେଇଥିଲା । ଏ ଦିଗରେ ପ୍ରତ୍ୟେକ ବର୍ଷ ସୋଭିଏତ୍ ସରକାର ଅଧିକରୁ ଅଧିକ ଅର୍ଥ ବରାଦ କଲା ଏବଂ ବିଜ୍ଞାନୀମାନଙ୍କର ଆବଶ୍ୟକତା ପ୍ରତି ମନୋଯୋଗ ଦେଲା । ଗବେଷଣା ପ୍ରତିଷ୍ଠାନମାନଙ୍କର ସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଇଲା । ୧୯୪୧ ମସିହାରେ ସେସବୁର ସଂଖ୍ୟା ଥିଲା ୧୮୨୧, ବିପ୍ଳବ ପୂର୍ବ ତୁଳନାରେ ପ୍ରାୟ ଛଅ ଗୁଣରୁ ଅଧିକ । ଗବେଷକମାନଙ୍କ ସଂଖ୍ୟା ୯୮,୦୦୦ରୁ ଅଧିକ, ଅର୍ଥାତ୍, ୧୯୧୪ ତୁଳନାରେ ପ୍ରାୟ ଦଶ ଗୁଣରୁ ବେଶି । ସମସ୍ତ ଅଙ୍ଗ ପ୍ରଜାତନ୍ତ୍ର ତଥା ସ୍ୱାୟତ୍ତଶାସିତ ପ୍ରଜାତନ୍ତ୍ରରେ ବୈଜ୍ଞାନିକ ଗବେଷଣା କେନ୍ଦ୍ରମାନ ପ୍ରତିଷ୍ଠିତ ହୋଇଥିଲା । ରୁଷ୍ ବିଜ୍ଞାନ ଆକାଡେମିର ନାମକୁ ପରିବର୍ତ୍ତନ କରି ୧୯୨୫ ମସିହାରେ ସୋଭିଏତ୍ ୟୁନିଅନ୍ ବିଜ୍ଞାନ ଆକାଡେମି ନାମରେ ନାମିତ କରାଗଲା । ଏହି ବିଜ୍ଞାନ ଆକାଡେମି ହେଲା ମୁଖ୍ୟ ବୈଜ୍ଞାନିକ କେନ୍ଦ୍ର ।

୧୯୨୦ ଓ ୧୯୩୦ ଦଶକରେ ସୋଭିଏତ୍ ବିଜ୍ଞାନୀମାନେ ମୁଖ୍ୟ ବିଜ୍ଞାନଗୁଡ଼ିକର

ବିକାଶ କ୍ଷେତ୍ରରେ ବଡ଼ ବଡ଼ ସାଫଲ୍ୟ ଅର୍ଜନ କରିଥିଲେ । ବିଖ୍ୟାତ ଶରୀରବିଜ୍ଞାନୀ ଆକାଡେମିସିଆନ ଇଭାନ୍ ପାଭ୍ଲୋଭ୍ ମଣିଷ ଏବଂ ପ୍ରାଣୀମାନଙ୍କର ଉଚ୍ଚତର ସ୍ନାୟବିକ କ୍ରିୟାକଳାପ ସଂପର୍କରେ ମୂଲ୍ୟବାନ ଗବେଷଣା ଦ୍ୱାରା ବିଶ୍ୱ ବିଜ୍ଞାନ ପ୍ରତି ଅବଦାନ ରଖିଥିଲେ । ଏହା ଆଧୁନିକ୍ ଚିକିତ୍ସାର ଭିତ୍ତିରେ ପରିଣତ ହୋଇଥିଲା । ପ୍ରଖ୍ୟାତ ରୁଷ୍ ବୈଜ୍ଞାନିକ କନ୍‌ଷ୍ଟାଣ୍ଟିନ୍ ତ୍‌ସିଓଲକୋଭ୍‌ସି ଆଧୁନିକ ବ୍ୟୋମଯାନ ଓ ମହାକାଶ ଉଡ୍‌ଡୟନର ଭିତ୍ତି — ଜେଟ୍ ବ୍ୟୋମଯାନର ଅଗ୍ରପରିଗ୍ରଳନା ତତ୍ତ୍ୱର ବ୍ୟାଖ୍ୟା କରିଥିଲେ । ପ୍ରତିଭାବାନ ବିଜ୍ଞାନୀ ନିକଲାଇ ଝୁକୋଭ୍‌ସି ଏବଂ ସେର୍ଗେଇ ଗ୍ରପ୍ଲିଗିନ୍ କେତେକ ଏରୋଡାଇନାମିକ ନିୟମ ଆବିଷ୍କାର କରି ଆଧୁନିକ ଉଡ୍‌ଡୟନର ବିକାଶ ପ୍ରତି ଅବଦାନ ରଖିଥିଲେ । ରସାୟନ ବିଦ୍ୟା କ୍ଷେତ୍ରରେ ଆକାଡେମିସିଆନ ସେର୍ଗେଇ ଲେବେଦେଭ୍‌ଙ୍କ ଆବିଷ୍କାର ଫଳରେ ସୋଭିଏତ୍ ୟୁନିଅନ୍ ସକ୍ଷମ ହୋଇଥିଲା ବିଶ୍ୱରେ କୃତ୍ରିମ ରବର କାରଖାନାରେ ଉତ୍ପାଦନ କରିବାକୁ । ସୋଭିଏତ୍ ବସ୍ତୁବିଜ୍ଞାନୀ ଲିଓନିଦ୍ ମାନ୍ଦେଲସ୍ତାମ୍, ନିକଲାଇ ପାପାଲେକ୍‌ସି ଏବଂ ଅନ୍ୟମାନଙ୍କ ଉଦ୍‌ଭାବନସମୂହ ଦ୍ୱାରା ୧୯୩୦ ଦଶକରେ ପ୍ରଥମ ରାଡାର ଯନ୍ତ୍ର ତିଆରି କରିବା ସମ୍ଭବ ହୋଇଥିଲା । ଆକାଡେମିସିଆନ ଆବ୍ରାମ୍ ଆଇଓଫେଙ୍କ ସାଫଲ୍ୟ ଅର୍ଦ୍ଧପରିବାହୀସମୂହର ଆଧୁନିକ ବସ୍ତୁବିଜ୍ଞାନର ମୂଳଦୁଆ ସ୍ଥାପନ କରିଥିଲା । ସୋଭିଏତ୍ ବିଜ୍ଞାନୀ ଦ୍‌ମିତ୍ରି ସ୍କୋବେଲତ୍‌ସିନ୍, ଇଗୋର କୁର୍ଚ୍ଚାତୋଭ୍ ଏବଂ ଅନ୍ୟମାନେ ପାରମାଣବିକ କୋଷକେନ୍ଦ୍ର ଓ ମହାକାଶ ରୟାଡିଏସନର ଅଧ୍ୟୟନ ପ୍ରତି ବିରାଟ ଅବଦାନ ରଖିଥିଲେ । ସୋଭିଏତ୍ ଗବେଷକ ଭିଟାଲି କ୍ଲୋପିନ୍ ୧୯୨୦ ଦଶକର ପ୍ରାରମ୍ଭରେ ରୟାଡିଅମ୍ ଉପାଦାନ ଲାଭ କରିବାକୁ ସକ୍ଷମ ହୋଇ ପାରିଥିଲେ ।

ପାର୍ଟି ଏବଂ ସୋଭିଏତ୍ ସରକାର ପକ୍ଷରୁ ଅବିରାମ ସହାୟତା ଓ ପ୍ରୋତ୍ସାହନ ଲାଭ କରି ସୋଭିଏତ୍ ବିଜ୍ଞାନର କେତେକ ଶାଖା ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରାକ୍‌କାଳରେ ବିଶ୍ୱବିଜ୍ଞାନର ଅଗ୍ରଭାଗରେ ନିଜକୁ ପ୍ରତିଷ୍ଠା କରି ପାରିଥିଲା ।

ଜନସାଧାରଣଙ୍କ ପକ୍ଷରେ ସମାଜବାଦର ଚିନ୍ତାରାଜି ତଥା ଲକ୍ଷ୍ୟ ସଂପର୍କରେ ଏବଂ ସେସବୁକୁ କାର୍ଯ୍ୟକାରୀ କରିବାର ଉପାୟ ସଂପର୍କରେ ସେମାନଙ୍କର ସୁସ୍ପଷ୍ଟ ଅବଧାରଣା ସମାଜବାଦର ବିଜୟ ପକ୍ଷରେ ନିଷ୍ପତ୍ତିମୂଳକ ଭୂମିକା ପାଳନ କରିଥାଏ । ତେଣୁ କରି ସୋଭିଏତ୍ ଶାସନ ଜନସାଧାରଣଙ୍କର ସାଂସ୍କୃତିକ, ରାଜନୈତିକ, ଆଦର୍ଶଗତ ଶିକ୍ଷା ପ୍ରତି ଏତେ ବେଶି ଗୁରୁତ୍ୱ ଆରୋପ କରୁଥିଲା । ଏ ଦିଗରେ ସାଂସ୍କୃତିକ ଓ ଶିକ୍ଷା ପ୍ରତିଷ୍ଠାନ ଏବଂ ଗଣ ଯୋଗାଯୋଗ ମାଧ୍ୟମ — କ୍ଲବ, ପାଠାଗାର, ସଂଗ୍ରହାଳୟ, ଥିଏଟର, ସିନେମା, ରେଡ଼ିଓ, ସମ୍ବାଦପତ୍ର, ପୁସ୍ତକ ଆଦିକୁ ବ୍ୟାପକ ଭାବେ ଉପଯୋଗ କରାଯାଇଥିଲା । ସମସ୍ତ ସାଂସ୍କୃତିକ ଏବଂ ଶିକ୍ଷାଗତ ପ୍ରତିଷ୍ଠାନକୁ ସୋଭିଏତ୍ ରାଷ୍ଟ୍ର ଜନସାଧାରଣଙ୍କ ହାତରେ ଅର୍ପଣ କରି ଦେଇଥିଲା । ସୋଭିଏତ୍ ଶାସନ କାଳରେ

ବହୁ ସାଂସ୍କୃତିକ ପ୍ରତିଷ୍ଠାନ ଗଢ଼ାଯାଇଥିଲା । ୧୯୪୦ ମସିହାରେ ସୋଭିଏତ୍ ୟୁନିଅନ୍‌ରେ ୧୧୮,୦୦୦ କ୍ଲବ ରହିଥିଲା । ଏହି ସଂଖ୍ୟାଟି ବିପ୍ଳବ ପୂର୍ବ ତୁଳନାରେ ୫୦୦ ଗୁଣ । ୧୯୪୦ରେ ସୋଭିଏତ୍ ୟୁନିଅନ୍‌ରେ ୮,୮୦୦ ସମ୍ବାଦପତ୍ର ପ୍ରକାଶ ପାଉଥିଲା, ୧୯୧୪ ତୁଳନାରେ ୧୦ଗୁଣ ଅଧିକ ।

ଜନସାଧାରଣଙ୍କ ଭାବାଦର୍ଶଗତ ଶିକ୍ଷା କ୍ଷେତ୍ରରେ ବଡ଼ ଏକ ଭୂମିକା ପାଳନ କରିଥିଲା ସାହିତ୍ୟ ଏବଂ କଳା । ଲେଖକ, ଶିଳ୍ପୀ ଏବଂ ଅଭିନେତାମାନଙ୍କ ଦ୍ୱାରା ସୃଷ୍ଟ ବିପ୍ଳବ ଓ ସମାଜବାଦ ପାଇଁ ଦୁଃସାହସୀ ଯୋଦ୍ଧାମାନଙ୍କର ପ୍ରଭାବଶାଳୀ ଭାବମୂର୍ତ୍ତି ଜନସାଧାରଣଙ୍କୁ ଗଭୀର ଭାବେ ପ୍ରଭାବିତ କରିଥିଲା ।

୧୯୩୦ ଦଶକର ପ୍ରାରମ୍ଭରେ ସମାଜବାଦୀ ବାସ୍ତବତାବାଦ ସୋଭିଏତ୍ ସାହିତ୍ୟ କ୍ଷେତ୍ରରେ ମୁଖ୍ୟ ସୃଜନାତ୍ମକ ପଦ୍ଧତିରେ ପରିଣତ ହୋଇଥିଲା, ଏହା ତା'ର ବୈପ୍ଳବିକ ବିକାଶରେ ଆବଶ୍ୟକ କରୁଥିଲା ଏହାର ବସ୍ତୁନିଷ୍ଠ ବାସ୍ତବତାର ଐତିହାସିକ ସତ୍ୟତାପୂର୍ଣ୍ଣ ବର୍ଣ୍ଣନା ବା ଚିତ୍ରଣ । ୧୯୩୦ ଦଶକରେ ପ୍ରତିଷ୍ଠିତ ଶିଳ୍ପୀ ବୁଦ୍ଧିଜୀବୀମାନଙ୍କର ସମିତିମାନ – ଲେଖକ ୟୁନିଅନ୍, କଳାକାରମାନଙ୍କ ୟୁନିଅନ୍, ସୁରକାରମାନଙ୍କ ୟୁନିଅନ୍ ଆଦି ସୋଭିଏତ୍ ସାହିତ୍ୟ ଓ ଶିଳ୍ପକଳାର ବିକାଶ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲା ।

ସୋଭିଏତ୍ ସାହିତ୍ୟ ଏବଂ ଶିଳ୍ପକଳା ଗଭୀର ମାନବିକ ଚିନ୍ତାରାଜିକୁ ଜନପ୍ରିୟ କରିଥିଲା । ସେସବୁ ନିଜର ଦେଶକୁ, କର୍ମ ଏବଂ ଶାନ୍ତିକୁ ଭଲପାଇବା ପାଇଁ ଯେକୌଣସି ଧରଣର ଅତ୍ୟାଚାର, ଦାସତ୍ୱ, ମଣିଷ ଦ୍ୱାରା ମଣିଷର ଶୋଷଣ ଏବଂ ପରାଙ୍ଗପୁଷ୍ଟତା ଆଦି ପ୍ରତି ଘୃଣା ମନୋଭାବକୁ ବିକାଶ କରିଥିଲା । ଇତିହାସର ସ୍ରଷ୍ଟା ଏବଂ ନୂତନ ସମାଜର ନିର୍ମାତା ହେଉଛନ୍ତି ଯେଉଁ ଜନସାଧାରଣ, ସେଇମାନଙ୍କୁ ସୋଭିଏତ୍ ସାହିତ୍ୟ ଏବଂ କଳାର ନାୟକ ରୂପେ ଚିତ୍ରଣ କରାଯାଇଥିଲା । ତେଣୁ କରି ସୋଭିଏତ୍ ଲେଖକ, କଳାକାର, ଶିଳ୍ପୀ ଓ ସୁରକାରମାନଙ୍କର ରଚନାସମୂହ ଲୋକଙ୍କ ପାଖରେ ଏତେ ପ୍ରିୟ ଏବଂ ବୋଧଗମ୍ୟ ।

୧୯୨୦ ଓ ୧୯୩୦ ଦଶକରେ ରଚିତ ରଚନାସମୂହ, ଯଥା, ମିଖାଇଲ୍ ଶୋଲୋଖୋଭ୍‌ଙ୍କ "ଶାନ୍ତଶାଳୀନା ଦନ୍", ଆଲେକ୍‌ଜାଣ୍ଡାର ସେରାଫିମୋଭିଚ୍‌ଙ୍କ "ଲୌହର ବନ୍ୟା", ନିକଲାଇ ଅସ୍ତୋଭ୍‌ସ୍କିଙ୍କ "ଇସ୍‌ପାତ", ଦ୍‌ମିତ୍ରି ଫୁର୍‌ମାନୋଭ୍‌ଙ୍କ "ଚ୍ପାୟେଭ" ଏବଂ ଆଲେକ୍‌ଜାଣ୍ଡାର ଫାଦେୟେଭ୍‌ଙ୍କ "ଧ୍ୱଂସ" ଉପନ୍ୟାସଗୁଡ଼ିକ ସୋଭିଏତ୍ ପାଠକମାନଙ୍କର ଅତୀବ ପ୍ରିୟ ହୋଇ ପାରିଛି । ଏସବୁଥିରେ ସୋଭିଏତ୍ ଜନସାଧାରଣଙ୍କ ବୀରତ୍ୱକୁ ଚିତ୍ରଣ ହେବା ସଙ୍ଗେ ସଙ୍ଗେ ବିପ୍ଳବର ଯୋଦ୍ଧାମାନଙ୍କ ଭାବମୂର୍ତ୍ତିକୁ ତୋଳି ଧରାଯାଇଛି ।

ସୋଭିଏତ୍ ଚଳଚ୍ଚିତ୍ର କ୍ଷେତ୍ରରେ ସର୍ବୋତ୍କୃଷ୍ଟ କୃତିରାଜି – "ପୋଟ୍ୟୋମ୍‌କିନ୍

ଯୁଦ୍ଧ-ଜାହାଜ", "କ୍ରନ୍‌ଷ୍ଟାଦ୍‌ତରୁ ଆମେ ଆସିଛୁ" ଏବଂ "ବଲ୍‌ଟିକ୍ ନୌବହର ପ୍ରତିନିଧି" ଆଦି ସିନେମାଗୁଡ଼ିକ ବିଶ୍ୱ ଚଳଚିତ୍ର ଭଣ୍ଡାରର ଅଂଶବିଶେଷରେ ପରିଣତ ହୋଇଛି ।

ଶିକ୍ଷା, ବିଜ୍ଞାନ ଓ ସଂସ୍କୃତିର ବିକାଶକୁ ଭିତ୍ତି କରି ଜନସାଧାରଣଙ୍କ ମଧ୍ୟରେ ଜ୍ଞାନର ପରିମାଣଗତ ଓ ଗୁଣଗତ ଉନ୍ନତିକୁ ପ୍ରକାଶ କରିଥିବା ସାଂସ୍କୃତିକ ବିପ୍ଳବ ୧୯୩୦ ଦଶକର ଶେଷରେ ରୁଷିଆରେ ବିଜୟ ହାସଲ କରିଥିଲା । ଏହା ସୋଭିଏତ୍ ୟୁନିଅନ୍‌କୁ ପରିଣତ କରିଥିଲା ବିଶ୍ୱର ସର୍ବୋତ୍କୃଷ୍ଟ ଗଣତାନ୍ତ୍ରିକ ଜନଶିକ୍ଷା ବ୍ୟବସ୍ଥା ସଂପନ୍ନ ସାର୍ବଜନୀନ ସାକ୍ଷର ଦେଶରେ, ଅଗ୍ରଗାମୀ ବିଜ୍ଞାନ ଓ ସଂସ୍କୃତି ସଂପନ୍ନ ଦେଶରେ । ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଭାବାଦର୍ଶ ନିଜକୁ ଜନସାଧାରଣଙ୍କ ମଧ୍ୟରେ ଦୃଢ଼ ଭାବେ ପ୍ରତିଷ୍ଠିତ କରିଥିଲା ।

# ୨୩ଶ ପରିଚ୍ଛେଦ

## ସୋଭିଏତ୍ ୟୁନିଅନ୍‌ରେ ସମାଜବାଦର ବିଜୟ

ଶହ ଶହ ବର୍ଷ ଧରି ନିପୀଡ଼ିତ ଲୋକେ ଏପରି ଏକ ସମାଜର ସ୍ୱପ୍ନ ଦେଖି ଆସିଥିଲେ, ଯେଉଁଠି କେହି ନିପୀଡ଼କ ଏବଂ ନିପୀଡ଼ିତ, ପ୍ରାଧାନ୍ୟକାରୀ ଏବଂ ଦାସତ୍ୱରେ ବନ୍ଧା ଜାତି, ଏକ ଦିଗରେ ପ୍ରାଚୁର୍ଯ୍ୟ ଓ ଅନ୍ୟ ଦିଗରେ କ୍ଷୁଧା ରହିବ ନାହିଁ । ପୃଥିବୀରେ ସୋଭିଏତ୍ ଜନସାଧାରଣ ହିଁ ପ୍ରଥମ କରି ସେ ସ୍ୱପ୍ନକୁ ବାସ୍ତବାୟିତ କରିଥିଲେ । ରାଜନୈତିକ, ଅର୍ଥନୈତିକ ଏବଂ ସାଂସ୍କୃତିକ ଜୀବନ କ୍ଷେତ୍ରରେ ବିପୁଳ ରୂପାନ୍ତରଣ ଫଳରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ସୋଭିଏତ୍ ୟୁନିଅନ୍‌ରେ ସମାଜବାଦ ମୌଳିକ ଭାବେ ନିର୍ମିତ ହୋଇ ପାରିଥିଲା ।

ଏହା ପ୍ରତିଫଳିତ ହୋଇଥିଲା, ସର୍ବୋପରି, ଦେଶର ସାମାଜିକ, ଅର୍ଥନୈତିକ ଏବଂ ଶ୍ରେଣୀ ଗଠନରେ ସଂଘଟିତ ମୌଳିକ ପରିବର୍ତ୍ତନ ମଧ୍ୟରେ ।

ସୋଭିଏତ୍ ଶାସନ ପ୍ରତିଷ୍ଠାର ୨୦ ବର୍ଷ ମଧ୍ୟରେ ଏକ ଆଧୁନିକ ସର୍ବସାଧାରଣ ମାଲିକାନାଧୀନ ଅର୍ଥନୀତି – ଉଚ୍ଚମାନ ସଂପନ୍ନ ରାଷ୍ଟ୍ରାୟତ୍ତ ଶିଳ୍ପ ଏବଂ ବୃହଦାକାର ଯନ୍ତ୍ରାୟତ୍ତ କୃଷି – ଯୋଜନା ଅନୁଯାୟୀ କାର୍ଯ୍ୟକାରୀ ହୋଇଥିଲା । ଏହା ଫଳରେ ସମାଜବାଦୀ ସମାଜର ଅର୍ଥନୈତିକ ଭିତ୍ତି ସୃଷ୍ଟି ହୋଇଥିଲା । ଉତ୍ପାଦନର ଉପାୟ ଉପକରଣ ଉପରେ ବ୍ୟକ୍ତିଗତ ମାଲିକାନା ଓ ଭଡ଼ାଟିଆ ଶ୍ରମିକମାନଙ୍କ ଶୋଷଣ ଉପରେ ପ୍ରତିଷ୍ଠିତ ପୁଞ୍ଜିବାଦୀ ଅର୍ଥନୀତିର ସଂପୂର୍ଣ୍ଣ ରୂପେ ମୂଳୋତ୍ପାଟନ ଘଟିଥିଲା । ବ୍ୟକ୍ତିଗତ ବାଣିଜ୍ୟ ସ୍ଥାନରେ ପ୍ରତିଷ୍ଠିତ ହୋଇଥିଲା ରାଷ୍ଟ୍ରୀୟ ଏବଂ ସମବାୟ ବାଣିଜ୍ୟ । କୃଷକ ଏବଂ କାରିଗରମାନଙ୍କର କ୍ଷୁଦ୍ରାକାର ଉତ୍ପାଦନ ରୂପାନ୍ତରିତ ହୋଇଥିଲା ସମବାୟ, ଯୌଥ, ସମାଜବାଦୀ ଉତ୍ପାଦନକୁ । ଉତ୍ପାଦନର ଉପାୟ ଉପକରଣର ସର୍ବସାଧାରଣ ମାଲିକାନା ଏବଂ ମଣିଷ ଦ୍ୱାରା ମଣିଷର ଶୋଷଣର ଅବସାନ ଉପରେ ଭିତ୍ତି କରି ଉତ୍ପାଦନର ସମାଜବାଦୀ ସଂପର୍କରାଜି ପ୍ରତିଷ୍ଠିତ ହେଲା ।

ଏହିସବୁ ନିଷ୍କରିମୂଳକ ସାମାଜିକ ଅର୍ଥନୈତିକ ରୂପାନ୍ତରଣ ଦ୍ୱାରା ସମାଜର ଶ୍ରେଣୀଗତ ଗଢ଼ଣରେ ଦେଖାଦେଲା ମୌଳିକ ପରିବର୍ତ୍ତନ ।

ଜମିଦାରମାନଙ୍କ ମାଳ୍ହାଲଗୁଡ଼ିକର ଉଚ୍ଛେଦକରଣ ଓ ଶିଳ୍ପର ଜାତୀୟକରଣ ଫଳରେ ସୋଭିଏତ୍ ଶାସନର ପ୍ରଥମ ବର୍ଷମାନଙ୍କରେ ଜମିଦାର ଏବଂ ବୁର୍ଜୁଆମାନେ ଇତିହାସର ରଙ୍ଗମଞ୍ଚରୁ ବିଦାୟ ନେଇଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଗୃହଯୁଦ୍ଧରେ ଜନସାଧାରଣଙ୍କର ବିଜୟ ପରେ ବିଦେଶକୁ ପଳାଇ ଯାଇଥିଲେ । ପୁଞ୍ଜିବାଦ ପୁଣି ପୁନଃପ୍ରତିଷ୍ଠିତ ହେବ, ସେମାନଙ୍କର ଏହି ଆଶା ଧୂଳିସାତ୍ ହୋଇ ଯାଇଥିଲା ।

ତେବେ, ଦେଶ ମଧ୍ୟରେ ବୁର୍ଜୁଆମାନଙ୍କର ଧ୍ୱଂସାବଶେଷ ରହିଯାଇଥିଲା । ନୂତନ ଅର୍ଥନୈତିକ କର୍ମନୀତିକୁ ଉତ୍ତରଣ ଦ୍ୱାରା ଗ୍ରାମ୍ୟ ଏବଂ ସହରର ବୁର୍ଜୁଆମାନଙ୍କର କେତେକ ଅଂଶ କିଛି ପରିମାଣରେ ପୁଣି ମୁଣ୍ଡଟେକି ଉଠିଥିଲେ । ନୂତନ ଅର୍ଥନୈତିକ କର୍ମନୀତି କାଳରେ କେତେକ ସୁଯୋଗ ସୃଷ୍ଟି ହୋଇଥିଲା ପୁଞ୍ଜିବାଦୀ ଉପାଦାନସମୂହର ବିକାଶ ପାଇଁ । କିନ୍ତୁ ସେମାନଙ୍କର ଅଂଶ ଅନେକ ନଗଣ୍ୟ ଥିଲା । ଦୃଷ୍ଟାନ୍ତ ସ୍ୱରୂପ, କୃଷକମାନଙ୍କ ଜମିଜମାର ମାତ୍ର ଶତକଡ଼ା ୪-୫ ଭାଗ ଥିଲା ଗ୍ରାମ୍ୟ ବୁର୍ଜୁଆ ବା କୁଲାକମାନଙ୍କ ହାତରେ । ସହରର ଜନସଂଖ୍ୟା ମଧ୍ୟରେ ସହରର ବୁର୍ଜୁଆମାନଙ୍କର ଅଂଶ ତ ଆଉରି କମ୍ । ତେବେ ୧୯୩୦ ଦଶକର ପ୍ରାରମ୍ଭରେ ଶିଳ୍ପ ଏବଂ ବାଣିଜ୍ୟରୁ ପୁଞ୍ଜିପତିମାନେ ଉତ୍ଖାତ ହୋଇ ଯାଇଥିଲେ । ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳରେ କୁଲାକ ଖମାରଗୁଡ଼ିକୁ ଉଠେଇ ଦିଆଗଲା ଏବଂ ଶେଷ ଶୋଷକ ଶ୍ରେଣୀ ରୂପେ କୁଲାକମାନେ ଉଚ୍ଛେଦ ହୋଇଗଲେ । ଏଥି ସାଥେ ସାଥେ ସବୁ ଦିନ ପାଇଁ ସୋଭିଏତ୍ ସମାଜରୁ ଶୋଷକ ଶ୍ରେଣୀମାନେ ଉତ୍ଖାତ ହୋଇଗଲେ ।

ସୋଭିଏତ୍ ସମାଜର ଶ୍ରମିକ ଶ୍ରେଣୀର ଅବସ୍ଥାନରେ ମଧ୍ୟ ବିପୁଳ ଐତିହାସିକ ପରିବର୍ତ୍ତନ ଘଟିଲା । ଶ୍ରମିକ ଶ୍ରେଣୀ ଆଉ ସର୍ବହରା ହୋଇ, ଅର୍ଥାତ୍ ଏକ ଶୋଷିତ, ନିପୀଡ଼ିତ ଏବଂ ଉତ୍ପାଦନର ଉପାୟ ଉପକରଣରୁ ବଞ୍ଚିତ ହୋଇ ରହିଲା ନାହିଁ । ଏହା ଏକ ନୂଆ ଶ୍ରେଣୀରେ ପରିଣତ ହେଲା, ଯିଏକି ପୁଞ୍ଜିବାଦୀ ଶୋଷଣ ଆଉ ନିପୀଡ଼ନରୁ ମୁକ୍ତ, ଯାହାର ରାଷ୍ଟ୍ର ହେଲା ଉତ୍ପାଦନର ଉପାୟ ଉପକରଣର ମାଲିକ । ଶିଳ୍ପାୟନ ଫଳରେ ଶ୍ରମିକ ଶ୍ରେଣୀର ଆକାର ମଧ୍ୟ ବଢ଼ିଗଲା : ୧୯୩୯ରେ ଶ୍ରମିକ ଏବଂ ସେମାନଙ୍କ ପରିବାରର ଲୋକ ମିଶି ଦେଶର ମୋଟ ଜନସଂଖ୍ୟାର ଏକ ତୃତୀୟାଂଶ ଥିଲେ । ଶ୍ରମିକ ଶ୍ରେଣୀର ସାଂସ୍କୃତିକ ଏବଂ କାରିଗରି ମାନରେ ମଧ୍ୟ ଦ୍ରୁତ ଉନ୍ନତି ଘଟିଥିଲା । ୧୯୧୮ରେ ଶ୍ରମିକମାନଙ୍କ ମଧ୍ୟରେ ଶତକଡ଼ା ୩୬ ଭାଗ ଲୋକ ନିରକ୍ଷର ଥିଲା ବେଳେ ଶତକଡ଼ା ୫୬ ଭାଗ ଶ୍ରମଜୀବୀ ନାରୀ ଥିଲେ ନିରକ୍ଷର ।

୧୯୩୦ ଦଶକର ମଧ୍ୟ ଭାଗରେ ନିରକ୍ଷର ହୋଇ କୌଣସି ଶ୍ରମଜୀବୀ ପୁରୁଷ ଏବଂ ନାରୀ ନଥିଲେ । ଶ୍ରମିକମାନଙ୍କ ମଧ୍ୟରେ ସଂଗଠନ ଓ ରାଜନୈତିକ ଚେତନାର ବିକାଶ

ଘଟିଥିଲା । ୧୯୩୬ ମସିହାରେ ଟ୍ରେଡ୍‌ୟୁନିଅନ୍‌ର ସଦସ୍ୟ ସଂଖ୍ୟା ୨ କୋଟି ୧୦ ଲକ୍ଷକୁ ଟପି ଯାଇଥିଲା , ଶ୍ରମିକ ଶ୍ରେଣୀର ଟ୍ରେଡ୍‌ୟୁନିଅନ୍‌ଗୁଡ଼ିକ ହେଲା ସର୍ବାପେକ୍ଷା ବୃହତ୍ ଗଣ ସଂଗଠନ ।

ଶୋଷଣରୁ ଶ୍ରମିକ ଶ୍ରେଣୀର ମୁକ୍ତି ଏବଂ ଦେଶର ତଥା ନିଜର ପ୍ରଭୁ ରୂପେ ରୂପାନ୍ତରଣ ଶ୍ରମିକ ଶ୍ରେଣୀର ମନସ୍ତତ୍ତ୍ୱ ଏବଂ ଚେତନା ତଥା କାର୍ଯ୍ୟ ପ୍ରତି ଆଭିମୁଖ୍ୟ ମଧ୍ୟରେ ଗଭୀର ପରିବର୍ତ୍ତନ ଆଣିଥିଲା । ପୂର୍ବେ କର୍ମ ଥିଲା ଶ୍ରମିକ ପକ୍ଷରେ ଏକ ଦୁର୍ବହ ଆବଶ୍ୟକତା ଏବଂ ଶୋଷକ ଧନିକ ଶ୍ରେଣୀ ପକ୍ଷରେ ସମୃଦ୍ଧିର ଉତ୍ସ ସ୍ୱରୂପ , ଏବେ ତାହା ଶ୍ରମିକ ଶ୍ରେଣୀ ପାଇଁ ତଥା ସମଗ୍ର ସମାଜର କଲ୍ୟାଣ ପାଇଁ ମୁକ୍ତ ସୃଜନଶୀଳ କ୍ରିୟାରେ ପରିଣତ ହେଲା । ଶ୍ରମିକ ପକ୍ଷରେ ଶ୍ରମ ହେଲା ଏକ ସମ୍ମାନର ବିଷୟ ଏବଂ ତା'ର କାରଖାନା ହେଲା ତା'ର ଦ୍ୱିତୀୟ ଗୃହ । ଶ୍ରମ ପ୍ରତ୍ୟେକ ଶ୍ରମିକକୁ ତା'ର କାର୍ଯ୍ୟରେ ଆଗ୍ରହାନ୍ୱିତ କରାଇଥିଲା ଉତ୍ପାଦନର ନିୟମିତ ବୃଦ୍ଧି ଦିଗରେ—ଏହି ଅଭିବୃଦ୍ଧି ହେଲା ସମଗ୍ର ଜାତିର ସମୃଦ୍ଧିର ଉତ୍ସ ସ୍ୱରୂପ ।

ସୋଭିଏତ୍ କୃଷକ ସଂପ୍ରଦାୟ ମଧ୍ୟରେ ବି ପରିବର୍ତ୍ତନ ଘଟିଥିଲା । ଏହା ଆଉ ଏକ ନିପୀଡ଼ିତ ଏବଂ ଦାସତ୍ୱବଦ୍ଧ ଶ୍ରେଣୀ ହୋଇ ରହିଲା ନାହିଁ । ବିପ୍ଳବପୂର୍ବ କୃଷକମାନଙ୍କୁ ଲୁଣ୍ଠନ କରୁଥିଲେ ଭୂସ୍ୱାମୀ , କୁଲାକ୍ , ବ୍ୟବସାୟୀ , ମହାଜନ , ବ୍ୟାଙ୍କ୍ ମାଲିକ ଏବଂ ଜାର୍‌ତନ୍ତ୍ରୀ ସରକାର । ଅକ୍ଟୋବର ବିପ୍ଳବ କୃଷକମାନଙ୍କୁ ଅଧିକାଂଶ ଉତ୍ପୀଡ଼କମାନଙ୍କ କବଳରୁ ମୁକ୍ତ କରିଥିଲା । କୃଷକମାନେ ନିଜକୁ କୋଠଖମାରରେ ଐକ୍ୟବଦ୍ଧ କରି ସେମାନଙ୍କର ଶେଷ ଶୋଷକ କୁଲାକ୍‌ମାନଙ୍କ ଠାରୁ ମୁକ୍ତ କରି ନେଲେ । କୋଠଖମାରଗୁଡ଼ିକ ଗ୍ରାମାଞ୍ଚଳରେ ସାମାଜିକ ଶ୍ରେଣୀ ବିଭାଗକୁ ଶେଷ ଥର ପାଇଁ ଲୋପ କରି ଦେଲା । ଏବେ ଆଉ କେହି ଗରିବ କୃଷକ , ମଧ୍ୟବିତ୍ତ କୃଷକ , କ୍ଷେତ-ମଜୁରିଆ ଏବଂ କୁଲାକ୍ ହୋଇ ରହିଲେ ନାହିଁ । କୋଠଖମାରର ଚାଷୀ ରୂପେ ଏମାନେ ସମସ୍ତେ ଗୋଟିଏ ସାମାଜିକ ଶ୍ରେଣୀରେ ପରିଣତ ହେଲେ ।

ମାନଧାତା ଅମଳର କାଠଲଙ୍ଗଳ ଏବଂ ଦୈହିକ ଶ୍ରମ ସ୍ଥାନରେ ସ୍ୱଳ୍ପ ସମୟ ମଧ୍ୟରେ ଆଧୁନିକ କୃଷି ଯନ୍ତ୍ରପାତି ପ୍ରତିଷ୍ଠିତ ହୋଇ କୃଷି ଶ୍ରମକୁ କେବଳ ସହଜତର କଲା ନାହିଁ , ଏହାର ଉତ୍ପାଦନଶୀଳତାକୁ ଅଧିକ କରି ଦେଲା । ଗ୍ରାମମାନଙ୍କରେ ସାମାଜିକ ଶ୍ରେଣୀ ବିଭାଗର ବିଲୋପ ଫଳରେ କୃଷକମାନଙ୍କ ମଧ୍ୟରେ ସଂପର୍କର ଚରିତ୍ର ବଦଳି ଗଲା । ଯୌଥକରଣ କେବଳ ଶ୍ରମ ଆଉ ବ୍ୟକ୍ତିଗତ ଜୋତଗୁଡ଼ିକୁ ଏକତ୍ରିତ କଲା ନାହିଁ , କୃଷକମାନଙ୍କ ମଧ୍ୟରେ ଥିବା ବିଭିନ୍ନ ସ୍ତରକୁ ଗୋଟିଏ ଶ୍ରେଣୀରେ ପରିଣତ କଲା ଏବଂ ଗ୍ରାମ୍ୟ ସମାଜରେ ସାମାଜିକ ପ୍ରତିବନ୍ଧକକୁ ଦୂର କରି ଦେଲା ।

କୃଷକମାନଙ୍କର ବୈଷୟିକ ଏବଂ ସାଂସ୍କୃତିକ ଜୀବନ ମାନରେ ମଧ୍ୟ ଉନ୍ନତି ଘଟିଥିଲା । ଜାର୍‌ଶାସିତ ରୁଷିଆରେ ଶ୍ରମଜୀବୀ କୃଷକମାନଙ୍କ ମଧ୍ୟରୁ ତିନିଚତୁର୍ଥାଂଶ

ଥିଲେ ନିରକ୍ଷର । ୧୯୩୯ ଜନଗଣନା ଅନୁଯାୟୀ ଗ୍ରାମାଞ୍ଚଳର ଅଧିବାସୀମାନଙ୍କ ମଧ୍ୟରେ ସାକ୍ଷରମାନଙ୍କ ସଂଖ୍ୟା ଥିଲା ଶତକଡ଼ା ୭୬.୮ ଭାଗ । ସେମାନଙ୍କ ମଧ୍ୟରେ ୬୬.୬ ଶତାଂଶ ଥିଲେ ନାରୀ । ବିପ୍ଳବ ଦ୍ୱାରା ଅର୍ଜିତ ରାଜନୈତିକ ସ୍ୱାଧୀନତା କୃଷକମାନଙ୍କୁ ପ୍ରଦାନ କଲା ସ୍ଥାନୀୟ ଏବଂ କେନ୍ଦ୍ରୀୟ ସଂସ୍ଥାସମୂହର ପରିଚାଳନାରେ ଅଂଶଗ୍ରହଣ କରିବା ଏବଂ ସେମାନଙ୍କ କୋଠଖମାରସମୂହ ପରିଚାଳନା କରିବାର ଅଧିକାର ।

ବୁଦ୍ଧିଜୀବୀ ସଂପ୍ରଦାୟର ସାମାଜିକ ଚରିତ୍ର ମଧ୍ୟ ବଦଳି ଗଲା । ବିପ୍ଳବପୂର୍ବ ରୁଷିଆରେ ଧନିକ ଏବଂ ଶାସକ ଶ୍ରେଣୀର ଲୋକଙ୍କୁ ନେଇ ଗଠିତ ହୋଇଥିଲା ବୁଦ୍ଧିଜୀବୀ ସଂପ୍ରଦାୟ – ବୁର୍ଜୁଆ ଏବଂ ଭୂସ୍ୱାମୀମାନଙ୍କୁ ନେଇ । ବୁଦ୍ଧିଜୀବୀ ସଂପ୍ରଦାୟ ବିଶ୍ୱାସତାର ସହିତ ସେଇସବୁ ଶ୍ରେଣୀର ସେବା କରେ, ଯେଉଁସବୁ ଶ୍ରେଣୀ ମଧ୍ୟରୁ ସେମାନେ ଆସିଥାନ୍ତି । ସେମାନଙ୍କ ମଧ୍ୟରୁ ଯଦି ତା'ର ଶ୍ରେଣୀର ସେବା ନକରୁଥାଏ, ତାହା ଏକ ବିରଳ ବ୍ୟତିକ୍ରମ । ଏହି ବୁଦ୍ଧିଜୀବୀମାନେ ହେଉଛନ୍ତି ଜନସାଧାରଣଙ୍କର ଏକ ଶତ୍ରୁ ଏବଂ ବିରୋଧୀ ସଂପ୍ରଦାୟ ଏବଂ ଶୋଷକମାନଙ୍କ ସ୍ୱାର୍ଥର ରକ୍ଷାକାରୀ ବୋଲି ଶ୍ରମିକ ଶ୍ରେଣୀର ବିଚାର ସଂପୂର୍ଣ୍ଣ ରୂପେ ଯୁକ୍ତିସମ୍ମତ ଥିଲା ।

ଅକ୍ଟୋବର ବିପ୍ଳବ ପରେ ବୁଦ୍ଧିଜୀବୀ ସଂପ୍ରଦାୟ ମଧ୍ୟରେ ଏକ ବିଭାଜନ ଦେଖାଦେଇଥିଲା । ଏକ ସଂଖ୍ୟାଲଘୁ ପ୍ରଗତିଶୀଳ ଅଂଶ ବିପ୍ଳବର ସପକ୍ଷରେ ଦଣ୍ଡାୟମାନ ହୋଇଥିଲେ । ବୁର୍ଜୁଆମାନଙ୍କ ସହିତ ଘନିଷ୍ଠ ଭାବେ ସଂଯୁକ୍ତ ପ୍ରତିକ୍ରିୟାଶୀଳ ଅଂଶଟି ସୋଭିଏତ୍ ଶାସନ ପ୍ରତି ଶତ୍ରୁତାପୂର୍ଣ୍ଣ ଅବସ୍ଥାନ ଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରୁ ଅନେକ ବିଦେଶକୁ ଚାଲିଯାଇ ଜୀବନର ଅବଶିଷ୍ଟ ସମୟ ବସବାସ କରିଥିଲେ । ଆଉ କେତେକ ରୁଷିଆରେ ରହି ଖୋଲାଖୋଲି ଏବଂ ଗୋପନରେ ସମାଜବାଦ ବିରୁଦ୍ଧରେ ସଂଗ୍ରାମ ଚଳେଇଥିଲେ । ପୁରୁଖା ବୁଦ୍ଧିଜୀବୀ ସଂପ୍ରଦାୟର ବଡ଼ ଅଂଶଟି ଅନେକ କାଳ ପର୍ଯ୍ୟନ୍ତ ଦ୍ୱିଧାଭାବ ପୋଷଣ କଲା ପରେ ସୋଭିଏତ୍ ଶାସନକୁ ସମର୍ଥନ କରିଥିଲେ ।

ସମାଜବାଦ ନିର୍ମାଣ କାଳରେ ଶ୍ରମିକ ଶ୍ରେଣୀ ଓ କୃଷକ ସଂପ୍ରଦାୟରେ ଜାତ ଏକ ନୂତନ ବୁଦ୍ଧିଜୀବୀ ସଂପ୍ରଦାୟର ଅଭ୍ୟୁଦୟ ଘଟିଥିଲା । ଏମାନେ ଥିଲେ ଜନସାଧାରଣଙ୍କର ଏକ ଅଭିନ୍ନ ଅଂଶ ଏବଂ ସେମାନଙ୍କ ସ୍ୱାର୍ଥ ସହିତ ଅଂଶୀଦାର ଏବଂ ସେମାନଙ୍କ ସେବାରେ ନିଯୁକ୍ତ ।

ସୋଭିଏତ୍ ସମାଜର ଶ୍ରେଣୀ ଗଢ଼ଣ ମଧ୍ୟରେ ସଂଘଟିତ ଗଭୀର ପରିବର୍ତ୍ତନ ଫଳରେ ସୋଭିଏତ୍ ଜନସାଧାରଣଙ୍କ ମଧ୍ୟରେ ସାମାଜିକ, ରାଜନୈତିକ ଏବଂ ଭାବାଦର୍ଶଗତ ଐକ୍ୟ ପ୍ରତିଷ୍ଠା କରିଥିଲା । ଏଇଥିରେ ନିହିତ ଥିଲା ସମାଜବାଦୀ ବ୍ୟବସ୍ଥାର କ୍ଷମତାର ମୁଖ୍ୟ ଉତ୍ସଗୁଡ଼ିକ ମଧ୍ୟରୁ ଅନ୍ୟତମ ।

ଅକ୍ଟୋବର ବିପ୍ଳବ ପରେ ୨୦ ବର୍ଷ ଧରି ସୋଭିଏତ୍ ସମାଜର ବିକାଶର

ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ଫଳ ହେଲା ରୁଷିଆର ପୂର୍ବତନ ପଶ୍ଚାଦ୍‌ପଦ ଜାତିମାନଙ୍କର ଦ୍ରୁତ ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ଅଗ୍ରଗତି । ରୁଷିଆରେ ସମାଜବାଦୀ ବିପ୍ଳବ ଘଟିଲା ବେଳେ ମଧ୍ୟ ଏସିଆ, କକେସସ୍ ଏବଂ ରୁଷୀୟ ଦୂର ପ୍ରାଚ୍ୟରେ ଯେଉଁସବୁ ଜାତି ସାମନ୍ତବାଦୀ ସ୍ତରରେ ପଡ଼ିଥିଲେ, ସେମାନେ ଏହି ୨୦ ବର୍ଷ ମଧ୍ୟରେ ଯନ୍ତ୍ରଣାଦାୟକ ପୁଞ୍ଜିବାଦୀ ସ୍ତରକୁ ଏଡ଼େଇ ସମାଜବାଦକୁ ଉଲ୍ଲଙ୍ଘନ ଦେଇଥିଲେ । ସୋଭିଏତ୍ ୟୁନିଅନ୍‌ରେ ଅନ୍ୟାନ୍ୟ ଜାତିମାନଙ୍କ ସହିତ ମିଶି ଏବଂ ସେମାନଙ୍କ ସାହାଯ୍ୟରେ ସେମାନେ ଗଢ଼ିଥିଲେ ଏକ ସମାଜବାଦୀ ସମାଜ ।

ପୁଞ୍ଜିବାଦକୁ ଏଡ଼ାଇଯାଇ ସମାଜବାଦକୁ ଉତ୍ତରଣ ହେବା ସମ୍ଭବ ହୋଇଥିଲା ଲେନିନ୍‌ବାଦୀ ଜାତି ସଂକ୍ରାନ୍ତ ନୀତିର ନିରବଚ୍ଛିନ୍ନ ରୂପାୟନ ଦ୍ୱାରା । ଅଣରୁଷୀୟ ଜାତିମାନେ ସେମାନଙ୍କର ଜାତୀୟ ରାଷ୍ଟ୍ରସମୂହ (ଅଙ୍ଗ ବା ସ୍ୱାୟତ୍ତଶାସିତ ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ରସମୂହ), ସ୍ୱାୟତ୍ତଶାସିତ ଅଞ୍ଚଳ, ଜାତୀୟ ଅଞ୍ଚଳ (୧୯୭୭ର ସମ୍ବିଧାନ ଅନୁସାରେ ସେଗୁଡ଼ିକ ସ୍ୱାୟତ୍ତ ଅଞ୍ଚଳ ରୂପେ ଘୋଷଣା କରାଯାଇଥିଲା) ଗଠନ କରିବାର ସୁବିଧା ଲାଭ କରିଥିଲେ ଏବଂ ଏସବୁ ଥିଲା ସାମନ୍ତବାଦୀ ଅବଶେଷାଂଶ ଏବଂ ପୁଞ୍ଜିବାଦୀ ସଂପର୍କରାଜି ବିରୁଦ୍ଧରେ ଏବଂ ସମାଜବାଦ ନିର୍ମାଣ ପାଇଁ ସଂଗ୍ରାମରେ ଶ୍ରମଜୀବୀ ଜନସାଧାରଣଙ୍କୁ ଏକତ୍ରିତ କରିବାର ଏବଂ ଜନସାଧାରଣଙ୍କ ସଂଗଠନର ମୁଖ୍ୟ ଉପାୟସମୂହ । ଜାତୀୟ ସୋଭିଏତ୍ ରାଷ୍ଟ୍ରସମୂହ ଏବଂ ପ୍ରଜାତନ୍ତ୍ରସମୂହର କମ୍ୟୁନିଷ୍ଟ ପାର୍ଟିଗୁଡ଼ିକ ଇତିହାସର ଗତିପଥରେ ରୂପ ଲାଭ କରିଥିବା ଜାତୀୟ ବୈଶିଷ୍ଟ୍ୟସମୂହ ପ୍ରତି ଦୃଷ୍ଟି ରଖି ଗଣତାନ୍ତ୍ରିକ ତଥା ସମାଜବାଦୀ ବିକାଶର ସମସ୍ୟାବଳୀକୁ ସମାଧାନ କରିଥିଲେ । ସେମାନେ ଉପଜାତୀୟ ପ୍ରତିଷ୍ଠାନସମୂହ ପ୍ରତି ବୋଧଗମ୍ୟ ଦୃଷ୍ଟିକୋଣ ଗ୍ରହଣ କରିଥିଲେ, ଯେଉଁଗୁଡ଼ିକ ସ୍ଥାନରେ ସଙ୍ଗେ ସଙ୍ଗେ ସୋଭିଏତ୍ ଶାସନର ସଂସ୍ଥାକୁ ପ୍ରତିଷ୍ଠା ନକରି କ୍ରମଶଃ ପ୍ରତିଷ୍ଠା କରାଯାଇଥିଲା । କେତେକ ଜାତୀୟ ଅଞ୍ଚଳରେ ସୋଭିଏତ୍ ବିଚାରାଳୟ ସାଙ୍ଗକୁ କିଛି କାଳ ପାଇଁ ଶାରିଆତ୍ ବା କାଜି ବିଚାରାଳୟ ଚାଲିଥିଲା । ଏହି ଶେଷୋକ୍ତ ବିଚାରାଳୟସବୁ ଧର୍ମୀୟ ନିୟମ ଓ ପାରମ୍ପରିକ ନିୟମ ଅନୁଯାୟୀ କାର୍ଯ୍ୟ କରୁଥିଲା । ପ୍ରଜାତନ୍ତ୍ରଗୁଡ଼ିକରେ ଅର୍ଥନୈତିକ ପରିବର୍ତ୍ତନସମୂହ କାର୍ଯ୍ୟକାରୀ ହୋଇଥିଲା ଖୁବ୍ ଧୀର ଗତିରେ । ଦୃଷ୍ଟାନ୍ତ ସ୍ୱରୂପ, କେନ୍ଦ୍ର ରୁଷିଆରେ ଭୂମି ମାହାଲଗୁଡ଼ିକୁ ସୋଭିଏତ୍ ଶାସନ ପ୍ରତିଷ୍ଠାର ପ୍ରଥମ ବର୍ଷରେ ଲୋପ କରି ଦିଆଗଲା ବେଳେ ମଧ୍ୟ ଏସିଆରେ ଏହି କାର୍ଯ୍ୟ ସଂପନ୍ନ ହୋଇଥିଲା ୧୯୨୦ ଦଶକର ଦ୍ୱିତୀୟାର୍ଦ୍ଧରେ ।

ଜାତୀୟ ଆଧାର ବା ରୂପ ଏବଂ ସମାଜବାଦୀ ବିକାଶର ପଦ୍ଧତିରେ ବହୁବିଧତା ସତ୍ତ୍ୱେ ମୁଖ୍ୟ ଏବଂ ନିଷ୍ପତ୍ତିମୂଳକ ବୈଶିଷ୍ଟ୍ୟଗୁଡ଼ିକ ଥିଲା ଅଭିନ୍ନ : ଶିଳ୍ପକରଣ, କୃଷକ ଖମାରଗୁଡ଼ିକର କୋଠକରଣ ଏବଂ ସାଂସ୍କୃତିକ ବିପ୍ଳବ ।

ଜାତୀୟ ଅର୍ଥନୀତିର ଯୋଜନାବଦ୍ଧ ବିକାଶ ଏବଂ ମଧ୍ୟ ରୁଷିଆ ତଥା ଜାତୀୟ ଉପାନ୍ତ ଅଞ୍ଚଳସମୂହର ଅର୍ଥନୈତିକ ସ୍ତରଗୁଡ଼ିକରେ ସମାନତା ଆଣିବା ଫଳରେ ଅଣରୁଷୀୟ ପ୍ରଜାତନ୍ତ୍ରସମୂହରେ ଶିଳ୍ପାୟନର ହାର ଅଧିକ ଉଚ୍ଚ ହୋଇଥିଲା । କେନ୍ଦ୍ରୀୟ ସରକାର ପୂର୍ବେ ପଶ୍ଚାଦ୍‌ପଦ ଥିବା ପ୍ରଜାତନ୍ତ୍ରଗୁଡ଼ିକର ଶିଳ୍ପାୟନ ପାଇଁ ତୁଳନାମୂଳକ ଭାବେ ଅଧିକ ପାଣ୍ଠି ବରାଦ କରିଥିଲେ ।

ଏହିସବୁ ନୀତି ଫଳରେ ସ୍ୱଳ୍ପକାଳ ମଧ୍ୟରେ ଅଣରୁଷୀୟ ପ୍ରଜାତନ୍ତ୍ରସମୂହ ଖୁବ୍ ବିକଶିତ ଶିଳ୍ପାଞ୍ଚଳରେ ପରିଣତ ହୋଇଥିଲେ, ରୁଷୀୟ ଜାତିମାନଙ୍କର ଭ୍ରାତୃପ୍ରତୀମ ଏବଂ ସହୃଦୟ ସହାୟତା ପାଇ । ଦୃଷ୍ଟାନ୍ତ ସ୍ୱରୂପ, ଉଜ୍‌ବେକ୍ ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ରରେ ପ୍ରଥମ ଦୁଇଟି ପଞ୍ଚବାର୍ଷିକ ଯୋଜନା କାଳରେ (୧୯୨୮-୧୯୩୭) ୩୮୦ଟି ନୂଆ କାରଖାନା ଓ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର ନିର୍ମିତ ହୋଇଥିଲା । ଏହି ଦୁଇ ପଞ୍ଚବାର୍ଷିକ ଯୋଜନା କାଳରେ ତୁର୍କମେନ୍ ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ର, ଯାହାର ବିପ୍ଳବ ପୂର୍ବରୁ କହିବାକୁ ଗଲେ କୌଣସି ଶିଳ୍ପ ନଥିଲା, ଏକ ଶିଳ୍ପପ୍ରଧାନ ପ୍ରଜାତନ୍ତ୍ରରେ ପରିଣତ ହୋଇଥିଲା । ଏହାର ମୋଟ ଉତ୍ପାଦନର ଦୁଇତୃତୀୟାଂଶ ଆସିଥିଲା ଶିଳ୍ପ କ୍ଷେତ୍ରରୁ, ଆଦି ।

କୃଷକ ଖମାରଗୁଡ଼ିକର କୋଠକରଣ ମଧ୍ୟ ସଂପନ୍ନ ହୋଇଥିଲା ଅଣରୁଷୀୟ ପ୍ରଜାତନ୍ତ୍ରସମୂହରେ ଏପରି ମାତ୍ରା ଆଉ ପଦ୍ଧତିରେ, ଯଦ୍ୱାରା ବିଶେଷ ଜାତୀୟ ବୈଶିଷ୍ଟ୍ୟରାଜିକୁ ବିଚାରକୁ ନିଆଯାଇଥିଲା । କେନ୍ଦ୍ରାଞ୍ଚଳଗୁଡ଼ିକରେ କୋଠଖମାରଗୁଡ଼ିକ ପ୍ରଧାନତଃ କୃଷି ଆର୍ଟେଲର ରୂପ ଗ୍ରହଣ କରିଥିଲା । ଏଥିରେ ସମସ୍ତ ଉତ୍ପାଦନର ମୁଖ୍ୟ ଉପକରଣସମୂହ – ଭୂମି, କୃଷି ଯନ୍ତ୍ରପାତି ଏବଂ ଚାଷୋପଯୋଗୀ ପଶୁଗୁଡ଼ିକୁ ସାମାଜିକୀକରଣ କରାଗଲା, ବ୍ୟକ୍ତିଗତ ପରିବାର ଅଧୀନରେ ଥିବା ଜମିଖଣ୍ଡଗୁଡ଼ିକୁ ହଳ କରିବାର ଛୋଟ ଛୋଟ ଯନ୍ତ୍ର, ଘରେ ପାଳିତ ପଶୁପକ୍ଷୀ ଆଦି କୃଷକମାନଙ୍କର ବ୍ୟକ୍ତିଗତ ସଂପତ୍ତି ହୋଇ ରହିଥିଲା । ଏହିସବୁ କୃଷି ଆର୍ଟେଲ ଥିଲା ସାମାଜିକୀକରଣର ନିମ୍ନ ମାନ ବିଶିଷ୍ଟ କୋଠଖମାରର ସହଜତର ରୂପ – ମିଳିତ ଭାବେ ଜମି ଚାଷ କରିବାର ସମିତି ବା ସଂଘ । କୃଷି ଆର୍ଟେଲକୁ ଉତ୍ତରଣ ପ୍ରକ୍ରିୟାଟା ମଧ୍ୟ ଚାଲିଥିଲା ଧୀରେ ଧୀରେ । ଏହି ସମୟରେ କୃଷକମାନଙ୍କୁ ଉଚ୍ଚତର ସମବାୟ ରୂପ ଦ୍ୱାରା କି ସୁବିଧା ମିଳେ, ସେ ସଂପର୍କରେ କୃଷକମାନଙ୍କ ମଧ୍ୟରେ ହୃଦବୋଧତା ସୃଷ୍ଟି କରାଯାଇଥିଲା । ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନାର ଶେଷ ଆଡ଼କୁ (୧୯୩୭) ସମସ୍ତ ପ୍ରଜାତନ୍ତ୍ରରେ କୋଠକରଣ କାର୍ଯ୍ୟ ମୂଳତଃ ସଂପୂର୍ଣ୍ଣ ହୋଇ ଯାଇଥିଲା ଏବଂ ଆଧୁନିକ ଯନ୍ତ୍ରସଜ୍ଜିତ ବଡ଼ ଧରଣର ସମାଜବାଦୀ କୃଷି ଗଠିତ ହୋଇଥିଲା ।

ଅଣରୁଷୀୟ ପ୍ରଜାତନ୍ତ୍ରସମୂହରେ ଜନସାଧାରଣଙ୍କର ଅଧିକ ପଶ୍ଚାତ୍‌ପଦତା ହେତୁ ଦ୍ରୁତତର ଗତିରେ ସାଂସ୍କୃତିକ ବିପ୍ଳବକୁ କାର୍ଯ୍ୟକାରୀ କରାଯାଇଥିଲା । ଏସବୁ ଅଞ୍ଚଳରେ

ବିପ୍ଳବ ପୂର୍ବରୁ ବହୁ ଅଧିଜାତି ପ୍ରାୟ ସଂପୂର୍ଣ୍ଣ ନିରକ୍ଷର ଥିଲେ । କିର୍‌ଘିଜ୍ ଏବଂ ତୁର୍କମେନ୍‌ମାନଙ୍କ ମଧ୍ୟରେ ସାକ୍ଷରଙ୍କ ସଂଖ୍ୟା ଥିଲା ଶତକଡ଼ା ଏକ ଭାଗରୁ କମ୍, ଉଜ୍‌ବେକ୍‌ମାନଙ୍କ ମଧ୍ୟରେ ୧.୫ ଭାଗ, କାଜାଖ୍‌ମାନଙ୍କ ମଧ୍ୟରେ ୨ ଭାଗ । ୪୦ଟିରୁ ଅଧିକ ଅଧିଜାତିଙ୍କର ଲିଖିତ ଭାଷା ମଧ୍ୟ ନଥିଲା । ୧୯୩୯ ମସିହାର ଜନଗଣନା ଅନୁଯାୟୀ ମଧ୍ୟ ଏସିଆର ପ୍ରଜାତନ୍ତ୍ରଗୁଡ଼ିକର ଜନସଂଖ୍ୟା ମଧ୍ୟରେ ୯ ବର୍ଷ ଏବଂ ତଦୂର୍ଦ୍ଧ୍ୱ ଲୋକଙ୍କ ମଧ୍ୟରୁ ଶତକଡ଼ା ୭୦ ଭାଗରୁ ଅଧିକ ଥିଲେ ସାକ୍ଷର । ସମସ୍ତ ଅଧିଜାତି ସେମାନଙ୍କର ଲିଖିତ ଭାଷା ଲାଭ କରିଥିଲେ ଏବଂ ଏହା ଫଳରେ ସେମାନଙ୍କର ସାଂସ୍କୃତିକ ବିପ୍ଳବ ଦ୍ରୁତତର ହୋଇଥିଲା ।

ବିପ୍ଳବ ପୂର୍ବରୁ ଏହିସବୁ ପ୍ରଜାତନ୍ତ୍ରରେ ଅତି କମ୍ ସଂଖ୍ୟକ ସ୍କୁଲ ଥିଲା ଏବଂ ସେସବୁଥିରେ ଖୁବ୍ କମ୍ ସଂଖ୍ୟକ ଛାତ୍ର ପଢ଼ୁଥିଲେ । ୧୯୧୪-୧୯୧୫ ମସିହାରେ ତୁର୍କମେନିଆରେ ମାତ୍ର ୭,୦୦୦ ଛାତ୍ର ସ୍କୁଲକୁ ଯାଉଥିଲେ । ସୋଭିଏତ୍ ଶାସନ ପ୍ରତିଷ୍ଠା ପରେ ଏହି ପ୍ରଜାତନ୍ତ୍ରରେ ବହୁ ସ୍କୁଲ ପ୍ରତିଷ୍ଠିତ ହେଲା ଏବଂ ୧୯୪୦ ମସିହାରେ ସେସବୁ ସ୍କୁଲରେ ୨୫୨,୦୦୦ ଛାତ୍ରଛାତ୍ରୀ ଅଧ୍ୟୟନ କରୁଥିଲେ (୩୬ ଗୁଣ ଅଧିକ) । ୧୯୧୪ ତୁଳନାରେ ୧୯୪୦ ମସିହାରେ ଉଜ୍‌ବେକିସ୍ତାନରେ ଛାତ୍ରଙ୍କ ସଂଖ୍ୟା ୭୫ ଗୁଣ ଏବଂ ତାଜିକିସ୍ତାନରେ ପ୍ରାୟ ୭୬୦ ଗୁଣ ବୃଦ୍ଧି ପାଇଥିଲା ।

ବିପ୍ଳବ ପୂର୍ବରୁ ୟୁକ୍ରେନ୍ ଛଡ଼ା ଏହିସବୁ ଅଞ୍ଚଳରେ ଉଚ୍ଚତର ଶିକ୍ଷା ପ୍ରତିଷ୍ଠାନ ନଥିଲା । ସୋଭିଏତ୍ ଶାସନ ପ୍ରତିଷ୍ଠା ପରେ ଅଣରୁଷୀୟ ଅଞ୍ଚଳରେ ଡଜନ୍ ଡଜନ ଉଚ୍ଚତର ଓ ମାଧ୍ୟମିକ ଶିକ୍ଷାନୁଷ୍ଠାନମାନ ମୁଣ୍ଡ ଟେକି ଉଠିଥିଲା ସେସବୁ ପ୍ରଜାତନ୍ତ୍ରଗୁଡ଼ିକରେ । ବହୁ ପ୍ରଜାତନ୍ତ୍ରରେ ଜାତୀୟ ବିଜ୍ଞାନ ଆକାଡେମି ପ୍ରତିଷ୍ଠିତ ହେଲା (୧୯୪୦ ଦଶକ ଓ ୧୯୫୦ ଦଶକରେ ସମସ୍ତ ଅଙ୍ଗ ପ୍ରଜାତନ୍ତ୍ରରେ ବିଜ୍ଞାନ ଆକାଡେମି ଏବଂ ଅଧିକାଂଶ ସ୍ୱାୟତ୍ତଶାସିତ ପ୍ରଜାତନ୍ତ୍ରରେ ସୋଭିଏତ୍ ୟୁନିଅନ୍ ବିଜ୍ଞାନ ଆକାଡେମିର ଶାଖାମାନ ପ୍ରତିଷ୍ଠିତ ହୋଇଥିଲା) ।

ଜାତୀୟ ସାହିତ୍ୟ ଏବଂ କଳାର ବିପୁଳ ଅଗ୍ରଗତି ଘଟିଲା । ବିପ୍ଳବ ପୂର୍ବରୁ କାଜାଖ୍‌ସ୍ତାନରେ ମୋଟେ ୨ଟି ଥିଏଟର ଏବଂ ୨୦ଟି ଚଳଚ୍ଚିତ୍ର ପ୍ରୋଜେକଟର ଥିଲା ବେଳେ ୧୯୪୦ ମସିହାରେ ଥିଲା ୪୦ଟି ଥିଏଟର ଓ ୧୨୬୮ ଚଳଚ୍ଚିତ୍ର ପ୍ରୋଜେକଟର । ବିପ୍ଳବ ପୂର୍ବରୁ ତୁର୍କମେନିଆ ଓ ଆର୍ମେନିଆରେ ଜାତୀୟ ଥିଏଟର ନଥିଲା ବେଳେ ୧୯୪୦ ମସିହାରେ ଏ ଦୁଇଟି ପ୍ରଜାତନ୍ତ୍ରରେ ଯଥାକ୍ରମେ ୧୪ଟି ଏବଂ ୨୭ ଥିଏଟର ପ୍ରତିଷ୍ଠିତ ହୋଇଥିଲା ।

ବିପ୍ଳବ ପୂର୍ବରୁ କିର୍‌ଘିଜିଆ, କାଜାଖ୍‌ସ୍ତାନ, ତାଜିକିସ୍ତାନ ଓ ଆର୍ମେନିଆରେ କୌଣସି ମାତୃମଙ୍ଗଳ କେନ୍ଦ୍ର, ଶିଶୁସଦନ ବା ମାତୃଚିକିତ୍ସା ବା ଶିଶୁଚିକିତ୍ସା ପାଇଁ ପରାମର୍ଶ ପାଇଁ କ୍ଲିନିକ୍‌ଟିଏ ନଥିଲା ବେଳେ ୧୯୪୦ ମସିହାରେ ଏସବୁ ପ୍ରଜାତନ୍ତ୍ରରେ

ଜାଲ ଭଳି ମାତୃମଙ୍ଗଳ କେନ୍ଦ୍ର, ଶିଶୁସଦନ, ପରାମର୍ଶଦାତା ଚିକିତ୍ସାଳୟ ଏବଂ ଅନ୍ୟାନ୍ୟ ଶିଶୁ ତଥା ଅନ୍ୟାନ୍ୟ ସ୍ୱାସ୍ଥ୍ୟ କେନ୍ଦ୍ରମାନ ବିଛେଇ ହୋଇ ଯାଇଥିଲା । ସମସ୍ତେ ବିନା ମୂଲ୍ୟରେ ଚିକିତ୍ସା ଲାଭ କରିଥିଲେ । ୧୯୧୪ ମସିହାରେ ଆଜରବୈଜାନରେ ମାତ୍ର ୨୯୧ଜଣ ଡାକ୍ତର କାର୍ଯ୍ୟ କରୁଥିଲା ବେଳେ ୧୯୪୦ ମସିହାରେ ୩,୦୮୩ ଜଣ ଡାକ୍ତର, ଉଜ୍‌ବେକିସ୍ତାନରେ – ୧୨୮ ଓ ୨,୮୧୮, ତାଜିକିସ୍ତାନରେ ୧୩ଜଣ ଥିଲା ବେଳେ ୫୮୯ଜଣ ଯଥାକ୍ରମେ କାର୍ଯ୍ୟରତ ଥିଲେ । ଚିକିତ୍ସା ବ୍ୟବସ୍ଥାର ବ୍ୟାପକ ଉନ୍ନତି ଫଳରେ ଶିଶୁ ତଥା ବୟସ୍କମାନଙ୍କ ମଧ୍ୟରେ ମୃତ୍ୟୁ ହାର ଅନେକ ପରିମାଣରେ କମିଯିବା ସଙ୍ଗେ ସଙ୍ଗେ ହାରାହାରି ଆୟୁଷ୍କାଳ ବୃଦ୍ଧି ପାଇଥିଲା ।

ପୂର୍ବେ ନିପୀଡ଼ିତ ଜାତିମାନଙ୍କ ମଧ୍ୟରେ ସମାଜବାଦ ଆଣିଥିଲା ସ୍ୱାଧୀନତା, ସମାନତା, କଲ୍ୟାଣ ଏବଂ ସ୍ୱାସ୍ଥ୍ୟ ।

ସମାଜବାଦୀ ବିପ୍ଳବର ମୁଖ୍ୟ ଲକ୍ଷ୍ୟକୁ ସଂକ୍ଷେପରେ ନିମ୍ନମତେ ବ୍ୟାଖ୍ୟା କରାଯାଇ ପାରେ : ଶ୍ରମଜୀବୀ ଲୋକଙ୍କ ଜୀବନକୁ ମୁକ୍ତ, ସମୃଦ୍ଧିଶାଳୀ, ଚିତାକର୍ଷକ ଆଉ ସୁଖମୟ କରିବା । ସମାଜବାଦର ଆଦର୍ଶ ହେଲା, "ଶ୍ରମଜୀବୀ ଲୋକଙ୍କ ପାଇଁ ସବୁ କିଛି" । ସମାଜବାଦ ନିର୍ମାଣ ଫଳରେ ରୁଷିଆର ଜାତିମାନେ କେବଳ ରାଜନୈତିକ ସ୍ୱାଧୀନତା ଲାଭ କଲେ ନାହିଁ, ପ୍ରକୃତ ବୈଷୟିକ ଏବଂ ବୌଦ୍ଧିକ ସୁଯୋଗ ଲାଭ କଲେ । ଏହା ଫଳରେ ସେମାନଙ୍କ ଜୀବନଧାରଣର ମାନ ବହୁ ଦିଗରୁ ଉନ୍ନତ ହେଲା ।

ଇତିପୂର୍ବରୁ ଉଲ୍ଲେଖ କରାଯାଇଛି ଯେ, ସମାଜବାଦୀ ବିପ୍ଳବର ୪ର୍ଥ ଦିନରେ ୮ ଘଣ୍ଟିଆ କର୍ମଦିବସ (୧୮ ବର୍ଷରୁ କମ୍ ଲୋକଙ୍କ ପାଇଁ ୬ ଘଣ୍ଟିଆ) ପ୍ରବର୍ତ୍ତନ ସମେତ ସବେତନ ବାର୍ଷିକ ଛୁଟି, ଅସୁସ୍ଥତା ଏବଂ ବେକାରି ସାମାଜିକ ଭତ୍ତା ରାଷ୍ଟ୍ର ଓ ନିୟୋଗକର୍ତ୍ତାଙ୍କ ଦ୍ୱାରା ପ୍ରଦାନ କରାଗଲା । ୧୬ ବର୍ଷରୁ କମ୍ ଲୋକଙ୍କୁ କର୍ମରେ ନିଯୁକ୍ତ କରିବାକୁ ରାଷ୍ଟ୍ର ତରଫରୁ ନିଷିଦ୍ଧ କରାଗଲା ଏବଂ ସ୍ତ୍ରୀ ଆଉ ପୁରୁଷଙ୍କ ପାଇଁ ସମାନ ବେତନ ପ୍ରବର୍ତ୍ତନ କରାଗଲା । ବିପ୍ଳବ ପୂର୍ବରୁ ବସ୍ତି, କୁଡ଼ିଆ ଏବଂ କାଠ ବାରାକରେ ବାସ କରୁଥିବା ଲକ୍ଷ ଲକ୍ଷ ଶ୍ରମିକ ପରିବାରକୁ ସଂସ୍ଥାନ କରାଗଲା ପୂର୍ବେ ବୁର୍ଜୁଆମାନଙ୍କ ଅଧୀନରେ ଥିବା ଆରାମପ୍ରଦ ଗୃହରେ । ହସ୍‌ପାତାଳ, କେମିଷ୍ଟଙ୍କ ଦୋକାନ, ସ୍ୱାସ୍ଥ୍ୟ ନିବାସଗୁଡ଼ିକୁ ସୋଭିଏତ୍ ରାଷ୍ଟ୍ର ତରଫରୁ ଜାତୀୟକରଣ କରାଗଲା ଏବଂ ସମସ୍ତ ଦେଶବାସୀଙ୍କୁ ମାଗଣାରେ ଦକ୍ଷ ଚିକିତ୍ସା ବ୍ୟବସ୍ଥା ଯୋଗାଇ ଦିଆଗଲା ।

ବିପ୍ଳବ ବିଶେଷ କରି କୃଷକମାନଙ୍କ ପାଇଁ ଅଧିକ ସୁବିଧା ଆଣି ଦେଇଥିଲା । ୧୯୧୯ ମସିହାରେ ଲେନିନ୍ ସଠିକ ଭାବେ କହିଥିଲେ, "ସାମଗ୍ରିକ ଭାବେ କୃଷକମାନେ ହିଁ ପ୍ରଥମେ ଲାଭବାନ ହେବେ, ସବୁଠାରୁ ଅଧିକ ଲାଭବାନ ହେବେ, ସର୍ବହରା ଏକନାୟକତ୍ୱରୁ ତତ୍‌କ୍ଷଣାତ୍ ଲାଭବାନ ହେବେ । ରୁଷିଆର କୃଷକମାନେ ଭୂସ୍ୱାମୀ ଆଉ

ପୁଞ୍ଜିପତିମାନଙ୍କ ଅଧୀନରେ ଲୋକ ଉପାସରେ ସଢ଼ି ଆସିଛନ୍ତି । ଆମ ଇତିହାସର ସୁଦୀର୍ଘ ଶତାବ୍ଦୀ ଶତାବ୍ଦୀ ଧରି କୃଷକମାନେ କେବେ ନିଜ ପାଇଁ ଖଟି ନାହାନ୍ତି : ପୁଞ୍ଜିପତିମାନଙ୍କ ପାଇଁ , ସହର ତଥା ରପ୍ତାନି ପାଇଁ ନିୟୁତ ନିୟୁତ ଟନ୍ ଖାଦ୍ୟଶସ୍ୟ ତୋଳି ଦେଇ ସେମାନେ ଉପାସରେ ଦିନ କାଟି ଆସିଛନ୍ତି । ସର୍ବହରାର ଏକନାୟକତ୍ୱରେ କୃଷକ ପ୍ରଥମ ଥର ପାଇଁ ନିଜ ନିମିତ୍ତ ସେ କାମ କରୁଛି ଏବଂ ସହରର ବାସିନ୍ଦାମାନଙ୍କ ଅପେକ୍ଷା ଭଲରେ ଖାଉଛି । ପ୍ରଥମ ଥର ପାଇଁ କୃଷକମାନେ ସ୍ୱାଧୀନତା କ'ଣ ଅନୁଭବ କରୁଛନ୍ତି — ଖାଇବାକୁ ସ୍ୱାଧୀନତା , କ୍ଷୁଧାର କବଳରୁ ସ୍ୱାଧୀନତା ସେମାନେ ପାଇଛନ୍ତି ।"

ଦେଶର ଶିଳ୍ପାୟନ , କୃଷିର କୋଠକରଣ ଲୋକଙ୍କ ଜୀବନଧାରଣ ମାନରେ ଉଲ୍ଲେଖନୀୟ ଅଭିବୃଦ୍ଧି ଘଟାଇଛି ।

ମଣିଷ ଦ୍ୱାରା ମଣିଷର ଶୋଷଣର ସଂପୂର୍ଣ୍ଣ ଏବଂ ଚୂଡ଼ାନ୍ତ ବିଲୋପ ସାଧନ ହେଲା ଶ୍ରମଜୀବୀ ଜଣସାଧାରଣଙ୍କ ଅବସ୍ଥାନର ମୌଳିକ ଉନ୍ନତିର ଲକ୍ଷଣୀୟ ସୂଚନା ସ୍ୱରୂପ । ସୋଭିଏତ୍ ୟୁନିଅନ୍‌ରେ ଶ୍ରମଜୀବୀ ଲୋକେ ମୁକ୍ତ ହେଲେ , ନିଜ ପାଇଁ ସାମଗ୍ରିକ ଭାବେ ସମାଜ ପାଇଁ ଶ୍ରମ କଲେ , ବ୍ୟକ୍ତିବିଶେଷ ଶୋଷଣକାରୀମାନଙ୍କ ପାଇଁ ଶ୍ରମ କଲେ ନାହିଁ । ସୋଭିଏତ୍ ଜନସାଧାରଣଙ୍କର ଆଉ ଏକ ବଡ଼ ସାଫଲ୍ୟ ହେଲା , ବେକାରିର ସଂପୂର୍ଣ୍ଣ ଆଉ ଚୂଡ଼ାନ୍ତ ବିଲୋପ ସାଧନ । ୧୯୨୯ ଏପ୍ରିଲ ମାସରେ ସୋଭିଏତ୍ ୟୁନିଅନ୍‌ରେ ଥିଲେ ୧.୭ ନିୟୁତ ବେକାର । ବିପୁଳ ଶିଳ୍ପାୟନ ଫଳରେ ସମସ୍ତ ବେକାର ଲୋକେ ୧୯୩୧ ମସିହାରେ ଚାକିରି ପାଇଗଲେ । ତା'ପରଠାରୁ ସୋଭିଏତ୍ ୟୁନିଅନ୍‌ରେ ଆଉ କେବେ କେହି ବେକାର ହୋଇ ରହି ନାହାନ୍ତି ।

ଜାତୀୟ ଆୟର ନିୟମିତ ଅଭିବୃଦ୍ଧି ହେଲା ସୋଭିଏତ୍ ଲୋକଙ୍କ ବୈଷୟିକ କଲ୍ୟାଣର ଅଭିବୃଦ୍ଧିର ମୂଳ ଉତ୍ସ ସ୍ୱରୂପ । ୧୯୧୩ ତୁଳନାରେ ୧୯୪୦ର ଜାତୀୟ ଆୟ ୬ ଗୁଣ ଅଧିକ ହୋଇ ପାରିଥିଲା । ସୋଭିଏତ୍ ୟୁନିଅନ୍‌ରେ ଆଉ କୌଣସି ଶୋଷକ ନଥିବାରୁ ସମଗ୍ର ଜାତୀୟ ଆୟ ଶ୍ରମଜୀବୀ ଜନସାଧାରଣଙ୍କ ସ୍ୱାର୍ଥରେ ଏହା ବଣ୍ଟିତ ହୋଇଥିଲା । ଶ୍ରମଜୀବୀମାନେ ମଜୁରି ଆକାରରେ ଏହି ଆୟର ତିନିଚତୁର୍ଥାଂଶ ପାଉଥିଲେ । ଆଉ ଏକଚତୁର୍ଥାଂଶ ବ୍ୟୟ ହେଉଥିଲା ଜାତୀୟ ଅର୍ଥନୀତିରେ ପୁଞ୍ଜି ବିନିଯୋଗ , ଶିକ୍ଷା , ସ୍ୱାସ୍ଥ୍ୟ , ସାମାଜିକ ନିରାପତ୍ତା , ଗୃହନିର୍ମାଣ , ପ୍ରତିରକ୍ଷା ଏବଂ ଅନ୍ୟାନ୍ୟ କ୍ଷେତ୍ରରେ ।

ଜାତୀୟ ଆୟର ଅଭିବୃଦ୍ଧି ସାଥେ ସାଥେ ଶ୍ରମଜୀବୀ ଜନସାଧାରଣଙ୍କ ପ୍ରକୃତ ଆୟରେ ମଧ୍ୟ ଅଭିବୃଦ୍ଧି ଘଟିଥିଲା । ସେସବୁ ଆୟର ଅନ୍ତର୍ଭୁକ୍ତ ଥିଲା : ବ୍ୟକ୍ତିଗତ ମଜୁରି , ସାମାଜିକ ନିରାପତ୍ତା ଦାଦନରୁ ପ୍ରାପ୍ୟ , ବିଭିନ୍ନ ସୁବିଧାରାଜି , ପେନ୍‌ସନ , ବୃତ୍ତି , ସବେତନ ଛୁଟି , ବିନା ଖର୍ଚ୍ଚରେ ଶିକ୍ଷା ଲାଭ , ଚିକିତ୍ସା , ବିନା ଖର୍ଚ୍ଚରେ ଏବଂ ସ୍ୱଳ୍ପ ଖର୍ଚ୍ଚରେ ସ୍ୱାସ୍ଥ୍ୟ ନିବାସରେ ଅବସ୍ଥାନ , ବାସଗୃହର ସ୍ୱଳ୍ପ ଭଡ଼ା , ନଗରପାଳିକାରୁ ପ୍ରାପ୍ତ ସୁବିଧା ସୁଯୋଗ ଆଦି । ବିପ୍ଳବ ପୂର୍ବରୁ ରୁଷିଆରେ ଶ୍ରମିକମାନଙ୍କ ପାରିବାରିକ ଆୟରୁ

ଘରଭଡ଼ା ଏବଂ ନଗର ପାଳିକା ସେବାଦି ବାବଦକୁ ପ୍ରଦତ୍ତ ଅର୍ଥ ମିଶି ପ୍ରାୟ ଶତକଡ଼ା ୨୦ ଭାଗ ପର୍ଯ୍ୟନ୍ତ, ବେଳେ ବେଳେ ୩୦ ଭାଗ ପର୍ଯ୍ୟନ୍ତ ଗ୍ରାସି ଯାଉଥିଲା । ସୋଭିଏତ୍ ଶାସନ ଅମଳରେ] ଏହି ସଂଖ୍ୟା କମି ଯାଇଥିଲା ୫ରୁ ୬ଗୁଣ ପର୍ଯ୍ୟନ୍ତ । ପ୍ରତିବର୍ଷ ରାଷ୍ଟ୍ର ପକ୍ଷରୁ ଶ୍ରମଜୀବୀ ଜନସାଧାରଣଙ୍କୁ ସାମାଜିକ ବିମା, ପେନ୍‌ସନ, ସାମାଜିକ ନିରାପତ୍ତା, ଅଧିକ ଶିଶୁ ଥିବା ଜନନୀଙ୍କ ଭତ୍ତା ଆକାରରେ ଅଧିକରୁ ଅଧିକ ପ୍ରଦାନ କଲା ।

୧୯୨୮ ମସିହାରେ ଏହିସବୁ ବାବଦକୁ ରାଷ୍ଟ୍ର ୨୦୦ କୋଟି ରୁବଲ ଖର୍ଚ୍ଚ କରୁଥିଲା ବେଳେ ୧୯୪୦ ମସିହାରେ ୪୧୦୦ କୋଟି ରୁବଲ ଖର୍ଚ୍ଚ କରିଥିଲା ।

ସମାଜବାଦର ଆଉ ଏକ ସାଫଲ୍ୟ ହେଲା ବିନା ବ୍ୟୟରେ ଚିକିତ୍ସା ବ୍ୟବସ୍ଥା । ୧୯୧୩ ମସିହାରେ ଦେଶରେ ମାତ୍ର ୨୩,୦୦୦ ଡାକ୍ତର ଥିଲା ବେଳେ ୧୯୪୦ ମସିହାରେ ପ୍ରାୟ ୧୪୨,୦୦୦ ଡାକ୍ତର (ଦନ୍ତ ଚିକିତ୍ସକଙ୍କ ଛଡ଼ା) ଥିଲେ । ଜାର୍‌ଶାସିତ ରୁଷିଆରେ ପ୍ରତି ୧୦ ହଜାର ଲୋକଙ୍କ ପାଇଁ ଜଣେ ଡାକ୍ତର ଥିଲା ବେଳେ ୧୯୪୦ ମସିହାରେ ୭ଜଣ ଥିଲେ । ୧୯୧୩ ମସିହାରେ ହସ୍‌ପାତାଳମାନଙ୍କରେ ରୋଗୀ ଶଯ୍ୟା ସଂଖ୍ୟା ୨୦୭,୦୦୦ ଥିଲା ବେଳେ ୧୯୪୦ ମସିହାରେ ଏହି ସଂଖ୍ୟାଟି ବୃଦ୍ଧି ପାଇଥିଲା ୭୯୧,୦୦୦କୁ (ସାମରିକ ହସ୍‌ପାତାଳର ଶଯ୍ୟା ସଂଖ୍ୟାକୁ ବାଦ୍ ଦେଇ) । ଅସୁସ୍ଥ ହେଲେ ଶିଳ୍ପ ଶ୍ରମିକ ଏବଂ ଅଫିସ୍ କର୍ମଚାରୀମାନେ, ଘରେ ବିନା ବ୍ୟୟରେ ଚିକିତ୍ସା ଏବଂ ହସ୍‌ପାତାଳରେ ବିନା ବ୍ୟୟରେ ଚିକିତ୍ସା ଓ ଖାଦ୍ୟ ସମେତ, ସବେତନ ଅସୁସ୍ଥକାଳୀନ ଅବକାଶ ଭତ୍ତା ପାଉଥିଲେ । ଏହି ଭତ୍ତାର ପରିମାଣ ହେଲା ସେମାନଙ୍କ ମଜୁରିର ଶତକଡ଼ା ୯୦ ଭାଗ । କାର୍ଯ୍ୟ କ୍ଷେତ୍ରରେ ଆଘାତ ପାଇ କେଉଁ ସାମୟିକ ଭାବେ ପଙ୍ଗୁ ହୋଇ ପଡ଼ିଲେ ବା ବେଉଷାଜନିତ କେହି ପଙ୍ଗୁ ହୋଇଗଲେ ଏହି ଭତ୍ତାର ପରିମାଣ ବେତନ ସହିତ ସମାନ ହୁଏ ।

ସୋଭିଏତ୍ ଶାସନ ମା ଏବଂ ଶିଶୁମାନଙ୍କ ପାଇଁ ବିପୁଳ ଧ୍ୟାନ ଦେଇଥିଲା । ଦେଶ ସାରା ଜାଲ ଭଳି ବିଛେଇ ଦିଆଯାଇଥିଲା ମାତୃମଙ୍ଗଳ କେନ୍ଦ୍ର ଆଉ ମାତୃ ମଙ୍ଗଳ ପରାମର୍ଶ କ୍ଲିନିକ୍‌ମାନ । ଏସବୁ ପିଲା ଜନ୍ମ ପୂର୍ବରୁ ଏବଂ ପରେ ମାମାନଙ୍କୁ ବିନା ବ୍ୟୟରେ ଚିକିତ୍ସାଗତ ସାହାଯ୍ୟ ଯୋଗାଇ ଦେଉଥିଲେ । ସମସ୍ତ ନାରୀ ୪ ମାସ ପର୍ଯ୍ୟନ୍ତ ଗର୍ଭଧାରଣ ଏବଂ ଶିଶୁ ଜନ୍ମ ପାଇଁ ସବେତନ ଛୁଟି ପାଇଲେ । କୌଣସି କ୍ଷେତ୍ରରେ ଏକାଧିକ ସନ୍ତାନ ଜନ୍ମ କଲେ କିମ୍ବା କଷ୍ଟକର ପ୍ରସବ ହେଲେ, ଡାକ୍ତରଙ୍କ ପରାମର୍ଶ ଅନୁଯାୟୀ ଏହି ଛୁଟିର ପରିମାଣକୁ ବଢ଼ାଇ ଦିଆଯାଏ । ତିନୋଟି କିମ୍ବା ତଦୁର୍ଦ୍ଧ୍ୱ ସନ୍ତାନର ମାମାନେ ଚତୁର୍ଥ ଏବଂ ପରବର୍ତ୍ତୀ ଶିଶୁ ପ୍ରସବ ପାଇଁ ଏକ ଭତ୍ତା ପାଇଥାନ୍ତି । ତୃତୀୟ ଏବଂ ତା ପରବର୍ତ୍ତୀ ସନ୍ତାନ ପାଇଁ ଏକ ମାସିକ ରାଷ୍ଟ୍ରୀୟ ଭତ୍ତା ମିଳିଥାଏ । ଶ୍ରମଜୀବୀ

ମହିଳାମାନଙ୍କ ପାଇଁ ରାଷ୍ଟ୍ର ଦ୍ୱାରା ବିପୁଳ ସଂଖ୍ୟକ କ୍ରିସେ ଆଉ ଶିଶୁ ସଦନମାନ ଗଠିତ ହୋଇଥିଲା ।

ସମାଜବାଦ ଶ୍ରମଜୀବୀ ଜନସାଧାରଣଙ୍କୁ ନିରାପତ୍ତା ପ୍ରଦାନ କରିଥିଲା ।

ସମାଜବାଦର ବିକାଶ ପ୍ରକ୍ରିୟା ମଧ୍ୟରେ ଉଦ୍‌ଭବ ଘଟିଥିଲା ନୂଆ ମଣିଷ । ଏହି ମଣିଷର ଲକ୍ଷ୍ୟ ଆଉ ତା ଜୀବନର ଅର୍ଥ ହେଲା ସମାଜର ସେବା କରିବା । ସୋଭିଏତ ବ୍ୟବସ୍ଥା ଲୋକଙ୍କୁ ନୂତନ ନୈତିକତାବୋଧ ଆଣି ଦେଲା । ନୂତନ ସୋଭିଏତ୍ ମଣିଷର ବିଶେଷ ଲକ୍ଷ୍ୟ ହେଲା – ସମାଜବାଦର ଆଦର୍ଶ ପ୍ରତି ଆନୁଗତ୍ୟ, ଲୋକଙ୍କ ଉପରେ ଆସ୍ଥା, ଦେଶପ୍ରେମ, ଶାନ୍ତି ପାଇଁ ଅଭିଳାଷ, ସାହସ ଏବଂ ବୀରତ୍ୱ, ଦୃଢ଼ତା, ଯୌଥତା ଏବଂ ବ୍ୟାପକ ସାଂସ୍କୃତିକ ଆଭିମୁଖ୍ୟ ।

ସୋଭିଏତ୍ ଜନସାଧାରଣଙ୍କର ଦର୍ଶନୀୟ ବୈଶିଷ୍ଟ୍ୟର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ଦେଖିବାକୁ ମିଳିଥିଲା "ଚେଲ୍ୟୁସ୍କିନ୍" ଅଭିଯାନ ଏବଂ ଏହାର ଉଦ୍ଧାର ମଧ୍ୟରେ । ୧୯୩୩, ଜୁଲାଇ ୧୨ ତାରିଖ ଦିନ ବିଖ୍ୟାତ ବିଜ୍ଞାନୀ ଓ.ଓ୍ୱାଇ. ସ୍ମିଦ୍‌ତଙ୍କ ନେତୃତ୍ୱରେ ଲେନିନ୍‌ଗ୍ରାଦ୍‌ରୁ ଏକ ଆବିଷ୍କାରକ ଦଳ, "ଚେଲ୍ୟୁସ୍କିନ୍" ନାମକ ବିରାଟ ଏକ ଜାହାଜରେ ଉତ୍ତରାଞ୍ଚଳକୁ ଯାତ୍ରା କରିଥିଲେ । ଜାହାଜଟି ବରଫାବୃତ ଜଳ ମଧ୍ୟରେ ଯାତ୍ରା କରିବା ପାଇଁ ଉପଯୁକ୍ତ ଥିଲା । ଏହି ଆବିଷ୍କାର ଅଭିଯାନର ଲକ୍ଷ୍ୟ ଥିଲା ମୁର୍‌ମାନ୍‌ସ୍କରୁ ଉତ୍ତର ସାଗର ଦେଇ ବେରିଂ ପ୍ରଣାଳୀକୁ ଯାତ୍ରା କରିବା । କିନ୍ତୁ ଉତ୍ତର ମହାସାଗରରେ ବରଫ ଏତେ ଜମାଟ ବାନ୍ଧି ଗଲା ଯେ, ଯାତ୍ରା କରିବା କଠିନ ହୋଇ ପଡ଼ିଲା – ସେପ୍‌ଟେମ୍ବର ମାସରେ "ଚେଲ୍ୟୁସ୍କିନ୍" ବରଫ ଘେର ମଧ୍ୟରେ ଅଟକି ପଡ଼ିଲା । ବରଫର ଚାପରେ ଜାହାଜଟି ଫାଟି ଯାଇ ୧୯୩୪, ଫେବୃଆରୀ ୧୩ ତାରିଖ ଦିନ ବୁଡ଼ିଗଲା । ଜାହାଜରେ ଥିବା ନାରୀ ଓ ଶିଶୁ ସମେତ ଅଭିଯାତ୍ରୀଙ୍କୁ ଅବିଳମ୍ବେ ସଂଗଠିତ ଭାବେ ବରଫ ଉପରକୁ କାଢ଼ି ଅଣାଯାଇଥିଲା ଏବଂ ଜାହାଜରେ ଥିବା ଖାଦ୍ୟ, ଜାଳେଣି, ତମ୍ବୁ ଆଦି ଯୋଗାଇ ଦିଆଗଲା । କେବଳ ମାତ୍ର ଗୋଟିଏ ଲୋକର ମୃତ୍ୟୁ ଘଟିଥିଲା । ସେ ଥିଲା ଜଣେ ଜାହାଜ ଚାଳକ ।

ଏହି ଭାବେ ଉତ୍ତର ସାଗର ଉପରେ, ମେରୁ ରାତ୍ରିର ଅନ୍ଧକାର ମଧ୍ୟରେ ଦେଖାଦେଇଥିଲା ଏକ ବରଫ ଶିବିର – "ସ୍ମିଦ୍‌ତଙ୍କ ଶିବିର" – ଏବଂ ଦୁଇ ମାସ କାଳ ଏହି ସୋଭିଏତ୍ ନାଗରିକମାନେ ସେଥିରେ ବାସ କରିଥିଲେ ଓ କାର୍ଯ୍ୟ କରିଥିଲେ । କଠୋର ପ୍ରତିକୂଳ ଅବସ୍ଥା ମଧ୍ୟରେ ସେମାନେ ଅସାଧାରଣ ସାହସ, ଚମତ୍କାର ସାଂଗଠନିକ ଶୃଙ୍ଖଳାବୋଧ ଏବଂ ଯୌଥ ମନୋଭାବ ପ୍ରଦର୍ଶନ କରିଥିଲେ । ଶିବିର ମଧ୍ୟରେ ଗବେଷଣା କାର୍ଯ୍ୟ ଦିନକ ପାଇଁ ବନ୍ଦ ହୋଇ ନଥିଲା ।

ଏକ ବିଶେଷ ସରକାରୀ କମିସନଙ୍କ ନିର୍ଦ୍ଦେଶନାରେ ସେମାନଙ୍କ ଉଦ୍ଧାର କରିବାର

କାର୍ଯ୍ୟ ପରିଗ୍ରହିତ ହୋଇଥିଲା । ସେମାନଙ୍କୁ ରକ୍ଷା କରିବା ପାଇଁ ପଠାଯାଇଥିଲା ବ୍ୟୋମଯାନ, ବରଫ ତାଡ଼ନୀଯନ୍ତ୍ର ଏବଂ ବରଫ ଉପରେ ଚାଲିଲା ଭଳି ଗାଡ଼ି । ଅକଥନୀୟ ପ୍ରତିକୂଳତାକୁ ଅତିକ୍ରମ କରି ସାତଜଣ ସୋଭିଏତ୍ ବୈମାନିକ – ଏମ୍. ଭୋଦୋପ୍ୟାନୋଭ୍, ଆଇ. ଦୋରୋନିନ୍, ଏନ୍. କାମାନିନ୍, ଏସ୍. ଲେଭାନେଭ୍ସ୍କି, ଏ. ଲ୍ୟାପିଦେଭ୍ସ୍କି, ଭି. ମୋଲ୍ଲୋକୋଭ୍ ଏବଂ ଏମ୍. ସ୍ଲେପ୍‌ନିଓଭ୍ ଛଅ ଦିନ ମଧ୍ୟରେ "ସ୍ମିଦ୍‌ତ ଶିବିରର" ସମସ୍ତ ଅଧିବାସୀଙ୍କୁ ବ୍ୟୋମଯାନ ସାହାଯ୍ୟରେ ଉଦ୍ଧାର କରିଥିଲେ । ବୈମାନିକମାନଙ୍କର ଏହି ଐତିହାସିକ ଦୁଃସାହସିକ କାର୍ଯ୍ୟକୁ ଉଚ୍ଚ ତାରିଫ୍ କରି ସୋଭିଏତ୍ ରାଷ୍ଟ୍ର ସେମାନଙ୍କୁ ସୋଭିଏତ୍ ୟୁନିଅନ୍‌ର ବୀର ପଦବୀରେ ଭୂଷିତ କରିଥିଲା ।

ସୋଭିଏତ୍ ୟୁନିଅନ୍‌ର ବୀରମାନଙ୍କ ସଂଖ୍ୟା ବୃଦ୍ଧି ପାଇବାକୁ ଲାଗିଲା । ୧୯୩୭ ମସିହାରେ ଏହି ଉପାଧିରେ ଭୂଷିତ କରାଯାଇଥିଲା ପ୍ରଖ୍ୟାତ ସୋଭିଏତ୍ ବୈମାନିକ – ଭାଲେରି ଚ୍‌କାଲୋଭ୍, ଆଲେକ୍‌ଜାଣ୍ଡାର ବେଲ୍ୟାକୋଭ୍ ଏବଂ ଆଲେକ୍‌ଜାଣ୍ଡାର ବାଇଦୁକୋଭ୍‌ଙ୍କୁ । ଏମାନେ ଏକ "ଏନ୍.ଟି-୨୫" ବ୍ୟୋମଯାନରେ ବସି ମସ୍କୋରୁ ଆମେରିକାକୁ ୬୨ ଘଣ୍ଟା ବ୍ୟାପୀ ଅଭୂତପୂର୍ବ ଯାତ୍ରା କରିଥିଲେ । ୧୯୩୮ରେ ସୋଭିଏତ୍ ୟୁନିଅନ୍‌ର ବୀର ଉପାଧି ଲାଭ କରିଥିଲେ ପ୍ରଖ୍ୟାତ ଉତ୍ତର ମେରୁ ଆବିଷ୍କାରକ – ଇଭାନ୍ ପାପାନିନ୍, ଅର୍ଣ୍ଣଷ୍ଟ କ୍ରେନ୍‌କେଲ, ୟେଭ୍‌ଗେନି ଫିଓଦୋରୋଭ୍ ଏବଂ ପିଓତର ଶିର୍‌ଶୋଭ୍ । ସେମାନେ ଏକ ଭାସମାନ ବିଶାଳ ବରଫ ଖଣ୍ଡ ଉପରେ ବସି ୨୭୪ ଦିନ ବ୍ୟାପୀ ଉତ୍ତର ମେରୁ ଅଞ୍ଚଳରେ ବୈଜ୍ଞାନିକ ପର୍ଯ୍ୟବେକ୍ଷଣ ଚଳାଇଥିଲେ । ୧୯୩୮, ସେପ୍‌ଟେମ୍ବର ମାସରେ ନାରୀ ବୈମାନିକ ଭାଲେନ୍ତିନା ଗ୍ରିଜୋଦୁବୋଭା, ପୋଲିନା ଓସିପେଙ୍କୋ ଏବଂ ମାରିନା ରାସ୍‌କୋଭା ୫୯୦୮ କିଲୋମିଟର ଦୈର୍ଘ୍ୟ ଏକ ଅବିରାମ ବୀରତ୍ୱପୂର୍ଣ୍ଣ ଉଡ୍‌ଡୟନ କରିଥିଲେ । ରାଷ୍ଟ୍ର ତରଫରୁ ସେମାନଙ୍କୁ ସୋଭିଏତ୍ ୟୁନିଅନ୍‌ର ବୀର ଉପାଧି ପ୍ରଦାନ କରାଯାଇଥିଲା ।

ସମାଜବାଦର ବିଜୟ ଫଳରେ ସୋଭିଏତ୍ ୟୁନିଅନ୍‌ରେ ସାମାଜିକ-ରାଜନୈତିକ ବ୍ୟବସ୍ଥାକୁ ଆଉରି ଗଣତାନ୍ତ୍ରିକ କରାଗଲା ଏବଂ ସାମୟିକ ଭାବେ ଗଣତନ୍ତ୍ରର ସୀମିତକରଣକୁ ଯାହା ଆବଶ୍ୟକ ହୋଇଥିଲା, ଦେଶରେ ଶୋଷିତ ଶ୍ରେଣୀମାନେ ଥିବାରୁ ଏବଂ ତୀବ୍ର ଶ୍ରେଣୀ ସଂଗ୍ରାମ ଚାଲିଥିବାରୁ, ଉଠାଇ ଦିଆଗଲା ।

ସମାଜବାଦୀ ଗଣତନ୍ତ୍ରକୁ ଆଇନଗତ ରୂପ ଦିଆଗଲା ୧୯୩୬ ସମ୍ବିଧାନରେ । ଏହି ସମ୍ବିଧାନର ଖସଡ଼ା ରଚନା କରିଥିଲେ ଏକ ବିଶେଷ ସମ୍ବିଧାନ ସଂକ୍ରାନ୍ତ କମିସନ । ଏହାକୁ ପ୍ରକାଶ କରାଯାଇଥିଲା ସମସ୍ତ ଜନସାଧାରଣଙ୍କ ଦ୍ୱାରା ଆଲୋଚିତ ହେବା ପାଇଁ ଏବଂ ଏହି ଆଲୋଚନା ଚାଲିଥିଲା ଛଅ ମାସ ଧରି ଏବଂ ଏଥିରେ ୫ କୋଟି ଲୋକ ଅଂଶଗ୍ରହଣ କରିଥିଲେ । ଇତିହାସରେ ଏପରି ଭାବେ କୌଣସି ରାଷ୍ଟ୍ରୀୟ ସମ୍ବିଧାନକୁ

ବ୍ୟାଖ୍ୟା କରିବାରେ ଲୋକେ କେବେ ଅଂଶଗ୍ରହଣ କରି ନଥିଲେ । ସୋଭିଏତ୍ ଲୋକେ ଆଗ୍ରହର ସହିତ ଚିଠା ସମ୍ବିଧାନକୁ ଗ୍ରହଣ କରିଥିଲେ । ଏବଂ ଏଥି ସାଥେ ସାଥେ ଆଲୋଚନା ବେଳେ ଏହି ଚିଠାରେ ବହୁ ସଂଶୋଧନ, ସଂଯୋଜନ ଏବଂ ପରିବର୍ତ୍ତନ ପ୍ରସ୍ତାବ କରାଯାଇଥିଲା । ସେସବୁ ମଧ୍ୟରୁ ଅଧିକାଂଶକୁ ଚୂଡ଼ାନ୍ତ ଭାବେ ରୂପ ଦେଲା ବେଳେ ଗ୍ରହଣ କରାଯାଇଥିଲା । ୧୯୩୬, ଡିସେମ୍ବର ୫ ତାରିଖ ଦିନ ସୋଭିଏତ୍ ୟୁନିଅନ୍‌ର ସୋଭିଏତ୍‌ସମୂହର କଂଗ୍ରେସରେ ଏହି ସମ୍ବିଧାନ ଗୃହୀତ ହୋଇଥିଲା ।

ନୂତନ ସମ୍ବିଧାନରେ ସମାଜବାଦର ମୌଳିକ ନୀତିରାଜିକୁ ଆନୁଷ୍ଠାନିକ ରୂପ ପ୍ରଦାନ କରାଯାଇଥିଲା । ସମ୍ବିଧାନର ପ୍ରଥମ ଧାରାରେ କୁହାଯାଇଥିଲା : "ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ର ସଂଘ ହେଉଛି ଶ୍ରମିକ ଓ କୃଷକମାନଙ୍କର ଏକ ସମାଜବାଦୀ ରାଷ୍ଟ୍ର ।" ଏହାର ରାଜନୈତିକ ଭିତ୍ତି ହେଲା କ୍ଷମତାର ସର୍ବୋଚ୍ଚ ସଂସ୍ଥା, ସୋଭିଏତ୍ ୟୁନିଅନ୍‌ର ସର୍ବୋଚ୍ଚ ସୋଭିଏତ୍ ଠାରୁ ଆରମ୍ଭ କରି ଶ୍ରମଜୀବୀ ଜନସାଧାରଣଙ୍କ ଜନପ୍ରତିନିଧିବୃନ୍ଦର ସ୍ଥାନୀୟ ସୋଭିଏତ୍‌ସମୂହ । ଏହାର ଅର୍ଥନୈତିକ ଭିତ୍ତି ହେଲା ସମାଜବାଦୀ ଅର୍ଥନୈତିକ ବ୍ୟବସ୍ଥା, ଉତ୍ପାଦନର ଉପାୟ ଉପକରଣ ଉପରେ ସମାଜବାଦୀ ମାଲିକାନା ଏବଂ ଅର୍ଥନୀତିର ଯୋଜନାବଦ୍ଧ ପରିଚାଳନା ।

୧୯୩୬ର ସମ୍ବିଧାନ ଶ୍ରମକୁ ପ୍ରତ୍ୟେକ ସକ୍ଷମ ନାଗରିକଙ୍କର କର୍ତ୍ତବ୍ୟ ଆଉ ସମ୍ମାନର ବିଷୟ ବୋଲି ଘୋଷଣା କରି ସମାଜବାଦର ମୌଳିକ ନୀତିକୁ ସୂତ୍ରବଦ୍ଧ କରିଥିଲା : "ପ୍ରତ୍ୟେକ ଠାରୁ କ୍ଷମତା ଅନୁଯାୟୀ ଏବଂ ପ୍ରତ୍ୟେକକୁ ତା'ର କାର୍ଯ୍ୟ ଅନୁଯାୟୀ" । ସୋଭିଏତ୍ ୟୁନିଅନ୍‌ର ସମ୍ବିଧାନ ନାଗରିକମାନଙ୍କୁ କାର୍ଯ୍ୟ, ଶିକ୍ଷା, ବିଶ୍ରାମ, ବୃଦ୍ଧ ବୟସ, ରୋଗ ଏବଂ ଅକର୍ମଣ୍ୟତା କ୍ଷେତ୍ରରେ ବୈଷୟିକ ନିରାପତ୍ତା ଲାଭ କରିବାର ଅଧିକାର ପ୍ରଦାନ କରିଥିଲା । ସମସ୍ତ କାର୍ଯ୍ୟକଳାପ କ୍ଷେତ୍ରରେ ପୁରୁଷମାନଙ୍କ ସହିତ ନାରୀମାନେ ସମାନ ଅଧିକାର ଲାଭ କଲେ, ଅର୍ଥାତ୍, ଜାତି ବର୍ଣ୍ଣ ନିର୍ବିଶେଷରେ ସମସ୍ତ ନାଗରିକଙ୍କର ସମାନତାକୁ ଆଇନ୍ ଦ୍ୱାରା ସୁରକ୍ଷିତ କରାଗଲା : ଅର୍ଥାତ୍, ନାଗରିକମାନେ ବ୍ୟକ୍ତିତ୍ୱ, ଗୃହ, ପତ୍ରାଳାପର ଗୋପନତା ଏବଂ ଗଣତାନ୍ତ୍ରିକ ସ୍ୱାଧୀନତା — କହିବାର ସ୍ୱାଧୀନତା, ସମ୍ବାଦପତ୍ର, ସମାବେଶ, ଶୋଭାଯାତ୍ରା, ବିକ୍ଷୋଭର ଏବଂ ସାଧାରଣ ସଂଗଠନରେ ଯୁକ୍ତ ହେବାର ଅଧିକାର ଲାଭ କଲେ ।

ନାଗରିକମାନଙ୍କ ପାଇଁ କେତେକ କର୍ତ୍ତବ୍ୟ ମଧ୍ୟ ସନ୍ନିବିଷ୍ଟ ହୋଇଥିଲା ସମ୍ବିଧାନରେ : ସମ୍ବିଧାନକୁ ସମ୍ମାନ ଦେଖାଇବା, ଆଇନ୍‌କୁ ମାନିବା, କାର୍ଯ୍ୟ କ୍ଷେତ୍ରରେ ଶୃଙ୍ଖଳା ପ୍ରଦର୍ଶନ କରିବା, ସର୍ବସାଧାରଣଙ୍କ କାର୍ଯ୍ୟ ପ୍ରତି ସାଧୁତାପୂର୍ଣ୍ଣ ଆଭିମୁଖ୍ୟ ଗ୍ରହଣ କରିବା, ସମାଜବାଦୀ ଗୋଷ୍ଠୀ ଜୀବନର ଅଧିକାର ପ୍ରତି ସମ୍ମାନ ଦେଖାଇବା, ସମାଜବାଦୀ ସଂପତ୍ତିକୁ ସୁରକ୍ଷିତ ଏବଂ ସମୃଦ୍ଧ କରିବା ଏବଂ ଆବଶ୍ୟକ ପଡ଼ିଲେ ଦେଶକୁ ରକ୍ଷା କରିବା ।

୧୯୩୬ର ସମ୍ବିଧାନ ମଧ୍ୟ ସୋଭିଏତ ନିର୍ବାଚନ ବ୍ୟବସ୍ଥାର ଗଣତାନ୍ତ୍ରିକ ଚରିତ୍ରକୁ ଲିପିବଦ୍ଧ କରିଥିଲା : ଗ୍ରାମ୍ୟ ଓ ସହର ସୋଭିଏତ୍ ଠାରୁ ଆରମ୍ଭ କରି ସର୍ବୋଚ୍ଚ ସୋଭିଏତ୍ ପର୍ଯ୍ୟନ୍ତ ଶ୍ରମଜୀବୀ ଲୋକଙ୍କର ପ୍ରତିନିଧିମାନଙ୍କ ସୋଭିଏତ୍‌ଗୁଡ଼ିକର ନିର୍ବାଚନ ସାର୍ବଜନୀନ, ସମାନ, ପ୍ରତ୍ୟକ୍ଷ ଏବଂ ଗୋପନ ଭୋଟ ଦାନ ଦ୍ୱାରା ସଂପନ୍ନ ହେବ । ପ୍ରତିନିଧିମାନେ ଭୋଟଦାତାମାନଙ୍କ ପ୍ରତି ସେମାନଙ୍କ କ୍ରିୟାକଳାପ ପାଇଁ ଦାୟୀ ରହିବେ ଏବଂ ଯେଉଁସବୁ ପ୍ରତିନିଧି ସେମାନଙ୍କ ବିଶ୍ୱାସଭାଜନ ହୋଇ ନରହିବେ, ସେମାନଙ୍କୁ ପ୍ରତ୍ୟାହାର କରି ନେବାର ଅଧିକାର ଭୋଟଦାତାମାନଙ୍କୁ ଦିଆଯାଇଥିଲା । ପୂର୍ବ ସମ୍ବିଧାନରେ ଥିବା କାର୍ଯ୍ୟ କରୁ ନଥିବା ଲୋକଙ୍କର ଭୋଟାଧିକାରର ସୀମିତତା ସମେତ ଗ୍ରାମାଞ୍ଚଳର ଭୋଟଦାତାମାନଙ୍କ ତୁଳନାରେ ସହରର ଭୋଟଦାତାମାନଙ୍କ ସୁଯୋଗରାଜିକୁ ଏହି ସମ୍ବିଧାନ ରଦ୍ଦ କରି ଦେଇଥିଲା ।

୧୯୩୭ ଡିସେମ୍ବର ୧୨ ତାରିଖ ଦିନ ସୋଭିଏତ୍ ଲୋକେ ସୋଭିଏତ୍ ୟୁନିଅନ୍‌ର ପ୍ରଥମ ସର୍ବୋଚ୍ଚ ସୋଭିଏତ୍‌କୁ ନୂତନ ନିର୍ବାଚନ ବ୍ୟବସ୍ଥାର ଭିତ୍ତିରେ ନିର୍ବାଚନ କରିଥିଲେ । କମ୍ୟୁନିଷ୍ଟମାନେ ବିପୁଳ ସଂଖ୍ୟକ ଅଣକମ୍ୟୁନିଷ୍ଟମାନଙ୍କ ସହିତ ଏକାଠି ମିଶି ସମସ୍ତ ନିର୍ବାଚନ ମଣ୍ଡଳୀରେ ନିର୍ବାଚନରେ ଅଂଶଗ୍ରହଣ କଲେ, ଏକତ୍ର ପ୍ରତିନିଧି ନିର୍ବାଚନ କଲେ । ଭୋଟଦାତାମାନଙ୍କ ମଧ୍ୟରୁ ଶତକଡ଼ା ପ୍ରାୟ ୯୭ ଭାଗ ନିର୍ବାଚନରେ ଭାଗ ନେଇଥିଲେ ଏବଂ ସେମାନଙ୍କ ମଧ୍ୟରୁ ୯୮.୭ ଶତାଂଶ କମ୍ୟୁନିଷ୍ଟ ଏବଂ ଅଣକମ୍ୟୁନିଷ୍ଟ ବ୍ଲକର ପ୍ରାର୍ଥୀମାନଙ୍କୁ ଭୋଟ ଦେଇଥିଲେ । ସୋଭିଏତ୍ ପାର୍ଲିଆମେଣ୍ଟକୁ ୬୨ଟି ଜାତି ଅଧିଜାତିରୁ ମୋଟ ୧୧୪୩ଜଣ ପ୍ରତିନିଧି ନିର୍ବାଚିତ ହୋଇଥିଲେ ଏବଂ ସେମାନଙ୍କ ମଧ୍ୟରୁ ଶତକଡ଼ା ୪୨ ଭାଗ ଥିଲେ ଶ୍ରମିକ, ୨୯.୫ ଭାଗ କୃଷକ ଏବଂ ୨୮.୫ ଭାଗ ବୁଦ୍ଧିଜୀବୀ ସଂପ୍ରଦାୟର ସଦସ୍ୟ । ସର୍ବୋଚ୍ଚ ସୋଭିଏତ୍‌ର ପ୍ରତିନିଧିମାନଙ୍କ ମଧ୍ୟରୁ ୧୮୭ଜଣ ହେଉଛନ୍ତି ନାରୀ । ୧୯୩୮ ମସିହାରେ ଅଙ୍ଗପ୍ରଜାତନ୍ତ୍ର ଏବଂ ସ୍ୱାୟତ୍ତଶାସିତ ପ୍ରଜାତନ୍ତ୍ରସମୂହର ସର୍ବୋଚ୍ଚ ସୋଭିଏତ୍‌କୁ ଏବଂ ୧୯୩୯ଟିରେ ଶ୍ରମଜୀବୀ ଜନସାଧାରଣଙ୍କ ପ୍ରତିନିଧିମାନଙ୍କ ସ୍ଥାନୀୟ ସୋଭିଏତ୍‌କୁ ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ଏହି ଭାବେ ନୂତନ ସମ୍ବିଧାନ, ବିଜୟମଣ୍ଡିତ ସମାଜବାଦର ସମ୍ବିଧାନକୁ ଭିତ୍ତି କରି କ୍ଷମତାର ବିଭିନ୍ନ ସଂସ୍ଥାକୁ ପୁନଃରୂପ ଦିଆଗଲା ।

# ୨୪ଶ ପରିଚ୍ଛେଦ

## ଦ୍ୱିତୀୟ ବିଶ୍ୱଯୁଦ୍ଧରେ ସୋଭିଏତ୍ ୟୁନିଅନ୍ ।
## ଫାସିବାଦର ପରାଜୟ

ସୋଭିଏତ୍ ଶାସନର ୨୦ ବର୍ଷର ଅବଧି ମଧ୍ୟରେ ସମାଜବାଦ ମୂଳତଃ ପ୍ରତିଷ୍ଠିତ ହୋଇଥିଲା । ସମସ୍ତ ଜନସାଧାରଣ ସେମାନଙ୍କ ଉତ୍ତେଜନାଭରା ଶ୍ରମର ସୁଫଳ ଦେଖି ଆନନ୍ଦ ବିଭୋର ହୋଇ ପଡ଼ିଥିଲେ । ଦେଶର ଜାତୀୟ ଅର୍ଥନୀତିର ଆଉରି ବିକାଶର ଏବଂ ଶ୍ରମଜୀବୀ ଜନସାଧାରଣଙ୍କ ଜୀବନଧାରଣ ମାନର ଅଭିବୃଦ୍ଧିର ସମ୍ଭାବନା ସୋଭିଏତ୍ ଲୋକଙ୍କୁ ଅନୁପ୍ରାଣିତ କରିଥିଲା ନୂଆ ନୂଆ ବିରାଟ ସମସ୍ୟାବଳୀକୁ ସମାଧାନ କରିବା ପାଇଁ । ୧୯୪୧, ଫେବୃଆରୀ ୨୨ ତାରିଖ ଦିନ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟି ଓ ସୋଭିଏତ୍ ସରକାର ରାଷ୍ଟ୍ରୀୟ ଯୋଜନା କମିସନକୁ ନିର୍ଦ୍ଦେଶ ଦେଇଥିଲେ ୧୫ ବର୍ଷ ପାଇଁ ସୋଭିଏତ୍ ୟୁନିଅନ୍‌ର ଜାତୀୟ ଅର୍ଥନୀତିର ବିକାଶ ନିମିତ୍ତ ଏକ ସାଧାରଣ ପରିକଳ୍ପନା ରଚନା କରିବାକୁ ଏବଂ ଏହି ସମ୍ବାଦଟି ସୋଭିଏତ୍ ଜନସାଧାରଣଙ୍କ ମଧ୍ୟରେ ବିରାଟ ଉତ୍ସାହ ସଞ୍ଚାର କରିଥିଲା । କିନ୍ତୁ ଏହାର ଠିକ୍ ଚାରି ମାସ ପରେ ୧୯୪୧, ଜୁନ୍ ୨୨ ତାରିଖ ଦିନ ସୋଭିଏତ୍ ଜନସାଧାରଣଙ୍କ ଶାନ୍ତିପୂର୍ଣ୍ଣ କାର୍ଯ୍ୟରେ ବାଧା ଦେଲା ନାଜି ଜର୍ମାନୀର ବିଶ୍ୱାସଘାତକତାପୂର୍ଣ୍ଣ ଆକ୍ରମଣ ।

ଜର୍ମାନ୍ ସାମ୍ରାଜ୍ୟବାଦୀମାନେ ଦୀର୍ଘ ଦିନ ଧରି ଦୁନିଆ ସାରା ଆଧିପତ୍ୟ ବିସ୍ତାର କରିବାର ସ୍ୱପ୍ନ ଦେଖି ଆସିଥିଲେ । ଏହି ଅଭିଳାଷ ବିଶେଷ ଭାବେ ପରିଷ୍କାର ଜଣାଗଲା ୧୯୩୩ ମସିହାରେ ହିଟଲର ନେତୃତ୍ୱରେ ନାଜି ପାର୍ଟି ଜର୍ମାନୀରେ କ୍ଷମତାକୁ ଆସିଲା ପରେ । ଏହା ଦ୍ୱାରା ସାମ୍ରାଜ୍ୟବାଦୀ ବୁର୍ଜୁଆମାନଙ୍କର ସର୍ବାପେକ୍ଷା ପ୍ରତିକ୍ରିୟାଶୀଳ ଏବଂ ଆକ୍ରମଣାତ୍ମକ ଗୋଷ୍ଠୀଗୁଡ଼ିକର ଇଚ୍ଛାନୁଯାୟୀ ଖୋଲା ସ୍ୱେଚ୍ଛାଚାରୀ ଆଉ ସନ୍ତ୍ରାସମୂଳକ ରାଜତ୍ୱ ପ୍ରତିଷ୍ଠିତ ହେଲା ଜର୍ମାନୀରେ । ୧୯୨୦ ଦଶକ ଓ ୧୯୩୦ ଦଶକରେ ବିଦେଶୀ ପୁଞ୍ଜି, ବିଶେଷ କରି ଆମେରିକା ଯୁକ୍ତ ରାଷ୍ଟ୍ର ଓ ବ୍ରିଟିଶ୍ ଏକଚାଟିଆମାନଙ୍କର ସହାୟତାରେ ପୁନର୍ଗଠିତ ସାମରିକ ଓ ଶିଳ୍ପଶକ୍ତିକୁ ଉପଯୋଗ କରି ନାଜି ଜର୍ମାନୀ ସୋଭିଏତ୍ ୟୁନିଅନ୍ ଆକ୍ରମଣ କଲା ବେଳକୁ ସମଗ୍ର ୟୁରୋପକୁ ଅଧିକାର କରି ନେଇଥିଲା ଏବଂ ଅଧିକୃତ ଦେଶମାନଙ୍କର ସମସ୍ତ ଅର୍ଥନୈତିକ ତଥା ଜନ ସମ୍ବଳ ତା'ର ଆଗ୍ରାସୀ ଲକ୍ଷ୍ୟ ହାସଲ ପାଇଁ କାର୍ଯ୍ୟରେ ଲାଗିଥିଲା ।

ପୃଥିବୀରେ ପ୍ରାଧାନ୍ୟ ବିସ୍ତାର କରିବା ପାଇଁ ଜର୍ମାନୀର ଅଗ୍ରଗତି ପଥରେ ବାଧା ହୋଇ ଛିଡ଼ା ହୋଇଥିଲା ସୋଭିଏତ୍ ୟୁନିଅନ୍ । ହିଟଲର ପ୍ରକାଶ୍ୟରେ ଘୋଷଣା କରିଥିଲା, "ବିଶାଳ ଜର୍ମାନ୍ ସାମ୍ରାଜ୍ୟ" ଗଢ଼ିବାକୁ ହେଲେ ନାଜିମାନଙ୍କୁ ପ୍ରଥମେ ସ୍ଲାଭ୍ ଜାତିମାନଙ୍କୁ—ରୁଷ୍, ପୋଲ୍, ଚେକ୍, ସ୍ଲୋଭାକ୍, ବୁଲଗାର, ୟୁକ୍ରେନୀୟ ଏବଂ ବେଲରୁଷୀୟମାନଙ୍କୁ ହଟେଇବାକୁ ବା ଧ୍ୱଂସ କରି ଦେବାକୁ ପଡ଼ିବ ।

୧୯୪୦ ମସିହା ଜୁଲାଇ ମାସରେ ହିଟ୍‌ଲର ଜର୍ମାନ୍ ପଦାତିକ ବାହିନୀର ସର୍ବାଧିନାୟକଙ୍କୁ ନିର୍ଦ୍ଦେଶ ଦେଇଥିଲା ସୋଭିଏତ୍ ୟୁନିଅନ୍ ବିରୁଦ୍ଧରେ ଯୁଦ୍ଧ ପାଇଁ ଏକ ଯୋଜନା ପ୍ରଣୟନ କରିବାକୁ ଏବଂ ସେଇ ବର୍ଷ ଡିସେମ୍ବର ୧୮ ତାରିଖ ଦିନ ଏହି ଯୋଜନାଟି ଅନୁମୋଦନ ଲାଭ କରିଥିଲା । ଏହାର ସାଙ୍କେତିକ ନାମ ହେଲା "କେସ୍ ବାର୍‌ବାରୋସା" । ଏହି ଯୋଜନାଟିରେ ସୋଭିଏତ୍ ୟୁନିଅନ୍ ବିରୁଦ୍ଧରେ ଏକ ଅଗ୍ରନକ ସର୍ବଗ୍ରାସୀ ଆକ୍ରମଣ କରି ଏହାର ପଶ୍ଚିମ ସୀମାନ୍ତରେ ଥିବା ସୋଭିଏତ୍ ସେନାବାହିନୀକୁ ଘେରାଉ ଏବଂ ନିଶେଷ କରି ସୋଭିଏତ୍ ୟୁନିଅନ୍ ମଧ୍ୟକୁ ଜର୍ମାନ୍ ସେନା ପ୍ରବେଶ କରି ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଅର୍ଥନୈତିକ ଏବଂ ରାଜନୈତିକ କେନ୍ଦ୍ରଗୁଡ଼ିକୁ—ମସ୍କୋ, ଲେନିନ୍‌ଗ୍ରାଦ୍, କିୟେଭ୍, ଆଦିକୁ ଦଖଲ କରି ନେବାର ବ୍ୟବସ୍ଥା ଥିଲା । ଏହି ଯୋଜନା ଅନୁଯାୟୀ ସୋଭିଏତ୍ ୟୁନିଅନ୍ ବିରୁଦ୍ଧରେ ଯୁଦ୍ଧକୁ ୬ରୁ ୮ ସପ୍ତାହ ମଧ୍ୟରେ ଶେଷ କରି ଦେବାର କଥା । ଏହା ଥିଲା ଏକ "ଝଟିକା ଆକ୍ରମଣର" ଯୋଜନା ।

ସୋଭିଏତ୍ ୟୁନିଅନ୍‌ର ସୀମାନ୍ତରେ ୧୯୦ଟି ସେନା ଡିଭିଜନ, ୩,୫୦୦ରୁ ଅଧିକ ଟ୍ୟାଙ୍କ୍, ୫,୦୦୦ ଆକ୍ରମଣକାରୀ ବ୍ୟୋମଯାନ, ୫୦,୦୦୦ କମାଣ ଏବଂ ମୋର୍ଟାର ସମାବେଶ କରି ୧୯୪୧, ଜୁନ୍ ୨୨ ତାରିଖ ବଡ଼ିଭୋରୁ ବାରେଣ୍ଟ୍ସ ସାଗରରୁ କୃଷ୍ଣ ସାଗର ପର୍ଯ୍ୟନ୍ତ ବିସ୍ତୃତ ସୋଭିଏତ୍ ସୀମାନ୍ତ ମଧ୍ୟକୁ ନାଜି ସେନାବାହିନୀ ପଶି ଆସିଥିଲେ ୧୯୩୯ ମସିହାରେ ଏ ଦୁଇ ଦେଶ ମଧ୍ୟରେ ସଂପାଦିତ ଅନାକ୍ରମଣ ଚୁକ୍ତିକୁ ଭଙ୍ଗ କରି ।

ତେବେ, ହିଟ୍‌ଲର ଏବଂ ତା'ର ପରାମର୍ଶଦାତାମାନଙ୍କ ହିସାବରେ ଭୁଲ ହୋଇ ଯାଇଥିଲା । ସୋଭିଏତ୍ ୟୁନିଅନ୍ ବିରୁଦ୍ଧରେ ଯୁଦ୍ଧ ଆରମ୍ଭ କରି ଦେଇ ସେମାନେ ନିଜର ମୃତ୍ୟୁ ପରଉଆନାରେ ଦସ୍ତଗତ କରିଥିଲେ । ସୋଭିଏତ୍ ୟୁନିଅନ୍‌ର ସୀମାନ୍ତର ପ୍ରଥମ ଯୁଦ୍ଧଗୁଡ଼ିକରେ ସୋଭିଏତ୍ ସୈନିକମାନେ ମହାନ୍ ଦେଶପ୍ରେମୀ ଯୁଦ୍ଧ ନାମରେ ଖ୍ୟାତ ଇତିହାସରେ ସୌର୍ଯ୍ୟର ଉଜ୍ଜ୍ୱଳ ପୃଷ୍ଠାଗୁଡ଼ିକ ଲେଖିଥିଲେ । ଏହି ଅଭିଜ୍ଞତାସଂପନ୍ନ ଏବଂ ପାଶବିକ ଶତ୍ରୁକୁ ସେମାନେ ଜଳ, ମୃତ୍ତିକା, ଆକାଶରେ ସର୍ବତ୍ର ମୁକାବିଲା କରିଥିଲେ ।

ସୀମାନ୍ତର ରକ୍ଷୀବାହିନୀଗୁଡ଼ିକ ଉପରେ ନାଜି ବାହିନୀ ପ୍ରଥମେ ଆକ୍ରମଣ କରିଥିଲା । ସୀମାନ୍ତରେ ଅବସ୍ଥିତ ବ୍ରେଷ୍ଟ ଦୁର୍ଗର ସୋଭିଏତ୍ ସୈନିକମାନେ ଅଭୂତପୂର୍ବ ବୀରତ୍ୱର ପରିଚୟ ଦେଇଥିଲେ । ଶତ୍ରୁ ସେନା ଦ୍ୱାରା ପରିବେଷ୍ଟିତ ହୋଇ ଏମାନେ

ଦୁର୍ଗଟିକୁ ମାସାଧିକ କାଳ ରକ୍ଷା କରିଥିଲେ । ମାତ୍ର ସ୍ୱଳ୍ପ ସଂଖ୍ୟକ ହେଲେ ମଧ୍ୟ ଏମାନେ ଶତ୍ରୁର ଦୁଇଟି ସେନା ଡିଭିଜନର ଗଭୀର କ୍ଷତି ଘଟାଇଥିଲେ । "ମରିବି ପଛେ, ଶତ୍ରୁ ଆଗରେ ମୁଣ୍ଡ ନୁଆଇ ବି ନାହିଁ । ଦେଶବାସୀଙ୍କୁ ଠାରୁ ବିଦାୟ ନେଉଛି । ଜୁଲାଇ ୨୦, ୧୯୪୧", – ଏହି କଥାଗୁଡ଼ିକୁ ଲେଖି ଯାଇଥିଲେ ବ୍ରେଷ୍ଟ ଦୁର୍ଗର ସର୍ବଶେଷ ରକ୍ଷୀମାନଙ୍କ ମଧ୍ୟରୁ ଜନୈକ ନାମ ଅଜଣା ବୀର ।

୧୯୪୧, ଜୁନ୍ ୨୬ ତାରିଖ ଦିନ ଦୁଃସାହସିକ ବୈମାନିକ ନିକୋଲାଇ ଗାଷ୍ଟେଲୋ ଏବଂ ତାଙ୍କର ତିନିଜଣ ସହକର୍ମୀ ଅଦ୍ଭୁତ ବୀରତ୍ୱର ପରିଚୟ ଦେଇଥିଲେ । ଗାଷ୍ଟେଲୋଙ୍କ ବିମାନଟି ଜର୍ମାନ୍ ସେନାବାହିନୀର ପଶ୍ଚାଦ୍‌ଭୂମିରେ ବୋମା ନିକ୍ଷେପ କରି ଫେରିଲା ବେଳେ ଏକ କମାଣ ଆଘାତ ଏଥିରେ ଲାଗି ବିମାନଟିରେ ନିଆଁ ଲାଗିଗଲା । ବିମାନ ଚାଳକମାନେ ପାରାଚ୍ୟୁଟ ସାହାଯ୍ୟରେ ତଳକୁ ଓହ୍ଲାଇ ପଡ଼ି ନିଜର ପ୍ରାଣ ରକ୍ଷା କରି ପାରିଥାନ୍ତେ ଯୁଦ୍ଧ ବନ୍ଦୀ ରୂପେ । କିନ୍ତୁ ଏହି ସୋଭିଏତ୍ ବୈମାନିକମାନେ ତାହା କରି ନଥିଲେ । ସେମାନେ ଜ୍ୱଳନ୍ତ ବିମାନଟିକୁ ଶତ୍ରୁର କେତେକ ଯାନ, ଟ୍ୟାଙ୍କ ଏବଂ ଲୌହ ରଥ ଉପରକୁ ଏପରି ଭାବେ ଖସାଇ ଆଣିଥିଲେ ଯେ, ଶତ୍ରୁ ପକ୍ଷର ବିପୁଳ କ୍ଷତି ଘଟିଥିଲା ।

ତେବେ ସୋଭିଏତ୍ ସୈନିକମାନଙ୍କର ବିପୁଳ ବୀରତ୍ୱ ସତ୍ତ୍ୱେ ସୋଭିଏତ୍ ସେନାବାହିନୀ ପକ୍ଷରେ ପ୍ରଥମ ଯୁଦ୍ଧଗୁଡ଼ିକ ସାଫଲ୍ୟ ମଣ୍ଡିତ ହୋଇ ପାରି ନଥିଲା । ସେମାନେ ପ୍ରଚୁର ଲୋକକ୍ଷୟ ଏବଂ ବୈଷୟିକ କ୍ଷତିର ସମ୍ମୁଖୀନ ହୋଇ ତୁମୂଳ ଯୁଦ୍ଧ ମଧ୍ୟ ଦେଇ ପଛ ଘୁଞ୍ଚା ଦେଇଥିଲେ । ଶତ୍ରୁର ଆକ୍ରମଣକାରୀ ସୈନ୍ୟଦଳଗୁଡ଼ିକ ପଶି ଆସିଥିଲେ ସୋଭିଏତ୍ ଭୂଖଣ୍ଡ ମଧ୍ୟକୁ । ଯେଉଁସବୁ ଅଞ୍ଚଳକୁ ସେମାନେ ଅସ୍ଥାୟୀ ଭାବେ ଦଖଲ କରି ନେଇଥିଲେ, ସେସବୁଥିରେ ସେମାନେ ନାରକୀୟ କାଣ୍ଡମାନ ଘଟାଇଥିଲେ । ନାରୀ, ଶିଶୁ ଓ ବୃଦ୍ଧମାନଙ୍କ ସମେତ ନିରୀହ ନାଗରିକମାନଙ୍କୁ ସେମାନେ ହତ୍ୟା କରିଥିଲେ । ଅସଂଖ୍ୟ ରେଳଗାଡ଼ିରେ ଭରି ସୋଭିଏତ୍ ବାଳକ ବାଳିକାମାନଙ୍କୁ ନାଜି ଜର୍ମାନୀକୁ ପ୍ରେରଣ କରାଯାଇଥିଲା କ୍ରୀତଦାସ ରୂପେ । ସୋଭିଏତ୍ ଜନସାଧାରଣଙ୍କ ଶ୍ରମରେ ସୃଷ୍ଟ ସମ୍ପଦରାଜିକୁ ଦଖଲକାରୀ ଶତ୍ରୁମାନେ ଲୁଣ୍ଠନ କରି ଜର୍ମାନୀକୁ ପଠାଇ ଦେଇଥିଲେ । ଦୁନିଆର ପ୍ରଥମ ସମାଜବାଦୀ ଦେଶ ଉପରେ ଭୟଙ୍କର ଏକ ବିପଦର କଳା ମେଘ ନଇଁ ଆସିଥିଲା ।

ଏପରି ଘଟିବା ପଛରେ କାରଣ କ'ଣ ?

ମୁଖ୍ୟ କାରଣଟି ହେଲା, ଜର୍ମାନୀ ପକ୍ଷରେ ଏକ ଅନୁକୂଳ ଅବସ୍ଥା ମଧ୍ୟରେ ଏହି ଯୁଦ୍ଧ ଆରମ୍ଭ ହୋଇଥିଲା । ସୋଭିଏତ୍ ୟୁନିଅନ୍ ଉପରେ ଆକ୍ରମଣ କଲା ବେଳକୁ ନାଜି ଜର୍ମାନୀ ଦୁଇ ବର୍ଷ ଧରି ୟୁରୋପରେ ଯୁଦ୍ଧ ଚଳାଇଥିଲା, ଏହାର ସଶସ୍ତ୍ର ସେନାବାହିନୀ ସଂପୂର୍ଣ୍ଣ ରୂପେ ତତ୍ପର ଥିଲେ ଏବଂ ବୃହଦାକାରରେ ଆକ୍ରମଣ କିପରି ଚଳାଇବାକୁ ହୁଏ,

ସେ ସଂପର୍କରେ ଅଭିଜ୍ଞତା ଲାଭ କରିଥିଲେ । ଆକ୍ରମଣର ଅନେକ ଦିନ ପୂର୍ବରୁ ଜର୍ମାନୀର ଅର୍ଥନୀତି, ସାମରିକ ଉତ୍ପାଦନ ଦିଗରେ ପରିଚାଳିତ ହୋଇ ଆସିଥିଲା । ୟୁରୋପର ପ୍ରାୟ ସମସ୍ତ ସମ୍ବଳ ତା'ର ହାତ ମୁଠାକୁ ଆସି ଯାଇଥିଲା । ଜର୍ମାନୀର ଆଉ ଏକ ସୁବିଧା ହେଲା, ତା'ର ଅନୁଗତ ମିତ୍ରବୃନ୍ଦ – ଇଟାଲୀ, ରୁମାନିଆ, ହଙ୍ଗେରୀ ଏବଂ ଫିନଲାଣ୍ଡ – ଏକତ୍ର ସୋଭିଏତ୍ ୟୁନିଅନ୍ ବିରୁଦ୍ଧରେ ଯୁଦ୍ଧ କରିଥିଲେ । ପଶ୍ଚିମ ପ୍ରାନ୍ତରେ ଫାସିଷ୍ଟମାନଙ୍କ ବିରୁଦ୍ଧରେ ଲାଲ ସେନାକୁ ଏକଲା ଯୁଦ୍ଧ କରିବାକୁ ପଡ଼ିଥିଲା ଏବଂ ତତ ସଙ୍ଗେ ସଙ୍ଗେ ଜାପାନ୍ ଆଉ ତୁର୍କୀର ସମ୍ଭାବ୍ୟ ଆକ୍ରମଣକୁ ରୋକିବା ଉଦ୍ଦେଶ୍ୟରେ ଏହାକୁ ସୋଭିଏତ୍ ଦୂର ପ୍ରାଚ୍ୟ ଆଉ ଟ୍ରାନସକକେସିଆରେ ବିପୁଳ ସଂଖ୍ୟକ ସୈନ୍ୟ ସମାବେଶ କରିବାକୁ ପଡ଼ିଥିଲା ।

ସୋଭିଏତ୍ ୟୁନିଅନ୍ ଯୁଦ୍ଧରେ ପ୍ରବେଶ କରିଥିଲା ତା'ର ସେନାବାହିନୀକୁ ସଞ୍ଚାଳିତ ନକରି; ଯୁଦ୍ଧ ମଧ୍ୟ ଦେଇ ତା'ର ସୈନ୍ୟମାନେ ସଞ୍ଚାଳିତ ହୋଇଥିଲେ । ଇତିପୂର୍ବରୁ ବିରାଟାକାରରେ ସୈନ୍ୟଚାଳନା କରିବାର ଅଭିଜ୍ଞତା ଲାଲ ସେନାର ନଥିଲା ଏବଂ ଏହି ଅଭିଜ୍ଞତା ଏହା ଲାଭ କରିଥିଲା ଯୁଦ୍ଧ ପରିଚାଳନା ମଧ୍ୟ ଦେଇ । ସୋଭିଏତ୍ ୟୁନିଅନ୍ ସେତେବେଳକୁ ସୋଭିଏତ୍ ବିଜ୍ଞାନୀମାନଙ୍କ ଦ୍ୱାରା ଡିଜାଇନ କରା ମାତ୍ର ପ୍ରଥମ ଶ୍ରେଣୀର ଟ୍ୟାଙ୍କ୍, ବ୍ୟୋମଯାନ, କମାଣ, ମୋର୍ଟାର ଏବଂ ସବ୍‌ମେସିନ୍‌ଗନ୍ ତିଆରି କରିବାକୁ ଆରମ୍ଭ କରିଥାଏ । ଯୁଦ୍ଧ ଚାଲିଥିବା କାଳରେ ସୋଭିଏତ୍ ଅର୍ଥନୀତିକୁ ସାମରିକ ଭିତ୍ତିରେ ପ୍ରତିଷ୍ଠା କରିବାକୁ ପଡ଼ିଲା । ସୋଭିଏତ୍ ୟୁନିଅନ୍ ବିରୁଦ୍ଧରେ ଜର୍ମାନୀର ଆକ୍ରମଣର ସମ୍ଭାବନା ସମୟ ବିଷୟରେ ମଧ୍ୟ ଗଣନା କରିବାରେ ଭୁଲ ରହି ଯାଇଥିଲା । ତେଣୁ ଅଚାନକ ଆକ୍ରମଣ ଫଳରେ ଜର୍ମାନୀକୁ ଅନେକ ସୁବିଧା ମିଳିଗଲା ।

ଏସବୁ ସତ୍ତ୍ୱେ, ଅଚାନକ ବିଶ୍ୱାସଘାତକ ଆକ୍ରମଣ ଫଳରେ ଜର୍ମାନୀକୁ ଯେଉଁସବୁ ଗୁରୁତ୍ୱପୂର୍ଣ୍ଣ ସୁଯୋଗ ମିଳିଗଲା, ତାହା ସୋଭିଏତ୍ ୟୁନିଅନ୍ ଭଳି ଏକ ମହାଶକ୍ତି ବିରୁଦ୍ଧରେ ଯୁଦ୍ଧର ଫଳାଫଳକୁ ଚୂଡ଼ାନ୍ତ ଭାବେ ପ୍ରଭାବିତ କରି ପାରି ନଥିଲା । ରଣାଙ୍ଗନର ସୋଭିଏତ୍ ପଶ୍ଚାଦ୍‌ଭାଗ ଯେ ସ୍ୱାଭାବିକ ଭାବେ ସୁଦୃଢ଼ ଥିଲା, ତା'ର ପ୍ରମାଣ ମିଳିଥିଲା ଯୁଦ୍ଧ ଆରମ୍ଭର ପ୍ରଥମ କେଇ ଦିନ ମଧ୍ୟରେ । ଯୁଦ୍ଧର ପ୍ରଥମ ପର୍ବରେ ବଡ଼ ଧରଣର ପରାଜୟସମୂହ ସୋଭିଏତ୍ ୟୁନିଅନ୍‌କୁ ଦୁର୍ବଳ କରି ଦେବା ପରିବର୍ତ୍ତେ ଶ୍ରମିକ ଓ କୃଷକମାନଙ୍କ ମଧ୍ୟରେ ସଂହତି ଏବଂ ସୋଭିଏତ୍ ୟୁନିଅନ୍‌ର ଜାତିମାନଙ୍କ ମଧ୍ୟରେ ବନ୍ଧୁତ୍ୱକୁ ସୁଦୃଢ଼ କରି ଦେଇଥିଲା । ଲାଲ ସେନାର ନୈତିକ ବଳ ନାଜି ସେନାବାହିନୀ ଠାରୁ ଅନେକ ବେଶି ଥିଲା; ସୋଭିଏତ୍ ସୈନିକମାନେ ଏକ ନ୍ୟାୟପୂର୍ଣ୍ଣ ଏବଂ ମୁକ୍ତି ଯୁଦ୍ଧରେ ଲଢ଼ୁଥିଲେ ଏବଂ ସେମାନଙ୍କ ସମାଜବାଦୀ ମାତୃଭୂମିକୁ ରକ୍ଷା କରିବା ପାଇଁ ସେମାନଙ୍କ ରକ୍ତ, ଜୀବନ ଦେବାକୁ ପଛେଇ ନଥିଲେ ।

ଶକ୍ତିଶାଳୀ ଯୋଜନାବଦ୍ଧ ସମାଜବାଦୀ ଅର୍ଥନୀତି ଉପରେ ନିର୍ଭର କରି ସୋଭିଏତ୍

ୟୁନିଅନ୍ ଶତ୍ରୁକୁ ପରାଜିତ କରିବା ପାଇଁ ସବୁକିଛି ଉତ୍ପାଦନ କରି ପାରିଥିଲା । ସୋଭିଏତ୍ ୟୁନିଅନ୍‌ର ଲକ୍ଷ୍ୟ ହେଲା ଶତ୍ରୁର ସାମୟିକ ସୁବିଧାରାଜିକୁ ଅକାମୀ କରି ଦେଇ ସୋଭିଏତ୍ ସମାଜବାଦୀ ବ୍ୟବସ୍ଥାର ଅଫୁରନ୍ତ ସୁବିଧାରାଜିକୁ ପୂର୍ଣ୍ଣ ଭାବେ ଉପଯୋଗ କରିବା । ଯୁଦ୍ଧର ପ୍ରଥମ ପର୍ବରେ କମ୍ୟୁନିଷ୍ଟ ପାର୍ଟି ତଥା ସୋଭିଏତ୍ ସରକାରର ଉଦ୍ୟମ ଏହି ଲକ୍ଷ୍ୟରେ ପରିଚାଳିତ ହୋଇଥିଲା ।

ଦେଶ ଉପରେ ଦାରୁଣ ବିପଦର ମେଘ ଝୁଲୁଛି ଏକଥା ବ୍ୟାପକ ଜନସାଧାରଣ ପରିଷ୍କାର ଭାବେ ହୃଦୟଙ୍ଗମ କରିଥିଲେ । କମ୍ୟୁନିଷ୍ଟ ପାର୍ଟି ଏବଂ ସୋଭିଏତ୍ ସରକାରଙ୍କ ଆହ୍ୱାନ କ୍ରମେ ସୋଭିଏତ୍ ଲୋକେ ମହାନ୍ ଦେଶପ୍ରେମୀ ଯୁଦ୍ଧରେ ଝାସ ଦେଇଥିଲେ ସୋଭିଏତ୍ ରାଷ୍ଟ୍ରକୁ ରକ୍ଷା କରିବା ପାଇଁ, ଯାହାକୁ ନାଜି ଜର୍ମାନୀ ଚାହୁଁଥିଲା ଧ୍ୱଂସ କରି ଦେବାକୁ, ନିଜର ଜୀବନ, ସ୍ୱାଧୀନତା ଆଉ ମୁକ୍ତିକୁ ରକ୍ଷା କରିବା ପାଇଁ । ଦେଶର ସମସ୍ତ ଶକ୍ତିକୁ ସଞ୍ଚାଳିତ କରିବା ଏବଂ ଦେଶକୁ ଏକ ସାମରିକ ଛାଉଣିରେ ପରିଣତ କରିବା ନିମିତ୍ତ ଜୁନ୍ ୩୦ ତାରିଖରେ ଜୋସେଫ୍ ଷ୍ଟାଲିନ୍‌ଙ୍କ ନେତୃତ୍ୱରେ ରାଷ୍ଟ୍ରୀୟ ପ୍ରତିରକ୍ଷା କମିଟି ଗଠିତ ହେଲା । ଷ୍ଟାଲିନ୍ ପରେ ସୋଭିଏତ୍ ସେନାବାହିନୀର ସର୍ବାଧିନାୟକ ରୂପେ ନିଯୁକ୍ତ ହୋଇଥିଲେ ।

ସର୍ବସାଧାରଣଙ୍କ ମାଲିକାନାଧୀନ କଳକାରଖାନାସମୂହ ଉପରେ ପ୍ରତିଷ୍ଠିତ ଦେଶର ଅର୍ଥନୀତି ଅଧିକାଂଶ ଶିଳ୍ପୋଦ୍ୟୋଗକୁ ସକ୍ଷମ କରିଥିଲା ଅଳ୍ପଦିନ ମଧ୍ୟରେ ରଣାଙ୍ଗନର ଆବଶ୍ୟକତା ମେଣ୍ଟାଇବାକୁ । ରଣାଙ୍ଗନର ନିକଟବର୍ତ୍ତୀ ଅଞ୍ଚଳରୁ ୧୯୪୧ ମସିହାରେ ୧୫୬୦ଟି ବଡ଼ ଧରଣର କାରଖାନାକୁ ପୂର୍ବାଞ୍ଚଳକୁ ହଟେଇ ନିଆଯାଇଥିଲା । ଏସବୁର ଯନ୍ତ୍ରପାତି ଏବଂ କର୍ମୀବାହିନୀକୁ ସ୍ଥାନାନ୍ତରିତ କରିବା ପାଇଁ ଆବଶ୍ୟକ ପଡ଼ିଥିଲା ପ୍ରାୟ ୧,୫ ନିୟୁତ ରେଳ ଡବା । ସର୍ବନିମ୍ନ ସମ୍ଭାବ୍ୟ ସମୟ ମଧ୍ୟରେ ସ୍ଥାନାନ୍ତରିତ ଶ୍ରମିକ ଏବଂ ଇଂଜିନିୟରମାନେ ସେସବୁ କାରଖାନାରେ ଉତ୍ପାଦନ ଆରମ୍ଭ କରି ରଣାଙ୍ଗନକୁ ଅସ୍ତ୍ରଶସ୍ତ୍ର ଯୋଗାଇ ଦେବାକୁ ବୀରତ୍ୱପୂର୍ଣ୍ଣ ଉଦ୍ୟମ କରିଥିଲେ ।

ରଣକ୍ଷେତ୍ରକୁ ଚାଲିଯାଇଥିବା ପୁରୁଷମାନଙ୍କ ସ୍ଥାନରେ କାର୍ଯ୍ୟ କରିବା ନିମିତ୍ତ ଲକ୍ଷ ଲକ୍ଷ ସ୍ତ୍ରୀଲୋକ କାରଖାନା ଆଉ ଅଫିସ୍‌ରେ ଯୋଗ ଦେଇଥିଲେ । ଅବିଳମ୍ବେ ସେମାନେ ସେମାନଙ୍କ ସ୍ୱାମୀ, ବାପା ଆଉ ଭାଇଙ୍କ କାର୍ଯ୍ୟକୁ ସଂପାଦନ କରିବାକୁ ଶିଖି ଯାଇଥିଲେ । ପେନ୍‌ସନ ପାଉଥିବା ଲୋକେ ଏବଂ ବାଳକମାନେ ମଧ୍ୟ କାରଖାନାରେ କାର୍ଯ୍ୟ କରିଥିଲେ ।

ଶ୍ରମିକମାନେ ଅନେକ ସମୟରେ ସେମାନଙ୍କ ଦୈନିକ କୋଟା ପୂରଣ କରିବା ସାଥେ ସାଥେ ରଣାଙ୍ଗନରେ ଯୁଦ୍ଧରତ ସହକର୍ମୀମାନଙ୍କ କୋଟା ପୂରଣ କରି ଦେଉଥିଲେ । ଲକ୍ଷ ଲକ୍ଷ ଶ୍ରମିକ ଏକାଧିକ ବେଉଷା ଶିକ୍ଷା କରିଥିଲେ । କାରଖାନାମାନଙ୍କରେ "ରଣାଙ୍ଗନ ଶ୍ରମିକଦଳ" ଗଠିତ ହୋଇଥିଲା, ଏମାନେ ଲକ୍ଷଣୀୟ ଭାବେ ଉତ୍ପାଦନ ଲକ୍ଷ୍ୟକୁ ପୂରଣ

କରୁଥିଲେ । ଜାତୀୟ ଅର୍ଥନୀତିର ସମସ୍ତ କ୍ଷେତ୍ରରେ ସମ୍ମାନସୂଚକ "ରଣାଙ୍ଗନ ଶ୍ରମିକଦଳ" ହେବା ପାଇଁ ଆନ୍ଦୋଳନରେ ଶ୍ରମିକମାନେ ଯୋଗ ଦେଇଥିଲେ । ପାଶବିକ ଶତ୍ରୁକୁ ପରାସ୍ତ କରିବା ନିମିତ୍ତ ନିସ୍ୱାର୍ଥ ଭାବେ କାର୍ଯ୍ୟ ଏବଂ ସଶସ୍ତ୍ର ସେନାବାହିନୀକୁ ସମସ୍ତ କିଛି ଯୋଗାଇ ଦେବାଟା ପ୍ରତ୍ୟେକ ଶ୍ରମିକର ଅଭିଳାଷ ଏବଂ ନାଗରିକ କର୍ତ୍ତବ୍ୟ ରୂପେ ବିଚାର କରାଗଲା । ଲୋକେ ଅକ୍ଳାନ୍ତ ଭାବେ ଦିନକୁ ୧୨-୧୪ ଘଣ୍ଟା ପର୍ଯ୍ୟନ୍ତ କାର୍ଯ୍ୟ କରୁଥିଲେ, ବେଳେ ବେଳେ କାରଖାନା ମଧ୍ୟରେ ଅନେକ ଦିନ ପର୍ଯ୍ୟନ୍ତ ରହି ଯାଉଥିଲେ । ଅନେକ ଘରୁ ତକିଆ ଏବଂ କମ୍ବଳ ଖଣ୍ଡେ ଖଣ୍ଡେ ଆଣି ସେଇଠି ଶୋଇ ଯାଉଥିଲେ ।

ସୋଭିଏତ୍ ୟୁନିଅନ୍‌ର କୃଷକମାନେ ମଧ୍ୟ ସେମାନଙ୍କ ଦେଶପ୍ରେମୀ କର୍ତ୍ତବ୍ୟ ନିଷ୍ଠାର ସହିତ ପାଳନ କରିଥିଲେ । ଯୁଦ୍ଧ କାଳରେ ବିପୁଳ ସଂଖ୍ୟକ ଲୋକ ଶକ୍ତି ଓ ଯନ୍ତ୍ରପାତି ରଣାଙ୍ଗନ ପାଇଁ କାର୍ଯ୍ୟ କରୁଥିଲା ବେଳେ ଏବଂ ଯୁଦ୍ଧକାଳୀନ କଠୋର ପରିସ୍ଥିତି ମଧ୍ୟରେ ୧୯୪୧ ମସିହାରେ କୃଷକମାନେ ସମସ୍ତ କୃଷି କାର୍ଯ୍ୟ ସଫଳତାର ସହିତ ସଂପନ୍ନ କରିଥିଲେ । ଏହା ସମ୍ଭବ ହୋଇଥିଲା କୋଠଖମାର ବ୍ୟବସ୍ଥା ଏବଂ ମିଳିତ ଶ୍ରମ ପାଇଁ । କୃଷକମାନେ ଫସଲ ଅମଳ କରିଥିଲେ, ପ୍ରାଚ୍ୟ ଅଞ୍ଚଳରେ ଫଳନ ଜମିର ପରିମାଣକୁ ଉଲ୍ଲେଖନୀୟ ଭାବେ ସଂପ୍ରସାରିତ କରିଥିଲେ ଏବଂ ରଣାଙ୍ଗନର ନିକଟବର୍ତ୍ତୀ ଅଞ୍ଚଳରୁ ବିରାଟ ବିରାଟ ପଶୁପକ୍ଷୀ ପଲଙ୍କୁ ସ୍ଥାନାନ୍ତରିତ କରିଥିଲେ ।

ବହୁବିଧ ଭାବେ ସୋଭିଏତ୍ ଦେଶପ୍ରେମ ପ୍ରକାଶ ପାଇଥିଲା । ସେସବୁ ମଧ୍ୟରୁ ଅନ୍ୟତମ ହେଲା ପ୍ରତିରକ୍ଷା ପାଣ୍ଠି ସଂଗଠିତ କରିବା । ସହର ତଥା ଗ୍ରାମାଞ୍ଚଳର ଶ୍ରମଜୀବୀମାନେ ସେମାନଙ୍କ ମଜୁରିର ଏକାଂଶ ପ୍ରତିରକ୍ଷା ପାଣ୍ଠିକୁ ଦେଇଥିଲେ ଏବଂ ରାଷ୍ଟ୍ରୀୟ ବଣ୍ଡ୍, ମୂଲ୍ୟବାନ ଜିନିଷପତ୍ର ଦାନ କରିଥିଲେ । ରଣାଙ୍ଗନରେ ଯୁଦ୍ଧରତ ସୈନିକମାନଙ୍କ ନିକଟକୁ ପାର୍ଶଲ ଆକାରରେ ଜିନିଷପତ୍ର ପଠାଉଥିଲେ ଏବଂ ଚିଠି ଲେଖି ଶତ୍ରୁ ବିରୁଦ୍ଧରେ ଅବିଚଳ ସଂଗ୍ରାମ କରି ଯିବାକୁ ଡାକରା ଦେଉଥିଲେ । ନାଜି ଆକ୍ରମଣକାରୀମାନଙ୍କୁ ପରାଜିତ କରିବାରେ ସେମାନଙ୍କର ଦୃଢ଼ ବିଶ୍ୱାସ ରହିଛି ବୋଲି ଏହିସବୁ ଚିଠିରେ ସେମାନେ ଲେଖୁଥିଲେ ।

ରଣାଙ୍ଗନର ସବୁଠାରୁ ବିପଦାପନ୍ନ ସ୍ଥାନକୁ କମ୍ୟୁନିଷ୍ଟ ପାର୍ଟି ଲକ୍ଷ ଲକ୍ଷ କମ୍ୟୁନିଷ୍ଟ ଓ ଯୁବ କମ୍ୟୁନିଷ୍ଟ ଲୀଗ୍‌ର ସଦସ୍ୟମାନଙ୍କୁ ପଠାଉଥିଲା । ୧୯୪୧ର ଶେଷରେ ୧.୩ ନିୟୁତ କମ୍ୟୁନିଷ୍ଟ ଓ ୨ ନିୟୁତ ଯୁବ କମ୍ୟୁନିଷ୍ଟ ସଦସ୍ୟ ଲାଲ ସେନାରେ ଯୁଦ୍ଧ କରୁଥିଲେ ।

ପ୍ରତ୍ୟେକ ସୋଭିଏତ୍ ଲୋକ ଭାବୁଥିଲେ, "ଆମେ ନ୍ୟାୟ ପାଇଁ ଲଢ଼ୁଛୁ, ଆମେ ଜୟୀ ହେବୁ ।" ତେଣୁ ପ୍ରତ୍ୟେକ ବିଜୟ ପାଇଁ ଅବଦାନ ରଖି ଚାଲିଥିଲେ ।

କ୍ରମଶଃ ଅଧିକରୁ ଅଧିକ ସୈନ୍ୟ ଆଉ ସାମଗ୍ରୀ ରଣାଙ୍ଗନକୁ ଯୋଗାଇ ଦିଆଗଲା । ସେମାନେ ଥିଲେ ଆଉରି ଭଲ ଭାବେ ତାଲିମ୍‌ପ୍ରାପ୍ତ, ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ । ରଣାଙ୍ଗନର ନିକଟବର୍ତ୍ତୀ ଗ୍ରାମ ଆଉ ସହର ଅଞ୍ଚଳମାନଙ୍କରେ ଏକ ଗଣ ସେନାବାହିନୀ ଗଠନ

କରାଯାଇଥିଲା । ଅଧିକୃତ ଅଞ୍ଚଳମାନଙ୍କରେ ଗୋପନ କମ୍ୟୁନିଷ୍ଟ ସଂଗଠନଗୁଡ଼ିକର ନେତୃତ୍ୱରେ ବ୍ୟାପକ ଗରିଲା ଆନ୍ଦୋଳନ ଆରମ୍ଭ ହୋଇ ଯାଇଥିଲା । ଲୋକେ ଏହିସବୁ ଗରିଲାମାନଙ୍କୁ ଲୋକଙ୍କ ପକ୍ଷରୁ ପ୍ରତିଶୋଧକାରୀ ବୋଲି କହୁଥିଲେ ଏବଂ ଏମାନେ ଜର୍ମାନ୍‌ମାନଙ୍କର ପଶ୍ଚାଦ୍‌ଭୂମିକୁ ଦୁର୍ବଳ କରୁଥିଲେ, ସେମାନଙ୍କ ଯୋଗାଯୋଗ ବ୍ୟବସ୍ଥାକୁ ଧ୍ୱଂସ କରି ଦେଉଥିଲେ ଏବଂ ଘୃଣିତ ଶତ୍ରୁମାନଙ୍କ ବିରୁଦ୍ଧରେ ଲଢ଼େଇ କରିବା ପାଇଁ ଲାଲ ସେନାକୁ ସାହାଯ୍ୟ କରୁଥିଲେ । "ଗରିଲା" ଶବ୍ଦଟି ଶୁଣିଲା କ୍ଷଣି ଜର୍ମାନ୍‌ମାନଙ୍କ ପିଳେଇ କଂପି ଉଠୁଥିଲା ।

ଯୁଦ୍ଧର ପ୍ରତିଟି ବର୍ଷ ଆଗେଇବା ସାଥେ ସାଥେ ଲାଲ ସେନା କ୍ରମଶଃ ଅଧିକରୁ ଅଧିକ ଇସ୍‌ପାତ ଭଳି ଶକ୍ତ ଏବଂ ପ୍ରତିଆଘାତ ହାଣିବାରେ ସୁଦକ୍ଷ ହୋଇ ଉଠିଲା । ଶତ୍ରୁ ଉପରେ ଏହା ହାଣି ଗ୍ଲଲିଲା ଦୃଢ଼ରୁ ଦୃଢ଼ତର ଆଘାତ, ଏହାର ଏହି ବିଜୟର ଉତ୍ସ ଥିଲା ରଣାଙ୍ଗନର ପଶ୍ଚାଦ୍‌ଭୂମିରେ ବଢ଼ି ଗ୍ଲଲିଥିବା ଶକ୍ତି : ପ୍ରତିଟି ମାସ ଗତ ହେବା ସଙ୍ଗେ ସଙ୍ଗେ ଲାଲ ସେନା ଯୁଦ୍ଧ ଚଳାଇବା ଓ ଶତ୍ରୁକୁ ପରାସ୍ତ କରିବା ପାଇଁ ଆବଶ୍ୟକ କରୁଥିବା ସବୁକିଛି ଯୋଗାଇ ଦେବା ।

ସୋଭିଏତ୍ ସମାଜବାଦୀ ଅର୍ଥନୀତିକ ବ୍ୟବସ୍ଥା ପକ୍ଷରେ ଯୁଦ୍ଧ ଥିଲା ଏକ ଅଗ୍ନିପରୀକ୍ଷା ଭଳି । ଏହି ବ୍ୟବସ୍ଥା ସେ ଅଗ୍ନିପରୀକ୍ଷାରେ ସଫଳତାର ସହିତ ଉତ୍ତୀର୍ଣ୍ଣ ହେଲା ଏବଂ କେବଳ ଶାନ୍ତିପୂର୍ଣ୍ଣ ସମୟରେ ବିକାଶ ପାଇଁ ଏହାର ବିପୁଳ ସମ୍ଭାବନା ନୁହେଁ, ଭୟଙ୍କର ଯୁଦ୍ଧକାଳରେ ଏହା ସାମରିକ ଆବଶ୍ୟକତା ସହିତ ଦ୍ରୁତତାର ସହିତ ନିଜକୁ ଖାପ ଖୁଆଇ ପାରେ ଏବଂ ପ୍ରତିରକ୍ଷା ପାଇଁ ଉତ୍ପାଦନ ବୃଦ୍ଧି କରି ପାରେ ବୋଲି ପ୍ରମାଣ କଲା ।

ଯୁଦ୍ଧର ପ୍ରଥମ ବର୍ଷ ଥିଲା ସୋଭିଏତ୍ ରାଷ୍ଟ୍ର ଓ ତା'ର ଅର୍ଥନୈତିକ ବ୍ୟବସ୍ଥା ପକ୍ଷରେ ଅତୀବ କଷ୍ଟକର ସମୟ ଏବଂ ଭୟଙ୍କର ପରୀକ୍ଷାର ବର୍ଷ । ଶତ୍ରୁ ସକ୍ଷମ ହୋଇଥିଲା ସୋଭିଏତ୍ ୟୁନିଅନ୍‌ର ଏକ ବିରାଟ ଅଞ୍ଚଳକୁ ଦଖଲ କରି ନେବାରେ । ଏହିସବୁ ଅଞ୍ଚଳରେ ଯୁଦ୍ଧ ପୂର୍ବରୁ ୮ କୋଟି ୮୦ ଲକ୍ଷ ଲୋକ ବାସ କରୁଥିଲେ, ଦେଶର ଶିଳ୍ପୋତ୍ପାଦନର ଶତକଡ଼ା ୪୬ ଭାଗ ଉତ୍ପାଦିତ ହେଉଥିଲା, ଶତକଡ଼ା ୪୭ ଭାଗ କୃଷି ଅଞ୍ଚଳ ଏବଂ ଅର୍ଦ୍ଧେକ ପଶୁପକ୍ଷୀ ଥିଲେ । ୧୯୪୧ ମସିହାର ଶେଷରେ ସୋଭିଏତ୍ ଅର୍ଥନୀତିର ସବୁଠାରୁ ଜଟିଳ ଅବସ୍ଥା ସୃଷ୍ଟି ହୋଇଥିଲା, କାରଣ ଏହି ସମୟରେ ବହୁ ବଡ଼ ଶିଳ୍ପାଞ୍ଚଳ ଶତ୍ରୁ ଦ୍ୱାରା ଅଧିକୃତ ହେବା ଫଳରେ ମେସିନ୍, ଧାତୁ, ଅସ୍ତ୍ରଶସ୍ତ୍ର ଆଦି ଉତ୍ପାଦନ କରୁଥିବା କାରଖାନା ଦେଶ ହାତରୁ ଗ୍ଲଲିଗଲା । ୧୯୪୧, ନଭେମ୍ବର ମାସରେ ସେହି ବର୍ଷ ଜୁନ୍ ମାସ ତୁଳନାରେ ଶିଳ୍ପ ଉତ୍ପାଦନ କମି ଯାଇଥିଲା ଶତକଡ଼ା ୫୦ ଭାଗ ।

ଏସବୁ ସତ୍ତ୍ୱେ ସୋଭିଏତ୍ ୟୁନିଅନ୍ ସମସ୍ତ ଅସୁବିଧାର ସମ୍ମୁଖୀନ ସମ୍ନା କରିଥିଲା । ସମାଜବାଦୀ ଅର୍ଥନୈତିକ ବ୍ୟବସ୍ଥାର ସୁଯୋଗସମୂହ କେବଳ ନୁହେଁ, ସୋଭିଏତ୍ ଦେଶପ୍ରେମ, ଶ୍ରମିକ ଶ୍ରେଣୀ, କୋଠଖମାର ଚାଷୀ ଏବଂ ସୋଭିଏତ୍ ବୁଦ୍ଧିଜୀବୀ ସଂପ୍ରଦାୟର ଶ୍ରମ ବୀରତ୍ୱ ଜାଜ୍ୱଲ୍ୟମାନ ହୋଇ ପ୍ରକାଶ ପାଇଥିଲା ।

ସ୍ୱଳ୍ପ ସମୟ ମଧ୍ୟରେ ସୋଭିଏତ୍ ଅର୍ଥନୀତି ସାମରିକ ଆବଶ୍ୟକତା ସହିତ ନିଜକୁ ଖାପ ଖୁଆଇ ନେଲା । ମାତ୍ର କେଇ ସପ୍ତାହ ମଧ୍ୟରେ ଦେଶର ପୂର୍ବାଞ୍ଚଳକୁ ସ୍ଥାନାନ୍ତରିତ ହୋଇଥିବା କାରଖାନାସବୁ ଉତ୍ପାଦନ ଆରମ୍ଭ କରି ଦେଲେ । ୧୯୪୧, ଡିସେମ୍ବର ମାସ ବେଳକୁ ତଳକୁ ପଡ଼ିଯାଉଥିବା ଶିଳ୍ପ ଉତ୍ପାଦନ ହାରକୁ ରୋକି ଦିଆଗଲା ଏବଂ ୧୯୪୨, ମାର୍ଚ୍ଚ ମାସରୁ ଦ୍ରୁତ ହାରରେ ବୃଦ୍ଧି ଆରମ୍ଭ ହୋଇଗଲା । ୧୯୪୨ ମସିହାରେ ସୋଭିଏତ୍ ୟୁନିଅନ୍ ଉତ୍ପାଦନ କଲା ଅଧିକ ବ୍ୟୋମଯାନ, ଟ୍ୟାଙ୍କ୍, କମାଣ, ଜର୍ମାନୀ ଅପେକ୍ଷା ।

୧୯୪୨ ମସିହାର ପ୍ରଥମ ଭାଗରେ ଦେଶର ପୂର୍ବାଞ୍ଚଳରେ ନୂତନ ଶିଳ୍ପ ନିର୍ମାଣ ବ୍ୟାପକ ଗତିରେ ଚାଲିଲା । ୧୯୪୨-୧୯୪୪ ମଧ୍ୟରେ ୨୨୫୦ଟି କାରଖାନା, ବିଦ୍ୟୁତ୍ ଶକ୍ତି ଉତ୍ପାଦନ କେନ୍ଦ୍ର, ଖଣି ଏବଂ ଅନ୍ୟାନ୍ୟ ବଡ଼ ବଡ଼ ଶିଳ୍ପୋଦ୍ୟୋଗମାନ ଗଠିତ ହୋଇ ଉତ୍ପାଦନ ଆରମ୍ଭ କରି ଦେଇଥିଲା । ଏହି ନିର୍ମାଣ କାର୍ଯ୍ୟ ଅତୀବ ଦ୍ରୁତ ଗତିରେ, ଶାନ୍ତିପୂର୍ଣ୍ଣ କାଳ ଅପେକ୍ଷା ୨-୩ ଗୁଣ ଗତିରେ ଚାଲିଥିଲା । ଅନେକ ନିର୍ମାଣ କ୍ଷେତ୍ରରେ ସ୍ଥାନୀୟ ଲୋକେ ଶ୍ରମିକମାନଙ୍କୁ ସାହାଯ୍ୟ କରିଥିଲେ । ଦୃଷ୍ଟାନ୍ତ ସ୍ୱରୂପ, ୧୯୪୩ ମସିହା ଶୀତକାଳରେ ପ୍ରାୟ ୭୦,୦୦୦ କୋଠଖମାର ଚାଷୀ ମଧ୍ୟ ଏସିଆର ଫାରଖାଦ୍ ଜଳବିଦ୍ୟୁତ୍ ଶକ୍ତି କେନ୍ଦ୍ର ନିର୍ମାଣରେ ସାହାଯ୍ୟ କରିଥିଲେ । ଉସ୍ତ-କାମେନଗୋର୍ସ୍କ ଜଳବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରଟି ନିର୍ମାଣ କାର୍ଯ୍ୟ ଏହି ସହରର ସମସ୍ତ ସକ୍ଷମ ଲୋକଙ୍କ ସହାୟତାରେ ସଂପନ୍ନ ହୋଇଥିଲା ।

ନୂତନ ଶିଳ୍ପୋଦ୍ୟୋଗମାନ ନିର୍ମିତ ହେବା ସାଥେ ସାଥେ ପୁରୁଣା କାରଖାନାଗୁଡ଼ିକୁ ପୁନଃସଜ୍ଜିତ ଓ ପରିବର୍ଦ୍ଧିତ କରାଯାଇଥିଲା ଏବଂ ନୂଆ ନୂଆ ଜିନିଷପତ୍ର ସେସବୁଥିରେ ଉତ୍ପାଦିତ ହେଲା । ଡିଜାଇନର, କାରିଗର, ଇଂଜିନିୟର ଏବଂ ଶ୍ରମିକମାନଙ୍କ ଉତ୍ସାହ ଫଳରେ ନୂଆ ନୂଆ ଅସ୍ତ୍ରଶସ୍ତ୍ର ଡିଜାଇନ କରିବା ଏବଂ ସେସବୁକୁ ଉତ୍ପାଦନ କରିବା ଦ୍ରୁତ ଗତିରେ ଚାଲିଥିଲା । ଦୃଷ୍ଟାନ୍ତ ସ୍ୱରୂପ, ନୂଆ ଏକ ଧରଣର ଭାରୀ ଟ୍ୟାଙ୍କ୍‌ର ଡିଜାଇନ ଏବଂ ଉତ୍ପାଦନ ମାତ୍ର ୫୧ ଦିନ ମଧ୍ୟରେ ସମ୍ଭବ ହୋଇଥିଲା । ଶିଳ୍ପ ଶ୍ରମିକମାନଙ୍କର ବୀରତ୍ୱପୂର୍ଣ୍ଣ ଶ୍ରମ ଏବଂ ଉନ୍ନତ ଉତ୍ପାଦନ ପଦ୍ଧତି ଦ୍ୱାରା ଉତ୍ପାଦନଶୀଳତା ଦ୍ରୁତ ଗତିରେ ବୃଦ୍ଧି ପାଇଥିଲା । ୧୯୪୨-୧୯୪୪ ମସିହାରେ ଏହା ବୃଦ୍ଧି ପାଇଥିଲା ଶତକଡ଼ା ୪୦ ଭାଗ, ଶାନ୍ତିପୂର୍ଣ୍ଣ କାଳ ତୁଳନାରେ ପ୍ରାୟ ୩ ଗୁଣ ଅଧିକ ।

ସୋଭିଏତ୍ ସମାଜବାଦୀ ଅର୍ଥନୀତିର ସାଫଲ୍ୟରାଜି ସାମରିକ ବିଜୟ ପାଇଁ ଯୋଗାଇ ଦେଇଥିଲା ବୈଷୟିକ ଭିତ୍ତି । ଯୁଦ୍ଧ ବର୍ଷଗୁଡ଼ିକରେ ସୋଭିଏତ୍ ଶିଳ୍ପ ଯୁଦ୍ଧ

କ୍ଷେତ୍ରକୁ ଯୋଗାଇ ଦେଇଥିଲା ୪୪୬,୦୦୦ଟି କମାଣ, ୧୩୬,୦୦୦ଟି ବ୍ୟୋମଯାନ ଏବଂ ୧୦୨,୦୦୦ଟିରୁ ଅଧିକ ଟ୍ୟାଙ୍କ୍ ଆଉ ବନ୍ଧୁକ ।

ନାଜି ଜର୍ମାନୀକୁ ପରାସ୍ତ କରିବାରେ ସୋଭିଏତ୍ ୟୁନିଅନ୍‌ର ଭୂମିକାକୁ ନ୍ୟୂନ କରି ଦର୍ଶାଇ ଉଦ୍ଦେଶ୍ୟରେ ବୁର୍ଜୁଆ ମିଥ୍ୟାବାଗୀଶମାନେ ଇଚ୍ଛାକୃତ ଭାବେ ତଥ୍ୟରାଜିକୁ ବିକୃତ କରିଥାନ୍ତି ଏବଂ କହିଥାନ୍ତି, ଯୁଦ୍ଧକାଳୀନ ବର୍ଷମାନଙ୍କରେ ଲାଲ ସେନା ତା'ର ଅଧିକାଂଶ ଅସ୍ତ୍ରଶସ୍ତ୍ର ସାଜସରଞ୍ଜାମ ଲାଭ କରିଥିଲା ଆମେରିକା ଯୁକ୍ତ ରାଷ୍ଟ୍ର ଓ ବ୍ରିଟେନ୍ ଠାରୁ । ସମଗ୍ର କାଳ ମଧ୍ୟରେ ଆମେରିକା ଯୁକ୍ତ ରାଷ୍ଟ୍ର ଓ ବ୍ରିଟେନ୍ ସୋଭିଏତ୍ ୟୁନିଅନ୍‌କୁ ଦେଇଥିଲେ ୯,୬୦୦ଟି କମାଣ, ଅର୍ଥାତ୍ ସୋଭିଏତ୍ ୟୁନିଅନ୍‌ରେ ପ୍ରସ୍ତୁତ ସଂଖ୍ୟାର ମାତ୍ର ଶତକଡ଼ା ଦୁଇ ଭାଗ, ୧୮,୭୦୦ଟି ବ୍ୟୋମଯାନ (ପ୍ରାୟ ଶତକଡ଼ା ୧୨ ଭାଗ), ୧୦,୮୦୦ଟି ଟ୍ୟାଙ୍କ (ଶତକଡ଼ା ୧୦ ଭାଗ) । ତେବେ ସୋଭିଏତ୍ ଲୋକେ ଏହି ସାହାଯ୍ୟକୁ କେବେହେଲେ ନ୍ୟୂନ କରି ଦେଖାନ୍ତି ନାହିଁ; ଏହା ଖୁବ୍ ଦରକାରରେ ଆସିଥିଲା, ବିଶେଷ କରି ଯୁଦ୍ଧର ପ୍ରାରମ୍ଭରେ । ତା ସତ୍ତ୍ୱେ, ଏସବୁର ଗୁରୁତ୍ୱ ଥିଲେ ମଧ୍ୟ, ମିତ୍ର ପକ୍ଷରୁ ପ୍ରଦତ୍ତ ଏହିସବୁ ଅସ୍ତ୍ରଶସ୍ତ୍ରକୁ ଲାଲ ସେନାକୁ ସୋଭିଏତ୍ ପଶ୍ଚାଦ୍‌ଭୂମି ଯାହା ଦାନ କରିଥିଲା, ତାହା ତୁଳନାରେ କିଛି ନୁହେଁ ।

କୋଠଖମାରର ଚାଷୀମାନେ ମଧ୍ୟ ନିସ୍ୱାର୍ଥ ଭାବେ ଶ୍ରମ କରିଥିଲେ ବିଜୟ ଲାଭ ପାଇଁ । କୃଷି କ୍ଷେତ୍ରରେ ଶ୍ରମ କରିବା ପାଇଁ ଲୋକଙ୍କର ଅଭାବ ଓ ମେସିନ୍ ଯନ୍ତ୍ରପାତିର କମ୍ ସତ୍ତ୍ୱେ ଏବଂ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କୃଷି ଅଞ୍ଚଳଗୁଡ଼ିକର ସାମୟିକ ଅଧିକାର ସତ୍ତ୍ୱେ, କୋଠଖମାର ଗ୍ରାମଗୁଡ଼ିକ ସେନାବାହିନୀ ଓ ଦେଶକୁ ଯୋଗାଇ ଦେଇଥିଲେ ପ୍ରାୟ ଅଧିକାଂଶ ଖାଦ୍ୟଶସ୍ୟ, ମାଂସ, ଆଳୁ, ପନିପରିବା ଏବଂ ଅନ୍ୟାନ୍ୟ ଖାଦ୍ୟ ସାମଗ୍ରୀ ।

ସୋଭିଏତ୍ ବୁଦ୍ଧିଜୀବୀ ସଂପ୍ରଦାୟ ମଧ୍ୟ ଶତ୍ରୁକୁ ପରାଜିତ କରିବା ପାଇଁ ଅମୂଲ୍ୟ ଅବଦାନ ରଖିଥିଲେ । ବିଜ୍ଞାନୀ, ଡିଜାଇନର ଏବଂ ଇଂଜିନିୟରମାନେ ପ୍ରଥମ ଶ୍ରେଣୀର ଅସ୍ତ୍ର ବିକାଶ କରିଥିଲେ । ଦୃଷ୍ଟି ବିଜ୍ଞାନର ବିଶେଷଜ୍ଞମାନେ ନୂଆ ଉଚ୍ଚ ଗୁଣସଂପନ୍ନ ଦୃଷ୍ଟିଯନ୍ତ୍ର ନିର୍ମାଣ କରିଥିଲେ । ରସାୟନ ବିଦ୍ୟାରେ ବିଶେଷଜ୍ଞମାନେ ସ୍ୱଚ୍ଛ ସାଞ୍ଜୁ ପାଇଁ ପ୍ଲାଷ୍ଟିକ ଉଦ୍‌ଭାବନ କରିଥିଲେ ଏବଂ ନୂଆ ବିସ୍ଫୋରକ ଉତ୍ପାଦନ ପାଇଁ ଉପାୟମାନ ବ୍ୟାଖ୍ୟା କରିଥିଲେ । ଭୂତତ୍ତ୍ୱବିଦ୍‌ମାନେ କୋଇଲା, ତୈଳ, ଗ୍ୟାସ, ଲୌହ ପଥର, ମାଙ୍ଗାନିଜ୍ ଏବଂ ଲୌହେତର ଧାତୁର ନୂଆ ଖଣିମାନ ଆବିଷ୍କାର କରିଥିଲେ । ଡାକ୍ତରମାନେ କ୍ଷତସ୍ଥାନମାନଙ୍କର ଚିକିତ୍ସାର ପଦ୍ଧତିକୁ ଉନ୍ନତ କରିବା ନିମିତ୍ତ ସର୍ବଦା ଚେଷ୍ଟା କରୁଥିଲେ ଏବଂ ବହୁ ନୂଆ ଖୁବ୍ କାର୍ଯ୍ୟକାରୀ ଔଷଧ ଉଦ୍‌ଭାବନ କରିଥିଲେ । ଏହା ଫଳରେ କ୍ଷତବିକ୍ଷତମାନଙ୍କ ମଧ୍ୟରୁ ଶତକଡ଼ା ୭୦ ଭାଗ ଆରୋଗ୍ୟ ଲାଭ କଲା ପରେ ସୈନ୍ୟ ବିଭାଗକୁ ଫେରି ଆସିଥିଲେ । ପ୍ରତ୍ୟେକ ସୋଭିଏତ୍ ଦେଶପ୍ରେମୀ ତା'ର ପାଣ୍ଟପର୍ଯ୍ୟନ୍ତ ବିଜୟ ପ୍ରତି ଅବଦାନ ରଖିଥିଲା । ଲାଲ ସେନାର ଥିଲା

ସର୍ବାଧିକ ଶକ୍ତିଶାଳୀ ଏବଂ ନିର୍ଭରଶୀଳ ଏକ ପଶ୍ଚାଦ୍‌ଭୂମି । ତାହା ହିଁ ହେଲା ରଣାଙ୍ଗନରେ ଏହାର ବିଜୟର ଭିତ୍ତି ସ୍ୱରୂପ ।

ଏହି ମହାନ୍ ଦେଶପ୍ରେମୀ ଯୁଦ୍ଧ ଚାଲିଥିଲା ଚାରି ବର୍ଷ ଧରି (୧୯୪୧-୧୯୪୫) । ଏହାକୁ ମୁଖ୍ୟତଃ ତିନୋଟି ପର୍ବରେ ବିଭକ୍ତ କରାଯାଇ ପାରେ ।

ପ୍ରଥମ ପର୍ବଟି ଥିଲା ୧୯୪୧, ଜୁନ୍ ୨୨ରୁ ୧୯୪୨, ନଭେମ୍ବର ପର୍ଯ୍ୟନ୍ତ । ଏହି ପର୍ବଟି ସର୍ବାପେକ୍ଷା କଷ୍ଟକର ଥିଲା, ଲାଲ ସେନାକୁ ଏହି ସମୟରେ ଅଧିକାଂଶ ସମୟରେ ପ୍ରତିରକ୍ଷାମୂଳକ ଯୁଦ୍ଧ କରିବାକୁ ପଡ଼ିଥିଲା । ଶତ୍ରୁ ସୈନ୍ୟମାନେ ସୋଭିଏତ୍ ୟୁନିଅନ୍‌ର ଖୁବ୍ ଅଭ୍ୟନ୍ତରକୁ ପଶି ଆସିଥିଲେ, ମସ୍କୋର ଉପାନ୍ତ, ଭୋଲ୍‌ଗା ଏବଂ କକେସସ୍‌ର ପାହାଡ଼ ତଳରେ ପହଞ୍ଚି ଯାଇଥିଲେ । ଏହି ସମୟରେ ନିଷ୍ପତ୍ତିମୂଳକ ଯୁଦ୍ଧଟି ଥିଲା ମସ୍କୋ ପାଇଁ ଲଢ଼େଇ – ଏହି ଲଢ଼େଇରେ ୧୯୩୯ରେ ନାଜି ଜର୍ମାନୀ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ କଲା ପରେ ପ୍ରଥମ ବଡ଼ ଧରଣର ପରାଜୟ ଲାଭ କରିଥିଲା । ମସ୍କୋ ନିକଟରେ ଜର୍ମାନ୍ ସେନାବାହିନୀର ପରାଜୟ ନାଜି ଜର୍ମାନୀର ଝଟିକା ଯୋଜନାକୁ ପଣ୍ଡ କରି ଦେବା ସାଥେ ସାଥେ ଜର୍ମାନ୍ ସେନାବାହିନୀ ଯେ ଅପରାଜେୟ, ଏହି ଧାରଣାଟିକୁ ନଷ୍ଟ କରି ଦେଲା । ଯୁଦ୍ଧରେ ଏହି ଘଟଣାଟି ଥିଲା ସୋଭିଏତ୍ ୟୁନିଅନ୍‌ର ଅନୁକୂଳରେ ଏକ ଦିଗ ମୋଡ଼ ସ୍ୱରୂପ ।

ତେବେ, ଯୁଦ୍ଧରେ ସବୁଠାରୁ ମୌଳିକ ଦିଗମୋଡ଼ଟି ଆସିଥିଲା ଦ୍ୱିତୀୟ ପର୍ବରେ । ଏହି ପର୍ବଟି ୧୯୪୨, ନଭେମ୍ବର ମାସରୁ ଆରମ୍ଭ ହୋଇ ୧୯୪୩ ମସିହାର ଶେଷ ପର୍ଯ୍ୟନ୍ତ ଚାଲିଥିଲା । ମହାନ୍ ଦେଶପ୍ରେମୀ ଯୁଦ୍ଧରେ ଏହି ଦିଗମୋଡ଼ଟି ଥିଲା ସୋଭିଏତ୍ ୟୁନିଅନ୍‌ର ଅନୁକୂଳରେ ଏବଂ ସମଗ୍ର ବିଶ୍ୱ ଯୁଦ୍ଧ ମଧ୍ୟରେ ନାଜିବିରୋଧୀ ସାମ୍ମୁଖ୍ୟର ଅନୁକୂଳରେ । ଏହି ସାମ୍ମୁଖ୍ୟରେ ସୋଭିଏତ୍ ୟୁନିଅନ୍, ଆମେରିକା ଯୁକ୍ତ ରାଷ୍ଟ୍ର ଏବଂ ଗ୍ରେଟ୍ ବ୍ରିଟେନ୍ ଭଳି ମୁଖ୍ୟ ସଦସ୍ୟଙ୍କ ଛଡ଼ା ଅନ୍ୟ କେତେକ ଦେଶ ଥିଲେ । ଏହି ଦିଗମୋଡ଼ଟି ସୃଷ୍ଟି ହୋଇଥିଲା ଷ୍ଟାଲିନ୍‌ଗ୍ରାଦ୍‌ରେ (ବର୍ତ୍ତମାନ ଭୋଲ୍‌ଗୋଗ୍ରାଦ୍) ଲାଲ ସେନାର ଐତିହାସିକ ବିଜୟ ଫଳରେ । ଏହି ସହରଟିର ଅନେକ ମାସ ଧରି ବୀରତ୍ୱପୂର୍ଣ୍ଣ ପ୍ରତିରକ୍ଷା ପରେ ୧୯୪୨, ନଭେମ୍ବର ମାସ ୧୯ ତାରିଖରେ ପ୍ରତିଆକ୍ରମଣ ଆରମ୍ଭ କରି ଲାଲ ସେନା ଶତ୍ରୁ ପକ୍ଷର ୨୨ଟି ଡିଭିଜନକୁ ଘେରାଉ କରି ନିର୍ମୂଳ କରି ଦେଇଥିଲା । ୧୯୪୩ ଗ୍ରୀଷ୍ମ କାଳରେ କୁର୍ସ୍କ ଯୁଦ୍ଧରେ ବିରାଟ ବିଜୟ ଫଳରେ ଏହି ବିଜୟଟି ଆଉରି ସୁଦୃଢ଼ ହୋଇ ପାରିଥିଲା । ତା'ପରେ ଲାଲ ସେନା ରଣନୀତିଗତ ଅଗ୍ରପଦକ୍ଷେପ ନେଇ ନିରବଚ୍ଛିନ୍ନ ଭାବେ ଆଗେଇ ଯାଇଥିଲା ଯୁଦ୍ଧ ଶେଷ ହେଲା ପର୍ଯ୍ୟନ୍ତ ।

ତୃତୀୟ ପର୍ବଟିରେ (୧୯୪୪-୧୯୪୫) ଲାଲ ସେନା ସୋଭିଏତ୍ ୟୁନିଅନ୍‌ର ସମସ୍ତ ଅଞ୍ଚଳକୁ ନାଜି ଅଧିକାରରୁ ମୁକ୍ତ କରି ଜର୍ମାନ୍ ଶାସନ ତଳେ ସଢ଼ୁଥିବା ୟୁରୋପୀୟ

ଜାତିମାନଙ୍କୁ ମୁକ୍ତ କଲା ଏବଂ ନାଜିମାନଙ୍କୁ ସେମାନଙ୍କ ଜନ୍ମମାଟିରୁ ନିପାତ କରି ଜର୍ମାନ୍ ଜନସାଧାରଣଙ୍କୁ ନାଜି ଏକଛତ୍ର ଶାସନର ଶୃଙ୍ଖଳରୁ ମୁକ୍ତ କଲା ।

ନାଜି ଜର୍ମାନୀ ଏବଂ ତା'ର ମିତ୍ରମାନେ ୟୁରୋପରେ ପରାଜିତ ହେଲା ପରେ ୧୯୪୫, ମେ ମାସ ୮ ତାରିଖରେ ସର୍ତ୍ତହୀନ ଆତ୍ମସମର୍ପଣ ସନ୍ଧିରେ ସ୍ୱାକ୍ଷର କରିଥିଲେ । ତା'ପରେ ଆମେରିକା ଯୁକ୍ତ ରାଷ୍ଟ୍ର ଓ ବ୍ରିଟେନ୍ ପ୍ରତି ସୋଭିଏତ୍ ୟୁନିଅନ୍‌ର ପ୍ରତିଶ୍ରୁତି ଅନୁଯାୟୀ ୧୯୪୫ ଶରତକାଳରେ ସୋଭିଏତ୍ ୟୁନିଅନ୍ ସମରବାଦୀ ଜାପାନ୍ ବିରୁଦ୍ଧରେ ଯୁଦ୍ଧରେ ପ୍ରବେଶ କଲା ଦ୍ୱିତୀୟ ମହାଯୁଦ୍ଧର ଶୀଘ୍ର ଅବସାନ ଘଟାଇବା ଉଦ୍ଦେଶ୍ୟରେ । କ୍ଷୁଦ୍ର ଅଥଚ ସର୍ବାତ୍ମକ ଆକ୍ରମଣ ଚଳେଇ ଲାଲ ସେନା ଏକ ନିୟୁତ ସଂଖ୍ୟାର ସୈନ୍ୟଙ୍କୁ ନେଇ ଗଠିତ କ୍ୱାନ୍‌ଟୁଙ୍ଗ୍ ଜାପାନୀ ସୈନ୍ୟବାହିନୀକୁ ନିର୍ମୂଳ କରି ଦେଲା । ଏହି ସେନାବାହିନୀ ମାଞ୍ଚୁରିଆରେ ଅବସ୍ଥିତ ଥିଲା ସୋଭିଏତ୍ ୟୁନିଅନ୍ ବିରୁଦ୍ଧରେ । ଜାପାନ୍‌ର ସଂପୂର୍ଣ୍ଣ ପରାଜୟ ପ୍ରତି ଲାଲ ସେନା ଏହି ଭାବେ ତା'ର ନିଷ୍ପତ୍ତିମୂଳକ ଅବଦାନ ରଖିଥିଲା ।

ମହାନ୍ ଦେଶପ୍ରେମୀ ଯୁଦ୍ଧ ତଥା ସମଗ୍ର ବିଶ୍ୱ ଯୁଦ୍ଧରେ ସୋଭିଏତ୍ ୟୁନିଅନ୍ ଏକ ଐତିହାସିକ ବିଜୟ ହାସଲ କରିଥିଲା । ଏହି ବିଜୟ କେବଳ ଏକ ସାମରିକ ବିଜୟ ନଥିଲା, ଏହା ଥିଲା ସମାଜବାଦୀ ସୋଭିଏତ୍ ଦେଶର ଶତ୍ରୁଗଣ—ଫାସିଷ୍ଟ ଏବଂ ଅନ୍ୟାନ୍ୟ ପ୍ରତିକ୍ରିୟାଶୀଳ, ସମରବାଦୀ ଶକ୍ତିମାନଙ୍କ ବିରୁଦ୍ଧରେ ଏକ ରାଜନୈତିକ ତଥା ଅର୍ଥନୈତିକ ବିଜୟ । ସୋଭିଏତ୍ ଜନସାଧାରଣ ସର୍ବାଧିକ ପ୍ରଗତିଶୀଳ ସାମାଜିକ ଓ ରାଜନୈତିକ ବ୍ୟବସ୍ଥା, ସେମାନଙ୍କ ମୁକ୍ତି ଆଉ ସ୍ୱାଧୀନତାକୁ ରକ୍ଷା କରିଥିଲେ ।

ତେବେ, ଏହି ବିଜୟ ମଧ୍ୟ ବିପୁଳ ଆନ୍ତର୍ଜାତିକ ଗୁରୁତ୍ୱସଂପନ୍ନ ଥିଲା । ସୋଭିଏତ ଲୋକେ କେବଳ ନିଜ ଦେଶକୁ ରକ୍ଷା କରି ନଥିଲେ, ଫାସିଷ୍ଟ ଦାସତ୍ୱ ଶୃଙ୍ଖଳରୁ ୟୁରୋପର ବହୁ ଜାତିଙ୍କୁ ରକ୍ଷା କରିଥିଲେ । ଚୀନ୍ ଏବଂ ଏସିଆର ଅନ୍ୟାନ୍ୟ ଦେଶକୁ ଜାପାନୀ ସମରବାଦୀମାନଙ୍କ ବିରୁଦ୍ଧରେ ବ୍ୟାପକ ଭାବେ ସାହାଯ୍ୟ କରିଥିଲେ ଏବଂ ଫାସିବାଦର ଦାସତ୍ୱର ବିପଦରୁ ଦୁନିଆର ସମସ୍ତ ଜାତିଙ୍କୁ ବଞ୍ଚାଇବା ଦିଗରେ ବିପୁଳ ଭାବେ ଅବଦାନ ରଖିଥିଲେ । ଅଧିକୃତ ଦେଶମାନଙ୍କର ଜାତିମାନଙ୍କ ସହିତ ମିଶି ଲାଲ ସେନା ପୋଲାଣ୍ଡ, ଚେକୋସ୍ଲୋଭାକିଆ, ୟୁଗୋସ୍ଲାଭିଆ, ବୁଲଗେରିଆ, ରୁମାନିଆ, ହଙ୍ଗେରି, ଅଷ୍ଟ୍ରିଆ, ଉତ୍ତର ନରୱେ, ଚୀନ୍‌ର ଉତ୍ତର-ପୂର୍ବାଞ୍ଚଳ ଏବଂ ଉତ୍ତର କୋରିଆରୁ ବିଦେଶୀ ଆକ୍ରମଣକାରୀମାନଙ୍କୁ ହଟେଇ ଦେଇଥିଲା । ନାଜି ଜର୍ମାନୀକୁ ପରାସ୍ତ କରିବାରେ ନିଷ୍ପତ୍ତିମୂଳକ ଭୂମିକା ପାଳନ କରି ସୋଭିଏତ୍ ଜନସାଧାରଣ ଓ ସେମାନଙ୍କ ସେନାବାହିନୀ ଇଟାଲୀ, ଫ୍ରାନ୍‌ସ ଏବଂ ଅନ୍ୟାନ୍ୟ ଦେଶର ଜାତିମାନଙ୍କୁ ଫାସିଷ୍ଟ କବଳରୁ ମୁକ୍ତି ଲାଭ ପ୍ରତି ଅବଦାନ ରଖିଥିଲେ । ସୋଭିଏତ୍ ଜନସାଧାରଣଙ୍କର ଏହି ବିଜୟ ନିପୀଡ଼ିତ ଏବଂ

ଔପନିବେଶିକ ଜାତିମାନଙ୍କୁ ଅନୁପ୍ରାଣିତ କରିଥିଲା ସେମାନଙ୍କ ଜାତୀୟ-ମୁକ୍ତି ସଂଗ୍ରାମକୁ ତୀବ୍ରତର କରିବା ଦିଗରେ । ଏହି ବିଜୟର ଉତ୍ସଗୁଡ଼ିକ ତେବେ କ'ଣ ଥିଲା ?

ସୋଭିଏତ୍ ୟୁନିଅନ୍‌ର ଦ୍ରୁତ ଅର୍ଥନୈତିକ, ରାଜନୈତିକ ଏବଂ ସାମରିକ ବିକାଶ ପାଇଁ ସମାଜବାଦୀ ବ୍ୟବସ୍ଥା ଥିଲା ମୁଖ୍ୟ ସର୍ତ୍ତ । ସମାଜବାଦର ବିଜୟ ଫଳରେ ସୋଭିଏତ୍ ଲୋକେ ଦେଶର ଅର୍ଥନୈତିକ, ସାଂସ୍କୃତିକ ଏବଂ ସାମରିକ ଅନଗ୍ରସରତାକୁ ଅତିକ୍ରମ କରି ପାରିଥିଲେ । ଯୁଦ୍ଧପୂର୍ବ ପଞ୍ଚବାର୍ଷିକ ଯୋଜନା କାଳରେ ସୋଭିଏତ୍ ୟୁନିଅନ୍ ଏକ ଶକ୍ତିଶାଳୀ ରାଷ୍ଟ୍ର ରୂପେ ଗଢ଼ି ଉଠିଥିଲା । ଯୁଦ୍ଧକାଳୀନ ବର୍ଷଗୁଡ଼ିକରେ, ଉତ୍ପାଦନ ଉପାୟ ଉପକରଣ ଉପରେ ସମାଜବାଦୀ ମାଲିକାନା ଓ ଯୋଜନାବଦ୍ଧ ଅର୍ଥନୈତିକ ପରିଚାଳନା ଏହି ଶ୍ରମଜୀବୀ ଜନସାଧାରଣଙ୍କୁ ରାଷ୍ଟ୍ରକୁ ସକ୍ଷମ କରିଥିଲା ତା'ର ଅର୍ଥନୀତିକୁ ସାମରିକ ଆବଶ୍ୟକତାକୁ ମେଣ୍ଟାଇବା ଏବଂ ବିଜୟ ହାସଲ ପାଇଁ ଆବଶ୍ୟକ ସ୍ତରକୁ ସାମରିକ ଉତ୍ପାଦନ ଦ୍ରୁତ ବୃଦ୍ଧି କରିବା ଦିଗରେ ବଦଳାଇ ଦେବାକୁ । ଏହାର ଅର୍ଥନୀତି ଯୋଜନାବଦ୍ଧ ତେଣୁ, ଏହା ଆନ୍ତଃସଂଯୁକ୍ତ ଓ ସୁପରିଚାଳିତ ହୋଇଥିବାରୁ ଏହା ବ୍ୟାପକ ସଂଖ୍ୟାରେ କାରଖାନାଗୁଡ଼ିକୁ ପଶ୍ଚିମର ବିପଦ ସଂକୁଳ ଅଞ୍ଚଳରୁ ପୂର୍ବ ଅଞ୍ଚଳକୁ ସ୍ଥାନାନ୍ତରିତ କରି ପାରିଥିଲା (ଇତିହାସରେ ଏହା ଥିଲା ଅଭୂତପୂର୍ବ) ଏବଂ ନୂତନ ଅଞ୍ଚଳରେ ସର୍ବୋଚ୍ଚ କ୍ଷମତା ନେଇ ସେସବୁ ଉତ୍ପାଦନ ଆରମ୍ଭ କରି ଦେଇଥିଲା ଏବଂ ଏଥି ସାଥେ ସାଥେ ବୃହଦାକାରରେ ନୂଆ ଶିଳ୍ପ ନିର୍ମାଣ ଆରମ୍ଭ କରି ଦେଇଥିଲା । ଯୁଦ୍ଧ ମଧ୍ୟ ଦେଇ କୋଠଖମାର ବ୍ୟବସ୍ଥା ମଧ୍ୟ ତା'ର କ୍ଷମତା ଏବଂ ଜୀବନୀ ଶକ୍ତିର ପ୍ରମାଣ ଦେଇଥିଲା ଏବଂ ସେନାବାହିନୀ ତଥା ସହରାଞ୍ଚଳର ଜନସଂଖ୍ୟାକୁ ନିୟମିତ ରୂପେ ଖାଦ୍ୟଶସ୍ୟ ଯୋଗାଇଥିଲା ।

ନାଜି ଜର୍ମାନୀ ବିରୁଦ୍ଧରେ କାର୍ଯ୍ୟତଃ ଏକଲା ସଂଗ୍ରାମ କରିବାରେ ସମାଜବାଦୀ ବ୍ୟବସ୍ଥା ଥିଲା ସୋଭିଏତ୍ ୟୁନିଅନ୍‌ର ଅର୍ଥନୈତିକ ତଥା ସାମରିକ ବିଜୟର ମୁଖ୍ୟ ଉତ୍ସ ।

ଜନସାଧାରଣଙ୍କ ମଧ୍ୟରେ ସମାଜବାଦୀ ବ୍ୟବସ୍ଥା ହିଁ ସୋଭିଏତ୍ ଦେଶପ୍ରେମ ଜାଗ୍ରତ କରିଥିଲା ଏବଂ ଏହି ଦେଶପ୍ରେମ ରଣାଙ୍ଗନର ପଶ୍ଚାଦ୍‌ଭାଗରେ ଶ୍ରମିକ, କୃଷକ ଓ ବୁଦ୍ଧିଜୀବୀମାନଙ୍କର ବୀରତ୍ୱପୂର୍ଣ୍ଣ ଶ୍ରମ ସାଫଲ୍ୟର ଏବଂ ଯୁଦ୍ଧ ଭୂମିରେ ସୈନିକ ଏବଂ ଅଫିସରମାନଙ୍କ ଅସ୍ତ୍ରଶସ୍ତ୍ରର ବୀରତ୍ୱପୂର୍ଣ୍ଣ ଚମତ୍କାର ସାଫଲ୍ୟର ଉତ୍ସରେ ପରିଣତ ହୋଇଥିଲା ।

ସମାଜବାଦୀ ବ୍ୟବସ୍ଥା ଜାତି ଜାତି, ବର୍ଣ୍ଣ ବର୍ଣ୍ଣ ମଧ୍ୟରେ ସାମ୍ୟ ପ୍ରତିଷ୍ଠା କରିଥିଲା ଏବଂ ଉଗ୍ରଜାତୀୟତା ଏବଂ ବର୍ଣ୍ଣଗତ ଘୃଣା ଉପରେ ପ୍ରତିଷ୍ଠିତ ନାଜି ଭାବାଦର୍ଶର ବିରୋଧରେ ସୋଭିଏତ୍ ୟୁନିଅନ୍‌ର ଜାତିମାନଙ୍କ ମଧ୍ୟରେ ମୈତ୍ରୀର ବିକାଶ ସାଧନ କରିଥିଲା । ସୋଭିଏତ୍ ୟୁନିଅନ୍‌ର ବିଭିନ୍ନ ଜାତିମାନଙ୍କ ମଧ୍ୟରେ ମୈତ୍ରୀର ଶକ୍ତି ଏବଂ ବହୁଜାତିକ ଶ୍ରମିକ ଓ କୃଷକ ରାଷ୍ଟ୍ରର ଦୃଢ଼ତା ପକ୍ଷରେ ଏହି ଯୁଦ୍ଧ ଥିଲା ଏକ ଅଗ୍ନି

ପରୀକ୍ଷା ଭଳି । ସୋଭିଏତ୍ ୟୁନିଅନ୍‌ର ସମସ୍ତ ଜାତିର ପୁତ୍ର କନ୍ୟାମାନେ ସୋଭିଏତ୍ ସେନାବାହିନୀ ପାଖରେ ଛିଡ଼ା ହୋଇ ବୀରତ୍ୱର ସହିତ ଲଢ଼େଇ କରିଥିଲେ । ରୁଷୀୟ, ୟୁକ୍ରେନୀୟ, ବେଲୋରୁଷୀୟ, ଜର୍ଜୀୟ, ଉଜ୍‌ବେକ୍ – ବିଭିନ୍ନ ଜାତି ଅଧିଜାତିର ଲୋକେ – ରଣାଙ୍ଗନର ପଶ୍ଚାଦ୍‌ଭୂମିରେ ନିସ୍ୱାର୍ଥ ଭାବେ କାର୍ଯ୍ୟ କରିଥିଲେ ଏବଂ ବିଜୟ ହାସଲ ପାଇଁ ଆବଶ୍ୟକୀୟ ସବୁକିଛି ସୈନ୍ୟବାହିନୀକୁ ଯୋଗାଇ ଦେଇଥିଲେ । ନାତ୍‌ସିମାନଙ୍କ ବିରୁଦ୍ଧରେ ଅଭିନ୍ନ ସଂଗ୍ରାମରେ ସୋଭିଏତ୍ ୟୁନିଅନ୍‌ର ଜାତିମାନଙ୍କ ମଧ୍ୟରେ ମୈତ୍ରୀ ଆଉରି ଦୃଢ଼ ହୋଇଥିଲା ଏବଂ ସମାଜବାଦୀ ରାଷ୍ଟ୍ର ଆଉରି ଶକ୍ତିଶାଳୀ ହୋଇଥିଲା ।

ସୋଭିଏତ୍ ଜନସାଧାରଣ ବିଜୟ ହାସଲ କରିବାର କାରଣ ହେଲା ସେମାନେ ଏକ ଚମତ୍କାର ସେନାବାହିନୀ ଗଢ଼ି ସେମାନଙ୍କୁ ଆଧୁନିକ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ କରି ପାରିଥିଲେ । ଶ୍ରମିକ ଏବଂ କୃଷକ ସେନାବାହିନୀର ସୈନ୍ୟମାନେ ସେମାନଙ୍କ ମହାନ୍ ମୁକ୍ତିର ଲକ୍ଷ୍ୟ ଦ୍ୱାରା ଅନୁପ୍ରାଣିତ ହୋଇ ଶତ୍ରୁ ବିରୁଦ୍ଧରେ ଅସାଧାରଣ ବୀରତ୍ୱ ଆଉ ଆତ୍ମତ୍ୟାଗ ପ୍ରଦର୍ଶନ କରିଥିଲେ । ସେମାନଙ୍କୁ ନେତୃତ୍ୱ ଦେଇଥିଲେ ସୁଦକ୍ଷ ସେନାପତିବୃନ୍ଦ, ସେମାନଙ୍କ ମଧ୍ୟରେ ଥିଲେ ସୋଭିଏତ୍ ୟୁନିଅନ୍‌ର ମାର୍ଶାଲ ଆଇ.ଖ. ବାଗ୍ରାମିଆନ୍, ଏ.ଏମ୍. ଭାସିଲେଭ୍‌ସ୍କି, ଏନ୍.ଏଫ୍. ଭାତୁତିନ୍, ଏଲ୍.ଏ. ଗୋଭୋରୋଭ୍, ଏ.ଆଇ. ୟେରିଓମେଙ୍କୋ, ଜି.କେ. ଝୁକୋଭ୍, ଆଇ.ଏସ୍. କୋନେଭ୍, ଆର୍.ଓ୍ୱାଇ. ମାଲିନୋଭ୍‌ସ୍କି, କେ.କେ. ରୋକୋସୋଭ୍‌ସ୍କି, ଭି.ଡି. ସୋକୋଲୋଭ୍‌ସ୍କି, ଏଫ୍. ଆଇ. ତୋଲବୁଖିନ୍ ଏବଂ ଭି.ଆଇ. ଚୁଇକୋଭ୍ । ମହାନ୍ ଦେଶପ୍ରେମୀ ଯୁଦ୍ଧ ବେଳେ ୭୦ ଲକ୍ଷରୁ ଅଧିକ ସୈନିକ, ନୌସେନା, ଅଫିସର, ଜେନେରାଲ ଏବଂ ଆଡମିରାଲଙ୍କୁ ସୋଭିଏତ୍ ୟୁନିଅନ୍‌ର ଅର୍ଡର ଏବଂ ପଦକରେ ଭୂଷିତ କରାଯାଇଥିଲା । ଏହା ଛଡ଼ା ଆଉ ୧୧,୬୨୦ଜଣ ବ୍ୟକ୍ତିଙ୍କୁ ସେମାନଙ୍କ ଅସାଧାରଣ ବୀରତ୍ୱପୂର୍ଣ୍ଣ କାର୍ଯ୍ୟ ପାଇଁ ସୋଭିଏତ୍ ୟୁନିଅନ୍‌ର ସର୍ବୋଚ୍ଚ ଉପାଧି, ସୋଭିଏତ୍ ୟୁନିଅନ୍‌ର ବୀର ଉପାଧି ପ୍ରଦାନ କରାଯାଇଥିଲା ।

ସୋଭିଏତ୍ ୟୁନିଅନ୍ ବିଜୟ ଲାଭ କଲା, କାରଣ ସୋଭିଏତ୍ ଜନସାଧାରଣଙ୍କର ଶାନ୍ତିପୂର୍ଣ୍ଣ ବିକାଶ ତଥା ଯୁଦ୍ଧକାଳୀନ ବର୍ଷମାନଙ୍କରେ କମ୍ୟୁନିଷ୍ଟ ପାର୍ଟି ଥିଲା ସେମାନଙ୍କର ନେତୃତ୍ୱଦାୟୀ ତଥା ପରିଗ୍ରହନା ଶକ୍ତି । କମ୍ୟୁନିଷ୍ଟମାନଙ୍କ ମଧ୍ୟରୁ ପ୍ରାୟ ଶତକଡ଼ା ୬୦ ଭାଗ ଥିଲେ ସେନାବାହିନୀରେ ଏବଂ ସେମାନଙ୍କର ବ୍ୟକ୍ତିତ୍ୱ ବୀରତ୍ୱ ଦ୍ୱାରା ଅଣପାର୍ଟି ସୈନିକମାନଙ୍କୁ ଅନୁପ୍ରାଣିତ କରୁଥିଲେ ଏବଂ ଐକ୍ୟବଦ୍ଧ କରୁଥିଲେ । କମ୍ୟୁନିଷ୍ଟମାନଙ୍କ ଉପରେ ପଡ଼ିଥିଲା ସର୍ବାପେକ୍ଷା ଦାୟିତ୍ୱପୂର୍ଣ୍ଣ କର୍ତ୍ତବ୍ୟରାଜି ଏବଂ ସେସବୁକୁ ସେମାନେ ସଫଳତାର ସହିତ ସଂପନ୍ନ କରିଥିଲେ । କମ୍ୟୁନିଷ୍ଟ ପାର୍ଟି କେନ୍ଦ୍ରୀୟ କମିଟିର ସଦସ୍ୟମାନଙ୍କ ମଧ୍ୟରୁ ପ୍ରାୟ ଏକତୃତୀୟାଂଶ ଏବଂ ଅନ୍ୟାନ୍ୟ ଅଭିଜ୍ଞତାସଂପନ୍ନ ପାର୍ଟି କର୍ମୀମାନେ ସେନାବାହିନୀର ଅଗ୍ରଣୀ ରାଜନୈତିକ ଏବଂ ପାର୍ଟି ପଦରେ ଅଧିଷ୍ଠିତ

ଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଏଲ୍. ଆଇ. ବ୍ରେଜ୍‌ନେଭ୍, ଏ.ଏ. ଝଦାନୋଭ୍, ଏମ୍.ଏ. ସୁସ୍‌ଲୋଭ୍, ଏନ୍.ଏସ୍. ଖ୍ରୁଶ୍ଚେଭ୍, ଏ.ଏସ୍. ଶ୍ଚେରବାକୋଭ୍ ଏବଂ ଅନ୍ୟମାନେ ।

ସୋଭିଏତ୍ ଜନସାଧାରଣ ସେମାନଙ୍କ ପାର୍ଟି ଉପରେ ଅଖଣ୍ଡ ବିଶ୍ୱାସ ରଖିଥିଲେ ଏବଂ ଅବିଚଳ ଭାବେ ତାକୁ ଅନୁସରଣ କରୁଥିଲେ। ସୋଭିଏତ୍ ରାଷ୍ଟ୍ର ପକ୍ଷରେ, ସେଇସବୁ କଠୋର ଯୁଦ୍ଧ ବର୍ଷଗୁଡ଼ିକରେ, ଜୀବନ ମରଣ ପ୍ରଶ୍ନ ହୋଇ ଉଠୁଥିଲା ବେଳେ ପାର୍ଟିରେ ୯୦ ଲକ୍ଷ ଲୋକ ବିଗ୍ରହାଧୀନ ସଦସ୍ୟ ବା ସଦସ୍ୟ ରୂପେ ଯୋଗ ଦେବାଟା ଏକ ଆକସ୍ମିକ ଘଟଣା ନୁହେଁ ।

ମହାନ୍ ଦେଶପ୍ରେମୀ ଯୁଦ୍ଧକୁ ବିଜୟ ମଣ୍ଡିତ କରି ସୋଭିଏତ୍ ଜନସାଧାରଣ ଫେରି ଆସିଥିଲେ ଶାନ୍ତିପୂର୍ଣ୍ଣ କର୍ମକ୍ଷେତ୍ରକୁ ।

# ୨୫ଶ ପରିଚ୍ଛେଦ

# ସମାଜବାଦୀ ଅର୍ଥନୀତିର ପୁନର୍ଗଠନ ଏବଂ ଉତ୍ତରୋତ୍ତର ବିକାଶ

ଯୁଦ୍ଧ ସମୟରେ ସୋଭିଏତ୍ ଦେଶ ଅକଳ୍ପନୀୟ ଭାବେ କ୍ଷତଗ୍ରସ୍ତ ହୋଇଥିଲା । ନାଜି ଅଧିକାରରୁ ମୁକ୍ତ ଏକ ବିଶାଳ ଅଞ୍ଚଳ ଧ୍ୱଂସସ୍ତୂପରେ ପରିଣତ ହୋଇଥିଲା । ନାଜି ଦଖଲକାରୀମାନେ ୧,୭୧୦ଟି ସହର ଓ ଶ୍ରମିକ ବସତି ଅଞ୍ଚଳକୁ ଧ୍ୱଂସ କରି ଦେଇଥିଲେ, ୭୦,୦୦୦ ଗ୍ରାମକୁ ଜାଳି ଦେଇ ଲୁଣ୍ଠନ କରିଥିଲେ ଏବଂ ୩୨,୦୦୦ ଶିଳ୍ପୋଦ୍ୟୋଗକୁ ଧ୍ୱଂସସ୍ତୂପରେ ପରିଣତ କରିଥିଲେ । ଏସବୁ ମଧ୍ୟରେ ଥିଲା ୭୫୦ଟି ଇଂଜିନିୟରିଂ ପ୍ରକଳ୍ପ ଓ ସୋଭିଏତ୍ ଜନସାଧାରଣଙ୍କର ଗର୍ବ, ଦ୍ନିପର ନଦୀରେ ଅବସ୍ଥିତ ଲେନିନ୍ ଜଳ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର ସମେତ ୬୧ଟି ଜଳବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର । ଦେଶର ଦକ୍ଷିଣରେ ଅବସ୍ଥିତ ସର୍ବବୃହତ୍ ଲୌହ ଆଉ ଇସ୍‌ପାତ ପ୍ରକଳ୍ପଗୁଡ଼ିକ, ଯିଏକି ଦେଶର ମୋଟ ଇସ୍‌ପାତର ଶତକଡ଼ା ୭୦ ଭାଗ ଉତ୍ପାଦନ କରୁଥିଲେ, ଧ୍ୱଂସସ୍ତୂପରେ ପରିଣତ ହୋଇଥିଲେ । ଦେଶର ଶତକଡ଼ା ୬୦ ଭାଗ କୋଇଲା ଉତ୍ପାଦନକାରୀ ହଜାର ହଜାର ଖଣିକୁ ଶତ୍ରୁମାନେ ଧ୍ୱଂସ କରି ଦେଇ ପାଣି ଭରି ଦେଇଥିଲେ । ନାଜିମାନେ ପ୍ରତ୍ୟାବର୍ତ୍ତନ କଲା ବେଳେ ୬୫,୦୦୦ କିଲୋମିଟର ଲମ୍ବର ରେଳପଥ, ୪,୧୦୦ରୁ ଅଧିକ ରେଳଷ୍ଟେସନ ଓ ୯୦,୦୦୦ କିଲୋମିଟରରୁ ଊର୍ଦ୍ଧ୍ୱ ମୋଟରଗାଡ଼ି ଚଳାଚଳ ରାସ୍ତା ଆଦିକୁ ଧ୍ୱଂସ କରି ଦେଇ ଯାଇଥିଲେ ।

କୃଷିରେ ମଧ୍ୟ ଭୟଙ୍କର କ୍ଷତି ଘଟିଥିଲା : ଦଖଲଦାରମାନେ ୧,୮୭୬ ରାଷ୍ଟ୍ର ଖମାର, ୨,୮୯୦ଟି ରାଷ୍ଟ୍ରୀୟ ମେସିନ୍ ଓ ଟ୍ରାକ୍ଟର କେନ୍ଦ୍ର ଏବଂ ୯୮,୦୦୦ଟି କୋଠଖମାରକୁ ଲୁଣ୍ଠନ କରି ନେଇଥିଲେ ଏବଂ ୭୧୦ ଲକ୍ଷ ଗୋରୁ ଘୋଡ଼ା ଆଦି ପଶୁଙ୍କୁ ମାରି ପକାଇଥିଲେ ବା ଜର୍ମାନୀକୁ ଘେନି ଯାଇଥିଲେ । ଦେଶର ସାଂସ୍କୃତିକ ଓ ଚିକିତ୍ସା କେନ୍ଦ୍ର ଏବଂ ବାସଗୃହଗୁଡ଼ିକୁ ମଧ୍ୟ ବ୍ୟାପକ ହାରରେ ନଷ୍ଟ କରି ଦେଇଥିଲେ ।

ମୋଟାମୋଟି ଏକ ହିସାବରୁ ଜଣାଯାଏ ଯେ, ନାଜି ଜର୍ମାନୀ ଦ୍ୱାରା ସୋଭିଏତ୍ ୟୁନିଅନ୍‌ର ମୋଟ ବୈଷୟିକ କ୍ଷତିର ପରିମାଣ ହେବ ବିରାଟ ଏକ ସଂଖ୍ୟା : ପ୍ରାୟ

୨୬୦୦,୦୦ କୋଟି ରୁବଲ ବା ୧୯୪୧ ସ୍ତରର ସୋଭିଏତ୍ ୟୁନିଅନ୍‌ର ୧୨ଟି ବାର୍ଷିକ ବଜେଟ ସହିତ ସମାନ । ସାମଗ୍ରିକ ଭାବେ ସୋଭିଏତ୍ ୟୁନିଅନ୍ ତା'ର ଜାତୀୟ ସଂପଦର ଏକତୃତୀୟାଂଶ ଯୁଦ୍ଧ ଫଳରେ ହରେଇଥିଲା । ସୋଭିଏତ୍ ୟୁନିଅନ୍‌ର ବିକାଶକୁ ଏହି ଯୁଦ୍ଧ ଖୁବ୍ କମ୍‌ରେ ୧୦-୧୨ ବର୍ଷ ପର୍ଯ୍ୟନ୍ତ ପଛେଇ ଦେଇଥିଲା ।

ତେବେ ବୈଷୟିକ କ୍ଷୟକ୍ଷତିକୁ ହିସାବ କରି ହୁଏ ଏବଂ ଲୋକଙ୍କ ଶ୍ରମ ଦ୍ୱାରା ସେସବୁକୁ ପୁଣି ପୂରଣ କରି ହୁଏ , କିନ୍ତୁ ମଣିଷର ଦୁଃଖ ଯାତନାକୁ ମାପି ହୁଏ ନାହିଁ । ସୋଭିଏତ୍ ୟୁନିଅନ୍‌ରେ ଏପରି ହୁଏତ ଗୋଟିଏ ପରିବାର ନାହିଁ , ଯିଏ ବାପ , ଭାଇ , ପୁଅ , ଝିଅ ବା ମା ପାଇଁ ଶୋକରେ ଲୁହ ନଗଡ଼େଇଛି , ଯେଉଁମାନେ ହୁଏତ ରଣାଙ୍ଗନରେ ମୃତ୍ୟୁବରଣ କରିଥିଲେ , କିମ୍ବା ଦଖଲକୃତ ଅଞ୍ଚଳରେ ନାତ୍ସି ନରରାକ୍ଷସମାନେ ନିର୍ଯ୍ୟାତନ କରି ମାରି ଦେଇଥିଲେ, ଫାଶି ଖୁଣ୍ଟରେ ଝୁଲେଇ ଦେଇଥିଲେ ବା ଜୀବନ୍ତ ଅବସ୍ଥାରେ ମାଟି ତଳେ ପୋତି ଦେଇଥିଲେ , କିମ୍ବା ଅଉସ୍ୱିଉଇଜ୍ ଏବଂ ମାଜ୍‌ଦାନେକ ଭଳି ହତ୍ୟା ଶିବିରରେ ମାରି ଦେଇଥିଲେ । ଯୁଦ୍ଧରେ ପ୍ରାଣ ଦେଇଥିଲେ ମୋଟ ୨ କୋଟି ସୋଭିଏତ୍ ନାଗରିକ ; ଲକ୍ଷ ଲକ୍ଷ ନାରୀପୁରୁଷଙ୍କୁ ଦଖଲଦାରମାନେ ସେମାନଙ୍କ ପରିବାର ଠାରୁ ବିଚ୍ଛିନ୍ନ କରି ଜର୍ମାନୀକୁ ନେଇ ଯାଇଥିଲେ ।

ଯୁଦ୍ଧପର ପ୍ରଥମ ବର୍ଷଗୁଡ଼ିକ ସୋଭିଏତ୍ ଜନସାଧାରଣଙ୍କ ପାଇଁ ଅସହ୍ୟ କଷ୍ଟକର ଥିଲା । ମୁକ୍ତ ଅଞ୍ଚଳର ନିୟୁତ ନିୟୁତ ସହରବାସୀ ଓ କୃଷକମାନେ ମାଟିତଳ ଗାତ ମଧ୍ୟରେ ବାସ କରୁଥିଲେ ଏବଂ ଅନ୍ୟମାନେ ବର୍ତ୍ତି ଯାଇଥିବା ବାସଗୃହରେ ଖୁନ୍ଦିଖାନ୍ଦି ହୋଇ ରହୁଥିଲେ । ଖାଦ୍ୟ , ବସ୍ତ୍ର ଏବଂ ପଦାବରଣର ଅଭାବ ଦେଖାଦେଇଥିଲା । କଠୋର ରେସନ ବ୍ୟବସ୍ଥା ଚାଲୁ କରି ଲୋକମାନଙ୍କୁ ଖାଦ୍ୟ ସାମଗ୍ରୀ ଏବଂ ଶିଳ୍ପଜାତ ଦ୍ରବ୍ୟାଦି ଯୋଗାଇ ଦିଆଯାଉଥିଲା । ଯୁଦ୍ଧକାଳୀନ ଭୟଙ୍କର ଦୁର୍ବିପାକ ଓ ଦୁଃଖକଷ୍ଟ ଦ୍ୱାରା ଭାଙ୍ଗି ନଯାଇ ଲୋକେ ସାହସର ସହିତ ଏହିସବୁ ଅସୁବିଧାକୁ ସହ୍ୟ କରିଥିଲେ ଏବଂ ଦୃଢ଼ମନ ନେଇ ସେସବୁକୁ ଅତିକ୍ରମ କରିବାକୁ ଏବଂ ପୁଣିଥରେ ସେମାନଙ୍କ ଦେଶକୁ ସମୃଦ୍ଧିଶାଳୀ ଓ ଶକ୍ତିଶାଳୀ କରି ଗଢ଼ିବାକୁ ସଂକଳ୍ପବଦ୍ଧ ହୋଇଥିଲେ ।

୧୯୪୫ ମସିହା ଜୁନ୍ ମାସରେ ସୋଭିଏତ୍ ସରକାର ସୈନ୍ୟବାହିନୀର ଲୋକଙ୍କୁ ସ୍ୱସ୍ଥାନକୁ ଫେରାଇ ଆଣିବାକୁ ଆରମ୍ଭ କରିଥିଲା । ଏହିସବୁ ସୋଭିଏତ୍ ସୈନ୍ୟମାନଙ୍କୁ ନେଇ ଟ୍ରେନ୍‌ସବୁ ବର୍ଲିନ୍ , ଭିଏନା , ବୁଦାପେଷ୍ଟ , ପ୍ରାଗ୍ ସମେତ ୟୁରୋପର ଅନ୍ୟାନ୍ୟ ସହର ପରିତ୍ୟାଗ କରିଥିଲେ ସୋଭିଏତ୍ ୟୁନିଅନ୍ ଅଭିମୁଖେ । ୟୁରୋପର ମୁକ୍ତିପ୍ରାପ୍ତ ଦେଶର ଜନସାଧାରଣ ସେମାନଙ୍କ ମୁକ୍ତିଦାତାମାନଙ୍କୁ ଗଭୀର କୃତଜ୍ଞତା ସହକାରେ ବିଦାୟ ଜଣାଇଥିଲେ ।

ଯୁଦ୍ଧ ଭୂଇଁରୁ ଫେରି ଆସିଥିବା ସୈନ୍ୟମାନଙ୍କ ପ୍ରତି ସୋଭିଏତ୍ ରାଷ୍ଟ୍ର ଗଭୀର

ମନୋଯୋଗ ପ୍ରଦାନ କରିଥିଲା : ସମସ୍ତ ସୈନିକ ଏବଂ ଅଫିସର ବଡ଼ ପରିମାଣର ଭତ୍ତା ପାଇଥିଲେ । ଯୁଦ୍ଧ ପୂର୍ବରୁ ଯିଏ ଯେଉଁଠି କାର୍ଯ୍ୟ କରୁଥିଲେ, ସେଠାରେ କିମ୍ବା ନୂଆ ସ୍ଥାନରେ ସମସ୍ତେ ଚାକିରି ପାଇଲେ ଏବଂ ଯୁଦ୍ଧ ପୂର୍ବରୁ ଯିଏ ଯେତିକି ବେତନ ପାଉଥିଲେ, ତା'ଠାରୁ କମ୍ ପାଇଲେ ନାହିଁ । ନାଜି ଅଧିକୃତ କ୍ଷତିଗ୍ରସ୍ତ ଅଞ୍ଚଳଗୁଡ଼ିକରେ ଯୁଦ୍ଧ କ୍ଷେତ୍ରରୁ ଫେରିଥିବା ସୈନିକମାନେ ବିନା ସୁଧରେ ଋଣ ଓ ବିନା ମୂଲ୍ୟରେ କାଠ ପାଇଲେ ଘର ତିଆରି କରିବା ନିମିତ୍ତ ।

୧୯୪୮ ମସିହା ମାର୍ଚ୍ଚ ମାସ ବେଳକୁ ଯୁଦ୍ଧପର ଥଇଥାନ କାର୍ଯ୍ୟ ସଂପୂର୍ଣ୍ଣ ହୋଇଯାଇଥିଲା । ଦେଶର ନିରାପତ୍ତା ପାଇଁ ଆବଶ୍ୟକ ସର୍ବନିମ୍ନ ସଂଖ୍ୟାକୁ ସେନାବାହିନୀକୁ କମେଇ ଦିଆଯାଇଥିଲା ।

ଯୁଦ୍ଧର ଅବସାନ ସାଥେ ସାଥେ ସୋଭିଏତ୍ ୟୁନିଅନ୍‌ରୁ ସାମରିକ ଆଇନ୍ ପ୍ରତ୍ୟାହାର କରି ନିଆଗଲା । ପ୍ରତିରକ୍ଷା ଦିଗରେ ପରିଚାଳିତ ଶିଳ୍ପକୁ ପୁଣି ଯୋଜନା ଅନୁଯାୟୀ ଅଣସାମରିକ ଉତ୍ପାଦନ ଦିଗକୁ ମୁହାଁଇ ଦିଆଗଲା । ପୁଣି ୮ ଘଣ୍ଟିଆ କର୍ମଦିବସ ପ୍ରବର୍ତ୍ତିତ ହେଲା ଏବଂ ଯୁଦ୍ଧ ସମୟରେ ପ୍ରବର୍ତ୍ତିତ ଓଭରଟାଇମ୍ ପ୍ରଥାକୁ ଉଠାଇ ଦିଆଗଲା । ଶିଳ୍ପ ଶ୍ରମିକ ଏବଂ ଅଫିସ୍ କର୍ମଚାରୀମାନେ ନିୟମିତ ସବେତନ ଛୁଟି ଉପଭୋଗ କଲେ (ଯୁଦ୍ଧ କାଳରେ ଛୁଟି ପରିବର୍ତ୍ତେ ମୁଦ୍ରା ଆକାରରେ କ୍ଷତିପୂରଣ ପାଉଥିଲେ) ।

ସର୍ବୋଚ୍ଚ ସୋଭିଏତ୍‌କୁ ପ୍ରଥମ ଯୁଦ୍ଧପର ନିର୍ବାଚନ ଅନୁଷ୍ଠିତ ହୋଇଥିଲା ୧୯୪୬, ଫେବୃଆରୀ ୧୦ ତାରିଖରେ, ଉତ୍ତେଜନାପୂର୍ଣ୍ଣ ରାଜନୈତିକ କ୍ରିୟାକଳାପ ମଧ୍ୟ ଦେଇ । ପ୍ରାୟ ସମସ୍ତ ଭୋଟଦାତା ଏହି ନିର୍ବାଚନରେ ଅଂଶଗ୍ରହଣ କରିଥିଲେ ଏବଂ ସର୍ବସମ୍ମତିକ୍ରମେ କମ୍ୟୁନିଷ୍ଟ ଓ ଅଣକମ୍ୟୁନିଷ୍ଟମାନଙ୍କୁ ଭୋଟ ଦେଇ ନିର୍ବାଚିତ କରିଥିଲେ ।

ସୋଭିଏତ୍ ୟୁନିଅନ୍‌ର ଦ୍ୱିତୀୟ ସର୍ବୋଚ୍ଚ ସୋଭିଏତ୍‌ର ପ୍ରଥମ ଅଧିବେଶନ ୧୯୪୬ ମାର୍ଚ୍ଚ ମାସରେ ବସିଲା । ଏହି ଅଧିବେଶନରେ ଜାତୀୟ ଅର୍ଥନୀତିର ପୁନର୍ସ୍ଥାପନ ଓ ଆଉରି ବିକାଶ ପାଇଁ ପଞ୍ଚବାର୍ଷିକ ଯୋଜନାଟିକୁ (୧୯୪୬-୧୯୫୦) ପରୀକ୍ଷା କରାଯାଇ ଅନୁମୋଦନ କରାଯାଇଥିଲା । ଏହି ପଞ୍ଚବାର୍ଷିକ ଯୋଜନାର ମୁଖ୍ୟ କର୍ତ୍ତବ୍ୟଟି ଥିଲା ଯୁଦ୍ଧ ବିଧ୍ୱସ୍ତ ଅଞ୍ଚଳକୁ ପୁନଃସ୍ଥାପିତ କରି ଯୁଦ୍ଧପୂର୍ବ ଶିଳ୍ପ ଓ କୃଷିର ଉତ୍ପାଦନ ସ୍ତରରେ ପହଞ୍ଚିବା ଓ ତା'ପରେ ଲକ୍ଷଣୀୟ ଭାବେ ଆଗେଇଯିବା ।

ଚତୁର୍ଥ ପଞ୍ଚବାର୍ଷିକ ଯୋଜନାରେ ଲୋକଙ୍କର ବୈଷୟିକ ତଥା ସାଂସ୍କୃତିକ କଲ୍ୟାଣର ଉନ୍ନତି ସାଧନ ପାଇଁ ବଡ଼ ବଡ଼ ପଦକ୍ଷେପ ନିଆଯାଇଥିଲା । ଏହି ସମୟରେ ଖାଦ୍ୟ ସାମଗ୍ରୀ ଓ ଶିଳ୍ପଜାତ ଦ୍ରବ୍ୟ ଉପରେ ଥିବା ରେସନ ବ୍ୟବସ୍ଥାକୁ ଉଠାଇ ଦେଇ କେବଳ ଯୁଦ୍ଧପୂର୍ବ ଜୀବନଧାରଣ ମାନକୁ ପୁନଃପ୍ରତିଷ୍ଠା କରିବା ନୁହେଁ, ତାହାକୁ ଯଥେଷ୍ଟ ଟପିଯିବା ପାଇଁ ଯୋଜନା କରାଯାଇଥିଲା ।

ଜାତୀୟ ଅର୍ଥନୀତିର ଯୁଦ୍ଧପର ପୁନଃସ୍ଥାପନ ପ୍ରକ୍ରିୟାର କେତେକ ବିଶେଷ ବୈଶିଷ୍ଟ୍ୟ ସଂପର୍କରେ ଉଲ୍ଲେଖ କରିବା ଦରକାର । ଏହିସବୁ ବୈଶିଷ୍ଟ୍ୟ ପୁନଃସ୍ଥାପନର ପ୍ରାଥମିକ ଏବଂ ସଫଳ ସଂପାଦନ କ୍ରିୟା ପ୍ରତି ଅବଦାନ ରଖିଥିଲା ।

ପ୍ରଥମତଃ, ବିଧ୍ୱସ୍ତ ଅଞ୍ଚଳସମୂହର ପୁନଃନିର୍ମାଣ କ୍ରିୟା ଯୁଦ୍ଧ ପୂର୍ବରୁ ସୋଭିଏତ୍ ୟୁନିଅନ୍‌ର ପୂର୍ବ ଭାଗରେ ପ୍ରତିଷ୍ଠିତ ଓ ଯୁଦ୍ଧକାଳୀନ ବର୍ଷମାନଙ୍କରେ ସଂପ୍ରସାରିତ ଶକ୍ତିଶାଳୀ ଶିଳ୍ପ ସମ୍ଭାର ଉପରେ ଭିତ୍ତି କରି ପରିଗ୍ରହିତ ହୋଇଥିଲା । ୧୯୪୫ ମସିହାରେ ଦେଶର ପୂର୍ବାଞ୍ଚଳ ୧୯୪୦ ତୁଳନାରେ ଦୁଇଗୁଣ ଶିଳ୍ପଜାତ ଦ୍ରବ୍ୟ ଉତ୍ପାଦନ କରୁଥିଲା । ନିର୍ମାଣ ପାଇଁ ଜିନିଷପତ୍ର, ମେସିନ୍, ଯନ୍ତ୍ରପାତି, ଜାଳେଣି ଏବଂ କଞ୍ଚାମାଲ ବୋଝେଇ ରେଳଗାଡ଼ିସବୁ ଅନବରତ ଏବଂ କ୍ରମାଧିକ ସଂଖ୍ୟାରେ ୟୁରାଲ୍, ସୋଭିଏତ୍ ଦୂର ପ୍ରାଚ୍ୟ, ସାଇବେରିଆ, କାଜାଖ୍‌ସ୍ତାନ ଏବଂ ମଧ୍ୟ ଏସିଆରୁ ପଶ୍ଚିମ ଆଡ଼ର ପୁନଃସ୍ଥାପିତ ଶିଳ୍ପୋଦ୍ୟୋଗଗୁଡ଼ିକ ଆଡ଼କୁ ଛୁଟିବାକୁ ଲାଗିଲା । ପୂର୍ବାଞ୍ଚଳଗୁଡ଼ିକ ବିଧ୍ୱସ୍ତ ପଶ୍ଚିମାଞ୍ଚଳର ଦାୟିତ୍ୱ ଗ୍ରହଣ କରିଥିଲେ । ପୂର୍ବାଞ୍ଚଳର ଶିଳ୍ପୋଦ୍ୟୋଗସମୂହ ମଧ୍ୟ ପଶ୍ଚିମ ଅଞ୍ଚଳର ଶିଳ୍ପୋଦ୍ୟୋଗସମୂହର ଏହି ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ ।

ଦ୍ୱିତୀୟତଃ, ପୁନଃନିର୍ମାଣର କାର୍ଯ୍ୟ ମଧ୍ୟ ଯୁଦ୍ଧ ଚାଲିଥିବା ସମୟରେ ଆରମ୍ଭ ହୋଇ ଯାଇଥିଲା : ମୁକ୍ତ ହେଉଥିବା ଅଞ୍ଚଳଗୁଡ଼ିକରେ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର, କଳକାରଖାନା ଏବଂ ଖଣି ଖାଦାନଗୁଡ଼ିକରେ ଉତ୍ପାଦନ କାର୍ଯ୍ୟ ଆରମ୍ଭ କରାଯାଇଥିଲା । ଯୁଦ୍ଧ ଶେଷ ହେଲା ବେଳକୁ ଏହି ଅଞ୍ଚଳରେ ୭,୫୦୦ ଶିଳ୍ପୋଦ୍ୟୋଗକୁ ପୁନଃସ୍ଥାପିତ କରାଯାଇଥିଲେ । ଏହିସବୁ ଶିଳ୍ପୋଦ୍ୟୋଗ ମୁକ୍ତ ହୋଇଥିବା ଅଞ୍ଚଳଗୁଡ଼ିକରେ ଶିଳ୍ପ ତଥା ସମଗ୍ର ଜାତୀୟ ଅର୍ଥନୀତିକୁ ପୁନଃସ୍ଥାପିତ କରିବାରେ ସାହାଯ୍ୟ କରିଥିଲେ ।

ତୃତୀୟତଃ, ବିରାଟ ସଂଖ୍ୟକ ଦକ୍ଷ ଶ୍ରମିକ, ଇଂଜିନିୟର ଏବଂ କାରିଗରଙ୍କ ମୃତ୍ୟୁ ସତ୍ତ୍ୱେ ଯୁଦ୍ଧ କାଳରେ ନୂଆ କର୍ମୀ ବାହିନୀକୁ ମଧ୍ୟ ତାଲିମ୍ ଦିଆଯାଇଥିଲା । ରଣାଙ୍ଗନରେ ବିଜୟ କାର୍ଯ୍ୟ କ୍ଷେତ୍ରରେ ଅତୁଳନୀୟ ଉନ୍ମାଦନା ସୃଷ୍ଟି କରିଥିଲା ।

ଶେଷତଃ, ଜାତୀୟ ଅର୍ଥନୀତିର ଯୁଦ୍ଧ ପରେ ପୁନଃସ୍ଥାପନ ଫଳରେ ଅର୍ଥନୀତି କ୍ଷେତ୍ରରେ ସମାଜବାଦୀ ଅର୍ଥନୈତିକ ବ୍ୟବସ୍ଥା ସଂପୂର୍ଣ୍ଣ ପ୍ରାଧାନ୍ୟ ଲାଭ କରୁଥିଲା । ପୁନଃନିର୍ମାଣ କ୍ରିୟା ପରିଚାଳିତ ହୋଇଥିଲା ଗୋଟିଏ ରାଷ୍ଟ୍ରୀୟ ଯୋଜନା ଅନୁଯାୟୀ ଏବଂ ଏହା ଦ୍ୱାରା ବୈଷୟିକ, ଆର୍ଥିକ ଏବଂ ଲୋକ ଶକ୍ତିକୁ ଅତୀବ ଦକ୍ଷତାର ସହିତ ଉପଯୋଗ କରିବା ସମ୍ଭବ ହୋଇଥିଲା । ଜାତୀୟ ଅର୍ଥନୀତିର ସାମଗ୍ରିକ ସ୍ୱାର୍ଥ ଦୃଷ୍ଟିରୁ ବିଭିନ୍ନ ଧରଣର ପୁନଃନିର୍ମାଣର ଅଗ୍ରାଧିକାର ଓ ସମୟ କାଳ ନିର୍ଦ୍ଧାରଣ କରାଗଲା ।

ସୋଭିଏତ୍ ୟୁନିଅନ୍‌ରେ ସମାଜବାଦର ବିଜୟ ଦ୍ୱାରା ସୃଷ୍ଟ ଏହିସବୁ ବିଶେଷ ବୈଶିଷ୍ଟ୍ୟ ହେତୁ ପୁନଃନିର୍ମାଣ କାର୍ଯ୍ୟ ସ୍ୱଳ୍ପ କାଳ ମଧ୍ୟରେ ସଂପନ୍ନ ହୋଇ ପାରିଥିଲା । ଦୃଷ୍ଟାନ୍ତ ସ୍ୱରୂପ, ୧୯୪୬ ମସିହାର ଶେଷ ବେଳକୁ ମେସିନ୍ ଏବଂ ମେସିନ୍‌ର ଯନ୍ତ୍ରପାତି

ତିଆରି କରୁଥିବା ଲେନିନ୍‌ଗ୍ରାଦ୍‌ର କାରଖାନାଗୁଡ଼ିକରେ ଉତ୍ପାଦନ ଆରମ୍ଭ ହୋଇ ଯାଇଥିଲା ଏବଂ ଅଧିକାଂଶ କ୍ଷେତ୍ରରେ ସର୍ବୋଚ୍ଚ ଉତ୍ପାଦନ କ୍ଷମତାର ଉପଯୋଗ କରାଯାଇଥିଲା । ଦ୍‌ନିପର ନଦୀରେ ଜଳବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରର ପୁନଃନିର୍ମାଣ କାର୍ଯ୍ୟ ଦ୍ରୁତତାର ସହିତ ଆରମ୍ଭ ହୋଇଥିଲା । ଏହି କାର୍ଯ୍ୟକୁ ପରିଚାଳନା କରିଥିଲେ ୧୯୩୦ ଦଶକରେ ଯେଉଁମାନେ ଏହାକୁ ନିର୍ମାଣ କରିଥିଲେ, ସେମାନଙ୍କ ମଧ୍ୟରୁ ଅନେକ । ଇଂଜିନିୟର ଏବଂ ଶ୍ରମିକମାନେ ବିରଳ ଉଦ୍‌ଭାବନୀ କ୍ଷମତା ପ୍ରଦର୍ଶନ କରିଥିଲେ ଉଚ୍ଚ ମାନର ମୌଳିକ କାରିଗରୀ ସମାଧାନ ପ୍ରଦାନ କରିଥିଲେ ଏହି ଜଳବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରଗୁଡ଼ିକୁ ଆଉରି ଶୀଘ୍ର ପୁନଃସ୍ଥାପିତ କରିବାକୁ । ସର୍ବପ୍ରଥମ ପୁନଃସ୍ଥାପିତ ଟର୍ବୋଜେନେରେଟର ବିଦ୍ୟୁତ୍ ସ୍ରୋତ ସୃଷ୍ଟି କରିଥିଲା ୧୯୪୭ ମସିହାରେ, ମାର୍ଚ୍ଚ ମାସରେ । ଚତୁର୍ଥ ପଞ୍ଚବାର୍ଷିକ ଯୋଜନାର ଶେଷ ବେଳକୁ ଏହି ଜଳବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରଟି ଯୁଦ୍ଧପୂର୍ବ ସ୍ତରଠାରୁ ୯୫,୦୦୦ କିଲଓ୍ୱାଟ ଅଧିକ ଉତ୍ପାଦନ କରିଥିଲା । ତତ୍କାଳୀନ ୟୁରୋପର ସର୍ବବୃହତ୍ ଶକ୍ତିମାନ ଏହି ଜଳ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରଟି ଶହ ଶହ ଶିଳ୍ପ କାରଖାନାରେ ଜୀବନ ସଞ୍ଚାର କରିଥିଲା ।

ଦେଶର ମୁଖ୍ୟ କୋଇଲା ଉତ୍ପାଦନକାରୀ ଅଞ୍ଚଳ ମଧ୍ୟ ଖୁବ୍ ଶୀଘ୍ର ପୁନଃସ୍ଥାପିତ ହୋଇଥିଲା । ଦନ୍‌ବାସ୍‌ର ଖଣି ଶ୍ରମିକମାନେ ଜଳ ଭର୍ତ୍ତି କୋଇଲା ଖଣିଗୁଡ଼ିକରୁ ୬୫୦ ନିୟୁତ ଘନମିଟର ଜଳ ନିଷ୍କାଶନ କରିଥିଲେ ।

ଯୁଦ୍ଧ କାଳରେ ଭୟଙ୍କର ଭାବେ କ୍ଷତିଗ୍ରସ୍ତ ହୋଇଥିଲା ଶିଳ୍ପ ଏବଂ ଶ୍ରମିକମାନଙ୍କର ବୀରତ୍ୱପୂର୍ଣ୍ଣ ଶ୍ରମ ଫଳରେ ଏହା ୧୯୪୦ ଦଶକର ଶେଷ ବେଳକୁ ମୂଳତଃ ପୁନଃସ୍ଥାପିତ ହୋଇ ଯାଇଥିଲା । ହଜାର ହଜାର କଳକାରଖାନା, ଖଣି ଏବଂ ଜଳବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରଗୁଡ଼ିକ ଆଧୁନିକ ଯନ୍ତ୍ରପାତିରେ ସଜ୍ଜିତ ହୋଇ ଉତ୍ପାଦନ ଆରମ୍ଭ କରି ଦେଇଥିଲେ ।

ଲିଓନିଦ୍ ବ୍ରେଝନେଭ୍ ତାଙ୍କର "ପୁନଃଜାଗରଣ" ନାମକ ପୁସ୍ତକରେ ଦ୍‌ନିପର ଜଳ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର, ଜାପୋରଝେ ଇସ୍‌ପାତ ପ୍ରକଳ୍ପ ଏବଂ ୟୁକ୍ରାଇନ୍‌ର ଅନ୍ୟାନ୍ୟ ଶିଳ୍ପୋଦ୍ୟୋଗ ପୁନଃସ୍ଥାପନ କରିବାରେ ଶ୍ରମିକମାନଙ୍କର ବୀରତ୍ୱର ପ୍ରାଞ୍ଜଳ ଏବଂ ଅଭୁଲା ଦୃଶ୍ୟ ବର୍ଣ୍ଣନା କରିଛନ୍ତି । ଯୁଦ୍ଧ ପରେ ଲିଓନିଦ୍ ବ୍ରେଝନେଭ୍ ଦ୍‌ନେପ୍ରୋପେଟ୍ରୋଭ୍‌ସ୍କ ଓ ଜାପୋରଝେ ଆଞ୍ଚଳିକ ପାର୍ଟି କମିଟିର ସଂପାଦକ ରୂପେ କାର୍ଯ୍ୟ କରୁଥିଲେ ।

ନାଜି ଜେନେରାଲ ଷ୍ଟିଉଲପନାଗେଲ ହିଟଲର ନିକଟକୁ ପ୍ରେରିତ ଏକ ବିବରଣୀରେ ୧୯୪୩ ମସିହାରେ ବିଦ୍ୱେଷପୂର୍ଣ୍ଣ ଭାଷାରେ ଲେଖିଥିଲା, ରୁଷିଆକୁ ଖୁବ୍ କମ୍‌ରେ ୨୫ ବର୍ଷ ଲାଗିବ ୱେର୍‌ମାଚ୍‌ଟଙ୍କ ଦ୍ୱାରା ଧ୍ୱଂସକୁ ପୁନର୍ନିର୍ମାଣ କରିବାକୁ । ସେ ଏବଂ ସାମ୍ରାଜ୍ୟବାଦୀ ଦେଶମାନଙ୍କର ଶାସକ ଗୋଷ୍ଠୀଗୁଡ଼ିକ ମଧ୍ୟ ସେମାନଙ୍କ ହିସାବରେ ଭୁଲ କରିଥିଲେ । ସେମାନେ ଭାବିଥିଲେ, ସୋଭିଏତ୍ ୟୁନିଅନ୍‌ର ଅର୍ଥନୀତିରେ ଯେଉଁସବୁ ଆଘାତ ଲାଗିଛି, ତାକୁ ବହୁ ବର୍ଷ ଧରି ସେ ଦେଶ ସଜାଡ଼ି ପାରିବ ନାହିଁ । ଏହି ଧାରଣା

ଉପରେ ଭିତ୍ତି କରି ସେମାନେ ସୋଭିଏତ୍ ୟୁନିଅନ୍ ପ୍ରତି ସେମାନଙ୍କ ନୀତି ନିର୍ଦ୍ଧାରଣ କରିଥିଲେ ।

ସୋଭିଏତ୍ ଜନସାଧାରଣ ଶିଳ୍ପ କ୍ଷେତ୍ରରେ କେବଳ ଯୁଦ୍ଧପୂର୍ବ ସ୍ତରକୁ କେବଳ ପ୍ରତିଷ୍ଠା କଲେ ନାହିଁ, ଗୋଟିଏ ପଞ୍ଚବାର୍ଷିକ ଯୋଜନା କାଳରେ ସେମାନେ ନୂତନ ବ୍ୟାପକ ଶିଳ୍ପ ନିର୍ମାଣ କରିବା ସଙ୍ଗେ ସଙ୍ଗେ ଚାଲୁଥିବା କାରଖାନାରେ ଉତ୍ପାଦନ ବୃଦ୍ଧି କରିଥିଲେ ।

ଦେଶର ସମସ୍ତ କୋଇଲା ଉତ୍ପାଦନକାରୀ ଅଞ୍ଚଳର କୋଇଲା ଖଣିଗୁଡ଼ିକରୁ କୋଇଲା ଉତ୍ପାଦନ ଆରମ୍ଭ ହୋଇଗଲା ଏବଂ କର୍ମରତ ଖଣିଗୁଡ଼ିକୁ ନୂତନ ଯନ୍ତ୍ରରେ ସଜ୍ଜିତ କରାଗଲା । ୧୯୪୮ ମସିହାରେ ସୋଭିଏତ୍ ଡିଜାଇନର ଏବଂ ଶ୍ରମିକମାନେ ନୂଆ ଏକ କୋଇଲା କାଟିବା ଯନ୍ତ୍ର ଉଦ୍‌ଭାବନ କରିଥିଲେ । ଏହା ଫଳରେ କେବଳ କୋଇଲା ଖୋଳିବା ନୁହେଁ, କୋଇଲା ପରିବାହିନୀରେ ଏହା କୋଇଲାକୁ ଭରି ଦେଲା । ୟୁରାଲ୍ ଏବଂ ଭୋଲ୍‌ଗା ମଧ୍ୟସ୍ଥ "ଦ୍ୱିତୀୟ ବାକୁର" ତୈଳ କ୍ଷେତ୍ରଗୁଡ଼ିକୁ ବ୍ୟାପକ ଆକାରରେ ସଂପ୍ରସାରିତ କରାଯାଇଥିଲା । କାସ୍ପିଆନ ସାଗରରେ ଆଜର୍‌ବୈଜାନୀୟ ତୈଳ ଶିଳ୍ପ ଶ୍ରମିକମାନଙ୍କ ଦ୍ୱାରା ଖୋଦିତ ପ୍ରଥମ ତୈଳ କୂପଟି ସାଗର ତଳୁ ତୈଳ ଦାନ କରିଥିଲା ୧୯୪୯, ଏପ୍ରିଲ ମାସରେ । ଜଳ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରଗୁଡ଼ିକର ନିର୍ମାଣ ମଧ୍ୟ ବିରାଟ ସମ୍ଭାବନା ସୃଷ୍ଟି କଲା: ଚତୁର୍ଥ ପଞ୍ଚବାର୍ଷିକ ଯୋଜନା କାଳରେ ମୋଟ ୮.୪ ନିୟୁତ କିଲୋଓ୍ୱାଟ ସଂପନ୍ନ ଜଳବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରଗୁଡ଼ିକରେ ଉତ୍ପାଦନ ଆରମ୍ଭ ହୋଇଗଲା । ୧୯୩୭ ମସିହାରେ ସାରା ଦେଶରେ ଥିବା ଜଳ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରସମୂହର ମୋଟ ଉତ୍ପାଦନ ଶକ୍ତି ଥିଲା ଏତିକି ।

ଏହି ସମୟରେ ଚାରୋଟି ନୂଆ ଟ୍ରାକ୍ଟର ଏବଂ ଦୁଇଟି ମୋଟର ତିଆରି କାରଖାନା, ଆଉ କେତେକ ଇଂଜିନିୟରିଂ ପ୍ରକଳ୍ପ, ଧାତୁ ଶିଳ୍ପ କାରଖାନା, ରାସାୟନିକ କାରଖାନା ଆଦିରେ ଉତ୍ପାଦନ ଆରମ୍ଭ ହୋଇଥିଲା । ଚତୁର୍ଥ ପଞ୍ଚବାର୍ଷିକ ଯୋଜନା କାଳରେ ୬,୦୦୦ ବୃହତ୍ ଶିଳ୍ପ ଉଦ୍ୟୋଗ ପୁନଃସ୍ଥାପିତ ହୋଇଥିଲା ଏବଂ ନିର୍ମିତ ହୋଇଥିଲା । ଏହା ଛଡ଼ା ଅସଂଖ୍ୟ ଛୋଟ ଛୋଟ କାରଖାନା ମଧ୍ୟ ଏହି ସମୟରେ ଗଢ଼ି ଉଠିଥିଲା ।

ପୁରୁଣା ଶିଳ୍ପୋଦ୍ୟୋଗଗୁଡ଼ିକର ପୁନଃପ୍ରତିଷ୍ଠା ଏବଂ ନୂତନ ଶିଳ୍ପୋଦ୍ୟୋଗସମୂହର ନିର୍ମାଣ ଫଳରେ ସୋଭିଏତ୍ ୟୁନିଅନ୍‌ର ଶିଳ୍ପୋତ୍ପାଦନର ଅଭିବୃଦ୍ଧି ହାର ଖୁବ୍ ଉଚ୍ଚ ହୋଇଥିଲା: ୧୯୪୭, ଅକ୍ଟୋବର ମାସରେ, ଅର୍ଥାତ୍, ପଞ୍ଚବାର୍ଷିକ ଯୋଜନା ଆରମ୍ଭ ହେଲା ପରେ ପରେ ମାସିକ ହାରାହାରି ଶିଳ୍ପ ଉତ୍ପାଦନ ୧୯୪୦ ମସିହାର ସ୍ତରରେ ପହଞ୍ଚି ଯାଇଥିଲା । ଏହାର ପରବର୍ଷ ଯୁଦ୍ଧପୂର୍ବ ସ୍ତରରେ ପହଞ୍ଚି ମୋଟ ବାର୍ଷିକ ଉତ୍ପାଦନ କ୍ଷେତ୍ରକୁ ଟପିଗଲା । ୧୯୫୦ ମସିହାରେ, ଅର୍ଥାତ୍, ଚତୁର୍ଥ ପଞ୍ଚବାର୍ଷିକ ଯୋଜନାର

ଶେଷ ବର୍ଷରେ ଶିଳ୍ପୋତ୍ପାଦନ ଯୁଦ୍ଧପୂର୍ବ ସ୍ତରଠାରୁ ଶତକଡ଼ା ୭୦ ଭାଗ ଅଧିକ ହୋଇଥିଲା । ଯୋଜନା ଅନୁଯାୟୀ ଏହି ହାର ହେବାର ଥିଲା ଶତକଡ଼ା ୪୮ ଭାଗ ।

କୃଷି ମଧ୍ୟ ବଡ଼ ଧରଣର ଯୁଦ୍ଧପୂର୍ବ ଅସୁବିଧାରାଜିର ସମ୍ମୁଖୀନ ହୋଇଥିଲା । ଯୁଦ୍ଧକାଳୀନ ବର୍ଷଗୁଡ଼ିକରେ ଶସ୍ୟ ବୁଣା ଜମିର ପରିମାଣ ଏବଂ ଶସ୍ୟ ଉତ୍ପାଦନ କମିଗଲା । ୧୯୪୫ ମସିହାରେ ମୋଟ ଶସ୍ୟ ଉତ୍ପାଦନ ୧୯୪୦ ମସିହାର ସ୍ତର ଠାରୁ ଶତକଡ଼ା ୭୦ ଭାଗ କମ୍ ଥିଲା । କୃଷି ଯନ୍ତ୍ରପାତି ଏବଂ ଟ୍ରାକ୍ଟର ବହରଗୁଡ଼ିକର ପରିମାଣ ଏକତୃତୀୟାଂଶ କମିଯାଇଥିଲା ଏବଂ ମେସିନ୍‌ସବୁ ପୁରୁଣା ହୋଇ ପଡ଼ିଥିଲା । ଏହାର କାରଣ ହେଲା, ଯୁଦ୍ଧ କାଳରେ କୃଷି କ୍ଷେତ୍ରକୁ ନୂଆ ମେସିନ୍ ମିଳିଲା ନାହିଁ । ଘୋଡ଼ାମାନଙ୍କର ସଂଖ୍ୟା ମଧ୍ୟ ପ୍ରାୟ ଅର୍ଦ୍ଧେକ କମିଗଲା । ନାଜିମାନଙ୍କ ଅକ୍ତିଆରରେ ଯେଉଁସବୁ କୋଠଖମାର ଥିଲା, ସେଥିରେ ୧୯୪୬ ମସିହା ବସନ୍ତ କାଳରେ ଗାଈମାନଙ୍କୁ ବ୍ୟବହାର କରାଯାଇଥିଲା ଜମି ହଳ କରିବା ଏବଂ ବିହନ ବୁଣିବା ପାଇଁ । ଏହା ଛଡ଼ା କୋଠଖମାରଗୁଡ଼ିକରେ ସକ୍ଷମ ଲୋକଙ୍କ ସଂଖ୍ୟା ମଧ୍ୟ କମି ଯାଇଥିଲା ଅନେକ ପରିମାଣରେ – ନିୟୁତ ନିୟୁତ ଯୁବକ ଚାଷୀ ଯୁଦ୍ଧରେ ମୃତ୍ୟୁବରଣ କରିଥିଲେ । ଏସବୁଥିରୁ ସହଜରେ ଅନୁମାନ କରି ହୁଏ, ଯୁଦ୍ଧପୂର୍ବ ପ୍ରଥମ ବର୍ଷଗୁଡ଼ିକରେ ସୋଭିଏତ୍ କୃଷି କି ପରିମାଣର ଅସୁବିଧାର ସମ୍ମୁଖୀନ ହୋଇଥିଲା । ଏସବୁ ସାଙ୍ଗକୁ ୧୯୪୬ ମସିହାର ଅନାବୃଷ୍ଟି ଦେଶ ପକ୍ଷରେ ଏକ ଦାରୁଣ ଆଘାତ ହାଣିଥିଲା ।

ତେବେ ସମସ୍ତ ଅସୁବିଧା ସତ୍ତ୍ୱେ ବିମୁକ୍ତ ହୋଇଥିବା ଅଞ୍ଚଳଗୁଡ଼ିକରେ ସମସ୍ତ କୋଠଖମାର, ରାଷ୍ଟ୍ରୀୟ ଖମାର ଏବଂ ସମସ୍ତ ମେସିନ୍ ଓ ଟ୍ରାକ୍ଟର ମରାମତ ଷ୍ଟେସନ ପୁନଃପ୍ରତିଷ୍ଠିତ ହୋଇ ଯାଇଥିଲା । କ୍ଷତିଗ୍ରସ୍ତ ଅଞ୍ଚଳକୁ ପଠାଯାଇଥିଲା ଟ୍ରାକ୍ଟର, ମୋଟରଗାଡ଼ି, ଅନ୍ୟାନ୍ୟ ମେସିନ୍, ଗୋରୁ କୁକୁଡ଼ା ଆଦିଙ୍କର ଛୁଆ, ବିହନ ଏବଂ ପଶୁଖାଦ୍ୟ ଆଦି । ଚତୁର୍ଥ ପଞ୍ଚବାର୍ଷିକ ଯୋଜନା କାଳରେ କୃଷି କ୍ଷେତ୍ରରେ ଯୁଦ୍ଧପୂର୍ବ ପର୍ଯ୍ୟାୟର ସ୍ତରରେ ଦେଶ କେବଳ ପହଞ୍ଚି ନଥିଲା, ଏହି ସ୍ତରକୁ ଅତିକ୍ରମ କରିଯାଇଥିଲା ।

ଶସ୍ୟ ବୁଣା ହେଉଥିବା ଅଞ୍ଚଳ କ୍ରମଶଃ ସଂପ୍ରସାରିତ ହେଲା, ପଶୁମାନଙ୍କ ଖାଦ୍ୟ ସଂରକ୍ଷଣ ଅଧିକ ହେଲା ଏବଂ ଗୋରୁ କୁକୁଡ଼ା ଆଦି ପଶୁଙ୍କ ସଂଖ୍ୟା ବୃଦ୍ଧି ପାଇଲା । କୋଠଖମାର ଏବଂ ରାଷ୍ଟ୍ରଖମାରଗୁଡ଼ିକ ନୂଆ ନୂଆ ପଶୁପାଳନ ୟୁନିଟ ଗଠନ କଲେ, ଭଣ୍ଡାର ଘର, ଯନ୍ତ୍ରରେ ଫସଲ ଝାଡ଼ିବା ଖଳା ସମେତ କ୍ଲବ, ପାଠାଗାର, ସାଂସ୍କୃତିକ କେନ୍ଦ୍ର, ବାସଗୃହ, ସ୍କୁଲ, ହସ୍‌ପାତାଳ, ଆଦି ନିର୍ମାଣ କଲେ ।

୧୯୫୦ ମସିହା ବେଳକୁ ସୋଭିଏତ୍ ୟୁନିଅନ୍‌ରେ ମୋଟାମୋଟି କୋଠଖମାର, ରାଷ୍ଟ୍ରଖମାର, ମେସିନ୍ ଏବଂ ଟ୍ରାକ୍ଟର ଷ୍ଟେସନ ଏବଂ ସେସବୁର ବୈଷୟିକ ତଥା କାରିଗରି ଭିତ୍ତି ପୁନଃପ୍ରତିଷ୍ଠିତ ହୋଇ ଯାଇଥିଲା । ଗ୍ରାମାଞ୍ଚଳରେ ୧୯୪୦ ତୁଳନାରେ

ଏପରିକି ଆଉରି ଅଧିକ ସାଂସ୍କୃତିକ ଓ ଶିକ୍ଷା ପ୍ରତିଷ୍ଠାନ — ସ୍କୁଲ, ପାଠାଗାର ଏବଂ ସାଂସ୍କୃତିକ କେନ୍ଦ୍ରମାନଙ୍କ ସଂଖ୍ୟା ଅଧିକ ହୋଇଗଲା । ତେବେ ଚତୁର୍ଥ ପଞ୍ଚବାର୍ଷିକ ଯୋଜନାରେ ଯେତେ ସଂଖ୍ୟାରେ ହେବାର କଥା ଥିଲା, ତାହା ହୋଇ ପାରିଲା ନାହିଁ ।

ଦେଶର ଅର୍ଥନୀତିର ସାଫଲ୍ୟମଣ୍ଡିତ ପୁନଃସ୍ଥାପନ ଓ ଏହାର ଆଉରି ଅଧିକ ବିକାଶ ଲୋକଙ୍କ ବୈଷୟିକ ତଥା ସାଂସ୍କୃତିକ ମାନର ଅଭିବୃଦ୍ଧି ପାଇଁ ଆବଶ୍ୟକୀୟ ଅବସ୍ଥା ସୃଷ୍ଟି କରି ଦେଲା । ଯୁଦ୍ଧ କାଳରେ ପ୍ରବର୍ତ୍ତିତ ଖାଦ୍ୟଶସ୍ୟ ଏବଂ ଶିଳ୍ପଜାତ ଦ୍ରବ୍ୟ ପାଇଁ ରେସନ ବ୍ୟବସ୍ଥା ୧୯୪୭, ଡିସେମ୍ବର ମାସରେ ଉଠାଇ ଦିଆଗଲା । ଚତୁର୍ଥ ପଞ୍ଚବାର୍ଷିକ ଯୋଜନା କାଳରେ ଖାଦ୍ୟ ଆଉ ଶିଳ୍ପଜାତ ଦ୍ରବ୍ୟର ମୂଲ୍ୟ ତିନି ଥର ପାଇଁ କମାଇ ଦିଆଗଲା ।

ଦେଶ ସାରା ବାସଗୃହ, ସ୍କୁଲ, ସାଂସ୍କୃତିକ କେନ୍ଦ୍ର, ଶିଶୁ ପାଳନାଗାର, ଶିଶୁ ସଦନ, ହସ୍‌ପାତାଳ, ଆଦି ମୁଣ୍ଡ ଟେକି ଉଠିଲା । ୧୯୪୬-୧୯୫୦ ମଧ୍ୟରେ ସହରମାନଙ୍କରେ ମୋଟ ୧୦୦ ନିୟୁତ ବର୍ଗ ମିଟର ଗୃହତଳି ନିର୍ମିତ କିମ୍ବା ପୁନଃନିର୍ମିତ ହୋଇଥିଲା ଏବଂ ଗ୍ରାମାଞ୍ଚଳରେ ୨.୬ ନିୟୁତ ଘର ନିର୍ମିତ କିମ୍ବା ପୁନଃସ୍ଥାପିତ ହୋଇଥିଲା । ୨୫-୩୦ ନିୟୁତ ଲୋକ ନୂତନ ଫ୍ଲାଟ ବା ଘରେ ବାସ କରିଥିଲେ । ଏସବୁ ସତ୍ତ୍ୱେ ବାସଗୃହର ଅଭାବ ତୀବ୍ର ହୋଇ ରହିଗଲା । ନାଜିମାନେ ୨ କୋଟି ୫୦ ଲକ୍ଷ ଲୋକଙ୍କୁ ବାସହୀନ କରି ଦେଇଥିଲେ ।

ଯୁଦ୍ଧକାଳୀନ ବର୍ଷଗୁଡ଼ିକରେ ନାଜି ଆକ୍ରମଣକାରୀମାନେ ୮୨,୦୦୦ ସ୍କୁଲ, ପ୍ରାୟ ୨,୦୦୦ ଉଚ୍ଚତର ଏବଂ ବିଶେଷ ମାଧ୍ୟମିକ ଶିକ୍ଷାନୁଷ୍ଠାନ, ୬୦୫ ଗବେଷଣା ପ୍ରତିଷ୍ଠାନ, ୪୪,୦୦୦ ସାଂସ୍କୃତିକ କେନ୍ଦ୍ର, ଥିଏଟର, ପାଠାଗାର, ୪୨୭ଟି ମିଉଜିଅମକୁ ଧ୍ୱଂସ କିମ୍ବା ଲୁଣ୍ଠନ କରିଥିଲେ । ବିମୁକ୍ତ ଅଞ୍ଚଳଗୁଡ଼ିକରେ ବିଧ୍ୱସ୍ତ ସାଂସ୍କୃତିକ ପ୍ରତିଷ୍ଠାନଗୁଡ଼ିକର ପୁନଃସ୍ଥାପନ କାର୍ଯ୍ୟ ଯୁଦ୍ଧ ଚାଲିଥିବା କାଳରେ କାର୍ଯ୍ୟତଃ ଆରମ୍ଭ ହୋଇ ଯାଇଥିଲା । ତେବେ ଯୁଦ୍ଧ ପରେ ଏହି କାର୍ଯ୍ୟ ବିଶେଷ ଭାବେ ଦ୍ରୁତ ଗତିରେ ଆରମ୍ଭ ହୋଇଥିଲା ଏବଂ ଦେଶ ସାରା ଚାଲିଥିଲା । ଦେଶବାସୀଙ୍କ ବ୍ୟାପକ ସହାୟତା ସହିତ ରାଷ୍ଟ୍ର ଦ୍ୱାରା ପ୍ରଦତ୍ତ ପାଣ୍ଠିରେ ଯୁଦ୍ଧ ପୂର୍ବରେ ଥିବା ବିପୁଳ ପରିମାଣର ସ୍କୁଲ ପୁନଃସ୍ଥାପିତ ହୋଇଥିଲା ।

ଜନ ଶିକ୍ଷା କ୍ଷେତ୍ରରେ ଏକ ବଡ଼ ଗୁରୁତ୍ୱପୂର୍ଣ୍ଣ ସାଫଲ୍ୟ ହେଲା ଦେଶ ସାରା ସାର୍ବଜନୀନ ବାଧ୍ୟତାମୂଳକ ସାତବର୍ଷିଆ ଶିକ୍ଷାର ପ୍ରବର୍ତ୍ତନ । ଶ୍ରମଜୀବୀ ଏବଂ ଗ୍ରାମ୍ୟ ଯୁବକମାନଙ୍କ ପାଇଁ ଯୁଦ୍ଧପର ବର୍ଷମାନଙ୍କରେ ସ୍କୁଲସବୁ ବ୍ୟାପକ ଆକାରରେ ବିକାଶ ଲାଭ କରିଥିଲା । ଯେଉଁମାନେ ଯୁଦ୍ଧରେ ଲଢ଼ୁଥିଲେ, କିମ୍ବା ଯୁଦ୍ଧକୁ ଯାଇଥିବା କାରଖାନାର ଶ୍ରମିକ, କୋଠଖମାର, ରାଷ୍ଟ୍ରଖମାରର ଚାଷୀମାନଙ୍କ ଜାଗାରେ କାର୍ଯ୍ୟ କରୁଥିଲେ, ସେମାନେ ସାଧାରଣ ଶିକ୍ଷା ଲାଭ କରିବାକୁ ସକ୍ଷମ ହେଲେ ।

ନାଜିମାନଙ୍କ ଦ୍ୱାରା ବିଧ୍ୱସ୍ତ ସମସ୍ତ ଉଚ୍ଚ ଶିକ୍ଷା ପ୍ରତିଷ୍ଠାନଗୁଡ଼ିକୁ ପୁନଃସ୍ଥାପିତ କରାଯିବା ସଙ୍ଗେ ସଙ୍ଗେ ୧୧୨ଟି ନୂଆ ପ୍ରତିଷ୍ଠାନ ନିର୍ମାଣ କରାଗଲା । ଯୁଦ୍ଧ ପୂର୍ବରୁ ଜାଲ ଭଳି ବିଛେଇ ହୋଇ ପଡ଼ିଥିବା ଗବେଷଣା ପ୍ରତିଷ୍ଠାନଗୁଡ଼ିକୁ ସଂପୂର୍ଣ୍ଣ ରୂପେ ପୁନର୍ନିର୍ମିତ କରାଗଲା । ୧୯୪୦ ଅପେକ୍ଷା ୧୯୫୦ ମସିହାରେ ଏହି ଧରଣର ଶିକ୍ଷା ପ୍ରତିଷ୍ଠାନର ସଂଖ୍ୟା ଏକ ହଜାରରୁ ଅଧିକ ଥିଲା ଏବଂ ଗବେଷଣା କର୍ମୀଙ୍କ ସଂଖ୍ୟା ପ୍ରାୟ ୨ ଗୁଣ ବୃଦ୍ଧି ପାଇଥିଲା । ନୂଆ ନୂଆ ଗବେଷଣା କେନ୍ଦ୍ର ଗଢ଼ାଗଲା । ସେସବୁ ମଧ୍ୟରେ ଥିଲା ପାରମାଣବିକ, ରେଡିଓ ଇଂଜନିୟରିଂ ଓ ଇଲେକ୍‌ଟ୍ରୋନିକ୍, ପ୍ରିସିସନ ଓ କମ୍ପ୍ୟୁଟର ଇଂଜିନିୟରିଂ, ପ୍ରୟୋଗାତ୍ମକ ଭୂବସ୍ତୁବିଜ୍ଞାନ, ରସାୟନବିଦ୍ୟା, ଉଚ୍ଚ ମଲ୍ୟୁକୁଲର କମ୍ପାଉଣ୍ଡ ଆଦି ଗବେଷଣା କେନ୍ଦ୍ର ।

ଯୁଦ୍ଧପର ବର୍ଷମାନଙ୍କରେ ସୋଭିଏତ୍ ବିଜ୍ଞାନ କ୍ଷେତ୍ରରେ ବିଶେଷ ଅଗ୍ରଗତି ଘଟିଥିଲା । ୧୯୪୬ ମସିହା ଶେଷରେ ସୋଭିଏତ୍ ଗବେଷଣାକାରୀମାନେ ପାରମାଣବିକ ଶକ୍ତି ଲଭର ଗୋପନତା ଶିକ୍ଷା କରିଥିଲେ । ଏହି ସାଫଲ୍ୟ ପଛରେ ଥିଲା ଆକାଡେମିସିଆନ ଇଗୋର କୁର୍ଚାତୋଭ୍‌ଙ୍କ ନେତୃତ୍ୱରେ କର୍ମରତ ବଡ଼ ଏକ ଦଳ ବସ୍ତୁବିଜ୍ଞାନୀଙ୍କ କୃତିତ୍ୱ । ଏଥି ସାଥେ ସାଥେ ଶାନ୍ତିପୂର୍ଣ୍ଣ ଉଦ୍ଦେଶ୍ୟରେ ପାରମାଣବିକ ଶକ୍ତିର ବାସ୍ତବ ଉପଯୋଗ କ୍ଷେତ୍ରରେ ବ୍ୟାପକ ଗବେଷଣା ଗ୍ଲଲିଥିଲା – ବସ୍ତୁବିଜ୍ଞାନରେ, ରସାୟନ, କାରୁବିଜ୍ଞାନ, ଭୂବିଜ୍ଞାନ, ପ୍ରାଣୀବିଜ୍ଞାନ, ଔଷଧ ଆଦି କ୍ଷେତ୍ରରେ । ୧୯୪୯ ମସିହାରେ ସୋଭିଏତ୍ ୟୁନିଅନ୍‌ର ବିଜ୍ଞାନ ଆକାଡେମି ଅନ୍ତର୍ଗତ ନିଉକ୍ଲିୟର ପ୍ରୋବ୍ଲେମ୍‌ସ ପ୍ରତିଷ୍ଠାନରେ ଏକ ପ୍ରୋଟୋନ୍ ସିଙ୍କ୍ରୋଫାଜଟ୍ରୋନ୍ ନିର୍ମିତ ହୋଇଥିଲା । ସେତେବେଳେ ସୋଭିଏତ୍ ୟୁନିଅନ୍‌ର ଏହି ସିଙ୍କ୍ରୋଫାଜଟ୍ରୋନ୍ ପୃଥିବୀରେ ସର୍ବବୃହତ୍ ଥିଲା ଉଚ୍ଚ ଶକ୍ତି ସଂପନ୍ନ ଅଣୁକୁ ତ୍ୱରାନ୍ୱିତ କରିବାରେ ଏବଂ ପରମାଣୁର ଗଢ଼ଣର ରହସ୍ୟ ମଧ୍ୟକୁ ପ୍ରବେଶ କରିବାରେ । ମହାକାଶ ବିଛୁରଣ, ପ୍ରୋଟିନ୍‌ର ଗଢ଼ଣ, ଇଲେକ୍‌ଟ୍ରନିକ୍ ପ୍ରକ୍ରିୟାର ଅଧ୍ୟୟନ କ୍ଷେତ୍ରରେ ସୋଭିଏତ୍ ବିଜ୍ଞାନ ବଡ଼ ବଡ଼ ଉଦ୍‌ଭାବନମାନ କରିଥିଲା, ଯେଉଁ ଇଲେକ୍‌ଟ୍ରନିକ୍ ପ୍ରକ୍ରିୟା କ୍ଷେତ୍ରରେ ଉଦ୍‌ଭାବନଗୁଡ଼ିକ ରେଡିଓ ବସ୍ତୁବିଜ୍ଞାନ, ରେଡିଓ ଇଂଜିନିୟରିଂ ଏବଂ ଇଲେକ୍‌ଟ୍ରନିକ୍‌ର ବିକାଶ ଉପରେ ପ୍ରଭୁତ୍ୱ ପ୍ରଭାବ ପକାଇଥିଲା ।

ସୋଭିଏତ୍ ସମାଜର ସମସ୍ତ କ୍ଷେତ୍ରରୁ – ଅର୍ଥନୀତି, କାରୁବିଜ୍ଞାନ, ବିଜ୍ଞାନ, ସଂସ୍କୃତି ଏବଂ ସୋଭିଏତ୍ ଜନସାଧାରଣଙ୍କ ଦୈନନ୍ଦିନ ଜୀବନରୁ ଯୁଦ୍ଧର ଭୟଙ୍କର ଫଳଗୁଡ଼ିକୁ ଏହିପରିଭାବେ ସ୍ୱଳ୍ପକାଳ ମଧ୍ୟରେ ଅତିକ୍ରମ କରାଯାଇ ପାରିଥିଲା । ଏଣିକି ଦେଶ ନୂଆ କ୍ଷମତା ଲଭ କଲା ଆଗକୁ ଆଗେଇବା ପାଇଁ ।

# ୨୬ଶ ପରିଚ୍ଛେଦ

## ବକଶିତ ସମାଜବାଦୀ ସମାଜର ଅଭ୍ୟୁଦୟ

ଯୁଦ୍ଧୋତ୍ତର ଅସୁବିଧାଗୁଡ଼ିକୁ ଅତିକ୍ରମ କରି ଗଲା ପରେ ସୋଭିଏତ୍ ଜନସାଧାରଣଙ୍କ ଆଗରେ ସମ୍ଭାବନା ଦେଖାଦେଲା ମୌଳିକ ସମସ୍ୟାବଳୀକୁ ସମାଧାନ କରିବା ଦିଗରେ ସେମାନଙ୍କର ସମସ୍ତ ଦୃଷ୍ଟି ନିବଦ୍ଧ କରିବାକୁ – ପ୍ରତିଷ୍ଠିତ ସମାଜବାଦୀ ବ୍ୟବସ୍ଥାକୁ ସୁଦୃଢ଼ ଏବଂ ବିକଶିତ କରିବା ଏବଂ ଏକ ଉନ୍ନତ ସମାଜବାଦୀ ସମାଜ ନିର୍ମାଣ କରିବା । ଏହା ଦ୍ୱାରା କମ୍ୟୁନିଜମ୍‌ର ଉଚ୍ଚତର ପର୍ଯ୍ୟାୟଟିକୁ ନିର୍ମାଣ କରିବା ସମ୍ଭବ ହେବ ।

ଏହା ଆବଶ୍ୟକ କରୁଥିଲା ସମାଜବାଦର ବୈଷୟିକ ଏବଂ କାରିଗରି ଭିତ୍ତିକୁ ଆଉରି ସଂପ୍ରସାରିତ ଏବଂ ଉନ୍ନତ କରିବା, ତା ଅର୍ଥ, ଦ୍ରୁତ ବିଦ୍ୟୁତୀକରଣ ଏବଂ ଉତ୍ପାଦନର ପ୍ରତ୍ୟେକ କ୍ଷେତ୍ରରେ ବିଦ୍ୟୁତର ଉପଯୋଗ; ବ୍ୟାପକ ଜାଳେଣି, ଶକ୍ତି ଏବଂ ଧାତୁ ଶିଳ୍ପର ଭିତ୍ତି; ଇଂଜିନିୟରିଂ ଏବଂ ରାସାୟନିକ ଶିଳ୍ପର ଆଉରି ବିକାଶ; ଭାରୀ ଶିଳ୍ପର ସର୍ବାଧିକ ପ୍ରଗତିଶୀଳ ଶାଖାସମୂହର ଅଗ୍ରାଧିକାର ବିକାଶ, ଯିଏକି କାରିଗରି ବିକାଶ, ସାମାଜିକ ଶ୍ରମର ଉତ୍ପାଦନଶୀଳତାର ବିକାଶର ମାତ୍ରାକୁ ନିର୍ଦ୍ଧାରଣ କରେ । ସମସ୍ତ ଭ୍ରାତୃପ୍ରତୀମ ପ୍ରଜାତନ୍ତ୍ରଗୁଡ଼ିକର, ବିଶେଷ କରି ଦେଶର ପୂର୍ବାଞ୍ଚଳରେ ଥିବା ପ୍ରଜାତନ୍ତ୍ରସମୂହର ଶିଳ୍ପ ବିକାଶକୁ ତ୍ୱରାନ୍ୱିତ କରିବା ଏବଂ ଉତ୍ପାଦିକା ଶକ୍ତିସମୂହକୁ ଆଉରି ଯୁକ୍ତିସମ୍ମତ ସ୍ଥାନରେ ସ୍ଥାପନ କରାଇବା ଅତୀବ ଗୁରୁତ୍ୱପୂର୍ଣ୍ଣ ହୋଇ ଉଠିଥିଲା । ଯୁଦ୍ଧପୂର୍ବ ବର୍ଷମାନଙ୍କରେ ଉତ୍ପାଦନର ଉପକରଣଗୁଡ଼ିକର ବିକାଶ ଉପରେ ମୁଖ୍ୟତଃ ଲକ୍ଷ୍ୟ ଦିଆଯାଉଥିଲା । ଏପରି କରିବାର କାରଣ ହେଲା, ଅର୍ଥନୈତିକ ସ୍ୱାଧୀନତା ଲାଭ କରିବା ଏବଂ ଯେତେ ଶୀଘ୍ର ସମ୍ଭବ, ପ୍ରତିରକ୍ଷା ଶକ୍ତିକୁ ଶକ୍ତିଶାଳୀ କରିବା । ଏବେ କିନ୍ତୁ ବ୍ୟବହାର୍ଯ୍ୟ ଦ୍ରବ୍ୟର ଉତ୍ପାଦନକୁ ଦ୍ରୁତ ବିକଶିତ କରିବା ସମ୍ଭବ ହେଲା ।

ବିକଶିତ ଏକ ସମାଜବାଦୀ ସମାଜର ଅଭ୍ୟୁଦୟ ପାଇଁ ଆବଶ୍ୟକ ପଡ଼ିଲା ସମାଜବାଦୀ ସାମାଜିକ ସଂପର୍କର ଅଧିକ ବିକାଶ, ରାଷ୍ଟ୍ର ଆଉ କୋଠଖମାର ସଂପତ୍ତିର

ଦୃଢ଼ୀକରଣ, କାର୍ଯ୍ୟ ଅନୁଯାୟୀ ବଣ୍ଟନର ସମାଜବାଦୀ ନୀତିର ପୂର୍ଣ୍ଣତା ସାଧନ, ଉଚ୍ଚତର ଜୀବନଧାରଣ ମାନ, ସମାଜବାଦୀ ଜାତିମାନଙ୍କର ଆଉରି ଅଧିକ ବିକାଶ ଏବଂ ଆଉରି ପରସ୍ପର ସହିତ ନିବିଡ଼କରଣ, ସୋଭିଏତ୍ ଗଣତନ୍ତ୍ରର ସଂପ୍ରସାରଣ ଏବଂ ଦେଶର ପରିଚାଳନାରେ ଶ୍ରମଜୀବୀ ଜନସାଧାରଣଙ୍କୁ ଆଉରି ବ୍ୟାପକ ଭାବେ ସଂପୃକ୍ତକରଣ ।

ଏହିସବୁ କର୍ତ୍ତବ୍ୟ ଥିଲା ଖୁବ୍ ଜଟିଳ ଏବଂ କଷ୍ଟସାଧ୍ୟ । ଯୁଦ୍ଧପୂର୍ବରୁ ସୋଭିଏତ୍ ଜନସାଧାରଣ ଏହାକୁ ସଂପନ୍ନ କରିବା କାର୍ଯ୍ୟାରମ୍ଭ କରିଥିଲେ । ତେବେ ୧୯୩୦ ଦଶକର ଶେଷରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଲାଗିଯିବା ଫଳରେ ସୋଭିଏତ୍ ୟୁନିଅନ୍ ବାଧ୍ୟ ହୋଇ ପ୍ରତିରକ୍ଷା ବାବଦକୁ ଅଧିକ ଶକ୍ତି ଓ ସମ୍ବଳ ବ୍ୟୟ କରିବାକୁ ଲାଗିଲା । ଏହା ଫଳରେ ଦେଶର ସାମାଜିକ, ଅର୍ଥନୈତିକ ଏବଂ ସାଂସ୍କୃତିକ ବିକାଶର ଗତି ଶିଥିଳ ହୋଇ ଆସିଥିଲା । ଏହା ପରେ ପରେ, ଅବିଳମ୍ବେ ଆରମ୍ଭ ହୋଇ ଯାଇଥିଲା ନାଜି ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ । ଏହି ଯୁଦ୍ଧରେ ସୋଭିଏତ୍ ୟୁନିଅନ୍‌ର ବିପୁଳ ଲୋକ କ୍ଷୟ ଘଟିବା ସଙ୍ଗେ ଦାରୁଣ ଭାବେ ଦେଶ କ୍ଷତିଗ୍ରସ୍ତ ହେଲା ଏବଂ ଏହିସବୁ କ୍ଷତ ଦାଗକୁ ଲିଭାଇବା ପାଇଁ ତାକୁ ଯୁଦ୍ଧପର ପ୍ରଥମ ପଞ୍ଚବାର୍ଷିକ ଯୋଜନା କାଳ ଲାଗି ଯାଇଥିଲା । ତେଣୁ କରି ସୋଭିଏତ୍ ଜନସାଧାରଣ ୧୯୫୦ ଦଶକରେ ଏକ ବିକଶିତ ସମାଜବାଦୀ ସମାଜ ଗଠନ କରିବାକୁ ଆରମ୍ଭ କରି ପାରିଲେ ।

ଦେଶର ଅଧିକ ବିକାଶ ପାଇଁ ପାର୍ଟି ତଥା ରାଷ୍ଟ୍ରୀୟ ଜୀବନରେ ଲେନିନ୍‌ବାଦୀ ମାନ ବା ଆଦର୍ଶକୁ ପୁନଃସ୍ଥାପନ କରିବାଟା ଅତୀବ ଗୁରୁତ୍ୱପୂର୍ଣ୍ଣ । ଏହିସବୁ ମାନ ବା ଆଦର୍ଶକୁ ଗୁରୁତର ଭାବେ ଲଙ୍ଘନ କରାଯାଇଥିଲା ଜୋସେଫ୍ ଷ୍ଟାଲିନ୍‌ଙ୍କ ଜୀବନର ଶେଷ ବର୍ଷଗୁଡ଼ିକରେ (୧୯୫୩, ମାର୍ଚ୍ଚ ୫ ତାରିଖରେ ତାଙ୍କ ମୃତ୍ୟୁ ଘଟିଥିଲା) । ଏହିସବୁ ଲଙ୍ଘନ ଥିଲା ୧୯୩୦ ଦଶକରେ ଦେଶର ସାମାଜିକ-ରାଜନୈତିକ ଜୀବନରେ ରୂପ ପରିଗ୍ରହ କରିଥିବା ଏକ ଅତୀବ ନାସ୍ତିକାରକ ପ୍ରପଞ୍ଚର ଫଳ ସ୍ୱରୂପ । ପରବର୍ତ୍ତୀ ସମୟରେ ଏହାକୁ "ଷ୍ଟାଲିନ୍‌ଙ୍କ ବ୍ୟକ୍ତି ପୂଜା" ବୋଲି ବ୍ୟାଖ୍ୟା କରାଯାଇଥିଲା ।

ଷ୍ଟାଲିନ୍ ଥିଲେ ଜଣେ ସ୍ୱବିରୋଧାତ୍ମକ ବ୍ୟକ୍ତି ଏବଂ ସୋଭିଏତ୍ ସମାଜ ବିକାଶରେ ତାଙ୍କର ଭୂମିକା ମଧ୍ୟ ଥିଲା ତଦ୍ରୂପ । ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ସେ ଥିଲେ ଜଣେ ବିଖ୍ୟାତ ନେତା, ସୁଶିକ୍ଷିତ ମାର୍କସ୍‌ବାଦୀ, ବଡ଼ ସଂଗଠକ ଏବଂ ପାର୍ଟି ତଥା ରାଷ୍ଟ୍ରର ଜଣେ ତେଜବାନ ଓ ଦୃଢ଼ମନା ନେତା । ସେ ଦୃଢ଼ତାର ସହିତ ଲେନିନ୍‌ବାଦକୁ ରକ୍ଷା କରିଥିଲେ ଏବଂ ପାର୍ଟିର ଅନ୍ୟାନ୍ୟ ନେତାମାନଙ୍କ ସହିତ ମିଶି ଅବିଚଳ ଭାବେ ସୋଭିଏତ୍ ୟୁନିଅନ୍‌ରେ ସମାଜବାଦ ନିର୍ମାଣର ଲେନିନ୍‌ବାଦୀ ସାଧାରଣ କର୍ମନୀତିକୁ ଟେକି ଧରିଥିଲେ । କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱରେ ସୋଭିଏତ୍ ଜନସାଧାରଣ ସମାଜବାଦୀ ବିକାଶର ଅତୀବ କଠିନ କର୍ତ୍ତବ୍ୟରାଜିକୁ

ସଫଳତାର ସହିତ ସଂପନ୍ନ କରିଥିଲେ । ଏସବୁର ଅଧିକାଂଶ ସୁନାମ କେନ୍ଦ୍ରୀୟ କମିଟିର ସାଧାରଣ ସଂପାଦକ ହିସାବରେ ଷ୍ଟାଲିନ୍‌ଙ୍କ ପାଖକୁ ଯାଇଥିଲା ଏବଂ କେବଳ ପାର୍ଟିରେ ନୁହେଁ, ଜନସାଧାରଣଙ୍କ ମଧ୍ୟରେ ଅକଳନୀୟ ଭାବେ ସମ୍ମାନର ଅଧିକାରୀ ସେ ହୋଇ ଉଠିଥିଲେ । ଏଥି ସାଥେ ସାଥେ ଷ୍ଟାଲିନ୍‌ଙ୍କର ଅନେକ ନାସ୍ତିବାଚକ ଲକ୍ଷଣ ଥିଲା, ଯେଉଁସବୁକୁ ଲେନିନ୍ ଦର୍ଶାଇଥିଲେ (ରୁକ୍ଷତା, ଖାମ୍‌ଖିଆଲି ଆଦି) ।

ପରବର୍ତ୍ତୀ କାଳରେ ସମାଜବାଦୀ ବିକାଶ କ୍ଷେତ୍ରରେ ସୋଭିଏତ୍ ଜନସାଧାରଣଙ୍କ ଦ୍ୱାରା ଅର୍ଜିତ ସମସ୍ତ ସାଫଲ୍ୟ ଓ କୃତିରାଜି ଷ୍ଟାଲିନ୍‌ଙ୍କ ଉପରେ ଆରୋପିତ କରାଯାଇଥିଲା । ଏହା ଫଳରେ ନୂଆ ଏକ ସମାଜ ନିର୍ମାଣ କରିବାରେ ପାର୍ଟିର ଅଗ୍ରଣୀ ଭୂମିକା ଏବଂ ଶ୍ରମଜୀବୀ ଜନସାଧାରଣଙ୍କର ନିଷ୍ପତ୍ତିମୂଳକ ଭୂମିକାକୁ ନ୍ୟୂନ କରାଯାଇଥିଲା । ଷ୍ଟାଲିନ୍ କେନ୍ଦ୍ରୀୟ କମିଟିର ସାଧାରଣ ସଂପାଦକ ହିସାବରେ ନିଜ ପଦମର୍ଯ୍ୟାଦାକୁ ଭୁଲ ପଥରେ ବ୍ୟବହାର କରିଥିଲେ, ମିଳିତ ନେତୃତ୍ୱର ନୀତିକୁ ଭଙ୍ଗ କରିଥିଲେ, ପାର୍ଟି ଏବଂ ରାଷ୍ଟ୍ରନୀତିର ବଡ଼ ବଡ଼ ପ୍ରଶ୍ନକୁ ବ୍ୟକ୍ତିଗତ ଭାବେ ସ୍ଥିର କରୁଥିଲେ ଏବଂ ପାର୍ଟି ନୀତିକୁ ଭଙ୍ଗ କରୁଥିଲେ ଓ ଆଇନ୍‌କୁ ଅମାନ୍ୟ କରୁଥିଲେ । ସମାଜବାଦୀ ଗଣତନ୍ତ୍ର ଓ ଆଇନ୍‌କୁ ଗୁରୁତର ଭାବେ ଭଙ୍ଗ କରାଯାଇଥିଲା ଏବଂ ବିନା ପ୍ରମାଣରେ ଦଣ୍ଡବିଧାନ କରାଯାଇଥିଲା ।

ଏକ ପ୍ରପଞ୍ଚ ହିସାବରେ ବ୍ୟକ୍ତି ପୂଜା ହେଉଛି ସୋଭିଏତ୍ ସମାଜ ଏବଂ ସୋଭିଏତ୍ ରାଜନୈତିକ ବ୍ୟବସ୍ଥା, ମାର୍କସ୍‌ବାଦୀ-ଲେନିନ୍‌ବାଦୀ ଭାବାଦର୍ଶର ବିରୋଧୀ । ଇତିହାସରେ ବିଖ୍ୟାତ ବ୍ୟକ୍ତିମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ସ୍ୱୀକାର କରିବା ସାଥେ ସାଥେ ମାର୍କସ୍‌ବାଦ-ଲେନିନ୍‌ବାଦ କହେ, ଇତିହାସର ମୁଖ୍ୟ ଚାଳନା ଶକ୍ତି ହେଉଛନ୍ତି ଶ୍ରମଜୀବୀ ଜନସାଧାରଣ; ସେମାନେ ସମସ୍ତ ବୈଷୟିକ ଏବଂ ବୌଦ୍ଧିକ ସଂପଦ ସୃଷ୍ଟି କରନ୍ତି ଏବଂ ନୂଆ ଦୁନିଆ ନିର୍ମାଣ କରନ୍ତି । ସୋଭିଏତ୍ ୟୁନିଅନ୍‌ରେ ସମାଜବାଦକୁ ନିର୍ମାଣ କରିଥିଲେ ଶ୍ରମିକ ଶ୍ରେଣୀ, ଶ୍ରମଜୀବୀ କୃଷକ ଏବଂ ବୁଦ୍ଧିଜୀବୀ ସଂପ୍ରଦାୟ ଲେନିନ୍‌ବାଦୀ କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱରେ ।

ବ୍ୟକ୍ତି ପୂଜାର ନାସ୍ତିବାଚକ ପ୍ରଭାବ ସତ୍ତ୍ୱେ ବି ଏହା କମ୍ୟୁନିଜମ୍‌କୁ ସୋଭିଏତ୍ ୟୁନିଅନ୍‌ର ଅଗ୍ରଗତିକୁ ରୋକି ପାରି ନଥିଲା । କିନ୍ତୁ ଏହି ଅଗ୍ରଗତିକୁ ଏହା ଶିଥିଳ କରି ଦେଇଥିଲା, ଜନସାଧାରଣଙ୍କ ଶ୍ରମ ଓ ରାଜନୈତିକ କ୍ରିୟାକଳାପକୁ ନାସ୍ତିବାଚକ ଭାବେ ପ୍ରଭାବିତ କରିଥିଲା ଏବଂ ଜନସାଧାରଣଙ୍କ ସହିତ ପାର୍ଟିର ଯୋଗସୂତ୍ରକୁ ଦୁର୍ବଳ କରି ଦେଇଥିଲା । ତେଣୁ କରି ବ୍ୟକ୍ତି ପୂଜାର ସମସ୍ତ କୁଫଳକୁ ଅତିକ୍ରମ କରିବାଟା ଦେଶର ବିକାଶକୁ ତ୍ୱରାନ୍ୱିତ କରିବା ପକ୍ଷରେ ଏକ ଜରୁରୀ କର୍ତ୍ତବ୍ୟ ଏବଂ ସର୍ତ୍ତ ହୋଇ ଉଠିଥିଲା ।

୧୯୫୩ ମସିହାରେ ଷ୍ଟାଲିନ୍‌ଙ୍କ ମୃତ୍ୟୁ ପରେ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟି ଏକ ବ୍ୟବସ୍ଥା ଗ୍ରହଣ କରିଥିଲା ପାର୍ଟି ତଥା ରାଷ୍ଟ୍ର ଜୀବନର ଲେନିନ୍‌ବାଦୀ ମାନ ବା ନୀତିକୁ

ଅବିଚଳ ଭାବେ କାର୍ଯ୍ୟ କରିବା ଏବଂ ପାର୍ଟି ଆଉ ରାଷ୍ଟ୍ରୀୟ ବ୍ୟାପାରରେ ମିଳିତ ନେତୃତ୍ୱକୁ ସୁନିଶ୍ଚିତ କରିବା ପାଇଁ । ୧୯୫୩, ସେପ୍ଟେମ୍ବର ମାସରେ ନିକିତା ଖ୍ରୁଷ୍ଚେଭ୍ ପାର୍ଟିର କେନ୍ଦ୍ରୀୟ କମିଟିର ପ୍ରଥମ ସଂପାଦକ ରୂପେ ନିର୍ବାଚିତ ହୋଇଥିଲେ । ୧୯୫୮ ମସିହାରେ ସୋଭିଏତ୍ ୟୁନିଅନ୍‌ର ସର୍ବୋଚ୍ଚ ସୋଭିଏତ୍ ଦ୍ୱାରା ତାଙ୍କୁ ସୋଭିଏତ୍ ସରକାରଙ୍କର ମୁଖ୍ୟ ରୂପେ ନିଯୁକ୍ତ କରାଗଲା । ଏଣିକି ଦେଶର ଜୀବନରେ ଅତୀବ ଗୁରୁତ୍ୱପୂର୍ଣ୍ଣ ସମସ୍ୟାବଳୀର ଆଲୋଚନା ପାଇଁ ନିୟମିତ ଭାବେ ପାର୍ଟି କଂଗ୍ରେସ ଏବଂ କେନ୍ଦ୍ରୀୟ କମିଟିର ପୂର୍ଣ୍ଣାଙ୍ଗ ଅଧିବେଶନମାନ ବସିଲା । ସୋଭିଏତ୍ ୟୁନିଅନ୍‌ର ତଥା ଜାତୀୟ ପ୍ରଜାତନ୍ତ୍ରସମୂହର ସର୍ବୋଚ୍ଚ ସୋଭିଏତ୍‌ଗୁଡ଼ିକର ବିଧାୟକ କ୍ରିୟାକଳାପକୁ ସଂପ୍ରସାରିତ କରାଗଲା । ଅତୀବ ଗୁରୁତ୍ୱପୂର୍ଣ୍ଣ ଆଇନ୍‌ର ଚିଠା, ଯେଉଁସବୁଥିରେ ବ୍ୟାପକ ଶ୍ରମଜୀବୀ ଲୋକଙ୍କର ସ୍ୱାର୍ଥ ନିହିତ ଥିଲା, ସେସବୁକୁ ସର୍ବସାଧାରଣଙ୍କ ମଧ୍ୟରେ ପ୍ରାଥମିକ ଆଲୋଚନା ପାଇଁ ପେଶ୍ କରାଗଲା । ଶ୍ରମଜୀବୀମାନଙ୍କ ଜନପ୍ରତିନିଧିମାନଙ୍କ ସ୍ଥାନୀୟ ସୋଭିଏତ୍‌ଗୁଡ଼ିକ ଅଧିକ କର୍ମତତ୍ପର ହେଲେ । ଟ୍ରେଡ୍‌ୟୁନିଅନ୍‌ସମୂହର ଭୂମିକା ବଢ଼ିଲା ଏବଂ ରାଷ୍ଟ୍ରୀୟ ତଥା ସର୍ବସାଧାରଣ ବ୍ୟାପାର ଏବଂ ଉତ୍ପାଦନ ପରିଚାଳନା କ୍ଷେତ୍ରରେ ସେମାନଙ୍କ ଅଧିକାର ବୃଦ୍ଧି ପାଇଲା ।

ସମାଜବାଦୀ ଆଇନ୍ ବ୍ୟବସ୍ଥା ଦୃଢ଼ ହେଲା । ରାଷ୍ଟ୍ରୀୟ ନିରାପତ୍ତା ସଂସ୍ଥାମାନଙ୍କ ଦ୍ୱାରା ନିପୀଡ଼ିତ ସୋଭିଏତ୍ ନାଗରିକମାନଙ୍କର ସମସ୍ତ କେଶ୍‌କୁ କର୍ତ୍ତୃପକ୍ଷ ପରୀକ୍ଷା କରି ଦେଖିଲେ ଏବଂ ଯେଉଁମାନଙ୍କୁ ବେଆଇନ୍ ଭାବେ ଦଣ୍ଡ ଦିଆଯାଇଥିଲା ସେମାନଙ୍କୁ ମାଫ୍ କରି ଦିଆଗଲା । ଯେଉଁସବୁ ଅଫିସର ଆଇନ୍ ଭଙ୍ଗ କରିଥିଲେ, ସେମାନଙ୍କୁ ରାଷ୍ଟ୍ରୀୟ ନିରାପତ୍ତା ସଂସ୍ଥାସମୂହରୁ ବରଖାସ୍ତ କରାଗଲା ଏବଂ ସେମାନଙ୍କ ମଧ୍ୟରୁ ଅନେକଙ୍କର ବିଚାର ମଧ୍ୟ ହେଲା । ରାଷ୍ଟ୍ରୀୟ ନିରାପତ୍ତା ସଂସ୍ଥାସମୂହର କ୍ରିୟାକଳାପକୁ କମ୍ୟୁନିଷ୍ଟ ପାର୍ଟି ଏବଂ ସୋଭିଏତ୍ ସରକାର କଠୋର ନିୟନ୍ତ୍ରଣ ମଧ୍ୟରେ ରଖିଲେ । ବିଚାରାଳୟଗୁଡ଼ିକର କ୍ରିୟାକଳାପକୁ ଉନ୍ନତ କରାଗଲା ଏବଂ ସରକାରୀ ଓକିଲମାନଙ୍କ ତଦାରଖି ଉପରେ ଗୁରୁତ୍ୱ ଦିଆଗଲା । ଏକ ଦିଗରେ ବିଚାରାଳୟର ଅଫିସର ଏବଂ ସରକାରୀ ଓକିଲମାନଙ୍କ ମଧ୍ୟରେ ଯୋଗସୂତ୍ର ଏବଂ ଅନ୍ୟ ଦିଗରେ ଏମାନଙ୍କ ସହିତ ଜନସାଧାରଣଙ୍କ ସହିତ ଯୋଗସୂତ୍ରକୁ ଦୃଢ଼ କରାଗଲା । କେତେକ ପ୍ରଶାସନିକ, ଅର୍ଥନୈତିକ ଏବଂ ଅନ୍ୟାନ୍ୟ ସ୍ୱଳ୍ପ ବିପଜ୍ଜନକ ଅପରାଧ ପାଇଁ ଅପରାଧମୂଳକ ଦାୟିତ୍ୱ ସ୍ଥାନରେ ଶୃଙ୍ଖଳାଜନକ ପଦକ୍ଷେପ ନେବା ଲକ୍ଷ୍ୟରେ ସୋଭିଏତ୍ ୟୁନିଅନ୍ ଓ ଅନ୍ୟାନ୍ୟ ପ୍ରଜାତନ୍ତ୍ରସମୂହର ଅପରାଧମୂଳକ ଆଇନ୍‌ର ସଂଶୋଧନ କରାଗଲା ।

ବ୍ୟକ୍ତି ପୂଜାର ଫଳକୁ ପ୍ରକାଶ କରି ଦେବା ଏବଂ ସେସବୁର ବିଲୋପ ସାଧନ କରି ଦେବାକୁ ସୋଭିଏତ୍ ଜନସାଧାରଣ ଗଭୀର ଭାବେ ହୃଦୟଙ୍ଗମ କରିବା ସାଥେ ସାଥେ ଅନୁମୋଦନ ଜଣାଇଥିଲେ । ଏହିସବୁ ପଦକ୍ଷେପ କମ୍ୟୁନିଷ୍ଟ ପାର୍ଟି ଏବଂ ସୋଭିଏତ୍

ସରକାର ଉପରେ ଆସ୍ଥା ବୃଦ୍ଧି କରିବା ସାଥେ ସାଥେ ଜନସାଧାରଣଙ୍କ ରାଜନୈତିକ ତଥା କ୍ରିୟାକଳାପରେ ଏକ ଜାଗରଣ ଆଣିବାରେ ସହାୟକ ହୋଇଥିଲା । କାରଣ ଏସବୁ ନୂତନ ଶକ୍ତିମତାର ସହିତ ଦର୍ଶାଇ ଦେଲା ଯେ, ଲୋକଙ୍କ ସ୍ୱାର୍ଥ ତଥା କଲ୍ୟାଣ ହେଉଛି ପାର୍ଟି ପାଇଁ ସର୍ବୋଚ୍ଚ ଆଇନ୍ ।

ଏକ ବିକଶିତ ସମାଜବାଦୀ ସମାଜ ଗଠନ ପର୍ଯ୍ୟାୟରେ ଶିଳ୍ପର ବିକାଶ ସାଧନ, ବିଶେଷ କରି ସାମଗ୍ରିକ ଭାବେ ଜାତୀୟ ଅର୍ଥନୀତିର କାରିଗରିଗତ ବିକାଶକୁ ନିର୍ଦ୍ଧାରଣ କରୁଥିବା ଶିଳ୍ପସମୂହର ବିକାଶ ଉପରେ ସୋଭିଏତ୍ ରାଷ୍ଟ୍ରର ସମସ୍ତ ଜାତୀୟ ଅର୍ଥନୈତିକ ଯୋଜନାରେ ବିଶେଷ ଜୋର ଦିଆଯାଇଥିଲା । ଏହି ସମୟରେ ଶିଳ୍ପ ନିର୍ମାଣର ପରିସର କେତେ ବ୍ୟାପକ ଥିଲା, ତାହା ନିମ୍ନୋକ୍ତ ସଂଖ୍ୟାରୁ ବୁଝାଯାଏ : ୧୯୫୧-୧୯୬୫ ମଧ୍ୟରେ ୧୨,୩୯୦ ବୃହତ୍ ଶିଳ୍ପୋଦ୍ୟୋଗ ଏବଂ ବିପୁଳ ସଂଖ୍ୟକ ମଧ୍ୟମ ଓ କ୍ଷୁଦ୍ର ଶିଳ୍ପ କାରଖାନା ନିର୍ମିତ ହୋଇଥିଲା ।

ବିଶେଷ ଦୃଷ୍ଟି ପ୍ରଦାନ କରାଯାଇଥିଲା ଜାଳେଣି, ବିଦ୍ୟୁତ୍ ଶକ୍ତିର ଭିତ୍ତିକୁ ଉନ୍ନତ କରିବା ପାଇଁ । ଶକ୍ତି ଉତ୍ପାଦନକାରୀ ଶିଳ୍ପର ବିକାଶ ଉପରେ ଅଗ୍ରାଧିକାର ପ୍ରଦାନ ହେଲା କାରିଗରିଗତ ବିକାଶ ପକ୍ଷରେ ଏକ ପ୍ରାଥମିକ ସର୍ତ୍ତ । ୧୯୫୦ ଦଶକରେ ଭୋଲ୍ଗା, କାମା, ଦ୍ନିପର ଏବଂ ସାଇବେରିଆର ନଦୀମାନଙ୍କରେ ବିଶାଳ ବିଶାଳ ଜଳ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରସବୁର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା । ଜଳ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର ନିର୍ମାଣ ଏବଂ ସେସବୁର କାରିଗରିଗତ ମାନ ଦୃଷ୍ଟିରୁ ସୋଭିଏତ୍ ୟୁନିଅନ୍ ଦୁନିଆରେ ପ୍ରଥମ ସ୍ଥାନ ଅଧିକାର କଲା । ୨.୧ ନିୟୁତ କିଲୋୱାଟ୍ କ୍ଷମତା ବିଶିଷ୍ଟ କୁଇବେଶେଭ୍ ଜଳ ବିଦ୍ୟୁତ୍ କେନ୍ଦ୍ର ଏବଂ ୨.୩ ନିୟୁତ କିଲୋୱାଟ୍ କ୍ଷମତା ବିଶିଷ୍ଟ ଭୋଲ୍ଗଗ୍ରାଦ୍ ଜଳ ବିଦ୍ୟୁତ୍ କେନ୍ଦ୍ର ଭଳି ବିଶାଳ କେନ୍ଦ୍ରମାନ ଗଠନ କରିଥିଲା ସୋଭିଏତ୍ ୟୁନିଅନ୍ । ପୂର୍ବ ସାଇବେରିଆରେ ଆଙ୍ଗାରା ନଦୀରେ ୪.୫ ନିୟୁତ କିଲୋୱାଟ୍ ଶକ୍ତି ସଂପନ୍ନ ବ୍ରାତ୍ସ୍କ ଜଳ ବିଦ୍ୟୁତ୍ କେନ୍ଦ୍ର ଗଠନ କରି ପାରିଥିଲେ ସୋଭିଏତ୍ ଜନସାଧାରଣ । ସେତେବେଳେ ଏହି ବିଦ୍ୟୁତ୍ କେନ୍ଦ୍ରଟି ଥିଲା ବିଶ୍ୱରେ ସର୍ବବୃହତ୍ । ଏହା ଛଡ଼ା ୟେନିସେ ନଦୀ ବକ୍ଷରେ ନିର୍ମିତ ହୋଇଥିଲା ୬ ନିୟୁତ କିଲୋୱାଟ୍ ଶକ୍ତି ବିଶିଷ୍ଟ କ୍ରାସ୍ନୋୟାର୍ସ୍କ ଜଳ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରଟି ।

କୋଇଲାରୁ ଉତ୍ପାଦନ ବିଦ୍ୟୁତ୍ କେନ୍ଦ୍ରଗୁଡ଼ିକ ତୁଳନାରେ ଜଳ ବିଦ୍ୟୁତ୍ କେନ୍ଦ୍ରଗୁଡ଼ିକର ସୁବିଧା ହେଲା, ବିଦ୍ୟୁତ୍ ଉତ୍ପାଦନ ପାଇଁ ଏଥିରେ କମ୍ ଖର୍ଚ୍ଚ ଲାଗିଥାଏ । କିନ୍ତୁ ଏସବୁ ନିର୍ମାଣ କରିବାକୁ ଅଧିକ ସମୟ ଲାଗେ ଏବଂ ଏହି ନିର୍ମାଣ ପାଇଁ ଅନେକ ବ୍ୟୟ କରିବାକୁ ପଡ଼େ । ତେଣୁ କରି ୧୯୫୯-୧୯୬୫ ମସିହାରେ ଜଳ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରମାନ ନିର୍ମାଣ କରିବା ସାଥେ ସାଥେ କୋଇଲାରୁ ବିଦ୍ୟୁତ ଶକ୍ତି ଉତ୍ପାଦନ

କରିବାର କେନ୍ଦ୍ରଗୁଡ଼ିକ ଉପରେ ବିଶେଷ ଜୋର ଦିଆଯାଇଥିଲା । ଏହି ଉଭୟ ଧରଣର ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରଗୁଡ଼ିକୁ ସଜ୍ଜିତ କରାଯାଇଥିଲା ୧୦୦,୦୦୦ – ୩୦୦,୦୦୦ କିଲୋଓ୍ୱାଟ୍ ଏବଂ ତଦୂର୍ଦ୍ଧ୍ୱ ଶକ୍ତିଶାଳୀ ୟୁନିଟ୍‌ସମୂହ ଦ୍ୱାରା । ବଡ଼ ବଡ଼ ଜିଲ୍ଲାସ୍ତରୀୟ ବିଦ୍ୟୁତ୍ କେନ୍ଦ୍ରଗୁଡ଼ିକରୁ ବିଦ୍ୟୁତ୍ ଉତ୍ପାଦନ କରିବା ଉପରେ ମଧ୍ୟ ନିୟମିତ ଗୁରୁତ୍ୱ ପ୍ରଦାନ କରାଯାଇଥିଲା । ସୋଭିଏତ୍ ୟୁନିଅନ୍‌ର ବିଦ୍ୟୁତ୍ ଉତ୍ପାଦନକାରୀ କେନ୍ଦ୍ରଗୁଡ଼ିକୁ ସଫଳତାର ସହିତ ସଂଯୁକ୍ତ କରାଯାଇଥିଲା ଗୋଟିଏ ବିଦ୍ୟୁତ୍ ଶକ୍ତି ବ୍ୟବସ୍ଥା ମଧ୍ୟରେ ।

ବିଦ୍ୟୁତୀକରଣ କ୍ଷେତ୍ରରେ ସୋଭିଏତ୍ ୟୁନିଅନ୍ ଏହି ଭାବେ ବିରାଟ ସାଫଲ୍ୟ ଅର୍ଜନ କରିଥିଲା : ୧୯୬୬ ମସିହାରେ ବିଦ୍ୟୁତ୍ ଉତ୍ପାଦନକାରୀ କେନ୍ଦ୍ରଗୁଡ଼ିକର କ୍ଷମତା ୧୨୩ ନିୟୁତ କିଲୋଓ୍ୱାଟ୍ ପହଞ୍ଚିବା ସାଥେ ସାଥେ ବିଦ୍ୟୁତ୍ ଉତ୍ପାଦନ ହୋଇଥିଲା ୫୪୫,୦୦୦ ନିୟୁତ କିଲୋଓ୍ୱାଟ୍ ଘଣ୍ଟା (୧୯୬୪ ମସିହାରେ ପୃଥିବୀର ମୋଟ ବିଦ୍ୟୁତ୍ ଉତ୍ପାଦନର ପାଞ୍ଚ ଭାଗରୁ ଏକ ଭାଗ) । ୧୯୪୦ ତୁଳନାରେ ଏହି ପରିମାଣ ଥିଲା ୧୧ ଗୁଣରୁ ଅଧିକ । ବିଦ୍ୟୁତ୍ ଉତ୍ପାଦନ କ୍ଷେତ୍ରରେ ଏହି ବିରାଟ ଅଗ୍ରଗତି ଫଳରେ ବିଦ୍ୟୁତ୍ – ଶ୍ରମ ମଧ୍ୟରେ ଅନୁପାତ ହଠାତ୍ ଅନେକ ବୃଦ୍ଧି ପାଇ ଯାଇଥିଲା ।

ପୃଥିବୀରେ ସର୍ବପ୍ରଥମ ପାରମାଣବିକ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରରୁ ଶକ୍ତି ଉତ୍ପାଦନ କାର୍ଯ୍ୟ ଆରମ୍ଭ ହୋଇଥିଲା ୧୯୫୪ ମସିହାରେ । ସୋଭିଏତ୍ ବିଜ୍ଞାନ ଏବଂ କାରିଗରି କ୍ଷେତ୍ରରେ ଏହା ଥିଲା ଏକ ବିରାଟ କୃତିତ୍ୱ । ୧୯୬୦ ଦଶକର ମଧ୍ୟ ଭାଗ ବେଳକୁ ମୋଟ ଏକ ନିୟୁତ କିଲୋଓ୍ୱାଟ୍ କ୍ଷମତା ବିଶିଷ୍ଟ ପାରମାଣବିକ ଶକ୍ତି କେନ୍ଦ୍ର ସୋଭିଏତ୍ ୟୁନିଅନ୍ ଗଠନ କରି ପାରିଥିଲା – ଏହି ପରିମାଣଟି ଥିଲା ପୃଥିବୀର ସମସ୍ତ ପାରମାଣବିକ ଶକ୍ତି କେନ୍ଦ୍ରର ମୋଟ କ୍ଷମତାର ଏକତୃତୀୟାଂଶ ସହିତ ସମାନ ।

ଏସବୁ ସାଥେ ସାଥେ ତୈଳ ଏବଂ ଗ୍ୟାସ ଉତ୍ପାଦନ ପାଇଁ ବିଶେଷ ଧ୍ୟାନ ଦିଆଯାଇଥିଲା । ତୈଳ ଆଉ ଗ୍ୟାସର ନୂଆ ନୂଆ ଭଣ୍ଡାରମାନ ଆବିଷ୍କୃତ ହେଲା । ବହୁ ବର୍ଷ ଧରି ସାଇବେରିଆରେ ତୈଳ ଆବିଷ୍କାର ପାଇଁ ଅନ୍ୱେଷଣ ସାଫଲ୍ୟ ମଣ୍ଡିତ ହେଲା ୧୯୬୨ ମସିହା ମାର୍ଚ୍ଚ ମାସରେ । ଲେନା ନଦୀ କୂଳରେ , ମାର୍‌କୋଭୋ ନାମକ ଗ୍ରାମ ନିକଟରେ ପ୍ରଥମ ତୈଳ କୂପରୁ ତୈଳ ନିଷ୍କ୍ରମଣ ହୋଇଥିଲା ଏହି ଦିନ । ତା'ପରେ ପଶ୍ଚିମ ସାଇବେରିଆ ପରିଣତ ହେଲା ସୋଭିଏତ୍ ୟୁନିଅନ୍‌ର ମୁଖ୍ୟ ତୈଳ ଉତ୍ପାଦନକାରୀ ଅଞ୍ଚଳରେ । ନୂଆ ନୂଆ , ଆଉରି ଉନ୍ନତ କାରିଗରି ଅଧିକ ମାତ୍ରାରେ ବ୍ୟବହାର ହେଲା ଏହି ଅଞ୍ଚଳରେ । ୧୯୬୫ ମସିହାରେ କାର୍ଯ୍ୟକାରୀ ଅର୍ଦ୍ଧେକ ଗ୍ୟାସ ଆଉ ତୈଳ କୂପରେ ସ୍ୱୟଂକ୍ରିୟ ପଦ୍ଧତି ଶୁରୁ କରାଯାଇଥିଲା । ଏହା ଫଳରେ ଜାଳେଣିର ଉତ୍ପାଦନ , ବିଶେଷ କରି ତୈଳ ଆଉ ଗ୍ୟାସ ଉତ୍ପାଦନର ମାତ୍ରା ଅନେକ ବଢ଼ିଗଲା । ୧୯୬୬ ମସିହାରେ ସୋଭିଏତ୍ ୟୁନିଅନ୍ ଉତ୍ପାଦନ କରିଥିଲା ୨୬୫ ନିୟୁତ ଟନ୍ ତୈଳ , ୧୯୪୦ ମସିହା ତୁଳନାରେ ପ୍ରାୟ ୯ ଗୁଣ ଅଧିକ ଏବଂ ୧୪୫,୦୦୦ ନିୟୁତ ଘନ ମିଟର ଗ୍ୟାସ , ୧୯୪୦ ତୁଳନାରେ ପାୟ ୪୬ ଗୁଣ ଅଧିକ ।

କୋଇଲା ଶିଳ୍ପରେ ଯନ୍ତ୍ରାୟନ ପ୍ରକ୍ରିୟା ତୀବ୍ର ଗତିରେ ବୃଦ୍ଧି ପାଇଥିଲା । ଖଣିମାନଙ୍କରେ ବ୍ୟାପକ ଭାବେ ବ୍ୟବହାର କରାଗଲା କୋଇଲା କାଟିବା, ବୋଝାଇ କରିବା ଯନ୍ତ୍ରସବୁ । ଏହା ଦ୍ୱାରା ହଜାର ହଜାର ଖଣି ଶ୍ରମିକ କଷ୍ଟକର ଶ୍ରମରୁ ରିହାତି ପାଇଥିଲେ । ବିଦ୍ୟୁତ୍ ଚାଳିତ ରେଳଗାଡ଼ି ଏବଂ ଅନ୍ୟାନ୍ୟ ଆଧୁନିକ ମେସିନର ସଂଖ୍ୟା ମଧ୍ୟ ବୃଦ୍ଧି ପାଇଥିଲା ।

ଧାତୁ ଶିଳ୍ପ ମଧ୍ୟ ଦ୍ରୁତ ଗତିରେ ବୃଦ୍ଧି ପାଇବାକୁ ଲାଗିଲା । ଦେଶର ଉତ୍ତର-ପଶ୍ଚିମ ଅଞ୍ଚଳରେ, କାଜାଖସ୍ତାନ, ଜର୍ଜିଆ ଏବଂ ଆଜରବୈଜାନରେ ନୂଆ ନୂଆ ଧାତୁ ଶିଳ୍ପ କେନ୍ଦ୍ରମାନ ଗଢ଼ି ଉଠିଲା । ଦେଶର ଦକ୍ଷିଣ ଏବଂ ପୂର୍ବାଞ୍ଚଳରେ ଥିବା ପୁରୁଣା କାରଖାନାମାନଙ୍କରେ ଗଢ଼ାଗଲା ପୃଥିବୀରେ ସର୍ବବୃହତ୍ ନୂତନ ବ୍ଲାଷ୍ଟଫର୍ଣ୍ଣେସ ବା ଲୁହା ତରଳା ଚୁଲୀମାନ ।

ଏସବୁ ସାଥେ ସାଥେ ସୋଭିଏତ୍ ୟୁନିଅନ୍‌ର ଅର୍ଥନୈତିକ ବିକାଶ ପଥରେ ସାମ୍ରାଜ୍ୟବାଦୀ ଦେଶମାନେ ଯେଉଁସବୁ ପ୍ରତିବନ୍ଧକ ସୃଷ୍ଟି କରି ଚାଲିଥିଲେ, ସେସବୁକୁ ଅତିକ୍ରମ କରିବାକୁ ପଡ଼ୁଥିଲା । ଦୃଷ୍ଟାନ୍ତ ସ୍ୱରୂପ, ପଶ୍ଚିମ ଜର୍ମାନୀ ଚୁକ୍ତି ଭଙ୍ଗ କରି ୧୯୬୩ ମସିହାରେ ଲମ୍ବ ବ୍ୟାସ ବିଶିଷ୍ଟ ଇସ୍‌ପାତ ପାଇପ ଦେବାକୁ ଅସ୍ୱୀକାର କଲା । କିନ୍ତୁ ଏସବୁ ଉଦ୍ୟମ ବିଫଳତାରେ ପର୍ଯ୍ୟବସିତ ହୋଇଥିଲା । ନିର୍ଦ୍ଧାରିତ ସମୟ ପୂର୍ବରୁ କେତେକ ସୋଭିଏତ୍ ଲୌହ-ଇସ୍‌ପାତ ପ୍ରକଳ୍ପରେ ବଡ଼ ବ୍ୟାସ ବିଶିଷ୍ଟ ଇସ୍‌ପାତ ପାଇପ୍ ଉତ୍ପାଦିତ ହୋଇଥିଲା । ତୈଳ ଏବଂ ଗ୍ୟାସ ପାଇପ୍ ଲାଇନ୍ ସଫଳତାର ସହିତ ନିର୍ମିତ ହୋଇ ୧୯୬୫ ମସିହାରେ ୭୦,୦୦୦ କିଲୋମିଟର ପର୍ଯ୍ୟନ୍ତ ବିସ୍ତାରିତ ହୋଇଥିଲା ।

ସୋଭିଏତ୍ ୟୁନିଅନ୍‌ରେ ବୈଜ୍ଞାନିକ ତଥା କାରିଗରି ବିପ୍ଳବର ଅଗ୍ରଗତି ପ୍ରତିଫଳିତ ହୋଇଥିଲା ରାସାୟନିକ ଶିଳ୍ପର ବିକାଶ କ୍ଷେତ୍ରରେ ଅଭୂତପୂର୍ବ ଦ୍ରୁତ ବିକାଶ କ୍ଷେତ୍ରରେ । ଏହିସବୁ ଶିଳ୍ପର ଉତ୍ପନ୍ନକୁ ଜାତୀୟ ଅର୍ଥନୀତିରେ ଅଧିକରୁ ଅଧିକ ବ୍ୟବହାର କରାଯାଇଥିଲା । କମ୍ୟୁନିଷ୍ଟ ପାର୍ଟି ଏବଂ ସୋଭିଏତ୍ ସରକାର ରସାୟନ ବିଜ୍ଞାନର ବିକାଶ ପ୍ରତି ବିଶେଷ ଧ୍ୟାନ ଦେଇଥିଲେ । ରାସାୟନିକ ପ୍ରକଳ୍ପର ନିର୍ମାଣ ବ୍ୟାପକ ଅତୁଳନୀୟ ଗତିରେ ଆରମ୍ଭ ହୋଇଥିଲା, ବିଶେଷ କରି ୧୯୫୦ ଦଶକର ଦ୍ୱିତୀୟ ଭାଗରେ । ରାସାୟନିକ ଶିଳ୍ପର ନୂଆ ବଡ଼ କେନ୍ଦ୍ରଗୁଡ଼ିକ ଗଢ଼ି ଉଠିଥିଲା ବାସ୍କିରିଆ, ଭୋଲ୍‌ଗା ଅଞ୍ଚଳ, ଆଜରବୈଜାନ, ମଧ୍ୟ ଏସିଆ, ବେଲୋରୁଷିଆ, ସାଇବେରିଆ ଏବଂ ବଲ୍‌ଟିକ୍ ଅଞ୍ଚଳରେ ଅତି ମୂଲ୍ୟବାନ ପ୍ରାକୃତିକ କଞ୍ଚାମାଲ, ବିଶେଷ କରି ତୈଳ ଏବଂ ଗ୍ୟାସ୍‌କୁ ଭିତ୍ତି କରି ଗଠିତ ହୋଇଥିଲା । ମୋଟ ଉପରେ, ୧୯୬୫ ମସିହାରେ ରାସାୟନିକ ଶିଳ୍ପର ଉତ୍ପାଦନ ୧୯୪୦ ତୁଳନାରେ ୧୫.୫ ଗୁଣ, ରାସାୟନିକ ତନ୍ତୁର ଉତ୍ପାଦନ ପ୍ରାୟ ୩୭ ଗୁଣ, କୃତ୍ରିମ ରେସିନ୍ ଏବଂ ପ୍ଲାଷ୍ଟିକ୍ ଉତ୍ପାଦନ ୭୯ ଗୁଣ ଅଧିକ ହୋଇଥିଲା ।

ସମସ୍ତ ଶିଳ୍ପର କେନ୍ଦ୍ର ହେଲା ଇଂଜିନିୟରିଂ ଶିଳ୍ପ । ଏହି ଶିଳ୍ପର ବିକାଶ ଉପରେ ନିର୍ଭର କରେ ସାମଗ୍ରିକ ଭାବେ ଜାତୀୟ ଅର୍ଥନୀତିର କାରିଗରି ସ୍ତର । ଦେଶର ଅର୍ଥନୈତିକ ସ୍ୱାଧୀନତା ଓ ପ୍ରତିରକ୍ଷା କ୍ଷମତା ମଧ୍ୟ ସର୍ବୋପରି ନିର୍ଭର କରେ ଇଂଜିନିୟରିଂ ଶିଳ୍ପର ଅବସ୍ଥା ଉପରେ । ତେଣୁ କରି ସୋଭିଏତ୍ ରାଷ୍ଟ୍ର ସବୁମତେ ଉଦ୍ୟୋଗ ନେଇ ଆସିଥିଲା ଏହି ଗୁରୁତ୍ୱପୂର୍ଣ୍ଣ ଶିଳ୍ପର ବିକାଶ ଏବଂ ଏହା ନିୟମିତ କାରିଗରି ବିକାଶ ସାଧନ କରିବା ଦିଗରେ । ୧୯୪୦ ତୁଳନାରେ ୧୯୬୫ ମସିହାରେ ଇଂଜିନିୟରିଂ ଶିଳ୍ପର ଉତ୍ପନ୍ନ ୨୨ ଗୁଣ ବୃଦ୍ଧି ପାଇଥିଲା ।

ଜାତୀୟ ଅର୍ଥନୀତିର କୌଣସି କ୍ଷେତ୍ରକୁ ବାଦ୍ ନଦେଇ ସୋଭିଏତ ୟୁନିଅନ୍‌ର ଇଂଜିନିୟରିଂ ଶିଳ୍ପ ସମସ୍ତ କ୍ଷେତ୍ର ପାଇଁ ଆଧୁନିକ ବିଭିନ୍ନ ପ୍ରକାରର ମେସିନ୍, ଯାନ୍ତ୍ରିକ କୌଶଳ ଏବଂ ଯନ୍ତ୍ରପାତି ଆଦି ଉତ୍ପାଦନ କରିବାକୁ ଆରମ୍ଭ କରି ଦେଇଥିଲା । ଏହି ଭାବେ ବିଦ୍ୟୁତ୍ ଟର୍ବାଇନ୍ ନିର୍ମାଣକାରୀ ପ୍ରକଳ୍ପଗୁଡ଼ିକ ପୃଥିବୀର ସର୍ବାଧିକ ଶକ୍ତିସଂପନ୍ନ— ୩୦୦,୦୦୦ ଏବଂ ୫୦୦,୦୦୦ କିଲୋଓ୍ୱାଟ ଟର୍ବାଇନ୍ ନିର୍ମାଣ କରିଥିଲା । ବୈଜ୍ଞାନିକମାନେ ସଫଳତାର ସହିତ ଏହାଠାରୁ ଆଉରି ଶକ୍ତିଶାଳୀ—୮୦୦,୦୦୦ ଏବଂ ଏକ ନିୟୁତ କିଲୋଓ୍ୱାଟ୍ ଟର୍ବାଇନ ୟୁନିଟ୍ ଗଢ଼ିବାକୁ ଲାଗିଥିଲେ । ୧୯୫୭ ମସିହାରେ ସୋଭିଏତ୍ ୟୁନିଅନ୍ ବାଷ୍ପ ଚାଳିତ ରେଳ ଇଂଜିନ୍ ତିଆରି କରିବା ବନ୍ଦ କରି ଦେଇ, ତା ପରିବର୍ତ୍ତେ ବହୁ ସଂଖ୍ୟାରେ ଡିଜେଲ ଏବଂ ବିଦ୍ୟୁତ୍ ଚାଳିତ ରେଳ ଇଂଜିନ୍, ତିଆରି କରିବାକୁ ଆରମ୍ଭ କଲା । ବ୍ୟୋମଯାନ ଡିଜାଇନରମାନେ "TU-୧୦୪", "TU-୧୧୪", "IL-୧୮" ଏବଂ ପୃଥିବୀର ସର୍ବବୃହତ୍ ବ୍ୟୋମଯାନ ଭଳି ପ୍ରଥମ ଶ୍ରେଣୀର ଦ୍ରୁତଗାମୀ ଜେଟ୍ ଏବଂ ଟର୍ବୋ-ଜେଟ୍ ବିମାନ ନିର୍ମାଣ କରିଥିଲେ । ଏସବୁ ମଧ୍ୟରୁ "ଆଣ୍ଟିଉସ୍" ବିମାନଟି ହଜାର ହଜାର କିଲୋମିଟର ଦୂରକୁ ୭୦୦ ଲୋକଙ୍କୁ ନେଇ ଯାଇ ପାରେ ।

ସୋଭିଏତ୍ ୟୁନିଅନ୍‌ର ବିଶାଳ ବିଶାଳ ଜାହାଜ ନିର୍ମାଣ କଲା ଭଳି ଚମତ୍କାର ଜାହାଜ ନିର୍ମାଣ ଶିଳ୍ପ ମଧ୍ୟ ଥିଲା । ୧୯୫୭ ମସିହାରେ ପୃଥିବୀର ସର୍ବପ୍ରଥମ ପରମାଣୁ ଶକ୍ତି ଚାଳିତ ବରଫତାଡ଼ନୀ ପୋତ "ଲେନିନ୍" ନିର୍ମିତ ହୋଇଥିଲା ସୋଭିଏତ୍ ୟୁନିଅନ୍‌ରେ ।

ଅତ୍ୟୁନ୍ନତ ଉତ୍ପାଦନ କ୍ଷମ ମେସିନ୍ ଏବଂ ସର୍ବାଧିକ ଆଧୁନିକ କାରୁକୌଶଳ ସମସ୍ତ ଶିଳ୍ପ କ୍ଷେତ୍ରରେ ପ୍ରବର୍ତ୍ତନ କରାଯାଇଥିଲା । ଉତ୍ପାଦନ କ୍ଷେତ୍ରରେ ସ୍ୱୟଂକ୍ରିୟ ସଂଯୋଜନ ଲାଇନ୍, ବିଭିନ୍ନ ଧରଣର ସ୍ୱୟଂକ୍ରିୟ ଯନ୍ତ୍ରପାତି ଏବଂ ଇଲେକ୍‌ଟ୍ରୋନିକ୍ ନିୟନ୍ତ୍ରଣ କୌଶଳ ଚାଲୁ କରାଯାଇଥିଲା । ନୂଆ ପ୍ରକାରର ରେଡିଓ ଏବଂ ଟେଲିଭିଜନ ଯନ୍ତ୍ରର ମଧ୍ୟ ବିକାଶ ସାଧନ କରାଯାଇଥିଲା ।

ଦ୍ରୁତ କାରିଗରିଗତ ବିକାଶ ଏବଂ ଶିଳ୍ପ କ୍ଷେତ୍ରରେ ନିଯୁକ୍ତ କର୍ମୀବାହିନୀଙ୍କର ଉଚ୍ଚ

ଶ୍ରମ ସକ୍ରିୟତା ଉପରେ ଭିତ୍ତି କରି ଉତ୍ପାଦନଶୀଳତା ନିୟମିତ ଭାବେ ବିକାଶ ଲାଭ କରିଥିଲା : ୧୯୬୫ରେ ଏହା ୧୯୪୦ ତୁଳନାରେ ୩.୭ ଗୁଣ ଅଧିକ ହୋଇଥିଲା ।

ସମସ୍ତ ପ୍ରକାରର ଯାନବାହନର କାରିଗରି ମାନରେ ମଧ୍ୟ ଉନ୍ନତି ଘଟିଥିଲା । ୧୯୬୫ ମସିହାରେ ଦେଶରେ ପ୍ରତିଷ୍ଠିତ ରେଳପଥର ଦୈର୍ଘ୍ୟ ଥିଲା ୧୩୧,୪୦୦ କିଲୋମିଟର । ପୃଥିବୀରେ ସର୍ବବୃହତ୍ ବିଦ୍ୟୁତ୍ ଚାଳିତ ରେଳପଥ ପ୍ରତିଷ୍ଠିତ ହୋଇଥିଲା ସୋଭିଏତ୍ ୟୁନିଅନ୍‌ର – ମସ୍କୋ-ବୈକାଲ (୫,୦୦୦ରୁ ଅଧିକ କିଲୋମିଟର) ଏବଂ ୩,୫୦୦ କିଲୋମିଟର ବିଶିଷ୍ଟ ଲେନିନ୍‌ଗ୍ରାଦ୍-ଲେନିନାକାନ୍ (ଆର୍ମେନିଆ) ରେଳପଥ । ୧୯୬୫ ମସିହାର ଶେଷ ବେଳକୁ ରେଳପଥରେ ପରିବହିତ ମୋଟ ବୋଝର ଶତକଡ଼ା ୮୫ ଭାଗ ବିଦ୍ୟୁତ୍ ଚାଳିତ ଏବଂ ଡିଜେଲ ଚାଳିତ ରେଳଗାଡ଼ିରେ ହୋଇଥିଲା ।

ଯୁଦ୍ଧପର ବର୍ଷମାନଙ୍କରେ ସୋଭିଏତ୍ ଶିଳ୍ପ ଆଉ ପରିବହନ କ୍ଷେତ୍ରରେ ଯେଉଁସବୁ ପରିବର୍ତ୍ତନ ଦେଖାଦେଲା, ତାହା ସମାଜବାଦର ବୈଷୟିକ ତଥା କାରିଗରିଗତ ଭିତ୍ତିକୁ ସୁଦୃଢ଼ ଏବଂ ସଂପ୍ରସାରିତ କରିବା ସାଥେ ସାଥେ ଜାତୀୟ ଅର୍ଥନୀତିର ସମସ୍ତ ଶାଖାର କାରିଗରିଗତ ଅଗ୍ରଗତିକୁ ଆଉରି ଉନ୍ନତ କରିବା ପାଇଁ, ଲୋକଙ୍କ ଜୀବନଧାରଣର ମାନ ବୃଦ୍ଧି ପାଇଁ ଏବଂ ସମାଜବାଦୀ ସାମାଜିକ ସଂପର୍କର ପୂର୍ଣ୍ଣତା ସାଧନ ପାଇଁ ମୂଳଦୁଆ ଭଳି କାର୍ଯ୍ୟ କରିଥିଲା ।

୧୯୪୦ ଦଶକର ଦ୍ୱିତୀୟାର୍ଦ୍ଧ ଏବଂ ୧୯୫୦ ଦଶକର ପ୍ରାରମ୍ଭରେ ଦେଶର ଖାଦ୍ୟଶସ୍ୟ ଓ କୃଷିଜାତ କଞ୍ଚାମାଲର ଆବଶ୍ୟକତା ଏବଂ ସେସବୁର ଉତ୍ପାଦନ ମଧ୍ୟରେ ସମାନ ଅନୁପାତ ନଥିଲା ।

କୃଷି କ୍ଷେତ୍ରରେ ଏହି ଅନଗ୍ରଗତି ପାଇଁ କେତେକ କାରଣ ଥିଲା ଦାୟୀ । ଇତିପୂର୍ବରୁ ସୋଭିଏତ୍ ୟୁନିଅନ୍ ବାଧ୍ୟ ହୋଇ ସମାଜବାଦୀ ଅର୍ଥନୀତିର ଭିତ୍ତି ସ୍ୱରୂପ, ଭାରୀ ଶିଳ୍ପ ମଧ୍ୟରେ ତା'ର ଅଧିକାଂଶ ଲୋକ ଶକ୍ତି ଓ ସମ୍ବଳକୁ ନିୟୋଜିତ କରିଥିଲା । ତେଣୁ କରି କୃଷିରେ ପୁଞ୍ଜି ନିୟୋଗ ଖୁବ୍ ବେଶି ହୋଇ ପାରି ନଥିଲା । ଯୁଦ୍ଧ ଫଳରେ ମଧ୍ୟ କୃଷି ଦାରୁଣ ଭାବେ କ୍ଷତିଗ୍ରସ୍ତ ହୋଇଥିଲା ଏବଂ ବହୁ ବର୍ଷ ପାଇଁ ଏହାର ଅଗ୍ରଗତି ଶିଥିଳ ହୋଇ ପଡ଼ିଥିଲା । ଏହା ଛଡ଼ା ୧୯୪୬ ମସିହାର ଅନାବୃଷ୍ଟି ମଧ୍ୟ ଏହା ସୁସ୍ପଷ୍ଟ ଦାଗ ରଖି ଯାଇଥିଲା ଏ କ୍ଷେତ୍ରରେ ।

ଏହିସବୁ ବସ୍ତୁଗତ କାରଣ ସାଙ୍ଗକୁ କୃଷି ଉତ୍ପାଦନର ପରିଚାଳନା ଓ ରାଷ୍ଟ୍ର ଆଉ କୋଠଖମାରର ଅର୍ଥନୈତିକ ସଂପର୍କରେ ଭୁଲ ଭ୍ରାନ୍ତି ହେତୁ ମଧ୍ୟ କୃଷି ବିକାଶରେ ପ୍ରତିବନ୍ଧକ ସୃଷ୍ଟି କରିଥିଲା । ମୁଖ୍ୟ କଥାଟି ହେଲା, କୃଷି ଉତ୍ପାଦନ ବୃଦ୍ଧି କରିବା ପାଇଁ କୋଠଖମାର ତଥା ସେସବୁର ସଦସ୍ୟମାନଙ୍କର ଯଥେଷ୍ଟ ବୈଷୟିକ ପ୍ରୋତ୍ସାହନର ଅଭାବ ରହିଥିଲା । କୋଠଖମାରଗୁଡ଼ିକ ନିକଟରୁ ରାଷ୍ଟ୍ର ଯେଉଁ ଦାମ୍‌ରେ

ବହୁ ଜିନିଷପତ୍ର କିଣୁଥିଲେ ତଦ୍ୱାରା ସେମାନଙ୍କର ଲାଭ ହେବା ତ ଦୂରର କଥା, ସେମାନଙ୍କର ଉତ୍ପାଦନ ଖର୍ଚ୍ଚ ମଧ୍ୟ ମେଣ୍ଟୁ ନଥିଲା ।

ଆବଶ୍ୟକତା ତୁଳନାରେ କୃଷିର କାରିଗରି ଯନ୍ତ୍ରପାତି ଥିଲା କମ୍ ଏବଂ ରହିଥିବା ଯନ୍ତ୍ରପାତି ସବୁବେଳେ ଦକ୍ଷତାର ସହିତ ବ୍ୟବହୃତ ମଧ୍ୟ ହେଉ ନଥିଲା । କୋଠଖମାର ଏବଂ ରାଷ୍ଟ୍ର ଖମାରକୁ ଯେଉଁସବୁ କୃଷିଗତ ସହାୟତା କରାଯାଇଥିଲା, ତାହା ମଧ୍ୟ ସନ୍ତୋଷଜନକ ନଥିଲା । ବିଭିନ୍ନ ଅଫିସ୍‌ରେ ବିପୁଳ ସଂଖ୍ୟକ କୃଷି ବିଶେଷଜ୍ଞମାନେ ବିଭିନ୍ନ ପଦବିରେ ବସିଥିଲା ବେଳେ କୋଠଖମାର ଏବଂ ରାଷ୍ଟ୍ର ଖମାରରେ କୃଷି ବିଶେଷଜ୍ଞ-ମାନଙ୍କର ଦାରୁଣ ଅଭାବ ରହିଥିଲା । କୋଠଖମାର ଏବଂ ରାଷ୍ଟ୍ର ଖମାରର କର୍ମଦ୍ୟୋମକୁ ବେଳେବେଳେ ଅତ୍ୟଧିକ କଡ଼ା କେନ୍ଦ୍ରୀୟର ଯୋଜନା ଦ୍ୱାରା ରୁଦ୍ଧ କରି ଦିଆଯାଉଥିଲା । କୃଷି ବିକାଶରେ ଶିଥିଳତାର ଏହିସବୁ ଏବଂ ଅନ୍ୟାନ୍ୟ କାରଣଗୁଡ଼ିକୁ ୧୯୫୩-୧୯୫୫ର କମ୍ୟୁନିଷ୍ଟ ପାର୍ଟି କେନ୍ଦ୍ରୀୟ କମିଟିର ପୂର୍ଣ୍ଣାଧିବେଶନ ବିଶେଷ ଭାବେ ନଜରକୁ ଆଣି କୃଷି ଉତ୍ପାଦନ ବୃଦ୍ଧି ପାଇଁ ଏକ ବ୍ୟାପକ କର୍ମସୂଚୀ ପ୍ରଣୟନ କରିଥିଲା ।

ବିଶେଷ ନଜର ଦିଆଯାଇଥିଲା କୃଷିର ବୈଷୟିକ ତଥା କାରିଗରିଗତ ଭିତ୍ତିର ଅଧିକ ଉନ୍ନତି ସାଧନ ଉପରେ । ଗ୍ରାମାଞ୍ଚଳକୁ ଅଧିକ ସଂଖ୍ୟକ ଟ୍ରାକ୍ଟର, ଲରି, ବିଭିନ୍ନ ଧରଣର ଜମି ଚାଷ କରିବା ମେସିନ୍, ଫସଲ ଅମଳକାରୀ ତଥା ଅନ୍ୟାନ୍ୟ ଯନ୍ତ୍ର ତୁରନ୍ତ ଯୋଗାଇ ଦିଆଗଲା । ୧୯୫୪-୧୯୫୮ ମଧ୍ୟରେ ରାଷ୍ଟ୍ର କୃଷିର ଯନ୍ତ୍ରାୟନ ପାଇଁ ଯେତେ ଅର୍ଥ ବିନିଯୋଗ କରିଥିଲା, ତାହା ପୂର୍ବବର୍ତ୍ତୀ ୫ ବର୍ଷ ତୁଳନାରେ ୨.୫ ଗୁଣ ଅଧିକ । ଏହିସବୁ ବର୍ଷମାନଙ୍କର କୃଷିର ବିଦ୍ୟୁତୀକରଣ ମଧ୍ୟ ଲକ୍ଷଣୀୟ ଭାବେ ବୃଦ୍ଧି ପାଇଥିଲା ।

ଗ୍ରାମାଞ୍ଚଳକୁ କେବଳ ମେସିନ୍ ଯୋଗାଇ ଦେଇ ସହର ସାହାଯ୍ୟ କଲା ନାହିଁ । ସହରାଞ୍ଚଳରୁ ୧୨୦,୦୦୦ ବିଶେଷଜ୍ଞଙ୍କୁ ପଠାଯାଇଥିଲା କୋଠଖମାରମାନଙ୍କରେ କାର୍ଯ୍ୟ କରିବା ନିମିତ୍ତ, ସେମାନଙ୍କ ମଧ୍ୟରୁ ଅନେକ କୋଠଖମାର ପରିଚାଳନା, ଟିମ୍ ଓ ୟୁନିଟ୍‌ଗୁଡ଼ିକୁ ନେତୃତ୍ୱ ଦେଇ କୃଷି ଉତ୍ପାଦନ ବୃଦ୍ଧି ପତି ବିରାଟ ଅବଦାନ ରଖିଥିଲେ ।

ରାଷ୍ଟ୍ରକୁ କୋଠଖମାରଗୁଡ଼ିକ ପକ୍ଷରୁ ଯୋଗାଇ ଦିଆଯାଉଥିବା କୃଷିଜାତ ଜିନିଷପତ୍ରର ଦାମ୍ ବଢ଼ାଇ ଦିଆଗଲା କୋଠଖମାର ଓ ସେସବୁର ସଦସ୍ୟମାନଙ୍କୁ ଅଧିକ ବୈଷୟିକ ପ୍ରୋତ୍ସାହନ ଦେବା ଉଦ୍ଦେଶ୍ୟରେ । ତା'ଛଡ଼ା ଶସ୍ୟ, ଆଳୁ, ପନିପରିବା ଆଦି ଯୋଗାଇବା ପାଇଁ କୋଠଖମାରଗୁଡ଼ିକ ଉପରେ ବାଧ୍ୟତାମୂଳକ ଭାବେ ଯେଉଁ କୋଟା ଚପେଇ ଦିଆଯାଉଥିଲା, ତା'ର ପରିମାଣ କମେଇ ଦିଆଗଲା । କୋଠଖମାର କୃଷକ ପରିବାରଗୁଡ଼ିକ ରାଷ୍ଟ୍ରକୁ ବାଧ୍ୟତାମୂଳକ ଭାବେ ଜିନିଷ ଯୋଗାଇବାର କୋଟାକୁ ପ୍ରଥମେ କମେଇ ଦିଆଗଲା ଏବଂ ୧୯୫୮ ମସିହାରୁ ଏହାକୁ ସଂପୂର୍ଣ୍ଣ ରୂପେ ଉଠାଇ ଦିଆଗଲା । କୋଠଖମାରମାନେ ସେମାନଙ୍କ ଆୟର ବଣ୍ଟନ କ୍ଷେତ୍ରରେ ଆଉରି ପ୍ରଗତିଶୀଳ ବ୍ୟବସ୍ଥା ଗ୍ରହଣ କଲେ ଏବଂ କୋଠଖମାରରେ କାର୍ଯ୍ୟ କରିବା ପାଇଁ

ସେମାନଙ୍କ ଋଷୀମାନଙ୍କୁ ମାସିକ ବା ତ୍ରୟ ମାସିକ ଅଗ୍ରିମ୍ ଦେବାର ବ୍ୟବସ୍ଥା ଋଲୁ କଲେ ।

ଖାଦ୍ୟଶସ୍ୟ ଉତ୍ପାଦନ ବୃଦ୍ଧି କରିବା ନିମିତ୍ତ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଉଦ୍ୟୋଗ ନିଆଗଲା କାଜାଖସ୍ତାନ, ସାଇବେରିଆ ଆଦି ଅଞ୍ଚଳରେ ୪୨ ନିୟୁତ ହେକ୍ଟର କୁଆଁରୀ ଭୂଇଁ ଆଉ ପତିତ ଜମିରେ ଋଷ କରିବା । କେବଳ ୧୯୫୪-୧୯୫୫ ମସିହାରେ ଦେଶର ପୂର୍ବାଞ୍ଚଳରେ ୪୨୫ଟି ରାଷ୍ଟ୍ର ଖମାର ପ୍ରତିଷ୍ଠା କରାଯାଇଥିଲା । ଶକ୍ତିଶାଳୀ କୃଷି ଯନ୍ତ୍ରସବୁ ପଠାଯାଇଥିଲା ଏହି ଅଞ୍ଚଳକୁ । କମ୍ୟୁନିଷ୍ଟ ପାର୍ଟିର ଅନୁରୋଧ କ୍ରମେ ୫ ଲକ୍ଷରୁ ଅଧିକ ଦେଶପ୍ରେମୀ, ବିଶେଷ କରି ଯୁବକମାନେ ନବପ୍ରତିଷ୍ଠିତ ରାଷ୍ଟ୍ର ଖମାରଗୁଡ଼ିକରେ ପହଞ୍ଚିଥିଲେ କୁଆଁରୀ ଭୂଇଁକୁ ଉଠିଆ କରିବା ପାଇଁ । କୁଆଁରୀ ଭୂଇଁକୁ ଆବାଦୀ କରିବା ଥିଲା ଶ୍ରମର ବିରାଟ ଏକ ବିଜୟ, ସୋଭିଏତ୍ ଜନସାଧାରଣଙ୍କ ପକ୍ଷରେ ଗୌରବର ବିଷୟ । କୁଆଁରୀ ଏବଂ ପତିତ ଜମିର ବିକାଶ ଫଳରେ କାଜାଖସ୍ତାନ ସୋଭିଏତ୍ ୟୁନିଅନ୍‌ର ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ଶସ୍ୟ ଉତ୍ପାଦନକାରୀ ଅଞ୍ଚଳରେ ପରିଣତ ହୋଇଥିଲା । ଦେଶରେ ଶସ୍ୟ ଉତ୍ପାଦନ ବହୁ ପରିମାଣରେ ବୃଦ୍ଧି ପାଇଥିଲା ।

କାଜାଖସ୍ତାନର କୁଆଁରୀ ଭୂଇଁକୁ କିପରି ଆବାଦ କରାଯାଇଥିଲା, ତା'ର ପ୍ରାଞ୍ଜଳ ବର୍ଣ୍ଣନା ଦେଖିବାକୁ ମିଳେ ଲିଓନିଦ୍ ବ୍ରେଜ୍‌ନେଭ୍‌ଙ୍କର "କୁଆଁରୀ ଭୂଇଁ" ଶୀର୍ଷକ ଏକ ସ୍ମୃତିକଥାରେ । ୧୯୫୦ ଦଶକର ଦ୍ୱିତୀୟାର୍ଦ୍ଧରେ ଲିଓନିଦ୍ ବ୍ରେଜ୍‌ନେଭ୍ କାଜାଖସ୍ତାନ ପାର୍ଟି ସଂଗଠନର ମୁଖ୍ୟ ଥିଲେ ।

ଏହିସବୁ ପଦକ୍ଷେପ ସମେତ ଅନ୍ୟାନ୍ୟ କାର୍ଯ୍ୟକର୍ମ କୃଷି ବିକାଶକୁ ପ୍ରଭାବିତ କରିଥିଲା । ୧୯୫୪-୧୯୫୮ରେ ମୋଟ କୃଷି ଋଷ ଓ ପଶୁପକ୍ଷୀ ପାଳନ ଶତକଡ଼ା ୫୦ ଭାଗ ବୃଦ୍ଧି ପାଇଥିଲା । କୋଠଖମାରର ଆୟ ବୃଦ୍ଧି ପାଇବା ସାଙ୍ଗେ ସାଥେ କୃଷକମାନଙ୍କର ଜୀବନଧାରଣର ମାନ ଓ ସାଂସ୍କୃତିକ ମାନର ଉନ୍ନତି ଘଟିଲା ।

ତେବେ ଶିଳ୍ପ ଉତ୍ପାଦନ ତୁଳନାରେ କୃଷିର ଅଭିବୃଦ୍ଧି ହାର ଏବେ ମଧ୍ୟ ପଛରେ ପଡ଼ି ଯାଇଥିଲା । ତା'ଛଡ଼ା କୃଷି ଉତ୍ପାଦନ ବୃଦ୍ଧି ପାଇଲେ ମଧ୍ୟ ଦେଶର ଆବଶ୍ୟକତାକୁ ମେଣ୍ଟାଇବା ଯଥେଷ୍ଟ ହେଲା ନାହିଁ ।

ଯୁଦ୍ଧପର ବର୍ଷମାନଙ୍କରେ ସୋଭିଏତ୍ ଶ୍ରମଜୀବୀ ଜନସାଧାରଣଙ୍କ ଜୀବନଧାରଣର ମାନରେ ନୂତନ ଅଭିବୃଦ୍ଧି ଆଣି ଦେଲା । ଏପରି ହେବାଟା ମଧ୍ୟ ସ୍ୱାଭାବିକ : ସୋଭିଏତ୍ ୟୁନିଅନ୍‌ର ଅର୍ଥନୈତିକ ବିକାଶ ଦ୍ୱାରା ଲୋକଙ୍କ ଜୀବନରେ ଅନିବାର୍ଯ୍ୟ ଭାବେ ଅଭିବୃଦ୍ଧି ଆଣିବାର କଥା । ଲୋକଙ୍କ କଲ୍ୟାଣ ସାଧନ ହେଲା କମ୍ୟୁନିଷ୍ଟ ପାର୍ଟିର ମୁଖ୍ୟ ଚିନ୍ତା । ୧୯୫୦ ଦଶକର ଦ୍ୱିତୀୟାର୍ଦ୍ଧରେ ସମସ୍ତ ଶିଳ୍ପ ଏବଂ ଅଫିସ୍ ଶ୍ରମିକମାନଙ୍କ ପାଇଁ ୭ ଘଣ୍ଟିଆ କର୍ମ ଦିବସ ଏବଂ ମାଟି ତଳେ ବା ଅସ୍ୱାସ୍ଥ୍ୟକର ସ୍ଥାନରେ କାର୍ଯ୍ୟ କରୁଥିବା

ଶ୍ରମିକମାନଙ୍କ ପାଇଁ ୬ ଘଣ୍ଟିଆ କର୍ମ ଦିବସ ଗ୍ରୁ କରାଗଲା । ବେତନ ମଧ୍ୟ ବେଶ୍ ବଢ଼ାଇ ଦିଆଗଲା : ରାସାୟନିକ ଶିଳ୍ପର ଶ୍ରମିକମାନଙ୍କ ପାଇଁ ଶତକଡ଼ା ୧୨ ଭାଗ, ଲୌହ ଓ ଇସ୍ପାତ ଶ୍ରମିକମାନଙ୍କ ପାଇଁ ଶତକଡ଼ା ୧୧ ଭାଗ, ଆଦି । ସ୍ୱଳ୍ପ ବେତନ ଭୋଗୀ ଶିଳ୍ପ ଓ ଅଫିସ୍ ଶ୍ରମିକମାନଙ୍କର ବେତନରେ ମଧ୍ୟ ଯଥେଷ୍ଟ ଅଭିବୃଦ୍ଧି ଘଟିଲା ଏବଂ ଉଚ୍ଚ ଏବଂ ସ୍ୱଳ୍ପ ବେତନ ମଧ୍ୟରେ ଥିବା ପାର୍ଥକ୍ୟକୁ କମାଇ ଆଣିବା ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ନିଆଗଲା । ୧୯୬୦ ମସିହାର ପ୍ରଥମ ଭାଗରେ ଶିକ୍ଷା, ସ୍ୱାସ୍ଥ୍ୟ, ଗୃହ ନିର୍ମାଣ, ମ୍ୟୁନିସପାଲିଟି, ବାଣିଜ୍ୟ, ଜନସେବା ଏବଂ ଜାତୀୟ ଅର୍ଥନୀତିର ଅନ୍ୟାନ୍ୟ ଶାଖାର ଶ୍ରମିକମାନଙ୍କ ବେତନ ଉଲ୍ଲେଖନୀୟ ଭାବେ ବୃଦ୍ଧି ପାଇଥିଲା । ଦେଶର ଶିଳ୍ପ ଆଉ ଅଫିସରେ କର୍ମରତ ମୋଟ ଶ୍ରମିକମାନଙ୍କ ମଧ୍ୟରୁ ଏକଚତୁର୍ଥାଂଶ ବେତନ ହାରାହାରି ଶତକଡ଼ା ୨୫ ଭାଗ ବଢ଼ି ଯାଇଥିଲା ।

ରାଷ୍ଟ୍ର ଖମାରରେ କାର୍ଯ୍ୟ କରୁଥିବା କର୍ମୀମାନଙ୍କ ପାଇଁ ନିର୍ଦ୍ଧାରିତ ବେତନର ଭିତ୍ତିରେ କୋଠଖମାରର ଋଷୀମାନଙ୍କ ପାଇଁ ୧୯୬୬, ଜୁଲାଇ ମାସରେ ମାସିକ ନିଶ୍ଚିତ ବେତନ ମିଳିବାର ବ୍ୟବସ୍ଥା ପ୍ରବର୍ତ୍ତନ କରାଗଲା । ଦେଶବାସୀ ଦେଉଥିବା ଟିକସର ପରିମାଣକୁ ନିୟମିତ ଭାବେ କମାଇ ଦିଆଗଲା ।

ଯୁଦ୍ଧପର ବର୍ଷମାନଙ୍କରେ ଶିଳ୍ପ ଏବଂ ଅଫିସ୍ ଶ୍ରମିକମାନଙ୍କର ପେନ୍‌ସନ୍ ବ୍ୟବସ୍ଥାକୁ ମୌଳିକ ଭାବେ ଉନ୍ନତ କରି ଦିଆଗଲା । ୧୯୫୬ ମସିହାରେ ସୋଭିଏତ୍ ୟୁନିଅନ୍‌ର ସର୍ବୋଚ୍ଚ ସୋଭିଏତ୍ ଏକ ଆଇନ୍ ପାଶ୍ କରି ଅଧିକାଂଶ ରାଷ୍ଟ୍ରଦତ୍ତ ପେନ୍‌ସନ୍‌କୁ ଦୁଇ ଗୁଣ ବଢ଼ାଇ ଦେଇଥିଲେ । ଶିଳ୍ପ ଏବଂ ଅଫିସ୍ ଶ୍ରମିକମାନେ ଏବେ ସେମାନଙ୍କ ହାରାହାରି ବେତନର ଶତକଡ଼ା ୫୦ ଭାଗରୁ ୧୦୦ଭାଗ ପର୍ଯ୍ୟନ୍ତ ପାଇଲେ । କୋଠ ଋଷୀମାନଙ୍କ ପାଇଁ ରାଷ୍ଟ୍ରୀୟ ପେନ୍‌ସନ୍ ପ୍ରବର୍ତ୍ତନ ଥିଲା ସାମାଜିକ ପଦକ୍ଷେପ ଦୃଷ୍ଟିରୁ ବିପୁଳ ଗୁରୁତ୍ୱସଂପନ୍ନ । ୧୯୬୪ ପୂର୍ବରୁ କୋଠଖମାରମାନେ ସେମାନଙ୍କ ନିଜସ୍ୱ ପାଣ୍ଠିରୁ ସେମାନଙ୍କ ସଦସ୍ୟମାନଙ୍କୁ ପେନ୍‌ସନ୍ ଦେଉଥିଲେ । ଏହା ପରେ କୋଠଋଷୀ, ଶିଳ୍ପ ଏବଂ ଅଫିସ୍ ଶ୍ରମିକମାନଙ୍କ ପାଇଁ ଏକ ରକମର ପେନ୍‌ସନ ବ୍ୟବସ୍ଥା ଋଲୁ ହୋଇଥିଲା । କୋଠଋଷୀମାନଙ୍କ ପାଇଁ ଏକ ପେନ୍‌ସନ ପାଣ୍ଠି ସୃଷ୍ଟି କରାଯାଇଥିଲା, ଏହି ପାଣ୍ଠିକୁ ସୋଭିଏତ୍ ୟୁନିଅନ୍‌ର ରାଷ୍ଟ୍ରୀୟ ବଜେଟର ବରାଦ ତଥା କୋଠଖମାରର ଆୟରୁ ଋନ୍ଦା ପ୍ରଦାନ କରାଗଲା ।

ସାମାଜିକ ପରିଭୋଗ ପାଣ୍ଠିସମୂହର ଦ୍ରୁତ ଅଭିବୃଦ୍ଧି ମଧ୍ୟ ବିଶେଷ ଭାବେ ଗୁରୁତ୍ୱପୂର୍ଣ୍ଣ ଥିଲା । ୧୯୬୫ ମସିହାରେ ଏହିସବୁ ପାଣ୍ଠିର ପରିମାଣ ଥିଲା ୪୨,୦୦୦ ନିୟୁତ ରୁବଲ, ଅର୍ଥାତ୍, ୧୯୪୦ ତୁଳନାରେ ୯ ଗୁଣ ବେଶି । ସାମାଜିକ ପରିଭୋଗ ପାଣ୍ଠିସମୂହ ଦେଶବାସୀଙ୍କୁ ଯୋଗାଇ ଦେଲା ବିନା ବ୍ୟୟରେ ଚିକିତ୍ସା ବ୍ୟବସ୍ଥା, ସାଧାରଣ ଏବଂ ବିଶେଷୀକୃତ ମାଧ୍ୟମିକ ଓ ଉଚ୍ଚତର ଶିକ୍ଷା, ରିଫ୍ରେସର ପାଠ୍ୟକ୍ରମ,

ଛାତ୍ରମାନଙ୍କୁ ବୃତ୍ତି, ପେନ୍‌ସନ ଏବଂ ନାନା ରକମର ଭତ୍ତା, ସବେତନ ଛୁଟି, ସ୍ୱାସ୍ଥ୍ୟ ନିବାସ ଏବଂ ଅବକାଶ ଯାପନ ଭବନରେ ରିହାତି ଖର୍ଚ୍ଚ ବା ବିନା ଖର୍ଚ୍ଚରେ ଅବକାଶ ଯାପନ ଆଦି । ୧୯୬୫ ମସିହାରେ, ଦୃଷ୍ଟାନ୍ତ ସ୍ୱରୂପ, ୮ ନିୟୁତ କୋଠଗଷୀମାନଙ୍କ ସମେତ ୩୨ ନିୟୁତ ଲୋକ (୧୯୪୦ ମସିହାରେ ପ୍ରାୟ ୪ ନିୟୁତ) ପେନ୍‌ସନ ଲାଭ କରିଥିଲେ । ୫ ନିୟୁତ ବହୁ ସନ୍ତାନର ଜନନୀଙ୍କୁ ରାଷ୍ଟ୍ର ତରଫରୁ ମାସିକ ଭତ୍ତା ମିଳିଲା । ମାଧ୍ୟମିକ ବିଶେଷୀକୃତ ଏବଂ ଉଚ୍ଚତର ଶିକ୍ଷା ପ୍ରତିଷ୍ଠାନର ୫ ନିୟୁତରୁ ଅଧିକ ଛାତ୍ରଙ୍କୁ ବୃତ୍ତି ଏବଂ ବାସସ୍ଥାନ ଯୋଗାଇ ଦିଆଯାଇଥିଲା । ପ୍ରାୟ ୭.୭ ନିୟୁତ ଶିଶୁ ସ୍ଥାୟୀ ଶିଶୁ ଲାଳନାଗାର ଏବଂ ଶିଶୁ ସଦନରେ ସାମାନ୍ୟ ଖର୍ଚ୍ଚରେ ରହିଥିଲେ ଏବଂ ଗ୍ରୀଷ୍ମକାଳରେ ସାମୟିକ ଶିଶୁଲାଳନାଗାର ଏବଂ ଖୋଲା ଶିଶୁ ସଦନମାନ କାର୍ଯ୍ୟ କରିଥିଲା । ୧୯୬୫ ମସିହାରେ ୩.୯ ନିୟୁତ ଶିଶୁ ଏହି ଭଳି ଶିଶୁ ସଦନକୁ ଯାଉଥିଲେ । ୧୫ ନିୟୁତରୁ ଅଧିକ ଶ୍ରମଜୀବୀ ଲୋକେ ଏବଂ ସେମାନଙ୍କ ପିଲାଏ ସ୍ୱାସ୍ଥ୍ୟ ନିବାସ, ଅବକାଶ କେନ୍ଦ୍ର, ସ୍ୱାସ୍ଥ୍ୟ ନିବାସ ଚିକିତ୍ସାଳୟ ଏବଂ ଗ୍ରାମାଞ୍ଚଳର କିଶୋର କ୍ୟାମ୍ପରେ ଅବକାଶ ଯାପନ କରିଥିଲେ କିମ୍ବା ଡାକ୍ତରି ଚିକିତ୍ସା ଲାଭ କରିଥିଲେ । ଏସବୁ ବାବଦକୁ ସମସ୍ତ ଖର୍ଚ୍ଚ ବା ଆଂଶିକ ଖର୍ଚ୍ଚ ବହନ କରିଥିଲେ ସାମାଜିକ ବିମା ପାଇଁ ରାଷ୍ଟ୍ରୀୟ ପାଣ୍ଠି ଏବଂ କୋଠଖମାର ପାଣ୍ଠି । ଏହା ଛଡ଼ା ୨ ନିୟୁତରୁ ଅଧିକ ଲୋକେ ପର୍ଯ୍ୟଟନ କେନ୍ଦ୍ର ଏବଂ ପର୍ବତାରୋହଣ ଶିବିରରେ ଛୁଟି କଟାଇଥିଲେ ।

ସାମାଜିକ ପାଣ୍ଠିସମୂହରୁ ମିଳୁଥିବା ସୁବିଧା ଆଦିକୁ ହିସାବ କଲେ ୧୯୬୫ ମସିହାରେ ଦେଶବାସୀଙ୍କର ପ୍ରକୃତ ମୁଣ୍ଡପିଛା ଆୟ ୧୯୪୦ ତୁଳନାରେ ତିନି ଗୁଣ ବଢ଼ି ଯାଇଥିଲା ।

ଗୃହ ନିର୍ମାଣ ମଧ୍ୟ ବ୍ୟାପକ ପରିସର ଲାଭ କରିଥିଲା : ୫୫୮ ନିୟୁତ ବର୍ଗ ମିଟର ବିଶିଷ୍ଟ (୧୧.୨ ନିୟୁତ ଫ୍ଲାଟ) ଗୃହସ୍ଥଳୀ ନିର୍ମିତ ହୋଇଥିଲା ୧୯୫୯ରୁ ୧୯୬୫ ମସିହା ମଧ୍ୟରେ । ଏହି ସଂଖ୍ୟାଟି ସୋଭିଏତ୍ ଶାସନ ପ୍ରତିଷ୍ଠା ଠାରୁ ନିର୍ମିତ ଗୃହର ପରିମାଣ ସହିତ ପ୍ରାୟ ସମାନ ।

ଶ୍ରମଜୀବୀ ଜନସାଧାରଣଙ୍କର ବୈଷୟିକ ଅବସ୍ଥାନ ଏବଂ ଚିକିତ୍ସାର ସୁଯୋଗ ସୁବିଧାରେ ଉନ୍ନତି ଫଳରେ ଦେଶରେ ମୃତ୍ୟୁର ହାର ଆଉରି କମି ଯାଇଥିଲା । ସୋଭିଏତ୍ ୟୁନିଅନ୍‌ର ଲୋକଙ୍କର ହାରାହାରି ଆୟୁଷ୍କାଳ ୭୦ ବର୍ଷକୁ ଟପିଗଲା । ଜନ୍ମ ହାର ଉଚ୍ଚ ରହିବା ହେତୁ ଜନସଂଖ୍ୟା ବୃଦ୍ଧି ସ୍ୱାଭାବିକ ରହିଥିଲା । ୧୯୫୦ ପରେ ସୋଭିଏତ୍ ୟୁନିଅନ୍‌ର ଜନସଂଖ୍ୟା ୫ କୋଟି ୬ ଲକ୍ଷ ବୃଦ୍ଧି ପାଇଥିଲା ବେଳେ ୧୯୬୬ ମସିହାରେ ଜନସଂଖ୍ୟା ୨୩ କୋଟି ୨୦ ଲକ୍ଷକୁ ଟପି ଯାଇଥିଲା ।

ସମାଜବାଦର ବିଜୟ ସୋଭିଏତ୍ ୟୁନିଅନ୍‌ରେ ଜନଶିକ୍ଷା, ବିଜ୍ଞାନ ଏବଂ

ସଂସ୍କୃତିର ବିକାଶ ପାଇଁ ପ୍ରଶସ୍ତ ପଥ ଖୋଲି ଯାଇଥିଲା । ୧୯୩୯ ଏବଂ ୧୯୫୯ ମସିହା ଦ୍ୱୟରେ ଅନୁଷ୍ଠିତ ଜନଗଣନାକୁ ପରୀକ୍ଷା କରି ଦେଖିଲେ, ଏହା ପରିଷ୍କାର ଭାବେ ଜଣା ପଡ଼େ । ୧୯୩୯ ମସିହାରେ ଉଚ୍ଚ ଶିକ୍ଷା, ଅସଂପୂର୍ଣ୍ଣ ଉଚ୍ଚ ଶିକ୍ଷା, ମାଧ୍ୟମିକ ଏବଂ ଅସଂପୂର୍ଣ୍ଣ ମାଧ୍ୟମିକ ଶିକ୍ଷାଧାରୀ ଲୋକ ସଂଖ୍ୟା ୧୬ ନିୟୁତରୁ କମ୍ ଥିଲା ବେଳେ ୧୯୫୯ରେ ଏହି ସଂଖ୍ୟା ୫୯ ନିୟୁତରେ ପହଞ୍ଚି ଯାଇଥିଲା । ଅକ୍ଟୋବର ବିପ୍ଳବ ପୂର୍ବରୁ ଉଚ୍ଚ ଶିକ୍ଷା ଦୂରର କଥା, ମାଧ୍ୟମିକ ଶିକ୍ଷା ଲାଭ କରିଥିବା ଜଣେ ହେଲେ ଲୋକ ଶ୍ରମିକ ଏବଂ କୃଷକମାନଙ୍କ ମଧ୍ୟରେ ନଥିଲେ । ୧୯୩୯ ମସିହାରେ ଶତକଡ଼ା ୪.୩ ଭାଗ ଦୈହିକ ଶ୍ରମ କରୁଥିବା ଶ୍ରମିକ ମାଧ୍ୟମିକ ଶିକ୍ଷା ଲାଭ କରିଥିଲା ବେଳେ ୧୯୫୯ରେ ଶ୍ରମିକମାନଙ୍କ ମଧ୍ୟରୁ ଶତକଡ଼ା ୩୯ ଭାଗ ଏବଂ କୋଠଋଷୀମାନଙ୍କ ମଧ୍ୟରୁ ୨୧ ଭାଗ ମାଧ୍ୟମିକ ବା ଉଚ୍ଚ ଶିକ୍ଷାଧାରୀ ଥିଲେ । ପିଲାମାନଙ୍କ ପାଇଁ ସାର୍ବଜନୀନ ବାଧ୍ୟତାମୂଳକ ଆଠବର୍ଷିଆ ଶିକ୍ଷାକୁ ଉତ୍ତରଣ ଘଟିଥିଲା ୧୯୫୦ ଦଶକର ଶେଷ ଭାଗ ଏବଂ ୧୯୬୦ ଦଶକର ପ୍ରଥମାର୍ଦ୍ଧରେ । ମାଧ୍ୟମିକ ଏବଂ ଉଚ୍ଚତର ଶିକ୍ଷା ଦ୍ରୁତ ଗତିରେ ପ୍ରସାର ଲାଭ କରିଥିଲା । ୧୯୬୫ ମସିହାରେ ଜାତୀୟ ଅର୍ଥନୀତି ଓ ସଂସ୍କୃତିର ବିଭିନ୍ନ କ୍ଷେତ୍ରରେ ୧୨ ନିୟୁତ ଉପାଧିଧାରୀ ବିଶେଷଜ୍ଞ ନିଯୁକ୍ତ ଥିଲେ ଏବଂ ସେମାନଙ୍କ ମଧ୍ୟରୁ ୫ ନିୟୁତ ଥିଲେ ଉଚ୍ଚ ଶିକ୍ଷାପ୍ରାପ୍ତ । ଗବେଷକମାନଙ୍କ ସଂଖ୍ୟା ପ୍ରାୟ ୬୬୫,୦୦୦କୁ ଛୁଇଁଥିଲା । ଏହି ସଂଖ୍ୟାଟି ୧୯୪୦ ସଂଖ୍ୟାର ୬.୭ ଗୁଣ ଥିଲା ।

ବିଜ୍ଞାନ ଏବଂ କାରିଗରି କ୍ଷେତ୍ରରେ ସୋଭିଏତ୍ ବିଜ୍ଞାନୀମାନେ ଅପୂର୍ବ ସାଫଲ୍ୟ ଅର୍ଜନ କରିଥିଲେ । ଏ କ୍ଷେତ୍ରରେ ସବୁଠାରୁ ବିଚକ୍ଷଣ ପ୍ରମାଣ ହେଲା ମହାକାଶ ଅଭିଯାନ ।

ସୋଭିଏତ୍ ବିଜ୍ଞାନ ଆକାଡେମିର ସଭାପତି ଏମ୍.କେଲ୍‌ଦିଶ୍ ଏବଂ ବିଖ୍ୟାତ ଡିଜାଇନ୍‌ର ସେର୍ଗେଇ କରୋଲିଓଭ୍‌ଙ୍କ ନେତୃତ୍ୱରେ ବଡ଼ ଏକ ଦଳ ବିଜ୍ଞାନୀ ଏବଂ ଡିଜାଇନ୍‌ର ପୃଥିବୀର ସର୍ବପ୍ରଥମ ଆନ୍ତର୍ମହାଦେଶୀୟ କ୍ଷେପଣଯାନଟି ନିର୍ମାଣ କରିଥିଲେ । ଏହା ପୃଥିବୀର ମାଧ୍ୟାକର୍ଷଣକୁ ଅତିକ୍ରମ କଲା ଭଳି ବେଗରେ ଗତି କରି ମହାକାଶରେ ପହଞ୍ଚି ପାରିଥିଲା । ଏହିଭଳି ଏକ କ୍ଷେପଣଯାନ ସାହାଯ୍ୟରେ ଏକ କୃତ୍ରିମ ଉପଗ୍ରହକୁ (ସ୍ପୁତନିକ୍) ପୃଥିବୀର କକ୍ଷ ପଥରେ ସୋଭିଏତ୍ ୟୁନିଅନ୍ ଦ୍ୱାରା ସ୍ଥାପନ କରାଯାଇ ପାରିଥିଲା ୧୯୫୭, ଅକ୍ଟୋବର ୪ ତାରିଖରେ ଇତିହାସରେ ପ୍ରଥମ ଥର ପାଇଁ । ସୋଭିଏତ୍ କ୍ଷେପଣଯାନଟି ପ୍ରଥମ ଥର ପାଇଁ ୧୯୫୯ ସେପ୍‌ଟେମ୍ବର ମାସରେ ଚନ୍ଦ୍ର ପୃଷ୍ଠରେ ଅବତରଣ କରି ରାଷ୍ଟ୍ରୀୟ ପ୍ରତୀକଯୁକ୍ତ ପତାକାଟିଏ ସେଠାରେ ପହଞ୍ଚାଇ ଦେଇଥିଲା । ସେଇ ବର୍ଷ ଅକ୍ଟୋବର ମାସରେ ଏକ ସୋଭିଏତ୍ ଆନ୍ତର୍ଗ୍ରହ ସ୍ୱୟଂଚାଳିତ ଷ୍ଟେସନ ପ୍ରଥମ ଥର ପାଇଁ ପୃଥିବୀ ପକ୍ଷରେ ଅଦୃଶ୍ୟ ଚନ୍ଦ୍ରର ପାର୍ଶ୍ୱଦେଶର ଛବି ଗ୍ରହଣ କରି ପୃଥିବୀକୁ ପ୍ରେରଣ କରିଥିଲା ।

ବିଶ୍ୱଜଗତର ଆବିଷ୍କାର ପକ୍ଷରେ ଦିକ୍‌ଚିହ୍ନ ସ୍ୱରୂପ ଥିଲା ମହାକାଶରେ ମଣିଷର ଐତିହାସିକ ଉଡ୍ଡୟନଟି । ୧୯୬୧, ଏପ୍ରିଲ ୧୨ ତାରିଖ ଦିନ ବୈମାନିକ ମହାକାଶଚାରୀ ୟୁରି ଗାଗାରିନ୍ ସୋଭିଏତ୍ ନାଗରିକ ଓ କମ୍ୟୁନିଷ୍ଟ "ଭୋଷ୍ଟୋକ" ମହାକାଶ ଯାନରେ ପୃଥିବୀ ଚତୁର୍ପାର୍ଶ୍ୱରେ ୧୦୮ ମିନିଟ କାଳ ଉଡିଲା ପରେ ନିରାପଦରେ ପୂର୍ବ ନିର୍ଦ୍ଧାରିତ ସ୍ଥାନରେ ପୃଥିବୀ ପୃଷ୍ଠକୁ ଫେରି ଆସିଥିଲେ । ଏହି ବିଖ୍ୟାତ ଘଟଣାଟି ଥିଲା ସୋଭିଏତ୍ ଏବଂ ଆମେରିକା ଯୁକ୍ତ ରାଷ୍ଟ୍ରର ମହାକାଶଚାରୀମାନଙ୍କର ବହୁ ଉଡ୍ଡୟନର ଅଗ୍ରମାରମ୍ଭ ।

ପରମାଣୁ ଶକ୍ତିର ଆଉରି ଉପଯୋଗ ପାଇଁ ଗବେଷଣା ମଧ୍ୟ ଚାଲିଥିଲା । ସୋଭିଏତ୍ ବୈଜ୍ଞାନିକମାନେ "ରୋମାସ୍କା" ନାମକ ଏକ ପାରମାଣବିକ ୟୁନିଟର ଡିଜାଇନ୍ ତିଆରି କରିଥିଲେ । ଏହି ୟୁନିଟ୍‌ଟି ସିଧାସଳଖ ଏକ ପାରମାଣବିକ ରିଆକ୍ଟର ତାପ ଶକ୍ତିକୁ ବିଦ୍ୟୁତ୍ ଶକ୍ତିକୁ ରୂପାନ୍ତରିତ କରି ପାରୁଥିଲା । ସୋଭିଏତ୍ ୟୁନିଅନ୍‌ରେ ଚଳନଶୀଳ କ୍ୟାଟରପିଲାର ପାରମାଣବିକ ଶକ୍ତି କେନ୍ଦ୍ର ମଧ୍ୟ ନିର୍ମିତ ହୋଇଥିଲା ।

ତାପ ପାରମାଣବିକ ପ୍ରତିକ୍ରିୟାକୁ ନିୟନ୍ତ୍ରଣ କଲା ଭଳି ଅତୀବ ଜଟିଳ ସମସ୍ୟାକୁ ସମାଧାନ କରିବା ପାଇଁ ସୋଭିଏତ୍ ବିଜ୍ଞାନୀମାନେ ବହୁ ଉଦ୍ୟମ କରିଥିଲେ । ବିଜ୍ଞାନୀମାନେ ଏହି ସମସ୍ୟାର ସମାଧାନ କଲା ପରେ ମାନବ ସମାଜ କାର୍ଯ୍ୟତଃ ଶକ୍ତିର ଅଫୁରନ୍ତ ଏକ ଉତ୍ସ ଲାଭ କରିବ, ସେ ଉତ୍ସଟି ହେଲା ସମୁଦ୍ର ଏବଂ ମହାସମୁଦ୍ରର ଜଳରାଶି ।

ପରିମାଣାତ୍ମକ ଇଲେକ୍‌ଟ୍ରନିକ୍ କ୍ଷେତ୍ରରେ ସୋଭିଏତ୍ ବିଜ୍ଞାନ ମଧ୍ୟ ଉଲ୍ଲେଖନୀୟ ସାଫଲ୍ୟ ଅର୍ଜନ କରିଥିଲା । ପ୍ରତିଭାବାନ ବସ୍ତୁବିଜ୍ଞାନୀ ଆକାଡେମିସିଆନ ନିକୋଲାଇ ବାସଭ୍ ଏବଂ ଆଲେକ୍‌ଜାଣ୍ଡାର ପ୍ରୋଖୋରୋଭ୍‌ଙ୍କ ମୌଳିକ ଗବେଷଣା ଫଳରେ ପରିମାଣାତ୍ମକ ଜେନେରେଟର ଏବଂ ରେଡିଓର ଓ ଅପ୍‌ଟିକାଲ ଯାମ୍ପ୍ଲିଫାଆର ନିର୍ମାଣ କରିବା ସମ୍ଭବ ହୋଇଥିଲା । ସେପର୍ଯ୍ୟନ୍ତ ଅସମ୍ଭବ ମନେ ହେଉଥିବା ବହୁ କାର୍ଯ୍ୟକୁ ବିଜ୍ଞାନ ଓ କାରୁବିଜ୍ଞାନ କ୍ଷେତ୍ରରେ ସମ୍ପାଦନ କରିବାକୁ ସେମାନେ ସମ୍ଭବ କରାଇ ପାରିଥିଲେ । ଅପ୍‌ଟିକାଲ ପରିମାଣାତ୍ମକ ଜେନେରେଟରଗୁଡ଼ିକ (ଲେସେର) ଯେକୌଣସି ଉପାଦାନକୁ ବାଷ୍ପରେ ପରିଣତ କରି ଦେଇ ପାରେ । ସେସବୁ ଯେକୌଣସି ବସ୍ତୁକୁ ଲକ୍ଷ ଲକ୍ଷ ଡିଗ୍ରୀ ପର୍ଯ୍ୟନ୍ତ ଉତ୍ତପ୍ତ କରି ଦେଇ ପାରନ୍ତି ଏବଂ ସେକଣ୍ଡର ହଜାର ଭାଗ ସମୟରେ ଯେକୌଣସି ଶକ୍ତ ଉପାଦାନକୁ ନେଇ ଅତି କ୍ଷୁଦ୍ର ଛିଦ୍ର ତିଆରି କରି ପାରନ୍ତି ।

ଶବ୍ଦସମ ଗତି ଏବଂ ଶବ୍ଦାତୀତ ଗତିରେ ଉଡ୍ଡୟନ ତତ୍ତ୍ୱରେ ସୋଭିଏତ୍ ବିଜ୍ଞାନୀମାନଙ୍କ ସାଫଲ୍ୟରାଜି ସୋଭିଏତ୍ ୟୁନିଅନ୍‌ରେ ପୃଥିବୀର ପ୍ରଥମ ଅତି ଦ୍ରୁତ ଗତିସଂପନ୍ନ ଟର୍ବୋ-ଜେଟ୍ ଓ ଟର୍ବୋ-ପ୍ରପ୍ ବିମାନଗୁଡ଼ିକର ବିକାଶ ପାଇଁ ଭିତ୍ତି ଯୋଗାଇ ଦେଇଥିଲା (ଏ କ୍ଷେତ୍ରରେ ମୁଖ୍ୟ ଡିଜାଇନର ଥିଲେ ଆନ୍ଦ୍ରେଇ ଟୁପୋଲେଭ୍, ସେର୍ଗେଇ ଇଲ୍ୟୁସିନ୍, ଓଲେଗ୍ ଆନ୍ତୋନୋଭ୍, ପ୍ରମୁଖ) ।

କଠିନ ଉପାଦାନର ବସ୍ତୁବିଜ୍ଞାନ କ୍ଷେତ୍ରରେ ସୋଭିଏତ୍ ବିଜ୍ଞାନୀମାନେ ମଧ୍ୟ

ଉଲ୍ଲେଖଯୋଗ୍ୟ ସୁକୃତି ଅର୍ଜନ କରିଥିଲେ । ସୋଭିଏତ୍ ୟୁନିଅନ୍‌ର ବିଜ୍ଞାନ ଆକାଡେମି କୃତ୍ରିମ ହୀରା ନିର୍ମାଣ ପାଇଁ ଏକ ପଦ୍ଧତି ଆବିଷ୍କାର କରିଥିଲା ଏବଂ ଏହାକୁ ଭିତ୍ତି କରି ସୋଭିଏତ୍ ୟୁନିଅନ୍‌ରେ କୃତ୍ରିମ ହୀରା ନିର୍ମାଣ ଶିଳ୍ପ ଗଢ଼ି ଉଠିଛି । ହୀରା ଭଳି କଠିନ ଆଉ ଏକ ବସ୍ତୁ, ବୋରାଜନ ନିର୍ମାଣ କରିବାର ଉପାୟ ମଧ୍ୟ ଏହି ସମୟରେ ଆବିଷ୍କାର କରାଯାଇଥିଲା ।

ସାହିତ୍ୟ ଏବଂ କଳା କ୍ଷେତ୍ରରେ ସର୍ବଶ୍ରେଷ୍ଠ ସୁକୃତିରାଜିକୁ ଲେନିନ୍ ଏବଂ ରାଷ୍ଟ୍ରୀୟ ପୁରସ୍କାର ଦ୍ୱାରା ଯେପରି ସମ୍ମାନିତ କରାଯାଏ, ବିଜ୍ଞାନ ଏବଂ କାରିଗରି କ୍ଷେତ୍ରରେ ସାଫଲ୍ୟରାଜିକୁ ମଧ୍ୟ ସେଇପରି କରାଗଲା ।

ପରିମାଣ ତଥା ଗୁଣଗତ ଦୃଷ୍ଟିରୁ ସମାଜବାଦର ବୈଷୟିକ ତଥା କାରିଗରୀ ଭିତ୍ତିର ଦ୍ରୁତ ଅଭିବୃଦ୍ଧି ଏବଂ ଲୋକଙ୍କ ବୈଷୟିକ ତଥା ସାଂସ୍କୃତିକ ଜୀବନ ମାନରେ ଉନ୍ନତି ଫଳରେ ସୋଭିଏତ୍ ସମାଜର ଗଢ଼ଣରେ, ଶ୍ରେଣୀମାନଙ୍କ ଚରିତ୍ର ତଥା ସେମାନଙ୍କ ମଧ୍ୟରେ ପାରସ୍ପରିକ ସଂପର୍କରେ ବଡ଼ ବଡ଼ ପରିବର୍ତ୍ତନମାନ ଘଟିଥିଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ଗୁରୁତର କ୍ଷୟକ୍ଷତି ସତ୍ତ୍ୱେ ୧୯୪୦-୧୯୬୫ ମଧ୍ୟରେ ଶିଳ୍ପ ଏବଂ ଅଫିସ୍ ଶ୍ରମିକମାନଙ୍କ ସଂଖ୍ୟା ଶତକଡ଼ା ୧୩୦ ଭାଗ ବୃଦ୍ଧି ପାଇଥିଲା । ଦେଶର ଜନସଂଖ୍ୟାର ଅର୍ଦ୍ଧେକ ଏବେ ହେଉଛନ୍ତି ଶ୍ରମିକମାନେ । ଜଟିଳ ମେସିନ୍ ଏବଂ ଯନ୍ତ୍ର କୌଶଳକୁ ଚଳାଉଥିବା ଦକ୍ଷ ଶ୍ରମିକମାନଙ୍କ ସଂଖ୍ୟା ବିଶେଷ ଭାବେ ଦ୍ରୁତ ଗତିରେ ବୃଦ୍ଧି ପାଇଥିଲା । ଏହି ଧରଣର ଶ୍ରମିକମାନଙ୍କର ଶ୍ରମ କ୍ରମଶଃ ଇଂଜିନିୟର ଏବଂ କାରିଗରମାନଙ୍କ ଶ୍ରମ ସହିତ ସମାନ ହୋଇ ଆସୁଥିଲା । ଦୈହିକ ବା ନିମ୍ନଧରଣର ଯାନ୍ତ୍ରିକ ଶ୍ରମ ସହିତ ସଂପୃକ୍ତ ବହୁ ବେଉଷାର ସଂଖ୍ୟା କମି ଆସିଲା ବା ଲୋପ ପାଇବାକୁ ଲାଗିଲା । ଶ୍ରମିକମାନଙ୍କର ସାଂସ୍କୃତିକ ସ୍ତର ମଧ୍ୟ ବୃଦ୍ଧି ପାଇବାକୁ ଲାଗିଲା : ୧୯୩୯ ଶତକଡ଼ା ୮.୨ ଭାଗ ଶ୍ରମିକମାନଙ୍କର ଉଚ୍ଚତର, ମାଧ୍ୟମିକ ଏବଂ ଅସମାପ୍ତ ମାଧ୍ୟମିକ ଶିକ୍ଷା ଥିଲା ବେଳେ ୧୯୫୯ରେ ଶତକଡ଼ା ୩୮.୬ ଭାଗ ଏହି ଶିକ୍ଷା ଲାଭ କରିଥିଲେ । ଏଥି ସାଥେ ସାଥେ ରାସାୟନିକ, ଧାତୁ ଶିଳ୍ପ, ଇଂଜିନିୟରିଂ, ପୋଷାକ ପରିଚ୍ଛଦ ଏବଂ ମୁଦ୍ରଣ ଶିଳ୍ପରେ ସେମାନଙ୍କ ସଂଖ୍ୟା ଶତକଡ଼ା ୫୦ ଭାଗରୁ ଅଧିକରେ ପହଞ୍ଚି ଯାଇଥିଲା । ଶ୍ରମିକମାନଙ୍କ ସାଂସ୍କୃତିକ ସ୍ତରର ବିକାଶର ଧାରାଟି ବିଶେଷ ଭାବେ ଦ୍ରୁତ ଗତିରେ ସଂପନ୍ନ ହୋଇଥିଲା ମଧ୍ୟ ଏସୀୟ ପ୍ରଜାତନ୍ତ୍ରସମୂହ ଓ କାଜାଖ୍‌ସ୍ତାନରେ । ଏହି ଭାବେ ୧୯୩୯ ଓ ୧୯୫୯ ମଧ୍ୟରେ ଉଚ୍ଚତର, ମାଧ୍ୟମିକ ଓ ଅସଂପୂର୍ଣ୍ଣ ମାଧ୍ୟମିକ ଶିକ୍ଷାଧାରୀଙ୍କ ସଂଖ୍ୟା ସମଗ୍ର ସୋଭିଏତ୍ ୟୁନିଅନ୍‌ରେ ୪.୭ ଗୁଣ ବୃଦ୍ଧି ପାଇଲା ବେଳେ କାଜାଖ୍‌ସ୍ତାନରେ ବୃଦ୍ଧି ପାଇଥିଲା ୬ ଗୁଣ, ଉଜ୍‌ବେକିସ୍ତାନ ଓ ତାଜିକିସ୍ତାନରେ ୮ ଗୁଣ, ତୁର୍କମେନିଆରେ ୯ ଗୁଣ ଏବଂ କିର୍‌ଘିଜିଆରେ ୧୧ ଗୁଣ ।

ସୋଭିଏତ୍ ସମାଜର ସାମାଜିକ ଅଗ୍ରଗତି ଏବଂ ସାମାଜିକ-ରାଜନୈତିକ ବିକାଶରେ ଶ୍ରମିକ ଶ୍ରେଣୀ ହିଁ ପ୍ରକୃତ ଅର୍ଥରେ ନିଷ୍ପତ୍ତିମୂଳକ ଶକ୍ତି ହୋଇ ଆସିଛି । ଶ୍ରମିକମାନଙ୍କର ଏବଂ ସେମାନଙ୍କ ଟ୍ରେଡ୍ୟୁନିଅନ୍‌ଗୁଡ଼ିକର ଭୂମିକା ଉତ୍ପାଦନ ପରିଚାଳନା ଏବଂ ସାଂଗଠନିକ କାର୍ଯ୍ୟରେ ବୃଦ୍ଧି ପାଇବାକୁ ଲାଗିଲା । କମ୍ୟୁନିଷ୍ଟ ପାର୍ଟି, ଟ୍ରେଡ୍ୟୁନିଅନ୍ ଏବଂ ଅନ୍ୟାନ୍ୟ ଗଣ ଶ୍ରମିକ ଜନସାଧାରଣଙ୍କ ସଂଗଠନସମୂହରେ ଶ୍ରମିକ ଶ୍ରେଣୀର ରାଜନୈତିକ କ୍ରିୟାକଳାପ ବୃଦ୍ଧି ପାଇଲା ।

ସୋଭିଏତ୍ କୃଷକମାନଙ୍କ ମଧ୍ୟରେ ମଧ୍ୟ ଉଲ୍ଲେଖନୀୟ ପରିବର୍ତ୍ତନ ଦେଖାଦେଲା । ସମଗ୍ର ଜନସଂଖ୍ୟା ମଧ୍ୟରେ ଏହାର ସଂଖ୍ୟା କମିଯିବା ସଙ୍ଗେ ଏହାର ନିଜସ୍ୱ ସଂଖ୍ୟା ମଧ୍ୟ କମିଲା । ଏହା ଘଟିଥିଲା, କୃଷକମାନେ ଶିଳ୍ପ, ପରିବହନ, ନିର୍ମାଣ ଆଦି କାର୍ଯ୍ୟ ମଧ୍ୟକୁ ଚାଲି ଯାଉଥିଲେ । ଏକଥା ସମ୍ଭବ ହୋଇଥିଲା, କୃଷିର ଯନ୍ତ୍ରାୟନ କ୍ଷେତ୍ରରେ ସାଫଲ୍ୟ ଓ କ୍ରମାଧିକ ଉତ୍ପାଦନଶୀଳତା ବୃଦ୍ଧି ଫଳରେ । ଏହା ଦ୍ୱାରା କୃଷିରେ ଲୋକ ଶକ୍ତିର ଆବଶ୍ୟକତା କମି ଆସିଥିଲା । କେତେକ କୋଠଖମାରକୁ ରାଷ୍ଟ୍ର ଖମାରରେ ପରିଣତ କରି ଦେବା ଦ୍ୱାରା କୋଠଚାଷୀମାନେ କୃଷି ଶ୍ରମିକରେ ପରିଣତ ହୋଇଗଲେ ଏବଂ ଏହା ଫଳରେ କୋଠଚାଷୀମାନଙ୍କ ସଂଖ୍ୟା କିଛି ପରିମାଣରେ କମି ଯାଇଥିଲା । କୃଷି କାର୍ଯ୍ୟ କ୍ରମଶଃ ଅଧିକରୁ ଅଧିକ ଶିଳ୍ପ କର୍ମର ରୂପ ଧାରଣ କରିବାକୁ ଲାଗିଲା । ଏହା ଫଳରେ କାର୍ଯ୍ୟର ଚରିତ୍ର ଓ ଆଧେୟ ଦୃଷ୍ଟିରୁ କୃଷକମାନେ ଶ୍ରମିକମାନଙ୍କର ନିକଟବର୍ତ୍ତୀ ହୋଇ ଆସିଲେ । ଏଥି ସହିତ ଆଉ ଗୋଟିଏ କଥା ମଧ୍ୟ ଘଟିଥିଲା, ତାହା ହେଲା, ଶିଳ୍ପ ଆଉ ଅଫିସ୍ ଶ୍ରମିକମାନଙ୍କ ବେତନରେ ଅଭିବୃଦ୍ଧି ଅପେକ୍ଷା କୋଠଖମାରର ଚାଷୀମାନଙ୍କ ଆୟର ମାତ୍ରା ଅଧିକ ହେବା ଫଳରେ ୧୯୫୦ ଦଶକ ଓ ୧୯୬୦ ଦଶକରେ ଶ୍ରମିକମାନଙ୍କ ଜୀବନଧାରଣ ମାନ କୃଷକମାନଙ୍କ ଜୀବନଧାରଣ ମାନ ସହିତ ଲାଗି ଆସିଲା ।

କୋଠଚାଷୀମାନେ ସଂସ୍କୃତି ତଥା ପ୍ରାତ୍ୟହିକ ଜୀବନ କ୍ଷେତ୍ରରେ ମଧ୍ୟ ଶ୍ରମିକ ଶ୍ରେଣୀର ନିକଟବର୍ତ୍ତୀ ହୋଇ ଆସିଥିଲେ । ୧୯୫୯ର ନିଖିଳ ସୋଭିଏତ୍ ଜନଗଣନାରୁ ଜଣାଗଲା ସହର ଓ ଗ୍ରାମାଞ୍ଚଳରୁ ନିରକ୍ଷରତା ସଂପୂର୍ଣ୍ଣ ରୂପେ ଲୋପ ପାଇ ଯାଇଥିଲା ଏବଂ ୧୯୩୯ରେ ଦେଶରେ ୧୦ ନିୟୁତ ଲୋକ ନିରକ୍ଷର ଥିଲେ । ୧୯୩୯ ମସିହାରେ ଗ୍ରାମାଞ୍ଚଳରେ ୫ ନିୟୁତରୁ ସାମାନ୍ୟ ଅଧିକ ଲୋକଙ୍କର ଉଚ୍ଚତର, ମାଧ୍ୟମିକ ଏବଂ ଅସଂପୂର୍ଣ୍ଣ ମାଧ୍ୟମିକ ଶିକ୍ଷା ଥିଲା ବେଳେ ୧୯୫୯ରେ ଏହି ସଂଖ୍ୟା ୪ ଗୁଣ ବୃଦ୍ଧି ପାଇ ୨ କୋଟି ୧୦ ଲକ୍ଷରେ ପହଞ୍ଚିଥିଲା । ୧୯୩୯ ମସିହାରେ ସହରାଞ୍ଚଳ ଅପେକ୍ଷା ଗ୍ରାମାଞ୍ଚଳରେ ଅସଂପୂର୍ଣ୍ଣ ମାଧ୍ୟମିକ ଏବଂ ସଂପୂର୍ଣ୍ଣ ମାଧ୍ୟମିକ ଶିକ୍ଷାଧାରୀଙ୍କ ସଂଖ୍ୟା ୫ ଗୁଣ କମ୍ ଥିଲା ବେଳେ ୧୯୫୯ର ପ୍ରାରମ୍ଭରେ ଏହି ଆପାତିକତା ୧.୮କୁ କମି ଆସିଥିଲା ।

ସୋଭିଏତ୍ ଗ୍ରାମାଞ୍ଚଳରେ ହଜାର ହଜାର ସାଂସ୍କୃତିକ କେନ୍ଦ୍ର, ପାଠାଗାର, ପଠନାଳୟ ଓ ଚଳଚ୍ଚିତ୍ର ପ୍ରୋଜେକ୍ଟରର କାର୍ଯ୍ୟରେ ଏବଂ ଅପେଶାଦାର କଳାକାର ଦଳମାନଙ୍କର କ୍ରିୟାକଳାପରେ ନିୟୁତ ନିୟୁତ ଲୋକଙ୍କର ଅଂଶଗ୍ରହଣରୁ ଏହା ପରିଷ୍କାର ଜଣାଯାଏ, କେତେ ଦ୍ରୁତ ଗତିରେ ସହର ଓ ଗ୍ରାମାଞ୍ଚଳ ମଧ୍ୟରେ, ଶ୍ରମିକ ଶ୍ରେଣୀ ଓ କୃଷକମାନଙ୍କ ମଧ୍ୟରେ ପାର୍ଥକ୍ୟ ଲୋପ ପାଇବାରେ ଲାଗିଥିଲା । ଏହି ପ୍ରକ୍ରିୟାର ପଛରେ ଥିଲା କୃଷି କ୍ଷେତ୍ରରେ ଅର୍ଜିତ କାରିଗରିଗତ, ଅର୍ଥନୈତିକ ଏବଂ ସାଂସ୍କୃତିକ ଅଗ୍ରଗତି ।

ସୋଭିଏତ୍ ବୁଦ୍ଧିଜୀବୀମାନଙ୍କର ସଂଖ୍ୟା ବିପୁଳ ପରିମାଣରେ ବୃଦ୍ଧି ପାଇ ୧୯୫୯ରେ ୨୦ ନିୟୁତରେ ପହଞ୍ଚିଥିଲା । ୨୦ ବର୍ଷ ମଧ୍ୟରେ (୧୯୩୯-୧୯୫୯) ବୁଦ୍ଧିଜୀବୀମାନଙ୍କ ସଂଖ୍ୟା ଶତକଡ଼ା ୧୩୦ ଭାଗ ବୃଦ୍ଧି ପାଇଲା ବେଳେ ଏହି ସମୟରେ ଦେଶର ଲୋକ ସଂଖ୍ୟାର ଶତକଡ଼ା ୨୨ ଭାଗ ଥିଲେ । ୧୯୫୯ ମସିହାରେ ଦେଶର ଜାତୀୟ ଅର୍ଥନୀତି କ୍ଷେତ୍ରରେ ନିଯୁକ୍ତ ଲୋକଙ୍କ ମଧ୍ୟରୁ ଶତକଡ଼ା ୨୦ ଭାଗ ଥିଲେ ବୁଦ୍ଧିଜୀବୀ । ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଅଗ୍ରଗାମୀ ବେଉଷାର ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଥିଲା ଦ୍ରୁତ ଗତିରେ । ଦୃଷ୍ଟାନ୍ତ ସ୍ୱରୂପ, ୨୦ ବର୍ଷ ମଧ୍ୟରେ ଇଂଜିନିୟରମାନଙ୍କ ସଂଖ୍ୟା ବୃଦ୍ଧି ପାଇଥିଲା ଶତକଡ଼ା ୨୩୦ ଭାଗ । ଇଂଜିନିୟର ଓ କାରିଗରମାନଙ୍କ ଶିକ୍ଷାଗତ ସ୍ତର ଓ ଦକ୍ଷତା ଉଲ୍ଲେଖନୀୟ ଭାବେ ଉନ୍ନତ ହୋଇଥିଲା । ୧୯୩୯ ମସିହାରେ ଶିକ୍ଷିତ ଶ୍ରମିକମାନଙ୍କ ମଧ୍ୟରୁ ଅର୍ଦ୍ଧେକଙ୍କର ମାଧ୍ୟମିକ ଓ ଉଚ୍ଚତର ଶିକ୍ଷା ଥିଲା ବେଳେ, ୧୯୫୯ ଶେଷରେ ଶତକଡ଼ା ୮୮ ଭାଗ ଏହି ଶିକ୍ଷା ଲାଭ କରି ପାରିଥିଲେ । ସୋଭିଏତ୍ ବୁଦ୍ଧିଜୀବୀମାନଙ୍କ ମଧ୍ୟରୁ ଅଧିକାଂଶ ଭାଗ ସୁଶିକ୍ଷିତ ଏବଂ ସୃଜନଶୀଳ ହେବାକୁ ଲାଗିଥିଲେ । ଏହାର ସମାଜବାଦୀ ଚେତନା ଏବଂ ରାଜନୀତି ତଥା କାର୍ଯ୍ୟ କ୍ଷେତ୍ରରେ କ୍ରିୟାକଳାପ ଏବଂ ଦେଶର ସମାଜବାଦୀ ବିକାଶରେ ଏହାର ଭୂମିକା ବୃଦ୍ଧି ପାଇଲା । ସମାଜବାଦୀ ଉତ୍ପାଦନର ବିକାଶ କ୍ଷେତ୍ରରେ ବୁଦ୍ଧିଜୀବୀ ସଂପ୍ରଦାୟର ସୃଜନମୂଳକ କ୍ରିୟାକଳାପ ବର୍ଷକୁ ବର୍ଷ ବଢ଼ି ଚାଲିବାରେ ଲାଗିଲା, ଅଭିଜ୍ଞତା ଏବଂ ବିଜ୍ଞାନ ଓ କାରିଗରିର ସାଫଲ୍ୟ ବୃଦ୍ଧି ପାଇଲା । ଏଥି ସାଥେ ସାଥେ ବୁଦ୍ଧିଜୀବୀ ଓ ଦୈହିକ ଶ୍ରମକାରୀମାନଙ୍କ ମଧ୍ୟରେ ସୃଜନମୂଳକ ସହଯୋଗ ମଧ୍ୟ ବଢ଼ି ଚାଲିଥିଲା ।

ସୋଭିଏତ୍ ସମାଜର ସାମାଜିକ, ରାଜନୈତିକ ଓ ଭାବାଦର୍ଶଗତ ଐକ୍ୟ ଆଉରି ଶକ୍ତିଶାଳୀ ହେବାକୁ ଲାଗିଲା ସୋଭିଏତ୍ ସମାଜର ଦୁଇ ବନ୍ଧୁପ୍ରତୀମ ଶ୍ରେଣୀ — ଶ୍ରମିକ ଓ କୃଷକ ଏବଂ ସମାଜବାଦୀ ବୁଦ୍ଧିଜୀବୀମାନଙ୍କର ବିକାଶ ଏବଂ ଆଉରି ନିକଟବର୍ତ୍ତୀ ହେବାର ଭିତ୍ତି ଉପରେ ।

ଯୁଦ୍ଧୋତ୍ତର ବର୍ଷଗୁଡ଼ିକ ଥିଲା ସୋଭିଏତ୍ ସମାଜବାଦୀ ଅଧିଜାତିମାନଙ୍କ ପକ୍ଷରେ ବିକାଶ ଏବଂ ଶକ୍ତିଶାଳୀ ଅର୍ଥନୈତିକ ତଥା ସାଂସ୍କୃତିକ ଉନ୍ମେଷର କାଳ । ଏଥି ସାଥେ

ସାଥେ ଏହିସବୁ ବର୍ଷମାନଙ୍କରେ ସୋଭିଏତ୍ ଅଧିଜାତିମାନଙ୍କର ରାଜନୈତିକ, ଅର୍ଥନୈତିକ ଏବଂ ସାଂସ୍କୃତିକ ଭାବେ ଦ୍ରୁତତାର ସହିତ ପରସ୍ପର ସହିତ ସାନ୍ନିକଟ୍ୟ ଘଟିଥିଲା । ଏକ ଦିଗରେ ଦେଶର ଅଧିଜାତିମାନଙ୍କର ବିକାଶ ଏବଂ ଅନ୍ୟ ଦିଗରେ ସେମାନଙ୍କର ପରସ୍ପରର ନୈକଟ୍ୟ ବିକଶିତ ସମାଜବାଦ ନିର୍ମାଣ କାଳରେ ସୋଭିଏତ୍ ୟୁନିଅନ୍‌ରେ ଜାତିଗତ ସଂପର୍କର ଗଭୀର ଅର୍ଥକୁ ପ୍ରକଟିତ କରିଥିଲା । ଏହିସବୁ ବର୍ଷମାନଙ୍କରେ ଜାତୀୟ ପ୍ରଜାତନ୍ତ୍ରଗୁଡ଼ିକର ଶିଳ୍ପ ବିକାଶ ଲକ୍ଷଣୀୟ ଭାବେ ଦ୍ରୁତ ଗତିରେ ସଂପନ୍ନ ହୋଇଥିଲା । ୧୯୪୦-୧୯୬୫ ମଧ୍ୟରେ ସୋଭିଏତ୍ ୟୁନିଅନ୍‌ର ମୋଟ ଶିଳ୍ପୋତ୍ପାଦନ ପ୍ରାୟ ୮ ଗୁଣ ବୃଦ୍ଧି ପାଇଲା ବେଳେ କିର୍‌ଘିଜିଆରେ ଏହି ସମୟ ମଧ୍ୟରେ ୧୦ ଗୁଣ ବୃଦ୍ଧି ପାଇଥିଲା, ଆର୍ମେନିଆ ଏବଂ କାଜାଖ୍‌ସ୍ତାନରେ ୧୨ ଗୁଣରୁ ଅଧିକ, ମୋଲ୍‌ଦାଭିଆରେ ୧୬ ଗୁଣ, ଲାଟ୍‌ଭିଆରେ ୧୭.୪ ଗୁଣ, ଲିଥୁଆନିଆରେ ୧୮ ଗୁଣ ଏବଂ ଏସ୍ତୋନିଆରେ ୧୮.୪ ଗୁଣ ହୋଇଥିଲା । ସମସ୍ତ ଜାତୀୟ ପ୍ରଜାତନ୍ତ୍ର ଯୁଦ୍ଧୋତ୍ତର ବର୍ଷମାନଙ୍କରେ ଗଢ଼ି ଉଠିଥିଲା ଆଧୁନିକ ଶିଳ୍ପସମୂହ ।

ଅର୍ଥନୈତିକ କ୍ଷେତ୍ରରେ ସୋଭିଏତ୍ ୟୁନିଅନ୍‌ର ଜାତିମାନଙ୍କ ମଧ୍ୟରେ ପ୍ରକୃତ ଅସାମ୍ୟକୁ ଦୂର କରିବାର ଐତିହାସିକ କର୍ତ୍ତବ୍ୟଟି ସାଧିତ ହୋଇଥିଲା ପୂର୍ବେ ପଶ୍ଚାଦ୍‌ପଦ ଥିବା ଅଣରୁଷୀୟ ଅଞ୍ଚଳସମୂହର ବିକାଶ ଦିଗରେ ଅଗ୍ରାଧିକାର ପ୍ରଦାନ କରିବା ଦ୍ୱାରା । ଅଗ୍ରସର ପ୍ରଜାତନ୍ତ୍ରଗୁଡ଼ିକର ସ୍ତରକୁ ଅନଗ୍ରସର ପ୍ରଜାତନ୍ତ୍ରଗୁଡ଼ିକୁ ଉନ୍ନୀତ କରି ସୋଭିଏତ୍ ପ୍ରଜାତନ୍ତ୍ରସମୂହର ଅର୍ଥନୈତିକ ବିକାଶକୁ ସମପର୍ଯ୍ୟାୟକୁ ଆଣିବାଟା ହେଲା ସମାଜବାଦୀ ସମାଜର ବିକାଶର ଅପରିବର୍ତ୍ତନୀୟ ନିୟମର ପରିପ୍ରକାଶ ସ୍ୱରୂପ ।

ଇତିପୂର୍ବରୁ କୁହାଯାଇଛି, ସୋଭିଏତ୍ ୟୁନିଅନ୍‌ରେ ପୋଖତ ସମାଜବାଦ ନିର୍ମାଣ କାଳରେ ସମଗ୍ର ଦେଶରେ ସଂସ୍କୃତିର ବିକାଶ ଘଟିଥିଲା । କିନ୍ତୁ ସାଂସ୍କୃତିକ ବିକାଶର ପ୍ରକ୍ରିୟାଟି ବିଶେଷ ଭାବେ ଦ୍ରୁତ ଥିଲା ସୋଭିଏତ୍ ୟୁନିଅନ୍‌ର ପୂର୍ବାଂଶରେ ଅବସ୍ଥିତ ପ୍ରଜାତନ୍ତ୍ରସମୂହ ଏବଂ ବଲ୍‌ଟିକ୍ ସୋଭିଏତ୍ ପ୍ରଜାତନ୍ତ୍ରଗୁଡ଼ିକରେ । ଶେଷୋକ୍ତ ପ୍ରଜାତନ୍ତ୍ରଗୁଡ଼ିକ ସୋଭିଏତ୍ ୟୁନିଅନ୍ ସହିତ ଯୋଗ ଦେଇଥିଲେ ମହାନ୍ ଦେଶପ୍ରେମୀ ଯୁଦ୍ଧର ପ୍ରାକ୍କାଳରେ । ଏହା ଫଳରେ ଜାତିମାନଙ୍କର ସାଂସ୍କୃତିକ ମାନ ସମାନ ସ୍ତରକୁ ଆସି ପାରିଥିଲା ଏବଂ ଏ କ୍ଷେତ୍ରରେ ପ୍ରକୃତ ଅସାମ୍ୟ ଚିରଦିନ ପାଇଁ ଲୋପ ପାଇଥିଲା ।

ସମାଜବାଦୀ ଜାତିମାନେ ଅର୍ଥନୈତିକ, ସାଂସ୍କୃତିକ ଏବଂ ରାଜନୈତିକ ଭାବେ ବିକାଶ ଲାଭ କରିବା ସାଥେ ସାଥେ ସେମାନେ କ୍ରମଶଃ ଅଧିକରୁ ଅଧିକ ପରସ୍ପରର ନିକଟବର୍ତ୍ତୀ ହୋଇଥିଲେ ଏବଂ ସେମାନଙ୍କ ମଧ୍ୟରେ ଯୋଗସୂତ୍ର ସଂପ୍ରସାରିତ ହୋଇଥିଲା । ପ୍ରକୃତ ସମାନତା, ସହଯୋଗ ଏବଂ ପାରସ୍ପରିକ ସହଯୋଗ ତଥା ସମାଜବାଦୀ ଆନ୍ତର୍ଜାତିକତା ନୀତିର ଭିତ୍ତିରେ ସେସବୁ ଜାତିମାନଙ୍କ ମଧ୍ୟରେ ବୈଷୟିକ, ବୌଦ୍ଧିକ ସଂପଦର ବିନିମୟ ତୀବ୍ର ହୋଇଥିଲା । ଏହି ପ୍ରକ୍ରିୟା ଦ୍ୱାରା ଜାତିମାନଙ୍କ ମଧ୍ୟରେ ଥିବା

ଅର୍ଥନୈତିକ ଓ ସାଂସ୍କୃତିକ ପାର୍ଥକ୍ୟସମୂହ କ୍ରମଶଃ ଲୋପ ପାଇ ସମାନ ହେବାକୁ ଲାଗିଲା ଏବଂ ସୋଭିଏତ୍ ୟୁନିଅନ୍‌ର ସମସ୍ତ ବନ୍ଧୁପ୍ରତୀମ ଜାତିମାନଙ୍କର ଅର୍ଥନୈତିକ ତଥା ସାଂସ୍କୃତିକ ବିକାଶ ଅତ୍ତ ବହୁତ ସମାନ ସ୍ତରକୁ ଆସିଗଲା ।

ସମାଜବାଦୀ ଅର୍ଥନୀତିର ଚରିତ୍ର ମଧ୍ୟରେ ନିହିତ ଥାଏ ସମାଜବାଦୀ ଜାତିମାନଙ୍କର ଅର୍ଥନୀତିକୁ ଏକତ୍ର କରିବା, ଯିଏକି ଯୋଜନାବଦ୍ଧ ଭାବେ ରାଷ୍ଟ୍ରର ନେତୃତ୍ୱାଧୀନରେ ବିକାଶ ଲାଭ କରେ ଏବଂ ବାର୍ଷିକ, ପଞ୍ଚବାର୍ଷିକ ବା ଦୀର୍ଘକାଳୀନ ଅର୍ଥନୈତିକ ଯୋଜନା ଅନୁଯାୟୀ ବିକାଶ ଲାଭ କରିଥାଏ । ସୋଭିଏତ୍ ଜାତୀୟ ଅର୍ଥନୈତିକ ଯୋଜନାଗୁଡ଼ିକ ପ୍ରଜାତନ୍ତ୍ରମାନଙ୍କ ମଧ୍ୟରେ ଶ୍ରମର ଅତୀବ ସୁଦକ୍ଷ ବିଭାଜନ କରିଥିଲା, ସେମାନଙ୍କ ମଧ୍ୟରେ ସେସବୁର ବିଶେଷୀକରଣ ଏବଂ ଅର୍ଥନୈତିକ ସହଯୋଗ ଏବଂ ନିର୍ଦ୍ଦିଷ୍ଟ ଅର୍ଥନୈତିକ ସଂପର୍କସମୂହ ସ୍ଥାପନ କରିଥାଏ ।

ଯୁଦ୍ଧୋତ୍ତର ବର୍ଷମାନଙ୍କରେ ପ୍ରଜାତନ୍ତ୍ରଗୁଡ଼ିକ ମଧ୍ୟରେ ଅର୍ଥନୈତିକ ସଂପର୍କସମୂହ ଗଭୀର ଏବଂ ସଂପ୍ରସାରିତ ହୋଇଥିଲା ସମସ୍ତ ପ୍ରଜାତନ୍ତ୍ରର ଶିଳ୍ପ କ୍ଷମତାର ଦ୍ରୁତ ଅଭିବୃଦ୍ଧି ଏବଂ ସେମାନଙ୍କର ବିଶେଷୀକରଣ ଓ ସହଯୋଗର ଯୋଜନାନୁଯାୟୀ ବିକାଶ ଫଳରେ। ପ୍ରତ୍ୟେକଟି ପ୍ରଜାତନ୍ତ୍ର ଅନ୍ୟମାନଙ୍କ ସହିତ ସଂଯୁକ୍ତ ହୋଇଥିଲା ହଜାର ଯୋଗସୂତ୍ର ଦ୍ୱାରା : ଅନ୍ୟାନ୍ୟ ପ୍ରଜାତନ୍ତ୍ରକୁ ଏହା ତା'ର ବହୁ ଶିଳ୍ପ ଆଉ କୃଷିଜାତ ଦ୍ରବ୍ୟ ସରବରାହ କରୁଥିଲା ଏବଂ ଏହାର ପରିବର୍ତ୍ତେ ସେମାନଙ୍କ ଠାରୁ ଅନେକ କିଛି ଲାଭ ବି କରୁଥିଲା । ଦୃଷ୍ଟାନ୍ତ ସ୍ୱରୂପ, ୧୯୫୦ ଦଶକରେ ଆର୍ମେନିଆ ଅନ୍ୟାନ୍ୟ ପ୍ରଜାତନ୍ତ୍ରମାନଙ୍କୁ ଯୋଗାଇଥିଲା ଭ୍ରାମ୍ୟମାଣ ବିଦ୍ୟୁତ୍ ଉତ୍ପାଦନକାରୀ କେନ୍ଦ୍ର, ଟ୍ରାନ୍ସଫର୍ମର, ବିଦ୍ୟୁତ୍ ମୋଟର, ପରିମାପକ ଯନ୍ତ୍ର, ବିଦ୍ୟୁତ୍ କେବଲ, ଧାତୁକାଟିବା ଲେଦ୍ ମେସିନ୍, ଗ୍ରାଇଣ୍ଡିଂ ମେସିନ୍, ଶୋଧିତ ଏବଂ ଅଶୋଧିତ ତମ୍ବା, କୃତ୍ରିମ ରବର, ମୋଟର ଗାଡ଼ିର ଟାୟାର ଆଦି । ଏସବୁର ପରିବର୍ତ୍ତେ ଆର୍ମେନିଆ ନେଇଥିଲା କୃଷି ଯନ୍ତ୍ରପାତି, ଯାନବାହନ, କୋଇଲା, ଲୌହ ଇସ୍ପାତ, ତୈଳଜାତ ଦ୍ରବ୍ୟ, ରେଡିଓ, ବିଦ୍ୟୁତ୍ ଯନ୍ତ୍ରପାତି ଅନ୍ୟାନ୍ୟ ସୋଭିଏତ୍ ପ୍ରଜାତନ୍ତ୍ରସମୂହରୁ ।

ପ୍ରଜାତନ୍ତ୍ରଗୁଡ଼ିକ ମଧ୍ୟରେ ଦୃଢ଼ତର ଅର୍ଥନୈତିକ ସଂପର୍କରାଜି କେବଳ ଉତ୍ପନ୍ନ ସମୂହର ଆଦାନପ୍ରଦାନର ଅଭିବୃଦ୍ଧି ମଧ୍ୟରେ କେବଳ ପ୍ରତିଫଳିତ ହୋଇ ନଥିଲା, କାରିଗରି ଓ ବୈଜ୍ଞାନିକ ଜ୍ଞାନ କ୍ଷେତ୍ରରେ ପାରସ୍ପରିକ ସମୃଦ୍ଧି, ବନ୍ଧୁପ୍ରତୀମ ସହାୟତାର ବିକାଶ ମଧ୍ୟରେ, କର୍ମୀବାହିନୀର ଆଦାନପ୍ରଦାନ ଏବଂ ଅନ୍ୟାନ୍ୟ ବହୁବିଧ ସହଯୋଗିତା ମଧ୍ୟରେ ପ୍ରକାଶ ପାଇଥିଲା ।

ସୋଭିଏତ୍ ୟୁନିଅନ୍‌ର ଜାତିମାନଙ୍କର ମିଳିତ ଉଦ୍ୟମରେ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କେନ୍ଦ୍ର ଓ ନୂତନ ଶିଳ୍ପ କେନ୍ଦ୍ରମାନ ନିର୍ମିତ ହେଲା, କୁଆଁରୀ ଭୂଇଁକୁ ଆବାଦ କରାଗଲା ଏବଂ କେନାଲସବୁ ଖୋଳାଗଲା । "ଜାତିମାନଙ୍କ ମଧ୍ୟରେ ମୈତ୍ରୀର" ବିଦ୍ୟୁତ୍ ଶକ୍ତି

ଉତ୍ପାଦନ କେନ୍ଦ୍ରଟି ନିର୍ମିତ ହୋଇଥିଲା ଲାଟ୍‌ଭିଆ, ଲିଥୁଆନିଆ ଏବଂ ବେଲୋରୁଷିଆର ଶ୍ରମଜୀବୀ ଜନସାଧାରଣଙ୍କ ମିଳିତ ଉଦ୍ୟମ ବଳରେ । ଆମୁ-ଦରିଆ ଏବଂ ସିର୍-ଦରିଆ ନଦୀ ଦୁଇଟିର ଜଳରାଶିର ଉପଯୋଗ ପାଇଁ ଚାରିଟି ମଧ୍ୟ ଏସୀୟ ପ୍ରଜାତନ୍ତ୍ର ମିଳିତ ଭାବେ ଏକ କେନାଲ ନିର୍ମାଣ ଆରମ୍ଭ କରିଥିଲେ । ତିନୋଟି ଟ୍ରାନ୍‌ସକକେସୀୟ ପ୍ରଜାତନ୍ତ୍ର –ଆର୍ମେନିଆ, ଆଜର୍‌ବୈଜାନ୍ ଏବଂ ଜର୍ଜିଆର ମିଳିତ ଉଦ୍ୟମରେ ଆଜର୍‌ବୈଜାନ୍‌ର ରାଜଧାନୀ ବାକୁ ନିକଟରୁ ଏକ ଗ୍ୟାସ ପାଇପ୍ ଲାଇନ୍ ଆର୍ମେନିଆ ଏବଂ ଜର୍ଜିଆକୁ ନିର୍ମିତ ହୋଇଥିଲା । ଟ୍ରାନ୍‌ସକକେସିଆର ଲୋକେ ଏହି ପାଇପ୍ ଲାଇନ୍‌କୁ ସଠିକ ଭାବେ ମୈତ୍ରୀ ରାଜ ପଥର ପାଇପ୍ ଲାଇନ୍ ବୋଲି ନାମିତ କରିଥିଲେ ।

ଆଉ ଏକ ଉଦାହରଣ ଦେଖନ୍ତୁ । ଟ୍ରାନ୍‌ସକକେସସ୍ ପାଇଁ ଗୃହୀତ ଲୌହ ଏବଂ ଇସ୍‌ପାତ ଶିଳ୍ପ ବିକାଶର ସାଧାରଣ ଯୋଜନା ଅନୁଯାୟୀ ଏକ ସାଙ୍ଗରେ ଆଜରବୈଜାନର ଦେଶ୍‌କେସାନ ଖଣି କାର୍ଯ୍ୟ, ଜର୍ଜିଆର ରାଜଧାନୀ ତ୍‌ବିଲିସିର ଅନତି ଦୂରରେ ଅବସ୍ଥିତ ରୁଷ୍ଟାଭିରେ ଲୌହ ଓ ଇସ୍‌ପାତ କାରଖାନା, ଆଜରବୈଜାନର ସୁମ୍‌ଗାଇତ୍ ସହରରେ ଏକ ଟିଉବ୍-ରୋଲିଂ କାରଖାନାର ନିର୍ମାଣ ଆରମ୍ଭ ହୋଇଥିଲା । ଦାଶ୍‌କେସାନ୍‌ର ଲୁହା ପଥର ତରଳା ହୋଇଥିଲା ରୁଷ୍ଟାଭିର ବ୍ଲାଷ୍ଟ ଫର୍ଣ୍ଣେସ୍ ଓପନ୍-ହାର୍ଥ ଏବଂ ଜର୍ଜିଆର ଇସ୍‌ପାତ ପାଇପ୍‌ରେ ପରିଣତ ହୋଇଥିଲା ଆଜରବୈଜାନ କାରଖାନାରେ । ଏହିସବୁ ପାଇପ୍ ଯୋଗାଇ ଦିଆଯାଇଥିଲା ବାକୁର ତୈଳକ୍ଷେତ୍ର ସମେତ ଅନ୍ୟାନ୍ୟ ତୈଳ ଉତ୍ପାଦନକାରୀ ଅଞ୍ଚଳକୁ । ଜର୍ଜିଆ, ଆଜରବୈଜାନ ଭଳି ସୋଭିଏତ୍ ୟୁନିଅନ୍‌ର ସମସ୍ତ ପ୍ରଜାତନ୍ତ୍ରର ଦରକାର ଥିଲା ଗ୍ୟାସ ଏବଂ ତୈଳ ।

ସୋଭିଏତ୍ ୟୁନିଅନ୍‌ର ଜାତିମାନଙ୍କ ମଧ୍ୟରେ ବୌଦ୍ଧିକ ସାଦୃଶ୍ୟ ସବୁ ସମୟରେ ଶକ୍ତିଶାଳୀ ହୋଇଥିଲା ଏବଂ ସେମାନଙ୍କ ଜାତୀୟ ସଂସ୍କୃତି କ୍ରମଶଃ ପରସ୍ପରର ନିକଟବର୍ତ୍ତୀ ହେଉଥିଲା । ପ୍ରତ୍ୟେକ ଜାତି ସେମାନଙ୍କ ସମାଜବାଦୀ ସଂସ୍କୃତିକୁ ବିକଶିତ ଓ ପୂର୍ଣ୍ଣତର କରିବା ସାଥେ ସାଥେ ସୋଭିଏତ୍ ୟୁନିଅନ୍ ଅନ୍ୟାନ୍ୟ ଜାତିମାନଙ୍କ ସଂସ୍କୃତିର ସର୍ବୋତ୍କୃଷ୍ଟ ଉପାଦାନଗୁଡ଼ିକୁ ଗ୍ରହଣ କରି ନେଉଥିଲେ । ବିଭିନ୍ନ ଜାତିମାନଙ୍କ ମଧ୍ୟରେ ସାଂସ୍କୃତିକ ସୁକୃତିରାଜିର ପାରମ୍ପାରିକ ନିୟମିତ ଆଦାନପ୍ରଦାନ ଏକ ବିରାଟ ଭୂମିକା ଏଠାରେ ପାଳନ କରିଥିଲା । ମସ୍କୋ ଏବଂ ଅନ୍ୟାନ୍ୟ ପ୍ରଜାତନ୍ତ୍ରରେ ଭ୍ରାତୃପ୍ରତୀମ ଜାତିମାନଙ୍କର ସାହିତ୍ୟ ଓ କଳାର ସାପ୍ତାହିକ ଏବଂ ଦଶଦିନିଆ ଉତ୍ସବସମୂହ ସମେତ ଚଳଚିତ୍ର ଉତ୍ସବ, ସଂଗୀତ ଶିଳ୍ପୀମାନଙ୍କ ଦ୍ୱାରା ଅନୁଷ୍ଠାନ ଓ ଚିତ୍ରକଳାର ପ୍ରଦର୍ଶନୀମାନ ଆୟୋଜନ କରାଯାଇଥିଲା । ଗୋଟିଏ ଜାତିର ସର୍ବୋତ୍କୃଷ୍ଟ ସାହିତ୍ୟକୃତିକୁ ଅନ୍ୟ ଜାତିମାନଙ୍କ ଭାଷାସମୂହରେ ବ୍ୟାପକ ଭାବେ ଅନୁବାଦ କରାଯାଇଥିଲା । ସମାଜବାଦୀ ଆନ୍ତର୍ଜାତିକତାବାଦ ଓ ସୋଭିଏତ୍ ଦେଶପ୍ରେମକୁ ଭିତ୍ତି କରି ଜାତୀୟ ସଂସ୍କୃତିସମୂହର ସୁଦୃଢ଼ ଗୋଷ୍ଠୀ ଗଠନ ଏବଂ ପାରସ୍ପରିକ ବିକାଶ ପ୍ରତି ଏସବୁ ସହାୟକ ହୋଇଥିଲା ।

ସମାଜବାଦୀ ଜାତିମାନଙ୍କ ମଧ୍ୟରେ କ୍ରମବର୍ଦ୍ଧମାନ ସାଂସ୍କୃତିକ ସହଯୋଗ ଏବଂ ପାରସ୍ପରିକ ପ୍ରଭାବ ଏବଂ ସେମାନଙ୍କ ସଂସ୍କୃତିର ସମୃଦ୍ଧି ସାଧନ ଏହିସବୁ ଜାତିମାନଙ୍କର ବୌଦ୍ଧିକ ଜୀବନରେ ବହୁବିଧ ଅଭିନ୍ନ ବୈଶିଷ୍ଟ୍ୟ ସୃଷ୍ଟି କରିବା ପ୍ରତି ଅବଦାନ ରଖିଥିଲା । ସମାଜବାଦୀ ବିକାଶର ପ୍ରକ୍ରିୟା ମଧ୍ୟ ଦେଇ ସମସ୍ତ ଜାତିଙ୍କ ମଧ୍ୟରେ ଆନ୍ତର୍ଜାତିକତାବାଦୀ ଲକ୍ଷଣ ଏବଂ ପୁରାତନ ସାମନ୍ତବାଦୀ ଜୀବନ ଧାରାର ବିଶେଷ ବୈଶିଷ୍ଟ୍ୟସମୂହର ଅବଶେଷାଂଶ କ୍ରମଶଃ ଲୋପ ପାଇବାକୁ ଲାଗିଲା ଏବଂ ନୂତନ, ସମାଜବାଦୀ ଛୁଟି ଦିନ ଓ ପ୍ରଥା ସୃଷ୍ଟି ହେଲା ।

ଜାତିମାନଙ୍କର ମିଳନ ମଧ୍ୟ ରାଜନୈତିକ କର୍ମନୀତି ଦୃଷ୍ଟିରୁ ଘଟିଲା । ସର୍ବୋପରି ସେମାନଙ୍କ ମଧ୍ୟରେ ପରସ୍ପର ପ୍ରତି ବୃଦ୍ଧି ପାଇଲା ଆସ୍ଥା ଓ ବିଶ୍ୱାସ । ଅଙ୍ଗ ପ୍ରଜାତନ୍ତ୍ରଗୁଡ଼ିକ ମଧ୍ୟରେ ରାଷ୍ଟ୍ରୀୟ ସୀମାସବୁ କେବଳ ପ୍ରତୀକରେ ପରିଣତ ହେଲା । ବୁର୍ଜୁଆ ବ୍ୟବସ୍ଥା ମଧ୍ୟରେ ସଂଘର୍ଷ ଓ ଯୁଦ୍ଧର ଉତ୍ସ ହେଉଛି ଯେଉଁ ସୀମା ସଂକ୍ରାନ୍ତ ସମସ୍ୟା ସୋଭିଏତ୍ ଜାତିମାନଙ୍କ ମଧ୍ୟରେ ମୈତ୍ରୀ, ପାରସ୍ପରିକ ବୁଝାମଣା ଓ ବାସ୍ତବ ସହଯୋଗ ମଧ୍ୟ ଦେଇ ସଫଳତାର ସହିତ ସମାହିତ ହେଲା । ଏହି ଭାବେ ୧୯୫୪ ମସିହାରେ ରୁଷ୍ ଫେଡେରେସନ ତା'ର ଅଗ୍ରପଦକ୍ଷେପ ନେଇ ୟୁକ୍ରେନ୍‌କୁ ଦେଲା କ୍ରାଇମିଆ । ଆଉ ଏକ ଦୃଷ୍ଟାନ୍ତ ହେଲା କାଜାଖସ୍ତାନର ବୋସ୍ତାନ୍ଦିକ୍ ଜିଲ୍ଲା । ୧୯୫୬ ମସିହା ଜାନୁଆରୀ ମାସରେ କାଜାଖସ୍ତାନର ସର୍ବୋଚ୍ଚ ସୋଭିଏତ୍‌ର ପ୍ରସ୍ତାବ ଅନୁଯାୟୀ ଅର୍ଥନୈତିକ କାରଣରୁ ଉଜ୍‌ବେକିସ୍ତାନକୁ ଅର୍ପଣ କରାଗଲା । କାଜାଖ୍ ପ୍ରଜାତନ୍ତ୍ର ଏକ ନିୟୁତ ହେକ୍ଟରର କୁଆଁରୀ ଷ୍ଟେପ୍ ଭୂଇଁ ଛାଡ଼ି ଦେଲା ଉଜ୍‌ବେକିସ୍ତାନକୁ । ଏହାର ବଦଳରେ କୁଆଁରୀ ଷ୍ଟେପ୍‌ର କେତେକ ଅଞ୍ଚଳ ଛାଡ଼ି ଦେଲା ତାଜିକିସ୍ତାନକୁ । ଏହିସବୁ ପରିବର୍ତ୍ତନ ଫଳରେ ଏହି ତିନୋଟି ଭ୍ରାତୃପ୍ରତୀମ ପ୍ରଜାତନ୍ତ୍ରରେ କୃଷି ଆଉ ଜଳସେଚନକୁ ଆହୁରି ଭଲ ଭାବେ ସଂଗଠିତ କରାଯାଇ ପାରିଲା ।

ସମାଜବାଦୀ ଜାତିମାନଙ୍କ ମଧ୍ୟରେ କ୍ରମବର୍ଦ୍ଧମାନ ଐକ୍ୟ ଥିଲା ବହୁଜାତିକ ସମାଜବାଦୀ ରାଷ୍ଟ୍ର ପକ୍ଷରେ କ୍ରମବର୍ଦ୍ଧମାନ ଏକ ଅଫୁରନ୍ତ ଶକ୍ତି ଭଳି । ଏହି ବହୁଜାତିକ ରାଷ୍ଟ୍ର ମଧ୍ୟରେ ଅଙ୍ଗ ପ୍ରଜାତନ୍ତ୍ର ତଥା ସ୍ୱାୟତ୍ତଶାସିତ ପ୍ରଜାତନ୍ତ୍ରଗୁଡ଼ିକର ସ୍ୱାର୍ଥ ସହିତ ସମଗ୍ର ରାଷ୍ଟ୍ରର ସ୍ୱାର୍ଥକୁ ସୁସଙ୍ଗତ ଭାବେ ସମନ୍ୱିତ କରାଯାଉଥିଲା । ସମାଜବାଦୀ ଜାତିମାନଙ୍କ ମଧ୍ୟରେ ନିୟମିତ ଦୃଢ଼ତର ଐକ୍ୟ ପାଇଁ କମ୍ୟୁନିଷ୍ଟ ପାର୍ଟି ନିରନ୍ତର ଧ୍ୟାନ ଦେଇ ଚାଲିଥିଲା ଏବଂ ଜାତୀୟ ଅନୈକ୍ୟ ଓ ଜାତୀୟ ସଂକୀର୍ଣ୍ଣତାର ଯେକୌଣସି ପରିପ୍ରକାଶ ବିରୁଦ୍ଧରେ ମନୋଭାବ ଗର୍ଢ଼ ତୋଳିବା ପାଇଁ, ଜାତୀୟତାବାଦ ଓ ଉଗ୍ରଜାତୀୟତାବାଦ ବିରୁଦ୍ଧରେ ଏବଂ କମ୍ୟୁନିଜମ୍‌ର ବିକାଶ ପଥରେ ପ୍ରତିବନ୍ଧକ ସୃଷ୍ଟିକାରୀ ପ୍ରଥା ଓ ରୀତି ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ସୋଭିଏତ୍ ୟୁନିଅନ୍‌ର ସମସ୍ତ ଜନସାଧାରଣଙ୍କୁ ଶିକ୍ଷିତ କରୁଥିଲା ।

ସୋଭିଏତ୍ ୟୁନିଅନ୍‌ରେ ଶୋଷିତ ଶ୍ରେଣୀମାନଙ୍କର ବିଲୋପ ସାଧନ, ସର୍ବହରାକୁ ସମାଜବାଦୀ ଶ୍ରମିକ ଶ୍ରେଣୀରେ, ପୃଥକ୍ ପୃଥକ୍ କୃଷକମାନଙ୍କୁ ନେଇ ଗଠିତ ଗ୍ରାଷୀ ସଂପ୍ରଦାୟକୁ ଏକ ସମାଜବାଦୀ ଶ୍ରେଣୀରେ, କୋଠଗ୍ରାଷୀମାନଙ୍କରେ ପରିବର୍ତ୍ତନ, ସମାଜବାଦୀ ବୁଦ୍ଧିଜୀବୀ ସଂପ୍ରଦାୟର ଅଭ୍ୟୁଦୟ, ବୁର୍ଜୁଆ ଜାତିମାନଙ୍କୁ ସମାଜବାଦୀ ଜାତିମାନଙ୍କରେ ପରିବର୍ତ୍ତନ, ଶ୍ରମିକ, କୃଷକ ଏବଂ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଦୃଢ଼ ମୈତ୍ରୀ ସ୍ଥାପନ, ଜାତିମାନଙ୍କୁ ପରସ୍ପରର ନିକଟବର୍ତ୍ତୀକରଣ ଏବଂ ସେମାନଙ୍କ ମଧ୍ୟରେ ମୈତ୍ରୀର ଦୃଢ଼ୀକରଣ – ଏହିସବୁ ବିକାଶ ଫଳରେ ସୋଭିଏତ୍ ୟୁନିଅନ୍‌ରେ ଜନସାଧାରଣଙ୍କର ଏକ ନୂତନ ଓ ଆନ୍ତର୍ଜାତିକ ଐତିହାସିକ ଜନଗୋଷ୍ଠୀ – ସୋଭିଏତ୍ ଲୋକ ଗୋଷ୍ଠୀ ଗଢ଼ି ଉଠିଲା । ଏହି ଜନଗୋଷ୍ଠୀଟି ଚିହ୍ନିତ ହେଲା ତା'ର ଅଭିନ୍ନ ଭୂଖଣ୍ଡ, ଅର୍ଥନୈତିକ ବ୍ୟବସ୍ଥା, ଅର୍ଥନୈତିକ ଜୀବନ, ରାଜନୈତିକ ସଂଗଠନ, ଶ୍ରେଣୀଗତ ଗଢ଼ଣ, ଭାବାଦର୍ଶ, ସଂସ୍କୃତି ଏବଂ ବୈପ୍ଳବିକ ଶ୍ରମ ଏବଂ ସାମରିକ ପରମ୍ପରା ଦ୍ୱାରା । ସୋଭିଏତ୍ ଲୋକଙ୍କର ସାଧାରଣ ଭାଷା ହେଲା ରୁଷ୍ ଭାଷା, ଯାହା ଜରିଆରେ ସୋଭିଏତ୍ ୟୁନିଅନ୍‌ର ସମସ୍ତ ଜାତି ଓ ନରଗୋଷ୍ଠୀଗୁଡ଼ିକ ପରସ୍ପର ସହିତ ଯୋଗାଯୋଗ ରଖନ୍ତି । ଏହି ଐତିହାସିକ ଗୋଷ୍ଠୀ ମଧ୍ୟରେ କୌଣସି ଆଭ୍ୟନ୍ତରୀଣ ବୈରିତା, ସଂଘର୍ଷ ଓ ଜାତିଗତ ଶତ୍ରୁତା ନାହିଁ । ଏହା ପ୍ରତିଷ୍ଠିତ ହୋଇଛି ବିଭିନ୍ନ ଶ୍ରେଣୀ, ସାମାଜିକ ଗୋଷ୍ଠୀ, ଜାତି ଓ ଅଧିଜାତିମାନଙ୍କର ଅଟଳ ଐକ୍ୟର ଭିତ୍ତି ଉପରେ । ସୋଭିଏତ୍ ୟୁନିଅନ୍‌ର କମ୍ୟୁନିଷ୍ଟ ପାର୍ଟି ହେଲା ଯେ ଗୋଷ୍ଠୀର ଏକମାତ୍ର ଗ୍ରାଳିକା ଶକ୍ତି ।

ସୋଭିଏତ୍ ସମାଜର ରାଜନୈତିକ ଅବସ୍ଥାରେ ଅତୀବ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନସମୂହ ମଧ୍ୟ ଘଟିଥିଲା : ସର୍ବହରାର ଏକନାୟକତ୍ୱର ଏକ ରାଷ୍ଟ୍ର ହିସାବରେ ସୋଭିଏତ୍ ୟୁନିଅନ୍‌ର ଅଭ୍ୟୁଦୟ ଘଟି ଏହା କ୍ରମଶଃ ବିକଶିତ ହେବାକୁ ଲାଗିଲା ସମସ୍ତ ଜନସାଧାରଣଙ୍କର ଏକ ରାଷ୍ଟ୍ର ରୂପେ ଏବଂ ଏଥି ସହିତ ଶ୍ରମିକ ଶ୍ରେଣୀର ପାର୍ଟି – କମ୍ୟୁନିଷ୍ଟ ପାର୍ଟି – ସମଗ୍ର ଜନସାଧାରଣଙ୍କର ଅଗ୍ରଣୀ ପାର୍ଟିରେ ପରିଣତ ହେଲା । ଶ୍ରମିକ ଶ୍ରେଣୀର ଭାବାଦର୍ଶ – ମାର୍କସ୍‌ବାଦ-ଲେନିନ୍‌ବାଦ ଏବଂ ଶ୍ରମିକ ଶ୍ରେଣୀର ଆଦର୍ଶସମୂହ ସମଗ୍ର ସୋଭିଏତ୍ ଜନସାଧାରଣଙ୍କର ଭାବାଦର୍ଶ ଓ ଆଦର୍ଶରେ ପରିଣତ ହେଲା ।

ସମାଜବାଦୀ ଜୀବନଧାରା ତା'ର ଚୂଡ଼ାନ୍ତ ରୂପ ପରିଗ୍ରହ କରିଥିଲା ଏକ ପରିପକ୍ୱ ସମାଜବାଦୀ ସମାଜ ଗଠିତ ହେଲା ପରେ, ଏଥିରେ ନିମ୍ନଲିଖିତ ଲକ୍ଷଣସମୂହ ପ୍ରକାଶ ପାଇଥିଲା : ନିଜ ପାଇଁ, ସମାଜ ପାଇଁ କାର୍ଯ୍ୟ, ଶୋଷଣମୁକ୍ତ ଶ୍ରମ ଏବଂ ସମାଜର ସମସ୍ତ ସକ୍ଷମ ଲୋକଙ୍କ ପାଇଁ ବାଧ୍ୟତାମୂଳକ ଶ୍ରମ, ପ୍ରତ୍ୟେକ ଲୋକର କାର୍ଯ୍ୟ କରିବାର ଗ୍ୟାରେଣ୍ଟି ଦିଆ ଅଧିକାର (ପ୍ରତ୍ୟେକ ଲୋକ ତା'ର ସାଧ୍ୟ ମୁତାବକ ସମାଜକୁ ଦିଏ

ଏବଂ ସମାଜ ପ୍ରତ୍ୟେକଙ୍କୁ ତା'ର କାର୍ଯ୍ୟ ମୁତାବକ ଦିଏ) ; ଯୌଥତା ଓ ସାଥିସୁଲଭ ତା'ର ପରିବେଶ ; ଦେଶର ସାମାଜିକ ଓ ରାଜନୈତିକ ଜୀବନରେ ପରିଗ୍ଳନା ଓ ରାଷ୍ଟ୍ର ଶାସନରେ ସ୍ୱେଚ୍ଛାକୃତ ଭାବେ ଏବଂ ସକ୍ରିୟ ଭାବେ ଅଂଶଗ୍ରହଣ କରିବା ପାଇଁ ସୀମାହୀନ ସୁବିଧାରାଜି ଉତ୍ପାଦନ ; ଅକୃତ୍ରିମ ଏବଂ ଗଭୀର ଗଣତନ୍ତ୍ର ; ସମାଜ ନିକଟରେ ପ୍ରତ୍ୟେକର ଉଚ୍ଚ ଆତ୍ମଶୃଙ୍ଖଳାବୋଧ ଏବଂ ଦାୟିତ୍ୱବୋଧ ; ବ୍ୟକ୍ତି ଓ ସମାଜର ସ୍ୱାର୍ଥ ମଧ୍ୟରେ ଐକ୍ୟ, ବୈଷୟିକ ତଥା ସାଂସ୍କୃତିକ ଜୀବନ ମାନରେ ନିରବଚ୍ଛିନ୍ନ ଅଗ୍ରଗତି ; ଜନସାଧାରଣଙ୍କର ମାର୍କସ୍‌ବାଦୀ-ଲେନିନ୍‌ବାଦୀ ବିଶ୍ୱାସ, ଭବିଷ୍ୟତ ପାଇଁ ସେମାନଙ୍କର ଦୃଢ଼ ନିରାପତ୍ତାବୋଧ ; ପ୍ରକୃତ ମାନବତା, ଶ୍ରେଣୀଗତ, ଜାତିଗତ, ବର୍ଣ୍ଣଗତ ଏବଂ ଅନ୍ୟ କୌଣସି ବୈରିତା ଓ ଅସାମ୍ୟର ଅନୁପସ୍ଥିତି ; ସାମାଜିକ ସମାନତା, ଜାତି ଜାତି ମଧ୍ୟରେ ସମାନତା, ଜାତିମାନଙ୍କ ମଧ୍ୟରେ ମୈତ୍ରୀ ଓ ଭ୍ରାତୃତ୍ୱ, ସର୍ବହରା ଆନ୍ତର୍ଜାତିକତାବାଦ, ସମାଜବାଦୀ ଦେଶପ୍ରେମ, ଆଦି ।

ବୈଷୟିକ ଏବଂ କାରିଗରୀ ଭିତ୍ତି, ସାମାଜିକ ଗଢ଼ଣ, ରାଜନୈତିକ ବ୍ୟବସ୍ଥା ଏବଂ ସଂସ୍କୃତି କ୍ଷେତ୍ର ତଥା ଲୋକଙ୍କ ଜୀବନଧାରଣର ମାନରେ ଏହିସବୁ ମୌଳିକ ପରିବର୍ତ୍ତନରୁ ଜଣାଯାଏ ଯେ, ସୋଭିଏତ୍ ୟୁନିଅନ୍‌ରେ ଏକ ବିକଶିତ ସମାଜବାଦୀ ସମାଜ ନିର୍ମିତ ହେଉଛି ; ଏବଂ କମ୍ୟୁନିଜମ୍‌ର ଉଚ୍ଚତର ପର୍ଯ୍ୟାୟ ନିର୍ମାଣ ପାଇଁ ଆବଶ୍ୟକୀୟ ସର୍ତ୍ତରାଜି ସୃଷ୍ଟି ହୋଇଛି, ଯେଉଁଥିରେ "ପ୍ରତ୍ୟେକ ତା'ର ସାମର୍ଥ୍ୟ ଅନୁଯାୟୀ ଦେବ ଓ ଆବଶ୍ୟକତା ଅନୁଯାୟୀ ପାଇବ !" ନୀତିଟି କାର୍ଯ୍ୟକାରୀ ହେବ ।

ସୋଭିଏତ୍ ୟୁନିଅନ୍‌ର ଆନ୍ତର୍ଜାତିକ ଅବସ୍ଥାନରେ ମଧ୍ୟ ବଡ଼ ପରିବର୍ତ୍ତନ ଘଟିଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ସୋଭିଏତ୍ ୟୁନିଅନ୍ ଥିଲା ପୃଥିବୀରେ ଏକମାତ୍ର ସମାଜବାଦୀ ଦେଶ ଏବଂ ଏହାର ଚତୁର୍ପାର୍ଶ୍ୱରେ ଶତ୍ରୁଭାବାପନ୍ନ ପୁଞ୍ଜିବାଦୀ ଦେଶମାନେ ଘେରି ରହିଥିଲେ । ସମରବାଦୀ ସାମ୍ରାଜ୍ୟବାଦୀ ଆକ୍ରମଣର ଗୁରୁତର ଭୟ ଥିଲା ଏହା ଉପରେ । ତେଣୁ କରି ସୋଭିଏତ୍ ୟୁନିଅନ୍‌ରେ ସମାଜବାଦର ବିଜୟକୁ ଚୂଡ଼ାନ୍ତ ବୋଲି ବିଗ୍ଚର କରାଯାଉ ନଥିଲା ।

ଯୁଦ୍ଧୋତ୍ତର ବର୍ଷମାନଙ୍କରେ ଏହି ଅବସ୍ଥାରେ ପରିବର୍ତ୍ତନ ଘଟିଥିଲା । ଅକ୍ଟୋବର ବିପ୍ଳବ ଓ ସୋଭିଏତ୍ ୟୁନିଅନ୍‌ର ସମାଜବାଦର ବିଜୟର ପ୍ରଭାବରେ ଏବଂ ନାଜି ଜର୍ମାନୀ ଓ ତା'ର ସହଯୋଗୀ ଦେଶମାନଙ୍କ ବିରୁଦ୍ଧରେ ସୋଭିଏତ୍ ୟୁନିଅନ୍‌ର ଐତିହାସିକ ବିଜୟ ଦ୍ୱାରା ସୃଷ୍ଟ ଅନୁକୂଳ ଅବସ୍ଥାରାଜି ଫଳରେ କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱରେ ଜନସାଧାରଣ ଆଲ୍‌ବେନିଆ, ବୁଲ୍‌ଗେରିଆ, ଚେକୋସ୍ଲୋଭାକିଆ, ହଙ୍ଗେରୀ, ପୋଲାଣ୍ଡ, ରୁମାନିଆ ଏବଂ ଯୁଗୋସ୍ଲାଭିଆରେ ପ୍ରତିକ୍ରିୟାଶୀଳ ଶାସନକୁ

ଉତ୍‌ଖାତ କରି ଗଣତାନ୍ତ୍ରିକ ସରକାରମାନ ପ୍ରତିଷ୍ଠା କଲେ ଏବଂ ସମାଜବାଦୀ ବିକାଶର ପଥକୁ ଗ୍ରହଣ କରି ନେଲେ । ଜର୍ମାନ୍ ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ମଧ୍ୟ ଏହି ପଥରେ ଯାତ୍ରାରମ୍ଭ କରିଥିଲା । ଏସିଆର କେତେକ ଦେଶ – ମଙ୍ଗୋଲିଆ, ଭିଏତ୍‌ନାମ, କୋରୀୟ ଜନଗଣତାନ୍ତ୍ରିକ ପ୍ରଜାତନ୍ତ୍ର ଏବଂ ଚୀନ୍ ଏବଂ ଲାଟିନ୍ ଆମେରିକାରେ କ୍ୟୁବା ମଧ୍ୟ ସମାଜବାଦ ନିର୍ମାଣର ପଥ ଗ୍ରହଣ କରିଥିଲେ । ଏହା ଫଳରେ ଏକ ବିଶ୍ୱ ସମାଜବାଦୀ ବ୍ୟବସ୍ଥା ଗଢ଼ି ଉଠିଲା ।

ଏହା ଦ୍ୱାରା ଆନ୍ତର୍ଜାତିକ କ୍ଷେତ୍ରରେ ସମାଜବାଦ ଓ ପୁଞ୍ଜିବାଦ ମଧ୍ୟରେ ଶକ୍ତିର ଭାରସାମ୍ୟରେ ମୌଳିକ ପରିବର୍ତ୍ତନ ଦେଖାଦେଇଥିଲା । ଦ୍ୱିତୀୟ ବିଶ୍ୱ ଯୁଦ୍ଧ ପୂର୍ବରୁ ପୃଥିବୀର ଭୂଭାଗରୁ ଶତକଡ଼ା ୧୭ ଭାଗ, ପୃଥିବୀର ଜନସଂଖ୍ୟାର ଶତକଡ଼ା ୯ ଭାଗ, ବିଶ୍ୱ ଶିଳ୍ପ ଉତ୍ପାଦନର ଶତକଡ଼ା ୧୭ ଭାଗ ସମାଜବାଦର ଅଂଶ ଥିଲା, କିନ୍ତୁ ଏବେ ସମାଜବାଦୀ ବ୍ୟବସ୍ଥାର ଅନ୍ତର୍ଗତ ଦେଶମାନଙ୍କ ଅଧୀନରେ ପୃଥିବୀର ଶତକଡ଼ା ୨୫ ଭାଗ ଅଞ୍ଚଳ, ଜନସଂଖ୍ୟାର ୩୫ ଭାଗ ଏବଂ ବିଶ୍ୱ ଶିଳ୍ପ ଉତ୍ପାଦନର ୩୮ ଭାଗ ଅଛି ।

ପୃଥିବୀର ଅଧିକାଂଶ ଜନସଂଖ୍ୟା ବାସ କରୁଥିବା ଔପନିବେଶିକ ଓ ଅର୍ଦ୍ଧ-ଔପନିବେଶିକ ଦେଶମାନଙ୍କରେ ନିପୀଡ଼ିତ ଜାତିମାନଙ୍କର ଜାତୀୟ-ମୁକ୍ତି ବିପ୍ଳବ ପୁଞ୍ଜିବାଦୀ ଦୁନିଆ ତଥା ସାମ୍ରାଜ୍ୟବାଦୀ ଦୁନିଆ ଉପରେ ନୂତନ ଏକ ପ୍ରଚଣ୍ଡ ଆଘାତ ହାଣିଲା । ସେସବୁ ଦେଶର ଜାତୀୟ-ମୁକ୍ତି ସଂଗ୍ରାମକୁ ଏକ ଶକ୍ତିଶାଳୀ ପ୍ରୋତ୍ସାହନ ଯୋଗାଇଥିଲା ଅକ୍ଟୋବର ବିପ୍ଳବ । କିନ୍ତୁ, ମୁକ୍ତି ପାଇଁ ନିପୀଡ଼ିତ ଜାତିମାନଙ୍କର ସଂଗ୍ରାମ ବିଶେଷ ଭାବେ ବ୍ୟାପକତା ଲାଭ କରିଥିଲା ଦ୍ୱିତୀୟ ବିଶ୍ୱ ଯୁଦ୍ଧ ପରେ, ଯେଉଁଥିରେ ସାମ୍ରାଜ୍ୟବାଦର ବର୍ଛା ବାହିନୀ – ଜର୍ମାନ୍ ନାଜିବାଦ ଏବଂ ଇଟାଲୀୟ ଫାସିବାଦ ପରାଜିତ ହେଲା ଏବଂ ବଡ଼ ବଡ଼ ଔପନିବେଶିକ ଶକ୍ତିମାନେ ବହୁ ପରିମାଣରେ ଦୁର୍ବଳ ହୋଇ ପଡ଼ିଥିଲେ । ୧୯୫୦ ଦଶକର ପ୍ରାରମ୍ଭରେ ମୋଟ ୧୨୦ କୋଟି ଲୋକ ଔପନିବେଶିକ ଜୁଆଳିକୁ ଫିଙ୍ଗି ଦେଇ ସ୍ୱାଧୀନ ହୋଇଥିଲେ । ଏବେ ପୃଥିବୀର ରାଜନୈତିକ ମାନଚିତ୍ରରେ ୬୦ଟିରୁ ଅଧିକ ନୂତନ ସ୍ୱାଧୀନ ରାଷ୍ଟ୍ର ମୁଣ୍ଡଟେକି ଉଠିଛନ୍ତି ।

ଏସିଆ ତଥା ଆଫ୍ରିକାର ଅନେକ ଦେଶ ସମାଜବାଦୀ ନିର୍ମାଣକୁ ସେମାନଙ୍କ ରାଷ୍ଟ୍ର ନୀତି ବୋଲି ଘୋଷଣା କରିଛନ୍ତି । ସୋଭିଏତ୍ ୟୁନିଅନ୍ ଏବଂ ଅନ୍ୟାନ୍ୟ ସମାଜବାଦୀ ଦେଶମାନେ ନୂତନ ଏହି ମୁକ୍ତିପ୍ରାପ୍ତ ଜାତିମାନଙ୍କୁ ସେମାନଙ୍କ ରାଜନୈତିକ ସ୍ୱାଧୀନତାକୁ ରକ୍ଷା କରିବା ଏବଂ ସୁଦୃଢ଼ କରିବାରେ, ସେମାନଙ୍କ ଜାତୀୟ ଅର୍ଥନୀତି ଓ ସଂସ୍କୃତିକୁ ବିକଶିତ କରିବା ଏବଂ ସାମ୍ରାଜ୍ୟବାଦର ଭୟଙ୍କର କୁଫଳକୁ ଯଥା ଶୀଘ୍ର ଅତିକ୍ରମ କରିବାକୁ ବ୍ୟାପକ, ନିସ୍ୱାର୍ଥ ସମର୍ଥନ ଓ ସହାୟତା ଦାନ କରୁଛନ୍ତି ।

ବିଶ୍ୱ ସମାଜବାଦୀ ଗୋଷ୍ଠୀର ଅଭ୍ୟୁଦୟ ଏବଂ ସାମ୍ରାଜ୍ୟବାଦ ଔପନିବେଶିକ ବ୍ୟବସ୍ଥାର ପତନ ପୁଞ୍ଜିବାଦୀ ବ୍ୟବସ୍ଥାର ସାଧାରଣ ସଂକଟକୁ ଗଭୀରତର କରିଛି ଏବଂ

ସମାଜବାଦର ସପକ୍ଷରେ ଶକ୍ତିର ଭାରସାମ୍ୟକୁ ମୌଳିକ ଭାବେ ବଦଳେଇ ଦେଇଛି । ଦୁନିଆରେ ସମାଜବାଦ ପ୍ରତି ଶତ୍ରୁଭାବାପନ୍ନ କୌଣସି ଶକ୍ତି ସୋଭିଏତ୍ ୟୁନିଅନ୍‌ରୁ ସମାଜବାଦକୁ ବା ଅନ୍ୟ କୌଣସି ସମାଜବାଦୀ ଦେଶରୁ ସମାଜବାଦକୁ କେବେ ଲୋପ କରି ପାରିବ ନାହିଁ କୌଣସି ମତେ , ଏପରିକି ଯୁଦ୍ଧ ମାଧ୍ୟମରେ ।

ତା ଅର୍ଥ ସୋଭିଏତ୍ ୟୁନିଅନ୍‌ରେ ସମାଜବାଦ ତା'ର ଆଭ୍ୟନ୍ତରୀଣ ଦୃଷ୍ଟିରୁ କେବଳ ସଂପୂର୍ଣ୍ଣ ବିଜୟ ଲାଭ କରିନି , ଚୂଡ଼ାନ୍ତ ଭାବେ ମଧ୍ୟ, କାରଣ ବାହାରର ଶକ୍ତିମାନଙ୍କ ଦ୍ୱାରା ପୁଞ୍ଜିବାଦ ପୁନର୍ବାର ପ୍ରତିଷ୍ଠା କରିବାର ଭୟ ଲୋପ ପାଇଛି ।

# ୨୭ଶ ପରିଚ୍ଛେଦ

## ସୋଭିଏତ୍ ୟୁନିଅନ୍‌ରେ ବ୍ୟାପକ କମ୍ୟୁନିଷ୍ଟ ବିକାଶ (୧୯୬୦ ଦଶକରୁ ୧୯୭୦ ଦଶକ)

ଉନ୍ନତ ଏକ ସମାଜବାଦୀ ସମାଜର ସୃଷ୍ଟି କରି ସୋଭିଏତ୍ ଜନସାଧାରଣ କମ୍ୟୁନିଜମ୍‌ର ଉଚ୍ଚତର ପର୍ଯ୍ୟାୟକୁ ଉତ୍ତରଣ ପାଇଁ ମୂଳଦୁଆ ପକାଇଥିଲେ । ୧୯୬୧ ମସିହାରେ ମସ୍କୋରେ କମ୍ୟୁନିଷ୍ଟ ପାର୍ଟିର ୨୨ତମ କଂଗ୍ରେସ ଅନୁଷ୍ଠିତ ହୋଇଥିଲା ଏବଂ ଏକ ନୂତନ କର୍ମସୂଚୀ ଗ୍ରହଣ କରିଥିଲା । ଏହି କର୍ମସୂଚୀ କମ୍ୟୁନିଜମ୍‌ର ଉଚ୍ଚତର ପର୍ଯ୍ୟାୟ ବୋଇଲେ କ'ଣ ବୁଝାଏ, ତାକୁ ବର୍ଣ୍ଣନା କରିବା ସାଥେ ସାଥେ ସୋଭିଏତ୍ ୟୁନିଅନ୍‌ରେ ଏହାକୁ ପ୍ରତିଷ୍ଠା କରିବା ପାଇଁ ପଥ ନିର୍ଦ୍ଧାରଣ କରିଥିଲା ।

ପାର୍ଟି କର୍ମସୂଚୀରେ କୁହାଯାଇଥିଲା : "କମ୍ୟୁନିଜମ୍ ହେଉଛି ଉତ୍ପାଦନର ଉପକରଣ ଉପରେ ଏକାରକମର ସର୍ବସାଧାରଣ ମାଲିକାନା, ସମାଜର ସମସ୍ତ ସଦସ୍ୟଙ୍କର ପୂର୍ଣ୍ଣ ସାମାଜିକ ସମାନତା ଯୁକ୍ତ ଶ୍ରେଣୀହୀନ ଏକ ସାମାଜିକ ବ୍ୟବସ୍ଥା; ଏହି ସମାଜ ବ୍ୟବସ୍ଥାରେ ଜନସାଧାରଣଙ୍କର ସର୍ବବିଧ ବିକାଶ ସାଧିତ ହେବ ବିଜ୍ଞାନ ଓ କାରିଗରି କ୍ଷେତ୍ରରେ ନିରବଚ୍ଛିନ୍ନ ଅଗ୍ରଗତି ମାଧ୍ୟମରେ ଉତ୍ପାଦିକା ଶକ୍ତିସମୂହର ଉନ୍ନତି ସହିତ; ସମବାୟ ସଂପଦର ସମସ୍ତ ଉତ୍ସର ଉତ୍ସରଣ ଘଟିବ ଆଉରି ପ୍ରାଚୁର୍ଯ୍ୟ ନେଇ ଏବଂ ସେହି ମହାନ ନୀତି, 'ପ୍ରତ୍ୟେକରୁ ତା'ର କ୍ଷମତା ଅନୁଯାୟୀ, ପ୍ରତ୍ୟେକକୁ ତା'ର ଆବଶ୍ୟକତା ଅନୁଯାୟୀ' କାର୍ଯ୍ୟକାରୀ ହେବ । କମ୍ୟୁନିଜମ୍ ହେଉଛି ମୁକ୍ତ, ସାମାଜିକ ଭାବେ ସଚେତନ ଶ୍ରମଜୀବୀମାନଙ୍କୁ ନେଇ ଉଚ୍ଚ ସଂଗଠିତ ସମାଜ, ଏଥିରେ ସର୍ବସାଧାରଣ ସ୍ୱାୟତ୍ତଶାସିତ ସରକାର ପ୍ରତିଷ୍ଠିତ ହେବ ଏବଂ ଏଥିରେ ସମାଜର ମଙ୍ଗଳ ପାଇଁ ଶ୍ରମ ହେବ ପ୍ରତ୍ୟେକର ସର୍ବୋଚ୍ଚ ଗୁରୁତ୍ୱପୂର୍ଣ୍ଣ ଆବଶ୍ୟକତା, ସମସ୍ତେ ଆବଶ୍ୟକତାକୁ ସ୍ୱୀକାର କରିବେ ଏବଂ ପ୍ରତ୍ୟେକ ଲୋକର କ୍ଷମତା ବିନିଯୁକ୍ତ ହେବ ଲୋକଙ୍କର ସର୍ବାଧିକ କଲ୍ୟାଣ ପାଇଁ ।"

ପୃଥିବୀ ପୃଷ୍ଠରେ ଏହିପରି ଏକ ସର୍ବାଧିକ ମାନବିକ ଏବଂ ନ୍ୟାୟପୂର୍ଣ୍ଣ ସମାଜ ଗଠନ ପାଇଁ ତିନୋଟି ମୌଳିକ କର୍ତ୍ତବ୍ୟକୁ କାର୍ଯ୍ୟକାରୀ କରିବାକୁ ପଡ଼ିବ : (୧) କମ୍ୟୁନିଜମ୍‌ର ବୈଷୟିକ ତଥା କାରିଗରି ଭିତ୍ତି ନିର୍ମାଣ; (୨) ସମାଜବାଦୀ ସାମାଜିକ

ସଂପର୍କକୁ କ୍ରମଶଃ କମ୍ୟୁନିଷ୍ଟ ସାମାଜିକ ସଂପର୍କରାଜିକୁ ବିକାଶ କରିବା ; (୩) କମ୍ୟୁନିଷ୍ଟ ସମାଜର ଲୋକଙ୍କୁ ସୁଶିକ୍ଷିତ କରିବା ।

କମ୍ୟୁନିଷ୍ଟ ବିକାଶର ମୁଖ୍ୟ ଅର୍ଥନୈତିକ କର୍ତ୍ତବ୍ୟଟି ହେଲା କମ୍ୟୁନିଜମ୍‌ର ବୈଷୟିକ ତଥା କାରିଗରୀ ଭିତ୍ତି ନିର୍ମାଣ କରିବା । ତା ଅର୍ଥ : ସମଗ୍ର ଦେଶର ବିଦ୍ୟୁତୀକରଣ, ଉତ୍ପାଦନ ପ୍ରକ୍ରିୟାର ବ୍ୟାପକ ଯନ୍ତ୍ରାୟନ ଓ ସେସବୁର ବ୍ୟାପକ ସ୍ୱୟଂକରଣ, ଅର୍ଥନୀତି କ୍ଷେତ୍ରରେ ରସାୟନର ବ୍ୟାପକ ପ୍ରୟୋଗ, ପ୍ରାକୃତିକ, ବୈଷୟିକ ତଥା ଜନ ଶକ୍ତିଗତ ସମ୍ବଳର ବ୍ୟାପକ ଏବଂ ଯୁକ୍ତି ସଂଗତ ଉପଯୋଗ, ଉତ୍ପାଦନ ସହିତ ବିଜ୍ଞାନର ଯୋଗକରଣ ଏବଂ ବୈଜ୍ଞାନିକ ତଥା କାରିଗରୀ ଅଗ୍ରଗତିରେ ଦ୍ରୁତତା ଏବଂ ଶ୍ରମଜୀବୀ ଜନସାଧାରଣଙ୍କର ଉଚ୍ଚ ସାଂସ୍କୃତିକ ଏବଂ କାରିଗରୀଗତ ସ୍ତର ।

କମ୍ୟୁନିଜମ୍‌ର ବୈଷୟିକ ତଥା କାରିଗରୀ ଭିତ୍ତି ନିର୍ମିତ ହୋଇଥାଏ ଦୀର୍ଘକାଳୀନ ତଥା ବାର୍ଷିକ ଯୋଜନା ଅନୁଯାୟୀ ଏବଂ ଏହିସବୁ ଯୋଜନାକୁ ରଚନା କରିଥାନ୍ତି ରାଷ୍ଟ୍ରୀୟ ଯୋଜନା-ସଂସ୍ଥାସମୂହ କମ୍ୟୁନିଷ୍ଟ ପାର୍ଟିର କଂଗ୍ରେସରେ ନିର୍ଦ୍ଧାରିତ ଦିଗଦର୍ଶନ ଉପରେ ଭିତ୍ତି କରି । ପ୍ରତ୍ୟେକ ବର୍ଷ କମ୍ୟୁନିଷ୍ଟ ପାର୍ଟି କେନ୍ଦ୍ରୀୟ କମିଟିର ପୂର୍ଣ୍ଣାଙ୍ଗ ଅଧିବେଶନସମୂହ ସେଇ ବର୍ଷର ଜାତୀୟ ଅର୍ଥନୈତିକ ଯୋଜନାର ପରିପୂରଣର ଫଳାଫଳ ଉପରେ ଆଲୋଚନା କରେ ଏବଂ ଆଗାମୀ ବର୍ଷ ପାଇଁ ଯୋଜନା ତଥା ରାଷ୍ଟ୍ରୀୟ ବଜେଟକୁ ପରୀକ୍ଷା କରି ଦେଖେ । ଏହା ପରେ ସେସବୁକୁ ସୋଭିଏତ୍ ୟୁନିଅନ୍‌ର ସର୍ବୋଚ୍ଚ ସୋଭିଏତ୍‌ରେ ଅନୁମୋଦନ ଲାଭ କରେ ।

୧୯୬୦ ଦଶକ ଦ୍ୱିତୀୟାର୍ଦ୍ଧରେ କମ୍ୟୁନିଜମ୍‌ର ବୈଷୟିକ ତଥା କାରିଗରୀ ଭିତ୍ତି ନିର୍ମାଣ କାର୍ଯ୍ୟ ପରିଶ୍ରକିତ ହୋଇ ଆସିଛି । ଇତିମଧ୍ୟରେ ତିନୋଟି ପଞ୍ଚବାର୍ଷିକ ଜାତୀୟ ଅର୍ଥନୈତିକ ଯୋଜନା ମୋଟାମୋଟି ଭାବେ ସଫଳତାର ସହିତ ସଂପୂର୍ଣ୍ଣ ହୋଇଛି : ଅଷ୍ଟମ (୧୯୬୬-୧୯୭୦), ନବମ (୧୯୭୧-୧୯୭୫) ଏବଂ ଦଶମ (୧୯୭୬-୧୯୮୦) ପଞ୍ଚବାର୍ଷିକ ଯୋଜନାସମୂହ ; ଏବେ ସୋଭିଏତ୍ ଲୋକେ ଏକାଦଶ ପଞ୍ଚବାର୍ଷିକ ଯୋଜନାକୁ (୧୯୮୧-୧୯୮୫) କାର୍ଯ୍ୟକାରୀ କରୁଛନ୍ତି । ଏହି ଯୋଜନାଟି ୧୯୮୧ରେ ଅନୁଷ୍ଠିତ କମ୍ୟୁନିଷ୍ଟ ପାର୍ଟିର ୨୬ତମ ପାର୍ଟି କଂଗ୍ରେସରେ ରଚିତ ଦିଗଦର୍ଶନ ଉପରେ ଭିତ୍ତି କରି ଗଠିତ ହୋଇଥିଲା ।

‘ କମ୍ୟୁନିଜମ୍‌ର ବୈଷୟିକ ତଥା କାରିଗରୀ ଭିତ୍ତି ରଚନା ପାଇଁ ସର୍ବାଧିକ ଅନୁକୂଳ ଅବସ୍ଥାରାଜି ହାସଲ ପାଇଁ ଏବଂ ଜାତୀୟ ଆର୍ଥନୀତିକ ଯୋଜନାସମୂହ ପାଇଁ ସମସ୍ତ ସମ୍ବଳର ଉପଯୋଗ ଲକ୍ଷ୍ୟରେ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟି ଓ ସୋଭିଏତ୍ ସରକାର ବ୍ୟାପକ ସାଂଗଠନିକ ଓ ଅର୍ଥନୈତିକ କ୍ରିୟାକଳାପ ଚଳାଇଥିଲେ ।

ତେବେ, ୧୯୫୮ ପରେ ଗ୍ରାମାଞ୍ଚଳରେ ବସ୍ତୁନିଷ୍ଠ ଅସୁବିଧାସମୂହ ସାଥେ ସାଥେ କୃଷି ପରିଚାଳନାରେ ଭୁଲ ଭ୍ରାନ୍ତିସମୂହ ଫଳରେ କୃଷିରେ ଅଗ୍ରଗତିର ହାର ଶିଥିଳ ହୋଇଥିଲା, ୧୯୫୮ ମସିହାର ତୁଳନାରେ ମୋଟ ଶସ୍ୟ ଉତ୍ପାଦନ ଏବଂ ପଶୁପକ୍ଷୀ ପାଳନ କମିଗଲା । ସପ୍ତମ ଯୋଜନାରେ ନିର୍ଦ୍ଧାରିତ (୧୯୫୯-୧୯୬୫) କେତେକ କର୍ତ୍ତବ୍ୟକୁ ପୂରଣ କରାଯାଇ ପାରିଲା ନାହିଁ ।

ଶିଳ୍ପ କ୍ଷେତ୍ରରେ ଉତ୍ପାଦନଶୀଳତାର ବାର୍ଷିକ ଅଭିବୃଦ୍ଧି ହାର ଓ ମୋଟ ଉତ୍ପାଦନ କମିଗଲା ଏହାର ବିଭିନ୍ନ ଶାଖାର କେନ୍ଦ୍ରୀୟର ପରିଚାଳନାରେ ଦୁର୍ବଳତା ଏବଂ ଏକାରକମର କାରିଗରୀ ନୀତିର କାର୍ଯ୍ୟକାରିତାରେ ଗୁରୁତର ପ୍ରତିବନ୍ଧକରାଜି ହେତୁ । କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟିର ଅକ୍ଟୋବର ପୂର୍ଣ୍ଣାଙ୍ଗ ଅଧିବେଶନ (୧୯୬୪) ଅର୍ଥନୈତିକ ସମସ୍ୟାରାଜିର ସମାଧାନ ପ୍ରତି ସ୍ୱତଃପ୍ରବୃତ୍ତତା ଓ ମନୋଗତତା ଅର୍ଥନୀତି ପରିଚାଳନାରେ ପ୍ରଶାସନିକ ପଦ୍ଧତିର ବ୍ୟାପକ ବ୍ୟବହାର ଏବଂ ଅର୍ଥନୈତିକ ନିୟମର ଗୁରୁତ୍ୱର ନ୍ୟୂନକରଣକୁ ନିନ୍ଦା କରିଥିଲା । ଏସବୁ ପ୍ରକାଶ ପାଇଥିଲା କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟିର ପ୍ରଥମ ସଂପାଦକ ଓ ସୋଭିଏତ୍ ମନ୍ତ୍ରୀ ପରିଷଦର ଚେୟାରମ୍ୟାନ ନିକିତା ଖ୍ରୁଶ୍ଚୋଭ୍‌ଙ୍କ କ୍ଷେତ୍ରରେ । ତେଣୁ କରି ତାଙ୍କୁ ଏହି ଉଭୟ ପଦବିରୁ ବରଖାସ୍ତ କରାଯାଇଥିଲା । ଲିଓନିଦ୍ ବ୍ରେଜ୍‌ନେଭ୍‌ଙ୍କୁ କେନ୍ଦ୍ରୀୟ କମିଟିର ପ୍ରଥମ ସଂପାଦକ ରୂପେ ନିର୍ବାଚନ କରାଗଲା (୧୯୬୬ ମସିହାଠାରୁ ପ୍ରଥମ ସଂପାଦକ ପଦବି ପରିବର୍ତ୍ତେ ସାଧାରଣ ସଂପାଦକ ବୋଲି କୁହାଗଲା) ଏବଂ ସେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ୧୯୮୨, ନଭେମ୍ବର ୧୦ ଯାଏ ଏହି ଦାୟିତ୍ୱରେ ଅବସ୍ଥାନ କରିଥିଲେ । ୧୯୮୨, ନଭେମ୍ବର ୧୨ ତାରିଖରେ ଅନୁଷ୍ଠିତ କେନ୍ଦ୍ରୀୟ କମିଟିର ବିଶେଷ ପୂର୍ଣ୍ଣାଙ୍ଗ ଅଧିବେଶନ ୟୁରି ଆନ୍ଦ୍ରପୋଭ୍‌ଙ୍କୁ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟିର ସାଧାରଣ ସଂପାଦକ ରୂପେ ନିର୍ବାଚିତ କଲା । ଆଲେକ୍‌ସେଇ କୋସିଗିନ୍ ୧୯୬୪ ମସିହାରେ ଅକ୍ଟୋବର ମାସରେ ସର୍ବୋଚ୍ଚ ସୋଭିଏତ୍ ଦ୍ୱାରା ସୋଭିଏତ୍ ୟୁନିଅନ୍‌ର ମନ୍ତ୍ରୀ ପରିଷଦର ଚେୟାରମ୍ୟାନ ରୂପେ ନିର୍ବାଚିତ ହେଲେ ଏବଂ ମୃତ୍ୟୁର ସ୍ୱଳ୍ପକାଳ ପୂର୍ବ ପର୍ଯ୍ୟନ୍ତ, ଅର୍ଥାତ୍, ୧୯୮୦ ପର୍ଯ୍ୟନ୍ତ ସେ ଏହି ପଦବିରେ ଅଧିଷ୍ଠିତ ଥିଲେ (୧୯୮୦, ନଭେମ୍ବର ୧୮ ତାରିଖରେ ତାଙ୍କର ମୃତ୍ୟୁ ଘଟିଥିଲା) । ସ୍ୱାସ୍ଥ୍ୟହାନି କାରଣରୁ ନିଜର ଅନୁରୋଧ କ୍ରମେ ତାଙ୍କୁ ଏଥିରୁ ଅବ୍ୟାହତି ଦିଆଯାଇଥିଲା । ତାଙ୍କ ପରେ ସୋଭିଏତ୍ ସରକାରଙ୍କ ନେତୃତ୍ୱ ନେଇଥିଲେ ନିକୋଲାଇ ତିଖନୋଭ୍ ।

୧୯୬୪ ମସିହାର ଅକ୍ଟୋବର ମାସରେ ଅନୁଷ୍ଠିତ କେନ୍ଦ୍ରୀୟ କମିଟିର ପୂର୍ଣ୍ଣାଙ୍ଗ ଅଧିବେଶନ ପାର୍ଟି ଜୀବନର ଲେନିନ୍‌ବାଦୀ ମାନ ଓ ନେତୃତ୍ୱର ନୀତିସମୂହକୁ ପାଳନ କରିବା ଓ ବିକାଶ କରିବା ପାଇଁ ପାର୍ଟିର ଦୃଢ଼ ସଂକଳ୍ପ ପ୍ରକାଶ କରିଥିଲା । ଏହି ଅଧିବେଶନରେ ଗୃହୀତ ନିଷ୍ପତ୍ତିରାଜି ସଦର୍ଥକ ପ୍ରଭାବ ପାତ କରିଥିଲା ପାର୍ଟି ତଥା ରାଷ୍ଟ୍ରର ଜୀବନ ଏବଂ କ୍ରିୟାକଳାପ ଉପରେ । କେନ୍ଦ୍ରୀୟ କମିଟି ଓ ମନ୍ତ୍ରୀପରିଷଦ ମନ

ନିୟୋଗ କରିଥିଲେ ସୋଭିଏତ୍ ସମାଜରେ ଅର୍ଥନୈତିକ ସଂପର୍କରାଜିର ବିକାଶ, ଜାତୀୟ ଅର୍ଥନୈତିକ ପରିଚାଳନା ଓ ପରିକଳ୍ପନାର ଉନ୍ନତି ଓ ଉତ୍ପାଦନର ଅଭିବୃଦ୍ଧି ସଂପୃକ୍ତ ମୌଳିକ ସମସ୍ୟାବଳୀ ଉପରେ ।

୧୯୬୫, ମାର୍ଚ୍ଚ ମାସରେ କେନ୍ଦ୍ରୀୟ କମିଟିର ପୂର୍ଣ୍ଣାଙ୍ଗ ଅଧିବେଶନ କୃଷି ବିକାଶକୁ ତ୍ୱରାନ୍ୱିତ କରିବା ଦିଗରେ ଉଦ୍ଦିଷ୍ଟ ଅର୍ଥନୈତିକ ପଦକ୍ଷେପସମୂହର କର୍ମସୂଚୀ ଉପରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରି ଗ୍ରହଣ କରିଥିଲା । ଅର୍ଥନୀତିର ଏହି ଗୁରୁତ୍ୱପୂର୍ଣ୍ଣ ଶାଖାଟିରେ ରାଷ୍ଟ୍ରୀୟ ପୁଞ୍ଜିର ନିୟୋଗ ଉଲ୍ଲେଖନୀୟ ଭାବେ ବୃଦ୍ଧି କରାଯାଇଥିଲା । ଏହାର ଉଦ୍ଦେଶ୍ୟ ହେଲା କୃଷି ଯନ୍ତ୍ରପାତିର ଉତ୍ପାଦନକୁ ବିପୁଳ ଭାବେ ବୃଦ୍ଧି କରିବା, ବ୍ୟାପକ ବିଦ୍ୟୁତୀକରଣ ଏବଂ କୃଷି କ୍ଷେତ୍ରରେ ରସାୟନ ବିଜ୍ଞାନର ଉପଯୋଗ ଓ ଜଳସେଚନର ଆଉରି ବିକାଶ ଏବଂ ଭୂମିର ଉନ୍ନତିସାଧନ । କୋଠଖମାର ଓ ରାଷ୍ଟ୍ର ଖମାର ଠାରୁ କୃଷିଜାତ ଜିନିଷର କ୍ରୟ ପାଇଁ ଦୃଢ଼ ଏବଂ ଅପରିବର୍ତ୍ତନୀୟ ଯୋଜନା ପ୍ରସ୍ତୁତ କରାଗଲା । କ୍ରୟ ଦାମ୍ ମଧ୍ୟ ବୃଦ୍ଧି କରାଗଲା, ଯୋଜନାରେ ସ୍ଥିରିକୃତ ଦାମ୍ ଅପେକ୍ଷା ଏହିସବୁ କୃଷିଜାତ ଜିନିଷ ପାଇଁ ଶତକଡ଼ା ୫୦ ଭାଗ ଅଧିକ ଦାମ୍ ପ୍ରଦାନ କଲା ରାଷ୍ଟ୍ର । କୋଠଖମାର ଓ ରାଷ୍ଟ୍ର ଖମାର ପରିଚାଳନାକୁ ଉନ୍ନତ କରିବା ଓ କୋଠଖମାରର ଗଣତନ୍ତ୍ରକୁ ଆଉରି ବିକଶିତ କରିବା ନିମିତ୍ତ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପମାନ ନିଆଗଲା । ଅର୍ଥନୈତିକ କ୍ରିୟାକଳାପ, ଉତ୍ପାଦନ ପରିକଳ୍ପନା, ଆୟର ବଣ୍ଟନ ଆଦି କ୍ଷେତ୍ରରେ କୋଠଖମାର ଓ ରାଷ୍ଟ୍ର ଖମାରକୁ ବ୍ୟାପକ ସ୍ୱାଧୀନତା ପ୍ରଦାନ କରାଗଲା । ରାଷ୍ଟ୍ର ଓ କୋଠଖମାରଗୁଡ଼ିକର ସାମାଜିକ ଉତ୍ପାଦନ ଉପରେ ବିଶେଷ ଗୁରୁତ୍ୱ ଆରୋପ କରି ପାର୍ଟି ଓ ସରକାର ସ୍ଥିର କଲେ ବ୍ୟକ୍ତିଗତ ସହାୟତାପ୍ରାପ୍ତ କୋଠଖମାରର ଚାଷୀ, ଶିଳ୍ପ ଓ ଅଫିସର ଶ୍ରମିକମାନଙ୍କର ଖମାରର ବିକାଶକୁ ପ୍ରୋତ୍ସାହିତ କରିବାକୁ ।

କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟିର ୧୯୬୫ ମସିହାର ମାର୍ଚ୍ଚ ମାସ ପୂର୍ଣ୍ଣାଙ୍ଗ ଅଧିବେଶନର ପ୍ରସ୍ତାବସମୂହ ଓ ସେସବୁକୁ କାର୍ଯ୍ୟକାରୀ କରିବା ପାଇଁ ନିଆ ହୋଇଥିବା ପଦକ୍ଷେପକୁ କୃଷିରେ ନିଯୁକ୍ତ ଶ୍ରମଜୀବୀମାନେ ଗଭୀର ସନ୍ତୋଷର ସହିତ ଗ୍ରହଣ କରିଥିଲେ ଏବଂ କାର୍ଯ୍ୟ କ୍ଷେତ୍ରରେ ବିପୁଳ ପ୍ରେରଣା ସୃଷ୍ଟି କରିଥିଲା । କୃଷି ଉତ୍ପାଦନରେ ଉଲ୍ଲେଖନୀୟ ଅଭିବୃଦ୍ଧି ଘଟିଲା ଏବଂ ପ୍ରମାଣ କରି ଦେଲା ଯେ, ୧୯୬୫ ମସିହା ମାର୍ଚ୍ଚ ମାସର ପୂର୍ଣ୍ଣାଙ୍ଗ ଅଧିବେଶନ ଯେଉଁ ବାସ୍ତବ ଉପାୟ ନିର୍ଦ୍ଧାରଣ କରିଥିଲା, ତାହା ବିଜ୍ଞାନ ଉପରେ ପ୍ରତିଷ୍ଠିତ ଥିଲା ଏବଂ ତେଣୁ କରି କୃଷି ଉତ୍ପାଦନରେ ଉନ୍ନତି ଘଟାଇ ପାରିଲା ।

କେନ୍ଦ୍ରୀୟ କମିଟିର ୧୯୬୫ ମସିହା, ସେପ୍ଟେମ୍ବର ପୂର୍ଣ୍ଣାଙ୍ଗ ଅଧିବେଶନରେ ଶିଳ୍ପ ଉତ୍ପାଦନ ଓ ନିର୍ମାଣର ପରିଚାଳନା, ପରିକଳ୍ପନା ଏବଂ ଅର୍ଥନୈତିକ ପ୍ରୋତ୍ସାହନକୁ ମୌଳିକ ଭାବେ ଉନ୍ନତ କରିବା ଏବଂ ବୈଜ୍ଞାନିକ ଓ କାରିଗରୀ ବିକାଶକୁ ଦ୍ରୁତ କରିବା ଉଦ୍ଦେଶ୍ୟରେ ପଦକ୍ଷେପ ନେବା ପାଇଁ ଏକ ବ୍ୟାପକ କର୍ମସୂଚୀ ଗୃହୀତ ହୋଇଥିଲା ।

ଏହି ଅଧିବେଶନ ଅନୁଭବ କରିଥିଲା, ଐକ୍ୟବଦ୍ଧ ରାଷ୍ଟ୍ରୀୟ ଯୋଜନା ଏବଂ କେନ୍ଦ୍ରୀୟର କ୍ଷେତ୍ରୀୟ ପରିଗ୍ରଳନାକୁ ଏକତ୍ର କରି ଶିଳ୍ପର ପରିଗ୍ରଳନା କରିବାକୁ ପଡ଼ିବ । ଏହି କ୍ଷେତ୍ରୀୟ ପରିଗ୍ରଳନା ସହିତ ବ୍ୟାପକ ପ୍ରଜାତନ୍ତ୍ରୀୟ ଏବଂ ସ୍ଥାନୀୟ ଅର୍ଥନୈତିକ କର୍ମୋଦ୍ୟମ, ଶିଳ୍ପୋଦ୍ୟୋଗଗୁଡ଼ିକର ଅର୍ଥନୈତିକ ସ୍ୱାଧୀନତାର ସଂପ୍ରସାରଣ ଏବଂ ପରିମାଣ ଓ ଗୁଣଗତ ଦୃଷ୍ଟିରୁ ଉତ୍ପାଦନର ନିୟମିତ ବିକାଶ କରିବାକୁ ଶିଳ୍ପରେ ନିଯୁକ୍ତ କର୍ମୀମାନଙ୍କ ପାଇଁ ବୈଷୟିକ ପ୍ରବର୍ତ୍ତନା ଦାନର ନୀତିର ବ୍ୟାପକ ପ୍ରୟୋଗ କରିବାକୁ ହେବ । ଅର୍ଥନୈତିକ ପ୍ରୋତ୍ସାହନ ଦେବା ପାଇଁ ଶିଳ୍ପୋଦ୍ୟୋଗଗୁଡ଼ିକର ଲଭରୁ ତିନୋଟି ପାଣ୍ଠି ଗଠନ କରିବାକୁ ସ୍ଥିର କରାଯାଇଥିଲା : (୧) ଉତ୍ପାଦନର ବିକାଶ ଓ ଯନ୍ତ୍ରପାତିର ଉନ୍ନତି ସାଧନ; (୨) କର୍ମୀବାହିନୀକୁ ବୈଷୟିକ ପୁରସ୍କାର ଦାନ; (୩) ସାମାଜିକ ଓ ସାଂସ୍କୃତିକ କ୍ରିୟାକର୍ମ ଓ ବାସଗୃହ ନିର୍ମାଣ । କ୍ଷେତ୍ରୀୟ ବା ସେକଟରାଲ ନୀତି ଅନୁଯାୟୀ ଶିଳ୍ପ ପରିଗ୍ରଳନା ବ୍ୟବସ୍ଥାକୁ ପୂର୍ଣ୍ଣ ରୂପେ ପ୍ରତିଷ୍ଠା କରିବା ଏବଂ ଏହି ଉଦ୍ଦେଶ୍ୟରେ ପ୍ରତ୍ୟେକ ଶିଳ୍ପ ପାଇଁ ମନ୍ତ୍ରଣାଳୟମାନ ପ୍ରତିଷ୍ଠା କରିବାକୁ ସ୍ଥିର କରାଗଲା ।

କେନ୍ଦ୍ରୀୟ କମିଟିର ୧୯୬୫, ସେପ୍‌ଟେମ୍ବର ପୂର୍ଣ୍ଣାଙ୍ଗ ଅଧିବେଶନର ପ୍ରସ୍ତାବରାଜିର ଭିତ୍ତିରେ ୧୯୬୦ ଦଶକର ଦ୍ୱିତୀୟାର୍ଦ୍ଧରେ ଗଭୀର ଅର୍ଥନୈତିକ ସଂସ୍କାର କାର୍ଯ୍ୟକାରୀ ହୋଇଥିଲା; ଏହା ଫଳରେ ଶିଳ୍ପର ପରିଗ୍ରଳନା ଓ ନିର୍ମାଣ କାର୍ଯ୍ୟରେ ଉନ୍ନତି ଦେଖାଗଲା, ବୃହତ୍ ଆଭ୍ୟନ୍ତରୀଣ ସମ୍ବଳର ଉପଯୋଗ କରାଗଲା ଓ ସାମାଜିକ ଉତ୍ପାଦନର ଦକ୍ଷତା ବୃଦ୍ଧି ପାଇଲା ।

ଶିଳ୍ପ ପରିଗ୍ରଳନାର ଅଧିକ ଉନ୍ନତି ସାଧନ (ଉତ୍ପାଦନ ଓ ବିଜ୍ଞାନ-ଉତ୍ପାଦନ ସଂଘସମୂହ ଏବଂ ଆଞ୍ଚଳିକ-ଉତ୍ପାଦନ ସମାହାରର ପ୍ରତିଷ୍ଠା), ଯୋଜନା ଏବଂ ଅର୍ଥନୈତିକ ଉତ୍ପାଦନର ବିକାଶ, ପୁଞ୍ଜି ନିର୍ମାଣର ବ୍ୟୟର ଉନ୍ନତି, ତ୍ୱରାୟନ ଏବଂ ହ୍ରାସକରଣ, ଦ୍ରୁତତାର ସହିତ ନୂତନ ଶିଳ୍ପୋଦ୍ୟୋଗସମୂହ ଓ ଉତ୍ପାଦନ ଲାଇନ୍‌ରେ ଉତ୍ପାଦନ ଆରମ୍ଭ, ଦକ୍ଷକର୍ମୀ ବାହିନୀର ତାଲିମ୍‌ରେ ଅଧିକ ଉନ୍ନତି ସାଧନ ଆଦି ୧୯୭୦ ଦଶକରେ କାର୍ଯ୍ୟକାରୀ କରାଯାଇଥିଲା ।

୧୯୬୫, ମାର୍ଚ୍ଚ ମାସରେ ଅନୁଷ୍ଠିତ ପୂର୍ଣ୍ଣାଙ୍ଗ ଅଧିବେଶନ ପରେ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟିର ଆଉ କେତେକ ପୂର୍ଣ୍ଣାଙ୍ଗ ଅଧିବେଶନ କମ୍ୟୁନିଜମ୍‌ର ବୈଷୟିକ ତଥା କାରିଗରୀ ଭିତ୍ତି ନିର୍ମାଣ କାଳରେ ବିକଶିତ ସମାଜବାଦରେ ପାର୍ଟିର କୃଷି ସଂକ୍ରାନ୍ତ ନୀତିକୁ ରୂପ ଦେଇଥିଲା । ଏହି ନୀତିରେ ନିର୍ଦ୍ଧାରିତ ହୋଇଥିଲା : ପ୍ରଥମତଃ, ବ୍ୟାପକ ଯନ୍ତ୍ରାୟନ, ରସାୟନ ସାରର ବ୍ୟାପକ ଉପଯୋଗ, ବ୍ୟାପକ ଆକାରରେ ଭୂମି ବିକାଶ, ବିଜ୍ଞାନର ସାଫଲ୍ୟରାଜି ଓ ଉନ୍ନତ ଅଭିଜ୍ଞତାକୁ ଉତ୍ପାଦନ କ୍ଷେତ୍ରରେ ପ୍ରୟୋଗ; ଦ୍ୱିତୀୟତଃ, କୃଷି ଉତ୍ପାଦନର ଦ୍ରୁତ ଅଭିବୃଦ୍ଧି ପାଇଁ କୋଠଖମାର ଓ ରାଷ୍ଟ୍ରଖମାରକୁ ଆଗ୍ରହୀ କରିବା ନିମିତ୍ତ ସେସବୁ ସହିତ ରାଷ୍ଟ୍ରର ଅର୍ଥନୈତିକ ଯୋଗସୂତ୍ରର

ବିକାଶ ସାଧନ ; ତୃତୀୟତଃ , ଉତ୍ପାଦନଶୀଳତାର ଅଭିବୃଦ୍ଧି , ଶସ୍ୟ ଉତ୍ପାଦନ ଓ ପଶୁପକ୍ଷୀ ପାଳନରେ ଅଭିବୃଦ୍ଧି ଘଟାଇବା ପାଇଁ କୋଠଗୃଷୀ ଓ ରାଷ୍ଟ୍ରଖମାରର ଶ୍ରମିକମାନଙ୍କୁ ଅଧିକ ବୈଷୟିକ ଓ ନୈତିକ ପ୍ରୋତ୍ସାହନ ଦାନ ।

ଏହି କର୍ମସୂଚୀକୁ କାର୍ଯ୍ୟକାରୀ କରିବା ନିମିତ୍ତ ସୋଭିଏତ୍ ସରକାର ଅବିଳମ୍ବେ ଅଧିକ ପୁଞ୍ଜି ନିୟୋଗ କରିଥିଲେ । ୧୯୭୦ ଦଶକରେ ଏ ଦିଗରେ ୩୦୦,୦୦୦ ନିୟୁତ ରୁବଲ ନିୟୋଗ କରାଯାଇଥିଲା ଏବଂ ପୂର୍ବବର୍ତ୍ତୀ ଦଶ ବର୍ଷରେ ବିନିଯୁକ୍ତ ପରିମାଣ ଠାରୁ ଏହା ଥିଲା ଶତକଡ଼ା ୧୩୦ ଭାଗ ଅଧିକ । କୃଷିକୁ କ୍ରମାଧିକ ଭାବେ ଆଧୁନିକ ଯନ୍ତ୍ରପାତିରେ ସଜ୍ଜିତ କରାଗଲା : ୧୯୭୬-୧୯୮୦ରେ ୫ ନିୟୁତ ଟ୍ରାକ୍ଟର , ୩.୩ ନିୟୁତ ଲରି , ପ୍ରାୟ ୧.୫ ନିୟୁତ କୃଷି ଅମଳଯନ୍ତ୍ର ଏବଂ ବହୁ ସଂଖ୍ୟକ ଅନ୍ୟାନ୍ୟ ଯନ୍ତ୍ରପାତି ଓ ପ୍ରାୟ ଏକ ହଜାର ନିୟୁତ ଟନ୍‌ର ଖଣିଜ ସାର । ବିଶାଳ ଆକାରରେ ଭୂମି ଉନ୍ନୟନ କର୍ମସୂଚୀ କାର୍ଯ୍ୟକାରୀ ମଧ୍ୟ ହେଲା : ଉନ୍ନତ ଜମିର ପରିମାଣ ୩୦ ନିୟୁତ ହେକ୍ଟରକୁ ଟପି ଯାଇଥିଲା । ଦେଶର କୃଷିଯୋଗ୍ୟ ଜମିର ଏହା ଶତକଡ଼ା ୧୦ ଭାଗ ହେଲେ ମଧ୍ୟ ଦେଶର ମୋଟ ଶସ୍ୟ ଉତ୍ପାଦନର ଏକତୃତୀୟାଂଶ ଏହିଥିରୁ ଆସିଲା ।

ଶସ୍ୟ ଉତ୍ପାଦନ ଓ ଗୋମେଷାଦି ପଶୁ ପାଳନରେ ଅଭିବୃଦ୍ଧି ଘଟାଇବା ଉଦ୍ଦେଶ୍ୟରେ କୋଠଖମାର ଓ ରାଷ୍ଟ୍ରଖମାରକୁ ଏବଂ କୃଷିରେ ନିଯୁକ୍ତ ସମସ୍ତ ଶ୍ରମଜୀବୀ ଜନସାଧାରଣଙ୍କୁ ଅଧିକ ଆଗ୍ରହୀ କରିବା ନିମିତ୍ତ ଅନେକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ନିଆଗଲା : ପ୍ରାୟ ସମସ୍ତ କୃଷିଜାତ ପଦାର୍ଥର ବିକ୍ରୟ କ୍ଷେତ୍ରରେ ଯୋଜନାରୁ ଅଧିକ ପରିମାଣରେ ବିକ୍ରି କଲେ ଏହି ଅଧିକ ପରିମାଣର ମୂଲ୍ୟ ଉପରେ ଶତକଡ଼ା ୫୦ ଭାଗ ଭତ୍ତା ଦାନ ; ୧୯୬୦ ଦଶକର ଦ୍ୱିତୀୟାର୍ଦ୍ଧରେ କୋଠଖମାରରେ କୋଠଗୃଷୀମାନଙ୍କ କାର୍ଯ୍ୟ ପାଇଁ ମାସିକ ବେତନର ଗ୍ୟାରେଣ୍ଟି ଦିଆଗଲା ଏବଂ ଏହି ବେତନର ପରିମାଣ ରାଷ୍ଟ୍ରଖମାରର ଗୃଷୀମାନଙ୍କ ବେତନର ପରିମାଣ ସହିତ ସଂଗତିଶୀଳ ଥିଲା ; ଏବଂ ରାଷ୍ଟ୍ରଖମାରର ମେସିନ୍ ଗୃଳକମାନଙ୍କ ମଜୁରିକୁ ଶତକଡ଼ା ୬୦-୧୦୦ ଭାଗ ବୃଦ୍ଧି କରି ଦିଆଗଲା ।

୧୯୬୯ , ନଭେମ୍ବର ୨୭ରେ ଅନୁଷ୍ଠିତ କୋଠଗୃଷୀମାନଙ୍କର ତୃତୀୟ ନିଖିଳ ୟୁନିଅନ୍ କଂଗ୍ରେସରେ ସର୍ବସମ୍ମତି କ୍ରମେ ଗୃହୀତ କୋଠଖମାରମାନଙ୍କ ପାଇଁ ନୂତନ ଆଦର୍ଶସ୍ଥାନୀୟ ନିୟମରାଜି ଫଳରେ କୋଠଗୃଷୀମାନେ ମଧ୍ୟ ଅଧିକ ସକ୍ରିୟ ହୋଇଥିଲେ । ଏହି ଆଦର୍ଶ ସ୍ଥାନୀୟ ନିୟମାବଳୀକୁ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟି ଓ ସୋଭିଏତ୍ ୟୁନିଅନ୍‌ର ମନ୍ତ୍ରୀ ପରିଷଦ ଅନୁମୋଦନ ଜଣାଇଥିଲେ । ଏହି ନିୟମାବଳୀ କୋଠଖମାରର ଅର୍ଥନୈତିକ ସ୍ୱାଧୀନତା ଓ କର୍ମୋଦ୍ୟୋମକୁ ଲକ୍ଷଣୀୟ ଭାବେ ବ୍ୟାପକ କରି ଦେବା ସାଥେ ସାଥେ କୋଠଖମାରର ଗଣତନ୍ତ୍ରକୁ ଅଧିକ କରିଥିଲା । କୋଠଖମାର ଜୀବନରେ ଦେଖାଦେଉଥିବା ମୁଖ୍ୟ ସମସ୍ୟାବଳୀକୁ ସମାଧାନ କରିବାରେ କୋଠଖମାରର ବୈଠକଗୁଡ଼ିକର ଭୂମିକା ଉପରେ ବିଶେଷ ଜୋର ଦିଆଯାଇଥିଲା । ଏହା ଛଡ଼ା ,

କୋଠଖମାରର ସଦସ୍ୟମାନଙ୍କର ସାଧାରଣ ସଭା କୋଠଖମାରର ଚେୟାରମ୍ୟାନ ଓ ପରିଚାଳକ ମଣ୍ଡଳୀକୁ ନିର୍ବାଚନ କରିବା ସାଥେ ସାଥେ ସଂପୃକ୍ତ କର୍ମୀଦଳଗୁଡ଼ିକ ଦ୍ୱାରା ଦଳର ମୁଖ୍ୟ ଓ ଅନ୍ୟ ୟୁନିଟ୍‌ଗୁଡ଼ିକର ମୁଖ୍ୟମାନଙ୍କୁ ନିର୍ବାଚନ କରିବାର ବ୍ୟବସ୍ଥା କରାଗଲା । ଯେଉଁମାନେ ସେମାନଙ୍କ କାର୍ଯ୍ୟକୁ ସୁଗ୍ଗୁ ରୂପେ ତୁଲାଇ ନପାରିବେ କୋଠଗୃଷୀମାନେ ସେମାନଙ୍କୁ ନିର୍ବାଚିତ କମିଟିରୁ ପ୍ରତ୍ୟାହାର କରି ନେଇ ପାରିବେ କିମ୍ବା ତା କାର୍ଯ୍ୟରୁ ତାକୁ ବରଖାସ୍ତ କରି ଦେଇ ପାରିବେ ।

ସୋଭିଏତ୍ ଜନସାଧାରଣଙ୍କର କ୍ରମବର୍ଦ୍ଧମାନ ଆବଶ୍ୟକତାକୁ ଆଉରି ପୂର୍ଣ୍ଣତର ରୂପେ ପୂରଣ କରିବା ପାଇଁ ଉତ୍ପାଦନ ଦକ୍ଷତାର ଅଭିବୃଦ୍ଧି ଦିଗରେ ଅନୁସୃତ ଆଉ ଏକ ପଥ ସୋଭିଏତ୍ ୟୁନିଅନ୍‌ର ସାଂପ୍ରତିକ ଅର୍ଥନୈତିକ ବିକାଶ ପର୍ଯ୍ୟାୟରେ ଅତୀବ ଗୁରୁତ୍ୱପୂର୍ଣ୍ଣ ଏକ ବୈଶିଷ୍ଟ୍ୟ । ଏହି ପଥଟି ଗୃହୀତ ହୋଇଥିଲା ୧୯୭୧ ମସିହାରେ ଅନୁଷ୍ଠିତ କମ୍ୟୁନିଷ୍ଟ ପାର୍ଟିର ୨୪ତମ କଂଗ୍ରେସରେ ଏବଂ ଏହାକୁ ଆଉରି ବିଶ୍ଳେଷଣ କରାଯାଇଥିଲା ୧୯୭୬ରେ ଅନୁଷ୍ଠିତ ୨୫ତମ କଂଗ୍ରେସ ଓ ୧୯୮୧ରେ ଅନୁଷ୍ଠିତ ୨୬ତମ କଂଗ୍ରେସରେ ।

ଦେଶରେ ଥିବା ବିପୁଳ ପରିମାଣର ଉତ୍ପାଦନୀ ଯନ୍ତ୍ରପାତିର ପୂର୍ଣ୍ଣତମ, ସର୍ବାଧିକ ସୁଦକ୍ଷ ଏବଂ ଫଳପ୍ରଦ ବ୍ୟବହାର ଓ କଞ୍ଚାମାଲ, ଉପକରଣ, ଜାଳେଣି ଓ ଜନସଂଖ୍ୟାର ସର୍ବାଧିକ ହିସାବୀ ଉପଯୋଗ କଥା ଏଥିରେ କୁହାଯାଇଥିଲା । ୨୬ତମ ପାର୍ଟି କଂଗ୍ରେସରେ କେନ୍ଦ୍ରୀୟ କମିଟିର ରିପୋର୍ଟ ଅନୁଯାୟୀ କୁହାଯାଇଥିଲା ଯେ, "ସର୍ବାଧିକ ବୃହତ୍ ଓ ସର୍ବାଧିକ ଜଟିଳ କର୍ତ୍ତବ୍ୟଟିକୁ ଆୟତ୍ତ କରିବାଟା ଏବେ ଆମର ଆୟତ୍ତାଧୀନ । କିନ୍ତୁ ଆର୍ଥିକ ନୀତି ସରଳ ଏବଂ ସଂପୂର୍ଣ୍ଣ ନିୟମିତ ମନେ ହେଉଥିବା ବିଷୟକୁ କବଜାଗତ କରି ନେବାକୁ ଯାଉଛି—ସାମାଜିକ ସଂପତ୍ତି ପ୍ରତି ହିସାବୀ ଦୃଷ୍ଟିକୋଣ ଏବଂ ଆମର ଯାହା କିଛି ଅଛି, ସେସବୁର ସଂପୂର୍ଣ୍ଣ ଏବଂ ଯୁକ୍ତିସମ୍ମତ ଉପଯୋଗ କରିବାର କ୍ଷମତା ।"

ଶିଳ୍ପ କ୍ଷେତ୍ରରେ ଉତ୍ପାଦନର ଆଉରି ଅଭିବୃଦ୍ଧି କେବଳ ନୂତନ ଶିଳ୍ପୋଦ୍ୟୋଗ ନିର୍ମାଣ ଓ ଶ୍ରମିକମାନଙ୍କ ସଂଖ୍ୟା ବୃଦ୍ଧି କରିଆରେ ହାସଲ ନକରି ବୈଜ୍ଞାନିକ ଓ କାରିଗରୀ ପ୍ରଗତିର ତ୍ୱରାନ୍ୱିତକରଣ ଏବଂ ପ୍ରତିଷ୍ଠିତ ଶିଳ୍ପୋଦ୍ୟୋଗଗୁଡ଼ିକର ନୂତନ ଯନ୍ତ୍ରାୟନ ଓ ସଂପ୍ରସାରଣ ଏବଂ ଉତ୍ପାଦନଶୀଳତାର ଅଭିବୃଦ୍ଧି ଦ୍ୱାରା କରିବାକୁ ହେଲା । କମ୍ୟୁନିଷ୍ଟ ପାର୍ଟିର ୨୬ତମ କଂଗ୍ରେସରେ କୁହାଯାଇଥିଲା ଅର୍ଥନୀତିର ଦ୍ରୁତ ଅଭିବୃଦ୍ଧି ସ୍ୱଳ୍ପ ବ୍ୟୟ ଓ ଅଳ୍ପ ସମୟ ଦ୍ୱାରା ଅଧିକ ଫଳ ଲାଭ ପାଇଁ ସବୁକିଛି କରିବାକୁ ହେବ : ବୈଜ୍ଞାନିକ ଓ କାରିଗରୀ ଅଗ୍ରଗତିକୁ ତ୍ୱରାନ୍ୱିତ କରିବା ଓ ସାମାଜିକ ଉତ୍ପାଦନର ଗଢ଼ଣକୁ, ଯୋଜନା, ପରିଚାଳନା ଏବଂ ଅର୍ଥନୀତିର ମାନକୁ ଉନ୍ନତ କରିବା ।

କମ୍ୟୁନିଜମ୍‌ର ବୈଷୟିକ ତଥା କାରିଗରୀ ଭିତ୍ତି ନିର୍ମିତ ହେଉଛି ଏପରି ଏକ ସମୟରେ, ଯେତେବେଳେ ସୋଭିଏତ୍ ୟୁନିଅନ୍ ଏବଂ ବିଶ୍ୱର ଅନ୍ୟତ୍ର ବ୍ୟାପକ ଆକାରରେ ବୈଜ୍ଞାନିକ ଏବଂ କାରିଗରୀ ବିପ୍ଳବ ସଂଘଟିତ ହୋଇ ଚାଲିଛି । ଏହା ପ୍ରତିଫଳିତ ହୋଇଥିଲା ପାରମାଣବିକ ଶକ୍ତିର ବ୍ୟାପକ ଶାନ୍ତିପୂର୍ଣ୍ଣ ଉପଯୋଗ ମଧ୍ୟରେ, ଇଂଜିନିୟରିଂ, ଯନ୍ତ୍ରପାତି ଉତ୍ପାଦନ, ରେଡିଓ ଇଲେକ୍‌ଟ୍ରନିକ, ରେଡିଓ ଇଂଜିନିୟରିଂ, ରସାୟନ, ତୈଳ, ଗ୍ୟାସ ଆଦି ଭଳି ଅତୀବ ଅଗ୍ରଗାମୀ ଶିଳ୍ପସମୂହର ବିକାଶ ଉପରେ ଅଗ୍ରାଧିକାର ପ୍ରଦାନରେ, ସାମାଜିକ ଶ୍ରମର ଉତ୍ପାଦନଶୀଳତାର ଦ୍ରୁତ ଅଭିବୃଦ୍ଧି ନିମିତ୍ତ ଅତୀବ ଜଟିଳ ଏବଂ ସୁଦକ୍ଷ କାରିଗରୀ ପଦ୍ଧତିର ପ୍ରବର୍ତ୍ତନ ମଧ୍ୟରେ, ଉତ୍ପାଦନର ପରିଚାଳନା ଓ ସଂଗଠନ କ୍ଷେତ୍ରରେ କମ୍ପ୍ୟୁଟରର ବ୍ୟାପକ ବ୍ୟବହାର ମଧ୍ୟରେ । ଜାତୀୟ ଉତ୍ପାଦନର ବିଭିନ୍ନ କ୍ଷେତ୍ରକୁ ବିଜ୍ଞାନ ଅଧିକରୁ ଅଧିକ ପ୍ରଭାବିତ କରି ଚାଲିଥିଲା । ବୈଜ୍ଞାନିକ ଓ କାରିଗରୀ ବିପ୍ଳବର ସୁକୃତିରାଜିକୁ ଜାତୀୟ ଅର୍ଥନୀତିରେ ପୂର୍ଣ୍ଣ ଭାବେ ଉପଯୋଗ କରିବାକୁ ସମ୍ଭବ କରିବା ଆବଶ୍ୟକ । ଉତ୍ପାଦନର ଉପାୟ ଉପକରଣ ଉପରେ ସର୍ବସାଧାରଣ ମାଲିକାନା ଓ ଯୋଜନାବଦ୍ଧ ଅର୍ଥନୀତି ଉପରେ ଭିତ୍ତି କରି ସମାଜବାଦୀ ବ୍ୟବସ୍ଥା ଏହି କର୍ତ୍ତବ୍ୟ ପାଳନକୁ ସର୍ବାଧିକ ସମ୍ଭାବନା ଯୋଗାଇ ଦେଇଥିଲା । ତେଣୁ କରି କମ୍ୟୁନିଷ୍ଟ ପାର୍ଟି ସମାଜବାଦୀ ଅର୍ଥନୈତିକ ବ୍ୟବସ୍ଥାର ସୁବିଧା ସୁଯୋଗକୁ ବୈଜ୍ଞାନିକ ଓ କାରିଗରୀ ବିପ୍ଳବର ସୁକୃତିରାଜି ସହିତ ଆଙ୍ଗିକ ଭାବେ ସମ୍ମିଳିତ କରିବାର ଲକ୍ଷ୍ୟ ଉପସ୍ଥାପିତ କରିଥିଲା ।

ବୃହତ୍ତମ ଏକ ଲକ୍ଷ୍ୟ ବା ଉଦ୍ଦେଶ୍ୟ ବୃହତ୍ତମ ଶକ୍ତି ସୃଷ୍ଟି କରିଥାଏ । କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ସୋଭିଏତ୍ ୟୁନିଅନ୍‌ରେ କମ୍ୟୁନିଷ୍ଟ ସମାଜ ନିର୍ମାଣ ପାଇଁ ଉପସ୍ଥାପିତ କର୍ମସୂଚୀକୁ ସୋଭିଏତ୍ ଜନସାଧାରଣ ବିପୁଳ ଉତ୍ସାହର ସହିତ ଗ୍ରହଣ କରିଥିଲେ ଏବଂ ନିର୍ଦ୍ଦିଷ୍ଟ ଓ ବାସ୍ତବବାଦୀ କର୍ତ୍ତବ୍ୟ ହିସାବରେ କର୍ମକ୍ଷେତ୍ରରେ ଉଦ୍ଦୀପନା ଦେଖାଦେଇଥିଲା । ସମାଜବାଦୀ ପ୍ରତିଯୋଗିତା ଆନ୍ଦୋଳନରେ ଏହା ପରିଷ୍କାର ରୂପେ ଦେଶ ସାରା ପ୍ରକାଶ ପାଇଥିଲା । ଏଭଳି ଉଦ୍ଦୀପନା କେବଳ ପ୍ରକାଶ ପାଇଥାଏ, ଯେତେବେଳେ ଏକ ଉନ୍ନତ ସମାଜବାଦୀ ସମାଜ ଏବଂ କମ୍ୟୁନିଷ୍ଟ ସମାଜ ନିର୍ମାଣ କରେ । ଏହି ପ୍ରତିଯୋଗିତା ଆନ୍ଦୋଳନ ସଂପର୍କରେ କମ୍ୟୁନିଷ୍ଟ ପାର୍ଟିର ୨୬ତମ କଂଗ୍ରେସ କହିଥିଲା : "ଏପରି କୌଣସି ଏକ କାରଖାନା, କୋଠଖମାର କିମ୍ବା ନିର୍ମାଣ ସ୍ଥଳୀ ନାହିଁ, ଯିଏକି ଏହାର ଜୀବନଦାୟୀ ନିଶ୍ୱାସକୁ ଅନୁଭବ ନକରିଛି । ଏହି ଦେଶପ୍ରେମୀ ଆନ୍ଦୋଳନର ପରିସର ଥିଲା ଖୁବ୍ ଚିତ୍ତାକର୍ଷକ : ଏବେ ଏଥିରେ ୧୦ କୋଟି ଲୋକ ସଂପୃକ୍ତ । ସାମାଜିକ କର୍ତ୍ତବ୍ୟ, ବୀରତ୍ୱ ଏବଂ କାର୍ଯ୍ୟ ପ୍ରତି ଆନୁଗତ୍ୟର ଦୃଷ୍ଟାନ୍ତମୂଳକ ବୋଧ ଶକ୍ତିକୁ ଏହା ରୂପଦାନ କରିଛି ।"

କମ୍ୟୁନିଜମ୍ ନିର୍ମାଣରେ ବ୍ୟାପକ ଭାବେ ଶ୍ରମଜୀବୀ ଜନସାଧାରଣଙ୍କୁ ସଂପୃକ୍ତ କରିବାର ଉପାୟ ରୂପେ ସମାଜବାଦୀ ପ୍ରତିଯୋଗିତା ଶ୍ରମଜୀବୀମାନଙ୍କର ରାଜନୈତିକ, ଶ୍ରମ ଓ ନୈତିକ ଶିକ୍ଷାର ସ୍କୁଲ ଏବଂ ଅର୍ଥନୈତିକ ଓ ସାମାଜିକ ପ୍ରଗତି ପାଇଁ ଏକ ଶକ୍ତିଶାଳୀ ଉ଼ବିକାଠି ରୂପେ ବିରାଟ ଭୂମିକା ପାଳନ କରି ଚାଲିଛି ।

ଦେଶର ସାମାଜିକ ଏବଂ ରାଜନୈତିକ ଜୀବନରେ ଅତୀବ ଗୁରୁତ୍ୱପୂର୍ଣ୍ଣ ଘଟଣାବଳୀ ଅବିଚଳ ସମାଜବାଦୀ ପ୍ରତିଯୋଗିତାର ବ୍ୟାପକତା ପାଇଁ ଯୋଗାଇ ଦେଇ ଏକ ଶକ୍ତିଶାଳୀ ପ୍ରୋତ୍ସାହନ – କମ୍ୟୁନିଷ୍ଟ ପାର୍ଟିର କଂଗ୍ରେସସମୂହ, ୧୯୭୭ ମସିହାରେ ନୂତନ ସମ୍ବିଧାନ ରଚନା ଓ ଗ୍ରହଣ ଏବଂ ବିଶିଷ୍ଟ ଘଟଣାବଳୀର ବାର୍ଷିକୀ, ଯଥା ଅକ୍ଟୋବର ବିପ୍ଳବ ଓ ସୋଭିଏତ୍ ଶାସନ ପ୍ରତିଷ୍ଠାର ୫୦ତମ (୧୯୬୭) ଓ ୬୦ତମ ବାର୍ଷିକୀ (୧୯୭୭), ସୋଭିଏତ୍ ୟୁନିଅନ୍ ଗଠନର ୫୦ତମ (୧୯୭୨) ଓ ୬୦ତମ (୧୯୮୨) ବାର୍ଷିକୀ, ଭ୍ଲାଦିମିର୍ ଇଲିଚ୍ ଲେନିନ୍‌ଙ୍କର ୧୦୦ତମ (୧୯୭୦) ଓ ୧୧୦ତମ ଜନ୍ମବାର୍ଷିକୀ । ଏହିସବୁ ବିଶିଷ୍ଟ ଘଟଣାବଳୀକୁ ସୋଭିଏତ୍ ଜନସାଧାରଣ କାର୍ଯ୍ୟ କ୍ଷେତ୍ରରେ ନୂତନ କର୍ମୋଦ୍ୟୋମ ଏବଂ ସମାଜବାଦୀ ପ୍ରତିଯୋଗିତା ଆନ୍ଦୋଳନରେ ଆଉରି ଉଦ୍ଦୀପନା ନେଇ ପାଳନ କରିଥିଲେ । ଉଦାହରଣ ସ୍ୱରୂପ, ଲେନିନ୍‌ଙ୍କ ଜନ୍ମ ଶତବାର୍ଷିକୀକୁ ଉପଯୁକ୍ତ ଭାବେ ପାଳନ କରିବା ନିମିତ୍ତ ପ୍ରସ୍ତୁତ କରିବାକୁ ଯାଇ ମସ୍କୋ, ଲେନିନ୍‌ଗ୍ରାଡ୍ ତଥା ଅନ୍ୟାନ୍ୟ କେତେକ ସହରର ବହୁ ଶିଳ୍ପ ଉଦ୍ୟୋଗର କର୍ମୀବୃନ୍ଦ ପ୍ରସ୍ତାବ କରିଥିଲେ, ସୋଭିଏତ୍ ୟୁନିଅନ୍ ସାରା ଏକ ଲେନିନ୍‌ବାଦୀ କମ୍ୟୁନିଷ୍ଟ ସୁବୋଟ୍‌ନିକ୍, ଅର୍ଥାତ୍ ଶତବାର୍ଷିକୀର ପ୍ରାକ୍‌କାଳରେ ବିନା ବେତନରେ ଗୋଟିଏ ଶନିବାର କାର୍ଯ୍ୟ କରିବାକୁ ଏବଂ ସେଥିରୁ ଯେଉଁ ଅର୍ଥ ମିଳିବ, ତାକୁ ପଞ୍ଚବାର୍ଷିକ ଯୋଜନା ପାଣ୍ଠିକୁ ଦାନ କରି ଦେବାକୁ । ଏହି ପ୍ରସ୍ତାବଟିକୁ ସମସ୍ତ ସୋଭିଏତ୍ ଜନସାଧାରଣ ସମର୍ଥନ କରିଥିଲେ । ତା'ପରେ ଏହି ଭଳି ସୁବୋଟ୍‌ନିକ୍ ପାଳନ କରିବାଟା ଏକ ଚମତ୍କାର ପରମ୍ପରାରେ ପରିଣତ ହୋଇଛି, ଲେନିନ୍‌ଙ୍କ ଜନ୍ମ ବାର୍ଷିକୀର ପ୍ରାକ୍‌କାଳରେ ଲେନିନ୍‌ବାଦୀ ସୁବୋଟ୍‌ନିକ୍ ପ୍ରତ୍ୟେକ ବର୍ଷ ଆୟୋଜନ କରାଯାଇଥାଏ ଏବଂ ଦେଶର ସମସ୍ତ ଶ୍ରମଜୀବୀ ଜନସାଧାରଣ ଏଥିରେ ଅଂଶଗ୍ରହଣ କରିଥାନ୍ତି । ଏଥିରୁ ଅର୍ଜିତ ଅର୍ଥ ଖର୍ଚ୍ଚ ହୋଇଥାଏ ସ୍ୱାସ୍ଥ୍ୟ ରକ୍ଷା କେନ୍ଦ୍ର, ସ୍କୁଲ ଏବଂ ଜନସାଧାରଣଙ୍କର ଅନ୍ୟାନ୍ୟ ଆବଶ୍ୟକତା ପୂରଣ ଦିଗରେ ।

୧୯୭୧ ମସିହା ସେପ୍‌ଟେମ୍ବର ମାସରେ କମ୍ୟୁନିଷ୍ଟ ପାର୍ଟି କେନ୍ଦ୍ରୀୟ କମିଟି "ସମାଜବାଦୀ ପ୍ରତିଯୋଗିତା ସଂଗଠନର ଆଉରି ଅଧିକ ବିକାଶ ସାଧନ" ଶୀର୍ଷକ ଏକ ପ୍ରସ୍ତାବ ଗ୍ରହଣ କରିଥିଲା । ଏହି ପ୍ରସ୍ତାବଟି ପ୍ରତିଯୋଗିତାକୁ ବ୍ୟାପକ କରିବା ଓ ଏହାର ଦକ୍ଷତାକୁ ବୃଦ୍ଧି କରିବାରେ ବିଶିଷ୍ଟ ଭୂମିକା ପାଳନ କରିଥିଲା ।

ନୂତନ, ଉଚ୍ଚ ଦକ୍ଷତାସଂପନ୍ନ ସମାଜବାଦୀ ପ୍ରତିଯୋଗିତାର ରୂପସମୂହର ଉଦ୍‌ଭବ

ଘଟିଥିଲା । ବିକଶିତ ସମାଜବାଦ କାଳରେ ଶ୍ରମ ପ୍ରତି କମ୍ୟୁନିଷ୍ଟ ଦୃଷ୍ଟିକୋଣ ପାଇଁ ଆନ୍ଦୋଳନ ଖୁବ୍ ବୈଶିଷ୍ଟ୍ୟପୂର୍ଣ୍ଣ ହୋଇ ଆସିଥିଲା । ଏହାର ଉଦ୍ଭବ ଘଟିଥିଲା ୧୯୫୦ ଦଶକରେ ଏବଂ ୧୯୬୦ ଦଶକ ଓ ୧୯୭୦ ଦଶକରେ ଦ୍ରୁତ ଗତିରେ ବିକାଶ ଲାଭ କରିଥିଲା । ଏହି ଆନ୍ଦୋଳନର ଅର୍ଥ ତା'ର ଅଂଶଗ୍ରହଣକାରୀମାନଙ୍କ ଦ୍ୱାରା ସେମାନଙ୍କ ଉତ୍ପାଦନ ଲକ୍ଷ୍ୟର ପରିପୂରଣ ଓ ସେସବୁକୁ ଅତିକ୍ରମ କରିଯିବା ପାଇଁ ପ୍ରତିଜ୍ଞା ମଧ୍ୟରେ କେବଳ ନିହିତ ନଥାଏ, ଏହା ନିହିତ ଥାଏ ସେମାନଙ୍କ ସାଧାରଣ ଶିକ୍ଷା, ବୃତ୍ତିଗତ ଏବଂ ସାଂସ୍କୃତିକ ସ୍ତର, ଦୈନନ୍ଦିନ ଜୀବନରେ ସୁଆଚରଣ ଏବଂ ଯେଉଁମାନେ ପଛରେ ପଡ଼ି ଯାଇଥାନ୍ତି, ସେମାନଙ୍କୁ ସାହାଯ୍ୟ କରିବା ମଧ୍ୟରେ ନିହିତ ଥାଏ ।

ଏହି ଆନ୍ଦୋଳନର ଏକ ଜ୍ୱଳନ୍ତ ଉଦାହରଣ ହେଲେ ଭାଲେଣ୍ଟିନା ଗାଗାନୋଭାଙ୍କ ନେତୃତ୍ୱରେ ପରିଚାଳିତ କର୍ମୀଦଳଟିର କର୍ମୋଦ୍ୟୋମ । ଏମାନେ ଭିସ୍ନି ଭୋଲୋଚେକ୍ ସୂତାକଳରେ କାମ କରୁଥିଲେ । ଭାଲେଣ୍ଟିନା ତାଙ୍କର ଉଚ୍ଚ ମଜୁରି ପାଉଥିବା ସେରା କର୍ମୀଦଳଟିକୁ ଛାଡ଼ି ଦେଇ ଏକ ପଛୁଆ କର୍ମୀଦଳରେ ଯୋଗ ଦେଇ ସ୍ୱଳ୍ପକାଳ ମଧ୍ୟରେ ଏହାକୁ ଆଗେଇ ନେଇଥିଲେ । ଭାଲେଣ୍ଟିନାଙ୍କର ଏହି ଦୃଷ୍ଟାନ୍ତକୁ ଅନୁସରଣ କରିଥିଲେ ଶିଳ୍ପ, ଯାନବାହନ ଏବଂ କୃଷି କ୍ଷେତ୍ରର ହଜାର ହଜାର ଶ୍ରେଷ୍ଠ ଶ୍ରମିକ ।

ଶ୍ରମ ପ୍ରତି କମ୍ୟୁନିଷ୍ଟ ଆନ୍ଦୋଳନରେ ଇଂଜିନିୟର ଏବଂ କାରିଗରମାନେ ମଧ୍ୟ ଯୋଗ ଦେଇଥିଲେ । ସେମାନେ ସ୍ୱତଃପ୍ରଣୋଦିତ ହୋଇ ଡିଜାଇନ୍ ଏବଂ କାରିଗରୀ ଅଫିସ୍, ଅର୍ଥନୈତିକ ବିଶ୍ଳେଷଣକାରୀ ଟିମ୍, କାରିଗରୀ ତଥ୍ୟ ପ୍ରଦାନକାରୀ ଅଫିସ୍, କାରିଗରୀ ଅଗ୍ରଗତିର ଗଣ ବିଶ୍ୱ ବିଦ୍ୟାଳୟ ଏବଂ ଅନ୍ୟାନ୍ୟ ସୃଜନମୂଳକ ସଂଗଠନସମୂହ ପ୍ରତିଷ୍ଠା କରିଥିଲେ । ସେମାନେ ସେମାନଙ୍କ ଫୁରସତ୍ ସମୟରେ ବିନା ବେତନରେ କାର୍ଯ୍ୟ କରୁଥିଲେ, ଯେଉଁସବୁ ଶ୍ରମିକମାନେ ନବାୟନର ପ୍ରସ୍ତାବ ଦେଉଥିଲେ ବା ସେମାନଙ୍କ ପରାମର୍ଶକୁ କାର୍ଯ୍ୟକାରୀ କରିବାକୁ କୌଣସି ଉଦ୍ଭାବନ କରୁଥିଲେ, ଶ୍ରମିକମାନଙ୍କ ଦକ୍ଷତା ବୃଦ୍ଧି ପାଇଁ ଶ୍ରମିକମାନଙ୍କୁ ସାହାଯ୍ୟ କରୁଥିଲେ ।

ବିକଶିତ ସମାଜବାଦରେ ବିଶେଷ ଭାବେ ବ୍ୟାପକ ଯେଉଁ ଆନ୍ଦୋଳନଟି ରୂପ ପରିଗ୍ରହ କରିଥିଲା, ତାହା ହେଲା, ଅର୍ଥନୈତିକ ଭାବେ ସମ୍ଭାବ୍ୟ ଉଚ୍ଚତର ବିକଳ୍ପ ପରିକଳ୍ପନା ପାଇଁ କାରଖାନାମାନଙ୍କର କର୍ମୀମାନଙ୍କ ଆନ୍ଦୋଳନଟି । ଏହାର ଉଦ୍ଦେଶ୍ୟ ହେଲା ଉତ୍ପାଦନକୁ ଦ୍ରୁତ ଗତିରେ ବୃଦ୍ଧି କରିବା । ଏହା ଦ୍ୱାରା ଶିଳ୍ପୋଦ୍ୟୋଗମାନଙ୍କର ଆଭ୍ୟନ୍ତରୀଣ ସମ୍ବଳ ଓ ସେସବୁର ଦକ୍ଷତାପୂର୍ଣ୍ଣ ଉପଯୋଗ କରିବା ସମ୍ଭବ ହୋଇଥିଲା ।

"ଶ୍ରମିକ ରିଲେ" ନାମରେ ପରିଚିତ ଏକ ବ୍ୟାପକ ସମାଜବାଦୀ ପ୍ରତିଯୋଗିତା ଆନ୍ଦୋଳନ ମଧ୍ୟ ଉଚ୍ଚ ଅର୍ଥନୈତିକ ଫଳ ପ୍ରଦାନ କରିଥିଲା । ଏହି ଆନ୍ଦୋଳନଟିର ସୂତ୍ରପାତ ହୋଇଥିଲା ମଧ୍ୟ ଏସିଆର ସର୍ବବୃହତ୍ ତାଜିକିସ୍ତାନର ନିଉରେକ୍ ଜଳବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରଟିର ନିର୍ମାଣ କାଳରେ । ଏହି ଜଳବିଦ୍ୟୁତ୍ ଉତ୍ପାଦନ

କେନ୍ଦ୍ରର ନିର୍ମାଣ କାର୍ଯ୍ୟରେ ଅଂଶଗ୍ରହଣ କରିଥିବା ବିଭିନ୍ନ ଶିଳ୍ପୋଦ୍ୟୋଗ ଓ ସଂଗଠନସମୂହର କର୍ମୀମାନେ ସମାଜବାଦୀ ପ୍ରତିଯୋଗିତା ସହିତ ଯୁକ୍ତ ଏକ ଚୁକ୍ତିରେ ସ୍ୱାକ୍ଷର କରିଥିଲେ : ଡିଜାଇନର, ନିର୍ମାଣକର୍ମୀ, ଯନ୍ତ୍ରପାତି ଯୋଗାଣକାରୀ, ଆସେମ୍ବ୍ଲି ଏବଂ ଯାନବାହନ କର୍ମୀ, ଆଦି । ଶ୍ରମିକ ରିଲେରେ ଅଂଶଗ୍ରହଣକାରୀ ପ୍ରତ୍ୟେକଟି ଶିଳ୍ପୋଦ୍ୟୋଗର କର୍ମୀମାନେ ଶପଥ ନେଇଥିଲେ ନିର୍ଦ୍ଧାରିତ ସମୟ ପୂର୍ବରୁ କାର୍ଯ୍ୟ ସଂପୂର୍ଣ୍ଣ କରିବାକୁ । ଫଳରେ ନିଉରେକ ଜଳବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରରେ ଉତ୍ପାଦନ କାର୍ଯ୍ୟ ନିର୍ଦ୍ଦିଷ୍ଟ ସମୟର ୧୫ ମାସ ପୂର୍ବରୁ ଆରମ୍ଭ ହୋଇ ତା'ର ଉତ୍ପାଦନ କ୍ଷମତାକୁ ଟପି ଯାଇଥିଲା । ପୃଥିବୀରେ ସର୍ବବୃହତ୍ ଜଳବିଦ୍ୟୁତ୍ ଉତ୍ପାଦନକାରୀ କେନ୍ଦ୍ର ସାଇବେରିଆର ସାୟାନୋ-ଶୁଶେନ୍‌ସ୍କାୟା ଜଳବିଦ୍ୟୁତ୍ କେନ୍ଦ୍ର ନିର୍ମାଣରେ ଶ୍ରମିକ ରିଲେ ସମାଜବାଦୀ ପ୍ରତିଯୋଗିତା ଆନ୍ଦୋଳନ ସାଫଲ୍ୟ ମଣ୍ଡିତ ହୋଇଥିଲା : ନିର୍ଦ୍ଦିଷ୍ଟ ସମୟର ଦୁଇ ବର୍ଷ ପୂର୍ବରୁ ପ୍ରଥମ ୟୁନିଟଟି ଚାଲୁ ହୋଇଥିଲା ।

୧୯୬୦ ଦଶକ ଓ ୧୯୭୦ ଦଶକରେ ବିଭିନ୍ନ ରକମର ସମାଜବାଦୀ ପ୍ରତିଯୋଗିତା ଆନ୍ଦୋଳନ ବ୍ୟାପକ ଆକାରରେ ଜନପ୍ରିୟତା ଲାଭ କରିଥିଲା । ସେସବୁ ମଧ୍ୟରେ ଥିଲା : "କାମରେ ପଛୁଆ ନାହିଁ", "ପ୍ରତ୍ୟେକ ଶ୍ରମିକର ଉଚ୍ଚ ଗୁଣସଂପନ୍ନ କାର୍ଯ୍ୟରୁ ସମଗ୍ର ଶିଳ୍ପୋଦ୍ୟୋଗର ଉଚ୍ଚ ଦକ୍ଷତାକୁ", "ଡିଜାଇନ୍‌ଠାରୁ ଆରମ୍ଭ କରି ଉତ୍ପାଦନ ପର୍ଯ୍ୟନ୍ତ ଗୁଣର ଗ୍ୟାରେଣ୍ଟି", "କମ୍ ଖର୍ଚ୍ଚରେ ଅଧିକ ଉଚ୍ଚ ଗୁଣସଂପନ୍ନ ଉତ୍ପାଦନ", ଶ୍ରମିକମାନଙ୍କର ବ୍ୟକ୍ତିଗତ ଯୋଜନାର ଭିତ୍ତିରେ ଶ୍ରମର ଉତ୍ପାଦନଶୀଳତା ବୃଦ୍ଧି ପାଇଁ ପ୍ରତିଯୋଗିତା, "ଚାରି ଦିନରେ ପାଞ୍ଚ ଦିନର ଲକ୍ଷ୍ୟ ପୂରଣ", ଆଦି ।

ଉନ୍ନତ ସମାଜବାଦ ଓ ବ୍ୟାପକ କମ୍ୟୁନିଷ୍ଟ ବିକାଶର ପର୍ଯ୍ୟାୟରେ ସମାଜବାଦୀ ପ୍ରତିଯୋଗିତାର ବୈଶିଷ୍ଟ୍ୟ ହେଲା ବିଜ୍ଞାନ ଓ କାରିଗରୀର ସାଫଲ୍ୟରାଜିକୁ ଅବିଳମ୍ବେ ଉତ୍ପାଦନ କ୍ଷେତ୍ରରେ ପ୍ରୟୋଗ, ଯନ୍ତ୍ରପାତିର ସୁଦକ୍ଷତାପୂର୍ଣ୍ଣ ବ୍ୟବହାର ଏବଂ ଏସବୁକୁ ଭିତ୍ତି କରି ପ୍ରତ୍ୟେକଟି ଶିଳ୍ପୋଦ୍ୟୋଗ ଓ ପ୍ରତ୍ୟେକ ଶ୍ରମିକର ଉଚ୍ଚତର ଉତ୍ପାଦନଶୀଳତା, ଉଚ୍ଚତର ଦକ୍ଷତା ଗୁଣର ଅଭିବୃଦ୍ଧି ।

ନବାୟନକାରୀ ଏବଂ ଉଦ୍‌ଭାବକମାନଙ୍କ ଆନ୍ଦୋଳନଟି ମଧ୍ୟ ବ୍ୟାପକ ପରିସର ଲାଭ କରିଥିଲା । ଏଥିରେ ସକ୍ରିୟ ଅଂଶଗ୍ରହଣ କରିଥିଲେ ବିଜ୍ଞାନ ତଥା କାରିଗରୀ କ୍ଷେତ୍ରରେ ବୁଦ୍ଧିଜୀବୀ ସଂପ୍ରଦାୟର ଲୋକେ, ବଛାବଛା ଦକ୍ଷ ଶ୍ରମିକବୃନ୍ଦ । ନବାୟନକାରୀ ଓ ଉଦ୍‌ଭାବକମାନଙ୍କର ନିଖିଳ ସୋଭିଏତ୍ ବୈଜ୍ଞାନିକ-କାରିଗରୀ ସମିତିଗୁଡ଼ିକ ଦ୍ୱାରା ସେମାନେ ଐକ୍ୟବଦ୍ଧ । ନିମ୍ନୋକ୍ତ ସଂଖ୍ୟାଗୁଡ଼ିକରୁ ଏହି ଆନ୍ଦୋଳନର ପରିସର ଓ ଫଳପ୍ରଦତା ସଂପର୍କରେ ବିଚାର କରି ହେବ : ବୈଜ୍ଞାନିକ ତଥା କାରିଗରୀ ସମିତିଗୁଡ଼ିକର ପ୍ରାୟ ୮.୫ ନିୟୁତ ସଦସ୍ୟ ଥିଲେ ଏବଂ ପ୍ରାୟ ୨୮୦,୦୦୦ ସୁପାରିଶ୍ ପ୍ରଦାନ କରିଥିଲେ, ବୈଜ୍ଞାନିକ ଓ କାରିଗରିର ଦ୍ରୁତ ଅଗ୍ରଗତିକୁ ସହାୟତା କରିଥିଲେ,

ବିଜ୍ଞାନ ଓ କାରିଗରିର ସର୍ବାଧୁନିକ ସାଫଲ୍ୟରାଜିକୁ ଉତ୍ପାଦନ କ୍ଷେତ୍ରରେ ପ୍ରବର୍ତ୍ତିତ କରିବାରେ, ଉତ୍ପାଦନର ଉଚ୍ଚତର ଦକ୍ଷତା ଓ ଉତ୍ପନ୍ନର ଗୁଣ ବୃଦ୍ଧି କ୍ଷେତ୍ରରେ ଅବଦାନ ରଖିଥିଲେ । ସେହିସବୁ ସୁପାରିଶ୍‌ସମୂହର କାର୍ଯ୍ୟକାରିତା ଫଳରେ ପ୍ରତିବର୍ଷ ୨୦୦୦ ନିୟୁତ ରୁବଲ ମୂଲ୍ୟର ଆୟ ବୃଦ୍ଧି ପାଇଛି । ୧୯୭୦ ଦଶକର ଦ୍ୱିତୀୟାର୍ଦ୍ଧରେ ନିଖିଳ ୟୁନିଅନ୍ ଉଦ୍‌ଭାବକ ଏବଂ ନବାୟନକାରୀ ସମାଜର ସଦସ୍ୟ ସଂଖ୍ୟା ଥିଲା ୯.୬ ନିୟୁତ ଏବଂ ସେମାନଙ୍କ ମଧ୍ୟରୁ ଅର୍ଦ୍ଧେକରୁ ଅଧିକ ଥିଲେ ଶ୍ରମିକ ।

ସମାଜବାଦୀ ପ୍ରତିଯୋଗିତା ଆନ୍ଦୋଳନରେ ବିଜୟୀ ଓ ଉତ୍ପାଦନ କ୍ଷେତ୍ରରେ ଶ୍ରେଷ୍ଠ ଶ୍ରମିକମାନଙ୍କୁ ସୋଭିଏତ୍ ରାଷ୍ଟ୍ର ବ୍ୟାପକ ଭାବେ ପୁରସ୍କାର ପ୍ରଦାନ କରିଥାଏ । ସେମାନେ ଲେନିନ୍ ଅର୍ଡର, ଶ୍ରମର ଲାଲ ପତାକା, ଶ୍ରମ ଗୌରବ ଅର୍ଡର ସମେତ ଅନ୍ୟାନ୍ୟ ପୁରସ୍କାର, ନିସ୍ୱାର୍ଥ ଶ୍ରମ ପାଇଁ ପଦକ, ଶ୍ରମ ବୈଶିଷ୍ଟ୍ୟ ପଦକ ଏବଂ ରାଷ୍ଟ୍ରୀୟ ପୁରସ୍କାରସମୂହ ଲାଭ କରିଥିଲେ । ସବୁଠାରୁ ଶ୍ରେଷ୍ଠ ଶ୍ରମିକଙ୍କୁ ପ୍ରଦାନ କରାଯାଇଥାଏ ସମାଜବାଦୀ ଶ୍ରମ ବୀର ଉପାଧି, ଲେନିନ୍ ଅର୍ଡର ଏବଂ ହାତୁଡ଼ି ଦା ଯୁକ୍ତ ସ୍ୱର୍ଣ୍ଣ ପଦକ ।

କମ୍ୟୁନିଷ୍ଟ ପାର୍ଟି, ସୋଭିଏତ୍ ସରକାରଙ୍କର ବ୍ୟାପକ ରାଜନୈତିକ, ସାଂଗଠନିକ ଏବଂ ଅର୍ଥନୈତିକ କ୍ରିୟାକଳାପ, ସୋଭିଏତ୍ ଜନସାଧାରଣଙ୍କର ନିଷ୍ଠାପୂର୍ଣ୍ଣ ଶ୍ରମ, ନିୟୁତ ନିୟୁତ ଶ୍ରମଜୀବୀମାନଙ୍କ ମଧ୍ୟରେ ସମାଜବାଦୀ ପ୍ରତିଯୋଗିତାର ଫଳପ୍ରଦତା ବୃଦ୍ଧି ଏବଂ ଜାତୀୟ ଅର୍ଥନୀତିରେ ବିପୁଳ ପରିମାଣର ପୁଞ୍ଜି ନିୟୋଗ (୧୯୬୬-୧୯୮୦ରେ ପ୍ରାୟ ୧୫୦୦,୦୦୦ ନିୟୁତ ରୁବଲ) – ଏସବୁ ମିଳି ସୋଭିଏତ୍ ଅର୍ଥନୀତିର ଆଉରି ଅଧିକ ଉନ୍ନତି ଏବଂ କମ୍ୟୁନିଜମ୍‌ର ବୈଷୟିକ ଓ କାରିଗରୀ ଭିତ୍ତି ନିର୍ମାଣକୁ ପୂର୍ବନିର୍ଦ୍ଧାରିତ କରି ଦେଇଥିଲା । ଏହି ୧୫ବର୍ଷ ମଧ୍ୟରେ ମୋଟ ସାମାଜିକ ଉତ୍ପାଦନ, ଅର୍ଥାତ୍, ଜନସାଧାରଣଙ୍କ ଦ୍ୱାରା ସୃଷ୍ଟ ସମସ୍ତ ବୈଷୟିକ ସଂପଦରେ ବୃଦ୍ଧି ଘଟିଥିଲା ଶତକଡ଼ା ୧୫୦ ଭାଗ ଏବଂ ଶିଳ୍ପ ଉତ୍ପନ୍ନ ପ୍ରାୟ ୨୦୦ ଭାଗ ।

୧୯୬୬-୧୯୮୦ ମଧ୍ୟରେ ବିପୁଳ ପରିମାଣର ପୁଞ୍ଜି ନିର୍ମାଣ କାର୍ଯ୍ୟ ମଧ୍ୟ ସଂପନ୍ନ ହୋଇଥିଲା । ପ୍ରାୟ ୫୦୦୦ ବଡ଼ ବଡ଼ ଶିଳ୍ପ ଉଦ୍ୟୋଗ ଏବଂ ବହୁ କର୍ମଶାଳା, ଉତ୍ପାଦନ ଲାଇନ୍ ଏହି ସମୟରେ ଉତ୍ପାଦନ ଆରମ୍ଭ କରିଥିଲେ । ମୋଟ ଉପରେ, ୧୯୮୦ ଦଶକର ପ୍ରାରମ୍ଭରେ ସୋଭିଏତ୍ ଶିଳ୍ପର ଥିଲା ପ୍ରାୟ ୪୪,୦୦୦ଟି ଉତ୍ପାଦନ ଏବଂ ବିଜ୍ଞାନ ଉତ୍ପାଦନ ସଂଘ ଓ ଶିଳ୍ପୋଦ୍ୟୋଗ । କାର୍ଯ୍ୟରତ ଶିଳ୍ପୋଦ୍ୟୋଗଗୁଡ଼ିକର କାରିଗରୀ ପୁନଃସଜ୍ଜା ଏବଂ ସଂପ୍ରସାରଣ ମଧ୍ୟ ବ୍ୟାପକ ଆକାରରେ କାର୍ଯ୍ୟକାରୀ ହୋଇଥିଲା ।

ସମସ୍ତ ଶିଳ୍ପରେ, ବିଶେଷ କରି ସମଗ୍ର ଜାତୀୟ ଅର୍ଥନୀତି ଏବଂ ବୈଜ୍ଞାନିକ ଓ କାରିଗରୀ ବିକାଶକୁ ନିର୍ଦ୍ଧାରିତ କରୁଥିବା ଶିଳ୍ପସମୂହରେ ନୂତନ ଉତ୍ପାଦନୀ କ୍ଷମତା ସୃଷ୍ଟି

କରାଯାଇଥିଲା । ମୋଟ ୧୫୫ ନିୟୁତ କିଲୋୱାଟ୍ ଶକ୍ତିର ନୂତନ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରମାନ ନିର୍ମିତ ହୋଇ ସେଥିରେ ଉତ୍ପାଦନ ଆରମ୍ଭ ହୋଇଥିଲା । ଏହି ପରିମାଣଟି ଥିଲା ୧୯୬୫ ମସିହାର ମୋଟ ଉତ୍ପାଦନ ଠାରୁ ପ୍ରାୟ ୪୦ ନିୟୁତ କିଲୋୱାଟ୍ ଅଧିକ । ୧୯୮୦ ମସିହାରେ ସୋଭିଏତ୍ ୟୁନିଅନ୍‌ର ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରଗୁଡ଼ିକର ମୋଟ ଉତ୍ପାଦନୀ କ୍ଷମତା ଥିଲା ୨୭୦ ନିୟୁତ କିଲୋୱାଟ୍ । କେତୋଟି ପାରମାଣବିକ ଶକ୍ତି ଉତ୍ପାଦନକାରୀ କେନ୍ଦ୍ରରେ ଉତ୍ପାଦନ ଆରମ୍ଭ ହୋଇଥିଲା । ସାରା ଦେଶବ୍ୟାପୀ ସୃଷ୍ଟି ହୋଇଥିଲା ବିଶ୍ୱର ସର୍ବବୃହତ୍ ଏକ ଏକକ ଶକ୍ତି ସରବରାହ ବ୍ୟବସ୍ଥା । ଏହାକୁ ଗୋଟିଏ କେନ୍ଦ୍ରରୁ ନିୟନ୍ତ୍ରିତ କରାଗଲା ଏବଂ ୨୨ କୋଟି ଲୋକ ଅଧ୍ୟୁଷିତ ଅଞ୍ଚଳକୁ ଏହା ଶକ୍ତି ଯୋଗାଇଲା ।

ସେଇସବୁ ବର୍ଷମାନଙ୍କରେ ନୂଆ ଏକ ବଡ଼ ଧରଣର ଜାଳେଣି ଏବଂ ଶକ୍ତିର ଭିତ୍ତି ନିର୍ମିତ ହୋଇଥିଲା ପଶ୍ଚିମ ସାଇବେରିଆର ଅତୀବ କଠିନ ଏବଂ କଠୋର ପ୍ରାକୃତିକ ଅବସ୍ଥାରାଜି ଭିତରେ । ଏହି ଭିତ୍ତିଟି ହେଲା ସୋଭିଏତ୍ ୟୁନିଅନ୍‌ର ତୈଳ ଏବଂ ଗ୍ୟାସ୍ ଉତ୍ତୋଳନର ମୁଖ୍ୟ କେନ୍ଦ୍ର । ଦେଶରେ ଉତ୍ପାଦିତ ତୈଳର ପ୍ରତିଟି ଦ୍ୱିତୀୟ ଟନ୍ ଏବଂ ଗ୍ୟାସର ପ୍ରତି ତୃତୀୟ ଘନ ମିଟର ଉତ୍ପାଦିତ ହେଲା ଏହି ଅଞ୍ଚଳରୁ । ଜାଲ ଭଳି ବିପୁଳ ପରିମାଣର ତୈଳ ଏବଂ ଗ୍ୟାସ୍‌ବାହୀ ପାଇପ୍ ଲାଇନ ଦେଶ ସାରା ବିଛେଇ ଦିଆଗଲା । ପୃଥିବୀର ସର୍ବବୃହତ୍ ଲୁହା ତରଳାଇବା ଚୁଲୀ, ଇସ୍‌ପାତ ତିଆରି କରିବାର କାରଖାନା, ରୋଲିଂ ମିଲ୍ ଏବଂ କନ୍‌ସେଣ୍ଟ୍ରିଂ ଶିଳ୍ପ ସମାହାରମାନ ଧାତୁ ଶିଳ୍ପ କ୍ଷେତ୍ରରେ ମୁଣ୍ଡଟେକି ଉଠିଲା । ଇଂଜିନିୟରିଂ ଶିଳ୍ପ କ୍ଷେତ୍ରରେ ମଟରଗାଡ଼ି ଓ ଲରି ନିର୍ମାଣକାରୀ ବଡ଼ ବଡ଼ କାରଖାନା, ପାରମାଣବିକ ଶକ୍ତି ଉତ୍ପାଦନ ପାଇଁ ପାରମାଣବିକ ରିଆକ୍ଟର ଏବଂ ଜାତୀୟ ଅର୍ଥନୀତିର ବିଭିନ୍ନ ଶାଖା ପାଇଁ ମେସିନ୍ ତଥା ଯନ୍ତ୍ରପାତି ପାଇଁ କାରଖାନାମାନ ଗଢ଼ି ଉଠିଲା । ବହୁ ରାସାୟନିକ ତଥା ପେଟ୍ରୋ-ରସାୟନ କାରଖାନା, ଲଘୁ ଓ ଖାଦ୍ୟ ସାମଗ୍ରୀ ଉତ୍ପାଦନକାରୀ ଉଦ୍ୟୋଗ ମଧ୍ୟ ଗଢ଼ାଗଲା ।

ଏହି ସମୟରେ ବୃଦ୍ଧି ପାଇଥିବା ଶିଳ୍ପୋତ୍ପାଦନର ପରିମାଣ ନିମ୍ନ ସାରଣୀରୁ ଜାଣି ହୁଏ (ପୃ: ୩୩୦ ଦ୍ରଷ୍ଟବ୍ୟ) ।

୧୯୮୦ ଦଶକର ପ୍ରାରମ୍ଭରେ ସୋଭିଏତ୍ ୟୁନିଅନ୍ ଦୈନନ୍ଦିନ ୩,୫୦୦ ନିୟୁତ କିଲୋୱାଟ ବିଜୁଳି; ୧,୬ ନିୟୁତ ଟନ୍ ତୈଳ; ୨ ନିୟୁତ ଟନ୍ କୋଇଲା; ୧,୨୦୦ ନିୟୁତ ଘନ ମିଟର ଗ୍ୟାସ; ୪୦୦,୦୦୦ ଟନ୍‌ରୁ ଅଧିକ ଇସ୍‌ପାତ; ୬୦୦ ଧାତୁକଟା ଲେଦ୍ ମେସିନ୍, ୬,୦୦୦ ମୋଟର ଗାଡ଼ି, ୧,୫୦୦ ଟ୍ରାକ୍ଟର, ୩୦ ନିୟୁତ ବର୍ଗମିଟରର କପଡ଼ା ଉତ୍ପାଦନ କରିଥିଲା ।

ସମଗ୍ର ଜାତୀୟ ଅର୍ଥନୀତିରେ ଅର୍ଜିତ କାରିଗରୀ ଅଗ୍ରଗତିକୁ ଉପଯୋଗ କରି ସବୁଠାରୁ ପ୍ରଗତିମୁଖୀ ଶିଳ୍ପ ଶାଖାଗୁଡ଼ିକ ଦ୍ରୁତ ଗତିରେ ବୃଦ୍ଧି ପାଇଥିଲା । ସେସବୁ

| କେଉଁ ଧରଣର ଉତ୍ପାଦନ | ୧୯୬୫ | ୧୯୮୦ |
|---|---|---|
| ଶକ୍ତି ଉତ୍ପାଦନ (ହଜାର କୋଟି କିଲୋଓ୍ବାଟ୍‌ରେ) | ୫୦୬,୨ | ୧.୩୦୦ |
| ତୈଳ (ଘନିଭୂତ ଗ୍ୟାସ ସମେତ) (ନିୟୁତ ଟନ୍‌ରେ) | ୨୪୨,୯ | ୬୦୩ |
| ଗ୍ୟାସ୍ (ହଜାର କୋଟି ଘନମିଟରରେ) | ୧୨୭,୨ | ୪୩୫ |
| କୋଇଲା (ନିୟୁତ ଟନ୍‌ରେ) | ୫୭୭,୬ | ୨୧୬ |
| ଇସ୍‌ପାତ (ନିୟୁତ ଟନ୍‌ରେ) | ୯୧ | ୧୪୮ |
| ଖଣିଜ ସାର (ନିୟୁତ ଟନ୍‌ରେ) | ୩୧,୩ | ୧୦୪ |
| ମଟରଗାଡ଼ି (ହଜାରରେ) | ୬୧୬,୩ | ୨.୧୯୯ |
| ଟ୍ରାକ୍ଟର (ନିୟୁତ ଅଶ୍ୱ ଶକ୍ତିରେ) | ୨୧,୦ | ୪୭,୦ |
| ସମସ୍ତ ପ୍ରକାରର କପଡ଼ା (ହଜାର କୋଟି ବର୍ଗ ମିଟର) | ୭,୫ | ୧୦,୭ |
| ଚମଡ଼ା ଜୋତା (ନିୟୁତ ହଳ) | ୪୮୬ | ୭୪୪ |
| ମାଂସ (ନିୟୁତ ଟନ୍‌ରେ) | ୫,୨ | ୧୫,୧ |
| ରେଫ୍ରିଜେରେଟର (ନିୟୁତରେ) | ୧,୭ | ୫,୯ |
| ଟେଲିଭିଜନ ସେଟ୍ (ନିୟୁତରେ) | ୩,୭ | ୭,୫ |
| ଘଣ୍ଟା (ନିୟୁତରେ) | ୩୦,୬ | ୬୬,୨ |
| ଆସବାବପତ୍ର (ଶହେ କୋଟି ରୁବଲରେ) | ୧,୮ | ୬,୦ |

ମଧ୍ୟରେ ଥିଲା ବୈଦ୍ୟୁତିକ ଶକ୍ତି, ଇଂଜିନିୟରିଂ, ଯନ୍ତ୍ରପାତି, କଂପ୍ୟୁଟର ନିର୍ମାଣ, ଇଲେକ୍‌ଟ୍ରନିକ୍, ରାସାୟନିକ ଏବଂ ପେଟ୍ରୋ-ରସାୟନ ଶିଳ୍ପ ଆଦି । ଏହି ଭାବେ, କେବଳ ୧୯୭୦ ଦଶକ ମଧ୍ୟରେ ଇଂଜିନିୟରିଂ ଶିଳ୍ପରେ ଉତ୍ପାଦନ ବୃଦ୍ଧି ପାଇଥିଲା ଶତକଡ଼ା ୧୭୦ ଭାଗ, ଯନ୍ତ୍ର ନିର୍ମାଣ ଶତକଡ଼ା ୨୩୦ ଭାଗ, କମ୍ପ୍ୟୁଟର ନିର୍ମାଣ ୧୦ ଗୁଣରୁ ଅଧିକ ବୃଦ୍ଧି ପାଇଥିଲା । ରାସାୟନିକ ଏବଂ ପେଟ୍ରୋ-ରାସାୟନିକ ଶିଳ୍ପରେ ଅଭିବୃଦ୍ଧି ଦୁଇ ଗୁଣରୁ ଅଧିକ ହୋଇଥିଲା ।

ପୃଥିବୀରେ ଲୁହା ପଥର, ତୈଳ, କୋଇଲା ଉତ୍ପାଦନ, ଲୌହପିଣ୍ଡ ଓ ଇସ୍‌ପାତ ତରଳାଇବା, ସିମେଣ୍ଟ, ଟ୍ରାକ୍ଟର, ବିଦ୍ୟୁତ୍ ଓ ଡିଜେଲ ଚାଳିତ ରେଳଗାଡ଼ି, ଖଣିଜ ସାର, ପଶମବସ୍ତ୍ର, ଚମଡ଼ା ତିଆରି ଜୋତା, ସଫା ଚିନି, ଲହୁଣି ଏବଂ ଅନ୍ୟାନ୍ୟ

କେତେକ ଜିନିଷ ଉତ୍ପାଦନ କ୍ଷେତ୍ରରେ ସୋଭିଏତ୍ ୟୁନିଅନ୍ ପ୍ରଥମ ସ୍ଥାନ ଅଧିକାର କଲା ।

ସୋଭିଏତ୍ ୟୁନିଅନ୍‌ର ଶିଳ୍ପର ବିକାଶ କ୍ଷେତ୍ରରେ ମଧ୍ୟ କେତେକ ଗୁରୁତ୍ୱପୂର୍ଣ୍ଣ ଗୁଣାତ୍ମକ ପରିବର୍ତ୍ତନ ଘଟିଥିଲା । ଆଧୁନିକ ଯନ୍ତ୍ରପାତି ଦ୍ୱାରା ଏହା ସଜ୍ଜିତ ଏବଂ ପୁନର୍ସଜ୍ଜିତ ହୋଇଥିଲା । ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରଗୁଡ଼ିକୁ ସଜ୍ଜିତ କରାଯାଇଥିଲା ୩୦୦,୦୦୦ ; ୫୦୦,୦୦୦ ଏବଂ ୮୦୦,୦୦୦ କିଲୋଓ୍ୱାଟ୍ ବିଶିଷ୍ଟ ଶକ୍ତିଶାଳୀ ଓ ଦକ୍ଷତାପୂର୍ଣ୍ଣ ୟୁନିଟଗୁଡ଼ିକ ଦ୍ୱାରା । ଏହି ସମୟରେ ପୃଥିବୀରେ ସର୍ବାଧିକ ଶକ୍ତିଶାଳୀ ଟର୍ବାଇନ୍ – ୧.୨ ନିୟୁତ କିଲୋଓ୍ୱାଟସ୍ – ରାଷ୍ଟ୍ରୀୟ କୋଷ୍ଟୋମା ଜିଲା ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରରେ ବିଦ୍ୟୁତ୍ ଉତ୍ପାଦନ ଆରମ୍ଭ ହୋଇଥିଲା । ପାରମାଣବିକ ବୈଦ୍ୟୁତିକ ଶକ୍ତି କେନ୍ଦ୍ରଗୁଡ଼ିକୁ ସଜ୍ଜିତ କରାଯାଇଥିଲା ପୃଥିବୀର ସର୍ବବୃହତ୍ ରିଆକ୍ଟର ଦ୍ୱାରା । ସେସବୁର କ୍ଷମତା ଥିଲା ଦଶ ଲକ୍ଷ କିଲୋଓ୍ୱାଟ । ଉତ୍ପାଦନ କ୍ଷେତ୍ରକୁ ମଧ୍ୟ ବ୍ୟାପକ ଭାବେ ଯନ୍ତ୍ରାୟନ ଏବଂ ସ୍ୱୟଂକରଣ କରାଯାଇଥିଲା । ଉତ୍ପାଦନର ପରିକଳ୍ପନା, ପରିଚାଳନା ଏବଂ ହିସାବ ରକ୍ଷଣାବେକ୍ଷଣରେ କ୍ରମାଧିକ ଭାବେ ସ୍ୱୟଂଚାଳିତ ବ୍ୟବସ୍ଥାର ଉପଯୋଗ କରାଯାଇଥିଲା । ଶିଳ୍ପୋଦ୍ୟୋଗଗୁଡ଼ିକ କ୍ରମଶଃ ସ୍ୱଳ୍ପକାଳ ମଧ୍ୟରେ ଅଧିକ ପରିମାଣରେ ନୂଆ ନୂଆ ମେସିନ୍, ବିଭିନ୍ନ ଯନ୍ତ୍ରପାତି ଏବଂ ଅନ୍ୟାନ୍ୟ ଜିନିଷ ଉତ୍ପାଦନ କରିବାକୁ ଲାଗି ପଡ଼ିଥିଲେ । ଉତ୍ପାଦିତ ଜିନିଷପତ୍ରର ଗୁଣରେ ମଧ୍ୟ ଅଭିବୃଦ୍ଧି ଘଟିଥିଲା । ଦୁନିଆର ମାନ ସହିତ ସମକକ୍ଷ ସର୍ବୋତ୍କୃଷ୍ଟ ସାମଗ୍ରୀସମୂହ ରାଷ୍ଟ୍ରୀୟ ଗୁଣର ମାର୍କା ଲାଭ କରିଥିଲେ । ୧୯୮୦ ମସିହାରେ ଏହିପରି ୮୮,୦୦୦ଟି ଧରଣର ସାମଗ୍ରୀ ଏହି ମାର୍କାରେ ଚିହ୍ନିତ କରାଯାଇଥିଲା ।

ଶିଳ୍ପ କ୍ଷେତ୍ରରେ ଉତ୍ପାଦନଶୀଳତା ବୃଦ୍ଧି ପାଇବାକୁ ଲାଗିଲା : ୮ମ ପଞ୍ଚବାର୍ଷିକ ଯୋଜନା କାଳରେ ଶିଳ୍ପୋତ୍ପାଦନରେ ମୋଟ ଅଭିବୃଦ୍ଧିର ଶତକଡ଼ା ୭୩ ଭାଗ ମିଳିଥିଲା ଉଚ୍ଚତର ଉତ୍ପାଦନଶୀଳତା ମାଧ୍ୟମରେ, ୯ମ ପଞ୍ଚବାର୍ଷିକ ଯୋଜନା କାଳରେ ଏହି ପରିମାଣ ଥିଲା ଶତକଡ଼ା ୮୪ ଭାଗ, ୧୦ମ ପଞ୍ଚବାର୍ଷିକ ଯୋଜନା କାଳରେ ଶତକଡ଼ା ୭୫ ଭାଗରୁ ଅଧିକ । ଶିଳ୍ପ କ୍ଷେତ୍ରରେ ଲାଭଜନକତା ମଧ୍ୟ ବୃଦ୍ଧି ପାଇଥିଲା ଏବଂ ଶିଳ୍ପରେ ସଞ୍ଚୟନର ପରିମାଣ ମଧ୍ୟ ବଢ଼ିଥିଲା । ସମସ୍ତ ପ୍ରକାରର ଯାନବାହନରେ ମଧ୍ୟ ଆଉରି ଉନ୍ନତି ଘଟିଥିଲା । ୧୯୬୫-୧୯୮୦ରେ ପ୍ରାୟ ୧୦,୦୦୦ କିଲୋମିଟର ଦେଶର ପଥ ବୃଦ୍ଧି ପାଇଥିଲା । ବୈକାଲ-ଆମୁର – ମୁଖ୍ୟ ରେଳପଥଟିର ସଫଳତାର ସହିତ ନିର୍ମାଣ ଚାଲିଥିଲା । ଦେଶର ପ୍ରାୟ ସମସ୍ତ ରେଳଗାଡ଼ି ବିଦ୍ୟୁତ୍ କିମ୍ବା ଡିଜେଲ ସାହାଯ୍ୟରେ ଚାଲୁଥିଲେ ।

ମାଲପତ୍ର ବହିବାରେ ପାଇପ୍ ଲାଇନ ଏବଂ ଜଳ ଆଉ ମୋଟର ଯାନବାହନର ଭୂମିକା ଏବଂ ଯାତ୍ରୀ ପରିବହନରେ ବ୍ୟୋମଯାନର ଭୂମିକା ହଠାତ୍ ବୃଦ୍ଧି ପାଇଥିଲା ।

ସମସ୍ତ ପ୍ରକାରର ପରିବହନ ବ୍ୟବସ୍ଥାକୁ ନୂଆ ଏବଂ ଆଧୁନିକ ଯନ୍ତ୍ରପାତି ଦ୍ୱାରା ସଜ୍ଜିତ କରାଯାଇଥିଲା । ଏବେ ସୋଭିଏତ୍ ୟୁନିଅନ୍‌ର ଅଛି ଶକ୍ତିଶାଳୀ ପ୍ରଥମ ଶ୍ରେଣୀର ପଣ୍ୟବାହୀ ଜାହାଜ ବ୍ୟବସ୍ଥା ଏବଂ ବିଶ୍ୱରେ ସର୍ବାଧିକ ଶକ୍ତିଶାଳୀ ବରଫ ତାଡ଼ନୀ ଜାହାଜସମୂହ – "ଲେନିନ୍" , "ସିବିର୍" , "ଆର୍କଟିକା" । ୧୯୭୭ ମସିହାରେ ଅଗଷ୍ଟ ମାସରେ ନୌପରିବହନର ବିଶ୍ୱ ଇତିହାସରେ ପ୍ରଥମ ଥର ପାଇଁ "ଆର୍କଟିକା" ଉତ୍ତର ମହାସାଗରର କଠିନ ବରଫକୁ ଭେଦ କରି ଉତ୍ତର ମେରୁରେ ପହଞ୍ଚି ପାରିଥିଲା ।

ଆଧୁନିକ ଜେଟ୍ ଏବଂ ଟର୍ବୋଜେଟ୍ ବ୍ୟୋମଯାନ ଦ୍ୱାରା ସଜ୍ଜିତ ହୋଇ ସୋଭିଏତ୍ ୟୁନିଅନ୍‌ର ଅସାମରିକ ବିମାନ ବ୍ୟବସ୍ଥା ଦେଶ ମଧ୍ୟସ୍ଥ ୩୬୦୦ ସହର ଓ ଗ୍ରାମକୁ ବିଦେଶର ୧୦୫ଟି ସହରକୁ ସଂଯୁକ୍ତ କରୁଛି ।

କୃଷିର ବିକାଶ କ୍ଷେତ୍ରରେ ୧୯୬୫-୧୯୮୦ ମସିହା ମଧ୍ୟରେ ଏକ ବିରାଟ ଅଗ୍ରପଦକ୍ଷେପ ଅର୍ଜିତ ହୋଇଛି । ଏହିସବୁ ବର୍ଷମାନଙ୍କରେ କୃଷିର ବୈଷୟିକ ଏବଂ କାରିଗରି ଭିତ୍ତି କିପରି ଦୃଢ଼ ହୋଇଥିଲା , ସେ ସଂପର୍କରେ ଇତିପୂର୍ବରୁ ବର୍ଣ୍ଣନା କରାଯାଇଛି । ଏହି ସମୟରେ ରସାୟନ ବିଦ୍ୟାର ସାଫଲ୍ୟରାଜିକୁ ପ୍ରୟୋଗ କରାଯାଇଥିଲା , ଫସଲ ଫଳନ ଓ ଅମଳ ଆଦି କାର୍ଯ୍ୟରେ ବ୍ୟାପକ ଭାବେ ଯନ୍ତ୍ରାୟନ ଏବଂ ଶିଳ୍ପାୟନ କରାଯାଇଥିଲା ଏବଂ ପଶୁପାଳନରେ ଅଭିବୃଦ୍ଧି ସାଧନ କରାଯାଇଥିଲା । ବ୍ୟାପକ ଆକାରରେ ଭୂମି ଉନ୍ନୟନ ମଧ୍ୟ କରାଯାଇଥିଲା । ଏହିସବୁ ବର୍ଷମାନଙ୍କରେ କୃଷିରେ ନିଯୁକ୍ତ ଲୋକଙ୍କର ସଂଖ୍ୟା ଅନେକ ପରିମାଣରେ କମିଯାଇଥିଲେ ମଧ୍ୟ କୃଷିର ଯନ୍ତ୍ରାପନକରଣ ହେତୁ କୃଷି ଉତ୍ପାଦନରେ ପରିମାଣ ବୃଦ୍ଧି ପାଇଥିଲା । ଏହି ଭାବେ , ଦଶମ ପଞ୍ଚବାର୍ଷିକ ଯୋଜନା କାଳରେ (୧୯୭୬-୧୯୮୦) ଦେଶରେ ୩ ବର୍ଷର ପ୍ରତିକୂଳ ଜଳବାୟୁ ସତ୍ତ୍ୱେ ବାର୍ଷିକ ହାରାହାରି ଶସ୍ୟ ଉତ୍ପାଦନ ୨୦ କୋଟି ୫୦ ଲକ୍ଷ ଟନ୍ ହୋଇଥିଲା । ଏହି ପରିମାଣଟି ଥିଲା ୧୯୬୧-୧୯୬୫ ମସିହାରେ ୧୩ କୋଟି ଟନ୍ । ଯେଉଁସବୁ ବର୍ଷମାନଙ୍କରେ ଜଳବାୟୁ ଅନୁକୂଳ ଥିଲା , ସେସବୁ ବର୍ଷରେ ଏହାଠାରୁ ଅଧିକ ପରିମାଣରେ ଫସଲ ଫଳନ ଘଟିଥିଲା : ୧୯୭୬ ମସିହାରେ ୨୨ କୋଟି ୪୦ ଲକ୍ଷ ଟନ୍ ଏବଂ ୧୯୭୮ ମସିହାରେ ୨୩ କୋଟି ୭୦ ଲକ୍ଷ ଟନ୍ । କାର୍ପାସ ଉତ୍ପାଦନ ମଧ୍ୟ ଖୁବ୍ ବୃଦ୍ଧି ପାଇଥିଲା : ୧୯୮୦ ମସିହାରେ ପ୍ରାୟ ୧୦ କୋଟି ଟନ୍‌ର କାର୍ପାସ ଉତ୍ପନ୍ନ ହୋଇଥିଲା । ଅନ୍ୟାନ୍ୟ ଶସ୍ୟ ଏବଂ ପଶୁପାଳନରେ ଯଥେଷ୍ଟ ଅଭିବୃଦ୍ଧି ଘଟିଥିଲା ।

କମ୍ୟୁନିଜମ୍‌ର ବୈଷୟିକ ଏବଂ କାରିଗରୀ ଭିତ୍ତି ନିର୍ମାଣ କ୍ଷେତ୍ରରେ ସୋଭିଏତ୍ ଜନସାଧାରଣ ବିପୁଳ ସାଫଲ୍ୟ ଅର୍ଜନ କରିଥିଲେ ।

ତା ସତ୍ତ୍ୱେ ପାର୍ଟି ବର୍ତ୍ତମାନର ଭୁଲତ୍ରୁଟି ତଥା ଅସମାହିତ ସମସ୍ୟାବଳୀ ପ୍ରତି ଆଖି ବୁଜି ଦେଇ ନାହିଁ । ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟି ୨୬ତମ କଂଗ୍ରେସରେ ପ୍ରଦତ୍ତ ରିପୋର୍ଟରେ କୁହାଯାଇଛି , "ସୋଭିଏତ୍ ଜନସାଧାରଣଙ୍କର ପ୍ରକୃତ ଐତିହାସିକ

ସାଫଲ୍ୟରାଜି ପ୍ରତି ସାଧୁବାଦ ଜଣାଇବା ସଙ୍ଗେ ସଙ୍ଗେ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟି ପରିଷ୍କାର ଭାବେ ଭୁଲଭ୍ରାନ୍ତି, ଅସୁବିଧାରାଜି ତଥା ଅସମାହିତ ସମସ୍ୟାବଳୀକୁ ଲକ୍ଷ୍ୟ କରିଛି । ସାମ୍ନାରେ ରଖାଯାଇଥିବା ସମସ୍ତ ଲକ୍ଷ୍ୟ ଅର୍ଜିତ ହୋଇ ପାରିନି । ସମସ୍ତ ମନ୍ତ୍ରଣାଳୟ ଏବଂ ଉଦ୍ୟୋଗ ସେମାନଙ୍କ ଯୋଜନା ପୂରଣ କରି ପାରି ନାହାନ୍ତି । ଜାତୀୟ ଅର୍ଥନୀତି କ୍ଷେତ୍ରରେ ଏବେବି ବାଧା ଏବଂ ଅସାମଞ୍ଜସ୍ୟ ରହିଛି ।" ୨୬ତମ କଂଗ୍ରେସରେ ଉପରି ଉଲ୍ଲିଖିତ ନାସ୍ତିବାଚକ ପ୍ରପଞ୍ଚର କାରଣଗୁଡ଼ିକୁ ଉଦ୍‌ଘାଟନ କରି ସେସବୁକୁ ସମାଧାନ କରିବାର ଉପାୟସମୂହ ନିର୍ଦ୍ଧାରଣ କରାଯାଇଥିଲା ।

ବୁର୍ଜୁଆ ଅର୍ଥନୀତିର ବିକାଶର ଏକ ମାତ୍ର ଲକ୍ଷ୍ୟ ହେଲା ପୁଞ୍ଜିପତିମାନଙ୍କ ଦ୍ୱାରା ସର୍ବାଧିକ ଲାଭ ହାସଲ କରିବା କିନ୍ତୁ ସୋଭିଏତ୍ ଅର୍ଥନୀତିର ମୁଖ୍ୟ ଲକ୍ଷ୍ୟଟି ହେଲା ଲୋକମାନଙ୍କର କ୍ରମାଧିକ ଭାବେ ବୃଦ୍ଧି ପାଉଥିବା ଆବଶ୍ୟକତାର ସର୍ବାଧିକ ସମ୍ଭାବ୍ୟ ପରିପୂରଣ । ୨୬ତମ ପାର୍ଟି କଂଗ୍ରେସରେ ଦର୍ଶାଯାଇଥିଲା : "ଅର୍ଥନୀତି ପ୍ରତି ପାର୍ଟିର ଅଭିମୁଖ୍ୟ, ରାଜନୈତିକ ଅଭିମୁଖ୍ୟ ସର୍ବଦା କର୍ମସୂଚୀଗତ ଆବଶ୍ୟକତା ଉପରେ ପ୍ରତିଷ୍ଠିତ—ସବୁକିଛି ମଣିଷ ପାଇଁ, ମଣିଷର ଉପକାର ପାଇଁ ।"

"ଏହିଥିରୁ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ୨୪ତମ ଏବଂ ୨୫ତମ କଂଗ୍ରେସ ଦ୍ୱାରା ଗୃହୀତ ପଥ ରଚିତ ହୋଇଥିଲା, ଜନସାଧାରଣଙ୍କ କଲ୍ୟାଣର ଉନ୍ନତି ସହିତ ଯୁକ୍ତ ବିଭିନ୍ନ ସମସ୍ୟାବଳୀକୁ ସମାଧାନ କରିବା ଉଦ୍ଦେଶ୍ୟରେ ଜାତୀୟ ଅର୍ଥନୀତିକୁ ଗଭୀର ଭାବେ ବେଗବାନ କରାଯାଇଥିଲା ।"

ଉନ୍ନତ ସମାଜବାଦ ଅଧୀନରେ ସୋଭିଏତ୍ ଅର୍ଥନୀତି ତଥା ଜାତୀୟ ଆୟର ଅଭିବୃଦ୍ଧି (୧୯୬୫ ମସିହାରେ ୧୯୩,୫୦ କୋଟି ରୁବଲ, ୧୯୮୦ରେ ୪୫୦,୦୦ କୋଟି ରୁବଲ) ସୋଭିଏତ୍ ରାଷ୍ଟ୍ରକୁ ସକ୍ଷମ କରିଥିଲା ସୋଭିଏତ୍ ଜନସାଧାରଣଙ୍କ ବୈଷୟିକ ଏବଂ ସାଂସ୍କୃତିକ ମାନକୁ ନିରନ୍ତର ଅଭିବୃଦ୍ଧି କରିବାରେ । ଏହିସବୁ କ୍ଷେତ୍ରରେ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ବିକାଶରାଜି ପ୍ରତି ଦୃଷ୍ଟି ନିକ୍ଷେପ କରିବା ଆସନ୍ତୁ :

ପ୍ରଥମତଃ, ସୋଭିଏତ୍ ଜନସାଧାରଣ କମ୍ ସମୟ କାର୍ଯ୍ୟ କରିଥିଲେ । ୧୯୬୭ରେ ସମସ୍ତ ଶିଳ୍ପ ଏବଂ ଅଫିସ୍ କର୍ମଚାରୀମାନେ ସପ୍ତାହକୁ ଛଅ ଦିନ କାର୍ଯ୍ୟ କରିବା ପରିବର୍ତ୍ତେ ସପ୍ତାହକୁ ପାଞ୍ଚ ଦିନ—୪୧ ଘଣ୍ଟା କାର୍ଯ୍ୟ କରିଥିଲେ । ସପ୍ତାହକୁ ଦୁଇ ଦିନ ଛୁଟି ଉପଭୋଗ କରିଥିଲେ ଏବଂ ଏହା ଦ୍ୱାରା ସେମାନଙ୍କର ମଜୁରି କମି ନଥିଲା । ଇତିପୂର୍ବରୁ ଶିଳ୍ପ ଏବଂ ଅଫିସ୍ ଶ୍ରମିକମାନେ ବର୍ଷକୁ ୧୨ ଦିନ ସବେତନ ଛୁଟି ପାଉଥିଲେ, ଏବେ ସେମାନଙ୍କ ସବେତନ ବାର୍ଷିକ ଛୁଟିର ପରିମାଣ ଶତକଡ଼ା ୨୫ ଭାଗ ବୃଦ୍ଧି ପାଇଥିଲା ।

ଦ୍ୱିତୀୟତଃ, ଜନସାଧାରଣଙ୍କ ଆୟରେ ଅଭିବୃଦ୍ଧି ଘଟିଥିଲା । ୧୯୬୫ ମସିହାରେ

ଦେଶର ଲୋକସଂଖ୍ୟାର ମାତ୍ର ଶତକଡ଼ା ୪ ଭାଗର ପରିବାର ପିଛା ଜଣେ ସଦସ୍ୟଙ୍କର ୧୦୦ ରୁବଲରୁ ଅଧିକ ଥିଲା । ୧୯୮୦ରେ ଜନସଂଖ୍ୟାର ପ୍ରାୟ ଅର୍ଦ୍ଧେକ ଲୋକଙ୍କର ଆୟ ଏହି ପରିମାଣରେ ପହଞ୍ଚିଥିଲା । ସର୍ବନିମ୍ନ ମଜୁରିର ପରିମାଣ ମାସିକ ୪୦-୪୫ ରୁବଲରୁ ୭୦ ରୁବଲକୁ ବୃଦ୍ଧି ପାଇଥିଲା ଏବଂ ଜାତୀୟ ଅର୍ଥନୀତିର ସମସ୍ତ କ୍ଷେତ୍ରରେ ମଧ୍ୟମ ଧରଣର ବେତନପ୍ରାପ୍ତ ଶିଳ୍ପ ଆଉ ଅଫିସ୍ କର୍ମଚାରୀମାନଙ୍କର ବେତନରେ ଅଭିବୃଦ୍ଧି ଘଟିଥିଲା । ଶିଳ୍ପ ଏବଂ ଅଫିସ୍ କର୍ମଚାରୀମାନଙ୍କର ହାରାହାରି ମାସିକ ବେତନ (ସାମାଜିକ ପରିଭୋଗ ପାଣ୍ଠିରୁ ମିଳୁଥିବା ସୁବିଧାସମୂହ ସହ ବେତନ) ୧୯୬୫ରେ ୧୨୯.୨ ରୁବଲରୁ ୧୯୮୦ରେ ୨୩୨ ରୁବଲକୁ ବୃଦ୍ଧି ପାଇଥିଲା, ଅର୍ଥାତ୍, ଶତକଡ଼ା ୮୦ ଭାଗ ବୃଦ୍ଧି ପାଇଥିଲା । କୋଠଖମାରରୁ ମିଳୁଥିବା କୋଠଚାଷୀମାନଙ୍କର ପାରିଶ୍ରମିକ ମଧ୍ୟ ଅବିରତ ବୃଦ୍ଧି ପାଇବାରେ ଲାଗିଥିଲା : ଅଷ୍ଟମ ପଞ୍ଚବାର୍ଷିକ ଯୋଜନା କାଳରେ ଶତକଡ଼ା ୪୦ ଭାଗ, ଦଶମ ପଞ୍ଚବାର୍ଷିକ ଯୋଜନା କାଳରେ ୨୬ ଭାଗ ।

ତୃତୀୟତଃ, ପେନ୍‌ସନ ବ୍ୟବସ୍ଥାରେ ମଧ୍ୟ ଆଉରି ଉନ୍ନତି ଘଟିଥିଲା । କୋଠଖମାରର ଚାଷୀମାନେ ଶିଳ୍ପ ଶ୍ରମିକ ଏବଂ ଅଫିସ୍ କର୍ମଚାରୀଙ୍କ ଭଳି ପେନ୍‌ସନ ପାଇଲେ ସମାନ ସର୍ତ୍ତରେ । ସେମାନଙ୍କ ସର୍ବନିମ୍ନ ପେନ୍‌ସନର ପରିମାଣ ବୃଦ୍ଧି ପାଇଲା । ପେନ୍‌ସନ ଭୋଗୀମାନଙ୍କର କେତେକ ବର୍ଗ ଅଧିକ ପେନ୍‌ସନ ପାଇଲେ, ଉଚ୍ଚ ଶିକ୍ଷା ପ୍ରତିଷ୍ଠାନମାନଙ୍କର, ବିଶେଷୀକୃତ ମାଧ୍ୟମିକ ସ୍କୁଲମାନଙ୍କର ବୃତ୍ତି ମଧ୍ୟ ବଢ଼ିଗଲା । ଗର୍ଭଧାରଣ ଓ ଶିଶୁଜନନର ଭତ୍ତା, ସ୍ୱଳ୍ପ ବେତନ ଭୋଗୀ ପରିବାରର ଶିଶୁମାନଙ୍କ ପାଇଁ ଭତ୍ତା ଏବଂ ସ୍ୱାସ୍ଥ୍ୟ କେନ୍ଦ୍ରମାନଙ୍କର ଖାଦ୍ୟ ଓ ଔଷଧ ପାଇଁ ଖର୍ଚ୍ଚର ପରିମାଣ ବୃଦ୍ଧି ପାଇଲା । ମହାନ୍ ଦେଶପ୍ରେମୀ ଯୁଦ୍ଧର ପ୍ରବୀଣ ଯୋଦ୍ଧାମାନଙ୍କୁ ଅଧିକ ସୁବିଧା ସୁଯୋଗ ପ୍ରଦାନ କରାଗଲା । ସ୍କୁଲ ପିଲାଏ ବିନା ମୂଲ୍ୟରେ ପାଠ୍ୟପୁସ୍ତକ ପାଇଲେ ।

ଚତୁର୍ଥରେ, ଗୃହ ନିର୍ମାଣ କାର୍ଯ୍ୟ ବିପୁଳ ବେଗରେ ଚାଲିଲା । ଏହା ଫଳରେ ୧୫ ବର୍ଷ ମଧ୍ୟରେ ୧୬ କୋଟି ୧୦ଲକ୍ଷ ଲୋକଙ୍କୁ ନୂଆ ଫ୍ଲାଟ ପ୍ରଦାନ କରାଗଲା, କିମ୍ବା ସେମାନଙ୍କ ବାସସ୍ଥାନର ଅବସ୍ଥାକୁ ଉଲ୍ଲେଖନୀୟ ଭାବେ ଉନ୍ନତ କରାଗଲା ।

ପଞ୍ଚମରେ, ଶିଳ୍ପ ଶ୍ରମିକ ଓ ଅଫିସ୍ କର୍ମଚାରୀମାନଙ୍କ ବେତନ ବୃଦ୍ଧି, କୋଠଚାଷୀମାନଙ୍କର ଆୟ ବୃଦ୍ଧି, କୃଷିଜାତ ସାମଗ୍ରୀ ଏବଂ ଭୋଗ୍ୟ ଦ୍ରବ୍ୟର ଉତ୍ପାଦନ ବୃଦ୍ଧି (୧୯୭୦ ଦଶକରେ ଶିଳ୍ପଜାତ ଭୋଗ୍ୟ ଦ୍ରବ୍ୟର ଉତ୍ପାଦନ ପୂର୍ବବର୍ତ୍ତୀ ଦଶକ ତୁଳନାରେ ଶତକଡ଼ା ୧୦୦ ଭାଗ ବୃଦ୍ଧି ପାଇଥିଲା) ଏବଂ ସେସବୁର ଖୁଚୁରା ଦାମ୍‌ରେ ଅପରିବର୍ତ୍ତନ ଫଳରେ ଜନସଂଖ୍ୟାର ଖାଦ୍ୟପେୟ, ଶିଳ୍ପଜାତ ଦ୍ରବ୍ୟ କ୍ରୟ କରିବାର କ୍ଷମତା ବଢ଼ି ଯାଇଥିଲା । ଆଉରି ଭଲକି ଖାଇବା, ଭଲକି ପିନ୍ଧିବା, ଅଧିକ ରେଫ୍ରିଜେରେଟର, ଧ୍ୱନ ଯନ୍ତ୍ର, ଟେଲିଭିଜନ ଆଦି କିଣିବା ପାଇଁ ସେମାନଙ୍କ ହାତକୁ ଅଧିକ ପଇସା ଆସିଲା । କିନ୍ତୁ ଏସବୁ ସତ୍ତ୍ୱେ ମନେ ରଖିବାକୁ ହେବ ଯେ, ଲୋକଙ୍କର

ଖାଦ୍ୟ ସାମଗ୍ରୀ ଏବଂ ଶିଳ୍ପଜାତ ଦ୍ରବ୍ୟର ଘାଟିଦାକୁ ସଂପୂର୍ଣ୍ଣ ରୂପେ ପୂରଣ କରାଯାଇ ପାରି ନଥିଲା । ତେଣୁ ପାର୍ଟିର ୨୬ତମ କଂଗ୍ରେସରେ ସର୍ବାଧିକ ଅଗ୍ରାଧିକାର ପ୍ରଦାନ କରାଯାଇଥିଲା ଜନସଂଖ୍ୟା ପାଇଁ ଅଧିକ ଖାଦ୍ୟ ସାମଗ୍ରୀ ଓ ବ୍ୟବହାରଯୋଗ୍ୟ ଶିଳ୍ପଜାତ ଜିନିଷ ଯୋଗାଇବା ଉପରେ । ଲୋକଙ୍କୁ ଏସବୁ ଦ୍ରବ୍ୟ ଯୋଗାଇବା କ୍ଷେତ୍ରରେ ଥିବା ସମସ୍ୟାବଳୀକୁ ମୌଳିକ ଭାବେ ସମାଧାନ କରିବା ପାଇଁ ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ସ୍ଥିର ହୋଇଥିଲା ଏହି କଂଗ୍ରେସରେ ।

୨୬ଶ ପାର୍ଟି କଂଗ୍ରେସର ନିଷ୍ପତ୍ତି ଅନୁସାରେ ଦେଶର ଜନସଂଖ୍ୟାକୁ ଖାଦ୍ୟ ସାମଗ୍ରୀ ଯୋଗାଇ ଦେବା ଉଦ୍ଦେଶ୍ୟରେ ୧୯୯୦ ପର୍ଯ୍ୟନ୍ତ ଖାଦ୍ୟ କର୍ମସୂଚୀଟି ରଚିତ ହୋଇ ୧୯୮୨ରେ ଅନୁମୋଦନ ଲାଭ କରିଥିଲା । ଏହି କର୍ମସୂଚୀରେ କୃଷିର ବିକାଶ ସାଥେ ସାଥେ, କୃଷିର ଉନ୍ନତିରେ ସହାୟକ ଶିଳ୍ପ, ପରିବହନ ଏବଂ ବାଣିଜ୍ୟର ବିକାଶ କଥା କୁହାଯାଇଛି । ଏସବୁର ସମସ୍ତ କ୍ରିୟାକଳାପ ସେହି ଅଭିନ୍ନ ସର୍ବଶେଷ ଲକ୍ଷ୍ୟ— ଆବଶ୍ୟକୀୟ ପରିମାଣର ଉଚ୍ଚ ଗୁଣସଂପନ୍ନ ଖାଦ୍ୟ ସାମଗ୍ରୀ ଉତ୍ପାଦନ କରିବା ଏବଂ ଖାଉଟିମାନଙ୍କୁ ଯୋଗାଇ ଦେବା । ଖାଦ୍ୟ କର୍ମସୂଚୀ ଏବଂ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟି ତଥା ସୋଭିଏତ୍ ୟୁନିଅନ୍‌ର ମନ୍ତ୍ରୀ ପରିଷଦର ନିଷ୍ପତ୍ତି ସହିତ ଯୁକ୍ତ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପସମୂହର ଲକ୍ଷ୍ୟ ହେଲା କୋଠଖମାର ଏବଂ ରାଷ୍ଟ୍ର ଖମାରର କାର୍ଯ୍ୟରେ ମୌଳିକ ଉନ୍ନତି ସାଧନ, ସେସବୁରେ ଶ୍ରମର ଉତ୍ପାଦନଶୀଳତା ବୃଦ୍ଧି ଏବଂ କୃଷିଜାତ ସାମଗ୍ରୀର ଉତ୍ପାଦନ ବୃଦ୍ଧି । ଖାଦ୍ୟ ସାମଗ୍ରୀର ମହଜୁତ୍ ବୃଦ୍ଧି ପାଇଁ ଖାଦ୍ୟ କର୍ମସୂଚୀରେ କୁହାଯାଇଛି : ଯେଉଁଠି ସମ୍ଭବ ସେଠାରେ, ଉଦ୍ୟୋଗସମୂହ ଏବଂ ସଂଗଠନମାନଙ୍କରେ ସହାୟକ ଖମାରମାନଙ୍କର ସର୍ବାତ୍ମକ ବିକାଶ ସାଧନ କରିବା ପାଇଁ, ନାଗରିକମାନଙ୍କର ବ୍ୟକ୍ତିଗତ ଖମାର, କୋଠଖମାରର ଫଳୋଦ୍ୟାନ ଏବଂ ପନିପରିବା ବଗିଚ୍ଚର ବ୍ୟାପକ ଭାବେ ବ୍ୟବହାର କରିବା ପାଇଁ ।

ସବୁଠାରୁ ଅଧିକ ଅଗ୍ରାଧିକାର ଲାଭ କରିଥିବା କାର୍ଯ୍ୟଟି ହେଲା ଚଳନ୍ତି ଦଶନ୍ଧି ମଧ୍ୟରେ କୃଷିର ବ୍ୟାପକ ଯାନ୍ତ୍ରିକୀକରଣ, ଅଧିକ ପରିମାଣରେ ସାର ବ୍ୟବହାର ଓ ଜମିର ଉନ୍ନୟନ କରିବା, ଖାଦ୍ୟ ଶିଳ୍ପ ପାଇଁ ନୂତନ କାରିଗରୀ ଭିତ୍ତିକୁ ସୁନିଶ୍ଚିତ କରିବା ।

ଗ୍ରାମାଞ୍ଚଳର ସାମାଜିକ ରୂପାନ୍ତରଣ ପଦକ୍ଷେପଗୁଡ଼ିକ ମଧ୍ୟ ଏହି କର୍ମସୂଚୀର ଅନ୍ତର୍ଗତ । ସେଇସବୁ ପଦକ୍ଷେପଗୁଡ଼ିକ ମଧ୍ୟରେ ଅଛି ଆଧୁନିକ ସୁବିଧାସୁଯୋଗ ସଂପନ୍ନ ବାସଗୃହ, ସ୍କୁଲ, ସ୍କୁଲପୂର୍ବ ପ୍ରତିଷ୍ଠାନ, କ୍ଲବର ବ୍ୟାପକ ନିର୍ମାଣ, ଚିକିତ୍ସା, ବ୍ୟବସାୟ ଓ ଜନସାଧାରଣଙ୍କ ସେବା ବ୍ୟବସ୍ଥାର ବିକାଶସାଧନ ।

ଆଉ କେତେକ ଅତି ଗୁରୁତ୍ୱପୂର୍ଣ୍ଣ ଅର୍ଥନୈତିକ ପଦକ୍ଷେପ ମଧ୍ୟ ନିଆଯାଇଛି ଏ ଦିଗରେ, ସେସବୁ ହେଲା, କୃଷିଜାତ ସାମଗ୍ରୀର କ୍ରୟ ଦାମ୍ ବୃଦ୍ଧି, କୋଠଖମାର ଏବଂ

ରାଷ୍ଟ୍ର ଖମାରରେ ଶ୍ରମ ମଜୁରିର ଅଭିବୃଦ୍ଧି ସାଧନ, ଅଲାଭଜନକ ଏବଂ ସ୍ୱଳ୍ପ ଲାଭ କରୁଥିବା କୋଠଖମାରଗୁଡ଼ିକୁ ରାଷ୍ଟ୍ର ପକ୍ଷରୁ ସହାୟତା ଦାନ ଆଦି । ଏହି ବିରାଟ ଖାଦ୍ୟ କର୍ମସୂଚୀକୁ କାର୍ଯ୍ୟକାରୀ କରିବା ପାଇଁ ରାଷ୍ଟ୍ର ପକ୍ଷରୁ ୧୧ଶ ପଞ୍ଚବାର୍ଷିକ ଯୋଜନାରେ ୨୩୩ ହଜାର କୋଟି ରୁବଲ ବରାଦ କରାଯାଇଛି । ୧୨ଶ ପଞ୍ଚବାର୍ଷିକ ଯୋଜନାରେ ଏ ଦିଗରେ ଆଉରି ଅର୍ଥ ବରାଦ କରାଯିବ ।

ଏକାଦଶ ପଞ୍ଚବାର୍ଷିକ ଯୋଜନା କାଳ (୧୯୮୧-୧୯୮୫) ଏବଂ ୧୯୯୦ର ପୂର୍ବବର୍ତ୍ତୀ କାଳର ଅର୍ଥନୈତିକ ଓ ସାମାଜିକ ବିକାଶ ପାଇଁ ନିର୍ଦ୍ଦେଶଧାରାଟିକୁ ଅନୁମୋଦନ କଲା ବେଳେ ଏହି ୨୬ତମ କଂଗ୍ରେସ ସେସବୁକୁ ଏକ ବ୍ୟାପକ କର୍ମସୂଚୀ ରୂପେ ସୋଏଭିଚ୍ ଜନସାଧାରଣଙ୍କ କଲ୍ୟାଣର ଅଭିବୃଦ୍ଧି ପାଇଁ ରୂପରେଖ ପ୍ରଦାନ କରିଥିଲା ।

୧୯୬୦ ଏବଂ ୧୯୭୦ ଦଶକ ଦୁଇଟି ସୋଭିଏତ୍ ୟୁନିଅନ୍‌ରେ ବିଜ୍ଞାନର ବିପୁଳ ଅଗ୍ରଗତି ଦ୍ୱାରା ଚିହ୍ନିତ ହୋଇଛି । ଅକଳନ ସୁଯୋଗର ଅଧିକାରୀ ସମାଜବାଦୀ ସମାଜ ବିଜ୍ଞାନର ବିକାଶ ପାଇଁ ଅଧିକ ପାଣ୍ଠିର ବରାଦ କରିଥିଲା । ଗବେଷଣାତ୍ମକ ପ୍ରତିଷ୍ଠାନର ସଂଖ୍ୟା ବୃଦ୍ଧି କରାଗଲା । ସୋଭିଏତ୍ ୟୁନିଅନ୍‌ର ବିଜ୍ଞାନ ଏକାଡେମି ହେଉଛି ଦେଶର ସବୁଠାରୁ ଅଗ୍ରଣୀ ଏବଂ ସର୍ବବୃହତ୍ ଗବେଷଣା-କେନ୍ଦ୍ର । ୧୯୭୦ ଦଶକରେ ଏହି କେନ୍ଦ୍ର ଅଧୀନରେ ୨୮୦ଟି ଗବେଷଣା ପ୍ରତିଷ୍ଠାନରେ ୪୦ ହଜାର ଗବେଷକ କର୍ମରତ ଥିଲେ । ଏହି ଏକାଡେମିର ଏକ ସାଇବେରୀୟ ଶାଖା ଅଛି । ଏହା ସୋଭିଏତ୍ ୟୁନିଅନ୍‌ର ପ୍ରାଚ୍ୟ ଅଞ୍ଚଳର ସର୍ବବୃହତ୍ ଗବେଷଣା-କେନ୍ଦ୍ର । ଏହା ଛଡ଼ା ବିଜ୍ଞାନ ଏକାଡେମିର ବହୁ ଶାଖା ୟୁରାଲସ୍, ଦୂର ପ୍ରାଚ୍ୟ ଏବଂ ସ୍ୱାୟତ୍ତଶାସିତ ପ୍ରଜାତନ୍ତ୍ରମାନଙ୍କରେ ରହିଛି । ପ୍ରତ୍ୟେକ ଅଙ୍ଗ ପ୍ରଜାତନ୍ତ୍ରରେ ମଧ୍ୟ ଏକାଡେମି ରହିଛି । କୃଷି ବିଜ୍ଞାନସମୂହର ଲେନିନ୍ ଏକାଡେମି, ଚିକିତ୍ସା ବିଜ୍ଞାନସମୂହର ଏକାଡେମି, ପ୍ରଶିକ୍ଷଣବିଜ୍ଞାନସମୂହର ଏକାଡେମି ପ୍ରଭୃତି ହେଉଛି ନିଖିଳ ସୋଭିଏତ୍ ବିଶେଷୀକୃତ ବିଜ୍ଞାନ ଏକାଡେମିସମୂହ । ଏସବୁ ଅଧୀନରେ ବହୁ ଗବେଷଣା ପ୍ରତିଷ୍ଠାନ ରହିଛି । ଏହିସବୁ ମନ୍ତ୍ରଣାଳୟ ଅଧୀନରେ ମଧ୍ୟ ରହିଛି ବହୁ ଗବେଷଣା ପ୍ରତିଷ୍ଠାନ ଏବଂ ଗବେଷଣାଗାର । ସୋଭିଏତ୍ ୟୁନିଅନ୍‌ରେ ଥିବା ଉଚ୍ଚ ଶିକ୍ଷା ପ୍ରତିଷ୍ଠାନଗୁଡ଼ିକରେ ମଧ୍ୟ ବ୍ୟାପକ ଆକାରରେ ପରିଚାଳିତ ହୋଇଥାଏ । ଦେଶରେ ଗବେଷଣାକର୍ମୀମାନଙ୍କର ସଂଖ୍ୟା ମଧ୍ୟ ଦ୍ରୁତ ଗତିରେ ବୃଦ୍ଧି ପାଇଛି ଏହି ସମୟରେ—୧୯୬୫ ମସିହାରେ ଏହି କର୍ମୀମାନଙ୍କ ସଂଖ୍ୟା ୬୬୫,୦୦୦ ଥିଲା ବେଳେ ୧୯୭୯ରେ ଏହା ୧,୩୪ ନିୟୁତରେ ପହଞ୍ଚିଥିଲା ; ପୃଥିବୀର ଗବେଷଣା କର୍ମୀମାନଙ୍କ ମଧ୍ୟରୁ ପ୍ରତ୍ୟେକ ଚତୁର୍ଥ ଜଣକ ହେଉଛନ୍ତି ସୋଭିଏତ୍ ଗବେଷଣାକର୍ମୀ ।

ସୋଭିଏତ୍ ୟୁନିଅନ୍‌ର ବିଜ୍ଞାନ ପ୍ରତିଷ୍ଠାନଗୁଡ଼ିକୁ କ୍ରମାଧିକ ଭାବେ ସୁସଜ୍ଜିତ କରାଯାଉଛି ଗବେଷଣା ପାଇଁ ଆଧୁନିକ ଜଟିଳ ଏବଂ ଶକ୍ତିଶାଳୀ ଯନ୍ତ୍ରପାତି ଦ୍ୱାରା ।

ଏହା ଫଳରେ ସେସବୁ ପ୍ରତିଷ୍ଠାନ ଗୁରୁତ୍ୱପୂର୍ଣ୍ଣ ବୈଜ୍ଞାନିକ ସାଫଲ୍ୟରାଜି ଲାଭ କରି ପାରୁଛି ।

ସୋଭିଏତ୍ ଗବେଷକମାନେ ସଫଳତାର ସହିତ ଜ୍ଞାନର ସମସ୍ତ କ୍ଷେତ୍ରକୁ ବିକଶିତ କରିବାରେ ଲାଗିଛନ୍ତି । ଏହାର ଜ୍ୱଳନ୍ତ ଏବଂ ନିଘଞ୍ଚ ପରିପକାଶ ଘଟିଛି ମହାକାଶ ଅଭିଯାନ କ୍ଷେତ୍ରରେ । ଏଥିରେ ସନ୍ନିବିଷ୍ଟ ହୋଇଛି ଗଣିତ, ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଜୀବ ବିଜ୍ଞାନ, ଭେଷଜ ବିଦ୍ୟା, ଧାତୁ ବିଜ୍ଞାନ, ସ୍ୱୟଂକରଣ, ଇଲେକ୍‌ଟ୍ରନିକ୍, ଯାନ୍ତ୍ରିକ ଇଂଜିନିୟରିଂ, ରକେଟ ଇଂଜିନିୟରିଂ ସମେତ ବିଜ୍ଞାନ ଓ କାରୁବିଜ୍ଞାନର ଅନେକ କ୍ଷେତ୍ରର ଉଲ୍ଲେଖଯୋଗ୍ୟ ସାଫଲ୍ୟରାଜି । ଏହାର ପ୍ରତିଦାନରେ ମହାକାଶ ଅଭିଯାନ ବିଜ୍ଞାନକୁ ପ୍ରଦାନ କରୁଛି ପୃଥିବୀର ଚତୁଃପାର୍ଶ୍ୱରେ ଥିବା ମହାକାଶର ଭୌତିକ ଅବସ୍ଥାରାଜି ତଥା ପୃଥିବୀ ସଂପର୍କରେ ନୂତନ ତଥ୍ୟରାଜି । ଏହା ଫଳରେ ନୂତନ ବୈଜ୍ଞାନିକ ପ୍ରବଣତାମାନ ସୃଷ୍ଟି ହେଉଛି ଏବଂ ଜ୍ଞାନର ବିଭିନ୍ନ କ୍ଷେତ୍ର ସମୃଦ୍ଧ ହେଉଛି ।

୧୯୬୧ ମସିହାରେ ମାନବ ଇତିହାସରେ ପ୍ରଥମ ଥର ପାଇଁ "ଭୋଷ୍ଟୋକ" ମହାକାଶଯାନରେ ଯୁରି ଗାଗାରିନ୍ ପୃଥିବୀ ଚତୁର୍ପାର୍ଶ୍ୱରେ ପରିକ୍ରମା କଲା ପରେ ଅନ୍ୟାନ୍ୟ ସୋଭିଏତ୍ ମହାକାଶଚାରୀମାନେ ନିୟମିତ ଭାବେ ଅଧିକ କାଳ ପାଇଁ ମହାକାଶ ଯାତ୍ରା କରିଛନ୍ତି । ଏହି ମହାକାଶ ଯାତ୍ରାରେ ସେମାନଙ୍କୁ ବହନ କରି ନେଉଥିବା ମହାକାଶଯାନ ଏବଂ ରକେଟଗୁଡ଼ିକ ଉନ୍ନତ ହୋଇଛି; ସେସବୁ ଅଧିକରୁ ଅଧିକ ଶକ୍ତିଶାଳୀ ହେଉଛି ଏବଂ ଉଡ୍ଡୟନ କର୍ମସୂଚୀ ଅଧିକ ଜଟିଳ ହେଉଛି । ୧୯୬୭ ମସିହା ପରେ ପୃଥିବୀ ନିକଟବର୍ତ୍ତୀ ମହାକାଶକୁ "ସୟୁଜ" ମହାକାଶଯାନଗୁଡ଼ିକ ଦ୍ୱାରା ଅଧ୍ୟୟନ କରାଯାଇଛି । ଏହିସବୁ ମହାକାଶଯାନକୁ ଏପରିସବୁ ନିର୍ଭରଯୋଗ୍ୟ ବ୍ୟବସ୍ଥା ଦ୍ୱାରା ସୁସଜ୍ଜିତ କରାଯାଇଛି, ଯଦ୍ୱାରା ମହାକାଶଚାରୀମାନେ ମହାକାଶ ସୁଟ ବିନା ଅନେକ ଦିନ ପର୍ଯ୍ୟନ୍ତ ମହାକାଶରେ କାର୍ଯ୍ୟ କରିବାକୁ ସକ୍ଷମ ହୋଇ ପାରୁଛନ୍ତି ।

ମହାକାଶ ଗବେଷଣା କ୍ଷେତ୍ରରେ ଆଉ ଏକ ବଡ଼ ସାଫଲ୍ୟ ହେଲା ମହାକାଶ ମଧ୍ୟକୁ "ସାଲୁଟ୍" ଧରଣର ଗବେଷଣାଗାରଗୁଡ଼ିକ ଉତ୍‌କ୍ଷେପଣ କରି ପୃଥିବୀର କକ୍ଷ ପଥରେ ସ୍ଥାପନ କରିବା । ଏହା ଫଳରେ ମଣିଷ ଦ୍ୱାରା ଦୀର୍ଘକାଳୀନ ଗବେଷଣା କେନ୍ଦ୍ରଗୁଡ଼ିକୁ ନିର୍ମାଣ କରିବା ଏବଂ ସେସବୁ ସହିତ "ସୟୁଜ" ମହାକାଶଯାନଗୁଡ଼ିକୁ ସଂଯୋଗ କରିବା ସମ୍ଭବ ହୋଇ ପାରିଛି ।

ଏହି ଭାବେ ୧୯୭୭, ସେପ୍‌ଟେମ୍ବର ମାସରେ ମହାକାଶ ଗବେଷଣାଗାର "ସାଲ୍ୟୁଟ୍-୬" ପୃଥିବୀର କକ୍ଷ ପଥରେ ସ୍ଥାପନ କରାଯାଇଥିଲା । ଏହା ଚାରି ବର୍ଷ କାଳ କାର୍ଯ୍ୟ କରିଥିଲା କକ୍ଷ ପଥରେ । ଏହି ସମୟକାଳ ମଧ୍ୟରେ ଚାରିଟି ଦୀର୍ଘକାଳୀନ ଅଭିଯାନୀ ଦଳ ସେଠାରେ କାର୍ଯ୍ୟ କରିଥିଲେ ଏବଂ ଆନ୍ତର୍ଜାତିକ ମହାକାଶଚାରୀଙ୍କୁ ନେଇ ନଅଟି ଦର୍ଶକ ଅଭିଯାତ୍ରୀ ଦଳ ତନ୍‌ମଧ୍ୟକୁ ଯାଇଥିଲେ । କକ୍ଷ ପଥରେ ସ୍ଥାପିତ

"ସାଲ୍ୟୁତ୍-ସୟୁଜ" ମହାକାଶ ଗବେଷଣା କେନ୍ଦ୍ରଗୁଡ଼ିକୁ ନିର୍ଭରଯୋଗ୍ୟ ଭାବେ ମାଲବାହୀ "ପ୍ରୋଗ୍ରେସ୍" ମହାକାଶଯାନଗୁଡ଼ିକ ଜାଳେଣି, ଯନ୍ତ୍ରପାତି, ଖାଦ୍ୟପେୟ, ଜୀବନଧାରଣପୋଯୋଗୀ ଜିନିଷପତ୍ର ଏବଂ ବୈଜ୍ଞାନିକ ଗବେଷଣା ପାଇଁ ଆବଶ୍ୟକୀୟ ସରଞ୍ଜାମ ଯୋଗାଇ ଦେଉଥିଲେ ।

ମହାକାଶଚାରୀମାନେ ଏହିସବୁ ମହାକାଶଯାନରେ ଅଧିକ କାଳ ଅବସ୍ଥାନ କରି ଏବଂ ଅଧିକ ପରିମାଣର ବୈଜ୍ଞାନିକ, କୃତ୍‌କୌଶଳଗତ, ଚିକିତ୍ସା ବିଜ୍ଞାନ ସଂକ୍ରାନ୍ତ ଏବଂ ଜୀବବିଜ୍ଞାନଗତ ଗବେଷଣା କାର୍ଯ୍ୟ ଚଳାଇବାକୁ ସକ୍ଷମ ହୋଇଥିଲେ । ୧୯୭୮ ମସିହାରେ ମହାକାଶଚାରୀ ଭି. କୋଭାଲିଓନକ୍ ଏବଂ ଏ. ଇଭାଞ୍ଚେନ୍‌କୋଭ୍ "ସାଲ୍ୟୁତ୍-୬"ରେ ୧୪୦ ଦିନ, ୧୯୮୦ ମସିହାରେ ମହାକାଶଚାରୀ ଏଲ୍. ପପୋଭ୍, ଭି. ରୁ୍ୟମିନ୍ ୧୮୫ ଦିନ ଏବଂ ୧୯୮୨ ମସିହାରେ "ସାଲ୍ୟୁତ-୭"ରେ ଏ. ବେରେଜୋଭୋଇ, ଭି. ଲେବେଦେଭ୍ ୨୧୧ ଦିନ ଅବସ୍ଥାନ କରି ନୂଆ ରେକର୍ଡ ସୃଷ୍ଟି କରିଥିଲେ । ଅନ୍ୟାନ୍ୟ ସମାଜବାଦୀ ଦେଶର ମହାକାଶଚାରୀଙ୍କ ସମେତ ଭାରତବର୍ଷର ମହାକାଶଚାରୀ ଏହି ଦର୍ଶକ ଅଭିଯାନରେ ଯୋଗ ଦେଇଥିଲେ ।

ପୃଥିବୀର ନିକଟବର୍ତ୍ତୀ ମହାକାଶର ଅନୁସନ୍ଧାନ କାର୍ଯ୍ୟ "କସ୍‌ମସ୍" ନାମକ କୃତ୍ରିମ ଉପଗ୍ରହଗୁଡ଼ିକ ଦ୍ୱାରା ମଧ୍ୟ କରାଯାଇଥିଲା । ଏହି ଧରଣର ୧,୩୦୦ଟି କୃତ୍ରିମ ଉପଗ୍ରହ ୧୯୮୦ ଦଶକରେ ମହାକାଶକୁ ପ୍ରେରଣ କରାଯାଇଥିଲା ।

ଚନ୍ଦ୍ର ଏବଂ ଚନ୍ଦ୍ରର ଚତୁଃପାର୍ଶ୍ୱସ୍ଥ ମହାକାଶର ଅନୁଧ୍ୟାନ କାର୍ଯ୍ୟ "ଲୁନା" ସ୍ୱୟଂଚାଳିତ ମହାକାଶଯାନଗୁଡ଼ିକ ଦ୍ୱାରା ପରିଚାଳିତ ହୋଇଥିଲା । ୧୯୬୬, ଫେବୃଆରୀ ମାସରେ "ଲୁନା-୬" ମହାକାଶଯାନଟି ଧୀର ଅବତରଣ କରିଥିଲା ଚନ୍ଦ୍ରର ପୃଷ୍ଠଦେଶରେ । ଏହା ଚନ୍ଦ୍ର ପୃଷ୍ଠର ଟେଲିଭିଜନ ଛବିମାନ ପୃଥିବୀକୁ ପ୍ରେରଣ କରିଥିଲା । ୧୯୭୦, ସେପ୍‌ଟେମ୍ବର ମାସରେ "ଲୁନା-୧୬" ସ୍ୱୟଂଚାଳିତ ମହାକାଶଯାନଟି ଚନ୍ଦ୍ରପୃଷ୍ଠରେ ଅବତରଣ କରି ଚନ୍ଦ୍ରପୃଷ୍ଠର ମାଟିର ନମୁନା ଖନନ କରି ଏକ ବିଶେଷ ରକେଟ ସାହାଯ୍ୟରେ ସେ ନମୁନାକୁ ପୃଥିବୀକୁ ପହଞ୍ଚାଇ ଦେଇଥିଲା । ୧୯୭୨ ମସିହାରେ ଏହି ଭଳି ଆଉ ଏକ ପରୀକ୍ଷା ମଧ୍ୟ ପରିଚାଳନା କରାଯାଇଥିଲା । ୧୯୭୦, ନଭେମ୍ବର ମାସରେ "ଲୁନା-୧୭" ସ୍ୱୟଂଚାଳିତ ମହାକାଶଯାନଟି "ଲୁନୋଖୋଦ-୧" ନାମକ ଚଳନକ୍ଷମ ଯାନକୁ ଚନ୍ଦ୍ରପୃଷ୍ଠକୁ ଘେନି ଯାଇଥିଲା । ଏହା ସେଠାରେ ପ୍ରାୟ ବର୍ଷକ ପର୍ଯ୍ୟନ୍ତ କାର୍ଯ୍ୟ କରି ଚନ୍ଦ୍ରର ପୃଷ୍ଠଦେଶ ଉପରେ ଅନୁସନ୍ଧାନ କରିଥିଲା ଏବଂ ମୂଲ୍ୟବାନ ତଥ୍ୟରାଜି ସଂଗ୍ରହ କରିଥିଲା । ଏହି ଅନୁସନ୍ଧାନ କାର୍ଯ୍ୟକୁ ଆଉରି ଆଗେଇ ନେଇଥିଲା ୧୯୭୩ ମସିହାରେ ଚନ୍ଦ୍ରକୁ ପ୍ରେରିତ "ଲୁନୋଖୋଦ୍-୨" ସ୍ୱୟଂଚାଳିତ ଯାନଟି ।

ସୋଭିଏତ୍ ବୈଜ୍ଞାନିକ, ଇଂଜିନିୟର ଏବଂ କାରିଗରମାନେ ସ୍ୱୟଂଚାଳିତ ମହାକାଶଯାନମାନ ନିର୍ମାଣ କରି ମଙ୍ଗଳ ଏବଂ ଶୁକ୍ର ଗ୍ରହକୁ ଅନୁଧ୍ୟାନ କରିବା ଦିଗରେ

ଉଲ୍ଲେଖଯୋଗ୍ୟ ସାଫଲ୍ୟ ଅର୍ଜନ କରି ପାରିଛନ୍ତି । ଏହିସବୁ ଗ୍ରହକୁ ପ୍ରେରିତ ସ୍ୱୟଂଚାଳିତ ଆନ୍ତଃଗ୍ରହ ମହାକାଶଯାନଗୁଡ଼ିକ ସେଥିରେ ଧୀରାବତରଣ କରିବା ସାଥେ ସାଥେ ମୂଲ୍ୟବାନ ତଥ୍ୟରାଜି ସେମାନଙ୍କ ସଂପର୍କରେ ପୃଥିବୀ ପୃଷ୍ଠକୁ ପଠାଇଥିଲେ ।

ମହାକାଶ ଅଭିଯାନର ସାଫଲ୍ୟସମୂହକୁ ବାସ୍ତବ ଉଦ୍ଦେଶ୍ୟରେ ଅଧିକରୁ ଅଧିକ ପରିମାଣରେ ବ୍ୟବହାର କରାଯାଇଛି । "ମେଟେଓର" (ଉଲ୍‌କାପୀଣ୍ଡ) ଧରଣର ଜଳବାୟୁ ଅନୁସନ୍ଧାନ କୃତ୍ରିମ ଉପଗ୍ରହମାନ ଉତ୍‌କ୍ଷେପଣ କରି ଦୀର୍ଘକାଳ ପାଇଁ ଜଳବାୟୁ ସଂପର୍କରେ ଭବିଷ୍ୟତବାଣୀ କରିବା ସମ୍ଭବ ହୋଇଛି । ଅଧିକ ସମୟ ଆଗରୁ ଝଡ଼ ସଂପର୍କରେ ସତର୍କ କରି ଦେବା, ଆର୍କଟିକ୍ ମହାସାଗରରେ ତୁଷାରର ଅବସ୍ଥା, ବର୍ଷା, ବରଫପାତ ଆଦି ସଂପର୍କରେ ସୂଚନା ଦିଆଯାଇ ପାରୁଛି । "ମୋଲନିଆ" କୃତ୍ରିମ ଉପଗ୍ରହଗୁଡ଼ିକ ସାହାଯ୍ୟରେ ମସ୍କୋରୁ ସୋଭିଏତ୍ ୟୁନିଅନ୍‌ର ଯେକୌଣସି ସ୍ଥାନକୁ ଟେଲିଭିଜନ ଦ୍ୱାରା ସିଧାସଳଖ ବାର୍ତ୍ତାପ୍ରେରଣ କରାଯାଉଛି ।

ଶାନ୍ତିପୂର୍ଣ୍ଣ ଉଦ୍ଦେଶ୍ୟରେ ପାରମାଣବିକ ଶକ୍ତିକୁ ଉପଯୋଗ କରିବାର ମୁଖ୍ୟ କ୍ଷେତ୍ରଗୁଡ଼ିକ ପ୍ରତି ଅବଦାନ ରଖିବା ଦିଗରେ ସୋଭିଏତ୍ ବିଜ୍ଞାନ ମଧ୍ୟ ଉଲ୍ଲେଖନୀୟ ସାଫଲ୍ୟ ଅର୍ଜନ କରିଛି । ତାପ ପାରମାଣବିକ ସଂଶ୍ଳେଷଣରୁ ଜାତ ଶକ୍ତିକୁ ବ୍ୟବହାର କରିବାର ଉପାୟ, ଲେଜର ପଦ୍ଧତିର ଡିଜାଇନ୍ ଓ ଉପଯୋଗ, ସୂକ୍ଷ୍ମ କଂମ୍ପ୍ୟୁଟର ଯନ୍ତ୍ର, ଶକ୍ତିଶାଳୀ ଟର୍ବାଇନ୍, ଚମତ୍କାର ମେସିନ ଯନ୍ତ୍ରପାତି, ପଲିମର ନିର୍ମାଣ ଏବଂ ଜୈବିକ ରାସାୟନିକ କାରୁବିଜ୍ଞାନ କ୍ଷେତ୍ରରେ ସୋଭିଏତ୍ ବିଜ୍ଞାନ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରୁଛି ।

ଜନଶିକ୍ଷା କ୍ଷେତ୍ରରେ ସବୁଠାରୁ ଲକ୍ଷଣୀୟ ସାଫଲ୍ୟ ହେଲା ୧୯୭୦ ଦଶକରେ ସଂପନ୍ନ ହୋଇଥିବା ସାର୍ବଜନୀନ ବାଧ୍ୟତାମୂଳକ ମାଧ୍ୟମିକ ଶିକ୍ଷା ।

## ୨୮ଶ ପରିଚ୍ଛେଦ

# ବିକଶିତ ସମାଜବାଦୀ ସମାଜର ସମ୍ବିଧାନ

୧୯୭୭, ଅକ୍ଟୋବର ୭ ତାରିଖରେ ସୋଭିଏତ୍ ୟୁନିଅନ୍ ସର୍ବୋଚ୍ଚ ସୋଭିଏତ୍ ନୂଆ ଏକ ସମ୍ବିଧାନ ଗ୍ରହଣ କରିଥିଲା ଏବଂ ଏହି ସମ୍ବିଧାନଟି ହେଲା ଉନ୍ନତ ସମାଜବାଦୀ ସମାଜର ସମ୍ବିଧାନ ।

୧୯୩୬ ମସିହାରେ ବିଜୟୀ ସମାଜବାଦର ସମ୍ବିଧାନଟି ଗୃହୀତ ହେଲା ପରେ ସୋଭିଏତ୍ ଜନସାଧାରଣ ଯେଉଁସବୁ ସାଫଲ୍ୟ ଅର୍ଜନ କରିଛନ୍ତି, ସେସବୁ ଏହି ନୂତନ ସମ୍ବିଧାନରେ ପ୍ରତିଫଳିତ ଏବଂ ନିୟମାନୁବଦ୍ଧ ହୋଇଥିଲା ।

ଏହି ସମୟ କାଳ ମଧ୍ୟରେ ଦେଶରେ ବହୁ ମୌଳିକ ପରିବର୍ତ୍ତନ ଘଟି ଯାଇଛି । ସୋଭିଏତ୍ ୟୁନିଅନ୍‌ର ଅର୍ଥନୈତିକ ଶକ୍ତି ଅକଳ୍ପନ ଭାବେ ବୃଦ୍ଧି ପାଇଛି । ମୋଟ ସାମାଜିକ ଉତ୍ପାଦନ ବୃଦ୍ଧି ପାଇଛି ୧୮ ଗୁଣ । ଜନସାଧାରଣଙ୍କ ଜୀବନଧାରଣ ମାନରେ ମଧ୍ୟ ଉଲ୍ଲେଖନୀୟ ଅଭିବୃଦ୍ଧି ଘଟିଛି : ପ୍ରକୃତ ମୁଣ୍ଡପିଛା ଆୟ ୧୯୩୬ ତୁଳନାରେ ୧୯୭୭ ମସିହାରେ ୫.୭ ଗୁଣ ବୃଦ୍ଧି ପାଇଛି ।

ଦେଶର ସାମାଜିକ-ଅର୍ଥନୈତିକ ଗଢ଼ଣ ମଧ୍ୟ ବିକଶିତ ହୋଇଛି । ୧୯୩୬ ମସିହାରେ ସୋଭିଏତ୍ ୟୁନିଅନ୍‌ରେ ମଧ୍ୟ ପ୍ରାୟ ୧୦ ଲକ୍ଷ ବ୍ୟକ୍ତିଗତ କୃଷକ ଖମାର ଏବଂ କେତେକ ପୁଞ୍ଜିବାଦୀ ସଂସ୍ଥା ରହିଥିଲେ । ୧୯୩୦ ଏବଂ ୧୯୪୦ ଦଶକରେ ସୋଭିଏତ୍ ସମାଜବାଦୀ ପ୍ରଜାତନ୍ତ୍ର ସଂଘ ସହିତ ନୂଆ ନୂଆ ପ୍ରଜାତନ୍ତ୍ର ଏବଂ ଅଞ୍ଚଳସମୂହ ଯୋଗ ଦେଲେ, ବ୍ୟକ୍ତିଗତ ମାଲିକାନାଧୀନ କୃଷକ ଖମାରଗୁଡ଼ିକର ସଂଖ୍ୟା ଅନେକ ପରିମାଣରେ ବଢ଼ିଗଲା ଏବଂ ପୁଞ୍ଜିବାଦୀ ସଂସ୍ଥାଗୁଡ଼ିକର ଅଂଶ ମଧ୍ୟ କିଛି ପରିମାଣରେ ବୃଦ୍ଧି ପାଇଲା । ନୂଆ ନୂଆ ପ୍ରଜାତନ୍ତ୍ର ଏବଂ ଅଞ୍ଚଳଗୁଡ଼ିକରେ ସମାଜବାଦୀ ରୂପାନ୍ତରଣ ଫଳରେ ଏବଂ ଉନ୍ନତ ସମାଜବାଦୀ ସମାଜ ନିର୍ମାଣ ପ୍ରକ୍ରିୟା ମଧ୍ୟରେ ସମାଜବାଦୀ ଅର୍ଥନୈତିକ ବ୍ୟବସ୍ଥା ସମଗ୍ର ସୋଭିଏତ୍ ୟୁନିଅନ୍‌ରେ ଦୃଢ଼ ଭାବେ ପ୍ରତିଷ୍ଠିତ ହେଲା । ସମାଜବାଦୀ ମାଲିକାନାର ଉଭୟ ରୂପ — ରାଷ୍ଟ୍ରୀୟ ଏବଂ କୋଠଖମାର ଏବଂ

ସମବାୟସମୂହର – ନିଜକୁ ଦୃଢ଼ କରିବା ସାଥେ ସାଥେ ଆଉରି ବିକାଶ ଲାଭ କରିଥିଲେ । ଏହି ଦୁଇଟି ରୂପର ଏକ ପ୍ରଗତିଶୀଳ ପ୍ରକ୍ରିୟା ନିକଟତର ହୋଇ ଆସୁଥିଲା ଏବଂ କ୍ରମେ କ୍ରମେ ପରସ୍ପର ସହିତ ଏକତ୍ର ମିଶି ଯାଉଥିଲା । ରାଷ୍ଟ୍ରୀୟ ସମାଜବାଦୀ ସଂପତ୍ତିର ପରିମାଣ ବୃଦ୍ଧି ପାଇବାରେ ଲାଗିଥିଲା ।

ସୋଭିଏତ୍ ସମାଜର ଗଢ଼ଣରେ ମଧ୍ୟ ଘଟି ଚାଲିଥିଲା ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନସମୂହ । ପ୍ରଥମତଃ, ସମାଜର ଅଗ୍ରଣୀ ଶ୍ରେଣୀ, ଶ୍ରମିକ ଶ୍ରେଣୀ ସଂଖ୍ୟାଗତ ଦୃଷ୍ଟିରୁ ବିପୁଳ ଭାବେ ବୃଦ୍ଧି ପାଇଥିଲା : ୧୯୭୭ ମସିହାରେ ସୋଭିଏତ୍ ୟୁନିଅନ୍‌ରେ ଶ୍ରମିକମାନଙ୍କର ସଂଖ୍ୟା ଥିଲା ୭ କୋଟି ୪୦ ଲକ୍ଷ (୧୯୩୭ରେ ଏହି ସଂଖ୍ୟା ଥିଲା ୨ କୋଟି ୪ ଲକ୍ଷ) । ବିଶେଷ ଭାବେ ଦେଶର ସର୍ବାପେକ୍ଷା ଅଗ୍ରଗାମୀ ଶିଳ୍ପଗୁଡ଼ିକରେ ନିଯୁକ୍ତ ଶ୍ରମଜୀବୀମାନଙ୍କର ସଂଖ୍ୟା, ସୁଦକ୍ଷ, ସ୍ୱୟଂଚାଳିତ ଏବଂ ଯନ୍ତ୍ରାୟିତ ଶ୍ରମରେ ନିଯୁକ୍ତ ଶ୍ରମିକଙ୍କର ସଂଖ୍ୟା ଆଖିଦୃଶିଆ ଭାବେ ବୃଦ୍ଧି ପାଇଥିଲା । ଶ୍ରମିକ ଶ୍ରେଣୀର ସାଧାରଣ ଶିକ୍ଷାଗତ ଏବଂ ସାଂସ୍କୃତିକ ମାନ ଖୁବ୍ ବୃଦ୍ଧି ଲାଭ କରିଥିଲା । ବୃତ୍ତିଗତ ତାଲିମ୍ ଏବଂ ଶ୍ରମିକମାନଙ୍କର ଦକ୍ଷତା ମଧ୍ୟ ବଢ଼ି ଯାଇଥିଲା : ୧୯୩୬ ମସିହାରେ ଶ୍ରମିକମାନଙ୍କ ମଧ୍ୟରୁ ଶତକଡ଼ା ୮ ଭାଗ ଉଚ୍ଚତର ଏବଂ ମାଧ୍ୟମିକ ଶିକ୍ଷା (ସଂପୂର୍ଣ୍ଣ ବା ଅସଂପୂର୍ଣ୍ଣ) ଥିଲା ବେଳେ, ୧୯୭୬ରେ ଏହା ଶତକଡ଼ା ୭୩ ଭାଗରେ ପହଞ୍ଚିଥିଲା । ସୋଭିଏତ୍ ସମାଜରେ ଗଢ଼ି ଉଠିଥିଲେ ନୂଆ ଧରଣର ଏକ ଶ୍ରମିକ ଯାର ଉତ୍ପାଦନ କ୍ରିୟାକଳାପ କ୍ରମାଧିକ ଭାବେ ସୁସାମଞ୍ଜସ୍ୟତା ନେଇ ଦୈହିକ ଏବଂ ବୌଦ୍ଧିକ କାର୍ଯ୍ୟକୁ ମିଳେଇ ନେଉଥିଲା । ରାଜନୀତି ଏବଂ କର୍ମ କ୍ଷେତ୍ରରେ ଶ୍ରମିକ ଶ୍ରେଣୀର କ୍ରିୟାକଳାପ ଆଉରି ଅଧିକ ଉନ୍ନତ ହୋଇଥିଲା । ଶ୍ରମିକ ଶ୍ରେଣୀର ଥିବା ବୈଶିଷ୍ଟ୍ୟରାଜି, ଯଥା, ଉଚ୍ଚ ରାଜନୈତିକ ପୋଖତତା, ସଂଗଠନ, ଯୌଥତା, ଦେଶପ୍ରେମ, ଆନ୍ତର୍ଜାତିକତାବାଦ, କମ୍ୟୁନିଷ୍ଟ ଆଦର୍ଶ ପ୍ରତି ଗଭୀର ଆନୁଗତ୍ୟ, ଏବଂ ସେସବୁକୁ ଲଗାତର ଭାବେ କାର୍ଯ୍ୟକାରୀ କରିବା ପାଇଁ ଦୃଢ଼ତା ଏବଂ ଅବିଚଳତା – କ୍ରମାଧିକ ଭାବେ ପ୍ରକାଶ ପାଇବାରେ ଲାଗିଥିଲା । ଏହା ଫଳରେ ସମାଜବାଦୀ ସମାଜରେ ଶ୍ରମିକ ଶ୍ରେଣୀର ଅଗ୍ରଣୀ ଭୂମିକା ଏବଂ ସମଗ୍ର ଶ୍ରମଜୀବୀ ଜନସାଧାରଣ ସେହି ଶ୍ରେଣୀ ଚତୁଃପାର୍ଶ୍ୱରେ ଏକତ୍ରିତ ହେବା ଦିଗରେ ତା'ର ଅବଦାନକୁ ଲଗାତର ଭାବେ ବଢ଼େଇବାରେ ଲାଗିଥିଲା ।

ଦ୍ୱିତୀୟତଃ, ଦେଶ ମଧ୍ୟରେ କୃଷକମାନଙ୍କର ସଂଖ୍ୟା କମିବାରେ ଲାଗିଥିଲା, ସମଗ୍ର ଜନସଂଖ୍ୟାରେ ୧୯୩୯ରେ ସେମାନଙ୍କ ଅଂଶ ଶତକଡ଼ା ୪୭,୨ ଭାଗ (କାରିଗରମାନଙ୍କ ମଧ୍ୟରେ ଥିବା ସଦସ୍ୟଙ୍କ ସମେତ) ଥିଲା ବେଳେ ୧୯୭୭ରେ ଶତକଡ଼ା ୧୫,୭ ଭାଗକୁ କମି ଆସିଥିଲା । ଏପରି ଘଟିବାର କାରଣ ହେଲା କୃଷିରେ କ୍ରମାଧିକ ଯାନ୍ତ୍ରିକୀକରଣ । ଏହା ଫଳରେ ଦୈହିକ ଶ୍ରମର ଚାହିଦା କମି ଆସିଥିଲା ଏବଂ କୃଷକମାନଙ୍କ ମଧ୍ୟରେ ଏକ ବଡ଼ ଅଂଶ ଶିଳ୍ପ, ଯାନବାହନ ଆଦିରେ ନିଯୁକ୍ତ ହୋଇଥିଲେ । ଏହା

ଛଡ଼ା ଅର୍ଥନୈତିକ ଭାବେ ଅଦକ୍ଷ କୋଠଖମାରଗୁଡ଼ିକ ମଧ୍ୟରୁ ଗୋଟିଏ ଅଂଶକୁ ରାଷ୍ଟ୍ରଖମାରରେ ପରିଣତ କରି ଦିଆଗଲା । ଏହା କରାଯାଇଥିଲା ସେସବୁ ଖମାରର ସଦସ୍ୟମାନଙ୍କ ସ୍ୱୀକୃତି କ୍ରମେ । ସେହିସବୁ ଲୋକେ ଶ୍ରମିକରେ ପରିଣତ ହୋଇଥିଲେ । କୃଷକମାନଙ୍କ କାର୍ଯ୍ୟ କ୍ରମାଧିକ ଭାବେ ଶ୍ରମିକମାନଙ୍କ କାର୍ଯ୍ୟର ଚରିତ୍ର ଧାରଣ କରିବାରେ ଲାଗିଛି : ପ୍ରତି ପାଞ୍ଚ ଜଣ କୃଷକମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି ମେସିନ୍ ଚାଳକ । କୃଷକମାନଙ୍କ ସାଧାରଣ ଶିକ୍ଷାଗତ ଏବଂ ସାଂସ୍କୃତିକ ମାନ ମଧ୍ୟ ଉନ୍ନତ ହେବାରେ ଲାଗିଥିଲା : ଗ୍ରାମାଞ୍ଚଳର ଶ୍ରମଜୀବୀ ଅଧିବାସୀମାନଙ୍କ ମଧ୍ୟରୁ ପ୍ରତି ଦୁଇ ଜଣ ମଧ୍ୟରେ ଜଣେ ହେଉଛନ୍ତି ଉଚ୍ଚତର ବା ମାଧ୍ୟମିକ ଶିକ୍ଷାଧାରୀ (ସଂପୂର୍ଣ୍ଣ କିମ୍ବା ଅସଂପୂର୍ଣ୍ଣ) । କୃଷକମାନଙ୍କର ସମାଜବାଦୀ ଚେତନା ମଧ୍ୟ ବୃଦ୍ଧି ପାଇଥିଲା ଏବଂ ସେମାନେ ଅଧିକରୁ ଅଧିକ ରାଜନୀତି ଏବଂ କାର୍ଯ୍ୟରେ ସକ୍ରିୟ ହୋଇଥିଲେ । ସେମାନେ କାର୍ଯ୍ୟ, ସାଂସ୍କୃତିକ ସ୍ତର, ଜୀବନଧାରଣର ମାନ ଏବଂ ଦୈନନ୍ଦିନ ଜୀବନଯାପନର ଚରିତ୍ର ଦୃଷ୍ଟିରୁ ଶ୍ରମିକ ଶ୍ରେଣୀର ଅନେକ ନିକଟବର୍ତ୍ତୀ ହୋଇ ଆସିଥିଲେ ।

ସର୍ବାଧିକ ଅଭିବୃଦ୍ଧିର ପରିଚୟ ଦେଇଥିଲେ ବୁଦ୍ଧିଜୀବୀ ସଂପ୍ରଦାୟ । ଦେଶର ଲୋକସଂଖ୍ୟା ମଧ୍ୟରେ ଏମାନଙ୍କ ଅଂଶଟି ୧୯୩୯ରେ ଶତକଡ଼ା ୧୬.୭ ଭାଗ ଥିଲା ବେଳେ ୧୯୭୭ରେ ଶତକଡ଼ା ୨୨,୭ ଭାଗ ହୋଇଥିଲା । ତା'ଛଡ଼ା ବୁଦ୍ଧିଜୀବୀ ସଂପ୍ରଦାୟ ଆଉରି କାର୍ଯ୍ୟଦକ୍ଷତାକୁ ବୃଦ୍ଧି ପାଇଥିଲା । ସୋଭିଏତ୍ ୟୁନିଅନ୍‌ରେ କମ୍ୟୁନିଜମ୍ ନିର୍ମାଣ କ୍ଷେତ୍ରକୁ ଏହା ଅଧିକରୁ ଅଧିକ ଅବଦାନ ରଖି ଚାଲିଥିଲା ।

ସାମାଜିକ ଏବଂ ଶ୍ରେଣୀଗତ ଗଢ଼ଣରେ ଏହିସବୁ ପରିବର୍ତ୍ତନର ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଫଳ ହେଲା ସୋଭିଏତ୍ ସମାଜରେ ଅଧିକତର ସାମାଜିକ ସୁସାମଞ୍ଜସ୍ୟତା, ଶ୍ରମିକ ଶ୍ରେଣୀ, କୋଠଋଷୀ ଏବଂ ଗଣ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଥିଲା ମେଣ୍ଟର ଦୃଢ଼ୀକରଣ ।

ସମାଜବାଦୀ ଜାତିସମୂହର ଚରିତ୍ର ଏବଂ ସେମାନଙ୍କ ମଧ୍ୟରେ ପାରସ୍ପରିକ ସଂପର୍କରାଜି କ୍ଷେତ୍ରରେ ମୌଳିକ ପରିବର୍ତ୍ତନମାନ ଦେଖାଦେଇଥିଲା । ଏହି ସମାନତା କେବଳ ଆଇନଗତ ଭାବେ ନୁହେଁ, ବାସ୍ତବ କ୍ଷେତ୍ରରେ ମଧ୍ୟ । ସୋଭିଏତ୍ ସମସ୍ତ ପ୍ରଜାତନ୍ତ୍ର, ଅର୍ଥନୈତିକ ତଥା ସାଂସ୍କୃତିକ ଭାବେ ଏକଦା ଯେଉଁସବୁ ପଛରେ ପଡ଼ିଥିଲେ, ସେମାନେ ଏବେ ବିକାଶର ଉଚ୍ଚ ସ୍ତରରେ ପହଞ୍ଚି ପାରିଛନ୍ତି ।

ସୋଭିଏତ୍ ପ୍ରଜାତନ୍ତ୍ରସମୂହର ଅର୍ଥନୈତିକ ଏବଂ ସାଂସ୍କୃତିକ ବିକାଶର ସ୍ତରସମୂହ ସମାନ ହୋଇ ପାରିଥିଲା ପୂର୍ବେ ପଶ୍ଚାତ୍‌ପଦ ଅବସ୍ଥାରେ ପଡ଼ିଥିବା ପ୍ରଜାତନ୍ତ୍ରସମୂହର ଅଧିକ ମାତ୍ରାରେ ଦ୍ରୁତ ଅଗ୍ରଗତି ହାସଲ କରିବା ଦ୍ୱାରା । ସୋଭିଏତ୍ ଶାସନ ପ୍ରତିଷ୍ଠା ହେବାର ୬୦ ବର୍ଷ ମଧ୍ୟରେ ୟୁକ୍ରେନ୍‌ର ଶିଳ୍ପ ଉତ୍ପାଦନ ୯୦ ଗୁଣ, ଆଜରବୈଜାନ୍‌ରେ ୧୨୩ ଗୁଣ, କାଜାଖସ୍ତାନରେ ୨୨୭ ଗୁଣ, ଉଜ୍‌ବେକିସ୍ତାନରେ ୨୪୦ ଗୁଣ, କିରଘିଜିଆ

୩୦୧ ଗୁଣ ଏବଂ ଆର୍ମେନିଆରେ ୩୦୭ ଗୁଣ ବୃଦ୍ଧି ପାଇଥିଲା । ପ୍ରଜାତନ୍ତ୍ରସମୂହର ଅର୍ଥନୀତି ସୁସଂହତ ଜାତୀୟ ଅର୍ଥନୀତି ଅବିଚ୍ଛିନ୍ନ ଅଂଶରେ ପରିଣତ ହୋଇଛି । ଜୀବନର ଏହି ଅଗ୍ରଗତି ଏଦେଶରେ ସମସ୍ତ ଜାତି ଏବଂ ଜାତୀୟ ଗୋଷ୍ଠୀଗୁଡ଼ିକୁ ଆଉରି ନିବିଡ଼ ଭାବେ ଏକାଠି କରି ଦେଇଛି ।

ଏହି ସାର୍ବିକ ସାମାଜିକ ବିକାଶର ଫଳ ସ୍ୱରୂପ ଏଦେଶରେ ଏକ ନୂତନ ସାମାଜିକ ଏବଂ ଆନ୍ତର୍ଜାତିକ ଐତିହାସିକ ଜନଗୋଷ୍ଠୀର ଅଭ୍ୟୁଦୟ ଏବଂ ସୁଦୃଢ଼ୀକରଣ ଘଟିଥିଲା । ସେ ଐତିହାସିକ ଜନଗୋଷ୍ଠୀଟି ହେଲେ ସୋଭିଏତ୍ ଜନସାଧାରଣ । ସାମାଜିକ ଏବଂ ଜାତୀୟ ପାର୍ଥକ୍ୟ ଉପରେ ନିର୍ଭର କରୁ ନଥିବା ସୋଭିଏତ୍ ଜନସାଧାରଣଙ୍କର ଆଚାର ବ୍ୟବହାର, ଚରିତ୍ର, ବିଶ୍ୱଦୃଷ୍ଟିକୋଣ ମଧ୍ୟରେ ଥିବା ଅଭିନ୍ନ ବୈଶିଷ୍ଟ୍ୟରାଜି କ୍ରମାଗତ ଭାବେ ନିଷ୍ପତ୍ତିମୂଳକ ଗୁରୁତ୍ୱ ଲାଭ କରିବାରେ ଲାଗିଛି ।

୧୯୩୬ ମସିହାର ସମ୍ବିଧାନଟି ଗୃହୀତ ହେଲାର ପରବର୍ତ୍ତୀ କାଳରେ ସମାଜବାଦୀ ସମାଜ ରାଜନୈତିକ ବ୍ୟବସ୍ଥାରେ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନମାନ ଘଟି ଯାଇଥିଲା । ଏହି ରାଜନୈତିକ ବ୍ୟବସ୍ଥାର କେନ୍ଦ୍ରକୋଷ କମ୍ୟୁନିଷ୍ଟ ପାର୍ଟିର ଅଗ୍ରଣୀ ଭୂମିକା ଆଉରି ଅଧିକ ବୃଦ୍ଧି ପାଇଥିଲା । ଶ୍ରମଜୀବୀ ଜନସାଧାରଣଙ୍କ ମଧ୍ୟରେ ପାର୍ଟିର ସମ୍ମାନ ବିପୁଳ ଭାବେ ବୃଦ୍ଧି ପାଇବା ସାଥେ ସାଥେ ଜନସାଧାରଣଙ୍କ ସହିତ ତା'ର ଯୋଗସୂତ୍ର ମଧ୍ୟ ଶକ୍ତିଶାଳୀ ହୋଇଥିଲା । ଏହାର ଜ୍ୱଳନ୍ତ ପରିପ୍ରକାଶ ଘଟିଥିଲା ପାର୍ଟି ସଦସ୍ୟ ସଂଖ୍ୟାର ବିପୁଳ ଅଭିବୃଦ୍ଧି ମଧ୍ୟରେ । ୧୯୩୯ ମସିହାରେ ୨୫ ଲକ୍ଷ ପାର୍ଟି ସଦସ୍ୟ ଥିଲା ବେଳେ ୧୯୭୭ ମସିହାରେ ୧ କୋଟି ୬୦ ଲକ୍ଷକୁ ଟପି ଯାଇଥିଲା । ଏମାନଙ୍କ ମଧ୍ୟରୁ ଶତକଡ଼ା ୪୨ ଭାଗ ଥିଲେ ଶ୍ରମିକ । ମୂଳତଃ ଶ୍ରମିକ ଶ୍ରେଣୀର ପାର୍ଟି ହୋଇ ରହିଲେ ମଧ୍ୟ ଏହା ସମଗ୍ର ଜନସାଧାରଣଙ୍କର ପାର୍ଟି, ସେମାନଙ୍କ ଛାମୁବାହିନୀରେ ପରିଣତ ହୋଇଥିଲା । କାରଣ ଶ୍ରମିକ ଶ୍ରେଣୀର ଯେଉଁ ଲକ୍ଷ୍ୟ ଆଉ ଆଦର୍ଶ ପାଇଁ ପାର୍ଟି ଲଢ଼ୁଥିଲା, ତାହା ସମଗ୍ର ଜନସାଧାରଣଙ୍କ ଲକ୍ଷ୍ୟ ଆଉ ଆଦର୍ଶରେ ପରିଣତ ହେଲା ।

୧୯୩୬ ମସିହାର ସମ୍ବିଧାନ ଗୃହୀତ ହେବାଟା ଥିଲା ସର୍ବହରା ଏକନାୟକତ୍ୱ ଥିବା ରାଷ୍ଟ୍ରର ସମସ୍ତ ଜନସାଧାରଣଙ୍କ ସମାଜବାଦୀ ରାଷ୍ଟ୍ରକୁ ବିକାଶ ଲାଭ କରିବାର ପ୍ରାରମ୍ଭ ସ୍ୱରୂପ । ୧୯୩୬ ମସିହା ପରେ ଏହି ପ୍ରକ୍ରିୟାଟି ପୂର୍ଣ୍ଣତା ଲାଭ କରି ଚାଲିଥିଲା । ସମସ୍ତ ଜନସାଧାରଣଙ୍କର ରାଷ୍ଟ୍ର ହେଉଛି କମ୍ୟୁନିଜମ୍ ନିର୍ମାଣ କରିବାର ମୁଖ୍ୟ ହତିଆର । ସମାଜର ରାଜନୈତିକ, ଅର୍ଥନୈତିକ, ସାମାଜିକ ଏବଂ ସାଂସ୍କୃତିକ ବିକାଶର ରାଷ୍ଟ୍ରୀୟ ପରିଚାଳନା ଉନ୍ନତ ହେବା ସାଥେ ସାଥେ ଅଧିକ ଫଳପ୍ରଦ ହୋଇଥିଲା । ସୋଭିଏତ୍‌ସମୂହ, ଟ୍ରେଡ୍‌ୟୁନିଅନ୍, ଯୁବ ସଂଘ, ସୃଜନାତ୍ମକ ସଂଘ, କର୍ମୀବାହିନୀ ଭଳି ଶ୍ରମଜୀବୀ ଜନସାଧାରଣଙ୍କର ଗଣ ସଂଗଠନଗୁଡ଼ିକ ଜରିଆରେ ରାଷ୍ଟ୍ରୀୟ ବ୍ୟାପାର ପରିଚାଳନାରେ ବ୍ୟାପକ ଶ୍ରମଜୀବୀ ଲୋକଙ୍କର ଅଂଶଗ୍ରହଣ ବିପୁଳ ପରିମାଣରେ ବୃଦ୍ଧି

ପାଇଥିଲା । ସମାଜବାଦୀ ଗଣତନ୍ତ୍ରର ଆଉରି ଅଭିବୃଦ୍ଧି ଘଟିଥିଲା ଏବଂ ସମାଜବାଦୀ ଆଇନ୍ ଏବଂ ଶୃଙ୍ଖଳା ଆଉରି ଦୃଢ଼ ହୋଇଥିଲା ।

ସୋଭିଏତ୍ ସମାଜର ବୌଦ୍ଧିକ ଜୀବନରେ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଆସିଥିଲା । ଶ୍ରମଜୀବୀ ଜନସାଧାରଣଙ୍କର ଆଚରଣ ସମାଜବାଦୀ ସଚେତନା ଦ୍ୱାରା ନିୟନ୍ତ୍ରିତ ହେବାକୁ ଆରମ୍ଭ କରିଥିଲା । ଲୋକମାନଙ୍କର ଶିକ୍ଷାଗତ ତଥା ସାଂସ୍କୃତିକ ମାନ ଉନ୍ନତ ହୋଇଥିଲା—କର୍ମନିଯୁକ୍ତ ଜନସଂଖ୍ୟାର ତିନି ଚତୁର୍ଥାଂଶରୁ ଅଧିକ ଲୋକ ୧୯୭୦ ଦଶକର ମଧ୍ୟ ଭାଗ ବେଳକୁ ଉଚ୍ଚ ଶିକ୍ଷା କିମ୍ବା ମାଧ୍ୟମିକ ଶିକ୍ଷାର ଅଧିକାରୀ ଥିଲେ । ଉଚ୍ଚତର ଏବଂ ବିଶେଷୀକୃତ ମାଧ୍ୟମିକ ଶିକ୍ଷାର ବିପୁଳ ସମ୍ଭାବନା ସୁଯୋଗ ଆଣି ଦେଇଥିଲା : ୧୯୭୧-୧୯୭୫ ମସିହାରେ କେବଳ ୨ କୋଟି ବିଶେଷଜ୍ଞ ତାଲିମ୍ ଲାଭ କରିଥିଲେ । ସୋଭିଏତ୍ ସମାଜର ବିକାଶ କ୍ଷେତ୍ରରେ ବିଜ୍ଞାନର ଭୂମିକା ବିପୁଳ ଭାବେ ବୃଦ୍ଧି ପାଇଥିଲା । ଉତ୍ପାଦନରେ ବିଜ୍ଞାନ ଏକ ପ୍ରତ୍ୟକ୍ଷ ଉପାଦାନରେ ପରିଣତ ହେଲା । ସାହିତ୍ୟ ଏବଂ କଳା ମଧ୍ୟ ପ୍ରସ୍ଫୁଟିତ ହେବାକୁ ଲାଗିଥିଲା : ସୋଭିଏତ୍ ଜନସାଧାରଣଙ୍କର କମ୍ୟୁନିଷ୍ଟ ଶିକ୍ଷା କ୍ଷେତ୍ରରେ ସେସବୁର ଭୂମିକା ବୃଦ୍ଧି ପାଇଥିଲା ।

ସୋଭିଏତ୍ ୟୁନିଅନ୍‌ର ଆନ୍ତର୍ଜାତିକ ଅବସ୍ଥାନରେ ମଧ୍ୟ ବିରାଟ ପରିବର୍ତ୍ତନ ଘଟିଥିଲା । ସମାଜବାଦ ପରିଣତ ହୋଇଥିଲା ଏକ ବିଶ୍ୱ ବ୍ୟବସ୍ଥାରେ । ଏକ ଶକ୍ତିଶାଳୀ ସମାଜବାଦୀ ଗୋଷ୍ଠୀର ଉନେ୍ମଷ ଘଟିଥିଲା । ସୋଭିଏତ୍ ୟୁନିଅନ୍‌ର ଆନ୍ତର୍ଜାତିକ ସମ୍ମାନ ଏବଂ ପ୍ରଭାବ ଅଭଳନ ଭାବେ ବୃଦ୍ଧି ପାଇଥିଲା ।

ସୋଭିଏତ୍ ୟୁନିଅନ୍ ଯେ ଏକ ଉନ୍ନତ ସମାଜବାଦୀ ସମାଜରେ ପରିଣତ ହୋଇଛି, ଏହା ଅବିରାମ ଭାବେ ଅଭିବୃଦ୍ଧି ଲାଭ କରୁଛି ଏବଂ କ୍ରମଶଃ ବିକାଶ ଲାଭ କରୁଛି ଏକ କମ୍ୟୁନିଷ୍ଟ ସମାଜ ଆଡ଼କୁ ତାହାର ପ୍ରତିଫଳନ ଏହିସବୁ ପରିବର୍ତ୍ତନରେ ଘଟିଥିଲା ଏବଂ ଏହା ଆବଶ୍ୟକ କରୁଥିଲା ସୋଭିଏତ୍ ୟୁନିଅନ୍ ପାଇଁ ନୂଆ ଏକ ସମ୍ବିଧାନ ।

ଏହି ଖସଡ଼ା ସମ୍ବିଧାନ ରଚନା କରିଥିଲେ ସର୍ବୋଚ୍ଚ ସୋଭିଏତ୍ ଦ୍ୱାରା ଗଠିତ ଏକ ବିଶେଷ କମିସନ । ଏହି କମିସନର ଚେୟାରମ୍ୟାନ ଥିଲେ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟି ତଥା ସୋଭିଏତ୍ ୟୁନିଅନ୍‌ର ସର୍ବୋଚ୍ଚ ସୋଭିଏତର ସଭାପତି ମଣ୍ଡଳୀର ସଭାପତି ଲିଓନିଦ୍ ବ୍ରେଜ୍‌ନେଭ୍ । କମିସନ ମଧ୍ୟରେ ରହିଥିଲେ ପୁରୁଣା ଅଭିଜ୍ଞ ପାର୍ଟି ସଦସ୍ୟ ତଥା ସରକାରର କର୍ମଚାରୀ, ଶ୍ରମିକ, କୃଷକ, ବୁଦ୍ଧିଜୀବୀ ଏବଂ ସୋଭିଏତ୍ ୟୁନିଅନ୍‌ର ବିଭିନ୍ନ ଜାତିର ସଦସ୍ୟବୃନ୍ଦ । ଖସଡ଼ାଟିକୁ ବ୍ୟାଖ୍ୟା କରିବାରେ ବିଖ୍ୟାତ ବୈଜ୍ଞାନିକ, ବିଶେଷଜ୍ଞ, ବିଭିନ୍ନ ସରକାରୀ ସଂସ୍ଥାର ଓ ଗଣ ସଂଗଠନର କର୍ମୀବୃନ୍ଦ ଅଂଶଗ୍ରହଣ କରିଥିଲେ ।

୧୯୭୭ ମେ ମାସ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟି ଏବଂ ସୋଭିଏତ୍ ୟୁନିଅନ୍‌ର ସର୍ବୋଚ୍ଚ ସୋଭିଏତ୍‌ର ସଭାପତି ମଣ୍ଡଳୀର ଏକ ପୂର୍ଣ୍ଣାଙ୍ଗ ଅଧିବେଶନରେ ଖସଡ଼ା ସମ୍ବିଧାନଟି ଅନୁମୋଦନ ଲାଭ କରିଥିଲା । ଏହି ଅଧିବେଶନରେ ନିଷ୍ପତ୍ତି ନିଆଯାଇଥିଲା ଗଣ ଆଲୋଚନା ପାଇଁ ଖସଡ଼ା ସମ୍ବିଧାନଟିକୁ ଉପସ୍ଥାପିତ କରିବାକୁ । ଏହି ବର୍ଷ ଜୁନ୍ ୪ ତାରିଖ ଦିନ ଦେଶର ସମସ୍ତ ସମ୍ବାଦପତ୍ରରେ ଏହା ପ୍ରକାଶ ପାଇଥିଲା, ରେଡିଓ ଏବଂ ଟେଲିଭିଜନରେ ଆଲୋଚିତ ହୋଇଥିଲା । ତା'ପରେ ଆରମ୍ଭ ହୋଇଥିଲା ଜନସାଧାରଣଙ୍କର ମଧ୍ୟରେ ଆଲୋଚନା । ଏହି ଆଲୋଚନା ଚାଲିଥିଲା ୪ ମାସ କାଳ । ଏଥିରେ ୧୪ କୋଟି ଲୋକ, ଅର୍ଥାତ୍, ଦେଶର ସାବାଳକ ଜନସଂଖ୍ୟାର ଶତକଡ଼ା ୮୦ ଭାଗ ଲୋକ ଅଂଶଗ୍ରହଣ କରିଥିଲେ । ଖସଡ଼ା ସମ୍ବିଧାନଟିକୁ ସମସ୍ତେ ସମର୍ଥନ ଦେବା ସାଥେ ସାଥେ ହାର୍ଦ୍ଦିକତାର ସହିତ ଅନୁମୋଦନ ଜଣାଇଥିଲେ । ଏହି ଆଲୋଚନା କାଳରେ ୪ ଲକ୍ଷ ପରାମର୍ଶ ଏବଂ ସମ୍ବିଧାନର ଧାରାଗୁଡ଼ିକର ସଂଶୋଧନ ମିଳିଥିଲା । ସେସବୁ ଥିଲା ଖସଡ଼ା ସମ୍ବିଧାନଟିର ବିଶେଷୀକରଣ, ଉନ୍ନତି ସାଧନ ଏବଂ ପୂର୍ଣ୍ଣତା ସାଧନ ଲକ୍ଷ୍ୟରେ । ସମ୍ବିଧାନ କମିସନ ସେସବୁକୁ ସତର୍କ ଭାବେ ପରୀକ୍ଷା କରି ଦେଖିଥିଲେ ପ୍ରାୟ ୧୫୦ଟି ସଂଯୋଜନ, ସଂଶୋଧନ ଏବଂ ବିଶେଷୀକରଣକୁ ଗ୍ରହଣ କରିବା ପାଇଁ ସୁପାରିଶ କରିଥିଲେ । ଏସବୁ ଛଡ଼ା ଅସଂଖ୍ୟ ସଂପାଦନାମୂଳକ ପରିବର୍ତ୍ତନ ଏଥିରେ ଥିଲା ।

ତିନି ଦିନ କାଳ ପୁଙ୍ଖାନୁପୁଙ୍ଖ ଭାବେ ଆଲୋଚନା ପରେ ସୋଭିଏତ୍ ୟୁନିଅନ୍‌ର ସର୍ବୋଚ୍ଚ ସୋଭିଏତ୍‌ର ଅସାଧାରଣ ଅଧିବେଶନରେ ସୋଭିଏତ୍ ୟୁନିଅନ୍‌ର ଏହି ନୂଆ ସମ୍ବିଧାନ ୧୯୭୭ ଅକ୍ଟୋବର ୭ ତାରିଖରେ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା । ଅକ୍ଟୋବର ୭ ତାରିଖଟି ଘୋଷିତ ହେଲା ଏକ ଛୁଟି ଦିନ ରୂପେ ।

୧୯୭୭ର ସୋଭିଏତ୍ ୟୁନିଅନ୍‌ର ସମ୍ବିଧାନଟି ସମାଜବାଦୀ ସମାଜର ସାଧାରଣ ନୀତିରାଜି, ଉନ୍ନତ ସମାଜବାଦୀ ସମାଜର ମୌଳିକ ବୈଶିଷ୍ଟ୍ୟସମୂହ, ସୋଭିଏତ୍ ରାଷ୍ଟ୍ରର ସର୍ବୋଚ୍ଚ ଲକ୍ଷ୍ୟ – କମ୍ୟୁନିଷ୍ଟ ସମାଜ – ଏକ ଶ୍ରେଣୀହୀନ ସମାଜ ନିର୍ମାଣ ଏବଂ ରାଷ୍ଟ୍ରର ମୁଖ୍ୟ କର୍ତ୍ତବ୍ୟରାଜିକୁ ଆନୁଷ୍ଠାନିକ ରୂପ ଦେଇଥିଲା । ଏହିସବୁ କର୍ତ୍ତବ୍ୟରାଜିକୁ ସଂପନ୍ନ କରିବା ହେଉଛି ସେହି ସର୍ବୋଚ୍ଚ ଲକ୍ଷ୍ୟରେ ପହଞ୍ଚିବା ।

ସମ୍ବିଧାନରେ ରାଜନୈତିକ ବ୍ୟବସ୍ଥା ସଂକ୍ରାନ୍ତ ପରିଚ୍ଛେଦରେ କୁହାଯାଇଛି, ସୋଭିଏତ୍ ୟୁନିଅନ୍ "ହେଉଛି ସମଗ୍ର ଜନସାଧାରଣଙ୍କର ଏକ ସମାଜବାଦୀ ରାଷ୍ଟ୍ର, ଏହା ଶ୍ରମିକ, କୃଷକ ଏବଂ ବୁଦ୍ଧିଜୀବୀ ତଥା ଦେଶର ସମସ୍ତ ଜାତି ଏବଂ ଅଧିଜାତିମାନଙ୍କର ଶ୍ରମଜୀବୀ ଜନସାଧାରଣଙ୍କର ଅଭିଳାଷକୁ ପ୍ରକାଶ କରୁଛି ।" ଏହି ରାଷ୍ଟ୍ରର ସମସ୍ତ କ୍ଷମତା ଜନସାଧାରଣଙ୍କ ହାତରେ ନିହିତ, ସେମାନେ ଜନପ୍ରତିନିଧିମାନଙ୍କ ସୋଭିଏତ୍‌ଗୁଡ଼ିକ ଜରିଆରେ ଏହି କ୍ଷମତାକୁ କାର୍ଯ୍ୟକାରୀ କରିଥାନ୍ତି । ସୋଭିଏତ୍‌ଗୁଡ଼ିକ ହେଉଛି ସୋଭିଏତ୍ ୟୁନିଅନ୍‌ର ରାଜନୈତିକ ମୂଳ ଭିତ୍ତି । ନୂତନ ସମ୍ବିଧାନ ଗଣତାନ୍ତ୍ରିକ

ନୀତିରାଜିକୁ ଆଉରି ବିକଶିତ କରିଛି, ଏହିସବୁ ନୀତିରାଜି ଅନୁସାରେ ଜନପ୍ରତିନିଧିମାନଙ୍କ ସୋଭିଏତ୍‌ଗୁଡ଼ିକ ଗଠିତ ହୋଇଥାଏ ଏବଂ କାର୍ଯ୍ୟ କରିଥାଏ । ସମାଜର ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ସମସ୍ୟାବଳୀର ସମାଧାନ କ୍ଷେତ୍ରରେ ସେମାନଙ୍କ ଭୂମିକାକୁ ବୃଦ୍ଧି କରିବା ପାଇଁ ସୁଯୋଗସମୂହ ଯୋଗାଇ ଦେଇଛି ସୋଭିଏତ୍‌ସମୂହକୁ ଜନପ୍ରତିନିଧିମାନଙ୍କୁ ବ୍ୟାପକ ଅଧିକାର ପ୍ରଦାନ କରାଯାଇଛି ଏହି ସମ୍ବିଧାନରେ । "ସୋଭିଏତ୍‌ସମୂହକୁ ଜନସାଧାରଣଙ୍କର ସର୍ବୋଚ୍ଚ ପ୍ରତିନିଧି ବୋଲି" – ଏଥିରେ କୁହାଯାଇଛି । ସେମାନଙ୍କ କାର୍ଯ୍ୟ, ସୋଭିଏତ୍‌ସମୂହର କାର୍ଯ୍ୟକଳାପ ସଂପର୍କରେ ସେମାନଙ୍କ ଭୋଟଦାତାମାନଙ୍କୁ ରିପୋର୍ଟ କରିବାକୁ ସମ୍ବିଧାନରେ ବାଧ୍ୟତାମୂଳକ କରାଯାଇଛି । ଯେଉଁ ପ୍ରତିନିଧି ତା'ର ଭୋଟଦାତାମାନଙ୍କ ବିଶ୍ୱାସ ଭାଜନ ହେବ ନାହିଁ, ତାକୁ ତା'ର ଭୋଟଦାତାମାନେ ଯେକୌଣସି ସମୟରେ ଆଇନଗତ ପଦ୍ଧତି ଅନୁଯାୟୀ ସଂଖ୍ୟାଧିକ ଭୋଟଦାତାମାନଙ୍କ ନିଷ୍ପତ୍ତି ଦ୍ୱାରା ସୋଭିଏତ୍‌ରୁ ଫେରସ୍ତ ନେଇ ଆସିବେ ।

ରାଜନୈତିକ ବ୍ୟବସ୍ଥାର କୋଷକେନ୍ଦ୍ର ହିସାବରେ କମ୍ୟୁନିଷ୍ଟ ପାର୍ଟିର ଅଗ୍ରଣୀ ଭୂମିକାକୁ ସମ୍ବିଧାନ ଆନୁଷ୍ଠାନିକତା ପ୍ରଦାନ କରିଛି – "ମାର୍କସ୍‌ବାଦ-ଲେନିନ୍‌ବାଦ ଦ୍ୱାରା ସୁସଜ୍ଜିତ ହୋଇ କମ୍ୟୁନିଷ୍ଟ ପାର୍ଟି ସାମାଜିକ ବିକାଶର ସାଧାରଣ ସମ୍ଭାବନାରାଜିକୁ, ସୋଭିଏତ୍ ୟୁନିଅନ୍‌ର ଘରୋଇ ଏବଂ ବୈଦେଶିକ ନୀତିକୁ ନିର୍ଦ୍ଧାରଣ କରିଥାଏ, ସୋଭିଏତ୍ ଜନସାଧାରଣଙ୍କର ମହାନ୍ ଗଠନମୂଳକ କାର୍ଯ୍ୟକୁ ପରିଚାଳିତ କରେ ଏବଂ କମ୍ୟୁନିଜମ୍‌ର ବିଜୟ ପାଇଁ ସେମାନଙ୍କ ସଂଗ୍ରାମକୁ ଏକ ଯୋଜନାବଦ୍ଧ, ପ୍ରଣାଳୀବଦ୍ଧ ଏବଂ ତତ୍ତ୍ୱଗତ ଭାବେ ପ୍ରତିଷ୍ଠିତ ଚରିତ୍ର ପ୍ରଦାନ କରିଥାଏ ।" କମ୍ୟୁନିଷ୍ଟ ପାର୍ଟି ତା'ର ଅଗ୍ରଣୀ ଭୂମିକାକୁ ପାଳନ କରିଥାଏ ପାର୍ଟି ସଂଗଠନର ସମଗ୍ର ବ୍ୟବସ୍ଥା ତଥା ବ୍ୟକ୍ତିଗତ ଭାବେ କମ୍ୟୁନିଷ୍ଟମାନଙ୍କ ଜରିଆରେ । "ସମସ୍ତ ପାର୍ଟି ସଂଗଠନ ସୋଭିଏତ୍ ୟୁନିଅନ୍‌ର ସମ୍ବିଧାନର ଚଉକାଠ ମଧ୍ୟରେ କାର୍ଯ୍ୟ କରିବ ।" ଜନସାଧାରଣଙ୍କ ପାଇଁ କମ୍ୟୁନିଷ୍ଟ ପାର୍ଟି ରହିଛି ଏବଂ ଏହା ଜନସାଧାରଣଙ୍କ ସେବା କରି ଚାଲିଛି ।

ଉନ୍ନତ ସମାଜବାଦୀ ସମାଜରେ ଟ୍ରେଡ୍‌ୟୁନିଅନ୍‌ସମୂହ, ନିଖିଳ ୟୁନିଅନ୍ ଲେନିନ୍‌ବାଦୀ କମ୍ୟୁନିଷ୍ଟ ଲୀଗ୍, ସମବାୟ ତଥା ଶ୍ରମଜୀବୀ ଜନସାଧାରଣଙ୍କର ଅନ୍ୟାନ୍ୟ ଗଣ ସଂଗଠନଗୁଡ଼ିକର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ ସମ୍ବିଧାନଟି ଲିପିବଦ୍ଧ କରିଛି । ଏହିସବୁ ସଂଗଠନର ରାଷ୍ଟ୍ର ତଥା ଜନସାଧାରଣଙ୍କ ବ୍ୟାପାର ପରିଚାଳନାରେ, ରାଜନୈତିକ, ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ସମସ୍ୟାବଳୀ ସମାଧାନରେ ଅଂଶଗ୍ରହଣ କରିବାର ଅଧିକାର ରହିଛି । ସମଗ୍ର ଦେଶରେ ସେମାନଙ୍କ ସଂସ୍ଥାସମୂହ ଜରିଆରେ ବିଧାନଗତ ଅଗ୍ରପଦକ୍ଷେପ ନେବାର ଅଧିକାର ସେମାନଙ୍କର ରହିଛି । ଅର୍ଥାତ୍, ସୋଭିଏତ୍ ୟୁନିଅନ୍‌ର ସର୍ବୋଚ୍ଚ ସୋଭିଏତ୍ ଏବଂ ପ୍ରଜାତନ୍ତ୍ରସମୂହର ସର୍ବୋଚ୍ଚ ସୋଭିଏତ୍‌ର ବିବେଚନା ପାଇଁ ଖସଡ଼ା ଆଇନ ପେଶ୍ କରିବାର ଅଧିକାର

ସେମାନଙ୍କର ଅଛି । ସମ୍ବିଧାନର ଏକ ସ୍ୱତନ୍ତ୍ର ଧାରାରେ କର୍ମୀ ସମବାୟଗୁଡ଼ିକୁ ଅଧିକାର ପ୍ରଦାନ କରାଯାଇଛି ରାଷ୍ଟ୍ରୀୟ ତଥା ଜନସାଧାରଣଙ୍କ ବ୍ୟାପାର ଆଲୋଚନା କରିବା ଏବଂ ନିଷ୍ପତ୍ତି ନେବାରେ ଅଂଶ ଗ୍ରହଣ କରିବାକୁ, ଉତ୍ପାଦନ ଏବଂ ସାମାଜିକ ବିକାଶର ଯୋଜନା ପ୍ରଣୟନ, ଉଦ୍ୟୋଗ ଓ ବିଭିନ୍ନ ପ୍ରତିଷ୍ଠାନ ପରିଚାଳନାରେ ଭାଗ ନେବାକୁ । ସମାଜବାଦୀ ସମାଜର ରାଜନୈତିକ ବ୍ୟବସ୍ଥାରେ କର୍ମୀ ସମବାୟଗୁଡ଼ିକ ହେଉଛି ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ।

ରାଜନୈତିକ ବ୍ୟବସ୍ଥାର ବିକାଶର ମୁଖ୍ୟ ଦିଗଟିକୁ ବ୍ୟାଖ୍ୟା କରି ସମ୍ବିଧାନ କହିଛି, "ସମାଜବାଦୀ ଗଣତନ୍ତ୍ରର ପ୍ରସାରଣ, ଅର୍ଥାତ୍, ସାମାଜିକ ତଥା ରାଷ୍ଟ୍ରୀୟ ବ୍ୟାପାରର ପରିଚାଳନାରେ ନାଗରିକମାନଙ୍କର କ୍ରମାଧିକ ଭାବେ ବ୍ୟାପକତର ଅଂଶଗ୍ରହଣ, ରାଷ୍ଟ୍ରୀୟ ଯନ୍ତ୍ରର ନିରବଚ୍ଛିନ୍ନ ଉନ୍ନତି ସାଧନ, ଗଣସଂଗଠନଗୁଡ଼ିକର କ୍ରିୟାକଳାପର ବିକାଶ ସାଧନ, ଜନ ନିୟନ୍ତ୍ରଣ ବ୍ୟବସ୍ଥାର ଦୃଢ଼ୀକରଣ, ରାଷ୍ଟ୍ର ତଥା ଜନଜୀବନର ପରିଚାଳନାର ଆଇନଗତ ଭିତ୍ତିର ଦୃଢ଼ୀକରଣ, ଅଧିକତର ପ୍ରକାଶ୍ୟତା ଏବଂ ପ୍ରଚାର ଏବଂ ଗଣମତ ପ୍ରତି ନିରବଚ୍ଛିନ୍ନ ସଂବେଦନଶୀଳତା ।"

ରାଷ୍ଟ୍ରୀୟ ଜୀବନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଗୁଡ଼ିକୁ ଦେଶବ୍ୟାପୀ ଆଲୋଚନା ସମେତ ଦେଶବ୍ୟାପୀ ଭୋଟ ଗ୍ରହଣ ପାଇଁ ଉପସ୍ଥାପିତ କରିବାକୁ ସମ୍ବିଧାନରେ କୁହାଯାଇଛି ।

ସୋଭିଏତ୍ ୟୁନିଅନ୍‌ର ଅର୍ଥନୈତିକ ଭିତ୍ତିକୁ – ଉତ୍ପାଦନର ଉପାୟ ଉପକରଣ ଉପରେ ପ୍ରତିଷ୍ଠିତ ଦୁଇ ଧରଣର ସମାଜବାଦୀ ମାଲିକାନାର ରୂପ : ରାଷ୍ଟ୍ରୀୟ ସଂପତ୍ତି (ସମସ୍ତ ଲୋକଙ୍କର), ମୌଳିକ ଏବଂ ପ୍ରଚଳିତ ରୂପଟି, ଏବଂ କୋଠଖମାର ଏବଂ ସମବାୟର ସଂପତ୍ତି । "ସମାଜବାଦରେ ସାମାଜିକ ଉତ୍ପାଦନର ସର୍ବୋଚ୍ଚ ଲକ୍ଷ୍ୟ ହେଲା ଲୋକଙ୍କର କ୍ରମବର୍ଦ୍ଧମାନ ବୈଷୟିକ, ସାଂସ୍କୃତିକ ଏବଂ ବୌଦ୍ଧିକ ଆବଶ୍ୟକତାକୁ ପୂରଣ କରିବା" କଥାଟି ଲିପିବଦ୍ଧ ହୋଇଛି । ସଂବିଧାନ ମଧ୍ୟ ନାଗରିକମାନଙ୍କୁ ଏବଂ ସେମାନଙ୍କ ପରିବାରର ଲୋକମାନଙ୍କୁ ବ୍ୟକ୍ତିଗତ ଭାବେ ହସ୍ତଶିଳ୍ପ, କୃଷି, ଲୋକଙ୍କ ପାଇଁ ଦୈନନ୍ଦିନ ସେବା କାର୍ଯ୍ୟ କରିବାକୁ ଅଧିକାର ଦେଇଛି ।

ସମ୍ବିଧାନ ଅନ୍ତର୍ଗତ "ସାମାଜିକ ଅଗ୍ରଗତି ଏବଂ ସଂସ୍କୃତି" ଶୀର୍ଷକ ପରିଚ୍ଛେଦଟିରେ (ଏଭଳି ପରିଚ୍ଛେଦ ପୂର୍ବବର୍ତ୍ତୀ ସମ୍ବିଧାନରେ ମୋଟେ ନଥିଲା) ସୋଭିଏତ୍ ୟୁନିଅନ୍‌ର ସାମାଜିକ ଭିତ୍ତିକୁ ଆନୁଷ୍ଠାନିକ ଭାବେ ଉଲ୍ଲେଖ କରିଛି, ତାହା ହେଲା ଶ୍ରମିକ, କୃଷକ ଏବଂ ବୁଦ୍ଧିଜୀବୀମାନଙ୍କର ଅତୁଟ ମେଣ୍ଟ; ଏହା ରାଷ୍ଟ୍ରର ସାମାଜିକ ନୀତିର ମୁଖ୍ୟ ଲକ୍ଷ୍ୟଟିକୁ ଘୋଷଣା କରିଛି – ସମାଜର ସାମାଜିକ ସମଜାତୀୟତାର ଅଭିବୃଦ୍ଧି ପ୍ରତି ଅବଦାନ ରଖିବା । କମ୍ୟୁନିଷ୍ଟ ଆଦର୍ଶ "ପ୍ରତ୍ୟେକର ଅବାଧ ବିକାଶ ହେଉଛି ସମସ୍ତଙ୍କର ଅବାଧ ବିକାଶର ସର୍ତ୍ତ"ରୁ ଆରମ୍ଭ କରି ରାଷ୍ଟ୍ର ନାଗରିକମାନଙ୍କୁ ପ୍ରକୃତ ସୁଯୋଗରାଜି ପ୍ରଦାନ

କରିଥାଏ ସେମାନଙ୍କ ବ୍ୟକ୍ତିତ୍ୱର ସର୍ବାତ୍ମକ ବିକାଶ ପାଇଁ ସେମାନଙ୍କ ସୃଜନୀ ଶକ୍ତି, ସାମର୍ଥ୍ୟ ଆଉ ପ୍ରତିଭାକୁ ଉପଯୋଗ କରିବାକୁ ।

"ବୈଦେଶିକ ନୀତି" ସଂକ୍ରାନ୍ତ. ପରିଚ୍ଛେଦଟିରେ ଘୋଷଣା କରାଯାଇଛି, "ସୋଭିଏତ୍ ୟୁନିଅନ୍ ଅବିଚଳ ଭାବେ ଲେନିନ୍‌ବାଦୀ ଶାନ୍ତି ନୀତି ଅନୁସରଣ କରି ଚାଲିଛି ଏବଂ ଜାତିମାନଙ୍କର ନିରାପତ୍ତାକୁ ଏବଂ ବ୍ୟାପକ ଆନ୍ତର୍ଜାତିକ ସହଯୋଗିତାକୁ ଶକ୍ତିଶାଳୀ କରିବା ପାଇଁ ଉଦ୍ୟମ କରେ । ସୋଭିଏତ୍ ୟୁନିଅନ୍‌ରେ ଯୁଦ୍ଧର ପ୍ରଚାରକୁ ସଂବିଧାନରେ ବେଆଇନ ବୋଲି ଘୋଷଣା କରାଯାଇଛି ।

ସମ୍ବିଧାନରେ ଦର୍ଶାଯାଇଛି, ସମାଜବାଦୀ ଦେଶର ପ୍ରତିରକ୍ଷା ହେଉଛି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ରାଷ୍ଟ୍ରୀୟ କାର୍ଯ୍ୟ ମଧ୍ୟରୁ ଅନ୍ୟତମ ଏବଂ ଲୋକମାନଙ୍କର ଏକ କର୍ତ୍ତବ୍ୟ । ଏହି ଉଦ୍ଦେଶ୍ୟ ନେଇ ସୋଭିଏତ୍ ୟୁନିଅନ୍‌ର ସଶସ୍ତ୍ର ସେନାବାହିନୀ ଗଠିତ ହୋଇଛି ଏବଂ ସାର୍ବଜନୀନ ସାମରିକ ତାଲିମ୍ ପ୍ରଚଳିତ ହୋଇଛି ।

ସଂବିଧାନର "ରାଷ୍ଟ୍ର ଏବଂ ବ୍ୟକ୍ତି" ଶୀର୍ଷକ ବିଭାଗଟି ୧୯୭୭ ମସିହାର ସମ୍ବିଧାନର ନୂତନ ମୁଖ୍ୟ ପ୍ରବଣତାଟିକୁ ଅତି ପରିଷ୍କାର ଭାବେ ପ୍ରତିଫଳିତ କରିଛି । ତାହା ହେଲା ସମାଜବାଦୀ ଗଣତନ୍ତ୍ରର ବିକାଶ । ଏହି ବିଭାଗଟି ବିଶେଷ ଭାବେ ସମାଜବାଦୀ ବ୍ୟବସ୍ଥାର ପ୍ରକୃତ ମାନବତା ଏବଂ ଲୋକଙ୍କ ପ୍ରତି ତା'ର ନିଷ୍ଠାକୁ ଦର୍ଶାଇଛି । ଏହା ପରିଷ୍କାର ଭାବେ ଲିପିବଦ୍ଧ ହୋଇଛି ସମ୍ବିଧାନର ୩୯ମ ଧାରାରେ – "ସୋଭିଏତ୍ ୟୁନିଅନ୍‌ର ନାଗରିକମାନେ ଉପଭୋଗ କରନ୍ତି ସୋଭିଏତ୍ ୟୁନିଅନ୍‌ର ସମ୍ବିଧାନ ତଥା ସୋଭିଏତ୍ ଆଇନ ଦ୍ୱାରା ଘୋଷିତ ଏବଂ ସୁନିଶ୍ଚିତ ସାମାଜିକ, ଅର୍ଥନୈତିକ, ରାଜନୈତିକ ଏବଂ ବ୍ୟକ୍ତି ସ୍ୱାଧୀନତା । ସମାଜବାଦୀ ବ୍ୟବସ୍ଥା ନାଗରିକମାନଙ୍କର ଅଧିକାର ଏବଂ ସ୍ୱାଧୀନତାର ଅଭିବୃଦ୍ଧିକୁ ଏବଂ ନିରବଚ୍ଛିନ୍ନ ଭାବେ ସେମାନଙ୍କ ଜୀବନର ମାନର ବିକାଶକୁ ସାମାଜିକ, ଅର୍ଥନୈତିକ ଏବଂ ସାଂସ୍କୃତିକ ବିକାଶ କର୍ମସୂଚୀର ରୂପାୟନ ହିସାବରେ ସୁନିଶ୍ଚିତ କରିଥାଏ ।"

୧୯୩୬ ମସିହାର ସମ୍ବିଧାନରେ ସୋଭିଏତ୍ ଜନସାଧାରଣଙ୍କୁ ପ୍ରଦତ୍ତ ଅଧିକାର ଏବଂ ସ୍ୱାଧୀନତାକୁ ସଂପୂର୍ଣ୍ଣ ଭାବେ ଅକ୍ଷତ ରଖି ନୂତନ ସମ୍ବିଧାନ ଅଧିକାର ଏବଂ ସ୍ୱାଧୀନତାର ପରିସରକୁ ସଂପ୍ରସାରିତ କରିଥିଲା, ଯେଉଁସବୁକୁ ଏକଦିଗରେ ସୋଭିଏତ୍ ଲୋକେ ଦୀର୍ଘ ଦିନ ଧରି ଉପଭୋଗ କରି ଆସିଛନ୍ତି । ଅନ୍ୟ ଦିଗରେ ସେସବୁର ଉପଭୋଗକୁ ଏହା ସୁନିଶ୍ଚିତ କରିଛି । ସାମାଜିକ ଅର୍ଥନୈତିକ ଅଧିକାରଗୁଡ଼ିକ ପରିପୂରିତ ହୋଇଥିଲା ସ୍ୱାସ୍ଥ୍ୟର ସୁରକ୍ଷା ଅଧିକାର, ବାସସ୍ଥାନର ଅଧିକାର, ସାଂସ୍କୃତିକ ସାଫଲ୍ୟରାଜିକୁ ଉପଭୋଗ କରିବାର ଅଧିକାର ଏବଂ ବୈଜ୍ଞାନିକ, କାରିଗରୀ ଏବଂ କଳାକୃତିର ସ୍ୱାଧୀନତା ଦ୍ୱାରା । ରାଜନୈତିକ ଅଧିକାର ଏବଂ ସ୍ୱାଧୀନତାସମୂହ ପରିପୂରିତ ହୋଇଛି ରାଷ୍ଟ୍ରୀୟ ପ୍ରଶାସନ ଏବଂ ସର୍ବସାଧାରଣ ବ୍ୟାପାରର ପରିଚାଳନା

ଏବଂ ଆଲୋଚନାରେ ଅଂଶଗ୍ରହଣ, ଆଇନ୍ ତଥା ଜାତୀୟ ତଥା ସ୍ଥାନୀୟ ଗୁରୁତ୍ୱ ଦୃଷ୍ଟିରୁ ପଦକ୍ଷେପ ନେବାରେ ଅଂଶଗ୍ରହଣ ଦ୍ୱାରା; ରାଷ୍ଟ୍ରୀୟ ସଂସ୍ଥା ଏବଂ ସର୍ବସାଧାରଣ ସଂଗଠନ ନିକଟରେ ପ୍ରସ୍ତାବାଦି ପେଶ୍ କରିବାର ଅଧିକାର ଦ୍ୱାରା । ସେମାନଙ୍କ କ୍ରିୟାକଳାପ ଏବଂ ସେମାନଙ୍କ କାର୍ଯ୍ୟରେ ଦୋଷ ତ୍ରୁଟିକୁ ସମାଲୋଚନା କରିବା; କାହାରି ସମ୍ମାନ ତଥା ସୁଖ୍ୟାତି, ଜୀବନ ଓ ସ୍ୱାସ୍ଥ୍ୟ, ବ୍ୟକ୍ତି ସ୍ୱାଧୀନତା ଓ ସଂପତ୍ତିଗତ କ୍ଷତିସାଧନ ବିରୁଦ୍ଧରେ ବିଚାରାଳୟ ତରଫରୁ ସୁରକ୍ଷା ଦାନ ପାଇଁ ଅଧିକାର; ଅଫିସର, ରାଷ୍ଟ୍ର ଏବଂ ଗଣସଂଗଠନର କ୍ରିୟାକଳାପ ବିରୁଦ୍ଧରେ ଅଭିଯୋଗ କରିବାର ଅଧିକାର, ରାଷ୍ଟ୍ର ଗଣ ସଂଗଠନ ଏବଂ ସେମାନଙ୍କ କର୍ତ୍ତବ୍ୟ ସଂପନ୍ନ କଲା ବେଳେ ଅଫିସରମାନଙ୍କର ବେଆଇନ କ୍ରିୟାକଳାପ ଫଳରେ ଘଟିଥିବା କ୍ଷତି ପାଇଁ କ୍ଷତିପୂରଣ ପାଇବାର ଅଧିକାର ।

କାର୍ଯ୍ୟ କରିବାର ଅଧିକାରକୁ କାର୍ଯ୍ୟକାରୀ କରିବାର ଗ୍ୟାରେଣ୍ଟିକୁ ଆଉରି ସମୃଦ୍ଧ ଏବଂ ସୁଦୃଢ଼ କରିଥିଲା ୧୯୭୭ ମସିହାର ସମ୍ବିଧାନ । ଏହି ଅଧିକାର ମଧ୍ୟରେ ରହିଛି, ଲୋକର ପ୍ରବଣତା, ଦକ୍ଷତା, ତାଲିମ୍ ଏବଂ ଶିକ୍ଷା ଅନୁଯାୟୀ ଏବଂ ସମାଜର ଆବଶ୍ୟକତାକୁ ବିଚାର କରି ଯେକୌଣସି ଚାକିରି ବା କର୍ମ ବାଛିବାର ସ୍ୱାଧୀନତା । ଏହି ଅଧିକାରକୁ ସୁନିଶ୍ଚିତ କରାଯାଇଛି ସ୍ୱାଧୀନ ବୃତ୍ତିଗତ ତାଲିମ୍ ପ୍ରଦାନ, ନୂଆ ନୂଆ ବେଉଷା ବା କର୍ମ ପାଇଁ ଦକ୍ଷତା ଆଉ ତାଲିମ୍‌ର ଉନ୍ନତି ସାଧନ ଏବଂ ବେଉଷା ସଂକ୍ରାନ୍ତ ପରାମର୍ଶ ଏବଂ ଚାକିରି ସଂସ୍ଥାନ ବ୍ୟବସ୍ଥାର ବିକାଶ ସାଧନ ଦ୍ୱାରା । ୧୯୩୬ର ସମ୍ବିଧାନରେ ଶିକ୍ଷାଧିକାରକୁ ସୁନିଶ୍ଚିତ କରାଯାଇଥିଲା ସାର୍ବଜନୀନ ବାଧ୍ୟତାମୂଳକ ମୌଳିକ ଶିକ୍ଷା ପ୍ରଚଳନ ଦ୍ୱାରା । ୧୯୭୭ ସମ୍ବିଧାନରେ ଏହି ଅଧିକାରକୁ ସୁନିଶ୍ଚିତ କରାଯାଇଛି ସାର୍ବଜନୀନ ବାଧ୍ୟତାମୂଳକ ମାଧ୍ୟମିକ ଶିକ୍ଷା ଦାନ ଦ୍ୱାରା, ପରାମର୍ଶ ତଥା ଉତ୍ପାଦନ ଉପରେ 'ପ୍ରତିଷ୍ଠିତ' ବେଉଷାଗତ,' ବିଶେଷୀକୃତ ମାଧ୍ୟମିକ, ଉଚ୍ଚତର ଶିକ୍ଷାର ବ୍ୟାପକ ବିକାଶ ଦ୍ୱାରା; ବିଶ୍ୱବିଦ୍ୟାଳୟ ବହିର୍ଭୂତ, ପତ୍ର ମାଧ୍ୟମିକ ଏବଂ ସାଂଧ୍ୟ ଶିକ୍ଷା ବ୍ୟବସ୍ଥାର ବାସ୍ତବ କାର୍ଯ୍ୟକାରିତା ଦ୍ୱାରା । ପାଠ୍ୟପୁସ୍ତକମାନ ବିନା ମୂଲ୍ୟରେ ଯୋଗାଇ ଦିଆଯିବାର ବ୍ୟବସ୍ଥା କରାଯାଇଛି ।

ସମ୍ବିଧାନରେ ଉଲ୍ଲେଖ ଅଛି, "ନାଗରିକମାନେ ସେମାନଙ୍କର ଅଧିକାର ଆଉ ସ୍ୱାଧୀନତାକୁ ସମାଜ ତଥା ରାଷ୍ଟ୍ରର ସ୍ୱାର୍ଥ ବିରୁଦ୍ଧରେ ନ ଯାଇ, କିମ୍ବା ଅନ୍ୟ ନାଗରିକମାନଙ୍କ ଅଧିକାରକୁ ଲଙ୍ଘନ ନ କରି ଉପଭୋଗ କରି ପାରିବେ । ଜନସାଧାରଣଙ୍କ ସ୍ୱାର୍ଥାନୁଯାୟୀ ଏବଂ ସମାଜବାଦୀ ବ୍ୟବସ୍ଥାର ଦୃଢ଼ୀକରଣ ତଥା ବିକାଶ ସହିତ ସଂଗତି ରଖି" ରାଜନୈତିକ ସ୍ୱାଧୀନତାର ଗ୍ୟାରେଣ୍ଟି ପ୍ରଦାନ କରାଯାଇଛି ।

୧୯୭୭ ମସିହାର ସମ୍ବିଧାନକୁ ଭିତ୍ତି କରି ସମସ୍ତ ଅଙ୍ଗ ପ୍ରଜାତନ୍ତ୍ର ଏବଂ ସ୍ୱାୟତ୍ତଶାସିତ ପ୍ରଜାତନ୍ତ୍ରଗୁଡ଼ିକର ନୂତନ ସମ୍ବିଧାନମାନ ରଚିତ ହୋଇଥିଲା । ଏସବୁ

ଜନସାଧାରଣଙ୍କ ମଧ୍ୟରେ ପ୍ରକାଶ୍ୟରେ ଆଲୋଚିତ ହେଲା ପରେ ୧୯୭୮ ମସିହାରେ ଅଙ୍ଗ ପ୍ରଜାତନ୍ତ୍ରସମୂହର ସର୍ବୋଚ୍ଚ ସୋଭିଏତ୍‌ଗୁଡ଼ିକରେ ଅଧିବେଶନରେ ଗୃହୀତ ହୋଇଥିଲା ।

ସୋଭିଏତ୍ ଜନସାଧାରଣ ଏହି ନୂତନ ସମ୍ବିଧାନକୁ ଯଥାର୍ଥ ଭାବେ "ଉନ୍ନତ ସମାଜବାଦୀ ସମାଜର ଦିଗ୍‌ଦର୍ଶକ ଆଇନ" ଏବଂ "କମ୍ୟୁନିଷ୍ଟ ବିକାଶ କାଳର ଇସ୍ତାହାର" ବୋଲି ନାମିତ କରିଛନ୍ତି । ସମସ୍ତ ମାନବ ସମାଜର ଉଜ୍ଜ୍ୱଳ ଭବିଷ୍ୟତ—କମ୍ୟୁନିଷ୍ଟ ସମାଜ ସୋଭିଏତ୍ ୟୁନିଅନ୍‌ରେ ଏହି ସମ୍ବିଧାନକୁ ଭିତ୍ତି କରି ନିର୍ମିତ ହେଉଛି ।

# ୨୯ଶ ପରିଚ୍ଛେଦ

## ଯୁଦ୍ଧୋତ୍ତର କାଳରେ ସୋଭିଏତ୍ ବୈଦେଶିକ ନୀତି କ୍ଷେତ୍ରରେ ମୌଳିକ ପ୍ରବଣତାସମୂହ

ହିଟ୍ଲରର ନାଜି ରେଇକ୍ ଏବଂ ତା'ର ମିତ୍ରମାନଙ୍କ ଉପରେ ବିଜୟ ପ୍ରତି ନିଷ୍ପତ୍ତିମୂଳକ ଅବଦାନ ପୃଥିବୀର ଜାତିମାନଙ୍କ ମଧ୍ୟରେ ବିପୁଳ ସମ୍ମାନ ଓ କୃତଜ୍ଞତା ଲାଭ କରିଥିଲା । ଏହି ବିଜୟ ସମସ୍ତ ମାନବ ଜାତିକୁ ରକ୍ଷା କରିଥିଲା ଫାସିବାଦୀ ଦାସତ୍ୱର ଶୃଙ୍ଖଳରୁ । ଆନ୍ତର୍ଜାତିକ କ୍ଷେତ୍ରରେ ସୋଭିଏତ୍ ୟୁନିଅନ୍‌ର ପ୍ରଭାବ ଓ ସମ୍ମାନ ଅତୁଳନୀୟ ଭାବେ ବୃଦ୍ଧି ପାଇଥିଲା ସମାଜବାଦୀ ରାଷ୍ଟ୍ର ହିସାବରେ । ସୋଭିଏତ୍ ୟୁନିଅନ୍ ନୀତି ଦୃଷ୍ଟିରୁ ଯୁଦ୍ଧ, ବିଦେଶୀ ଭୂଖଣ୍ଡ ଅଧିକାର, ଅନ୍ୟ ଦେଶର କଞ୍ଚାମାଲ, ଜାଳେଣିର ଉତ୍ସକୁ ଦଖଲ ଏବଂ ଏହାର ଉତ୍ପନ୍ନର ବିକ୍ରି ପାଇଁ ବଜାର ପାଇବା ଇଚ୍ଛୁକ ନଥିଲା । ଏହା ଛଡ଼ା, ଏହାର ଜାତୀୟ ସମ୍ବଳ ଓ ଘରୋଇ ବଜାର ଏହାର ବ୍ୟାପକ ଅର୍ଥନୈତିକ ବିକାଶ ପକ୍ଷରେ ଯଥେଷ୍ଟ ଥିଲା । ଦେଶ ଦେଶ ମଧ୍ୟରେ ଶାନ୍ତିପୂର୍ଣ୍ଣ ଓ ବହୁମୁଖୀ ସଂପର୍କରାଜିର (ଅର୍ଥନୈତିକ ଓ ବାଣିଜ୍ୟିକ ସଂପର୍କ ସମେତ) ବିକାଶର ପ୍ରବକ୍ତା ହେଲା ସୋଭିଏତ୍ ୟୁନିଅନ୍ । ଯୁଦ୍ଧ, ଯୁଦ୍ଧର ଭୟ ଏବଂ ଆନ୍ତର୍ଜାତିକ ସଂପର୍କରାଜି ଉପରେ ସାମରିକ ଚାପର ଏହା ହେଉଛି ବିରୋଧୀ । ଅନ୍ୟ ଦେଶ ଉପରେ ନିଜର ଇଚ୍ଛାକୁ ଚପେଇ ଦେବା ପାଇଁ ସେସବୁର ଘରୋଇ ବ୍ୟାପାରରେ ହସ୍ତକ୍ଷେପ କରିବା ପାଇଁ ଯୁଦ୍ଧ କିମ୍ବା ଅନ୍ୟ କୌଣସି ଉପାୟର ଉପଯୋଗ କରିବାକୁ ଏହା ଅସ୍ୱୀକାର କରେ ।

ସୋଭିଏତ୍ ୟୁନିଅନ୍ ତା'ର ପ୍ରତିଷ୍ଠା ଦିନରୁ ତା'ର ଶାନ୍ତିକାମୀ ବୈଦେଶିକ ନୀତିର ଏହିସବୁ ନୀତିରାଜି ପ୍ରତି ନିଷ୍ଠାବାନ ହୋଇ ରହି ଆସିଛି । ସୋଭିଏତ୍ ରାଷ୍ଟ୍ରର ବୈଦେଶିକ ନୀତିର ମୁଖ୍ୟ ଲକ୍ଷ୍ୟଟି ହେଲା ସୋଭିଏତ୍ ୟୁନିଅନ୍‌ରେ କମ୍ୟୁନିଷ୍ଟ ସମାଜ ନିର୍ମାଣ ପାଇଁ ଶାନ୍ତିପୂର୍ଣ୍ଣ ଅବସ୍ଥା ବଜାଏ ରଖିବା ।

ଯୁଦ୍ଧୋତ୍ତର କାଳରେ ଯେଉଁ ଆନ୍ତର୍ଜାତିକ ପରିସ୍ଥିତି ଦେଖାଦେଲା, ତାହା ସୋଭିଏତ୍ ୟୁନିଅନ୍‌ର ବୈଦେଶିକ ନୀତିର ତିନୋଟି ମୌଳିକ ପ୍ରବଣତାକୁ ଜନ୍ମ ଦେଲା ।

ପ୍ରଥମତଃ , ୟୁରୋପ ଓ ଏସିଆର କେତେକ ଦେଶ ସମାଜବାଦୀ ବିକାଶର ପଥ ଗ୍ରହଣ ଏବଂ ବିଶ୍ୱ ସମାଜବାଦୀ ବ୍ୟବସ୍ଥାର ଅଭ୍ୟୁଦୟ, ଏହିସବୁ ଦେଶ ସହିତ ଘନିଷ୍ଠ , ବନ୍ଧୁତ୍ୱପୂର୍ଣ୍ଣ , ବ୍ୟାପକ ଏବଂ ପାରସ୍ପରିକ ଭାବେ ଉପକାରୀ ସଂପର୍କରାଜି ପ୍ରତିଷ୍ଠା , ନୂତନ ଜୀବନ ଗଢ଼ିବା ଦିଗରେ ସେସବୁକୁ ବ୍ୟାପକ ସହାୟତା ପ୍ରଦାନ , ଆନ୍ତର୍ଜାତିକ କ୍ଷେତ୍ରରେ ସେମାନଙ୍କ ସ୍ୱାର୍ଥକୁ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନଙ୍କର ଷଡ଼ଯନ୍ତ୍ର କବଳରୁ ରକ୍ଷା କରିବା ଏବଂ ସଫଳତାର ସହିତ ସେମାନଙ୍କ ଦେଶରେ ସମାଜବାଦ ନିର୍ମାଣ ନିମିତ୍ତ ଶାନ୍ତିପୂର୍ଣ୍ଣ ଅବସ୍ଥା ବଜାଏ ରଖିବା ସୋଭିଏତ୍ ୟୁନିଅନ୍‌ର ବୈଦେଶିକ ନୀତିର ମୁଖ୍ୟ ପ୍ରବଣତାରେ ପରିଣତ ହୋଇଥିଲା । ଅନ୍ୟାନ୍ୟ ସମାଜବାଦୀ ଦେଶ ସହିତ ସୋଭିଏତ୍ ୟୁନିଅନ୍ ମୈତ୍ରୀ ଓ ପାରସ୍ପରିକ ସହାୟତା ଚୁକ୍ତିସମୂହ ସଂପାଦନ କରିଥିଲା । ଏସବୁ ଚୁକ୍ତି ଥିଲା ସେମାନଙ୍କ ସ୍ୱାଧୀନତା ପକ୍ଷରେ ଆସ୍ଥାପୂର୍ଣ୍ଣ ନିଶ୍ଚିତତା ସ୍ୱରୂପ । ୧୯୪୯ , ଏପ୍ରିଲ ମାସରେ ଆମେରିକା ଯୁକ୍ତ ରାଷ୍ଟ୍ରର ନେତୃତ୍ୱରେ ସାମ୍ରାଜ୍ୟବାଦୀ ଦେଶମାନଙ୍କ ଦ୍ୱାରା ପ୍ରତିଷ୍ଠିତ ନ୍ୟାଟୋ ଆକ୍ରମଣାତ୍ମକ ମେଣ୍ଟ ଏବଂ ସୋଭିଏତ୍ ୟୁନିଅନ୍ ଓ ଅନ୍ୟାନ୍ୟ ସମାଜବାଦୀ ରାଷ୍ଟ୍ରମାନଙ୍କ ବିରୁଦ୍ଧରେ ଗଠିତ ଅନ୍ୟାନ୍ୟ ଆକ୍ରମଣମୁଖୀ ମେଣ୍ଟର ସମ୍ମୁଖୀନ ହୋଇ ଏବଂ ୧୯୫୦ ଦଶକରେ ନୂଆ ଏକ ବିଶ୍ୱ ଯୁଦ୍ଧର ବାସ୍ତବ ବିପଦକୁ ଦେଖି ସୋଭିଏତ୍ ୟୁନିଅନ୍ ଓ ଅନ୍ୟ ସମାଜବାଦୀ ଦେଶମାନେ ୧୯୫୫, ମେ ମାସରେ ମୈତ୍ରୀ , ସହଯୋଗ ଓ ପାରସ୍ପରିକ ସହଯୋଗିତାର ଏକ ଚୁକ୍ତି ଓ୍ୱାର୍ସା ଠାରେ ସ୍ୱାକ୍ଷର କରିଥିଲେ । ଏହି ଚୁକ୍ତିର ଲକ୍ଷ୍ୟ ହେଲା ଆକ୍ରମଣମୁଖୀ ମେଣ୍ଟମାନଙ୍କ ବିରୁଦ୍ଧରେ ମିଳିତ ପ୍ରତିରକ୍ଷା । ସାରା ପୃଥିବୀରେ ଶାନ୍ତି ରକ୍ଷା କରିବା ପକ୍ଷରେ ଏହି ଚୁକ୍ତିର ଗୁରୁତ୍ୱ ହେଲା ଅପରିସୀମ ।

ସମାଜବାଦୀ ଦେଶମାନେ ଏକ ସୁସମନ୍ୱିତ ବୈଦେଶିକ ନୀତି – ଜାତି ଜାତିମାନଙ୍କ ମଧ୍ୟରେ ଶାନ୍ତି ଆଉ ମୈତ୍ରୀ ନୀତି ଅନୁସରଣ କରନ୍ତି ।

ସୋଭିଏତ୍ ୟୁନିଅନ୍ ସହିତ ଅନ୍ୟାନ୍ୟ ସମାଜବାଦୀ ଦେଶମାନଙ୍କର ପାରସ୍ପରିକ ଲାଭଜନକ ଅର୍ଥନୈତିକ ଓ ବାଣିଜ୍ୟିକ ସଂପର୍କ ପ୍ରତିଷ୍ଠିତ ହୋଇ ଦ୍ରୁତତାର ସହିତ ସଂପ୍ରସାରିତ ହେଉଛି । ୧୯୪୯ ମସିହାରେ ୟୁରୋପର ସମାଜବାଦୀ ଦେଶମାନେ ପାରସ୍ପରିକ ଅର୍ଥନୈତିକ ସହଯୋଗିତାର ପରିଷଦ (ସି.ଏମ୍.ଏ.) ଗଠନ କରିଥିଲେ । ପରେ ମଙ୍ଗୋଲିଆ , ଭିଏତ୍‌ନାମ ଓ କ୍ୟୁବା ଏଥିରେ ଯୋଗ ଦେଇଥିଲେ । ସି.ଏମ୍.ଏ. ପ୍ରତିଷ୍ଠା ଏବଂ ଏହାର କ୍ରିୟାକଳାପ ସମାଜବାଦୀ ଦେଶମାନଙ୍କ ମଧ୍ୟରେ ଅର୍ଥନୈତିକ ସଂହତିର ଅବିଚଳ ବିକାଶ ଏବଂ ସେସବୁ ଦେଶର ଅର୍ଥନୈତିକ ଏବଂ ସାମାଜିକ ବିକାଶ ସହିତ ସଂପୃକ୍ତ ଅତୀବ ଗୁରୁତ୍ୱପୂର୍ଣ୍ଣ ସମସ୍ୟାବଳୀର ଯୌଥ ସମାଧାନ ପ୍ରତି ଅବଦାନ ରଖିଥିଲା ।

ଏଥି ସାଥେ ସାଥେ ବୈଜ୍ଞାନିକ ଏବଂ ସାଂସ୍କୃତିକ ସଂପର୍କରାଜି ସମାଜବାଦୀ

ଦେଶମାନଙ୍କ ମଧ୍ୟରେ ପ୍ରତିଷ୍ଠିତ ହୋଇ ଦ୍ରୁତ ବିକାଶ କରିବାକୁ ଲାଗିଲା ; ବିଭିନ୍ନ ସମାଜବାଦୀ ଦେଶମାନଙ୍କର ରାଷ୍ଟ୍ରୀୟ ତଥା ସର୍ବସାଧାରଣ ସଂଗଠନଗୁଡ଼ିକ ମଧ୍ୟରେ ଥିବା ଯୋଗସୂତ୍ର ଦୃଢ଼ ହେଲା । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥାଟି ହେଲା, ସମାଜବାଦୀ ଦେଶମାନଙ୍କର କମ୍ୟୁନିଷ୍ଟ ଓ ଶ୍ରମିକ ପାର୍ଟିମାନଙ୍କ ମଧ୍ୟରେ ଐକ୍ୟ କ୍ରମାଗତ ଶକ୍ତିଶାଳୀ ହେବା ସାଥେ ସାଥେ ବିକାଶ ଲାଭ କରିଥିଲା ଏବଂ ସେସବୁ ପାର୍ଟିର ନେତାମାନେ ନିୟମିତ ଭାବେ ବୈଠକରେ ମିଳିତ ହେଉଥିଲେ । ସେସବୁ ବୈଠକରେ ସମାଜବାଦୀ ଦେଶମାନଙ୍କ ମଧ୍ୟରେ ପାରସ୍ପରିକ ସଂପର୍କରାଜି ସଂକ୍ରାନ୍ତ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନାବଳୀ ଆଲୋଚିତ ହୋଇ ସେସବୁ ଉପରେ ନିଷ୍ପତ୍ତି ନିଆଯାଇଥିଲା ଏବଂ ଆନ୍ତର୍ଜାତିକ କ୍ଷେତ୍ର ପାଇଁ ସମନ୍ୱିତ ନୀତିକୁ ବ୍ୟାଖ୍ୟା କରାଗଲା ।

ଦ୍ୱିତୀୟତଃ, ଯୁଦ୍ଧୋତ୍ତର ବର୍ଷମାନଙ୍କରେ ସାମ୍ରାଜ୍ୟବାଦୀ ଉପନିବେଶିକତାବାଦୀମାନଙ୍କ କବଳରୁ ମୁକ୍ତ ଆଉ ସ୍ୱାଧିକାର ନିମିତ୍ତ ଔପନିବେଶିକ ତଥା ନିର୍ଭରଶୀଳ ଦେଶମାନଙ୍କର ଜାତୀୟ ମୁକ୍ତି ସଂଗ୍ରାମ ଅଧିକ ବ୍ୟାପକତା ଲାଭ କଲା ଏବଂ ସାମ୍ରାଜ୍ୟବାଦର ଔପନିବେଶିକ ବ୍ୟବସ୍ଥା ଧସି ପଡ଼ିବାକୁ ଲାଗିଲା । ବହୁଜାତି ଔପନିବେଶିକ ଶୋଷଣ ଅତ୍ୟାଚାରର ଶୃଙ୍ଖଳ ଛିନ୍ନ କରି ସ୍ୱାଧୀନ ହେଲେ ଏବଂ ନୂଆ ସ୍ୱାଧୀନ ରାଷ୍ଟ୍ରମାନ ଗଠନ କଲେ । ଏହି ପ୍ରଗତିଶୀଳ ନ୍ୟାୟପୂର୍ଣ୍ଣ ଐତିହାସିକ ପ୍ରକ୍ରିୟା ସମ୍ମୁଖୀନ ହୋଇଥିଲା ପୁରାତନ ଏବଂ ନୂତନ ଔପନିବେଶିକତାବାଦୀମାନଙ୍କ ଶତ୍ରୁତାପୂର୍ଣ୍ଣ ଆଭିମୁଖ୍ୟ ଓ ଶତ୍ରୁତାପୂର୍ଣ୍ଣ କ୍ରିୟାର । ସେମାନେ ଉଦ୍ୟମ କରିଥିଲେ ନିପୀଡ଼ିତ ଜାତିମାନଙ୍କର ମୁକ୍ତିକୁ ବାଧା ଦେବା ସଙ୍ଗେ ସଙ୍ଗେ ନବ ସ୍ୱାଧୀନ ଦେଶମାନେ ପକ୍ରୃତ ରାଜନୈତିକ ଓ ଅର୍ଥନୈତିକ ସ୍ୱାଧୀନତା ଲାଭକୁ ରୋକିବା ପାଇଁ ।

ଏମନ୍ତ ଅବସ୍ଥାରେ ସୋଭିଏତ୍ ୟୁନିଅନ୍‌ର ବୈଦେଶିକ ନୀତିରେ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ପ୍ରବଣତାଟି ହେଲା, ଯୁଦ୍ଧୋତ୍ତର କାଳରେ, ସାମ୍ରାଜ୍ୟବାଦୀ ଔପନିବେଶିକତାବାଦୀମାନଙ୍କ ବିରୁଦ୍ଧରେ ନିପୀଡ଼ିତ ଜାତିମାନଙ୍କର ଜାତୀୟ ମୁକ୍ତି ଆନ୍ଦୋଳନକୁ ସବୁ ମତେ ସମର୍ଥନ କରିବା ; ଔପନିବେଶିକ ନିପୀଡ଼ନରୁ ମୁକ୍ତ ନବସ୍ୱାଧୀନ ରାଷ୍ଟ୍ରମାନଙ୍କ ସହିତ ମୈତ୍ରୀପୂର୍ଣ୍ଣ ଯୋଗସୂତ୍ର ପ୍ରତିଷ୍ଠା କରିବା ; ସେମାନଙ୍କ ରାଜନୈତିକ ସ୍ୱାଧୀନତାକୁ ଶକ୍ତିଶାଳୀ କରିବା, ଜାତୀୟ ଅର୍ଥନୀତି ଗଢ଼ିବା, ସେମାନଙ୍କ କାରିଗରୀ ଓ ଅର୍ଥନୈତିକ ସ୍ୱାଧୀନତା ହାସଲ କରିବା ଏବଂ ଜାତୀୟ ସୁଦକ୍ଷ ଶ୍ରମିକ ଓ ବିଶେଷଜ୍ଞଙ୍କୁ ତାଲିମ ଦେବା ; ଜାତୀୟ ମୁକ୍ତି ଆନ୍ଦୋଳନ ତଥା ମୁକ୍ତିପ୍ରାପ୍ତ ଜାତିମାନଙ୍କର ସ୍ୱାଧୀନ ରାଷ୍ଟ୍ରମାନଙ୍କ ବିରୁଦ୍ଧରେ ପୁରାତନ ଓ ନୂତନ ଔପନିବେଶିକତାବାଦୀମାନଙ୍କର ଯଡ଼ଯନ୍ତ୍ର ଓ ଆକ୍ରମଣାତ୍ମକ କ୍ରିୟାକଳାପକୁ ପଦାରେ ପକାଇବା ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ ସେହିସବୁ ରାଷ୍ଟ୍ରର ସ୍ୱାର୍ଥକୁ ରକ୍ଷା କରିବା ।

ଏହି ଭାବେ, ଦୃଷ୍ଟାନ୍ତ ସ୍ୱରୂପ, ୧୯୫୬ରେ ବ୍ରିଟେନ୍, ଫ୍ରାନ୍ସ ଏବଂ ଇସ୍‌ରାଏଲ

ମିଶରର ଆକ୍ରମଣ କଲେ, ଯିଏକି ତା'ର ଭୂଖଣ୍ଡରେ ଥିବା ସୁଏଜ କେନାଲକୁ ଜାତୀୟକରଣ କରିଥିଲା, ସୋଭିଏତ୍ ୟୁନିଅନ୍ ଦୃଢ଼ ଭାବେ ଆକ୍ରମଣକାରୀମାନଙ୍କୁ ହୁସିଆର କରି ଦେଇ କହିଥିଲା, ସେମାନେ ଯଦି ମିଶରରୁ ସୈନ୍ୟ ହଟେଇ ନନିଅନ୍ତି, ତେବେ ମିଶରକୁ ସହାୟତା କରିବା ପାଇଁ ସେ ଆଗେଇ ଯିବ । ଆକ୍ରମଣକାରୀମାନେ ବାଧ୍ୟ ହୋଇ ପଛକୁ ହଟିଥିଲେ । ୧୯୫୭ ମସିହାରେ ଆମେରିକା ଯୁକ୍ତ ରାଷ୍ଟ୍ର ଓ ତୁର୍କୀ ଧମକ ଦେଲେ ସିରିଆରେ ହସ୍ତକ୍ଷେପ କରିବାକୁ । ସୋଭିଏତ୍ ସରକାର କହିଥିଲେ, ସିରିଆ ଉପରେ ଆକ୍ରମଣ ହେଲେ, ସିରିଆର ଜନସାଧାରଣଙ୍କୁ ଏହା ଏକାକୀ ପରିତ୍ୟାଗ କରି ପାରିବ ନାହିଁ । ସୋଭିଏତ୍ ୟୁନିଅନ୍‌ର ଦୃଢ଼ ଅବସ୍ଥାନ ଫଳରେ ସିରିଆ ଉପରୁ ବିପଦର କଳାମେଘ ଦୂରେଇ ଯାଇଥିଲା । ୧୯୭୮ ମସିହାରେ, ଆଫଘାନିସ୍ତାନରେ ଏକ ଜାତୀୟ ଗଣତାନ୍ତ୍ରିକ ବିପ୍ଳବ ଘଟିଲା । ସାମ୍ରାଜ୍ୟବାଦୀ ଦେଶମାନେ ଆଫଘାନିସ୍ତାନ ବିରୁଦ୍ଧରେ ଏକ ଅଘୋଷିତ ଯୁଦ୍ଧ ଆରମ୍ଭ କରି ଦେଲେ । ଆଫଘାନିସ୍ତାନର ଅନୁରୋଧ କ୍ରମେ ୧୯୭୯ ମସିହାର ଶେଷରେ ଏକ ସୀମିତ ପରିମାଣର ସୋଭିଏତ୍ ସେନାଦଳ ଆଫଘାନିସ୍ତାନ ମଧ୍ୟକୁ ପ୍ରବେଶ କରିଥିଲେ । ଆଫଘାନିସ୍ତାନର ସ୍ୱାଧୀନତା ଏବଂ ସେମାନଙ୍କ ବିପ୍ଳବର ସାଫଲ୍ୟରାଜିକୁ ରକ୍ଷା କରିବାରେ ସେମାନେ ଆଫଘାନିସ୍ତାନ ଜନସାଧାରଣଙ୍କୁ ସାହାଯ୍ୟ କରିଥିଲେ ।

ଭାରତବର୍ଷ ତା'ର ଅର୍ଥନୈତିକ ସ୍ୱାଧୀନତାର ଭିତ୍ତି ହିସାବରେ ତା'ର ଶିଳ୍ପ କ୍ଷେତ୍ରରେ ଏକ ଅତୀବ ଉନ୍ନତ ରାଷ୍ଟ୍ରାୟତ୍ତ ଶିଳ୍ପ ଗଠନ କରି ପାରିଛି ସୋଭିଏତ୍ ୟୁନିଅନ୍‌ର ବ୍ୟାପକ ତଥା ନିସ୍ୱାର୍ଥ ସହାୟତା ବଳରେ । ଆଉରି ଅନେକ ଜାତିଙ୍କୁ ସେମାନଙ୍କର ନିଜସ୍ୱ ଜାତୀୟ ଅର୍ଥନୀତି ଗଢ଼ିବା ପାଇଁ ସୋଭିଏତ୍ ୟୁନିଅନ୍ ସାହାଯ୍ୟ କରିଛି ଏବଂ ଏବେ ମଧ୍ୟ କରୁଛି ।

ତୃତୀୟତଃ, ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ବୃହତ୍ ପୁଞ୍ଜିବାଦୀ ଶକ୍ତିମାନଙ୍କ ବୈଦେଶିକ ନୀତିରେ ଏକ ମୌଳିକ ପରିବର୍ତ୍ତନ ଦେଖାଦେଲା । ଆମେରିକା ଯୁକ୍ତ ରାଷ୍ଟ୍ର, ବ୍ରିଟେନ୍ ଏବଂ ଫ୍ରାନ୍ସର ଶାସକ ଧନୀ ଶ୍ରେଣୀଗୁଡ଼ିକ ରାଜି ହେଲେ ନାହିଁ ଏହି ସତ୍ୟକୁ ମାନିବାକୁ ଯେ, ୟୁରୋପ ଆଉ ଏସିଆରେ ବହୁ ଦେଶ ପୁଞ୍ଜିବାଦୀ ବ୍ୟବସ୍ଥା ପରିତ୍ୟାଗ କରିଛନ୍ତି, ଔପନିବେଶିକ ବ୍ୟବସ୍ଥା ଭାଙ୍ଗି ପଡ଼ିବାକୁ ଆରମ୍ଭ କରିଛି ଏବଂ ସାରା ବିଶ୍ୱରେ ବୈପ୍ଳବିକ ଆନ୍ଦୋଳନ ବଢ଼ି ଚାଲିଛି । ଆନ୍ତର୍ଜାତିକ କ୍ଷେତ୍ରରେ ସୋଭିଏତ୍ ୟୁନିଅନ୍‌ର କ୍ରମବର୍ଦ୍ଧମାନ ସମ୍ମାନ ଓ ତା'ର ସ୍ୱାଧୀନ ବୈଦେଶିକ ତଥା ଆଭ୍ୟନ୍ତରୀଣ ନୀତି ଦ୍ୱାରା ଏହିଧନୀ ଶ୍ରେଣୀମାନେ ଭୟଭୀତ ହୋଇ ପଡ଼ିଲେ । ବିଶ୍ୱ ଯୁଦ୍ଧ ମଧ୍ୟରୁ ସୋଭିଏତ୍ ୟୁନିଅନ ଯେ ଦୁର୍ବଳ ହୋଇ ବାହାରିବ, ଏବଂ ତା ଫଳରେ ସେମାନେ ସେମାନଙ୍କ ସର୍ତ୍ତାବଳୀ ବାଢ଼ିବାକୁ ସକ୍ଷମ ହେବେ, ସେମାନଙ୍କର ଏହି ଆଶା ଭିତ୍ତିହୀନ ବୋଲି ପ୍ରମାଣିତ ହେଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ତିନୋଟି ମହାଶକ୍ତି — ସୋଭିଏତ୍ ୟୁନିଅନ୍, ଆମେରିକା ଯୁକ୍ତ ରାଷ୍ଟ୍ର ଏବଂ ଗ୍ରେଟ୍ ବ୍ରିଟେନ୍ ଯେଉଁ ସମନ୍ୱିତ ନୀତି ଅନୁସରଣ କରୁଥିଲେ ଏବଂ ଯାହା ଯୁଦ୍ଧକାଳୀନ ବହୁ ବୈଠକର ପ୍ରସ୍ତାବରାଜିରେ ପ୍ରକାଶ ପାଇଥିଲା, ସେସବୁକୁ ପରିତ୍ୟାଗ କରି ବୃହତ୍ ପୁଞ୍ଜିବାଦୀ ଦେଶର ସରକାରମାନେ ସୋଭିଏତ୍ ୟୁନିଅନ୍ ତଥା ଅନ୍ୟାନ୍ୟ ସମାଜବାଦୀ ଦେଶ ପ୍ରତି "କ୍ଷମତାର ଅବସ୍ଥାନ" ନୀତି ଗ୍ରହଣ କରି ତଥାକଥିତ "ଶୀତଳ ଯୁଦ୍ଧ" ଆରମ୍ଭ କରି ଦେଲେ । ଆମେରିକା ଯୁକ୍ତ ରାଷ୍ଟ୍ର ଦୁନିଆ ସାରା, ସୋଭିଏତ୍ ୟୁନିଅନ୍‌ର ଚତୁର୍ପାର୍ଶ୍ୱରେ ସାମରିକ ଘାଟିମାନ ଜାଲ ଭଳି ସୃଷ୍ଟି କରି ଦେଲା ଏବଂ ବିଶ୍ୱରେ ଏକାଧିପତ୍ୟ କରିବା ପାଇଁ ନ୍ୟାଟୋକୁ ବ୍ୟବହାର କରିବାକୁ ଚେଷ୍ଟା କଲା । ଏହି ନୀତିଟିର ଭିତ୍ତି ଥିଲା ଯୁଦ୍ଧୋତ୍ତର ପ୍ରଥମ ବର୍ଷଗୁଡ଼ିକରେ ପାରମାଣବିକ କ୍ଷେତ୍ରରେ ଥିବା ଆମେରିକା ଯୁକ୍ତ ରାଷ୍ଟ୍ରର ଏକଛତିଆ । ଆମେରିକା ଯୁକ୍ତ ରାଷ୍ଟ୍ରର ସାମ୍ରାଜ୍ୟବାଦୀ ଏବଂ ସେମାନଙ୍କ ଅନୁଗାମୀମାନେ ନିଶ୍ଚିତ ଥିଲେ ଯେ, ସୋଭିଏତ୍ ୟୁନିଅନ୍‌କୁ ପରମାଣୁର ରହସ୍ୟ ଆବିଷ୍କାର କରିବାକୁ ଏବଂ ପରମାଣୁ ବୋମା ନିର୍ମାଣ କରିବାକୁ ବହୁ ବର୍ଷ ଲାଗିଯିବ; କହିବାକୁ ଗଲେ, ଏହା ସମ୍ଭବ ହେବ ବୋଲି ସେମାନେ ବିଶ୍ୱାସ କରି ପାରୁ ନଥିଲେ । କିନ୍ତୁ ସେମାନଙ୍କ ଗଣନାରେ ଭୁଲ ହୋଇଥିଲା । ୧୯୪୯, ଅଗଷ୍ଟ ମାସରେ ସୋଭିଏତ୍ ୟୁନିଅନ୍‌ରେ ପାରମାଣବିକ ଉଦ୍‌ଭାବନର ପ୍ରଥମ ଗବେଷଣାମୂଳକ ପରୀକ୍ଷା କରାଗଲା । ଏହା ଫଳରେ ପାରମାଣବିକ ଅସ୍ତ୍ର କ୍ଷେତ୍ରରେ ଆମେରିକା ଯୁକ୍ତ ରାଷ୍ଟ୍ରର ଏକଛତିଆର ଲୋପ ଘଟିଲା । ୧୯୫୩, ଅଗଷ୍ଟ ମାସରେ ସୋଭିଏତ୍ ୟୁନିଅନ୍ ସଫଳତାର ସହିତ ପରୀକ୍ଷା କଲା ଉଦ୍‌ଜାନ ପାରମାଣବିକ ବୋମା ।

ଏହା ଦ୍ୱାରା ଆମେରିକାନ ସାମ୍ରାଜ୍ୟବାଦୀ ଓ ସେମାନଙ୍କ ଅନୁଗାମୀମାନଙ୍କର ସମରବାଦୀ ଲାଳସା ଅନେକ ପରିମାଣରେ ଥଣ୍ଡା ହୋଇଗଲା । ସେମାନେ ସୋଭିଏତ୍ ୟୁନିଅନ୍‌କୁ ଆକ୍ରମଣ କରିବା ପାଇଁ ଯୋଜନା କରୁଥିଲେ । ଏସବୁ ସତ୍ତ୍ୱେ, ପରବର୍ତ୍ତୀ କାଳରେ, ସେମାନେ ଆନ୍ତର୍ଜାତିକ ପରିବେଶକୁ ଉତ୍ତେଜନାପୂର୍ଣ୍ଣ କରିବାକୁ ଲାଗିଥିଲେ ଏବଂ କୋରିଆ, ଭିଏତ୍‌ନାମ, ମଧ୍ୟ ପ୍ରାଚ୍ୟ, ଆଫ୍ରିକା ଏବଂ ବିଶ୍ୱର ଅନ୍ୟାନ୍ୟ ଅଞ୍ଚଳରେ ଯୁଦ୍ଧ ସୃଷ୍ଟି କରିଥିଲେ ।

ଆମେରିକା ଯୁକ୍ତ ରାଷ୍ଟ୍ର ତଥା ଅନ୍ୟାନ୍ୟ ସାମ୍ରାଜ୍ୟବାଦୀ ଦେଶମାନଙ୍କ ପକ୍ଷରୁ ଏତାଦୃଶ କ୍ରିୟାକଳାପ ଦୃଷ୍ଟିରୁ ଯୁଦ୍ଧୋତ୍ତର କାଳରେ ସୋଭିଏତ୍ ୟୁନିଅନ୍‌ର ବୈଦେଶିକ ନୀତିରେ ଅନ୍ୟତମ ମୌଳିକ ପ୍ରବଣତା ହେଲା : ଏକ ଦିଗରେ, ସାମ୍ରାଜ୍ୟବାଦୀ ଦେଶମାନଙ୍କର ଆଗ୍ରାସୀ କ୍ରିୟାକଳାପକୁ ଦୃଢ଼ତାର ସହିତ ନିରବଚ୍ଛିନ୍ନ ଭାବେ ପଦାରେ ପକାଇ ଦେବା, ଆକ୍ରମଣର ଶିକାର ହୋଇଥିବା ଦେଶମାନଙ୍କୁ ସାହାଯ୍ୟ କରିବା, ସାମ୍ରାଜ୍ୟବାଦୀମାନଙ୍କ ଦ୍ୱାରା ସୃଷ୍ଟ ଯୁଦ୍ଧର ଉତ୍ତପ୍ତ ଶଯ୍ୟାସମୂହକୁ ଲୋପ କରିବା ପାଇଁ ସମସ୍ତ ପଦକ୍ଷେପ ନେବା ଏବଂ ଅନ୍ୟ ଦିଗରେ, ଆନ୍ତର୍ଜାତିକ ଉତ୍ତେଜନାର ପ୍ରଶମନ,

ଶୀତଳ ଯୁଦ୍ଧର ଅବସାନ, ଆମେରିକା ଯୁକ୍ତ ରାଷ୍ଟ୍ର ସମେତ ସମସ୍ତ ଦେଶ ସହିତ ସ୍ୱାଭାବିକ ସଂପର୍କ ବିକାଶ କରିବା (କାରଣ, ବିଶ୍ୱଶାନ୍ତି ସର୍ବାଧିକ ଭାବେ ନିର୍ଭର କରେ ସୋଭିଏତ୍ ୟୁନିଅନ୍ ଓ ଆମେରିକା ଯୁକ୍ତ ରାଷ୍ଟ୍ର ମଧ୍ୟରେ ଶାନ୍ତି ଉପରେ), ନୂତନ ବିଶ୍ୱଯୁଦ୍ଧକୁ ରୋକିବା, ନିରସ୍ତ୍ରୀକରଣ ଓ ବିଭିନ୍ନ ସାମାଜିକ ବ୍ୟବସ୍ଥା ସଂପନ୍ନ ରାଷ୍ଟ୍ରମାନଙ୍କ ମଧ୍ୟରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ହାସଲ କରିବା ଏବଂ ବିଶ୍ୱର ସମସ୍ତ ଜାତିମାନଙ୍କର ନିରାପତ୍ତା ଓ ସେମାନଙ୍କ ମଧ୍ୟରେ ସହଯୋଗକୁ ସୁନିଶ୍ଚିତ କରିବା ।

ଦେତାନ୍ତ କ୍ଷେତ୍ରରେ ଏବଂ ଜାତିମାନଙ୍କର ନିରାପତ୍ତା ଓ ଜାତି ଜାତି ମଧ୍ୟରେ ସହଯୋଗିତା ୧୯୭୦ ଦଶକରେ ଶକ୍ତିଶାଳୀ ହୋଇଥିଲା ମୁଖ୍ୟତଃ ସୋଭିଏତ୍ ୟୁନିଅନ୍‌ର ଉଦ୍ୟମ ବଳରେ । ସୋଭିଏତ୍ ୟୁନିଅନ୍‌ର ଏହି ଉଦ୍ୟମର ଭିତ୍ତି ଥିଲା ୨୪ତମ ପାର୍ଟି କଂଗ୍ରେସ (୧୯୭୧) ଦ୍ୱାରା ଉପସ୍ଥାପିତ ଓ ୨୫ତମ ପାର୍ଟି କଂଗ୍ରେସ (୧୯୭୬) ଦ୍ୱାରା ବିକଶିତ କର୍ମସୂଚୀ । ପୁଞ୍ଜିବାଦୀ ଦେଶସମୂହର ବହୁ ବାସ୍ତବତାବାଦୀ ରାଷ୍ଟ୍ରନୀତିବିଦ୍ ଦେତାନ୍ତର ସଫଳତା ପ୍ରତି ମଧ୍ୟ ଅବଦାନ ରଖିଥିଲେ : ସେମାନେ ଅନୁଭବ କରିଥିଲେ ଦେତାନ୍ତର କୌଣସି ବିକଳ୍ପ ନାହିଁ, ଯେହେତୁ ସମାଜବାଦୀ ଦେଶ ଓ ପୁଞ୍ଜିବାଦୀ ଦେଶମାନେ ପ୍ରାୟ ସମାନ ପରିମାଣର ପାରମାଣବିକ ଅସ୍ତ୍ର ରଖିଛନ୍ତି ଏବଂ ପ୍ରତ୍ୟେକ ପକ୍ଷ ମାନବଜାତିକୁ ବହୁବାର ଧ୍ୱଂସ କରି ଦେଇ ଭଳି ସେସବୁକୁ ସାଇତି ରଖିଛନ୍ତି । ତେଣୁ କରି ହୁଏତ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ସହଯୋଗିତା ନତୁବା ଆଧୁନିକ ସଭ୍ୟତାର ପାରସ୍ପରିକ ବିଲୋପ ଓ ଧ୍ୱଂସସାଧନ । ଏହା ଛଡ଼ା ଅନ୍ୟ କୌଣସି ତୃତୀୟ ପଥ ନାହିଁ ।

ତା ସତ୍ତ୍ୱେ, ୧୯୭୦ ଦଶକର ଶେଷରେ, ଆମେରିକା ଯୁକ୍ତ ରାଷ୍ଟ୍ରର ଶାସକ ଚକ୍ରଗୁଡ଼ିକ ଦେତାଁତକୁ ପରିତ୍ୟାଗ କରି ସୋଭିଏତ୍ ୟୁନିଅନ୍ ଓ ଅନ୍ୟାନ୍ୟ ସମାଜବାଦୀ ଦେଶମାନଙ୍କ ବିରୁଦ୍ଧରେ ଶୀତଳ ଯୁଦ୍ଧକୁ ପୁଣି ପୁନର୍ଜୀବିତ କରିଥିଲେ ଏବଂ ସାମରିକ ଦିଗରୁ ସୋଭିଏତ୍ ୟୁନିଅନ୍ ବିରୁଦ୍ଧରେ ପ୍ରାଧାନ୍ୟ ଅର୍ଜନ କରିବା ପାଇଁ ଲଗାମ ଛଡ଼ା ଅସ୍ତ୍ରପ୍ରତିଯୋଗିତା ଆରମ୍ଭ କରି ଦେଇଥିଲେ । ସବୁକିଛି ଉପାୟରେ ଆନ୍ତର୍ଜାତିକ ଅବସ୍ଥାକୁ ଜଟିଳ କରିବାକୁ ଲାଗିଲେ ଏବଂ ସୋଭିଏତ୍ ୟୁନିଅନ୍‌କୁ ଏପରିସବୁ କାର୍ଯ୍ୟାନୁଷ୍ଠାନ କରିବାକୁ ପ୍ରରୋଚିତ କଲେ ଯଦ୍ୱାରା "ସୋଭିଏତ୍ ଭୟର" ବାହାନା ଦେଖାଇ ସେମାନଙ୍କ ଆକ୍ରମଣକୁ ଯୁକ୍ତିସଙ୍ଗତ ବୋଲି କହି ହେବ ।

ତେବେ, ସୋଭିଏତ୍ ୟୁନିଅନ୍ ଏହିସବୁ ପ୍ରରୋଚନାର ଶିକାର ହେଲା ନାହିଁ । ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ୨୬ତମ କଂଗ୍ରେସ (୧୯୮୧) ପୁଣି ଥରେ ଘୋଷଣା କରିଥିଲା : "ଆମ ପାର୍ଟି ଆଉ ସରକାରର ବୈଦେଶିକ ନୀତିର ମୁଖ୍ୟ ଦିଗଟି ହେଲା, ଅନ୍ୟ ସବୁ ସମୟ ପରି, ଯୁଦ୍ଧ ବିପଦକୁ ହ୍ରାସ କରିବା ଓ ଅସ୍ତ୍ରଶସ୍ତ୍ରର ପ୍ରତିଯୋଗିତାକୁ ହ୍ରାସ କରିବା । ବର୍ତ୍ତମାନ ଏହି ଲକ୍ଷ୍ୟଟି ଏକ ବିଶେଷ ଗୁରୁତ୍ୱ ଓ ଜରୁରିତା ଲାଭ କରିଛି... । ଆନ୍ତର୍ଜାତିକ ଅବସ୍ଥାର ମୌଳିକ ଉନ୍ନତି ସାଧନ କରିବା ପାଇଁ ଆମେ ଇଚ୍ଛେଇ କରି

ଗ୍ଲଲିଛୁ । ପୂର୍ବ ପରି, ଏବେ ମଧ୍ୟ ବିଶ୍ୱସ୍ତ ଦୂରବିକ୍ଷଣ ଯନ୍ତଟି ହେଲା ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ୨୪ତମ ଓ ୨୫ତମ କଂଗ୍ରେସର ଶାନ୍ତି କର୍ମସୂଚୀ ।"

"ଆଜିକାର ଦୁନିଆର ଅବସ୍ଥା ଦରକାର କରୁଛି ଯୁଦ୍ଧର ବିପଦକୁ ହଟାଇବା ପାଇଁ ନୂତନ ଆଉ ଅଧିକ ଉଦ୍ୟମ ଏବଂ ଆନ୍ତର୍ଜାତିକ ନିରାପତ୍ତା ରକ୍ଷା କରିବା ।"

ଶ୍ରମଜୀବୀ ମାନବଜାତିର ଅଭିଳାଷ ପୂରଣ ଦିଗରେ ଏହି ଐତିହାସିକ ସମସ୍ୟାର ସମାଧାନ ନିମିତ୍ତ କମ୍ୟୁନିଷ୍ଟ ପାର୍ଟିର ୨୬ତମ କଂଗ୍ରେସ କେତେକ ନିର୍ଦ୍ଦିଷ୍ଟ ସୁଚିନ୍ତିତ ପ୍ରତିକାରର ପ୍ରସ୍ତାବ ଦେଇଥିଲା । ସେସବୁ ପଦକ୍ଷେପ ମଧ୍ୟରେ ଥିଲା : ପାରମାଣବିକ ଅସ୍ତ୍ରଶସ୍ତ୍ରର ସୀମିତକରଣ ଓ ହ୍ରାସ ପାଇଁ ସୋଭିଏତ୍ ୟୁନିଅନ୍ ଓ ଆମେରିକା ଯୁକ୍ତ ରାଷ୍ଟ୍ର ମଧ୍ୟରେ ଆଳାପ ଆଲୋଚନା ; ସମସ୍ତ ପ୍ରକାରର ଅସ୍ତ୍ରଶସ୍ତ୍ରର ସୀମିତକରଣ ପାଇଁ ଆଲୋଚନା ; ନ୍ୟାଟୋ ଆଉ ସୋଭିଏତ୍ ୟୁନିଅନ୍ ଦ୍ୱାରା ୟୁରୋପରେ ନୂତନ ମଧ୍ୟମ ରେଞ୍ଜର ପାରମାଣବିକ କ୍ଷେପଣାସ୍ତ୍ର ସ୍ଥାପନର ସ୍ଥଗିତକରଣ ; ଜାତି ସଂଘ ନିରାପତ୍ତା ପରିଷଦର ସଦସ୍ୟ ରାଷ୍ଟ୍ରମାନଙ୍କ ନେତୃବୃନ୍ଦଙ୍କ ଅଂଶଗ୍ରହଣରେ ପରିଷଦର ବିଶେଷ ଅଧିବେଶନରେ ଆନ୍ତର୍ଜାତିକ ଅବସ୍ଥାର ଉନ୍ନତିସାଧନ ଓ ଯୁଦ୍ଧକୁ ରୋକିବା ପାଇଁ ଆଲୋଚନା ଏବଂ ଏକ କ୍ଷମତାସଂପନ୍ନ ଆନ୍ତର୍ଜାତିକ କମିଟି ସ୍ଥାପନ, ଯିଏକି ପାରମାଣବିକ ଧ୍ୱଂସଲୀଳାକୁ ରୋକିବାର ଜରୁରୀ ଆବଶ୍ୟକତାକୁ ଦର୍ଶାଇବ ।

ସୋଭିଏତ୍ ୟୁନିଅନ୍ ସମେତ ପୃଥିବୀର ସମାଜବାଦୀ ଗୋଷ୍ଠୀର ଅନ୍ୟାନ୍ୟ ଦେଶମାନେ ଅବିରାମ ସଂଗ୍ରାମ କରି ଚାଲିଛନ୍ତି ଏହିସବୁ ସୁଚିନ୍ତିତ ପ୍ରତିକାରକୁ କାର୍ଯ୍ୟରେ ପରିଣତ କରିବା ପାଇଁ । ଏହିସବୁ ପ୍ରତିକାର ହେଲା ୨୪ତମ ଓ ୨୫ତମ ପାର୍ଟି କଂଗ୍ରେସର ଶାନ୍ତି କର୍ମସୂଚୀର କ୍ରମାଗତ ଭାବେ ଆଉରି ବିକାଶସାଧନ । "ଶାନ୍ତି ରକ୍ଷା କରିବା ଠାରୁ—ଆମ ପାର୍ଟି ପାଇଁ, ଆମ ଲୋକଙ୍କ ପାଇଁ ଏବଂ ଦୁନିଆର ସମସ୍ତ ଜାତିଙ୍କ ପାଇଁ ଆନ୍ତର୍ଜାତିକ କ୍ଷେତ୍ରରେ ଏବେ ଅଧିକ ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ନାହିଁ", କମ୍ୟୁନିଷ୍ଟ ପାର୍ଟିର ୨୬ତମ କଂଗ୍ରେସର ଦଲିଲରେ କୁହାଯାଇଥିଲା ।

ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ୨୬ତମ କଂଗ୍ରେସ ପରେ ୧୯୮୦ ଦଶକ ପାଇଁ ଗୃହୀତ ଶାନ୍ତି କର୍ମସୂଚୀ ଅନୁଯାୟୀ ସୋଭିଏତ୍ ସରକାରଙ୍କର ବୈଦେଶିକ ନୀତି ପରିଚାଳିତ ହେଉଛି । ବିଶ୍ୱ ସାମ୍ରାଜ୍ୟବାଦୀ ଆକ୍ରମଣାତ୍ମକ ମହଲଗୁଡ଼ିକର, ବିଶେଷ କରି ଆମେରିକା ଯୁକ୍ତ ରାଷ୍ଟ୍ରର କ୍ରିୟାକଳାପ ବୃଦ୍ଧି ହେତୁ ଆନ୍ତର୍ଜାତିକ ଅବସ୍ଥା ଜଟିଳ ହେବାରେ ଲାଗିଛି, ତାପପାରମାଣବିକ ଯୁଦ୍ଧର ବିପଦ ଅଧିକ ବୃଦ୍ଧି ପାଇଛି, ବିଶ୍ୱର ଘଟଣାବଳୀର ବିକାଶର ଧାରା ଆଉରି ଅଧିକ ବିପଜ୍ଜନକ ହୋଇ ଉଠିଛି । ଏଇଭଳି ଅବସ୍ଥାରାଜିରେ ଶାନ୍ତି ରକ୍ଷା କରିବା ପାଇଁ, ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତାକୁ ରୋକିବା ପାଇଁ, ସମାନ ଭିତ୍ତି ଉପରେ ଆମେରିକା ଯୁକ୍ତ ରାଷ୍ଟ୍ର ସହିତ ସଠିକ ଆଲୋଚନା ପାଇଁ ଏବଂ ସମାନତା ଓ ସମାନ ନିରାପତ୍ତାର ଭିତ୍ତିରେ ଶାନ୍ତି ଆଉ

ନିରାପତ୍ତା ସଂକ୍ରାନ୍ତ ସମସ୍ତ ସାଂପ୍ରତିକ ସମସ୍ୟାବଳୀକୁ ନେଇ ଓ୍ୱାରସା ଚୁକ୍ତି ଓ ନ୍ୟାଟୋ ଦେଶମାନଙ୍କ ମଧ୍ୟରେ ସମଧରଣର ଆଲୋଚନା ପାଇଁ ସୋଭିଏତ୍ ସରକାର ପୂର୍ବ .ଅପେକ୍ଷା ଆଉରି ଅବିଚଳ ଏବଂ ନିରବଚ୍ଛିନ୍ନ ଭାବେ ଉଦ୍ୟମ କରି ଚାଲିଛି। ୧୯୮୧, ଜୁନ୍ ମାସରେ ସୋଭିଏତ୍ ୟୁନିଅନ୍‌ର ସର୍ବୋଚ୍ଚ ସୋଭିଏତ୍ ଦ୍ୱାରା ଗୃହୀତ "ବିଶ୍ୱର ପାର୍ଲିଆମେଣ୍ଟ ଏବଂ ଜାତିମାନଙ୍କ ପ୍ରତି" ନିବେଦନଟିରେ କୁହାଯାଇଥିଲା : "ଆମ୍ଭମାନଙ୍କର ଏହି ପାରମାଣବିକ ଯୁଗରେ ସମସ୍ତେ ଆଳାପ ଆଲୋଚନା ଯେମିତି ଚାହାନ୍ତି, ସେଇମିତି ସମସ୍ତେ ଚାହାନ୍ତି ଶାନ୍ତି, ନିରାପତ୍ତା ଆଉ ଭବିଷ୍ୟତ ଉପରେ ବିଶ୍ୱାସ। ଏବେ ଜରୁରୀ ସମସ୍ୟାବଳୀକୁ ସମାଧାନ କଲା ଭଳି, ସେ ସମସ୍ୟାବଳୀ ଯେତେ ଜଟିଳ ଏବଂ ତୀବ୍ର ହେଉ ନା କାହିଁକି, ଅନ୍ୟ କୌଣସି ଯୁକ୍ତିସଂଗତ ଉପାୟ ନାହିଁ ଆଳାପ ଆଲୋଚନା ବ୍ୟତୀତ। ଏହିଭଳି ସୁଯୋଗକୁ କୌଣସିମତେ ହରେଇବା ଉଚିତ ନୁହେଁ। ଏହା ଅତୀବ ଜରୁରୀ ବିଷୟ!"

୧୯୮୦ ଦଶକର ପ୍ରଥମ ଭାଗରେ ସୋଭିଏତ୍ ୟୁନିଅନ୍ ଏକାଧିକବାର ନୂଆ ପ୍ରସ୍ତାବମାନ ପ୍ରଦାନ କରିଥିଲା ଉଭୟ ପାରମାଣବିକ ଓ ପାରମ୍ପରିକ ଅସ୍ତ୍ରଶସ୍ତ୍ରର ସୀମିତକରଣ ଓ ହ୍ରାସ, ଶାନ୍ତିକୁ ବିଘ୍ନିତ କରୁଥିବା ମଧ୍ୟ ପ୍ରାଚ୍ୟ ସଂକଟ ଭଳି ସଂକଟରାଜିର ସମାଧାନ, ଜାତିମାନଙ୍କର ନିରାପତ୍ତା ଏବଂ 'ସେମାନଙ୍କ ମଧ୍ୟରେ ଆସ୍ଥାର ଦୃଢ଼ୀକରଣ ଆଦି ପାଇଁ। ୧୯୮୨ରେ ସୋଭିଏତ୍ ୟୁନିଅନ୍ ଅଙ୍ଗୀକାର ପ୍ରସ୍ତାବ ଦେଇଥିଲା ତା ପକ୍ଷରୁ ପ୍ରଥମ କରି ପାରମାଣବିକ ଅସ୍ତ୍ରର ବ୍ୟବହାର ନକରିବାକୁ। ଏହି ପଦକ୍ଷେପଟି ଥିଲା ଅସାଧାରଣ ଗୁରୁତ୍ୱସଂପନ୍ନ, କାରଣ ଯେଉଁସବୁ ରାଷ୍ଟ୍ରମାନଙ୍କ ହାତରେ ଏଭଳି ଅସ୍ତ୍ରଶସ୍ତ୍ର ରହିଛି, ସେମାନେ ଯଦି ସୋଭିଏତ୍ ୟୁନିଅନ୍ ଉଦାହରଣକୁ ଅନୁସରଣ କରିଥାନ୍ତେ, ତେବେ ବାସ୍ତବରେ ପାରମାଣବିକ ଅସ୍ତ୍ରଶସ୍ତ୍ରର ବ୍ୟବହାର ସାଧାରଣ ଭାବେ ନିଷିଦ୍ଧ ହୋଇଯାଇଥାନ୍ତା, କିନ୍ତୁ ଆମେରିକା ଯୁକ୍ତ ରାଷ୍ଟ୍ର କିମ୍ବା ଅନ୍ୟ କୌଣସି ପାରମାଣବିକ ଅସ୍ତ୍ର ଥିବା ରାଷ୍ଟ୍ର ଏପରି ପଦକ୍ଷେପ ନେଇ ନଥିଲେ। ସୋଭିଏତ୍ ୟୁନିଅନ୍ ଏକ ତରଫା ଭାବେ ପଶ୍ଚିମ ୟୁରୋପକୁ ଲକ୍ଷ୍ୟ କରି ମଧ୍ୟମ ଧରଣର ଦୂରଗାମୀ ରକେଟ ସ୍ଥାପନ ନକରିବାକୁ ସ୍ଥିର କରିଥିଲା ଏବଂ ୧୯୮୩ରେ ଉପଗ୍ରହବିରୋଧୀ ରକେଟ ମହାକାଶକୁ ଉତ୍କ୍ଷେପଣ ନକରିବାକୁ ଘୋଷଣା କଲା।

୧୯୮୨, ଡିସେମ୍ବର ମାସରେ ସୋଭିଏତ୍ ୟୁନିଅନ୍ ଗଠନର ୬୦ ବର୍ଷ ପୂର୍ତ୍ତି ଉପଲକ୍ଷେ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟି କେନ୍ଦ୍ରୀୟ କମିଟି, ସୋଭିଏତ ୟୁନିଅନ୍ ତଥା ରୁଷ୍ ଫେଡେରେସନର ସର୍ବୋଚ୍ଚ ସୋଭିଏତ୍‌ର ଏକ ମିଳିତ ଭାବଗମ୍ଭୀର ଅଧିବେଶନରେ ନୂଆ ଏକ ଶାନ୍ତି ପଦକ୍ଷେପ ନିଆଯାଇଥିଲା "ବିଶ୍ୱର ପାର୍ଲିଆମେଣ୍ଟ, ସରକାର, ରାଜନୈତିକ ଦଳ ଓ ଜାତିମାନଙ୍କୁ" ନିବେଦନପତ୍ରରେ। ଏହି ଦଲିଲଟିରେ ଯେଉଁସବୁ କଥାଗୁଡ଼ିକ ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଥିଲା, ସେସବୁ ହେଲା : ବର୍ତ୍ତମାନ ସବୁଠାରୁ

ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟଟି ହେଲା ପାରମାଣବିକ ଧ୍ୱଂସକୁ ରୋକିବା, ପ୍ରଥମେ ପାରମାଣବିକ ଅସ୍ତ୍ର ବ୍ୟବହାର ନକରିବା ପାଇଁ ସୋଭିଏତ୍ ୟୁନିଅନ୍‌ର ଅଙ୍ଗୀକାର, ରାଷ୍ଟ୍ରମାନଙ୍କର ଅସ୍ତ୍ରାଗାରମାନଙ୍କରେ ଗଚ୍ଛିତ ପାରମାଣବିକ ଅସ୍ତ୍ରଶସ୍ତ୍ରକୁ ବାଦ୍ ଦେଇ ଏବଂ ବ୍ରିଟେନ୍ ଓ ଫ୍ରାନ୍ସ ପାଖରେ ଥିବା ସମପରିମାଣ ମଧ୍ୟମ ଦୂରଗାମୀ ରକେଟ ୟୁରୋପର ଅସ୍ତ୍ରାଗାରମାନଙ୍କରେ ଗୋଟିଏ ହେଲେ ଅଧିକ ନରଖି ସୋଭିଏତ୍ ୟୁନିଅନ୍ ଅବିଳମ୍ବେ ଏକ ବୁଝାମଣାରେ ପହଞ୍ଚିବାକୁ ପ୍ରସ୍ତୁତ ବୋଲି କହିଥିଲା ।

୧୯୮୩, ଜାନୁଆରୀ ମାସର ପ୍ରାରମ୍ଭରେ ଓ୍ୱାର୍ସା ଚୁକ୍ତି ଅନ୍ତର୍ଗତ ରାଷ୍ଟ୍ରମାନଙ୍କର ରାଜନୈତିକ ପରାମର୍ଶଦାତା କମିଟିର ଏକ ଅଧିବେଶନ ବସିଥିଲା । ଏହି ଅଧିବେଶନରେ ଗୃହୀତ ଏକ "ରାଜନୈତିକ ଘୋଷଣାରେ" ମିତ୍ର ସମାଜବାଦୀ ଦେଶମାନେ ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତାକୁ ରୋକିବା, ନିରସ୍ତ୍ରୀକରଣକୁ ଉତ୍ତରଣ, ବିଶେଷ କରି ପାରମାଣବିକ ଅସ୍ତ୍ରଶସ୍ତ୍ରର ନିଷିଦ୍ଧକରଣ, ପାରମାଣବିକ ଯୁଦ୍ଧକୁ ରୋକିବା, ଜାତିମାନଙ୍କର ନିରାପତ୍ତା ଏବଂ ସେମାନଙ୍କ ମଧ୍ୟରେ ଆସ୍ଥାକୁ ସୁଦୃଢ଼ କରିବା ଦିଗରେ ଅତି ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ସମ୍ବଳିତ ଏକ ବାସ୍ତବ, ଯୁକ୍ତିସଂଗତ ଗଠନମୂଳକ କର୍ମସୂଚୀ ପେଶ୍ କରିଥିଲା । ଏହିସବୁ ବିଶେଷ ଗୁରୁତ୍ୱସଂପନ୍ନ ପଦକ୍ଷେପ ମଧ୍ୟରେ ଥିଲା ଏକ ନୂଆ ପ୍ରସ୍ତାବ, ସେ ପ୍ରସ୍ତାବଟି ହେଲା, ଉଭୟ ସାମରିକ ରାଜନୈତିକ ଗୋଷ୍ଠୀ – ଓ୍ୱାର୍ସା ଚୁକ୍ତି ଏବଂ ନ୍ୟାଟୋ ଅନ୍ତର୍ଗତ ଦେଶମାନେ ପରସ୍ପର ବିରୁଦ୍ଧରେ ସାମରିକ ଶକ୍ତି ବ୍ୟବହାର ନକରିବା ପାଇଁ ଏବଂ ଶାନ୍ତି ବଜାଏ ରଖିବା ପାଇଁ ଏକ ଚୁକ୍ତି ସଂପାଦନ କରନ୍ତୁ ।

ଆନ୍ତର୍ଜାତିକ ସଂପର୍କ କ୍ଷେତ୍ରରେ ମଣିଷର ବିଶ୍ୱର ବୃଦ୍ଧି ପ୍ରତି ନିବେଦନ ପୁଣିଥରେ ନୂଆ ଶକ୍ତି ନେଇ ଶୁଣା ଯାଇଥିଲା ୧୯୮୩, ଜୁନ୍ ୨୮ ତାରିଖରେ ମସ୍କୋରେ ଅନୁଷ୍ଠିତ ଓ୍ୱାର୍ସା ଚୁକ୍ତି ଭୁକ୍ତ ସଦସ୍ୟ ଦେଶମାନଙ୍କର ପାର୍ଟି ତଥା ସରକାରମାନଙ୍କର ନେତୃବୃନ୍ଦଙ୍କର ବୈଠକରେ ଗୃହୀତ "ମିଳିତ ବିବୃତିରେ" । ଏହି ବିବୃତିଟିରେ ଗୁରୁତ୍ୱ ଦେଇ କୁହାଯାଇଥିଲା : "ଏହି ବୈଠକରେ ଅଂଶ ଗ୍ରହଣକାରୀମାନେ ଅସ୍ତ୍ର ପ୍ରତିଯୋଗିତାକୁ ବନ୍ଦ କରିବାକୁ ଏବଂ ନିରସ୍ତ୍ରୀକରଣ, ବିଶେଷ କରି ପାରମାଣବିକ ନିରସ୍ତ୍ରୀକରଣ ହାସଲ କରିବାକୁ ଆମ ଯୁଗର ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ବୋଲି ବିଶ୍ୱର କରନ୍ତି... । ଏ ଦିଗରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥାଟି ହେଲା ୟୁରୋପ ମହାଦେଶରେ ପାରମାଣବିକ ଯୁଦ୍ଧର ସମ୍ଭାବନାକୁ ନିର୍ମୂଳ କରିବା ।" ଅଂଶଗ୍ରହଣକାରୀମାନେ ସମସ୍ତ ହୃଦ୍‌ବୋଧତାର ସହିତ କହିଥିଲେ – ଲୋକଙ୍କର ନିରାପତ୍ତା ଓ ଶାନ୍ତିର ସ୍ୱାର୍ଥ ଦୃଷ୍ଟିରୁ ସମସ୍ତ ପାରମାଣବିକ ଅସ୍ତ୍ରଧାରୀ ରାଷ୍ଟ୍ରମାନଙ୍କୁ ଯଥା ଶୀଘ୍ର ପାରମାଣବିକ ଅସ୍ତ୍ରକୁ ଧ୍ୱଂସ କରି ଦେବାକୁ ହେବ, ପ୍ରଥମ କରି ସୋଭିଏତ୍ ୟୁନିଅନ୍ ଏବଂ ଆମେରିକା ଯୁକ୍ତ ରାଷ୍ଟ୍ରର ପାରମାଣବିକ ଅସ୍ତ୍ରକୁ; ପାରମାଣବିକ ଅସ୍ତ୍ରଶସ୍ତ୍ର ରଖିଥିବା ଦେଶସବୁ ଶପଥ ନେବାକୁ ହେବ, ପ୍ରଥମତଃ ଏହି ଅସ୍ତ୍ରଶସ୍ତ୍ରକୁ ବ୍ୟବହାର ହେବ ନି; ମହାକାଶରେ ଯେକୌଣସି ପ୍ରକାରର

ଅସ୍ତ୍ର ସ୍ଥାପନ କରିବାକୁ ନିଷିଦ୍ଧ କରିବେ ଏବଂ ମହାକାଶକୁ ଅସ୍ତ୍ରଶସ୍ତ୍ର ସଂପ୍ରସାରଣ କରିବାର ସମ୍ଭାବନାକୁ ଦୂର କରିବା ବିଷୟରେ ଶୀଘ୍ର ଆଳାପ ଆଲୋଚନା ଆରମ୍ଭ କରିବେ । ମିଳିତ ବିବୃତିଟିରେ ଆଉରି କୁହାଯାଇଥିଲା, "ଅଂଶଗ୍ରହଣକାରୀ ରାଷ୍ଟ୍ରମାନେ ଶାନ୍ତି ତଥା ସେମାନଙ୍କର ନିଜସ୍ୱ ସ୍ୱାର୍ଥ ଦୃଷ୍ଟିରୁ କୌଣସି ଅବସ୍ଥାରେ ସେମାନଙ୍କ ଉପରେ ସାମରିକ ଦୃଷ୍ଟିରୁ କାହାକୁ ଅଧିକ ଶକ୍ତିଶାଳୀ ହେବାକୁ ଦେବେ ନାହିଁ । ସର୍ବନିମ୍ନ ସ୍ତରରେ ସେମାନେ ଶକ୍ତିର ଭାରସାମ୍ୟ ରଖିବାକୁ ସୁନିଶ୍ଚିତ କରିବାକୁ ଚାହାନ୍ତି ।"

୧୯୮୩, ଜୁନ୍ ୧୬ ତାରିଖ ଦିନ ସୋଭିଏତ୍ ୟୁନିଅନ୍‌ର ସର୍ବୋଚ୍ଚ ସୋଭିଏତ୍ "ଆନ୍ତର୍ଜାତିକ ପରିସ୍ଥିତି ଓ ବୈଦେଶିକ ନୀତି" ସଂକ୍ରାନ୍ତରେ ଏକ ପ୍ରସ୍ତାବ ପାଶ୍ କରିଥିଲା । ଏଥିରେ ଗୁରୁତ୍ୱ ଦେଇ କୁହାଯାଇଥିଲା ଯେ, ଆଜିକାଲିକାର ଉତ୍ତେଜନାପୂର୍ଣ୍ଣ ପରିସ୍ଥିତିରେ ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତାକୁ ରୋକିବା ପାଇଁ, ଦେତାନ୍ତକୁ ଫେରି ଆସିବା ପାଇଁ ଏବଂ ଶାନ୍ତିକୁ ସୁଦୃଢ଼ କରିବା ପାଇଁ ସବୁକିଛି କରିବାକୁ ହେବ । ଅନ୍ୟାନ୍ୟ ପାରମାଣବିକ ଅସ୍ତ୍ରଧାରୀ ଶକ୍ତିମାନେ ସୋଭିଏତ୍ ୟୁନିଅନ୍‌କୁ ଅନୁସରଣ କଲେ, ପ୍ରଥମେ ପାରମାଣବିକ ଅସ୍ତ୍ର ବ୍ୟବହାର ନକରିବାକୁ ଶପଥ ନେଲେ ଏବଂ ଓ୍ୱାର୍ସା ଚୁକ୍ତି ଭୁକ୍ତ ରାଷ୍ଟ୍ରମାନଙ୍କର ପ୍ରସ୍ତାବ – ସେମାନଙ୍କ ସହିତ ନ୍ୟାଟୋ ମେଣ୍ଟ ଭୁକ୍ତ ଦେଶମାନଙ୍କର ମଧ୍ୟରେ ପରସ୍ପର ପ୍ରତି ସାମରିକ ଶକ୍ତି ବ୍ୟବହାର ନକରିବା ଓ ଶାନ୍ତିପୂର୍ଣ୍ଣ ସଂପର୍କ ବଜାଏ ରଖିବାର ପ୍ରସ୍ତାବଟିକୁ କାର୍ଯ୍ୟକାରୀ କଲେ, ଉପରୋକ୍ତ କର୍ତ୍ତବ୍ୟଗୁଡ଼ିକର କାର୍ଯ୍ୟକାରିତା ପକ୍ଷରେ ସହାୟକ ହେବ ।

ପାରମାଣବିକ ଅସ୍ତ୍ରଶସ୍ତ୍ର ଉତ୍ପାଦନର ଅବସାନ ଘଟାଇବା ହେଉଛି ସବୁଠାରୁ ଜରୁରୀ କର୍ତ୍ତବ୍ୟରାଜି ମଧ୍ୟରୁ ଅନ୍ୟତମ – ଏହି ସତ୍ୟରେ ଉପନୀତ ହୋଇ ସୋଭିଏତ୍ ସରକାରକୁ ସୋଭିଏତ୍ ୟୁନିଅନ୍‌ର ସର୍ବୋଚ୍ଚ ସୋଭିଏତ୍ ନିର୍ଦ୍ଦେଶ ଦେଇଥିଲା ଆମେରିକା ଯୁକ୍ତ ରାଷ୍ଟ୍ର, ଗ୍ରେଟ୍ ବ୍ରିଟେନ୍, ଫ୍ରାନ୍‌ସ ଏବଂ ଚୀନ୍ ଗଣ ପ୍ରଜାତନ୍ତ୍ରକୁ ପ୍ରସ୍ତାବ ଦେବା ପାଇଁ ଯେ, ଯେଉଁସବୁ ରାଷ୍ଟ୍ରମାନଙ୍କ ପାଖରେ ପାରମାଣବିକ ଅସ୍ତ୍ରଶସ୍ତ୍ର ଅଛି, ସେମାନେ ଏକକାଳୀନ ସେସବୁକୁ ସଂଖ୍ୟାଗତ ତଥା ଗୁଣଗତ ଦୃଷ୍ଟିରୁ ଅକାମୀ କରି ଦେବାକୁ । ଏହା ଏକ ଫଳପ୍ରଦ ଏବଂ ତୁଳନାମୂଳକ ଭାବେ ସହଜସାଧ୍ୟ କାର୍ଯ୍ୟ, ଯାହାକି ପାରମାଣବିକ ଅସ୍ତ୍ରର ପରବର୍ତ୍ତୀ ହ୍ରାସ ଏବଂ ସର୍ବଶେଷରେ ପାରମାଣବିକ ଅସ୍ତ୍ରଶସ୍ତ୍ରର ସଂପୂର୍ଣ୍ଣ ଉଚ୍ଛେଦ ପକ୍ଷରେ ଯାତ୍ରାବିନ୍ଦୁ ସ୍ୱରୂପ । ଏହା ଦ୍ୱାରା ଯେଉଁସବୁ ଦେଶଙ୍କ ପାଖରେ ପାରମାଣବିକ ଅସ୍ତ୍ରଶସ୍ତ୍ର ଅଛି, ସେମାନଙ୍କ ସଂପର୍କ କ୍ଷେତ୍ରରେ ବିଶ୍ୱାସର ମାତ୍ରାକୁ ବୃଦ୍ଧି କରିବ ଏବଂ ସମଗ୍ର ବିଶ୍ୱ ପରିସ୍ଥିତିରେ ଏକ ଦୃଢ଼ ପରିବର୍ତ୍ତନ ଆଣିବାରେ ସହାୟକ ହେବ ।

୧୯୮୩, ଜୁନ୍ ୨୧ ତାରିଖରେ ଉପରୋକ୍ତ ଦେଶମାନଙ୍କର ସରକାରମାନଙ୍କ ନିକଟକୁ ଏକ ସ୍ମୃତି ଉଦ୍ରେକ ପତ୍ର ପଠାଇଥିଲେ । ସେଥିରେ ପ୍ରସ୍ତାବ ଦିଆଯାଇଥିଲା, ସୋଭିଏତ୍ ୟୁନିଅନ୍ ତଥା ସେମାନଙ୍କ ପାଖରେ ଥିବା ସମସ୍ତ ପାରମାଣବିକ ଅସ୍ତ୍ରକୁ

ସଂଖ୍ୟାଗତ ଏବଂ ଗୁଣଗତ ଭାବେ ଅକାମୀ କରି ଦେବାକୁ । ଏହି ପ୍ରସ୍ତାବର କୌଣସି ଉତ୍ତର ଏପର୍ଯ୍ୟନ୍ତ ମିଳି ନାହିଁ ।

ଜାତି ସଂଘରେ ସୋଭିଏତ୍ ୟୁନିଅନ୍ ଶାନ୍ତିର ଦୃଢ଼ୀକରଣ, ପାରମାଣବିକ ଯୁଦ୍ଧକୁ ରୋକିବା ପାଇଁ, ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତାକୁ ରୋଧ କରିବା ଏବଂ ନିରସ୍ତ୍ରୀକରଣ ପାଇଁ ଅତୀବ ସକ୍ରିୟ ସଂଗ୍ରାମ ଚଳାଇ ଆସିଛି । ୧୯୮୨, ଜୁନ୍ ମାସରେ ନିରସ୍ତ୍ରୀକରଣ ଉପରେ ଅନୁଷ୍ଠିତ ଜାତି ସଂଘର ସାଧାରଣ ପରିଷଦର ଦ୍ୱିତୀୟ ବିଶେଷ ଅଧିବେଶନରେ ସୋଭିଏତ୍ ପ୍ରତିନିଧିଦଳ କେତେକ ସୁପରିକଳ୍ପିତ ପଦକ୍ଷେପ ପାଇଁ ପ୍ରସ୍ତାବ ଦେଇଥିଲେ । ଏହିସବୁ ପଦକ୍ଷେପ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ୨୬ତମ କଂଗ୍ରେସ ଦ୍ୱାରା ଉପସ୍ଥାପିତ ୧୯୮୦ ଦଶକ ପାଇଁ ଶାନ୍ତି କର୍ମସୂଚୀକୁ କାର୍ଯ୍ୟକାରୀ କରିବା ଲକ୍ଷ୍ୟରେ ଉଦ୍ଦିଷ୍ଟ ଥିଲା । ସେସବୁ ଏହି ବିଶେଷ ଅଧିବେଶନରେ ଆଲୋଚନା ପାଇଁ ଉପସ୍ଥାପିତ ଦଲିଲଗୁଡ଼ିକରେ ବର୍ଣ୍ଣିତ ହୋଇଥିଲା : "କ୍ରମବର୍ଦ୍ଧମାନ ପାରମାଣବିକ ଯୁଦ୍ଧ ଭୟକୁ ରୋକିବା ; ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତାକୁ ହ୍ରାସ କରିବା" ଏବଂ "ରାସାୟନିକ ଅସ୍ତ୍ରଶସ୍ତ୍ରର ଉତ୍ପାଦନ, ମହଜୁତକରଣକୁ ନିଷିଦ୍ଧକରଣ ଏବଂ ଧ୍ୱଂସସାଧନ କରିବା ଉପରେ ସମ୍ମିଳନୀର ମୌଳିକ ପ୍ରସ୍ତାବରାଜି" ସଂକ୍ରାନ୍ତ ନିବେଦନପତ୍ର । ନିରସ୍ତ୍ରୀକରଣ ଉପରେ ଅନୁଷ୍ଠିତ ଜାତି ସଂଘର ସାଧାରଣ ପରିଷଦର ଏହି ବିଶେଷ ଅଧିବେଶନର ଅଧିକାଂଶ ପ୍ରତିନିଧି ସୋଭିଏତ୍ ୟୁନିଅନ୍‌ର ଏହିସବୁ ପ୍ରସ୍ତାବ ପ୍ରତି ସୁପ୍ରତିକ୍ରିୟା ପ୍ରକାଶ କରିଥିଲେ ଏବଂ, କିଛି ପରିମାଣରେ ତାହା ଅଧିବେଶନର ଅନ୍ତିମ ଦଲିଲରେ ପ୍ରତିଫଳିତ ହୋଇଥିଲା ।

୧୯୮୨, ଅକ୍ଟୋବର ମାସରେ ଅନୁଷ୍ଠିତ ଜାତିସଂଘର ସାଧାରଣ ଅଧିବେଶନର ୩୭ତମ ଅଧିବେଶନରେ ସୋଭିଏତ୍ ପ୍ରତିନିଧିଦଳ, ପୂର୍ବତନ ଅଧିବେଶନଗୁଡ଼ିକ ଭଳି, ଆନ୍ତର୍ଜାତିକ ପରିସ୍ଥିତିର ଉନ୍ନତିସାଧନ, ନିରସ୍ତ୍ରୀକରଣ, ଶାନ୍ତି ତଥା ଜାତିମାନଙ୍କର ନିରାପତ୍ତାର ଦୃଢ଼ୀକରଣ, ସଂଘର୍ଷମୂଳକ ପରିସ୍ଥିତିର ସମାଧାନ ଏବଂ ଦୁନିଆରେ ଯୁଦ୍ଧର ଉତ୍ତପ୍ତ ସ୍ଥଳୀଗୁଡ଼ିକର ଦୂରୀକରଣ ପାଇଁ ଏକ ବ୍ୟାପକ ପଦକ୍ଷେପ ସମ୍ବଳିତ କର୍ମସୂଚୀ ଉପସ୍ଥାପିତ କରିଥିଲେ । ଅଧିବେଶନର ଆଲୋଚ୍ୟ କର୍ମସୂଚୀରେ ସୋଭିଏତ୍ ପ୍ରତିନିଧିଦଳ ପାରମାଣବିକ ଅସ୍ତ୍ରଶସ୍ତ୍ରର ପରୀକ୍ଷାକୁ ତୁରନ୍ତ ବନ୍ଦ କରିବା ସଙ୍ଗେ ସଙ୍ଗେ ଚିର ଦିନ ପାଇଁ ନିଷିଦ୍ଧ କରିବା ଭଳି ଗୁରୁତ୍ୱପୂର୍ଣ୍ଣ ଜରୁରୀ ପ୍ରଶ୍ନଟିକୁ ଅନ୍ତର୍ଭୁକ୍ତ କରାଇଥିଲେ । ଏହା ଛଡ଼ା ଏହି ପ୍ରତିନିଧିଦଳ ଉକ୍ତ ଅଧିବେଶନରେ ଆଲୋଚନା ପାଇଁ ଏକ ପୁଙ୍ଖାନୁପୁଙ୍ଖ ଭାବେ ରଚିତ ଏକ ଦଲିଲ ମଧ୍ୟ ଉପସ୍ଥାପିତ କରିଥିଲେ । ସେ ଦଲିଲଟି ହେଲା : "ପାରମାଣବିକ ଅସ୍ତ୍ର ପରୀକ୍ଷାର ସଂପୂର୍ଣ୍ଣ ଏବଂ ସାର୍ବିକ ନିଷିଦ୍ଧକରଣ ସଂକ୍ରାନ୍ତ ଚୁକ୍ତିର ମୌଳିକ ବ୍ୟବସ୍ଥାସମୂହ ।"

୧୯୮୩, ଅକ୍ଟୋବର ମାସରେ ଅନୁଷ୍ଠିତ ଜାତିସଂଘ ସାଧାରଣ ପରିଷଦର ୩୮ଶ ଅଧିବେଶନରେ ସୋଭିଏତ୍ ୟୁନିଅନ୍ ଶାନ୍ତି ପାଇଁ ନୂତନ ଅଗ୍ରପଦକ୍ଷେପ ନେଇଥିଲା ।

ସୋଭିଏତ୍ ୟୁନିଅନ୍‌ର ପ୍ରସ୍ତାବ କ୍ରମେ ଅଧିବେଶନର ଆଲୋଚ୍ୟ କର୍ମସୂଚୀରେ ଗୁରୁତ୍ୱପୂର୍ଣ୍ଣ ଜରୁରୀ ବିଷୟ ରୂପେ ଅନ୍ତର୍ଭୁକ୍ତ ହୋଇଥିଲା : ମାନବଜାତି ବିରୁଦ୍ଧରେ ପାରମାଣବିକ ଯୁଦ୍ଧ ହେଉଛି ଏକ ଭୟଙ୍କର ଅପରାଧ ଏବଂ ଏହାକୁ ନିନ୍ଦା କରାଯାଉ, ମହାକାଶରେ ଅସ୍ତ୍ରଶସ୍ତ୍ରର ବ୍ୟବହାର ଏବଂ ମହାକାଶରୁ ପୃଥିବୀ ଆଡ଼କୁ ଅସ୍ତ୍ରଶସ୍ତ୍ର ପ୍ରୟୋଗକୁ ନିଷିଦ୍ଧ କରିବା ପାଇଁ ଏକ ଚୁକ୍ତିରେ ସ୍ୱାକ୍ଷର, ସଂଖ୍ୟାଗତ ଭାବେ ଏବଂ ଗୁଣଗତ ଭାବେ ପାରମାଣବିକ ଅସ୍ତ୍ରଶସ୍ତ୍ରକୁ ଅକାମି କରି ଦେବା ପାଇଁ ଏକ ଚୁକ୍ତି ସଂପାଦନ । ଏହି ସମସ୍ତ ବିଷୟ ଉପରେ ଆଲୋଚନା ପାଇଁ ସୋଭିଏତ୍ ୟୁନିଅନ୍ ଜାତିସଂଘର ସାଧାରଣ ଅଧିବେଶନ ଆଗରେ ସୁପରିକଳ୍ପିତ ଦଲିଲମାନ ପେଶ୍ କରିଥିଲା ।

ସାଧାରଣ ପରିଷଦର କାର୍ଯ୍ୟ ସୋଭିଏତ୍ ପ୍ରସ୍ତାବଗୁଡ଼ିକୁ କେନ୍ଦ୍ର କରି ପରିଚାଳିତ ହୋଇଥିଲା ଏବଂ ସୋଭିଏତ୍ ପ୍ରତିନିଧିଦଳ ଦ୍ୱାରା ଉପସ୍ଥାପିତ ଦଲିଲଗୁଡ଼ିକ ଉପରେ ଭୋଟଦାନ ବେଳେ ଜାତିସଂଘର ଅଧିକାଂଶ ସଦସ୍ୟ ରାଷ୍ଟ୍ର ଭୋଟ ଦେଇଥିଲେ । ଆମେରିକା ଯୁକ୍ତ ରାଷ୍ଟ୍ରର ପ୍ରତିନିଧିଦଳ ସମେତ ଆଉ କେତେକ ସାମ୍ରାଜ୍ୟବାଦୀ ରାଷ୍ଟ୍ର ଏସବୁର ବିରୋଧିତା କରିଥିଲେ । ଜାତିସଂଘର ସାଧାରଣ ପରିଷଦର ୩୮ଶ ଅଧିବେଶନର ନିଷ୍ପତ୍ତିରାଜି ଥିଲା ସୋଭିଏତ୍ ୟୁନିଅନ୍‌ର ଶାନ୍ତିକାମୀ ବୈଦେଶିକ ନୀତିର ଏକ ବିରାଟ ବିଜୟ ଏବଂ ଆମେରିକା ଯୁକ୍ତ ରାଷ୍ଟ୍ର ତଥା ତା'ର ନ୍ୟାଟୋଭୁକ୍ତ ମିତ୍ରମାନଙ୍କର ଆକ୍ରମଣାତ୍ମକ, ମାନବ ସମାଜ ବିରୋଧୀ, ସାମ୍ରାଜ୍ୟବାଦୀ ନୀତିର ପରାଜୟ ।

ଅନେକ ଦିନ ଧରି ଆମେରିକା ଯୁକ୍ତ ରାଷ୍ଟ୍ର ସରକାର ରଣନୀତି ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ପାରମାଣବିକ ଅସ୍ତ୍ରଶସ୍ତ୍ରର ସୀମିତକରଣ ଓ ହ୍ରାସକରଣ ଏବଂ ୟୁରୋପରେ ପାରମାଣବିକ ଅସ୍ତ୍ରଶସ୍ତ୍ରର ସୀମିତକରଣ ଉପରେ ଆଲୋଚନା ପାଇଁ ସୋଭିଏତ୍ ପ୍ରସ୍ତାବଗୁଡ଼ିକୁ ଅବଜ୍ଞା କରି ଆସିଥିଲେ । ବିଶ୍ୱ ଜନମତ ତଥା ସ୍ୱୟଂ ଆମେରିକା ଯୁକ୍ତ ରାଷ୍ଟ୍ରର ଆଭ୍ୟନ୍ତରୀଣ ଜନମତର ଚାପରେ ପଡ଼ି ଏହା ସୋଭିଏତ୍ ୟୁନିଅନ୍ ସହିତ ଏସବୁ ପ୍ରଶ୍ନ ଉପରେ ଆଲୋଚନା କରିବାକୁ ବାଧ୍ୟ ହୋଇଥିଲା । ଏହି ଆଲୋଚନା ୧୯୮୨-୧୯୮୩ ଯାଏ ଚାଲିଥିଲା ଏବଂ ଆମେରିକା ଯୁକ୍ତ ରାଷ୍ଟ୍ର ହେତୁ ଅଚଳାବସ୍ଥାରେ ପଡ଼ି ବନ୍ଦ ହୋଇଗଲା । ଆଲୋଚନା କାଳରେ ଆମେରିକା ଯୁକ୍ତ ରାଷ୍ଟ୍ର ତରଫରୁ ଯେଉଁସବୁ ପ୍ରସ୍ତାବ ଦିଆ ଯାଇଥିଲା, ସେସବୁର ଲକ୍ଷ୍ୟ ଥିଲା, ଏକଦିଗରେ ସୋଭିଏତ୍ ୟୁନିଅନ୍‌କୁ ଏକ ତରଫା ଭାବେ ନିରସ୍ତ୍ରୀକରଣ କରାଇବା, ତା'ର ରଣନୀତି ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ଅସ୍ତ୍ରବଳକୁ ହୀନବଳ କରି ଦେବା; ଅନ୍ୟଦିଗରେ, ଆମେରିକା ଯୁକ୍ତ ରାଷ୍ଟ୍ରକୁ ରଣନୀତି ଦୃଷ୍ଟିରୁ ସୋଭିଏତ୍ ୟୁନିଅନ୍ ଅପେକ୍ଷା ଅଧିକ ବଳଶାଳୀ କରିବା ଏବଂ ୟୁରୋପରେ ପାରମାଣବିକ ଅସ୍ତ୍ରଯୁକ୍ତ ଆମେରିକାନ ରକେଟ ସ୍ଥାପନ କରିବା ।

ଏହିସବୁ ଆଳାପ ଆଲୋଚନା ଚାଲିଥିଲା ବେଳେ ଏକ ଯୁକ୍ତିସମ୍ମତ ବୁଝାମଣାରେ ପହଞ୍ଚିବା ନିମିତ୍ତ ସୋଭିଏତ୍ ୟୁନିଅନ୍ ନମନୀୟତା ପ୍ରଦର୍ଶନ କରି ସବୁବେଳେ ନୂଆ

ନୂଆ ପ୍ରସ୍ତାବମାନ ଦେଉଥିଲା । ସେସବୁ ପ୍ରସ୍ତାବ ମଧ୍ୟରେ ଉଭୟ ପକ୍ଷର ସମାନତା ଓ ନିରାପତ୍ତାକୁ ବିଶ୍ୱକୁ ନେବା ସାଥେ ସାଥେ ଆମେରିକା ଯୁକ୍ତ ରାଷ୍ଟ୍ର ଓ ସୋଭିଏତ୍ ୟୁନିଅନ୍‌ର ଅସ୍ତ୍ରଶସ୍ତ୍ର ଉଲ୍ଲେଖନୀୟ ଭାବେ ହ୍ରାସ କରିବାକୁ ପ୍ରସ୍ତାବ ଦିଆଯାଇଥିଲା । ତା ସତ୍ତ୍ୱେ ଆମେରିକା ଯୁକ୍ତ ରାଷ୍ଟ୍ରର ପ୍ରତିନିଧିଦଳ ସର୍ବଦା ସେ ସମସ୍ତ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ । ତା'ଛଡ଼ା ଆଲୋଚନାର ଧୂଆଁବାଣ ସୃଷ୍ଟି କରି ୧୯୮୩ ମସିହାର ଶେଷକୁ ଆମେରିକା ଯୁକ୍ତ ରାଷ୍ଟ୍ର, ଫେଡେରାଲ ଜର୍ମାନୀ, ଗ୍ରେଟ୍ ବ୍ରିଟେନ୍ ଏବଂ ଇଟାଲୀରେ ପାରମାଣବିକ ଅସ୍ତ୍ର ଯୁକ୍ତ ମଧ୍ୟମ ଦୂରଗାମୀ ରକେଟ ସ୍ଥାପନ କଲା । ଏହିସବୁ ରକେଟ ସୋଭିଏତ୍ ୟୁନିଅନ୍‌ର ୟୁରୋପୀୟ ଅଂଶ ଓ ଅନ୍ୟାନ୍ୟ ସମାଜବାଦୀ ରାଷ୍ଟ୍ରର ଯେକୌଣସି ସ୍ଥାନକୁ ଆଘାତ କରିବାକୁ ସକ୍ଷମ । ସୋଭିଏତ୍ ୟୁନିଅନ୍ ସହିତ ଆଲୋଚନାକୁ ଆମେରିକା ଯୁକ୍ତ ରାଷ୍ଟ୍ର ଜାତିମାନଙ୍କୁ ଭୁଲେଇବା ପାଇଁ ଏବଂ ତଦ୍ୱାରା ସ୍ୱଷ୍ଟ ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତାକୁ ଅବ୍ୟାହତ ରଖିବା ପାଇଁ ବ୍ୟବହାର କରୁଥିଲା ବୋଲି ପରିଷ୍କାର ଜଣା ପଡ଼ିଗଲା ।

୧୯୮୩, ନଭେମ୍ବର ୨୫ ତାରିଖରେ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ସାଧାରଣ ସଂପାଦକ, ସୋଭିଏତ୍ ୟୁନିଅନ୍‌ର ସର୍ବୋଚ୍ଚ ସୋଭିଏତ୍‌ର ସଭାପତି ମଣ୍ଡଳୀର ସଭାପତି ୟୁରି ଆନ୍ଦ୍ରପୋଭ୍‌ଙ୍କର ଏକ ବିବୃତି ପ୍ରକାଶ ପାଇଥିଲା । ଏହି ବିବୃତିରେ କୁହାଯାଇଥିଲା, ସୋଭିଏତ୍ ୟୁନିଅନ୍ ତଥା ତା'ର ମିତ୍ର ଦେଶମାନଙ୍କର ସୀମାର ନିକଟରେ ସ୍ଥାପିତ ଆମେରିକା ଯୁକ୍ତ ରାଷ୍ଟ୍ରର ପାରମାଣବିକ ଅସ୍ତ୍ର ଯୁକ୍ତ ରକେଟସମୂହ ସ୍ଥାପନର ଲକ୍ଷ୍ୟ ହେଉଛି ଏକ ରକେଟ - ପାରମାଣବିକ ଘାଟି ତିଆରି କରିବା । ଏହି ଘାଟି ତିଆରି କରିବାର ଲକ୍ଷ୍ୟ ହେଉଛି ଏକ ସାମାଜିକ ବ୍ୟବସ୍ଥା ହିସାବରେ ସମାଜବାଦ ବିରୁଦ୍ଧରେ ଆମେରିକା ଯୁକ୍ତ ରାଷ୍ଟ୍ର ଦ୍ୱାରା ଘୋଷିତ ନିରର୍ଥକ ବେପରୁଆ ଯୁଦ୍ଧାଭିଯାନକୁ କାର୍ଯ୍ୟକାରୀ କରିବା ।" ୟୁରୋପରେ ପାରମାଣବିକ ଅସ୍ତ୍ର ସଂକ୍ରାନ୍ତରେ ପରିଚାଳିତ ଆଲୋଚନାକୁ ଆମେରିକା ଯୁକ୍ତ ରାଷ୍ଟ୍ର ବ୍ୟବହାର କରିଥିଲା ତା'ର ଏବଂ ତା'ର ନ୍ୟାଟୋ ମିତ୍ର ଦେଶମାନଙ୍କର କ୍ରିୟାକଳାପକୁ ଢାଙ୍କି ରଖିବା ପାଇଁ ଏକ ଆବରଣୀ ହିସାବରେ ଯାହାର ଲକ୍ଷ୍ୟ ହେଉଛି, ୟୁରୋପୀୟ ତଥା ଆନ୍ତର୍ଜାତିକ ନିରାପତ୍ତାକୁ ଦୁର୍ବଳ କରି ଦେବା ।

ଏହିଭଳି ପରିସ୍ଥିତିରେ ୟୁରି ଆନ୍ଦ୍ରପୋଭ୍‌ଙ୍କ ବିବୃତିରେ କୁହାଯାଇଥିଲା, ଏହି ଆଲୋଚନା ଚଳାଇ ଯିବାଟା ସୋଭିଏତ୍ ୟୁନିଅନ୍ ପକ୍ଷରେ ସମ୍ଭବ ନୁହେଁ । ପ୍ରତିବିଧାନମୂଳକ ପଦକ୍ଷେପ ହିସାବରେ ସୋଭିଏତ୍ ସରକାର ସ୍ଥିର କରିଥିଲେ, ସୋଭିଏତ୍ ୟୁରୋପୀୟ ଅଂଶରେ ସୋଭିଏତ୍ ପାରମାଣବିକ ମଧ୍ୟମ ଦୂରଗାମୀ ରକେଟ ସ୍ଥାପନ ନକରିବା ପାଇଁ ନିଷ୍ପତ୍ତିକୁ ରଦ୍ଦ କରି ଦେବା ପାଇଁ । ଜର୍ମାନ୍ ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ଓ ଚେକୋସ୍ଲୋଭାକ୍ ସମାଜବାଦୀ ପ୍ରଜାତନ୍ତ୍ରର ସରକାରମାନଙ୍କ ସହିତ ଏହା

ଚୁକ୍ତି କରିଥିଲା ଏହିସବୁ ଦେଶରେ ଅଧିକ ଦୂରଗାମୀ ରଣନୀତି ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ରକେଟ ସ୍ଥାପନ କରିବାର ପ୍ରସ୍ତୁତି କାର୍ଯ୍ୟକୁ ଆଗେଇ ନେବା ପାଇଁ । କାରଣ ୟୁରୋପରେ ରକେଟ ସ୍ଥାପନ କରି ଆମେରିକା ଯୁକ୍ତ ରାଷ୍ଟ୍ର ସୋଭିଏତ୍ ୟୁନିଅନ୍ ବିରୁଦ୍ଧରେ ପାରମାଣବିକ ବିପଦକୁ ବୃଦ୍ଧି କରି ଦେଇଥିଲା । ଏହିଭଳି ପରିସ୍ଥିତିରେ ସୋଭିଏତ୍ ୟୁନିଅନ୍ ଆମେରିକା ଯୁକ୍ତ ରାଷ୍ଟ୍ର ଭଳି ତା'ର ଅସ୍ତ୍ରଶସ୍ତ୍ରକୁ ମହାସାଗର ଏବଂ ସାଗର ଅଞ୍ଚଳରେ ରଖିବ ବୋଲି ଆନ୍ଦ୍ରପୋଭ୍‌ଙ୍କ ବିବୃତିରେ କୁହାଯାଇଥିଲା । ୟୁରୋପରେ ସ୍ଥାପିତ ଆମେରିକା ଯୁକ୍ତ ରାଷ୍ଟ୍ରର ରକେଟଗୁଡ଼ିକ ଆମ ପ୍ରତି ଏବଂ ଆମର ମିତ୍ରମାନଙ୍କ ପ୍ରତି ଯେଉଁ ଭୟର କାରଣ ହୋଇଛି, ତାହାକୁ ମୁକାବିଲା କରିବା ପାଇଁ ମହାସାଗର ତଥା ସାଗରରେ ଆମ ତରଫରୁ ସ୍ଥାପିତ ଏହି ଅସ୍ତ୍ରଶସ୍ତ୍ର ଯଥେଷ୍ଟ ହେବ ବୋଲି ଏହି ବିବୃତିରେ ଦର୍ଶାଯାଇଥିଲା । ଏହି ପ୍ରତିବିଧାନମୂଳକ ପଦକ୍ଷେପଗୁଡ଼ିକ ନ୍ୟାଟୋ ଶକ୍ତିମାନଙ୍କ ଦ୍ୱାରା କ୍ରିୟାକଳାପର ହୁମ୍‌କିର ପରିମାଣ ମୁତାବକ କରାଯାଇଥିଲା । ସୋଭିଏତ୍ ୟୁନିଅନ୍ ଅଧିକ ସାମରିକ ପ୍ରାଧାନ୍ୟ ପ୍ରତିଷ୍ଠା କରିବାକୁ ଚାହେଁ ନାହିଁ ଏବଂ ସାମରିକ ଭାରସାମ୍ୟ ରଖିବା ପାଇଁ ଯେତିକି ଦରକାର, କେବଳ ସେତିକି କରିଛି ବୋଲି ବିବୃତିରେ କୁହାଯାଇଥିଲା । ୟୁରୋପରେ ଆମେରିକା ଯୁକ୍ତ ରାଷ୍ଟ୍ରର ମଧ୍ୟମ ଦୂରଗାମୀ ରକେଟ ସ୍ଥାପନ ପୂର୍ବରୁ ଯେଉଁ ସ୍ଥିତାବସ୍ଥା ବିରାଜ କରୁଥିଲା, ସେଥିକୁ ଆମେରିକା ଯୁକ୍ତ ରାଷ୍ଟ୍ର ଓ ନ୍ୟାଟୋ ଦେଶମାନେ ଫେରି ଆସିବା ପାଇଁ ପ୍ରସ୍ତୁତ ହେଲେ, ସୋଭିଏତ୍ ୟୁନିଅନ୍ ତାହା କରିବାକୁ ପ୍ରସ୍ତୁତ ବୋଲି ଏହି ବିବୃତିରେ ପ୍ରତିଶ୍ରୁତି ଦିଆଯାଇଥିଲା ।

୧୯୮୩, ଡିସେମ୍ବର ମାସ ୨୯ ତାରିଖରେ ସୋଭିଏତ୍ ୟୁନିଅନ୍‌ର ସର୍ବୋଚ୍ଚ ସୋଭିଏତ୍ "ଆନ୍ତର୍ଜାତିକ ପରିସ୍ଥିତି ଓ ସୋଭିଏତ୍ ରାଷ୍ଟ୍ରର ବୈଦେଶିକ ନୀତି" ଶୀର୍ଷକ ଏକ ପ୍ରସ୍ତାବ ପାଶ୍ କରିଥିଲେ । ଏହି ପ୍ରସ୍ତାବରେ ୟୁରି ଆନ୍ଦ୍ରପୋଭ୍‌ଙ୍କ ବିବୃତିଟିକୁ ପୂରାପୂରି ଅନୁମୋଦନ ଜଣାଇବା ସାଥେ ସାଥେ ସୋଭିଏତ୍ ୟୁନିଅନ୍‌ର ପ୍ରତିରକ୍ଷା ଶକ୍ତି ଏବଂ ସୋଭିଏତ୍ ଜନସାଧାରଣ ତଥା ଏହାର ମିତ୍ରମାନଙ୍କର ନିରାପତ୍ତାକୁ ସୁନିଶ୍ଚିତ କରିବା ପାଇଁ ସୋଭିଏତ୍ ସରକାରଙ୍କ ଦ୍ୱାରା ନିଆଯାଇଥିବା କାର୍ଯ୍ୟକର ପଦକ୍ଷେପକୁ ଏହା ସମର୍ଥନ ଜଣାଇଥିଲା । ସୋଭିଏତ୍ ୟୁନିଅନ୍ ସର୍ବୋଚ୍ଚ ସୋଭିଏତ୍ ପ୍ରତିନିଧିଦଳ ଦ୍ୱାରା ଜାତିସଂଘ ସାଧାରଣ ପରିଷଦର ୩୮ଶ ଅଧିବେଶନର ଉପସ୍ଥାପିତ ଘୋଷଣା ଗୃହୀତ ହେବା ଉପରେ ସନ୍ତୋଷ ପ୍ରକାଶ କରିଥିଲା । ଏହି ଘୋଷଣାଟି ଥିଲା ପାରମାଣବିକ ଯୁଦ୍ଧ ପ୍ରତି ଧିକ୍କାର ଏବଂ ପାରମାଣବିକ ଅସ୍ତ୍ରଶସ୍ତ୍ରର ଧ୍ୱଂସ ସାଧନ, ମହାକାଶରେ ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତାର ନିଷିଦ୍ଧକରଣ ଉପରେ । ଏଥିରେ ସୋଭିଏତ୍ ସରକାର ଏହିସବୁ ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିବା ପାଇଁ ଆଲୋଚନା କରିବାକୁ ପ୍ରସ୍ତୁତ ଅଛନ୍ତି ବୋଲି କୁହାଯାଇଥିଲା, ଯଦି ଆମେରିକା ଯୁକ୍ତ ରାଷ୍ଟ୍ର ଓ ଅନ୍ୟାନ୍ୟ ନ୍ୟାଟୋ ଦେଶମାନେ ପ୍ରସ୍ତୁତ ହୁଅନ୍ତି ।

ସର୍ବୋଚ୍ଚ ସୋଭିଏତ୍ ସରକାରକୁ ନିର୍ଦ୍ଦେଶ ଦେଇଥିଲା ସୋଭିଏତ୍ ରାଷ୍ଟ୍ର ତଥା ତା'ର ମିତ୍ରମାନଙ୍କ ନିରାପତ୍ତାକୁ ସୁନିଶ୍ଚିତ କରିବାର ପଥକୁ ଅବ୍ୟାହତ ରଖିବା ପାଇଁ ଏବଂ ଦେଖାଦେଉଥିବା ପରିସ୍ଥିତିକୁ ବିଗ୍ଭର କରି, ଆନ୍ତର୍ଜାତିକ ପରିସ୍ଥିତିକୁ ଉନ୍ନତ କରିବା ଦିଗରେ ଆବଶ୍ୟକୀୟ ପଦକ୍ଷେପମାନ ନେବାକୁ । "ସୋଭିଏତ୍ ୟୁନିଅନ୍‌ର ସର୍ବୋଚ୍ଚ ସୋଭିଏତ୍ ଆନୁଷ୍ଠାନିକ ଭାବେ ଘୋଷଣା କରୁଛି ଯେ, ଏହା କୌଣସି ଦେଶର ନିରାପତ୍ତାକୁ ବିଘ୍ନିତ କରୁ ନାହିଁ, ସେ ପାଶ୍ଚାତ୍ୟ ଦେଶ ହେଉ ବା ପ୍ରାଚ୍ୟ ଦେଶ ହେଉ । ଏହା ସମସ୍ତ ଦେଶମାନଙ୍କ ସହିତ ଶାନ୍ତିରେ ବାସ କରିବାକୁ ଗ୍ଭହେଁ ଏବଂ ବିଭିନ୍ନ ସାମାଜିକ ବ୍ୟବସ୍ଥା ସଂପନ୍ନ ଦେଶମାନଙ୍କର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ନୀତିକୁ କାର୍ଯ୍ୟକାରୀ କରିବାକୁ ଗ୍ଭହେଁ । ସୋଭିଏତ୍ ରାଷ୍ଟ୍ରର ସର୍ବୋଚ୍ଚ ସଂସ୍ଥା ଆତ୍ମବିଶ୍ୱାସର ସହିତ କହିଥିଲା, ମଣିଷର ବୁଦ୍ଧି ହିଁ ମାନବ ସମାଜକୁ ପାରମାଣବିକ ଧ୍ୱଂସରୁ ରକ୍ଷା କରି ପାରେ ଏବଂ ନିଶ୍ଚୟ ଏହା କରିବ । ବିଶ୍ୱର ସମସ୍ତ ଦେଶର ପାର୍ଲିଆମେଣ୍ଟ ଏବଂ ଜାତିମାନେ ବର୍ତ୍ତମାନର ସର୍ବାଧିକ ଜଟିଳ ସମସ୍ୟାର ସମାଧାନ ପ୍ରତି ଗୁରୁତ୍ୱପୂର୍ଣ୍ଣ ଅବଦାନ ରଖି ପାରିବେ ଏବଂ ସେମାନଙ୍କୁ ରଖିବାକୁ ହେବ । ଏଥି ପାଇଁ ସୋଭିଏତ୍ ଜନସାଧାରଣ ସେମାନଙ୍କୁ ଆହ୍ୱାନ ଦେଉଛନ୍ତି ।"

ୟୁରି ଆନ୍ଦ୍ରପୋଭ୍‌ଙ୍କ ମୃତ୍ୟୁ ପରେ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ରୀୟ କମିଟିର ସାଧାରଣ ସଂପାଦକ ରୂପେ ନିର୍ବାଚିତ ହେଲେ କୋନ୍‌ଷ୍ଟାନ୍ଟିନ୍ ଚେର୍ଣ୍ଣେଙ୍କୋ । ୧୯୮୪, ମାର୍ଚ୍ଚ ୨ ତାରିଖରେ ସୋଭିଏତ୍ ୟୁନିଅନ୍‌ର ୧୧ଶ ସର୍ବୋଚ୍ଚ ସୋଭିଏତ୍‌ର ନିର୍ବାଚନର ଅବ୍ୟବହିତ ପୂର୍ବରୁ ୧୦ମ ସର୍ବୋଚ୍ଚ ସୋଭିଏତ୍‌ର ଜନପ୍ରତିନିଧିମାନଙ୍କ ପ୍ରତି ଭୋଟଦାତାମାନଙ୍କ ଦ୍ୱାରା ପ୍ରଦତ୍ତ ନିର୍ଦ୍ଦେଶକୁ ସେମାନେ କେତେ ପରିମାଣରେ କାର୍ଯ୍ୟକାରୀ କରିଛନ୍ତି, ତା'ର ମୂଲ୍ୟାୟନ କରିଥିଲେ । ବୈଦେଶିକ ନୀତି କ୍ଷେତ୍ରରେ ପ୍ରଦତ୍ତ ନିର୍ଦ୍ଦେଶର ରୂପାୟନ ସଂପର୍କରେ କହିବାକୁ ଯାଇ ସେ ଉଲ୍ଲେଖ କରିଥିଲେ : "ସୋଭିଏତ୍ ଭୋଟଦାତାମାନଙ୍କର ଅତି ଗୁରୁତ୍ୱପୂର୍ଣ୍ଣ ଓ ଅତି ଜରୁରୀ ନିର୍ଦ୍ଦେଶଗୁଡ଼ିକ ମଧ୍ୟରୁ ଗୋଟିଏ ଥିଲା – ଏବେ ତାହା ଅଛି ଏବଂ ଭବିଷ୍ୟତରେ ତାହା ରହିବ – ଶାନ୍ତିକୁ ସୁରକ୍ଷା କରିବା ଏବଂ ଆମ ଜନ୍ମଭୂମିର ନିରାପତ୍ତାକୁ ସୁନିଶ୍ଚିତ କରିବା । ମୁଁ କହି ପାରେ ଯେ, ପାର୍ଟି ଏବଂ ସୋଭିଏତ୍ ସରକାର ସେ ନିର୍ଦ୍ଦେଶକୁ ଅବିଚଳ ଭାବେ ପାଳନ କରିଛନ୍ତି... ।

ଶାନ୍ତି ପାଇଁ ଏପରି କୌଣସି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ନାହିଁ, ଯାହାକୁ ସମାଧାନ କରିବା ପାଇଁ ସୋଭିଏତ୍ ୟୁନିଅନ୍ ଏବଂ ଅନ୍ୟାନ୍ୟ ସମାଜବାଦୀ ଦେଶମାନେ ସାଂପ୍ରତିକ ବର୍ଷଗୁଡ଼ିକରେ ନିର୍ଦ୍ଦିଷ୍ଟ, ବାସ୍ତବ ପ୍ରସ୍ତାବ ଦେଇ ନାହାନ୍ତି । ଆମର୍ ଏହିସବୁ ଦେଶମାନଙ୍କ ଦ୍ୱାରା ନିଆଁଯାଇଥିବା ଅଗ୍ରପଦକ୍ଷେପକୁ କ୍ରମଶଃ ଅନ୍ୟ ରାଷ୍ଟ୍ରମାନେ ଅଧିକରୁ ଅଧିକ ସମର୍ଥନ ପ୍ରଦାନ କରିଛନ୍ତି । ଏହି ସତ୍ୟଟି ଅତି ହୃଦ୍‌ବୋଧତାର ସହିତ ସ୍ୱୀକୃତି ଲାଭ କରିଥିଲା ଜାତିସଂଘର ସାଧାରଣ ପରିଷଦର ଗତ ଅଧିବେଶନରେ ।"

ଶାନ୍ତିକୁ ସୁଦୃଢ଼ କରିବା ଲକ୍ଷ୍ୟରେ କନ୍‌ଷ୍ଟାଣ୍ଟିନ୍ ଚେର୍ଣ୍ଣେଙ୍କୋଙ୍କ ବକ୍ତୃତାରେ ନୂଆ ଏକ ସୋଭିଏତ୍ ଅଗ୍ରପଦକ୍ଷେପ ରହିଥିଲା । ସେ କହିଥିଲେ, "ଯେଉଁସବୁ ଶକ୍ତିମାନଙ୍କ ହାତରେ ପାରମାଣବିକ ଅସ୍ତ୍ରଶସ୍ତ୍ର ଅଛି, ସେମାନଙ୍କ କର୍ମନୀତି ଆମ ଏହି ଯୁଗରେ ବିଶେଷ ଗୁରୁତ୍ୱ ବହନ କରୁଛି । ସମଗ୍ର ମାନବଜାତିର ସ୍ୱାର୍ଥ ଏବଂ ବର୍ତ୍ତମାନ ତଥା ଭବିଷ୍ୟତ ବଂଶଧରମାନଙ୍କ ପ୍ରତି ରାଷ୍ଟ୍ର ନେତାମାନଙ୍କର ଦାୟିତ୍ୱ ଆବଶ୍ୟକ କରୁଛି ଯେ, ସେମାନଙ୍କ ମଧ୍ୟରେ ସଂପର୍କରାଜି କେତେକ ନୀତି ଅନୁଯାୟୀ ହେବା ଉଚିତ । ଆମ ମତରେ ସେସବୁ ନୀତି ପ୍ରାୟ ନିମ୍ନମତେ ହେଉ :

— ପ୍ରତ୍ୟେକ ଦେଶର ବୈଦେଶିକ ନୀତିର ମୁଖ୍ୟ ଲକ୍ଷ୍ୟ ହେବା ଉଚିତ ପାରମାଣବିକ ଯୁଦ୍ଧକୁ ରୋକିବା, ପାରମାଣବିକ ସଂଘର୍ଷର ବିପଦ ସୃଷ୍ଟି କଲା ଭଳି ଅବସ୍ଥାକୁ ରୋକିବା ଏବଂ ଯଦି ସେପରି ବିପଦ ଦେଖାଦେଉଥାଏ, ତେବେ ପାରମାଣବିକ ଯୁଦ୍ଧର ବିସ୍ଫୋରଣକୁ ରୋକିବା ପାଇଁ ଜରୁରୀ ଆଲୋଚନା ଆଲୋଚନା ଅନୁଷ୍ଠିତ ହେବା ଦରକାର ।

— ଯେକୌଣସି ଧରଣର ପାରମାଣବିକ ଯୁଦ୍ଧ — ସେ ବିଶ୍ୱବ୍ୟାପୀ ହେଉ ବା ସୀମିତ ଆକାରରେ ହେଉ — ପ୍ରଗ୍ରରକୁ ନିନ୍ଦା କରିବାକୁ ହେବ ।

— ପ୍ରଥମେ ନିଜ ପକ୍ଷରୁ ପାରମାଣବିକ ଅସ୍ତ୍ରଶସ୍ତ୍ର ବ୍ୟବହାର ନକରିବାକୁ ପ୍ରତିଶ୍ରୁତି ଦେବା ଦରକାର ।

— ପାରମାଣବିକ ଅସ୍ତ୍ରହୀନ ଯେଉଁସବୁ ଦେଶର ଭୂଖଣ୍ଡରେ ଏ ଧରଣର ଅସ୍ତ୍ରଶସ୍ତ୍ର ନାହିଁ ସେମାନଙ୍କ ବିରୁଦ୍ଧରେ କୌଣସି ପରିସ୍ଥିତିରେ ପାରମାଣବିକ ଅସ୍ତ୍ରଶସ୍ତ୍ର ପ୍ରୟୋଗ କରାଯିବ ନାହିଁ । ପ୍ରତିଷ୍ଠିତ ସ୍ଥିତାବସ୍ଥାକୁ ରକ୍ଷା କରାଯାଉ ଏବଂ ବିଶ୍ୱର ବିଭିନ୍ନ ଅଞ୍ଚଳରେ ପାରମାଣବିକ ଅସ୍ତ୍ର ମୁକ୍ତ ଭୂଖଣ୍ଡମାନ ପ୍ରତିଷ୍ଠା କରାଯାଉ ।

— କୌଣସି ପ୍ରକାରରେ ପାରମାଣବିକ ଅସ୍ତ୍ରଶସ୍ତ୍ରର ସଂପ୍ରସାରଣକୁ ରୋଧ କରାଯାଉ : କାହାରି ହାତକୁ ଏସବୁ ଅସ୍ତ୍ରଶସ୍ତ୍ର ଦିଆ ନଯାଉ ଏବଂ କାହାରିକୁ ଏସବୁ ଉପରେ ନିୟନ୍ତ୍ରଣ ଜାରି କରିବାକୁ ଦିଆ ନଯାଉ । ଯେଉଁସବୁ ଦେଶରେ ଏସବୁ ଅସ୍ତ୍ରଶସ୍ତ୍ର ନାହିଁ, ସେସବୁ ଦେଶର ଭୂଖଣ୍ଡରେ ସେସବୁକୁ ସ୍ଥାପିତ କରା ନଯାଉ । ମହାକାଶ ସମେତ ଅନ୍ୟ କୌଣସି ନୂତନ କ୍ଷେତ୍ରକୁ ସେସବୁ ଅସ୍ତ୍ରଶସ୍ତ୍ର ସଂପ୍ରସାରିତ ନହେଉ ।

— ସମାନ ନିରାପତ୍ତାର ନୀତିରାଜି ଉପରେ ଭିତ୍ତି କରି ସମସ୍ତ ପ୍ରକାରର ଆଣବିକ ଅସ୍ତ୍ରଶସ୍ତ୍ରର ସଂପୂର୍ଣ୍ଣ ଦୂରୀକରଣ ନହେଲା ପର୍ଯ୍ୟନ୍ତ ସେସବୁର ହ୍ରାସ ପାଇଁ ପଦକ୍ଷେପ ପରେ ପଦକ୍ଷେପ ନିଆଯାଉ ।

ସୋଭିଏତ୍ ୟୁନିଅନ୍ ଏହିସବୁ ନୀତିକୁ ତା କର୍ମନୀତିର ଭିତ୍ତି ହିସାବରେ ଗ୍ରହଣ କରିଛି । ଆଣବିକ ଅସ୍ତ୍ରଶସ୍ତ୍ର ଥିବା ଅନ୍ୟ ଦେଶମାନଙ୍କ ସହିତ ସୋଭିଏତ୍

ୟୁନିଅନ୍ ଏହିସବୁ ମିଳିତ ନୀତିକୁ ସ୍ୱୀକାର କରି ନେବା ଏବଂ ସେସବୁକୁ ବାଧ୍ୟତାମୂଳକ କରିବା ଉପରେ ଭିତ୍ତି କରି ଯେକୌଣସି ସମୟରେ ଚୁକ୍ତିବଦ୍ଧ ହେବାକୁ ପ୍ରସ୍ତୁତ ରହିଛି । ମୋର ମନେ ହୁଏ, ଏହା କେବଳ ଅଂଶଗ୍ରହଣକାରୀ ଦେଶମାନଙ୍କର ସ୍ୱାର୍ଥ ରକ୍ଷା କରିବ ନାହିଁ, ସମଗ୍ର ଦୁନିଆର ସମସ୍ତ ଜାତିଙ୍କର ସ୍ୱାର୍ଥକୁ ରକ୍ଷା କରିବ ।"

୧୯୮୫, ମାର୍ଚ୍ଚ ମାସରେ ସୋଭିଏତ୍ ୟୁନିଅନ୍‌ର ଉଦ୍ୟମରେ ସୋଭିଏତ୍ ୟୁନିଅନ୍ ଏବଂ ଆମେରିକା ଯୁକ୍ତ ରାଷ୍ଟ୍ର ମଧ୍ୟରେ ନୂଆ ଏକ ଆଲୋଚନା ଆରମ୍ଭ ହୋଇଥିଲା । ଏହି ଆଲୋଚନାର ଲକ୍ଷ୍ୟ ହେଲା ପାରମାଣବିକ ଏବଂ ମହାକାଶର ଅସ୍ତ୍ରଶସ୍ତ୍ରକୁ ନିଷିଦ୍ଧ କରିବା ଉଦ୍ଦେଶ୍ୟରେ ଏକ ଫଳପ୍ରଦ ଚୁକ୍ତିରେ ପହଞ୍ଚିବା, ମହାକାଶରେ ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତାକୁ ବନ୍ଦ କରିବା ଏବଂ ପୃଥିବୀ ପୃଷ୍ଠରେ ଏହାର ଅବସାନ ଘଟାଇବା, ପାରମାଣବିକ ଅସ୍ତ୍ରଶସ୍ତ୍ରକୁ ସୀମିତ କରିବା ଏବଂ ହ୍ରାସ କରିବା ଏବଂ ରଣନୀତିଗତ ସ୍ଥିରତାକୁ ଶକ୍ତିଶାଳୀ କରିବା ।

୧୯୮୫, ମାର୍ଚ୍ଚ ୧୧ ତାରିଖରେ ମିଖାଇଲ ଗୋର୍ବାଚ୍ଚେଭ୍ ସୋଭିଏତ୍ କମ୍ୟୁନିଷ୍ଟ ପାର୍ଟିର ସାଧାରଣ ସଂପାଦକ ରୂପେ ନିର୍ବାଚିତ ହେଲେ । ସୋଭିଏତ୍ ରାଷ୍ଟ୍ର ତରଫରୁ ସେ ପ୍ରସ୍ତାବ ଦେଇଥିଲେ ସୋଭିଏତ୍ ୟୁନିଅନ୍ ଏବଂ ଆମେରିକା ଯୁକ୍ତ ରାଷ୍ଟ୍ର ମଧ୍ୟରେ ଆଲୋଚନା ଚାଲିଥିବା କାଳରେ ଉଭୟ ଦେଶ ମହାକାଶ ଅସ୍ତ୍ରଶସ୍ତ୍ର ନିର୍ମାଣ, ପରୀକ୍ଷା ଏବଂ ସଂପ୍ରସାରଣକୁ ବନ୍ଦ ରଖନ୍ତୁ । ସୋଭିଏତ୍ ରାଷ୍ଟ୍ର ରଣନୀତିଗତ ଆକ୍ରମଣାତ୍ମକ ଅସ୍ତ୍ରଶସ୍ତ୍ର ନିର୍ମାଣ ବନ୍ଦ ରଖିବ ବୋଲି ସେ ଘୋଷଣା କରିଥିଲେ । ସେ କହିଥିଲେ, "ସୋଭିଏତ୍ ୟୁନିଅନ୍ ତା'ର ମଧ୍ୟମ-ଦୂରଗାମୀ ରକେଟର ବିନ୍ୟାସ ସାଧନକୁ ସ୍ଥଗିତ ରଖିବା ସାଥେ ସାଥେ ୟୁରୋପରେ ଅନ୍ୟାନ୍ୟ ସୁପ୍ରତିକ୍ରିୟା ସୃଷ୍ଟିକାରୀ ପଦକ୍ଷେପମାନ ନେବ ।" କିନ୍ତୁ ଆମେରିକାନ୍ ପ୍ରଶାସନ ଏହି ସୋଭିଏତ୍ ଶାନ୍ତିପୂର୍ଣ୍ଣ ଅଗ୍ରପଦକ୍ଷେପକୁ ପ୍ରତ୍ୟାଖ୍ୟାନ କରିଥିଲେ ।

କମ୍ୟୁନିଷ୍ଟ ପାର୍ଟି ତଥା ସୋଭିଏତ୍ ରାଷ୍ଟ୍ରର ଶାନ୍ତିକାମୀ ଏବଂ ଗଭୀର ମାନବତାବାଦୀ ବୈଦେଶିକ ନୀତିକୁ ସୋଭିଏତ୍ ଜନସାଧାରଣ ସର୍ବସମ୍ମତ ଭାବେ ଆନ୍ତରିକତାର ସହିତ ସମର୍ଥନ କରନ୍ତି । ସୋଭିଏତ୍ ୟୁନିଅନ୍‌ର ନିରବଚ୍ଛିନ୍ନ ଶାନ୍ତିକାମୀ ବୈଦେଶିକ ନୀତି ବିଶ୍ୱର ଜାତିମାନଙ୍କର କ୍ରମାଧିକ ସମର୍ଥନ ଲାଭ କରି ଚାଲିଛି । ସେମାନେ ଅଧିକରୁ ଅଧିକ ମାତ୍ରାରେ ପରିଷ୍କାର ଭାବେ ବୁଝି ପାରୁଛନ୍ତି ଆମେରିକା ଯୁକ୍ତ ରାଷ୍ଟ୍ର ତଥା ଅନ୍ୟ କେତେକ ନ୍ୟାଟୋ ଦେଶମାନଙ୍କର ଆକ୍ରମଣାତ୍ମକ ବେପରୁଆ, ବୈଦେଶିକ ନୀତିର ବିପଦକୁ । ଏମାନଙ୍କର ଏତାଦୃଶ ନୀତି ସମଗ୍ର ମାନବ ଜାତିକୁ ଧ୍ୱଂସ ମୁଖକୁ ଠେଲି ଦେବାକୁ ଯାଉଛି । ଆମେରିକା ଯୁକ୍ତ ରାଷ୍ଟ୍ର ସମେତ ସାରା ଦୁନିଆରେ

ଯୁଦ୍ଧବିରୋଧୀ ଆନ୍ଦୋଳନ ଅଭୂତପୂର୍ବ ଆକାରରେ ନିତି ଦିନ ବଢ଼ି ଚାଲିଛି । ପାରମାଣବିକ ଯୁଦ୍ଧ ବିରୁଦ୍ଧରେ ଏବଂ ସମଗ୍ର ବିଶ୍ୱରେ ଶାନ୍ତିର ସୁରକ୍ଷା ପାଇଁ ଦୁନିଆର ଜାତିମାନେ ସେମାନଙ୍କ ସଂଗ୍ରାମକୁ ଅଭିବୃଦ୍ଧି କରି ଚାଲିଛନ୍ତି । କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱରେ ସୋଭିଏତ୍ ୟୁନିଅନ୍‌ର ଜାତିମାନେ ଏହି ଐତିହାସିକ ସଂଗ୍ରାମରେ ପ୍ରଥମ ଧାଡ଼ିରେ ରହିଛନ୍ତି ।

୧୯୮୪, ଏପ୍ରିଲ ।

